# ଗୋବିନ୍ଦ ତ୍ରିପାଠୀ
# ଉପନ୍ୟାସ ସଂକଳନ





ଜ୍ଞାନଯୁଗ ପବ୍ଲିକେଶନ
ଭୁବନେଶ୍ୱର

# ଗୋବିନ୍ଦ ତ୍ରିପାଠୀ

## ଉପନ୍ୟାସ ସଂକଳନ

ଗୋବିନ୍ଦ ତ୍ରିପାଠୀ

ଗୋବିନ୍ଦ ତ୍ରିପାଠୀ ଫାଉଣ୍ଡେସନ୍
ଓ



ଜ୍ଞାନଯୁଗ ପବ୍ଲିକେଶନ
ନୂଆପଲ୍ଲୀ, ଭୁବନେଶ୍ୱର

# ଗୋବିନ୍ଦ ତ୍ରିପାଠୀ : ଉପନ୍ୟାସ ସଂକଳନ

ଲେଖକ
ଗୋବିନ୍ଦ ତ୍ରିପାଠୀ

ISBN 81 87781 88 2

ପ୍ରକାଶନ ଉପଦେଷ୍ଟା
ଶ୍ରୀ ବିନୋଦ ବିହାରି ବିଶୋଇ

ପ୍ରକାଶକ
ଜ୍ଞାନଯୁଗ ପବ୍ଲିକେଶନ
ଏନ୍-୬/୪୨୮, ଆଇ·ଆର୍·ସି· ଭିଲେଜ
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ·-୨୫୫୨୦୯୧

ମୁଦ୍ରକ
କ୍ରିଏଟିଭ୍ ଅଫସେଟ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ·-୨୫୫୬୧୦୭

ପ୍ରଥମ ପ୍ରକାଶ
୨୦୦୫

ଅକ୍ଷର ସଜ୍ଜା
ବି· ଏନ୍· ଗ୍ରାଫିକ୍ସ
ବାଣୀବିହାର, ଭୁବନେଶ୍ୱର

କଭର ଡିଜାଇନ୍
ସଙ୍କେତ, ସହୀଦ ନଗର, ଭୁବନେଶ୍ୱର

ମୂଲ୍ୟ : ଟ୨୨୫ଙ୍କା

Published by Smt. Susama Bisoi on behalf of Gyanajuga Publication,
N-6/428, IRC Village, Nayapalli, Bhubaneswar-751015, Orissa,
Ph. : (0674) 2552091, 2556107

# ସୂଚୀପତ୍ର

# ଗୋବିନ୍ଦ ତ୍ରିପାଠୀଙ୍କ ସାହିତ୍ୟ

ଗୋବିନ୍ଦ ତ୍ରିପାଠୀ ଭାରତର ଜଣେ ପ୍ରମୁଖ ବିଦ୍ୱାନ୍ ଓ ଲେଖକ ଥିଲେ, ଯାହାଙ୍କର ଲେଖା ୧୯୨୨ରେ ତାଙ୍କ ଛାତ୍ର ଜୀବନରୁ ଆରମ୍ଭ ହୋଇ ୧୯୬୨ରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଚାଲିଥିଲା । ସେ ଜନ୍ମ ନେଇଥିଲେ ୧୮୯୯ ରେ ଗୋଟିଏ ଦରିଦ୍ର ବ୍ରାହ୍ମଣ ପରିବାରରେ ଏବଂ ପୁରୀ ପାଖ ଶ୍ରୀରାମଚନ୍ଦ୍ରପୁର ଶାସନର ଆଉ ଏକ ଦରିଦ୍ର ପରିବାରକୁ ପୁଅ ହୋଇ ଯାଇଥିଲେ । ପ୍ରତିକୂଳ ଅବସ୍ଥା ଓ ଅନାଟନ ଘେରରେ ରହି ମଧ୍ୟ ସେ ସାକ୍ଷୀଗୋପାଳ ବନ ବିଦ୍ୟାଳୟରେ ତାଙ୍କ ଶ୍ରେଣୀରେ ପ୍ରଥମ ସ୍ଥାନ ରଖି ଉଠି ଚାଲିଲେ ଓ ସ୍କଲାରସିପ୍ ପାଇ ରେଭେନ୍ସା କଲେଜରେ ପଢ଼ି, ୧୯୨୫ ରେ "ଇଂଲିସ୍ ଲିଟ୍‌ରେଚର୍"ରେ ପ୍ରଥମ ବ୍ୟାଚ୍‌ରେ ପ୍ରଥମ ସ୍ଥାନ ଅଧିକାର କଲେ । କିଛି ମାସ ଅଧ୍ୟାପନା କଲାପରେ ଓଡ଼ିଶା-ବିହାର ସିଭିଲ୍ ସର୍ଭିସ୍‌ରେ ଯୋଗଦେଇ ୧୯୫୪ ରେ ସେ ଅବସର ନେଲେ । ସେ ୯୦ଟି ପ୍ରବନ୍ଧ (ଯୋଉଟାକି ତାଙ୍କର ପ୍ରିୟ ମାଧ୍ୟମ), ୬ଟି ନଭେଲ୍ ଓ ୭ଟି ନାଟକ ଲେଖିଛନ୍ତି । ସେ ସେଣ୍ଟ୍ରାଲ୍ ସାହିତ୍ୟ ଆକାଡେମୀ ପାଇଁ ମିଗୁଏଲ୍ ଦ' ସର୍ଭାଣ୍ଟିସ୍‌ଙ୍କର ଡନ କିହୋତେ ଅନୁବାଦ କରିଛନ୍ତି ।

ଗୋବିନ୍ଦ ତ୍ରିପାଠୀଙ୍କୁ ଏକ ପରମ୍ପରାରେ ବାନ୍ଧି ରଖିବା କଷ୍ଟକର ହେଲେହେଁ ତାଙ୍କ ଭିତରେ ସର୍ଭାଣ୍ଟିସ୍, ଫିଲ୍‌ଡିଂ, ଭୋଲ୍‌ଟେଆର୍, ସ', ରସେଲ୍, ଚେଷ୍ଟରଟନ୍, ହକ୍ସଲି ଯେତିକି ବିଦ୍ୟମାନ, ସେତିକି ବିଦ୍ୟମାନ ଓଡ଼ିଆ ସାହିତ୍ୟ ରଥି ଉପେନ୍ଦ୍ର ଭଞ୍ଜ, ଫକୀର ମୋହନ ସେନାପତି, ଗୋପାଳ ପ୍ରହରାଜ ଓ ନୀଳକଣ୍ଠ ଦାସ । ତା'ଛଡ଼ା ସେ ଭାରତୀୟ ଦର୍ଶନ ଶାସ୍ତ୍ର, ଗ୍ରୀକ୍ ଦର୍ଶନ ଶାସ୍ତ୍ର ଓ ରେନେସାନ୍‌ସ୍ ପରର ପାଶ୍ଚାତ୍ୟ ଦର୍ଶନ ଶାସ୍ତ୍ରର ନିପୁଣ ଛାତ୍ର ଥିଲେ । ବୈଦିକ ସଂସ୍କୃତ ସାହିତ୍ୟ, ଓଡ଼ିଆ ସାହିତ୍ୟ ଓ ଇଂଲିସ୍ ସାହିତ୍ୟରେ ମଧ୍ୟ ସେ ନିପୁଣ ଥିଲେ ।

ତାଙ୍କ ଲେଖକ ଜୀବନକୁ ଚାରିଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ ।

## ପ୍ରଥମ ପର୍ଯ୍ୟାୟ : ୧୯୨୨—୧୯୨୬

ଏ ସମୟର କିଛି ଲେଖା, ବେଶ୍ କିଛି ଲେଖା, ତ୍ରିପାଠୀଙ୍କ ଛାତ୍ର ଜୀବନ ବେଳର । ଏ ସମୟର ପ୍ରବନ୍ଧ ଗୁଡ଼ିକ ମୁଖ୍ୟତଃ ଭାରତର ଔପନିବେସିକ ଅର୍ଥନୀତିର ସମୀକ୍ଷା ଭାବରେ ଲିଖିତ । ୧୯୨୦ ଦଶକର ତାଙ୍କର ଅନେକ ମତାମତ ଆଜି ମଧ୍ୟ ପ୍ରଯୁଜ୍ୟ ରହିଚି । ଏ ଭାଗର ଶେଷ ଆଡ଼କୁ ତାଙ୍କର ପ୍ରଥମ ଉପନ୍ୟାସ ପ୍ରମାଦ ୧୯୨୫ ରେ ମୁକୁର ଉପନ୍ୟାସମାଳାର ଦ୍ୱିତୀୟ ଉପନ୍ୟାସ ଭାବେ ମୁକୁର ପ୍ରେସ୍ ଦ୍ୱାରା ପ୍ରକାଶିତ ହେଲା । ଏହିବର୍ଷ ସେ ଏମ୍.ଏ. ପାସ୍ କଲେ । ଏ ଉପନ୍ୟାସଟି ଗୋଟିଏ ବାଲ୍ୟ ବିଧବାର ମନ ଭିତରୁ ଲେଖା ଓ ତା' ଚରିତ୍ରର ବିକାଶ ବର୍ଣ୍ଣନା କରିଚି । ମୋ ମତରେ ଏଇଟି ଓଡ଼ିଆ ଉପନ୍ୟାସ ଅଭିବୃଦ୍ଧିର ଏକ ଯୁଗାନ୍ତକାରୀ ନିଦର୍ଶନ କାରଣ ଏହା ସମସାମୟିକ ଭାରତୀୟ ଗଳ୍ପ ସାହିତ୍ୟରେ ପର୍‌ସୋନା (Persona) ଓ ପଏଣ୍ଟ ଅଫ୍ ଭ୍ୟୁ (Point of view) ଉପରେ ଆଧାରିତ ପ୍ରଥମ ଉପନ୍ୟାସ ।

## ଦ୍ୱିତୀୟ ପର୍ଯ୍ୟାୟ : ୧୯୨୭—୧୯୩୫

ଏ ପର୍ଯ୍ୟାୟଟି ମୁଖ୍ୟତଃ ସାହିତ୍ୟ ବିଷୟକ ଲେଖାରେ ପରିପୂର୍ଣ୍ଣ । "ଫରାସୀ ସାହିତ୍ୟରେ ଭୋଲ୍‌ଟେୟାର୍" (୧୯୨୭)ରୁ ଆରମ୍ଭ କରି ସେ "ସାହିତ୍ୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ" (୧୯୩୪), "ସାହିତ୍ୟରେ ନ୍ୟାୟ" (୧୯୩୫), "ସାହିତ୍ୟ ଓ କଳ୍ପନା" (୧୯୩୫), "ସାହିତ୍ୟ ଓ ଉପନ୍ୟାସ" (୧୯୩୫), "କବିତାର ବିଷୟ ବିଚାର" (୧୯୩୫) ଇତ୍ୟାଦି ପ୍ରବନ୍ଧ ଲେଖିଥିଲେ । ଏଗୁଡ଼ିକ ଏକ ସୁନା ଫସଲ । ଏ ପର୍ଯ୍ୟାୟରେ ଗୋବିନ୍ଦ ତ୍ରିପାଠୀ ସାହିତ୍ୟ ଅନୁଶୀଳନର ଓ ସମାଲୋଚନାର ପଦ୍ଧତି ଓଡ଼ିଆରେ ଲିପିବଦ୍ଧ କରି ସତ, ମିଛ, ଅସତ୍ୟ ଓ କଳ୍ପନାର ସଂଜ୍ଞା ନିର୍ଦ୍ଧାରଣ କରିଥିଲେ, ଯାହା ଉପରେ ତାଙ୍କର ପର ସମୟର ଅଧିଦାର୍ଶନିକ ଓ ଆଧ୍ୟାତ୍ମ୍ୟ ଚିନ୍ତାରେ ପରିଣତ ହୋଇଥିଲା । ଏଇ ସମୟର ଲେଖା "ପୁରାଣ କଥା" (୧୯୨୮) ଓ "ସଂକେତ ଓ ସୂଚନା" ତାଙ୍କର ବହୁ ପର ସମୟର ଷ୍ଟ୍ରକଚରାଲିଜ୍‌ମ (Structuralism) ଓ ସିମିଓଟିକ୍ସ (Semeotics) ର ଏକ ଚମତ୍କାର ଚର୍ଚ୍ଚା । ଏ ପର୍ଯ୍ୟାୟରେ ଲିଖିତ ତାଙ୍କର ଉପନ୍ୟାସ ପତିତାର ଆତ୍ମକଥା (୧୯୩୦) ଗୋଟିଏ ତଥାକଥିତ ପତିତାର ଜୀବନ ଉପରେ ଆଧାରିତ ଓ ଏଥିରେ ସେ ଦେଖାଇଥିଲେ ଯେ ସେଇ ପତିତାଟିର ଚରିତ୍ର ସମାଜର ସମ୍ଭ୍ରାନ୍ତ ନାରୀମାନଙ୍କଠାରୁ ବହୁ ଉଚ୍ଚମାନର । ଏ ଉପନ୍ୟାସରେ ମଧ୍ୟ ପ୍ରଚ୍ଛଦପଟ ଗାଁରୁ ଆରମ୍ଭ ହୋଇ ସହରକୁ ଚାଲି ଆସିଥିଲେ । ଏ ଉପନ୍ୟାସଟି ସମସାମୟିକ କାଳରେ ଆଲୋଡ଼ନ ସୃଷ୍ଟି କରିଥିଲା । ଏହି ସମୟରେ ଗୋବିନ୍ଦ ତ୍ରିପାଠୀ ତିନୋଟି ନାଟକ ରଚନା କରିଥିଲେ— "ଯୋଗୀ", "ଗରିବର ପ୍ରେମ' ଓ "ଜହର"—ଯେଉଁଥିରେ ତତ୍‌କାଳୀନ ଗାଁ ଓ ସହରର ବିଭିନ୍ନ ଭଲ ଓ ଭେଲ ଚରିତ୍ରଙ୍କ ସାମାଜିକ ସମୀକ୍ଷା କରାଯାଇଛି ।

## ତୃତୀୟ ପର୍ଯ୍ୟାୟ : ୧୯୩୭—୧୯୪୫

ଏ ପର୍ଯ୍ୟାୟଟି ଗୋବିନ୍ଦ ତ୍ରିପାଠୀଙ୍କ ଲେଖାର ଏ ଘଞ୍ଚ ଓ ଜଟିଳ ପର୍ଯ୍ୟାୟ । ଏ ସମୟରେ ତାଙ୍କର ସ୍ୱନାମଧନ୍ୟ ନିଜସ୍ୱ ଶୈଳୀର ବିକାଶ ଘଟିଥିଲା । ତାଙ୍କ ଭାଷା ହୋଇଯାଇଥିଲା ବ୍ୟଙ୍ଗାତ୍ମକ ଓ ବହୁ ପ୍ରସ୍ତବିଶିଷ୍ଟ, ଯାହା ତାଙ୍କ ଲେଖାର ଚିହ୍ନ ବା ପ୍ରତୀକ ହୋଇଗଲା ଆଉ ସେ ହୋଇଯାଇଥିଲେ ଏକ ସଂସ୍କୃତି ପୁରୁଷ ।

୧୯୩୬ ମସିହାରେ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟ ହେଲା ଓ ୧୯୩୯ ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥିଲା । ଯାହା ତାଙ୍କ ମନରେ ଆଣିଥିଲା ଭାବଧାରାର ଏକ ଚମତ୍କାର ସମେଳନ । ଏ ପର୍ଯ୍ୟାୟ ଆରମ୍ଭ ହୁଏ ତାଙ୍କର "ମିଛ କଥା" (୧୯୩୬) ପ୍ରବନ୍ଧରୁ, ଯେଉଁଥିରେ ସେ ଘଟଣା, କଳ୍ପନା, ସତ୍ୟ ଓ ଅସତ୍ୟର ପାର୍ଶ୍ୱାନ୍ତର କରି ଜୀବନ ଓ ସାହିତ୍ୟର ମୂଲ୍ୟବୋଧକୁ ଏକ ଦାର୍ଶନିକ ଓ ଆଧ୍ୟାତ୍ମିକ ପଦ୍ଧତି ସହ ସଂଯୋଗ କରିଥିଲେ । ଏଇ ସମୟରେ "ଆକାଶ କଇଁଆ" (୧୯୩୭-୩୮) ଆଉ ଗୋଟିଏ ଯୁଗାନ୍ତକାରୀ ପ୍ରବନ୍ଧ ଯେଉଁଥିରେ ତାଙ୍କ ଜୀବନ ଦର୍ଶନ ଓ ଆଧ୍ୟାତ୍ମଦର୍ଶନର ବିକାଶ ଦେଖିବାକୁ ମିଳେ ।

ଏହି ସମୟରେ ଗୋବିନ୍ଦ ତ୍ରିପାଠୀ ଓଡ଼ିଆ ଓ ଭାରତୀୟ ଜାତୀୟତା, ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଭ୍ୟତା ଏବଂ ଯୁଦ୍ଧ ଓ ରାଜନୀତି ବିଷୟରେ ପୁଙ୍ଖାନୁପୁଙ୍ଖ ଭାବେ ଲେଖିଥିଲେ ।

ଏହି ସମୟ ଆଣିଥିଲା ଭାବଧାରାର ଉଚ୍ଛଳିତ ସମ୍ଭାର । ତାଙ୍କର ବହୁଚର୍ଚ୍ଚିତ "ବଟୁଆ" (୧୯୪୦) ଖୋଜିଥିଲା ଓଡ଼ିଆ ଜାତୀୟତା ଏବଂ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ସମ୍ପର୍କ । ଏ ପ୍ରବନ୍ଧଟି ଜାତି ପ୍ରତୀକ ଭାବେ ଘରେ ଘରେ ଚର୍ଚ୍ଚିତ ହେଲା । ୧୯୪୦-୪୧ ରେ ଦ୍ୱିତୀୟ ମହାଯୁଦ୍ଧ ମଧ୍ୟରେ ଲିଖିତ "ବୋମା" ସମସାମୟିକ ବିଶ୍ୱସାହିତ୍ୟର ଏକ ଅନନ୍ୟ ସ୍ୱଧର୍ମୀ ପ୍ରବନ୍ଧ, ଯେଉଁଥିରେ ସେ ଯୁଦ୍ଧ, ଶାନ୍ତି ଓ ରାଜନୀତି ବିଷୟରେ ଏକ ସ୍ୱାଧୀନ ଚିନ୍ତନ କରିଥିଲେ ।

ଏହି ପର୍ଯ୍ୟାୟରେ ସେ ତାଙ୍କର ତୃତୀୟ ଉପନ୍ୟାସ ମାୟାବୀ (୧୯୪୦) ଲେଖିଥିଲେ । ସେ ଧୋର ଚରିତ୍ରରେ ଏକ ଭାରତୀୟ ପିକାରୋ (Picaro) ତିଆରି କରି, ନିଜସ୍ୱ ବ୍ୟଙ୍ଗାତ୍ମକ ସମୀକ୍ଷା ପ୍ରୟୋଗ କରି ତଥାକଥିତ ଭଦ୍ର ସମାଜର ମୁଖା ଖୋଲି ଦେଇଥିଲେ । ଏ ଚରିତ୍ରଟି ସର୍ଭାଣ୍ଟିସ୍‌ଙ୍କ ଡନ୍ କିହୋର୍ଟ ଓ ଫିଲ୍‌ଡିଂଙ୍କ ଟମ୍ ଜୋନ୍‌ସ୍ ପରି ସରଳ ଓ ସ୍ୱଚ୍ଛ ହୃଦୟର ହୋଇଥିଲେ ମଧ୍ୟ କିହୋଟିଙ୍କ ପରି ସ୍ୱପ୍ନିଳ ନଥିଲା କି ଜୋନ୍‌ସଙ୍କ ପରି କାମାତୁର ନଥିଲା । କିନ୍ତୁ ସେଇମାନଙ୍କ ପରି ଥିଲା ଉତ୍ସାହସୀ ।

ଏହି ପର୍ଯ୍ୟାୟରେ ଗୋବିନ୍ଦ ତ୍ରିପାଠୀ ଅନେକ ଗୁଡ଼ିଏ ନାଟକ ରଚନା କରିଥିଲେ । ଏ ନାଟକଗୁଡ଼ିକର ମୁଖ୍ୟ ବିଭବ ଥିଲା—(୧) ଓଡ଼ିଆ ଜାତୀୟତା ଓ (୨) ଭାରତୀୟ କିମ୍ବଦନ୍ତୀ । "କେଦାର ଗୌରୀ" ଓ "ବଳରାମ ଦାସ" ପ୍ରଥମ ବିଭବର ଓ ଓଡ଼ିଆ ଲୋକକଥା ଉପରେ ଆଧାରିତ; ଏଥିରୁ ପ୍ରଥମଟି ରୋମିଓ ଜୁଲିଏଟ୍ ପରି ଗଳ୍ପ, ଆଉ ଦ୍ୱିତୀୟଟି ସ୍ୱନାମଧନ୍ୟ ଓଡ଼ିଆ କବି ବଳରାମ ଦାସଙ୍କର ପ୍ରେମ ପାଇଁ ସମାଜର ନିୟମ ଓ ରାଜାଦେଶର ଉଲଙ୍ଘନ ବିଷୟରେ ଲିଖିତ । "ଶିଖି ମନାଇ"ରେ କଳା ପାହାଡ଼ର ଓଡ଼ିଆ ସ୍ୱାଭିମାନ ଧ୍ୱଂସ ପାଇଁ ବୃଥା ଚେଷ୍ଟା ଦେଖାଇଛନ୍ତି ଲେଖକ । ଏହି ସମୟର "ଖାରବେଳ" ମଧ୍ୟ ଓଡ଼ିଆ ଜାତୀୟତା ଉପରେ ଆଧାରିତ ହୋଇଥିଲେ ମଧ୍ୟ ଏକ ଭାରତୀୟତା ଏଥିରେ ପ୍ରତିଫଳିତ ହୋଇଛି । "ନାରଦ" ଓ "ସ୍ୟମନ୍ତକ" ମହାଭାରତର କିମ୍ବଦନ୍ତୀ ଉପରେ ଆଧାରିତ । ପ୍ରଥମଟି କଳିଙ୍ଗରାଜ ଓ ପାଣ୍ଡବଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଓ କଳିଙ୍ଗଙ୍କର ସ୍ୱାଧୀନ ଚିନ୍ତା ଉପରେ ଆଧାରିତ ହୋଇଥିବା ବେଳେ "ସ୍ୟମନ୍ତକ" କୃଷ୍ଣଙ୍କ ରାଜନୀତିକ ନିପୁଣତା ଓ ଦ୍ୱାରକାର କୃଷ୍ଣ ବିରୋଧ ରାଜନୀତି ଉପରେ ଆଧାରିତ । ଏ ଦୁଇଟିଯାକ ନାଟକରେ ତ୍ରିପାଠୀ ମହାଭାରତର ଆଧାରରେ ନୂଆ କିମ୍ବଦନ୍ତୀ ସୃଷ୍ଟି କରିଛନ୍ତି ।

## ଚତୁର୍ଥ ପର୍ଯ୍ୟାୟ : ୧୯୪୬—୧୯୬୨

ଏ ସମୟ କାଳରେ ଗୋବିନ୍ଦ ତ୍ରିପାଠୀଙ୍କ ବ୍ୟଙ୍ଗାତ୍ମକ ଶୈଳୀ ବଳବତ୍ତର ଥିବା ସମୟରେ ସେ ଭାରତୀୟ କିମ୍ବଦନ୍ତୀର ଡିକନ୍‌ଷ୍ଟ୍ରକ୍ଟିଭ୍ (deconstructive) ସମୀକ୍ଷା କରିଥିଲେ ଏବଂ ତା' ଉପରକୁ ଉଠି କିମ୍ବଦନ୍ତୀକୁ ଆଧ୍ୟାତ୍ମଦର୍ଶନ ବା ଅଧିଦର୍ଶନ ସହ ସଂଯୋଗ କରି ଏକ ଭାରତୀୟ ଜୀବନଦର୍ଶ ଉପସ୍ଥାପନ କରିଥିଲେ ।

ଏ ସମୟରେ ମଧ୍ୟ ସେ ସାଂସ୍କୃତିକ ଓ ରାଜନୈତିକ ବିଷୟରେ ବେଶୀ ଧ୍ୟାନ ଦେଇଥିଲେ । ସେ ଉନ୍ମୁକ୍ତ ଭାବରେ ବା ପ୍ରଚ୍ଛନ୍ନ ଭାବରେ ଘରପାଖିଆ ଲୋକଙ୍କ ବିଷୟରେ ଲେଖିଥିଲେ—ତାଙ୍କ ଗୁରୁ ଗୋପବନ୍ଧୁ ଓ ନୀଳକଣ୍ଠଙ୍କ ବିଷୟରେ ଏବଂ ଲିଙ୍ଗରାଜ ମିଶ୍ର ଓ

ହରେକୃଷ୍ଣ ମହତାବଙ୍କ ବିଷୟରେ । ବ୍ୟକ୍ତିଗତ, ସାମୂହିକ ଓ ରାଜନୈତିକ ସଦାଚାର ବିଷୟ ତାଙ୍କୁ ଆକୃଷ୍ଟ କରିଥିଲା । ସେ ସାଇକିଆଟ୍ରି (Psychiatry)ର ବ୍ୟଙ୍ଗାତ୍ମକ ସମୀକ୍ଷା କରିଥିଲେ ଏବଂ ଟୋକା ଓ ବୁଢ଼ାଙ୍କ ସମ୍ପର୍କକୁ ତନଖିଥିଲେ । ସେହିପରି ଥିଲା "କାନୁନୀ ବେଶ୍ୟା" । ତାଙ୍କର ଚମତ୍କାର ପ୍ରବନ୍ଧ "ଧରମ ଧରମ୍" ଖୁବ୍ ଆଲୋଡ଼ନ ସୃଷ୍ଟି କରିଥିଲା ଓ ଆମ କିମ୍ବଦନ୍ତୀର ଡିକନ୍ଷ୍ଟ୍ରକ୍ଟିଭ୍ ସମୀକ୍ଷା ଅନେକଙ୍କୁ ଚକିତ କରିଥିଲା । ତାଙ୍କର ଶେଷ ପ୍ରବନ୍ଧ "କଂସାରି ଘର ପାରା" ତାଙ୍କ ଦେହାନ୍ତ ପରେ ୧୯୬୩ରେ ପ୍ରକାଶିତ ହୋଇଥିଲା । ଏଥିରେ ସେ ଯୁଦ୍ଧ ଓ ଆନ୍ତର୍ଜାତିକ ରାଜନୀତି ଉପରେ ଯାହା କହିଥିଲେ ତାହା ଆଜି ପର୍ଯ୍ୟନ୍ତ ସତ୍ୟ ହୋଇ ରହିଚି ।

ଏହି ସମୟରେ ସେ ଦୁଇଟି ଡିଟେକ୍ଟିଭ୍ ଉପନ୍ୟାସ **ଗୁଇନ୍ଦା ଗଦାଧର** ଓ **ଚତୁର ଗଦାଧର** ଲେଖିଥିଲେ । ଗଦାଧରଙ୍କ ଚରିତ୍ରରେ ସେ କନାନ୍ ଡୟାଲ୍‌ଙ୍କ ସରଲକ୍ ହୋମ୍‌ସ ଓ ଆଗାଥା କ୍ରିଷ୍ଟିଙ୍କ ମିସ୍ ମାର୍ପଲ୍‌ଙ୍କ ପରି ଏକ ଦେଶୀ ବୁଦ୍ଧିମାନ୍ ଡିଟେକ୍ଟିଭ୍ ସୃଷ୍ଟି କରିଥିଲେ ।

ଏହି ସମୟରେ ସେ ଦୁଇଟି କିମ୍ବଦନ୍ତୀ ଆଧାରିତ ନାଟକ ଲେଖିଥିଲେ—"ଦୁଷ୍ମନ୍ତ ଶକୁନ୍ତଳା" ଓ "ଶିଶୁପାଳ", ଯେଉଁଥିରେ ସେ ପୂର୍ବପରି ନୂଆ କିମ୍ବଦନ୍ତୀ ସୃଷ୍ଟି କରିଥିଲେ । ଭାରତର ସ୍ୱାଧୀନତାର ଠିକ୍ ପରେ ପରେ, ୧୯୪୮ ମସିହାରେ ସେ "ହମ୍ ହେଁ" ନାମକ ଏକ ଶକ୍ତିଶାଳୀ ରାଜନୈତିକ ବ୍ୟଙ୍ଗାତ୍ମକ ନାଟକ ସୃଷ୍ଟି କରି ଭାରତର ରାଜନେତାଙ୍କର 'ହାମ୍‌ବଡ଼ା' ରୂପର ପୂର୍ବାଭାଷ ଦେଇଥିଲେ । ନାଟକଟି ବେକେଟ୍ ଓ ଇଓନେସ୍କୋଙ୍କ ପରି ଆବସର୍ଡ଼ ଢାଞ୍ଚାର ଲେଖା ଓ ସେମାନଙ୍କ ଲେଖାର ସମସାମୟିକ ନାଟକ ।

ତାଙ୍କର ମୃତ୍ୟୁ ସମୟରେ ସେ ଆଉ ଗୋଟିଏ ଉପନ୍ୟାସ ଆରମ୍ଭ କରିଥିଲେ ଯାହା ଅସମ୍ପୂର୍ଣ୍ଣ ରହିଯାଇଚି ୬୦ ପୃଷ୍ଠା ପାଣ୍ଡୁଲିପିରେ, ଯେଉଁଥିରେ ମୁଖ୍ୟ ଚରିତ୍ର ଭାବେ ସେ ନୀଚ ଜାତିର ଏକ ନିର୍ଯ୍ୟାତିତା ସ୍ତ୍ରୀ ଉପସ୍ଥାପନ କରିଥିଲେ ଯାହାର ଦମ୍ଭ ଓ ସ୍ୱାଭିମାନ ତାକୁ ରାଜନୈତିକ ସୋପାନରେ ପାଦ ପକାଇ ଉପରକୁ ଉଠିବାକୁ ସତ୍‌ସାହସ ଦେଇଥିଲା । ଏଇଟା ତାଙ୍କର ଶେଷ ଲେଖା ।

ଗୋବିନ୍ଦ ତ୍ରିପାଠୀଙ୍କ ପ୍ରକାଶିତ ଓ ଅପ୍ରକାଶିତ ସବୁ ଲେଖାକୁ ସମାହିତ କରି ଏକ ଗ୍ରନ୍ଥସୂଚୀ ବିଶ୍ୱକେଶ ତ୍ରିପାଠୀଙ୍କ ଲିଖିତ **ଗୋବିନ୍ଦ ତ୍ରିପାଠୀଙ୍କ ଜୀବନୀ** (୨୦୦୨) ଦିଆଯାଇଛି । ଯାହାକିଛି ଅପ୍ରକାଶିତ ପାଣ୍ଡୁଲିପି ମିଳିଚି ସବୁ ବିଶ୍ୱକେଶ ତ୍ରିପାଠୀଙ୍କ ପାଖରେ ସଂରକ୍ଷିତ ରହିଚି ।

ତାଙ୍କ ପ୍ରବନ୍ଧଗୁଡ଼ିକର ସଂଗ୍ରହ ଶ୍ରମ ଓ ସମୟସାପେକ୍ଷ ହୋଇଥିଲା, କାରଣ ସେ ଲେଖିସାରି ପାଣ୍ଡୁଲିପିକୁ ପତ୍ରିକା ସମ୍ପାଦକଙ୍କ ପାଖକୁ ପଠାଇଦେଲା ପରେ ନିଶ୍ଚିନ୍ତ ରହୁଥିଲେ । ପତ୍ରିକାଟି ଆସିଲା ପରେ ତାକୁ ଦେଖିସାରି ବା ପଢ଼ିସାରି ସାଇତି ରଖୁନଥିଲେ । ଅନେକ ସମୟରେ ବନ୍ଧୁବାନ୍ଧବ ମଧ୍ୟ ମାଗି ନେଇଯାଉଥିଲେ, ଆଉ ସେ ଫେରୁନଥିଲା । ନଭେଲ୍‌ଗୁଡ଼ିକର ମଧ୍ୟ ଅବସ୍ଥା ସେହିପରି । କେବଳ ନାଟକଗୁଡିକର କିଛି କପି ରହିଯାଇଥିଲା, କାରଣ ଏଗୁଡ଼ିକ ମୋଟା ଖାତାରେ ଲେଖା ହୋଇଥିଲା । ଆଉ କିଛି ନାଟକର ମଞ୍ଚସ୍ଥ ହେବା ବେଳର ପ୍ରମ୍ପ୍ଟ୍ (Prompt) କପି ମଧ୍ୟ ମିଳିଲା ଯାହା ସଂରକ୍ଷିତ କରାଯାଇଛି ।

ପ୍ରବନ୍ଧଗୁଡ଼ିକ ସଂଗ୍ରହ କରିବା ଖୁବ୍ କଷ୍ଟକର ବ୍ୟାପାର । ସମସାମୟିକ ପତ୍ରିକାଗୁଡ଼ିକର ତାଲିକା କରି ଲାଇବ୍ରେରୀରେ ବସି, ପୁରୁଣା ସଂଖ୍ୟା ସବୁ ଘାଣ୍ଟି, କେଉଁଥିରେ ତାଙ୍କର କ'ଣ ଲେଖା ବାହାରିଥିଲା ବାଛି ତା'ର ହାତଲେଖା କପି କରି ଅଣାଯାଉଥିଲା, କାରଣ ସେତେବେଳେ ଜିରକ୍ସ୍ ନଥିଲା । ଏ କାମରେ ଦାଶରଥୀ ପଟ୍ଟନାୟକଙ୍କର ଦଶପଲ୍ଲା ପାଖ ନୂଆଗାଁ ଲାଇବ୍ରେରୀରୁ ଆମେ ବହୁତ ସାହାଯ୍ୟ ପାଇଥିଲୁ । ଏଥିରେ ବିଶେଷ କାମ କରିଥିଲେ ଗୋବିନ୍ଦ ତ୍ରିପାଠୀଙ୍କ ସାନ ପୁଅ ବିଭୁପ୍ରକାଶ ଯିଏ ମାସେକାଳ ସେଠା ସ୍କୁଲ୍‌ଘରେ ରହି, ଦାଶରଥୀ ବାବୁଙ୍କ ଲାଇବ୍ରେରୀରୁ ଖୋଜି, ପ୍ରବନ୍ଧ ଠାବ କରି, ସ୍କୁଲ୍ ଶିକ୍ଷକ ଓ ଛାତ୍ରଙ୍କ ହାତରେ କପି କରାଇ ଆଣିଥିଲେ । ଏ ସଂଗ୍ରହର ପୁରୋଧା ଥିଲେ ତ୍ରିପାଠୀଙ୍କ ଦ୍ୱିତୀୟ ପୁଅ ବିଶ୍ୱକେଶ ।

ନଭେଲ୍ ଗୁଡ଼ିକ ମିଳିଲା ନ୍ୟାସନାଲ୍ ଲାଇବ୍ରେରୀ (କଲିକତା), ଏମାର ମଠ ଲାଇବ୍ରେରୀ (ପୁରୀ) ଓ ଦେଓଗଡ଼ ଲାଇବ୍ରେରୀ (ଦେଓଗଡ଼)ରୁ । ସେଠାରୁ ବିଭିନ୍ନ ସଦ୍‌ବ୍ୟକ୍ତିଙ୍କ ସହଯୋଗରେ ଏଗୁଡ଼ିକ କପି କରି ଅଣାହେଲା ।

ଏସବୁ ସଂଗ୍ରହ ସରିଲା ବେଳକୁ ୧୯୭୦ ଦଶନ୍ଧୀର ଶେଷ । ୧୯୮୦ ଦଶନ୍ଧୀରେ ତାଙ୍କର ତିନିଟି ନଭେଲ୍‌ର ଏକ ସଂକଳନ ଗ୍ରନ୍ଥମନ୍ଦିର ପ୍ରକାଶ କଲେ । ଏଇଟି ବର୍ତ୍ତମାନ ଦୁଃଷ୍ପ୍ରାପ୍ୟ । ତା'ପରେ ୧୯୯୫ରେ ଓଡ଼ିଶା ସାହିତ୍ୟ ଆକାଡେମୀ **ଗୋବିନ୍ଦ ତ୍ରିପାଠୀ ରଚନାବଳୀ** ପ୍ରକାଶ କଲେ ଯେଉଁଥିରେ ଭୂମିକା ଲେଖିଥିଲେ ଡାଃ ଦାଶରଥୀ ଦାସ । ଏଥିରେ ଗୋବିନ୍ଦ ତ୍ରିପାଠୀଙ୍କର ୩୨ଟି ପ୍ରବନ୍ଧ ସଂକଳିତ ହୋଇଥିଲା । ୨୦୦୧ ରେ ଜ୍ଞାନଯୁଗ ଦ୍ୱାରା ପ୍ରକାଶିତ ହେଲା ବିଶ୍ୱକେଶ ତ୍ରିପାଠୀଙ୍କ ଦ୍ୱାରା ସଂକଳିତ **ଗୋବିନ୍ଦ ତ୍ରିପାଠୀ : ପ୍ରବନ୍ଧାବଳୀ** । ଏଥିରେ ଅଛି ୨୫ଟି ପ୍ରବନ୍ଧ ଯାହା ରଚନାବଳୀରେ ନଥିଲା । ତା' ପରବର୍ଷ, ୨୦୦୨ ରେ ବିଶ୍ୱକେଶ ତ୍ରିପାଠୀଙ୍କ ଲିଖିତ **ଗୋବିନ୍ଦ ତ୍ରିପାଠୀଙ୍କ ଜୀବନୀ** ଜ୍ଞାନଯୁଗ ଦ୍ୱାରା ପ୍ରକାଶିତ ହେଲା । ଏ ଜୀବନୀ ସହ ରହିଛି ଗୋବିନ୍ଦ ତ୍ରିପାଠୀଙ୍କ ସମ୍ପୂର୍ଣ୍ଣ ଗ୍ରନ୍ଥସୂଚୀ । ୨୦୦୪ ରେ ତାଙ୍କର ୧୬ଟି ପ୍ରବନ୍ଧ ଇଂରାଜୀରେ ଅନୁବାଦ କରାଯାଇ ସଂକଳିତ ହେଲା ଜ୍ଞାନଯୁଗ ଦ୍ୱାରା— The Indian Mind : Progressive, Iconoclastic, Metaphysical. ଏ ପ୍ରବନ୍ଧଗୁଡ଼ିକ ଅନୁବାଦ କଲେ ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟର ଇଂରାଜୀ ପ୍ରଫେସରବୃନ୍ଦ ଓ ଜ୍ଞାନଜୀବୀ । ଏହାର ସଂପାଦନା କଲୁ ମୁଁ ଓ ଦିବ୍ରୁଗଡ଼ ୟୁନିଭରସିଟିର ପ୍ରଫେସର୍ ବିଜୟ କୁମାର ଦନ୍ତା ।

ଏ ବର୍ଷ ୨୦୦୫ ରେ ପ୍ରକାଶ ପାଉଚି ଏଇ ବହିଟି **ଗୋବିନ୍ଦ ତ୍ରିପାଠୀ : ଉପନ୍ୟାସ ସଂକଳନ** ଯେଉଁଥିରେ ତାଙ୍କର ସମସ୍ତ ପ୍ରକାଶିତ ଉପନ୍ୟାସ ସଂଗ୍ରହ କରାଯାଇଚି ଜ୍ଞାନଯୁଗ ଦ୍ୱାରା ।

ଆଶା, ଗୋବିନ୍ଦ ତ୍ରିପାଠୀଙ୍କ ଭକ୍ତ, ଗବେଷକ ଓ ଛାତ୍ର ଏ ବହିରୁ କିଛି ଆନନ୍ଦ ପାଇପାରିବେ ଓ ତାଙ୍କ ମନରେ କିଛି ଆଲୋଡ଼ନ ସୃଷ୍ଟି ହୋଇପାରିବ ।

**ବିୟତକେଶ ତ୍ରିପାଠୀ**

# ଓଁ ତତ୍‌ସତ୍

## ଆତ୍ମକଥା

ଓଡ଼ିଆ ଭେଡ଼ା । ଓଡ଼ିଆମାନଙ୍କର ଭେଡ଼ା ସହିତ କି ସାଦୃଶ୍ୟ ଦେଖି ଯେ ଲୋକେ ଏକଥା କହନ୍ତି, ତାହା ସେମାନଙ୍କୁ ଜଣା । ଗୋଟେ ବିଷୟରେ ଅନ୍ତତଃ ମନୁଷ୍ୟର ଭେଡ଼ା ସହିତ ସମ୍ବନ୍ଧ ଅଛି । ଜଣେ କିଛି କାମ କଲେ ଅନ୍ୟମାନେ ତା'ର ପ୍ରତିଯୋଗୀ ହବାକୁ ଗଡ଼ିପଡ଼ନ୍ତି । 'ମୁକୁର ଗ୍ରନ୍ଥମାଳା'ର ଅନୁଯୋଗରେ କେତେଖଣ୍ଡି ଉପନ୍ୟାସ ପ୍ରକାଶିତ ହବାର ଦେଖି ମୋର ମଧ୍ୟ ଖଣ୍ଡେ ଲେଖିବାର ଇଚ୍ଛା ହୋଇଥିଲା । ଅବଶ୍ୟ ସେ ମୋର ବୋକାମି । ମୋର ସମୟ ନାହିଁ, ନାନା କଥାରେ ବିବ୍ରତ ରହି ଦୈନିକ ଜୀବନର ଅବଶ୍ୟ କର୍ତ୍ତବ୍ୟ ପ୍ରତି ଯଥେଷ୍ଟ ଦୃଷ୍ଟିଦେବାର ଅବସର ମଧ୍ୟ ନାହିଁ । ସେଥିରେ ପୁଣି ମୁଁ ଯୁବକ; ଉପନ୍ୟାସ ଲେଖିବା ନିମନ୍ତେ ଯେ ପରିମାଣରେ ସଂସାରଜ୍ଞାନ ଦରକାର, ତା' ମୋର ନାହିଁ । ତଥାପି ଯୌବନସୁଲଭ ସାହସର ବଶବର୍ତ୍ତୀ ହୋଇ ଏହାକୁ ବଡ଼ଦିନ ଛୁଟି ସମୟରେ ଆରମ୍ଭ କରିଥିଲି ଏବଂ ସେହି ସାହସର ପ୍ରଚୋଦନାରେ ଏହାକୁ ପ୍ରକାଶିତ କରିବାକୁ ମନସ୍ଥ କରିଅଛି । ଏଥିରେ ଅପର୍ଯ୍ୟାପ୍ତ ଭ୍ରମ ରହିଛି—ସେଥିପାଇଁ ପାଠକମାନଙ୍କ ପାଖରେ କ୍ଷମା ପ୍ରାର୍ଥନା ନିଷ୍ପ୍ରୟୋଜନ ।

ଗୋବିନ୍ଦ ତ୍ରିପାଠୀ

# ପଦ୍ମାଙ୍କର ଦୁଃଖ

ସକାଳେ ପଦ୍ମଟିଏ ପୋଖରୀର ପାଣିରେ ଢଳଢଳ ହେଉଥାଏ । ଧୀର ଶୀତଳ ପବନ ତା'ର ଓଠ ଟେକି ଧରିବାକୁ ଚେଷ୍ଟାକଲେ କେତେ ରଙ୍ଗରେ ମୁଣ୍ଡ ହଲାଇ, ଦିହ କଦାଇ ତା'ର ପାଖକୁ ଦୂରକୁ, ଅତି ଦୂରକୁ ପଳାଇ ଯାଉଥାଏ । ଭଅଁରର ସୁଆଗରେ କେତେବେଳେ ପୁଣି ସ୍ଥିର ପଲକ ଆଖିରେ ରହିଯାଉଥାଏ । ମନୁଷ୍ୟ ତା'ର ସବୁ ଦୁଃଖ, ନିରାଶା, ବେଦନା, ଦୁର୍ଭାଗ୍ୟ ଘେନି ଭାବେ—ଆହା ! କମଳରାଣୀ କେଡ଼େ ସୁଆଗୀ, କେଡ଼େ ଆନନ୍ଦିନୀ । ତା' ବୋଲି କ'ଣ ହସନ୍ତା ପଦ୍ମରେ କୀଟ ପଶେ ନାହିଁ ? ମୃଣାଳଦଣ୍ଡ କି ଅକାଳରେ ଛିଣ୍ଡିଯାଏ ନାହିଁ ? କମଳିନୀ ରସିକା, ସୁନ୍ଦରୀ, ନାରୀ; ନାରୀର ହୃଦୟ ବୁଝିବ କିଏ ? ତା'ର କେତେ ଦୁଃଖ ? ସେ ସଂସାର ହାତରୁ କେତେ ନିର୍ଯାତନା ସହେ—ସ୍ୱାମୀର ଅନୁଯୋଗ, ପିଲାଝିଲାଙ୍କ ଅଳିଝଳି, ସାଇପଡ଼ିଶାଙ୍କ ନିନ୍ଦା, ଶାଶୁନଣନ୍ଦଙ୍କ ଝିଙ୍ଗାସ, ବାପମା'ଙ୍କ ତହଳବିକଳ, ନାକକାନ୍ଦଣା । ତା'ର ଇଚ୍ଛା ଅଛି; ମାତ୍ର ଇଚ୍ଛା କରିବାର ଶକ୍ତି ନାହିଁ । ତା'ର ପ୍ରବୃତ୍ତି ଅଛି; ମାତ୍ର ପ୍ରବୃତ୍ତିର ସମ୍ଭୋଗରେ ତା'ର ଅଧିକାର ନାହିଁ । ଆଖି ଅଛି; ଦେଖିବାକୁ ମନା । କାନ ଅଛି; ଶୁଣିବା ପାପ । ପାଟି ଅଛି; କହିବା ନିନ୍ଦାର କଥା । ହୃଦୟ ଅଛି; ଅନୁଭବ କରିବା ବ୍ୟଭିଚାର । ମନ ଅଛି; କିନ୍ତୁ ଭାବନା ନରକ । ହା'ରେ ନାରୀ ! ପଦ୍ମାଙ୍କ ମନରେ ଯେ କି କୀଟ ପଶି ତାଙ୍କୁ ବେଳେ ବେଳେ ଅତି ବିରକ୍ତ କରୁଚି, ତା' କିଏ କହିବ ? କିଏ ବା ଜାଣିବ ?

ସେ ପାଟଳିପୁର ଗାଁ ଜମିଦାରଙ୍କ ସ୍ତ୍ରୀ । ସ୍ୱାମୀ ସୁପୁରୁଷ ଯୁବା । ଅଚଳାଚଳ ସମ୍ପତ୍ତିର ସେ ମାଲିକ । ପାଠଶାଠ ପଢ଼ିଛନ୍ତି ଢେର୍ । ପ୍ରେମଟାକୁ କବିତାର ଶାହାଣ ଦେଇ ବେଶ୍ ଜକ୍ ଜକ୍ କରି ସ୍ତ୍ରୀର ଆଗରେ ଧରିପାରନ୍ତି । ଉପନ୍ୟାସର ନାୟକ-ନାୟିକାଙ୍କ କଥା ଜୁଆର ମେଲିଦେଇ ନିଜେ ସେଥିରେ ବୁଡ଼ି ରହନ୍ତି, ସ୍ତ୍ରୀକୁ ମଧ୍ୟ ବୁଡ଼େଇ ରଖନ୍ତି । ଚାରିଖଣ୍ଡି ଗାଁରେ ନାଁ ଡାକ; ଘରେ ପୋଇଲୀ ପରିବାରୀ ଆଜ୍ଞାପ୍ରମାଣେ ହାଜରଥାନ୍ତି । ପଦ୍ମା ସୁନାରୂପାରେ ଭାସୁଛନ୍ତି । ତାଙ୍କର ଦୁଃଖ କ'ଣ ? କେତେ କେତେ ହତଭାଗା ତାଙ୍କ ସ୍ଥାନକୁ ଆସିବାକୁ କ'ଣ ନ ଦେବେ ? ଲୋକେ କହନ୍ତି, ସେ 'ରାଣୀ' । କେତେ ଲୋକ ପଛରେ କହନ୍ତି, "କାହୁଁ ଅଇଲା ଟେ, ହାଡ଼ିଆଣୀ କି ପାଲୁଣୀ, ଜମିଦାର ପୁଅଙ୍କୁ କ'ଣ ମାଇପ ମିଳୁ ନ ଥିଲା ? ମାଗିଖାଇଟାକୁ ବାଟରୁ ସାଉଁଟି ଆଣି ସୁନା ସିଂହାସନରେ ବସେଇଛନ୍ତି । କୁକୁର ବେକରେ ହୀରାମାଳି ! ସବୁ ସିନା ଭାଗ୍ୟ କରାଏ ?" କେହି କେହି ନିଜ ଝିଅଟିମାନ ଜମିଦାର ପୁଅଙ୍କ ହାତରେ ଦେବାର ଆଶା ରଖିଥିଲେ; ମାତ୍ର ସେ ପଦ୍ମାଙ୍କୁ ବିବାହ କରି ସୁଖରେ ରହିବାର ଦେଖି କହନ୍ତି—ସୁନ୍ଦରୀ ? ମଲା, ମଲା ! ନାକଟା ତ ଖଣ୍ଡାପରି ଟେକ, କପାଳ ବାଳ ସାଙ୍ଗରେ ତ ଭୂଲତାଟା ମିଶିଯାଇଛି । ପୁଣି ଯୋଉ ଆଖି ! ସବୁବେଳେ କନକନ; ଯିମିତି କାହାକୁ ଧରିପକେଇବ ! ଚାଲିବ ସତେ ଅବା ଦିହରେ କଡ଼ାକର ବଳ ନାହିଁ । କିଆଁ ଲୋ ମା, ଖାଉଚୁ ପିଉଚୁ ତ, ଗଣ୍ଡି ଭାଜିପଡୁଚି କାହିଁକି ?

ପ୍ରକୃତରେ ପଦ୍ମା କାହୁଁ ଅଇଲେ; ତାଙ୍କ ବାପଘର କେଉଁଠି ? କି ଜାତି, କି ଗୋତ୍ର, କେହି ଜାଣନ୍ତି ନାହିଁ । କେହି ଯେବେ ସାଙ୍ଗସାଥୀ ତାଙ୍କୁ ଭରସି କରି ସେ କଥା ପଚାରେ, ତା'ହେଲେ ମୁହଁ ବୁଲେଇଦେଇ ଗୁମ୍‌ମାରି ବସନ୍ତି । ଜମିଦାରଙ୍କ ଆଖିରେ ତାଙ୍କ ସୁନ୍ଦରପଣର ପଟାନ୍ତର ନାହିଁ । କିନ୍ତୁ ଏସବୁ ପାଇଁ ପଦ୍ମାଙ୍କ ମନରେ ଲେଶ ମାତ୍ର ଭାବନା ନଥାଏ । ସେ ଘର କଲେଣି ଏ ତିନି ଚାରିବର୍ଷ ହେଲା । ମହା ସୁଖରେ ଏପର୍ଯ୍ୟନ୍ତ କଟିଯାଇଚି । ବାପଘର କଥା ପଡ଼ିଲା ବେଳ ଛଡ଼ା ତାଙ୍କ ମୁହଁରେ ହସ ସବୁବେଳେ ଲାଗି ରହିଥାଏ । କାହୁଁ ଅଇଲା ସତ; କିନ୍ତୁ ଏତେ ବଡ଼ ସଂସାର ଚଳେଇବାରେ ସେ ଦିନେହେଲେ ହୁଡ଼ି ନାହାନ୍ତି । ଯିମିତି ସେ ଜନ୍ମରୁ 'ରାଣୀ' ! ତାଙ୍କର କଥାବାର୍ତ୍ତା, ଚାଲିଚଳଣ ସବୁ ସାଦାସିଧା । ତଥାପି ତା' ଭିତରେ ବଡ଼ଲୋକି ଟିକିଏ ଲାଗି ରହିଥାଏ । ସ୍ୱାମୀଙ୍କ ସେବାରେ ତାଙ୍କର ଦିନରୁ ତିନିଭାଗ କଟିଯାଏ । ସ୍ୱାମୀଙ୍କ ପାଇଁ ରୋଷେଇ କରିବା, ବାସନ ମାଜିବାଠାରୁ ଆରମ୍ଭ କରି, ତାଙ୍କର ଜୋତା ପୋଛିବା, ତାଙ୍କ ପାନିଆ ସଫା କରିବା ପର୍ଯ୍ୟନ୍ତ ସବୁ କାମ ସେ ହାତେ ହାତେ କରନ୍ତି । ଏତେ ପୋଇଲୀ ପରିବାରୀ, କେହି ସାହାଯ୍ୟ କରିବାକୁ ଆସିଲେ ତାଙ୍କୁ ଭୁତୁକି ମାରି ଘଉଡ଼େଇ ଦିଅନ୍ତି । ଶାଶୁ, ନଣନ୍ଦ, ଯା' କେହି ନାହାନ୍ତି; ସେ ଏକା । ବଗବଗୁଲି ପରି ସ୍ତ୍ରୀପୁରୁଷ ଯୋଡ଼ିକ ନିଜ ନିଜ ଭିତରେ ଭୋଳଥାନ୍ତି । କାହାରି ସୁଖଦୁଃଖ, ଝିନ୍‌ଝଟ୍ ତାଙ୍କ କ୍ଷୁଦ୍ର ସଂସାର ଭିତରେ ପଶିପାରେ ନାହିଁ ।

କିନ୍ତୁ ଏ କେତେଦିନ ହେଲା ତାଙ୍କ ମନରେ ହଠାତ୍ ଗୋଟିଏ କି ଚିନ୍ତା ଆସିଚି; ସେ ଟିକିଏ ବେଳ ପାଇଲେ, କାବାଙ୍କ ପରି ଗାଲରେ ହାତ ଦେଇ କ'ଣ ଗୁଡ଼େ ବସି ଭାବୁଥାନ୍ତି । ରନ୍ଧାବଢ଼ା କରୁ କରୁ କୁ'ଦିନ ମାଛରେ ଘିଅ ପକେଇ ଦିଅନ୍ତି, ଭଜାରେ ତେଲ ଅଜାଡ଼ି ଦିଅନ୍ତି । ସ୍ୱାମୀଙ୍କ ଘର ଓଳଉ ଓଳଉ ଛାଞ୍ଚୁଣି ବାଜି ପିକଦାନିଟା ଲେଉଟି ପଡ଼ିଲାଣି; ହୁଏତ ତେଣିକି ଦୃଷ୍ଟି ନାହିଁ । ତାଙ୍କର ଏ ଭାବାନ୍ତର ଜଣେ ମାତ୍ର ଲକ୍ଷ୍ୟ କରିଥିଲା—ସେ ମୁଁ ।



## ମୋର ପରିଚୟ

ମୋ ପିତାଙ୍କ ନାମ ନବଘନ ମହାପାତ୍ର । ଆମ୍ଭମାନଙ୍କ ଘର ଏହି ପାଟଳିପୁର ମୌଜାରେ । ନିତାନ୍ତ ଗରିବ ଅବସ୍ଥାରେ ଥିବାରୁ ବର୍ତ୍ତମାନ ଜମିଦାରଙ୍କ ମା' ସା'ନ୍ତାଣୀ ମତେ ଆଣି ଘରେ ପାଳିଥିଲେ । ମୁଁ ଜମିଦାର ଘର ଚାହାଳି ଅବଧାନଙ୍କ ପାଖରେ ପାଠ ପଢ଼ି ଗାଁ ଭର୍ଣ୍ଣାକ୍ୟୁଲର ସ୍କୁଲରେ ଭର୍ତ୍ତି ହେଲି । ଏଥିମଧ୍ୟରେ ଜମିଦାରଙ୍କ କୃପାରୁ ମୋର ବାରବର୍ଷ ବୟସ ବେଳେ ପାଖ ଗାଁ ଖଣତାପଡ଼ାର ଫଲଣା ମହାପାତ୍ରଙ୍କ ସହିତ ବିବାହ ହୋଇଗଲା । କିନ୍ତୁ ଅକର୍ମା ଯେଉଁ ଗଛରେ ବସେ ସେ ଗଛର ଡାଳ ଛିଣ୍ଡିପଡ଼େ । ମୋର ସ୍ୱାମୀ ମତେ ବିବାହର ଛ'ମାସ ପରେ ଭସାଇ ଦେଇ ଚାଲିଗଲେ । ବାରବର୍ଷର ବାଳିକା ମୁଁ; ଟିକିଏ ଟିକିଏ ଜ୍ଞାନ ହୋଇଥିଲା; ପୁଣି ଜମିଦାରଙ୍କ ଘରୁ ନୂଆ ନୂଆ ବଙ୍ଗଳା ଉପନ୍ୟାସ ପଢ଼ି ଦାମ୍ପତ୍ୟ ପ୍ରଣୟର ଭାବ ଟିକିଏ ମନରେ ବୁଝିଥିଲି । ଏ ବଜ୍ର ଆସି ମୁଣ୍ଡରେ ପଡ଼ିବାରୁ ମୋର ସବୁ

ଆଶାଭରସା, ହଜାର ହଜାର କଳ୍ପନା କୁଆଡ଼େ ଉଭେଇଗଲା । ତହିଁ ଆରଦିନ ଉଠି ଦେଖିଲି, ମା' ବସୁଧା ମୋ ଗୋଡ଼ତଳୁ ଖସିଯାଉଛି; ମୁଁ ସାତମଣ୍ଡୁଳି ରାଣ୍ଡ ! ମୋ ମୁହଁ ଚାହିଁଲେ ପାପ; ମୁଁ ବାପ-ମା'ଙ୍କ ଆଖିରେ ଲଙ୍କାମରିଚ ଗୁଣ୍ଡ, ସାଇପଡ଼ୋଶୀ ସାଥୀ-ସଙ୍ଗାତଙ୍କର ହାତପୋଛା ମାଟି ! ସଂସାରରେ ମୋର ସ୍ଥାନ ନାହିଁ । ଜମିଦାରଙ୍କ ଘରକୁ ଗଲି । ଦେଖିଲି ମୋର ଏଠାରେ ସବୁ ଅଛି—ସୁଖ, ସ୍ନେହ, ଆଦର, ସମ୍ମାନ ସବୁ ଏହିଠାରେ । ମା' ସା'ନ୍ତାଣୀଙ୍କର ଲୁହରେ ମୋର ସବୁ ଅଭିମାନ ଆଶଙ୍କା ଧୋଇ ହୋଇଗଲା । ମୁଁ ସେଇଦିନୁ ଉଆସରେ ରହିଲି । ମୋର ଝିଅପରି ଆଦର । ସା'ନ୍ତାଣୀଙ୍କ ଅନୁଗ୍ରହ ଦେଖି ଚାକର, ଚାକରାଣୀ ଗୁଡ଼ାକ ବି କଥା ତଳେ ପକାନ୍ତି ନାହିଁ । ଥରେ ରାମା ଭଣ୍ଡାରି, "ଅଲକ୍ଷଣି ରାଣ୍ଡି, ଘଇତାକୁ ଖାଇ ପେଟ ପୂରିଲା ନାହିଁ ଯେ ଆସିଚି ଜମିଦାରଙ୍କ ଘର ଖାଇବାକୁ," ଏଇ କଥାତକ କହିଥିଲା । ମୁଁ ତାକୁ ବକିଥିଲି ତା'ର ପ୍ରତିଶୋଧ ସ୍ୱରୂପ, ଅବଶ୍ୟ ତା' ଆଗରେ ନୁହେଁ, ଲୁଚେଇ କରି । ମୁଁ ତ ଅଲେଇର ବଳା, ବିଶିକେଶନ, ସେ କଥା ଶୁଣି ସାତରାଜାଙ୍କ ମାନକରି ବସିଲି । ମା' ସା'ନ୍ତାଣୀ କେତେ ଆଦର କଲେ । ମୁଁ ସିଠଉ ସବୁକଥା ଖୋଲିକରି କହିଦେଲି । ରାମା ବରଖାସ୍ତ ହୋଇଗଲା । ସେହିଦିନୁ ସମସ୍ତେ ଜାଗତିଆର ।

ମୋର ବୟସ ବଢ଼ିବା ସାଙ୍ଗେ ସାଙ୍ଗେ ଜମିଦାରଙ୍କ ଘରର ଗୋଟିଏ ଗୋଟିଏ କାମ ମୋ ହାତକୁ ଆସିବାକୁ ଲାଗିଲା । ସକାଳୁ ଉଠି ଗୋଧୋଇ-ପାଧୋଇ ମା' ସା'ନ୍ତାଣୀଙ୍କ ପୂଜା ଠା' କରେ । ତୁଳସୀ, ଗୋରଚନା, ନିର୍ମାଲ୍ୟ ତୁଳସୀମୂଳେ ସଜାଡ଼ି ରଖେ । ତା'ପରେ ସରଘରୁ ରୋଷେଇଶାଳ, ରୋଷେଇଶାଳରୁ ଗାଈ, ମଇଁଷି ଗୁହାଳ, ଏମିତି ହଉ ହଉ ମୋ ଦିନ କୁଆଡ଼େ ପାଣିପରି ବୋହିଯାଏ । ସଞ୍ଜବେଳକୁ ତୁଳସୀ ମୂଳରେ ବଳିତା ବସେଇ ଟିକିଏ ଜପ କରି ବସେ । ଏ ଅଭ୍ୟାସଟା ଯେ ମୋର କିମିତି ହେଲା ତା' ମୁଁ ଜାଣେ ନାହିଁ । ମା' ସା'ନ୍ତାଣୀଙ୍କି ଆଉ କେହି ଦିନେ ହେଲେ ତୁଣ୍ଡ ଫିଟାଇ ଏକଥା କହି ନାହାନ୍ତି । ଦିନେ ଦେଖିଲି, ମୋ ଘରେ—ମୋର ଗୋଟେ ଅଲଗା ଘର—ଗୋଟେ ଜପ ପେଡ଼ି ଭିତରେ ରୁଦ୍ରାକ୍ଷମାଳି, ଶିରକପଡ଼ା, ନାମାବଳୀ, ଗଙ୍ଗାମୃର୍ତ୍ତିକା, ନିର୍ମାଲ୍ୟ କୋଥଳି ରହିଛି । ସେଦିନ ସଞ୍ଜବେଳେ ମା' ଜପ କରିବାକୁ ବସିଲାବେଳେ ମତେ ଡାକିଲେ—"ମଣି ଆସିଲୁ, ମୋ ପାଖରେ ଟିକିଏ ବସିବୁ ।" ମୁଁ ଗଲି । ସେ ଜପରେ ଲାଗିଲେ; ମୁଁ ଖୁଣ୍ଟପରି ବସି ରହିଲି । ଦି' ତିନିଦିନ ଗଲା; ତା'ପରେ ମୁଁ ଦେଖିଲି, ଖାଲି ଏବେ ବସିବି କିଆଁ, ମୋର ତ ମାଳି ଅଛି, ମୁଁ ଜପରେ ଲାଗିଯାଏଁ । ସେଇଦିନୁ ଏ ମୋର ଗୋଟେ ଅଭ୍ୟାସ । ଜପ ସରିଲେ ମା'ଙ୍କ ପୂଜାଘରେ ଆମେ ଦିହେଁ, ଆଉ ଯେତେକ ପୋଇଲୀ ସମସ୍ତେ ବସୁଁ । *ରାମାୟଣ, ମହାଭାରତ* ପଢ଼ାହୁଏ । ମୁଁ ପଢ଼େଁ, ଅର୍ଥ କରେଁ । ଯେଉଁଠି ଝୁଣ୍ଟେ ସିଠେଇ ମା' ବତେଇ ଦିଅନ୍ତି । ତାଙ୍କର ଭାଗବତ, ରାମାୟଣ ସବୁ ତୁଣ୍ଡେ ତୁଣ୍ଡେ । ତା'ପରେ ଶୋଇବାକୁ ଯାଉ ।

ଏହିପରି ଦିନ କଟିଗଲା । ମୁଁ ଜମିଦାର ଘରର ଜଣେ ହୋଇ ରହିଲି । ମା' ସା'ନ୍ତାଣୀଙ୍କ ଅଳିଝଳିରେ ବୁଢ଼ା ସା'ନ୍ତେ ମାଇପ ଘେନି ତୀର୍ଥ କରିବାକୁ ବାହାରିଲେ । ମୁଁ ଅବଶ୍ୟ ସାଙ୍ଗରେ ଗଲି । ସେତୁବନ୍ଧଠାରୁ ରାମେଶ୍ୱର ପର୍ଯ୍ୟନ୍ତ ବହୁତ ତୀର୍ଥ ବୁଲି ଶେଷରେ କାଶୀରେ ବର୍ଷେ ଖଣ୍ଡେ କଟେଇବାର ଠିକ୍ ହେଲା । ଗଙ୍ଗାକୂଳରେ ଗୋଟିଏ ଦୋ'ମହଲା ପକ୍କା ଭଡ଼ା ନେଇ

ସମସ୍ତେ ସେହିଠାରେ ରହିଲୁ । ଲୀଳାମ୍ବର ଦମିଦାର ବାବୁଙ୍କ ପୁଅ, ସେତେବେଳକୁ ତାଙ୍କର ବୟସ ୨୩ ବର୍ଷ । କଟକ କଲେଜରୁ ବି.ଏ. ପାଶ୍ କରିଥାନ୍ତି ସତ; କିନ୍ତୁ ଭାରି ପିଲାଳିଆ । ଦିନେ ବାପାଙ୍କ ସାଙ୍ଗରେ ସେ ଦଶାଶ୍ୱମେଧ ଘାଟକୁ ସ୍ନାନ କରିବାକୁ ଯାଇଚନ୍ତି, ଗୋଟେ ଖିଆଲ ହେଲା, ଲୁଗାପଟା ବାନ୍ଧି ପହଁରିବାକୁ ବାହାରିଲେ । ବୁଢ଼ା ସା'ନ୍ତେ ମନା କରୁଚନ୍ତି, ତାଙ୍କର ବୋଲ ନ ଘେନି ଯାଉ ଯାଉ କିଛି ବାଟରେ ଗୋଡ଼ରେ ଲୁଗା ଲାଗି ସେ ବୁଡ଼ିଗଲେ । "କ'ଣ ହେଲା ? କ'ଣ ହେଲା ?" ବୋଲି ଘାଟରୁ ଘୋର ଗୋଳମାଳ ଉଠିଲା । ଲୋକେ ଦେଖିଲେ, ସେ ଯେଉଁଠାରେ ବୁଡ଼ିଚନ୍ତି, ତା'ର କିଛି ଦୂରରେ ଗୋଟିଏ କିମ୍ଭୀର ଭାସୁଛି । କାହାରି ସାହସ ହେଲା ନାହିଁ ଯାଇ ଘେନି ଆସିବେ । ନୀଳାମ୍ବର ୟା ଭିତରେ ତିନିଥର ବୁଡ଼ି ଉଠିଲେ; କାବୁରୁ କାବୁରୁ ହଉଥାନ୍ତି । ଢୋକେ ଖଣ୍ଡେ ପାଣି ପିଇସାରିଲେଣି, କିମ୍ଭୀରଟା ମଧ୍ୟ ତାଙ୍କ ଆଡ଼କୁ ଆସୁଛି । ବୁଢ଼ା ସା'ନ୍ତେ କ'ଣ କରିବେ ଭାବି ନପାରି ଆଖି ମୁଦି ବିଶ୍ୱନାଥଙ୍କୁ ଧ୍ୟାନ କରିବାକୁ ଲାଗିଲେ । ଏହିପରି ସମୟରେ ଘାଟର ଡାହାଣ ଦିଗରୁ ଶବ୍ଦ ହେଲା— ଝପ୍ । ଆଖିପିଛୁଡ଼ା ମାତ୍ରକେ ସମସ୍ତେ ଦେଖିଲେ, ଜଣେ ପୌଢ଼ କିମ୍ଭୀରକୁ ଭ୍ରୂକ୍ଷେପ ନକରି ନୀଳାମ୍ବରଙ୍କ ଆଡ଼କୁ ପହଁରି ଚାଲିଛନ୍ତି । କିମ୍ଭୀର ପ୍ରାୟ ଆଉ ଦି'ତିନି ହାତ ଦୂରରେ; କିନ୍ତୁ ପ୍ରୌଢ଼ ନୀଳାମ୍ବରଙ୍କ ପାଖରେ ପହଞ୍ଚି ତାଙ୍କୁ ପିଠିରେ ଘେନି ଚାଲିଲେ । ଆଶ୍ରୟ ପାଇ ନୀଳାମ୍ବରଙ୍କର ହୋସ ଆସିଲାଣି, ସେ ଚେଷ୍ଟାକରି ଲୁଗାପଟା ଗୋଡ଼ରୁ ବାହାର କରିଦେଲେ । ନୀଳାମ୍ବରଙ୍କୁ ଆଗରେ ରଖି ଭଦ୍ରଲୋକଟି ପଛରେ ପହଁରି ଆସୁଛନ୍ତି । କେତେବେଳେ ବୁଡ଼ି, କେତେବେଳେ ବଙ୍କେଇ କିମ୍ଭୀର ତାଙ୍କ ପଛେ ପଛେ ତୀରବେଗରେ ଆସୁଛି । ନୀଳାମ୍ବର ଥଳରେ ପହଞ୍ଚିଲା ବେଳକୁ କିମ୍ଭୀରଟା ଖଗ ପିଟି ପ୍ରୌଢ଼ଙ୍କର ଗୋଡ଼ରୁ ପୁଳେ ଧରିନାଲା । ଲୋକଙ୍କର ଅଣ୍ଟ ପାଣି ହେତୁ ସାହସ ଆସିଚି । ସେମାନେ ଚେଷ୍ଟା କରି ଭଦ୍ରଲୋକଙ୍କୁ କିମ୍ଭୀର ମୁହଁରୁ ଟାଣି ଆଣିଲେ ସତ; କିନ୍ତୁ ଏ ଟଣାଓଟରାରେ ତାଙ୍କର ଗୋଟିଏ ପାଦ ଛିଡ଼ିଗଲା । ବୁଢ଼ା ସା'ନ୍ତେ ଏହା ଦେଖି ତାଙ୍କୁ ଘେନି ଡାକ୍ତରଖାନାକୁ ଗଲେ । ସେଠାରେ ଅପରେସନ୍ ହେରିକା କରାଇ ତାଙ୍କୁ ଘେନି ବସାକୁ ଫେରି ଆସିଲେ ।



## ଖରା ଓ ବର୍ଷା

ତା'ପରେ କିଛିଦିନ ଚାଲିଯାଇଛି । ମୋ ଭାଗ୍ୟରେ କାଶୀବାସ ବେଶିଦିନ ଘଟିଲା ନାହିଁ । ଉଆସର କୌଣସି ଗୋଟେ ଗୋଳମାଳର ଖବର ତହସିଲଦାରଙ୍କଠାରୁ ପାଇ ସା'ନ୍ତାଣୀ ମତେ ଗୋଟେ ଚାକର ସାଙ୍ଗରେ ପଠେଇ ଦେଲେ, ଏ ଘଟନାର ଦୁଇଦିନ ପରେ । ସେ ଦୁଇଦିନ ପ୍ରୌଢ଼ ଅଚେତ ହୋଇ ପଡ଼ି ରହିଥିଲେ; ସା'ନ୍ତେ, ସା'ନ୍ତାଣୀ ଏପରି ଅବସ୍ଥାରେ ତାଙ୍କୁ ଛାଡ଼ି ଆସିବାକୁ ଇଛାକଲେ ନାହିଁ । ମୁଁ ଯେ ଆସିଲି ଫେରିପାରିଲି ନାହିଁ । ବୁଢ଼ିଆଣୀ ସୂତାଖିଅ ପରି ଗୋଟାକ ପରେ ଗୋଟାଏ କାମ ମତେ ବାନ୍ଧି ରଖିଲା । ତିନି ଚାରିମାସ ଚାଲିଗଲା; ମୁଁ କିଛି ଚିଠିପତ୍ର ପାଏ ନାହିଁ । ତହସିଲଦାରଙ୍କୁ ପଚାରିଲେ ସେ କହନ୍ତି, "ସା'ନ୍ତ,

ସା'ନ୍ତାଣୀ ଭଲ ଅଛନ୍ତି । କିନ୍ତୁ କେବେ ଫେରିବେ କିଛି ଠିକ୍ ନାହିଁ ।" ହଠାତ୍ ଦିନେ ସମ୍ବାଦ ଆସିଲା, ନୀଳାମ୍ବରଙ୍କର ବିବାହ ହୋଇଯାଇଚି । କାହା ସାଙ୍ଗରେ କିଛି ଜଣା ନାହିଁ; ବୁଢ଼ା ସା'ନ୍ତେ ଚିଠି ଲେଖିଛନ୍ତି, ସୁତରାଂ ଭାଇବନ୍ଧୁଙ୍କର ସନ୍ଦେହ କରିବାର କିଛି କଥା ନାହିଁ । ବୁଢ଼ା ଭାରି ଖାଣ୍ଟି ଲୋକ, ଭଲ ଜାତିଗୋତ୍ର ନଦେଖି ବିବାହ ଦିଅନ୍ତେ ନାହିଁ । ମହା ଆଡ଼ମ୍ବରରେ ଗାଁରେ ଭୋଜି ହୋଇଗଲା । କେବଳ ଜଣେ ଲୋକ କେତେ ଜଣଙ୍କୁ ମତାଇ ଗୋଟେ ଗୋଳମାଳର ଉପାୟ ପାଞ୍ଚୁଥିଲେ । ସେ ଦାମି ଦାସେ । ତାଙ୍କର କନ୍ୟା ସତ୍ୟବତୀ ସହିତ ନୀଳାମ୍ବରଙ୍କର ବିବାହ କଥା ପଡ଼ିଥିଲା—ଅବଶ୍ୟ ନିର୍ବନ୍ଧ ହୋଇ ନାହିଁ । ତଥାପି ସେ ବଡ଼ ଆଶା କରିଥିଲେ—ଜମିଦାରଙ୍କୁ ଜୋଇଁ କରି ପାଇଲେ ସେ ଗାଁରେ ଗୋଟେ ମସ୍ତ ବଡ଼ ଲୋକ ହୋଇଉଠିବେ । ଏ ବିବାହରେ ତାଙ୍କର ସବୁ ଆଶା ଭରସା ବୁଡ଼ିଗଲା । ସେ ସେହି ହେତୁରୁ ଗାଇ ବୁଲିଲେ, କନ୍ୟାର ଜାତିକୁଳ ନଜାଣି ବିବାହ ପଙ୍ଗତରେ ଯୋଗଦେବା ଅନ୍ୟାୟ । ତହସିଲଦାରଙ୍କ କାନରେ ଏକଥା ପଡ଼ିଲାରୁ ସେ ଟିକିଏ ମୁଚୁକିହସା ଦେଇ ବସ୍ତାନି ଭିତରୁ ପାଞ୍ଚବର୍ଷର ଗୋଟେ ତମସୁକ ବାହାର କରି ଦାମି ଦାସଙ୍କ କରଜ ଉପରେ ସୁଧ ଅସଲ ମୋଟ ୩୦୦୦ ଟଙ୍କାର ନୋଟିସ୍ ଜାରି କଲେ । ଦାମି ଦାସେ ବୁଦ୍ଧିମାନ; ସେ ଏ ସଙ୍କେତର ଉଦ୍ଦେଶ୍ୟ ବୁଝିପାରି ଚୁପ୍ ହୋଇ ସୁନାପିଲାଙ୍କ ପରି ଖାଇଦେଇ ଚାଲିଗଲେ । ବିବାହ-ଭୋଜିର ଦୁଇମାସ ପରେ ଚିଠି ଆସିଲା, ସା'ନ୍ତାଣୀଙ୍କ ଦେହ ଭାରି ବେରାମ । ତା' ପରେ ସା'ନ୍ତାଣୀ ଆମ୍ଭମାନଙ୍କୁ ଅକୂଳ ସାଗରରେ ଭସାଇ ଦେଇ ଅହିତେଙ୍ଗୁରା ବଜାଇ ସ୍ୱର୍ଗଧାମକୁ ଚାଲିଗଲେ । ତାଙ୍କର ଅନ୍ତ୍ୟେଷ୍ଟି ନ ଯାଉଣୁ ସା'ନ୍ତେ ମଧ୍ୟ । ପାଟଳିପୁର ଗାଁ ଶୋକରେ ବୁଡ଼ିଗଲା ।

ଗରିବଠାରୁ ଧନୀ ପର୍ଯ୍ୟନ୍ତ କିଏ ଯେ ସେମାନଙ୍କ ଦ୍ୱାରା ଉପକୃତ ହୋଇନଥିଲା, ଏପରି ନାହିଁ; କିନ୍ତୁ ଅନ୍ୟମାନଙ୍କର ଯେ ସ୍ୱାର୍ଥହାନି ହୋଇଥାଉ, ମୋର ବାଟର ଆଶାବଟଟି ଟଳିପଡ଼ିଲା । ମୁଁ ମା' ସା'ନ୍ତାଣୀଙ୍କ ବଳରେ ସିନା ଗେହ୍ଲା । ଜମିଦାର ଘରେ ସା'ନ୍ତାଣୀ ! ସେ ଚାଲିଗଲେ ମୋର ଅବସ୍ଥା କ'ଣ ହେବ ? ଏ ଚାକରବାକର ଗୁଡ଼ାକ, ଏମାନେ ଜାଣନ୍ତି ମୁଁ କେତେ କଡ଼ାର ମଣିଷଟେ; କେବଳ ସା'ନ୍ତାଣୀଙ୍କ ମୁହଁକୁ ଡରିମରି, ରକ୍ତଚାଉଳ ଚୋବାଇ ଚୁପ୍ ହୋଇ ପଡ଼ିଥାନ୍ତି । ଏଥର ତ ମତେ କେତେମନ୍ତେ ଛିଗୁଲେଇବେ, କେତେ ଅପମାନ ଦେବେ ! ମୁଁ କେଉଁଠି ମୁଣ୍ଡ ଗୁଞ୍ଜିବି ? ଶାଶୁଘର କ'ଣ ଜାଣି ନାହିଁ । ଶାଶୁଘରେ କିଏ ଅଛନ୍ତି କି ନାହିଁ, ତା' ମଧ୍ୟ ଦିନେ ଖୋଜଖବର ନେଇ ନାହିଁ । ବାପା ବୁଢ଼ା, ଚାଲିବୁଲି ପାରନ୍ତି ନାହିଁ । ମତେ ସା'ନ୍ତାଣୀ ଯେ ଦି'ଚାରି ପଇସା ଅଣ୍ଟାଖରଚ ପାଇଁ ଦିଅନ୍ତି, ତାକୁ ନେଇ ତାଙ୍କୁ ଦିଏ । ସେଥିରେ ତାଙ୍କର କୃତ୍ୟ ଚଳେ । କ'ଣ କରିବି ? କାହାକୁ କହିବି ? ନୀଳାମ୍ବର ଅବଶ୍ୟ ଭଲ ପିଲା; ମତେ 'ନାନୀ' 'ନାନୀ' ବୋଲି ଡାକେ, କଟକରୁ ଫେରିଲା ବେଳେ ମୋ ପାଇଁ କେତେ ନୂଆ ନୂଆ ଜିନିଷ ଆଣେ; କିନ୍ତୁ ସେ ସମୟ କ'ଣ ଆଜି ଅଛି ? ସେ ଯେ ଆଜି ବିବାହିତ ! ଆଉ ଗୋଟିଏ କିଏ ଆସି ଘରର ମାଲିକ ହୋଇ ବସିବ; ନୀଳାମ୍ବରକୁ ଯେମିତି ନଚେଇବ ସେ ସିମିତି ନାଚିବ । ସେ କ'ଣ ମତେ ଘରେ ରଖିବ ? ରଖିବ ଯଦି ତା'ହେଲେ ଏ ଘରେ ମୋର ସ୍ଥାନ କ'ଣ ହେବ ? ସାମାନ୍ୟ ପୋଇଲୀ ରାମା-ମା' ମଧୁଆମା'ଙ୍କ ପରି ଜଣେ ! ମୁଁ ତା' ସହିତ କିମିତି ରହିବି ?

ଯାହାହେଉ, ନୀଳାମ୍ବର ଘରକୁ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରିଥାଏଁ—ତା'ପରେ ଯାହା ହେବାର ହେବ । ତା'ର ଆସିବା ତିନିଦିନ ପରେ ନୀଳାମ୍ବର ସ୍ତ୍ରୀକୁ ଧରି ଆସି ପହଞ୍ଚିଲେ । ତାଙ୍କ ମନରେ ସୁଖ ନାହିଁ, ସବୁବେଳେ ଆଖି ଛଳଛଳ । ଘର ଭିତରକୁ ଆସି ଦିନେକାଳ କାହାରିକୁ କିଛି ନ କହି ଗୋଟେ ଘରେ ପଡ଼ିରହିଲେ; ତାଙ୍କ ସ୍ତ୍ରୀ ପଦ୍ମା ସିମିତି ଗୋଟେ ଘରେ ଜାକିଜୁକି ହୋଇ ଥାଏ । ଏକେତ ଛୁଆ ଲୋକ, ତା'ପରେ ପୁଣି ଏ ଦୁଃଖ—କାହାକୁ କ'ଣ କହିବ ? କାହାକୁ ବା ଚିହ୍ନିଚି ? ମୁଁ ଯାଇ ହାତ ଓଠ ଧରି ବହୁତ ବୁଝାଏ, ଏ ଓଳି ସେ ଓଳି ଭିଡ଼ାଭିଡ଼ି କରି ଖାଇବାକୁ ବସାଏ । ସେ କ'ଣ ଗୁଣ୍ଡେ ଦି'ଗୁଣ୍ଡା ମୁହଁକୁ ନିଏ କି ନାହିଁ ଉଠିଯାଏ । ତହିଁ ଆରଦିନ ନୀଳାମ୍ବର ମୋ ପାଖକୁ ଆସି କାନ୍ଦ କାନ୍ଦ ହୋଇ କହିଲା, "ମଣି ନାନି ! ଘରଦୁଆର ତୁମର, ତୁମେ ସାଇତିଲେ ଏସବୁ ରହିବ, ନ ହେଲେ ଭାଜିଭୁଜିଯିବ । ମୁଁ ସଂସାର କି ଜାଣେ ?" ନୀଳାମ୍ବରକୁ ଦେଖି ତ ମୋର କୋହ ଉଠୁଥିଲା । ମୁଁ କୌଣସିମତେ ତାକୁ ଢୋକି କହିଲି, "ବାବା, ବାହାଚୁଡ଼ା ହେଲୁ—ଏଣିକି ସଂସାର ତୋର । ଘରକୁ ଘରଣୀ ଆଣିଲୁ, ସେ ତ ଘର ବୁଝିବ, ମୁଁ ଉଡ଼ିଆସିଲା ଚଢ଼େଇ, ମୋ ପଛା ଧରି ଯିବି । ଆଶୀର୍ବାଦ କରୁଛି, ତୁମେ ସୁଖରେ ଘରଦୁଆର କରି ରହ ।"

ନୀଳାମ୍ବର ମୋ କଥା ନ ଶୁଣିଲା ପରି ଅଣ୍ଟାରୁ ଚାବିଗୋଛାଟିଏ ବାହାର କରି ପାଦତଳେ ରଖିଦେଇ କହିଲା, "ଏ ମା'ଙ୍କର ହାତ ଚାବି, ତୁମେ ରଖ । ଯାହା ଯେଉଁଠି ଅଛି ଆଡ଼େଇବ; ମୁଁ ପରା ତୁମର ସାନଭାଇ । ତୁମେ ମତେ ନ ପଚାରିଲେ ଆଉ ମୋର କିଏ ଅଛି ?" ଏତିକି କହି ଫଡ଼କରି ମୁହଁ ଫେରାଇ ଚାଲିଗଲା । ମୁଁ ଚାବିପେଛାଟି ଉଠେଇ ନେଇ ପଦ୍ମା ପାଖକୁ ଯାଇ କହିଲି, "ତୁମ ଶାଶୁଙ୍କର ଚାବି ଏ, ରଖ । ଘରସଂସାର ବୁଝ, ଇମିତି ପଡ଼ିରହିଲେ କ'ଣ ହେବ ? ଶୁଦ୍ଧ କ୍ରିୟା ତ କରିବାକୁ ହବ । ଏତେ ଦାସଦାସୀ, ପୋଇଲୀ ପରିବାରୀ, ଏମାନଙ୍କୁ ଅଡ଼େଇବ—କ'ଣ ସହଜ କଥା ?" ସେ କେଜାଣି କିମିତି ଜାଣିପାରିଲା ଯେ ମୁଁ ଘର-ସଂସାର ଚଳାଏ । ସୁତରାଂ ଆଖିରେ ଆଖିଏ ଲୁହ କରି ମୋ ହାତରେ ଚାବିତକ ଗୁଞ୍ଜି ଦେଲା । ତା'ପରେ ଠାରି କହିଲା, "ତୁମେ ବୁଝ ! ମୁଁ କ'ଣ ଜାଣେ ? ମୁଁ ଯେ ପିଲା, ତୁମେ ମତେ ଚାଲି ନନେଲେ ମୁଁ ଚଳିବି କିମିତି ? ଘରଦୁଆର ସବୁ ତୁମର; ମୁଁ କାହୁଁ ଅଇଲି ସିନା !" ୟା ଉପରେ ଆଉ କି ଜବାବ ? ମୁଁ ତାକୁ କୁଣ୍ଢାଇ ପକେଇ ଆସରାଏ କାନ୍ଦିଲି । ତା'ପରେ ଘରସଂସାର ଚିନ୍ତା ଲାଗିଗଲା । ମୁଁ ଘରେ ସର୍ବେସର୍ବା ହେଲି । ମା' ସା'ନ୍ତାଣୀ ଜୀଇ ଥାଉଁ ଥାଉଁ ମୋର ଯେତେ ହାକିମି ଥିଲା, ବର୍ତ୍ତମାନ ତା'ର ଦୁଇଗୁଣ । କେହି ଦାସୀ ପଦ୍ମାକୁ କିଛି ପଚାରିବାକୁ ଗଲେ, ସେ ମୋ ପାଖକୁ ପଠେଇଦିଏ । ସେମାନେ ଏହିପରି ଥରେ ଦି'ଥର ଦେଖି, ଆଉ ତାକୁ କିଛି ପଚାରନ୍ତି ନାହିଁ ।

ପଦ୍ମା ପ୍ରଥମେ ପ୍ରଥମେ ମତେ କଥା କହୁ ନ ଥିଲା । ହାତେ ଲମ୍ବର ଗୋଟେ ଓଢ଼ଣା ପକେଇ ଚୁଁ ଚୁଁ କରୁଥିଲା । ମୁଁ ତାକୁ ଯେତେ ବୁଝେଇଲେ ହସିଦେଇ ଚାଲିଯାଏ, ମୋଟେ ଶୁଣେନାହିଁ । ଶେଷରେ ମୁଁ ଦିନେ ଯାଇ ନୀଳକୁ ଧରି ବସିଲି, "ଦେଖ ନୀଳ, ତୋ ଭାରିଯା ଯେବେ ମତେ କଥା ନ କହିବ, ମୁଁ ନିଜେ କହୁଛି, ତମ ଘର ଛାଡ଼ି ଚାଲିଯିବି । ମୁଁ କ'ଣ ଶାଶୁ ନା ବଡ଼ଯା' ଯେ ମତେ ଏତେ ମାଇନ ? ଲେଖାଯୋଖାରେ ନଣନ୍ଦ ସିନା ? ନଣନ୍ଦକୁ କୁଠି ଲୋକେ ଚୁଁ କରୁଥାନ୍ତି ?"

ତା' ଆରଦିନ ନୀଳ ତାକୁ କ'ଣ କହିଲା କେଜାଣି, ସେ ଆଉ ଟୁଁ ନ ମାରି କଥାବାର୍ତ୍ତା କଲା । ଏଥରକ ସଂସାର ବେଶ୍ ଚାଲିଲା । ପିତାମାତାଙ୍କର ଅନ୍ତ୍ୟେଷ୍ଟି ସରିଯିବା ପରେ ନୀଳାମ୍ବର ଜମିଦାରୀ କାର୍ଯ୍ୟପତ୍ର ନେଇ ବ୍ୟସ୍ତ ଥାଏ । ଯେତେବେଳେ ଟିକିଏ ବିଶ୍ରାମ ପାଏ, ସେତେବେଳେ ଖଞ୍ଜାପଟେ ତା' ବସିଲା ଘରେ ଆସି ପଢ଼ାପଢ଼ି କରେ । ପଦ୍ମା ତା' ପାଖରେ ବସି ସିମିତି ପଢ଼ାପଢ଼ି, କେତେବେଳେ ହସଖେଳ କରେ । ମୋଟ କଥାରେ ନୀଳ ଆଉ ପଦ୍ମା ବଡ଼ ସୁଖରେ ଦିନ କାଟିବାକୁ ଲାଗିଲେ ।



## ବିଷମଞ୍ଜି ବୁଣାହେଲା

କିନ୍ତୁ ନୀଳର ଏ ସୁଖରେ ମୁଁ ସୁଖୀ ହୋଇପାରିଲି ନାହିଁ । କେଜାଣି କାହିଁକି ପଦ୍ମା ପ୍ରତି ତା'ର ସ୍ନେହ ଆଦର ଯେତେ ବଢ଼ିଲା, ମୋର ମନରେ ସେହି ପରିମାଣରେ ଅବିଶ୍ୱାସ, ରାଗ, ହିଂସା ହେବାକୁ ଲାଗିଲା । ସେମାନେ ଏକାଠି ବସି କଥାବାର୍ତ୍ତା ହେଲାବେଳେ ମୁଁ ଲୁଚିକରି ସବୁ ଶୁଣେ । ତାଙ୍କର ସେ କଥାବାର୍ତ୍ତା, ସେ ଚାହାଣି, ସେ ସ୍ପର୍ଶ ଦେଖି ଶୁଣି ମୋର ହୃଦୟ ଜଳିଯାଉଥାଏ । ତଥାପି ମୁଁ ଲୁଚି ସବୁ ଦେଖେ । ଏ ଯନ୍ତ୍ରଣା ଯେପରି ମୋର ଚିରଭାଗ୍ୟ, ଚିରଭାଗ୍ୟ ! ମୁଁ କଳେବଳେ-କୌଶଳେ ଯେତେ ପାରେ ପଦ୍ମାକୁ ନୀଳ ପାଖରୁ ଅଲଗା କରିବାକୁ ଚେଷ୍ଟାକରେ । ପ୍ରଥମ ଦିନେ ଦି'ଦିନ ନୀଳ ଖାଇବସିଲାବେଳେ ପଦ୍ମା ତା' ପାଖରେ ଯାଇ ବସେ; କିନ୍ତୁ ମତେ ତା' ଅସହ୍ୟ ହେଲା । ମୁଁ ତାକୁ କହିଲି, "ହଇଲୋ, ତୁ କାଲିର ବୋହୁଟା, ତୋର ଟିକିଏ ସରମ ନାହିଁ, ସବୁବେଳେ ନୀଳ ପାଖରେ ବସୁଚୁ, କଥା ହଉଚୁ ଯେ ପୋଇଲୀ ପରିବାରୀ ଗୁଡ଼ାକ ଦେଖି ପଛରେ ଛି-ଛି କରୁଛନ୍ତି । ଆମର ହିନ୍ଦୁ ଘର ପରା ?" ପଦ୍ମାର ମୁହଁ ଲାଜରେ ଲାଲ ପଡ଼ିଗଲା । ସେ ସେତିକିବେଳୁ ଆଉ ନୀଳ ଘରକୁ ନୀଳ ଥିଲାବେଳେ ଯାଏ ନାହିଁ । ନୀଳ ମଧ୍ୟ ସେ ଦିନ କଚେରିରୁ ଆସି ନିଜ ପଢ଼ିଲା ଘରେ ସବୁ ଦିନ ପରି ପଦ୍ମାକୁ ନ ଦେଖି ଏଣିକି ତେଣିକି ଟିକିଏ ଚାହିଁଲା । ଗୋଟାକେତେ ଖଁଖାରଖାଁ ମାଇଲା । କେହି ନ ଆସିବାର ଦେଖି ଘରେ ଯାଇ ବସିଲା । ମୁଁ ଲୁଚି ଲୁଚି ସବୁ ଦେଖୁଥାଏ—ନୀଳ ପଢ଼ିବା ପାଇଁ ବହି କାଢ଼ିଲା; କିନ୍ତୁ ପଢ଼ିପାରିଲା ନାହିଁ । ଟେବୁଲ ଉପରେ ବୁହେ ହାତ ଟିପିଟିପି କଲା; ପରେ ବାହାରକୁ ଆସିଲା । ଶେଷକୁ ସମ୍ଭାଳି ନପାରି ମତେ ଡାକିଲା । ମୁଁ ମୁହଁ ହସ ମୁହଁରେ ମାରି ଯାଇ କହିଲି, 'କ'ଣ କିଏ-ଏ-ରେ ନୀଳ ? ନିଆଁଲଗା ଘରେ କ'ଣ ନାକ ପୋଛିବାକୁ ଟିକିଏ ତର ମିଳିଲା ? ପୁଅଟା କଅଣ ଖାଇଲା, କଣ କଲା, ଟିକିଏ ଦେଖି ପାରିଲି ନାହିଁ । ଦେ, କ'ଣ କହିବୁ କହିବୁଟି, ମୁଁ ବେଗେ ଯିବି ।"

ନୀଳ—"ନାଇଁ, ପଚାରୁଥିଲି ଚାକର-ଚାକରାଣୀମାନଙ୍କର ସବୁ ଭଲ ତ ?"

ମୁଁ—"କାହିଁକି ? ଆଜି ସେ କଥା କାହିଁକି ମନେଗଲେ ମ ? ଦିନେ ନାହିଁ କି କାଳେ ନାହିଁ, ଆଜି ଏ ସା'ନ୍ତେଇ କାହିଁକି ? ଆଉ କ'ଣ କଥା ଅଛି ବୋଇଲେ କହ ।"

ମୁଁ ଦେଖିଲି ନୀଳର ଲାଜରେ ମୁହଁ ଲାଲ ହୋଇଗଲା । ମୁଁ ତାକୁ ଦେଖି ନ ଦେଖିଲା ପରି ହୋଇ କହିଲି, "ବେଶ୍, ତୁ ମିଛକୁ ମୋ ପାଖରେ ଲାଗିଛୁ । ମୁଁ ଯାଉଛି ।" କହି ଚାଲିଆସିଲି ।

ମୋର ଏ ପରିବର୍ତ୍ତନ କାହିଁକି ? ଏ ଯୁବକ ଯୁବତୀ ଦିହିଁଙ୍କୁ ଏ କଷ୍ଟ ଦେଇ ମୋର କି ଲାଭ ? ନୀଳକୁ ତ ମୁଁ କେତେ ଭଲପାଏ । ଆଉ ପଦ୍ମା, ସେ କେଡ଼େ ସରଳା, କେଡ଼େ ସୁନ୍ଦରୀ । ତା'ର ଉପର ଯେପରି ସୁନ୍ଦର, ଭିତର ମଧ୍ୟ ସେହିପରି; ତଥାପି ମୋର ଏ ଭାବ କାହିଁକି ? ପଦ୍ମା ନୀଳର ସବୁ କାମ କରେ । ଏଣିକି ତା' କାମ ଭିତରୁ ଗୋଟେ ଦି'ଟା ଲୁଚେଇ ଚୋରେଇ କରିପାରିଲେ ମୋର କାହିଁକି ଏଡ଼େ ଆନନ୍ଦ ? ପଦ୍ମା ନୀଳ ପାଇଁ ପାନ ଭାଙ୍ଗି ବସିଲାବେଳେ ମୁଁ ଯାଇ ତାକୁ ସାହାଯ୍ୟ କରିପାରିଲେ ଯେପରି କୋଟିନିଧି ପାଏଁ ।

ପଦ୍ମା ଭାତ ବାଢ଼ିବସିଲେ ମୁଁ ମୁରୁଜ ଦେଇ ବସେ । ପଦ୍ମା ତା'ର ବହିପତ୍ର ସବୁ ସଜାଡ଼ି ଦେଇ ଆସେ, ମୁଁ ଯାଇ ଦେଖେ ପଦ୍ମା କିଛି ଭୁଲ କରିଛି କି ନାହିଁ । ସେ ଯେଉଁ ଦିନ ଗୋଟେ ବହି, ଖଣ୍ଡେ କାଗଜ ତଳେ ଛାଡ଼ିଯାଇଥାଏ, ସେଦିନ ସେଇଟିକି ଯଥା ସ୍ଥାନରେ ରଖି ପଦ୍ମାକୁ କେତେ ଆଶୀର୍ବାଦ କରେ । ଏସବୁ କ'ଣ ? ମୋର ହେଲା କ'ଣ ? ଘରକାମରେ ବି ସେତେ ମନ ଲାଗୁନାହିଁ । ସବୁବେଳେ ନୀଳ ପଛରେ, ନୋହିଲେ ପଦ୍ମା ପଛରେ । ତଥାପି ମୁଁ ତ ପଦ୍ମାକୁ ସ୍ନେହ କରେ—ଭଉଣୀ ପରି ଦେଖେ । କିନ୍ତୁ ଏ କି ସ୍ନେହ ? ଅନାବିଳ କି ? ହାୟ ! ମୁଁ ଯେ ବିଧବା !



## ମୋର ଅବିଶ୍ୱାସ

ଏ ଦୀର୍ଘ ଚାରିବର୍ଷ କାଳ ମୁଁ ଅନେକ ଦୁଃଖ ଭୋଗିଛି; ଜପତପ, ବାର ବ୍ରତ କରି ମନକୁ ବାନ୍ଧିରଖିବାକୁ ଖୁବ୍ ଚେଷ୍ଟାକରିଚି; ପଦ୍ମାକୁ ବି କମ୍ ଭୋଗେଇ ନାହିଁ । ତଥାପି ପଦ୍ମାର ମନରେ ଏପରି ବିଷାଦ, ଏପରି ଦୁଃଖ କେବେ ତ ଦେଖିନାହିଁ । ଦୁଇ ତିନି ଦିନ ହୋଇଗଲା ପଦ୍ମାର ମନ ସେହିପରି ଅଛି । ନୀଳକୁ ଦେଖିଲେ, ନୀଳ କଥା ଶୁଣିଲେ, ତା'ର ମୁହଁ କ୍ଷଣକ ପାଇଁ ଉଜ୍ଜ୍ୱଳ ହୋଇଉଠେ; କିନ୍ତୁ ପରକ୍ଷଣରେ ପୁଣି କଳାହାଣ୍ଡିଆ ମେଘ ଛାଇଦିଏ । ପ୍ରଥମେ ପ୍ରଥମେ ନୀଳ ତା'ର ଏ ଭାବାନ୍ତର ଲକ୍ଷ୍ୟ କରିନଥିଲା; କିନ୍ତୁ ପରେ ସେ ଲକ୍ଷ୍ୟ କରିପାରିଛି । ସେଦିନ କଥା ମୋର ମନେଅଛି । ନୀଳ ପଦ୍ମା ପଢ଼ିଲା ଘରେ ବସି ଖଣ୍ଡେ ଖଣ୍ଡେ ବହି ନେଇ ଓଲଟପାଲଟ କରୁଥାନ୍ତି; ମୁଁ ପଢ଼ାଘରେ ଆଗସାମନା ପିଣ୍ଡାରେ ବସି ଚଉରା ବଳିତା କାଟୁଚି, ଆଉ ସେ ନୂଆ ନୂଆ ଭାବ ନାହିଁ । ତିନି ଚାରି ବର୍ଷ ଘର କରିସାରିଲା ପରେ ବିଭାବେଳର ଲାଜ ଆସ୍ତେ ଆସ୍ତେ ମରିଯାଏ । ହଠାତ୍ ନୀଳ ବହି ରଖିଦେଇ କହି ବସିଲା, "ଏ, ମୁଁ ତୁମକୁ ଗୋଟେ କଥା କହିପାରିନାହିଁ ।" ପଦ୍ମା ମଧ୍ୟ ବହି ଖଣ୍ଡ ଥୋଇଦେଇ କହିଲା, "ନ କହିଚ ତ ନ କହିଚ; କ'ଣ ହୋଇଗଲା ? ତୁମେ କ'ଣ ଦାଣ୍ଡରେ ଯାହା କର ସବୁ ମୋ ଆଗରେ କହ ?"

ମୁଁ ଯା' ଭିତରେ ବଳିତା ଗୋଛାଟା ଘେନି, ଆଉ ପିଣ୍ଡାରେ ବୁଲି ତାଙ୍କ ପାଖ ଘରେ ଆସି ବସିଲି । ଏଘର କାନ୍ଥରେ ଗୋଟେ ଛୋଟ ଜଳାକବାଟି, ସେ ବାଟେ ଚାହିଁଲେ ତାଙ୍କ ପଢ଼ାଘର ଟେବୁଲ ପାଖ ସବୁ ଦିଶେ । ମୁଁ ତା'ରି ପାଖରେ ଠିଆହେଲି । ନୀଳ ଆସ୍ତେ ଆସ୍ତେ ଉଠିଯାଇ ପଦ୍ମାର କାନ୍ଧ ଉପରେ ହାତ ରଖି କହିଲା, "ନା, ବଡ଼ ସୁସମ୍ବାଦ ଖୁବ୍ ଭଲ ଖବର ।" କାନ୍ଧରୁ ନୀଳର ହାତଟି ଆସ୍ତେ ଖସାଇ ଆଣି ପଦ୍ମା ନିଜ ହାତ ଭିତରେ ରଖି କହିଲା, "କ'ଣ ଶୁଣେ ?"

ନୀଳ—"ଆମର ଜଣେ ନୂଆ କର୍ମଚାରୀ ରହିଛନ୍ତି; ତହସିଲଦାର ବୁଢ଼ା ହେଲେଣି, ଯା ମଧ୍ୟରେ ବି ଜମିଦାରିର ଆୟ ଆୟତନ ଖୁବ୍ ବଢ଼ିଯାଇଛି, ସେଥିପାଇଁ ତାଙ୍କୁ ଜଣେ ସାହାଯ୍ୟ ନ କଲେ କାମ ଚଳିଲା ନାହିଁ । ଗୋଟିଏ ନୂଆ ନାଏବ ମୁକରର ହୋଇଛନ୍ତି ।"

ନାଏବ ନାଁ'ଟା ଶୁଣି ପଦ୍ମାର ମୁହଁ ଯେପରି ଶୁଖିଆସିଲା । ସେ କିଛି କହି ନପାରି ଗୋଡ଼ ବୁଢ଼ା ଆଙ୍ଗୁଠି ନଖରେ ଭୂଇଁରେ ଗାର କାଟିବସିଲା; ତା'ପରେ ହଠାତ୍ ମୁହଁଟେକି କହିପକାଇଲା—"ତାଙ୍କ ଘର ? ତାଙ୍କ ନା ?" କିନ୍ତୁ ମୁଁ ଠିକ୍ ଦେଖିଚି ସେ ଏତକ ପଚାରିଦେଇ ନୀଳର ମୁହଁ ଆଡ଼କୁ ଯେପରି କଣେଇ କରି ଚାହିଁଲା । ସେଥିରେ ଭୟ, ଆଶଙ୍କା ଷୋଳପଣ ପୂରା ! ନୀଳ କିନ୍ତୁ କିଛି ଜାଣିପାରିଲା ନାହିଁ । ସେ କହିଲା, "ମୁଁ ସବୁ କାଗଜରେ ନୋଟିସ୍ ଦେଇଥିଲି । ଅନେକ ଲୋକ ଦରଖାସ୍ତ କରିଥିଲେ, ତା' ଭିତରେ ମୋର ଜଣେ ପୁରୁଣା ସାଙ୍ଗ ବି ଦେଇଥିଲେ । ମୁଁ କଟକ କଲେଜରେ ପଢ଼ିଲା ବେଳେ ତାଙ୍କର ମୋର ଏକା ବସାରେ ଥିଲୁ । ପିଲାଟି ବେଶ୍ ବୁଦ୍ଧିମାନ୍, ବେଶ୍ ଚାଲାକ୍ । ତାକୁ କଲେଜ ପିଲେ 'ବୁଦ୍ଧିଚାଣକ୍ୟ' ବୋଲି ଡାକୁଥିଲେ । ସେତେବେଳେ ତାଙ୍କର ମୋର ବେଶ୍ ଘନିଷ୍ଠତା ଥିଲା । କିନ୍ତୁ ପରେ ତାଙ୍କ ବାପା ପଇସାପତ୍ର ଦେଇପାରିଲେ ନାହିଁ । ସେ ପାଠପଢ଼ା ଛାଡ଼ି ଗାଁରେ ଯାଇ ଜମିବାଡ଼ି କଥା ବୁଝୁଥିଲେ । କ'ଣ ହେଲା କେଜାଣି, ଗୋଟେ କି ମକଦ୍ଦମାରେ ତାଙ୍କର ଯାନ ଆସ୍ଥାନ ଉଠିଗଲା । ଘରଦ୍ୱାର ଛାଡ଼ି ବୁଢ଼ା ବାପାଙ୍କୁ ନେଇ ସେଆଲୋ ଗାଁ ଜମିଦାରଙ୍କ ପାଖରେ..."

ପଦ୍ମା ବାଧା ଦେଇ କହିଲା—"କାହା କଥା କହୁଛ ଶୁଣେ ? ଇତିହାସଟେ ଆରମ୍ଭ କରି ବସିଲ ଯେ !"

"ଆଉ କାହା କଥା କହିବି ? ସେଇ ନାଏବଙ୍କ କଥା ।" ପଦ୍ମା 'ଓ' ବୋଲି ଚୁପ୍ ହେଲା । ନୀଳ କିଛି ସମୟ ପରେ କହିଲା—"ବାଃ, ତୁନି ପଡ଼ିଲ ଯେ !"

"ମଲା, ତୁମେ ତ କହୁଛ, ଆଉ କ'ଣ ପାଲା କରୁଛ ଯେ ମୁଁ ପାଳି ଧରିବି ? ତା' ପରେ କ'ଣ ହେଲା ?"

"ସେଆଲୋ ଗାଁ ଜମିଦାରଙ୍କ ସିରସ୍ତାରେ କ'ଣ ଟଙ୍କା ଦଶଟାରେ କାମ କରୁଥିଲେ; ପୋଷେଇଲା ନାହିଁ ବୋଲି ଏଠିକି ଆସିଛନ୍ତି ।"

"ବେଶ୍ ତ, ମୋର ସେଥିରେ କ'ଣ ଗଲା ? ମୋର କିଛି ସିଲୁଅ ହବ ?"

ତା'ପରେ ଗୋଟେ କିଏ ଡାକପକେଇଲା ବୋଲି ମୁଁ ବୁଲିଆସିଲି । କିନ୍ତୁ ସବୁକଥା ମୋ ମନରେ ଲାଖିରହିଚି । ନାଏବଙ୍କ କଥା ଶୁଣି ପଦ୍ମାର ମୁହଁ କଳାପଡ଼ିଯିବା, ପୁଣି ତାଙ୍କ

ଘର କେଉଁଠି, ନାଁ କ'ଣ ବୋଲି ପଚାରିବା ବେଳେ ଭୟରେ ଥରିଉଠିବା—ଏ ସବୁର କାରଣ କ'ଣ ? ନାଏବଙ୍କ ସହିତ ପଦ୍ମାର କି ସମ୍ବନ୍ଧ ? ସେ ତ ଆସିଛନ୍ତି ଏଇ ସପ୍ତାହେ ହବ; ପଦ୍ମା ତାଙ୍କୁ ଦେଖିଲା କେଉଁଠାରେ ? ଠିକ୍ ଠିକ୍, ପଅରିଦିନ ନାଏବ ଗାଈଗୁହାଳଟା ଦେଖିବାକୁ ଆସିଥିଲେ; ପଦ୍ମା ଖାଇବାକୁ ଯାଉଥିଲା, ତାଙ୍କୁ ଦେଖି ପଳେଇଗଲା । ଠିକ୍—ସେଇଦିନୁ ତ ପଦ୍ମାର ମନରେ ଏ ପରିବର୍ତ୍ତନ । ତେବେ କି··· ? ସେ କି ସମ୍ଭବ ? ଚକ୍ଷୁ ପଡ଼ିଲା ମାତ୍ରକେ ପ୍ରେମ ହୋଇଯିବ ?—ସେ କେବଳ ଭୂତ କଥା ! ଉପନ୍ୟାସ ଲେଖକମାନଙ୍କୁ କିଛି ମିଳେନାହିଁ ବୋଲି ଅସମ୍ଭବକୁ ସମ୍ଭବ ବୋଲି ଧରିନେଇ ଗୁଡ଼େ ଏଣ୍ଡୁତେଣ୍ଡୁ ଲେଖିବସନ୍ତି । ଯଦିବା କାହାଠାରେ ସେ ରକମ କିଛି ଦେଖାଯାଏ, ତେବେ ସେ କେବଳ ଅତୃପ୍ତ ଆଶା, ଅଛନ୍ଦା କଳ୍ପନା ଏବଂ ଗରମ ମେଜାଜ୍‌ର ଫଳ । ପଦ୍ମା ପାଖରେ ସେ ସମ୍ଭବ ନୁହେଁ । ବିଶେଷତଃ କୁ' ଗୁଣରେ ? ନୀଳ ତୁଳନାରେ ନାଏବ ଗୋଟିଏ ବୁଢ଼ା ବାନ୍ଦର ! ନା, ନା, ତା' ନୁହେଁ । ତେବେ ?—ତେବେ··· ?

●

## ପରୀକ୍ଷା

ଏ ଘଟନାର ତିନି ଦିନ ପରେ ନୀଳକୁ ଭାରି ଜରହେଲା । ସେ ତା' ଶୋଇଲା ଘରୁ ଉଠି କୁଆଡ଼େ ଯାଇନାହିଁ । ପଦ୍ମା ବରାବର ତା' ପାଖରେ ବସିଚି । କେବଳ ଡାକ୍ତର ଆସିଲାବେଳେ ବା ଖାଇବା ପାଇଁ ଯାହା ସେ ଘରୁ ବାହାରକୁ ଆସେ । ଦିନେ ଦିନେ ମଧ୍ୟ ଡାକ୍ତର ଆସିଲାବେଳେ କବାଟ କଣରେ ଠିଆ ହୋଇ ଯାଇ କବାଟଟାକୁ ନିଜ ଉପରେ ମଡ଼ାଇ ରଖେ । ଆଜି ଜର ଟିକିଏ କମିଛି । ନୀଳ ପୁଞ୍ଜେ ପଥି କରି ମାଣ୍ଡି ଉପରେ ଠେସଦେଇ ବସିଛି । ମୁଁ ଓଷଧ ଶିଶିରୁ ଠିପି ବାହାର କରି ତା' ଶେଯ ପାଖରେ ଗୋଟେ କାଚ ଗିଲାସକୁ ଓଷଧ ଢାଳୁଛି । ପଦ୍ମା ଗୋଡ଼ତଳେ ବସି ଗୋଡ଼ ଉପରେ ହାତ ବୁଲାଉଛି । ଏପରି ସମୟରେ ପଇତା ପାଇକ ଆସି ସମ୍ବାଦ ଦେଲା, ନାଏବ ସାହେବ କ'ଣ କାଗଜପତ୍ର ଘେନି ସେଠାକୁ ଆସୁଚନ୍ତି । ମୁଁ ବୁଲି ଦେଖିଲି, ପଦ୍ମାର ମୁହଁରେ କୌଣସି ଭାବନାର ଚିହ୍ନ ନାହିଁ ।

ଯଦିବା କିଛି ଆସିଥିଲା; ତା'ହେଲେ ସେ ତାକୁ ଚାହିଁବା ପୂର୍ବରୁ ଘୋଡ଼ାଇ ନେଇଛି । ସେ ଖଟ ଉପରୁ ଓହ୍ଲାଇ ତରତର ହୋଇ କବାଟ କୋଣକୁ ଯାଉଚି, ନାଏବ ଆସି ଦୁଆରମୁହଁରେ; ନାଏବଙ୍କ ଦୃଷ୍ଟି ପଦ୍ମାର ମୁହଁରେ, ପଦ୍ମାର ଦୃଷ୍ଟି ମଧ୍ୟ ନାଏବଙ୍କ ଉପରେ ଦିହେଁଯାକ ଥକାମରା ହୋଇ ଠିଆହୋଇଗଲେ—ଯେପରି ଆଗ ସାମନାରେ ଭୀଷଣ ବିପଦ । କ୍ଷଣେମାତ୍ର; ତା'ପରେ ପଦ୍ମା କବାଟକଣକୁ ଗଲା ଓ ନାଏବ ଖଟ ପାଖକୁ ଧୀରେ ଧୀରେ ଚାଲିଆସିଲେ । କିନ୍ତୁ ସେ କ୍ଷଣକ ମଧ୍ୟରେ ସେମାନଙ୍କର ମୁହଁର ଭାବ ମୁଁ ବେଶ୍ ଲକ୍ଷ୍ୟ କରିନେଇଚି ! ବିସ୍ମୟ, କ୍ରୋଧ ଏବଂ ଆନନ୍ଦ ନାଏବଙ୍କ ମୁହଁରେ ! ଆଶଙ୍କା ଓ ଭୟ—ସର୍ବନାଶର ଭୟ ସେହି ପଦ୍ମାର ମୁହଁରେ ନାଚି ଉଠୁଥିଲା । ନାଏବ କାଗଜପତ୍ର ଘେନି ଆସିଥିଲେ ସତ, କିନ୍ତୁ ବୁଝାଇଲାବେଳେ ଅନ୍ୟମନସ୍କ; ପଦେ ପଦେ ବୁଡୁଥାନ୍ତି । ଏହା ପରେ ପ୍ରତ୍ୟକ୍ଷ ପ୍ରମାଣ ଆଉ କ'ଣ ଥାଇପାରେ ?

ପଦ୍ମାର ଜାତି, କୁଳ, ଗ୍ରାମ ବିଷୟରେ ସମସ୍ତେ ଅନଭିଜ୍ଞ । ମୋର ବର୍ତ୍ତମାନ ପୂର୍ଣ୍ଣ ଧାରଣା ଏଠାକୁ ଆସିବା ପୂର୍ବରୁ ବାପଘର ଗାଁରେ ପଦ୍ମାର ନାଏବଙ୍କ ସହିତ କୌଣସି ସମ୍ପର୍କ ଥିଲା; ଆଉ ସେ ସମ୍ପର୍କ କଦାପି ସୁଧାର ନୁହେଁ । ପଦ୍ମା ଜୀବନର ରହସ୍ୟ ମତେ ଭେଦ କରିବାକୁ ହବ, ମୋ ଜୀବନର ଏ ଆଜିଠାରୁ ଏକ ବ୍ରତ । କିନ୍ତୁ କାହିଁକି ? ପର ପାଇଁ ମୋର ଏତେ ମୁଣ୍ଡବଥା କ'ଣ ଲାଗି ? ପଦ୍ମାର ରହସ୍ୟ ଭେଦକରି ଦାଣ୍ଡରେ ପକେଇବାରେ ମୋର କି ଲାଭ ?

ପରର ବିପଦରେ ମୋ ମନରେ ଆନନ୍ଦ ଆଣିବାର ଶିଖିଲି କେଉଁଠାରୁ ? ନୀଳାମ୍ବର ମୋର ଅନ୍ନଦାତା; ପଦ୍ମା ମୋର ବିଶ୍ୱସ୍ତ ସଖୀ; ଏମାନଙ୍କ ଅପବାଦରେ, ଦୁଃଖରେ ମୋର କି ସୁଖ ଥାଇପାରେ ?

ମୁଁ ଯେ ମୋ ନିଜ ପ୍ରତି ଗୋଟିଏ ସମସ୍ୟା ହୋଇପଡ଼ିଛି, ତା' ଆଉ ମତେ ନୂଆକରି ଶିଖିବାକୁ ହବ ନାହିଁ । କିନ୍ତୁ ଗୋଟେ କଥା ବଡ଼ ସ୍ପଷ୍ଟ ଅନୁଭବ କରିଛି । ମୋ ମନ ଏତେ ତୀବ୍ର ଗତିରେ କେବେ ଚାଲିନଥିଲା; ମୋ ହୃଦୟରେ ଏପରି ସ୍ପନ୍ଦନ କେବେ ଆସିନଥିଲା; ମୋର କଳ୍ପନା ଦ୍ୱାର ଏତେ ଉନ୍ମୁକ୍ତ କେବେ ହୋଇ ନାହିଁ । ଏହି ନୂତନ ନୂତନ ମଦିରା ପରି ଏହାର ନିଶା ବଡ଼ ଟାଣ; ଆଉ ବଡ଼ ପ୍ରଲୋଭନପୂର୍ଣ୍ଣ । ନାଏବଙ୍କ ସହିତ ପଦ୍ମାର ପୂର୍ବ ସମ୍ବନ୍ଧ ମନେ ମନେ ଠିକ୍ କରିନେଇ ମୁଁ ବର୍ତ୍ତମାନ ଲାଗିପଡ଼ିଲି, ନାଏବଙ୍କ ନାମ ଓ ଗ୍ରାମ ବୁଝିବାରେ । ସେଥିପାଇଁ ମତେ ବେଶି କଷ୍ଟ ସହିବାକୁ ହୋଇ ନଥିଲା । ରାମା ଭଣ୍ଡାରି ପଇସା ଗଣ୍ଡାକ ଲୋଭରେ ବୁଝି ଆସି କହିଲା—ତାଙ୍କର ଘର ମାହେନ୍ଦ୍ରିପୁର ଶାସନ; ପୁରୀ ଜିଲାରେ, ଆଉ ତାଙ୍କର ନାମ ସୋମନାଥ ଦାସ ।

ମୁଁ ସେଇଦିନ ଯାଇ ନୀଳ ପାଖରେ ବସି ତା ଗୋଡ଼ରେ ହାତ ବୁଲାଇ ଦଉ ଦଉ କଥାବାର୍ତ୍ତାର ସୁଅ ନାଏବଙ୍କ ଆଡ଼ିକି ଟାଣିଆଣିଲି । ତା'ଠାରୁ ନାଏବଙ୍କ ପୂର୍ବ ଜୀବନ-ବୃତ୍ତାନ୍ତ ଆଉ ଥରେ ଶୁଣି ମୁଁ ହାତେ ଜିଭ କାଢ଼ି ଦେଇ କହିଲି—"ହଇରେ ନୀଳ, ସେ ତୋର ପିଲାଦିନର ସାଙ୍ଗ । ତାଙ୍କର ଆଜି ଗ୍ରହ ମନ୍ଦ ପଡ଼ିଲା ବୋଲି ତୋ ଦୁଆରେ ଗୋଲାମି କରିବାକୁ ଆସିଚନ୍ତି—କ'ଣ ତୁ ସବୁ କଥା ଭୁଲିଗଲୁ ? ସେ ମନରେ କ'ଣ ଭାବୁଥିବେଟି ! ତୁ ତାଙ୍କୁ ଦିନେ ଘରକୁ ଖାଇବାକୁ ଡାକିଲୁ ନାହିଁ, ଆଉ ସବୁ କଥା ଥାଉ । ମୁଁ ହୋଇଥିଲେ ତ ତାଙ୍କୁ ଆଣି ଖଞ୍ଜା ଭିତରେ ରଖାଇଥାନ୍ତି ।"

"ମୋ ମନରେ ସେ କଥା ଅନେକ ଦିନୁ ହେଲାଣି, ମଣିନାନୀ ! କେବଳ ତୁମେ ସବୁ ମନରେ କ'ଣ ଭାବିବ ! ତା'ହେଲେ ଆଜି ତାଙ୍କ ଜିନିଷପତ୍ର ଆମ ଖଞ୍ଜା ଭିତରକୁ ଘେନି ଆସିବା । ମଝି ଖଞ୍ଜା ଆଡ଼ିଘରେ ଟିକିଏ ନିକାସ୍ଥନିଆ ହବ ।"

"ହଉ, ହଉ, ଭଲକଥା । ଆହା ବିଚାରା, ଦଇବ କ'ଣ ନକରେ ! ଆଜି ଯେ ରାଜଗାଦିରେ, କାଲି ଗୋବର ଖାତରେ, ଏ ତ ସଂସାର ନିୟମ ।"

"ଆଉ କାହାରି କିଛି ଆପତ୍ତି ନାହିଁ ତ ?" ଏହା କହି ନୀଳ ପଦ୍ମା ଆଡ଼କୁ ଅନାଇଲା । ପଦ୍ମା କ'ଣ ଗୋଟେ କହିବାକୁ ଯାଉଥିଲା, ତାକୁ ଢୋକିଦେଇ ଦଣ୍ଡେକାଳ ଚୁପ ହୋଇ

କହିଲା—"ତୁମର ଆଉ ନାନୀଙ୍କର ଇଚ୍ଛା ହେଲେ ଆଉ ନାହିଁ କରିବାର ଅଧିକାର କାହାର ଅଛି ? ମୁଁ କ'ଣ ତୁମ କଥାରୁ ବାହାରେ ?" ଏ କଥାଗୁଡ଼ାକ ଏତେ ଫିଙ୍ଗା-ଫୋପଡ଼ା, ଓପରଠାଉରିଆ ଯେ ସେଥିରେ ତା' ମତ ଜାଣିଚାଟାଏ ନଥିବାର ମୁଁ ବେଶ୍ ଅନୁଭବ କରିପାରିଲି । ଯାହାହେଉ, କଥା ମୁତାବକ ସିଇଲେ ହୁକୁମ ହେଲା, ନାଏବଙ୍କୁ ଡାକିଆଣ । ପଦ୍ମା ଉଠିଯିବ ବୋଲି ହଉଥିଲା, ମୁଁ ବାଧା ଦେଇ କହିଲି—"କିଲୋ ଝିଅଟା, ଏତେଥର ଉଠୁଚୁ, ବସୁଚୁ କିଆଁ ? ନାଏବ ଘରର ଲୋକ; ନୀଳର ସାଙ୍ଗ, ସେ କ'ଣ ଆମର ପର ? ଚାରିବର୍ଷ ହେଲା ଘର କଲୁଣି । ଦଇବ ଦେଇଥିଲେ ତ ଯୋଡ଼ି ପୁଅର ମା' ହୋଇଥାନ୍ତୁ, ଏତେ ଲାଜ କାହିଁକି ମ ?" ନୀଳ ମଧ୍ୟ ମୋ କଥାରେ ଦୁଆ ଦେଲା । ପଦ୍ମା ଅଗତ୍ୟା ରହିଲା । ନାଏବ ଆସିଲେ । ଏ ବାର ମୁଁ ବରାବର ଲକ୍ଷ୍ୟ କରିଚି, ନାଏବ ଆମ ସହିତ କଥାବାର୍ତ୍ତା କରୁଥାନ୍ତି ସତ; କିନ୍ତୁ ଦୃଷ୍ଟିଟା ପଦ୍ମା ଉପରେ । ମୁଁ ଗୋଟେ ଛଳ କରି ପଚାରିଲି, "ହଇଲୋ ପଦ୍ମା, କୁଞ୍ଚି ଚାବିଗୁଡ଼ାକ କେଉଁଠି ରଖିଲୁ ?"

ପଦ୍ମା—"ମୋ ପାଖରେ ତ ନାହିଁ ।"

ପ୍ରଥମ ଶବ୍ଦରେ ପଦ୍ମାର ନା' ଧରି ଡାକିବାରେ, ମୁଁ ଠିକ୍ ଦେଖିଚି ନାଏବ ଚମକିପଡ଼ିଲେ । ପଦ୍ମାର ସ୍ୱର ଥରୁଥିଲା ।



## ମୁଁ ରହସ୍ୟ ଭେଦ କରିପାରବି ତ ?

ଏ ରହସ୍ୟ ଭେଦ କରିବା ନିମନ୍ତେ କି ଉପାୟ ନବା ଭଲ, ଏ କଥା ମୁଁ ଭାବି ଭାବି ଠିକ୍ କଲି, ପଦ୍ମା ଓ ନାଏବଙ୍କ ଗତିବିଧି ଲକ୍ଷ୍ୟ କରିବା ହିଁ ପ୍ରକୃଷ୍ଟ ପନ୍ଥା । ପଦ୍ମାର ଅତୀତ ଜୀବନ ରହସ୍ୟପୂର୍ଣ୍ଣ । ଆଉ ସେ ରହସ୍ୟର ଚାବି ନାଏବଙ୍କ ହାତରେ । ବର୍ତ୍ତମାନ ଅନ୍ତତଃ ଯେତେଦୂର ଜଣାଯାଇଚି, ନାଏବ ପଦ୍ମାର ଆତ୍ମୀୟ କେହି ନୁହଁନ୍ତି; ବୋଧହୁଏ ଶତ୍ରୁସ୍ଥାନୀୟ-ନହେଲେ ପଦ୍ମାର ମନରେ ଏ ଆଶଙ୍କା ଆବେଗ କାହିଁକି ହୁଅନ୍ତା ? ସୁତରାଂ କଳେବଳେ-କୌଶଳେ ନାଏବଙ୍କୁ ଏ ସ୍ଥାନରୁ ତଡ଼ାଇବା ନତୁବା ହାତକରିନେବା ନିମନ୍ତେ ପଦ୍ମା ଖୁବ୍ ଯତ୍ନ କରିବ । ତଡ଼ାଇବା ତା' ପକ୍ଷରେ ସୁବିଧାଜନକ ନୁହେଁ; କାରଣ ନାଏବ ସନ୍ଦେହ କରି ଯିବା ପୂର୍ବରୁ ହୁଏତ ରହସ୍ୟ ପ୍ରକାଶ କରିଦେଇ ପାରନ୍ତି । ନା, ତାଙ୍କୁ ହାତକରିନେବାରେ ହିଁ ପଦ୍ମାର ଲାଭ; କିନ୍ତୁ କି ଉପାୟରେ ? ଅର୍ଥଦାନ ବା ଆତ୍ମଦାନ ଛଡ଼ା ଆଉ କ'ଣ ହୋଇପାରେ ? ତା'ହେଲେ ଏ ଦିହିଙ୍କ ଭିତରେ ଏଣିକି ଯେ ଚିଠିପତ୍ର ଦିଆନିଆ ଚାଲିବ, ସେଥିରେ ସନ୍ଦେହ ନାହିଁ । ସୁତରାଂ ମୁଁ ପଦ୍ମାକୁ ଗୋଡ଼େ ଗୋଡ଼େ ଜଗିଲି । ମୋର ଅନୁମାନ ମିଥ୍ୟା ନୁହେଁ—ଦେଖିଲି, ପଦ୍ମା ମଧୁଆ ମା'କୁ ଡାକି କ'ଣ ଫୁସଫାସ୍ କରି କହୁଛି । ଦିନେ ନାହିଁ, କାଳେ ନାହିଁ, ଏତେ ତୁନି ତୁନି କଥାବାର୍ତ୍ତା କାହିଁକି ? ମଧୁଆ ମା' ତା'ହେଲେ କ'ଣ ଦୂତୀ ?

ପଦ୍ମାର ବୁଦ୍ଧି ଅଛି—କାରଣ ସେ ଠିକ୍ ଲୋକକୁ ଧରିଛି । ମଧୁଆ ମା' ବଡ଼ ଖାଣ୍ଟି ଲୋକ; ପଦ୍ମାକୁ ମଧ୍ୟ ଭାରି ଭଲପାଏ । ତା' ହାତରେ ଯଦି ଚିଠିପତ୍ର ପଡ଼େ ତା'ହେଲେ

ଆଦାୟ କରିବା ବଡ଼ କଷ୍ଟ । ସଂସାରରେ ସମସ୍ତେ ପଇସା ଲୋଭରେ ନିଜ ବାପକୁ ଫାଶିଦେଇ ପାରିବେ; କିନ୍ତୁ ମଧୁଆ ମା' ରଜ୍ୟ ଲୋଭରେ ବି ଏତେ ବିଶ୍ୱାସ କଥା କାହାରିକୁ କହିବ ନାହିଁ । ମୁଁ ଯଦି ଆଜି ଯାଇ ତାକୁ କିଛି କହେ, ତା'ହେଲେ ସେ ସାଙ୍ଗେ ସାଙ୍ଗେ ପଦ୍ମା ଆଗରେ ଫୋଡ଼ିଦେବ । ପଦ୍ମାର ମନରେ ସନ୍ଦେହ ହେଲେ ମୋର ସବୁ ଶ୍ରମ ପଣ୍ଡ ହୋଇଯିବ । କିନ୍ତୁ ଚିଠିଖଣ୍ଡ ତ ହାତ କରିବା ଦରକାର ? କି ଉପାୟରେ ? ଆଉ ମଧୁଆ ମା'କୁ ଏ ସ୍ଥାନରୁ ନ ତଡ଼େଇଲେ ବି ଭବିଷ୍ୟତ ସୁବିଧାଜନକ ନୁହେଁ । କ'ଣ କରିବି, ଠିଆହୋଇ ଭାବୁଚି, ମଧୁଆ ମା' ମଝି ଖଞ୍ଜା ଆଡ଼କୁ ଗଲା । ମୁଁ ତାର ପଛେ ପଛେ ଗଲି । ସେ ନାଏବଙ୍କ ଘର ଭିତରେ ପଶିଲା; ମୁଁ ଫେରିଆସିଲି । ମଧୁଆ ମା' ଚିଠିଦେଇ ଆସୁଛି, ମୁଁ ତାକୁ କହିଲି—"କିଲୋ କୁଣ୍ଡରେ ପାଣି ପୁରେଇ ସାରିଚୁ ?" ମଧୁଆ ମା' କହିଲା, "ନାହି ଗୋ ନାନି, ଯାଉଚି ଅଇଛିକା କରିଦେବି ।"

"ତୁ ଆଗ କାମ ଆଗ ନକରି ଏତେବେଳ ଯାଏ କ'ଣ କରୁଥିଲୁ ? ମୁଁ ଆଉ ଏ ଅଛଦରୀ, ଅଇଁଠାଗୋଟେଇଟାକୁ ପାଇଲି ନାହିଁ ! ଭୋଜନ ମାଇଲା ବେଳକୁ ତ ଫାଲୁଆ ଗୁଣ୍ଡା ଗଳ ଗଳ ଗଳିଯାଉଚି, କାମ କଲାବେଳକୁ ଗଣ୍ଡି ଭାଜିଯାଏ କାହିଁକି କେଜାଣି ?"

ମଧୁଆ ମା'—"ଏ ନାନି, ତମକୁ କ'ଣ ବାଇ ଲାଗିଚିକିଏ ? ସକାଳଟା ତ, ଇଲେ କ'ଣ କିଏ ନାଉଚି ? ମୁଁ ତ ଘଡ଼ିକ ଭିତରେ ସବୁ ଠିକ୍‌ଠାକ୍ କରିଦେବି !"

"ହାଡ଼ିଆଣୀ କୁ'ଠାର, ଯା, ଇଠୁ ପଳା," ଏହା କହି ମୁଁ ତାକୁ ଧକ୍କେ ପକେଇଲି । ସେ ମୁହଁମାଡ଼ି ପଡ଼ିଗଲା, ମୁଁ ସେଠାରୁ ଚାଲିଗଲି । ମୁଁ ଠିକ୍ କରି ଜାଣେ ମଧୁଆ ମା' ଏହାପରେ ଆଉ ଏଠି ନରହେ । ସୁତରାଂ ମୁଁ ବୁଲିବାଲି କାମ କରି ଆସିଲାବେଳକୁ ମଧୁଆ ମା' ପାଣି ଯୋଗାଡ଼ କରୁଥିବାର ଦେଖି ଆଶ୍ଚର୍ଯ୍ୟ ହେଲି । ମଧୁଆ ମା' କିପରି ରହିଲା ? ସେ ତ ଏସବୁ ସହି ରହିବା ଲୋକ ନୁହେଁ ! ତା'ହେଲେ କ'ଣ ପଦ୍ମାର କଥାରେ ? ମୋର ଏତେବେଳକୁ ହୋସ ହେଲା; ମଧୁଆ ମା' ପ୍ରତି ଏପରି ବିନା କାରଣରେ ରାଗ ଦେଖାଇ ମୁଁ ପଦ୍ମାର ମନରେ ଅଯଥା ସନ୍ଦେହ ଆଣି ଦେଇଚି; ସୁତରାଂ ଆଉ ବେଶି ଦୂର କଥାଟାକୁ ନନେଇ ମୁଁ ତୁନି ପଡ଼ିଗଲି ।

ଚିଠି ଖଣ୍ଡ ହାତକରି ନପାରି, ପୁଣି ମଧୁଆ ମା'କୁ ତଡ଼ିଦେବାର ଉପାୟରେ ନିଷ୍ଫଳ ହୋଇ ମୋର ମନଟା ପଦ୍ମା ପ୍ରତି ରାଗରେ ଉଚ୍ଛୁଳି ଉଠିଲା । ମୁଁ ବିଳମ୍ବ ଆଉ ସହିପାରିଲି ନାହିଁ । ଦିନେ ମଝି ଖଞ୍ଜାକୁ ଯାଇ ଦେଖିଲି, ନାଏବଙ୍କ ଘର ମେଲା; କେହି ନାହାନ୍ତି । ତୁନି ତୁନି ହୋଇ ଘର ଭିତରେ ପଶି ତାଙ୍କର କୋଟ୍ ପକେଟ ଭିତରୁ ଚାବିଥୋଳାଟା କାଢ଼ିନେଲି । ସେଥିରୁ ଗୋଟିଏ ଚାବି କାଢ଼ି ତାଙ୍କର ହାତ ବାକ୍ସରେ ଲଗେଇବାକୁ ଯାଉଚି, କାହାର ପାଦଶବ୍ଦ ବାହାରେ ଶୁଣି ଫେରିଆସିଲି । କିନ୍ତୁ ସେ ଘରୁ ବାହାରିଯିବାର ଆଉ ଉପାୟ ନାହିଁ । ନାଏବ ଆସି ଦୁଆର ମୁହଁରେ । ମୁଁ ଝଟକିନି ଦକ୍ଷିଣ ପଟ କାନ୍ଥମୂଳେ ଥିବା ସିନ୍ଦୁକର ପଛଆଡ଼େ ତୁନିହୋଇ ବସିଗଲି ଚାବି ଗୋଛାଟି ମୋର ହାତରେ ରହିଲା । ନାଏବ ଘର ଭିତରକୁ ଆସିଲେ । ତାଙ୍କ ପଛେ ପଛେ ଆଉ ଗୋଟାଏ ଅଜଣା ଲୋକ ଆସିଲା । ଲୋକଟା ଦେଖିବାକୁ ବଡ଼ କଦାକାର—ପାଞ୍ଚହାତ ଲମ୍ବା; କିନ୍ତୁ ହାଡେ ଓସାର ! ନାକ ଅଗଟା ଉପରକୁ ଉଠିଯାଇଚି, ଆଖି ଦୁଇଟା ନାଲ, କିନ୍ତୁ ଅତି ଛୋଟ । ଓପର ଓଠଟା ବହୁତ ଆଗକୁ ବାହାରି ପଡ଼ିଚି ।

ମୋଟ ଉପରେ ଠିକ୍ ଯମଦୂତ ପରି । ନାଏବ ନିଜ ଖଟ ଉପରେ ବସି ଅନ୍ୟ ଲୋକଟିକୁ ପାଖ କୁରୁଚିରେ ବସିବାକୁ ସଙ୍କେତ କଲେ । ଲୋକଟା ବସିସାରିଲା ପରେ ନାଏବ କହିଲେ—"ମୁଁ ତୋର କି କ୍ଷତି କରିଚି ଯେ ତୁ ମୋ ସାଙ୍ଗରେ ଏପରି ଲାଗିବୁ ? ତୋର ଦାଉରେ ଦେଶ ଛାଡ଼ିଲି, ଭାଇବନ୍ଧୁ, କୁଟୁମ୍ବ ସବୁ ଛାଡ଼ିଲି, ଚୋର ଡକେଇତଙ୍କ ପରି ଇଠେଇଁ ସିଠେଇଁ ମୁଣ୍ଡଗୁଞ୍ଜି ରହିଲି; ତଥାପି ତୋର ତୃପ୍ତି ହେଲା ନାହିଁ ? ଆଉ କ'ଣ ଚାହୁଁ ? ମୋର ତ ଆଉ କିଛି ନାହିଁ; ଅଦ୍ୟଭେକ ହୋଇ ଆସି ଏଠାରେ ଭାତମୁଠାକ ପାଇଁ ରହିଚି, ତୁ ପୁଣି ମୋ ପଛରେ କିଆଁ ?"

ଆଗନ୍ତୁକ—"ତୋର ସବୁ କଥାର ଜବାବ ହାମେ ଏକାଥରକେ କେମିତି ଦେବି । ହାମେ କିଆଁ ଆସିଚି ତା' ତୋତେ ବେଶ୍ ମାଲୁମ୍ । ହାମର ଟଙ୍କା ଦରକାର, ତା' ତୋତେ ଦବାକୁ ହବ ।"

ବାପରେ କି ଗର୍ଦ୍ଦଭ ସ୍ୱର ! ସେ ସ୍ୱରରେ ପୁଣି କି ଶ୍ମଶାନ ବିଭୀଷିକା !

ନାଏବ—"ଟଙ୍କା ? ଟଙ୍କା ମୁଁ କେଉଁଠୁ ପାଇବି ? ମୋର ଯାହା ଥିଲା ସବୁ ତ ନେଇଚୁ ? ମୁଁ ଯେ ଟଙ୍କା କୋଡ଼ିଏଟାର ଚାକର !"

ଆଗନ୍ତୁକ—"ତୁ ଚୋରି କର, ଡକେଇତି କର, ହାମର ଟଙ୍କା ଦରକାର, ଦରକାର ।"

ନାଏବ—"ଦେଖ ଭାଇ, ମୁଁ ତୋ ଗୋଡ଼ତଳେ ପଡ଼ୁଚି—ତତେ ନେହୁରା ହେଉଚି, ମତେ ଆଉ କଲବଲ କର ନାହିଁ । ମୁଁ ଖୁବ୍ ଭୋଗିଚି; ଥିଲି ଭଦ୍ର ଶିକ୍ଷିତ ଯୁବକ; କିନ୍ତୁ ତୋର ଦାଉରୁ ନକରିଚି ଏପରି ପାପ ନାହିଁ । ମୁଁ ଏଠାରେ ଟିକିଏ ଜୀବନଟାକୁ ସଳଖି ନେବି ବୋଲି ଭାବିଚି; ତୁ ପୁଣି ଆସି ବାଧା ଦେଲେ ସବୁ ଭାଜିଯିବ; ଏ ଆତ୍ମାର ଆଉ ସଦ୍‌ଗତି ହୋଇପାରିବ ନାହିଁ ।"

ଆଗନ୍ତୁକ—"ହାମେ ଆତମା-ଫାତମା କି ଜାଣୁ ? ହାମର ଟଙ୍କା ଚାହିଁ, ପାପ-ପୁନିଅ କରିବୁ ବୋଇଲେ ତୁ କରିବୁ, ହାମର କ'ଣ ଗଲା ! ହାମେ ଯେବେ କଷ୍ଟ କରି ତୁନି ହୋଇ ରହିବୁ ତା'ହେଲେ ତ ହାମର ବକ୍‌ସିସ୍ ପାଇବା ଫାବେ ।"

ନାଏବ—"ତେବେ ବେଶ୍, ମୋ ପାଖରେ ଟଙ୍କା ନାହିଁ । ଟଙ୍କା ଦବାକୁ ରାଜି ନୁହେଁ ।"

ଆଗନ୍ତୁକ—"ଭଲ ଭଲ ! ଏଇ ଯେ ମରଦକା ବାତ୍ । ଥାଆ, ହାମ ଯାଉଚି ।" ଏହା କହି ଉଠିଲା ।

ନାଏବ ବ୍ୟସ୍ତହୋଇ ଆଶଙ୍କାଜଡ଼ିତ ସ୍ୱରରେ କହିଲେ, "କୁଆଡ଼େ ?"

ଆଗନ୍ତୁକ—"ଫାଣ୍ଡିକି, ଆଉ କୁଆଡ଼େ ?"

ନାଏବ—"ଓଃ ଭଗବାନ୍ ! ତମର ରାଜ୍ୟରେ କି ନ୍ୟାୟ ନାହିଁ ? କ୍ଷମା ନାହିଁ ? ଗୋଟାଏ ସାମୟିକ ଦୁର୍ବଳତାରେ, ଇନ୍ଦ୍ରିୟର ଗୋଟାଏ ଚଳନ୍ତି ଉତ୍ତେଜନାରେ ଯାହା କରିବାକୁ ହୁଏ, ତା'ର କି ଶାସ୍ତି ଏତେ କଠୋର ? ଗଭୀର ଅନୁତାପରେ, ଦୁଃସହ ଯନ୍ତ୍ରଣାରେ କି ସେଇ ଗୋଟିଏ ପାପର ପ୍ରାୟଶ୍ଚିତ୍ତ ହୋଇନପାରେ ? ରକ୍ତମାଂସର ଶରୀର ପାଇଁ, ପ୍ରଲୋଭନ ସହଜ ଇନ୍ଦ୍ରିୟବୃତ୍ତି ପାଇଁ ସଂସାରକୁ ଆସିବାକୁ ଭ୍ରୂଣ ତୁମକୁ ଅନୁରୋଧ କରିଥିଲା କି ? ଗୋଟାଏ

ଦଦରା ତଙ୍କାରେ ତାକୁ ବସେଇଦେଇ ଅକୂଳ ସାଗରରେ ଛାଡ଼ିଦେଲେ ସେ ଯେ ବୁଡ଼ିଯିବ, ସେଥିପାଇଁ ଦାୟୀ କିଏ ? ନା ନା, ଭୁଲ; ନ୍ୟାୟ ଅନ୍ୟାୟ, ପାପପୁଣ୍ୟ, ସ୍ୱର୍ଗ ନରକ ସବୁ ଭୁଲ । ସଂସାରରେ ଏକମାତ୍ର ସତ୍ୟ—ସୟତାନ ଓ ତା'ର ରାଜ୍ୟ ନରକ ! ତା'ହେଲେ ମୋର ଏ ପାପର ଭୟ ! ଅମୁକ୍ତିର ଆଶଙ୍କା····"

ଆଗନ୍ତୁକ—"ହା ହା, ବେଶ୍ କହିବୋଲିପାରୁ ତ; କିନ୍ତୁ ଭାଇ ହାମର ଟଙ୍କା ଦରକାର; ଖାଲି ହାଉଆରେ ତ ପେଟ ପୁରିବ ନାହିଁ ।"

ନାଏବ—"ଠିକ୍, ଏସବୁ ଖାଲି ହାଉଆ ସବୁ ! ସତ ଏକା ଟଙ୍କା—ଯେ କୌଣସି ଉପାୟରେ ପାଇବାକୁ ହବ । ବେଶ୍, ମତେ ଗୋଟିଏ ଦିନ ସମୟ ଦେ; ମୁଁ କିଛି ଜୋଗାଡ଼ କରି ତତେ ଦେଇପାରିବି ।"

ଆଗନ୍ତୁକ—"ଆଚ୍ଛା, ହଉ, ଆଉ କ'ଣ କରାଯାଏ ? କାଲି ଏତିକି ବେଳକୁ ପାଞ୍ଚଶ ଟଙ୍କା ନ ପାଇଲେ····"

ନାଏବ—"ନାଇଁ, ଆଉ କହିବା ପ୍ରୟୋଜନ ନାହିଁ । ପରଦିନ ସକାଳେ ଆସି ନେଇଯିବୁ ।"

ଆଗନ୍ତୁକ ମୁହଁରେ ନରକର ଆନନ୍ଦ—ନାଏବଙ୍କ ଆଖିରେ ସୟତାନର ଦର୍ପ !!



## ନାଏବଙ୍କ ପତ୍ର

ମୁଁ ସିନ୍ଦୁକ ପଛଆଡ଼େ ବସି ସବୁ ଶୁଣିଚି । ଲୋକଟା କିଏ ? ଏ ତ ସ୍ଥାନୀୟ କେହି ନୁହେଁ ? ୟାର ନାଏବଙ୍କ ଉପରେ ଏ କିପରି ପ୍ରଭାବ ? ନାଏବଙ୍କର ପିତା ମକଦ୍ଦମା କରି ସର୍ବସ୍ୱ ଖୁଆଇଥିଲେ ବୋଲି ଶୁଣିଚି; କିନ୍ତୁ ତାଙ୍କ କଥାରୁ ତ ଯେପରି ଶୁଣୁଚି ନାଏବଙ୍କ ଧନତକ ଏଇ ଦଇବଛଡ଼ାଟାର ପେଟରେ ! ବାପରେ, କି ସେ ରୂପ ! କି ସେ ସ୍ୱର ! ଲୋକଟା କେଡ଼େ ନିଷ୍ଠୁର ! ନାଏବ ଯେପରି ହତାଶାରେ କଥାଗୁଡ଼ାକ କହିଲେ, ଜଣାପଡ଼ିଲା ଯେପରି ତାଙ୍କ ଅନ୍ତ ଦୁହିଁହୋଇ ଆସୁଚି; କିନ୍ତୁ ଲୋକଟାର ଚିତ୍ତ ଟିକିଏ ଟଳିଲା ନାହିଁ । ମୁଁ ତ କାନ୍ଦି ପକେଇଥିଲି, କୋହ ଆସୁଥିଲା—ଧରାପଡ଼ିଥିଲି ତ; କିନ୍ତୁ ନାଏବ ଏତେ ବିଚଳିତ କାହିଁକି ? ଚଳନ୍ତ ଉତ୍ତେଜନାର କେଉଁ ପାପ ସେ ଘୋଡ଼ାଇବାକୁ ଚାହାନ୍ତି ? ସେ ପାପ ଯେ ନିଶ୍ଚେ ଗୁରୁତର ସେଥିରେ ସନ୍ଦେହ ନାହିଁ । ବୋଧହୁଏ ନରହତ୍ୟା—ନାଏବ ନରହନ୍ତା ? ନା, ନା, ତା' ହେଲେ କ'ଣ ଚୋରି, ଡକେଇତି—କ'ଣ କିଏ କହିବ ? କିପରି ଜାଣିବି ? ଏଇ ପାପର ରହସ୍ୟ କି ପଦ୍ମାର ରହସ୍ୟ ? ପଦ୍ମା କ'ଣ ଏ ସମ୍ବନ୍ଧରେ ଜାଣେ ? ନା ସେ ସେଥିରେ ଭାଗୀ ? ନା, ପଦ୍ମାର ରହସ୍ୟ ସହିତ ଏ ରହସ୍ୟର ସମ୍ବନ୍ଧ ନାହିଁ ? ଏ ଲୋକଟା କ'ଣ ଜାଣେ ? ସେ ଯାହା ଜାଣେ ତା' ଯଦି ପଦ୍ମାର ରହସ୍ୟ ହୋଇଥାଏ ? ନ ହୋଇଥିଲେ ମଧ୍ୟ ସେ ଯେତେବେଳେ ନାଏବଙ୍କ ସମ୍ବନ୍ଧରେ ସବୁ ଜାଣେ, ଆଉ ନାଏବ ପଦ୍ମାର ପୂର୍ବ ଜୀବନ ଜାଣନ୍ତି, ଏ ଲୋକଟା ତ ସେ କଥା ଜାଣିଥିବ ? ମୋର କି ଉପାୟ ଅବଲମ୍ବନ କରିବା ଉଚିତ ?

କିଛି ଠିକ୍ କରିପାରିଲି ନାହିଁ । ରହସ୍ୟ ମଧ୍ୟରେ ନୂତନ ଏକ ରହସ୍ୟର ଛାଇ ଆସି ପଡ଼ିବାରୁ ହୃଦୟଟା କିମିତି ଗୁଡ଼େଇ-ତୁଡ଼େଇ ହୋଇଗଲା । ମୋର ପୂର୍ବଚିନ୍ତିତ ଉପାୟଗୁଡ଼ାକ ସବୁ ଯେପରି ଗୋଟାଏ ପବନର ଫୁଙ୍କାରରେ ଉଡ଼ିଗଲା । ମତେ ଲାଗିଲା, ଯେପରି ଏ ରହସ୍ୟର ଫଳ ଭଲ ନୁହେଁ । ରହସ୍ୟ ଯାହା ଇଚ୍ଛା ତା' ହଉ, ଏ ଲୋକଟା ବଡ଼ ନିଷ୍ଠୁର ପ୍ରକୃତିର; ଟଙ୍କା ପାଇଁ କ'ଣ କରିନପାରେ ଏପରି କାର୍ଯ୍ୟ ନାହିଁ । ସେ ନାଏବଙ୍କ ଉପରେ ଯେ ହାତ ପାଇଚି, ସେଥିରେ ସେ ନିଜର ଇଚ୍ଛାମତେ ନାଏବଙ୍କୁ ଖେଳାଇ ପାରେ । ନାଏବଙ୍କର ପ୍ରଭାବ ପଦ୍ମା ଉପରେ ଖୁବ୍ ବେଶି ନିଶ୍ଚୟ । ସେ ଏ ପିଶାଚର ଦାଉରେ ପଡ଼ି ପଦ୍ମାକୁ ଖେଳେଇବ । ନୀଳ ପଦ୍ମାକୁ କେତେ ଭଲପାଏ । ମୁଁ ଦେଖିଲି, ଏ ରହସ୍ୟର ଫଳାଫଳ ସ୍ୱରୂପ ନୀଳର ସର୍ବନାଶ । ମୋର କଲିଜା ଥରିଉଠିଲା ।

ସେ ସନ୍ଧିରୁ ବାହାରି ଥଣ୍ଡା ପବନରେ ବସି ଟିକିଏ ପୂର୍ବାପର ଭାବିନେବି ବୋଲି, ମୁଁ ଚାହିଁ ଦେଖିଲି—ନାଏବ ବସି କ'ଣଗୁଡ଼େ ଲେଖୁଚନ୍ତି । କିଛି ସମୟ ପରେ ସେ ଯେ କାଗଜ ଖଣ୍ଡକ ଉପରେ ଲେଖୁଥିଲେ ତାକୁ ଲେଉଟାଇ ପକେଇ ବାହାରକୁ ଚାଲିଗଲେ । ମୁଁ କିଛି ସମୟ ସେହିପରି ଅପେକ୍ଷା କରି ରହିଲି । ଦେଖିଲି ସେ ଫେରିଆସିଲେ ନାହିଁ । ଆସ୍ତେ ଆସ୍ତେ ସିନ୍ଦୁକ ପଛଆଡୁ ବାହାରି ଆସିଲି । ଉଣ୍ଡି ଦେଖିଲି ପିଣ୍ଡାରେ କେହି ନାହାନ୍ତି; ପାଚିରି କବାଟ ମେଲା । ସମ୍ଭବତଃ ମୋରି ପରି ମେଜାଜ୍ ଗରମ ହୋଇଯିବାରୁ ନାଏବ ଦାଣ୍ଡକୁ ଟିକିଏ ଥଣ୍ଡା ପବନରେ ସବୁକଥା ଭାବିନେବେ ବୋଲି ଯାଇଚନ୍ତି । ମୁଁ ଟେବୁଲ ପାଖକୁ ଫେରିଆସି ସେ କାଗଜ ଖଣ୍ଡି ଓଲଟାଇ ଦେଖିଲି । ସେ ଚିଠି ପଦ୍ମା ପାଖକୁ, ମୋର ପ୍ରାଣ ଆନନ୍ଦରେ ନାଚିଉଠିଲା । ଅବଶେଷରେ ମତେ ବୋଧହୁଏ ସମୁଦାୟ ରହସ୍ୟ ଭେଦ କରିବାକୁ ସୁବିଧା ମିଳିଲା । ଧନ୍ୟ ଭଗବାନ ! ତା' ପରେ ଚିଠିଖଣ୍ଡି ପଢ଼ିଲି । ତାହା ଏହି—

ପଦ୍ମା ମୋର !

ତୋର ଚିଠିଖଣ୍ଡି ଆଜି ପାଇଥିଲି । ମୁଁ ଯେ ଏଠାକୁ ଆସିଚି, ତୋର ଅନୁସରଣ କରି—ଏ ଆଶଙ୍କା ତୋର ଭୁଲ । ତୁ ଏଠାରେ ଅଛୁ ବୋଲି ମୁଁ ଜାଣେ ନାହିଁ । ସେଦିନ ରୋଗଶେଯ ପାଖରେ ଦେଖି ମନରେ ଟିକିଏ ସନ୍ଦେହ ହୋଇଥିଲା ମାତ୍ର; କିନ୍ତୁ ପରେ ଅସମ୍ଭବ ଭାବି ମୁଁ ତାକୁ ପାସୋରି ପକାଇଥିଲି । ତା'ପରେ ଯେତେବେଳେ ଦ୍ୱିତୀୟଥର ତୋ ସହିତ ସାକ୍ଷାତ ହେଲା, ତୋର ନାମ ଶୁଣିଲି, ତୋ ସ୍ୱର ମୋ କାନରେ ବାଜିଲା, ସେତେବେଳେ ଅବଶ୍ୟ ସବୁ ସନ୍ଦେହ ତୁଟିଗଲା; କିନ୍ତୁ ତୁ ଏଠାରେ କିପରି ? ଲେଖିଚୁ, ତୁ ନୀଳାମ୍ବର ବାବୁଙ୍କର ବିବାହିତା ପତ୍ନୀ । ମୁଁ ବିଶ୍ୱାସ କରିବି କିପରି ? ତୋର ପୂର୍ବ ଜୀବନ ଯେ ଏହାର ପ୍ରତିକୂଳ ? ତୁ ଯଦି ଧର୍ମର ଭୟ ନକରି, ସାମାଜିକ ପ୍ରଥାକୁ ଖାତିରି ନକରି, ଏ କାର୍ଯ୍ୟ କରିଥାଉ, ତା'ହେଲେ ହାୟ ହତଭାଗିନୀ, ଏହାର ପରିଣାମ କ'ଣ ହବ ? ଯଦି କେବେ ଏ ରହସ୍ୟ ନୀଳାମ୍ବର ବାବୁ ଜାଣିପାରନ୍ତି ବା ତାଙ୍କ ଜାଣିବା ପୂର୍ବରୁ ଏ ଗ୍ରାମରେ ରାଷ୍ଟ୍ର ହୋଇପାରେ, ତା'ହେଲେ ତୋର କି ଦଶା ହବ ? ନୀଳାମ୍ବରଙ୍କର ମଧ୍ୟ କି ଅପମାନ ହେବ ? କିନ୍ତୁ ତୋର ବିବାହ ଯେ ଏକ ରହସ୍ୟ । ମୁଁ ବୁଝିପାରୁ ନାହିଁ । ଯାଉ ସେକଥା; ଯାହା ହେବାର ହୋଇଚି;

ବର୍ତ୍ତମାନ ପାଇଁ ଅନ୍ତତଃ ମୋ ଛଡ଼ା ଏ ରହସ୍ୟ-ଭେଦର ଉପାୟ ଅନ୍ୟ ନାହିଁ । ସେଥିପାଇଁ ତୁ ମତେ ଅନୁରୋଧ କରୁଚୁ, ପୂର୍ବ-ସ୍ନେହର ଖାତିରିରେ ମୁଁ ଏଠାରୁ ଚାଲିଯିବି । ମୁଁ ତ ସେହି ପୂର୍ବ-ସ୍ନେହର ନଜିର ଦେଇ କହିପାରେଁ—ତତେ ଯେତେବେଳେ ପାଇବି, ତୋ ସହିତ ମିଳନର ଆଶା ନ ରଖିଥିଲେ ହେଁ ତୋର ପାଖ ଛାଡ଼ି ଆଉ କୁଆଡ଼େ ଯିବି ନାହିଁ । ପଦ୍ମା, ପଦ୍ମା, ଏ କେତେ ଦିନ ମୁଁ ଯାହା କାନ୍ଦିଚି, ଯାହା ଭୋଗିଚି ! ତୁ କାଶୀ ଚାଲିଯିବା ଦିନଠାରୁ ଏ ସଂସାର ମୋ ପକ୍ଷରେ ଅନ୍ଧାର ହୋଇଗଲା । ବସନ୍ତର ସେ ବୀଣା, ଉଦ୍ୟାନର ସେ ହାସ୍ୟ, ପ୍ରକୃତିର ସେ ସପ୍ତସ୍ୱର ସବୁ ଯେପରି ହଠାତ୍ ବନ୍ଦ ହୋଇଗଲା । ନିରାଶା, ନିରାନନ୍ଦ ଯେପରି ମତେ ଘୋଡ଼େଇ ରଖିଥିଲା । ତତେ ନୀଳାମ୍ବରଙ୍କର ପତ୍ନୀରୂପେ ଦେଖି ମୋ ମନରେ····ନା, ମୋର ଯିବାରେ ଟିକିଏ ବିଳମ୍ବ ଅଛି । ମୁଁ ଗରିବ, ପେଟ ଦାଉରେ ଏଠାରେ ଚାକିରି କରୁଚି । ଏତେଶୀଘ୍ର ଚାଲିଗଲେ ଯେ ମତେ ଓପାସରେ ରହିବାକୁ ହବ ? ଅନ୍ତତଃ ଆଉ ଖଣ୍ଡେ ଚାକିରି ଯୋଗାଡ଼ କରିବା ପର୍ଯ୍ୟନ୍ତ ମୁଁ ଏଠାରୁ ଟଳିପାରୁ ନାହିଁ । ତେବେ ତୁ ଯଦି କାଲି ରାତିରେ ଥରେ ଏଠାକୁ ଆସିପାରନ୍ତୁ—ମୋର କେତେଗୁଡ଼ିଏ କଥା ଅଛି, ମୁଁ କହିବି; ତା'ପରେ—ତା' ପରେ—ଯାଉ, ମୋର ଭାଗ୍ୟ ନେଇ ମୁଁ ବୁଲିବି । ତୁ ସୁଖରେ ଅଛୁ ଜାଣିଲି, ଏଇ ମୋ ପକ୍ଷରେ ଯଥେଷ୍ଟ । ମୋର ଅନୁରୋଧ ଥରେମାତ୍ର କାଲି ରାତିରେ ସାକ୍ଷାତ ହେବ । ତା' ପରେ ଈଶ୍ୱରଙ୍କ ଶପଥ କରି କହୁଛି, ମୁଁ ତୋର ବାଟ ମାଡ଼ିବି ନାହିଁ । ମୁଁ ଚେଷ୍ଟାକରି ନୀଳାମ୍ବରଙ୍କୁ ସ୍ଥାନାନ୍ତରିତ କରୁଛି କାଲି ଦିନକ ପାଇଁ । ନିଶ୍ଚୟ ଆସିବୁ । ଆସିଲେ ମୁଁ ଯିବି; ସେଥିରେ ତୋର ମଧ୍ୟ ମଙ୍ଗଳ । ସାଙ୍ଗରେ ଟଙ୍କା କିଛି ଆଣିଥିବୁ । କାରଣ ମୁଁ ଚାଲିଗଲେ କିଛିଦିନ ତ ଅନ୍ତତଃ ବଞ୍ଚିରହିବି ?

କ'ଣ ଭାବୁଚୁ ପଦ୍ମା ! ମତେ ଆଜି ଟଙ୍କା କେତେଟା ଲାଗି ତୋ ଦୁଆରେ ଭିକ୍ଷା ମାଗିବାକୁ ହେଲା—ତୋର ଦୁଆରେ ।

ଅଭାଗା
ସୋମନାଥ

ମୁଁ କଞ୍ଚିବିଡ଼ାଟି ଯଥାସ୍ଥାନରେ ରଖିଦେଇ ଚାଲିଆସିଲି ।



## ଚୋରର ଘରେ ସିନ୍ଧି

ମନୁଷ୍ୟର ଆଶାଗୁଡ଼ାକ ପାଣିଫୋଟକା ପରି । ଦଇବ ଯେପରି ଆଢୁଆଳରେ ବସି ମନୁଷ୍ୟର ଏହି ଆଶାଗୁଡ଼ାକ ଫୁଟି ଉଠିବାର ଦେଖି ହସୁଥାଏ; ତା'ର ସେହି ହସ ପବନରେ, ସେ ଫୋଟକା ପୁଣି ପାଣିରେ ମିଳେଇଯାଏ । ମୁଁ କେତେ ଆଶା କରି ଚିଠିଖଣ୍ଡି ଉଠେଇ ନେଇଥିଲି; ଭାବିଥିଲି ଚିଠିରୁ ରହସ୍ୟଭେଦ ହେବ; କିନ୍ତୁ ଚିଠିରେ ତ ସେପରି କିଛି ଦେଖିଲି ନାହିଁ । କେବଳ ଏତିକି ବୁଝିପାରିଲି-ପଦ୍ମା ଆଜି ରାତିରେ ନିଶ୍ଚେ ନାଏବଙ୍କ କୋଠରିକୁ ଯିବ ।

ସେଠାରେ ସେମାନଙ୍କ ମଧ୍ୟରେ ଯେ କଥାବାର୍ତ୍ତା ହବ, ତାହା ଶୁଣିପାରିଲେ ମୋର ସବୁ ପରିଶ୍ରମ ସଫଳ ହେବ । ଏଇ ଆଶାରେ ହୃଦୟ ବାନ୍ଧି ମୁଁ ଘର କାମରେ ସକାଳୁ ଉଠି ଲାଗିଗଲି ।

ଆଜି ଶାମ୍ବ-ଦଶମୀ । ରାତିରୁ ଦାସିଆ ମା', ମାଳତୀ, ପିଠଉ ବାଟି, ଚୂନା କୁଟି ରଖିଥିବେ । ବ୍ରାହ୍ମଣ ପଚାଶ ଜଣଙ୍କର ଖଟଣି; ସୁତରାଂ ମୁଁ ତର ତର ହୋଇ ହାଣ୍ଡିଶାଳକୁ ଗଲାବେଳେ ଦେଖିଲି, ମଧୁଆ ମା' ମୋ ଆଡ଼କୁ ଆସୁଚି । ସେ ମତେ ଦେଖି କହିଲା, "ସାଂନ୍ତାଣୀ ! ଛୋଟ ମା'ଙ୍କୁ ଭାରି ଜର, ସେ ଶେଯରୁ ଉଠିପାରୁ ନାହାନ୍ତି । ମତେ ପାଖରେ ବସି ମୁଣ୍ଡ ଚିପିବାକୁ କହିଛନ୍ତି । ମୁଁ କ'ଣ କରିବି ?" ଏହାର ମାନେ ?—ମତେ ଠକିଦେଇ ମଧୁଆ ମା'କୁ ହାତରେ ରଖିବାର ଉଦ୍ଦେଶ୍ୟ ନୁହେଁ ତ ? ପଦ୍ମା କ'ଣ ଚିଠି ଏତେ ଶୀଘ୍ର ପାଇସାରିଲାଣି ?

ମୁଁ କପଟ-ବିସ୍ମୟରେ କହିଲି—"ମଲା, ପୋଡ଼ପାଡ଼ କପାଳ । ଆଜି ଶମ୍ବର ଦଶମୀ, କେତେ ପିଠାପଣା ହବ, ବାରଲୋକ ଖାଇବେ; ଆଉ ଘର ବୋହୂଟା ପାଟିରେ ଟିକିଏ ଲାଗିବ ନାହିଁ ? ପୁଅଟା ତ ଜରରୁ ଉଠିଛି ଯେ ଖାଇବ କି ନାହିଁ, ସେ ତ ତହିଁକି ପିଠାପଣାକୁ ଯୁ ଶୁଖ ପାଏ । ମୁଁ ଏବେ କାହିଁକି ଏତେ ସେକିଚିଲି କରୁଚି ? ତୁ ଯା, ହାଡ଼ି ନାନୀକି କହିବୁ, ଆରିଶା, ଛିଞ୍ଚପିଠା ହେରିକା ଯାହା କରୁଥିଲେ ସବୁ ବନ୍ଦ କରିବେ । ଖାଲି ବ୍ରାହ୍ମଣଙ୍କ ପାଇଁ, ଘରର ଚାକରବାକରଙ୍କ ପାଇଁ ଯାହା ହବାର କଥା ହବ । ମୁଁ ଯାଉଛି ପଦ୍ମାକୁ ଟିକିଏ ଦେଖିଆସେ ।"

ମଧୁଆ ମା' ଚାଲିଗଲା । ମୁଁ ଯାଇ ଦେଖିଲି ସତରେ ପଦ୍ମାକୁ ଭାରି ଜର; ଦେହରେ ଧାନ ପକେଇ ଦେଲେ ଖଇ ଫୁଟିଯିବ । ମୁଣ୍ଡବ୍ୟଥାରେ ବିକଳ ହୋଇ ସେ ଛାଟିପିଟି ହେଉଚି । ମୋ ମନରେ ଟିକିଏ ଦୁଃଖ ହେଲା—ନଦେଖି ବିଚାରୀକୁ କେତେ ସନ୍ଦେହ କରିଥିଲିଟି । ତା' ପାଖରେ ବସି ମୁହଁରେ ହାତରେ ଟିକିଏ ଟିକିଏ ହାତ ବୁଲେଇ ଦେଲି । ସେ ଆଖି ଫିଟେଇ ମୋ ଆଡ଼କୁ ଟିକିଏ ଚାହିଁଲା । ତା'ପରେ ବଡ଼ କ୍ଷୀଣକଣ୍ଠରେ କହିଲା—"ନାନୀ, ଭାରି ଶୋଷ ।" କ'ଣ କରିବି ? ଜର ହେଇଚି, ପାଣି ଦଉଚି କିମିତି ? ଦଉଚି ବୋଲି କହି ମୁଁ ସେଠାରୁ ଉଠି ଆସିଲି । ଦିଇଟା ପୋଇଲୀ ତା' ପାଖକୁ ପଠେଇ ଦେଇ ନୀଳକୁ ଡକେଇ ପଠେଇଲି । ନୀଳର ମନରେ ସୁଖ ନାହିଁ । ସେ ବୋଧହୁଏ ୟାକୁ ଜର ହେବାର ଦେଖି ଯାଇଛି । ତାକୁ କହିଲି, "ଆରେ, ବୋହୂଟାକୁ ସାତସାଇ ଜର ! ଟିକିଏ କାହାକୁ ଡାକିପଠାନ୍ତୁ ? ଶୋଷ ଶୋଷ ବୋଲି ଆଉଟି ହୋଇଗଲାଣି !"

ନୀଳ କହିଲା—"ହରି କବିରାଜଙ୍କ ପାଖକୁ ମଣିଷ ପଠେଇଚି । ସେ ଆସୁଥିବେ । ସହରକୁ ଡାକ୍ତର ପାଇଁ ତାର କରିଛି—ସେ ଆସୁ ଆସୁ ଅନ୍ତତଃ ସନ୍ଧ୍ୟା । ରାତିରେ ତାଙ୍କ ଖାଇବା ପିଇବା ଯୋଗାଡ଼ ହବ । ମୁଁ କିଛି ଖାଇବି ନାହିଁ, ପେଟଟା କାହିଁକି ଭଲ ଲାଗୁ ନାହିଁ ।"

"ୟା କୁ' ସଂସାରରେ ହେଲାଣି ? ଆଜି ଶମ୍ବର ଦଶମୀ; କେତେ ଲୋକ କେତେ କଥା କରି ଖାଇବେ । ଆଉ ତୁ ଠିଆ ଉପାସରେ ରହିବୁ କିପରି ମ ? ୟା ତ ହୋଇପାରିବ ନାହିଁ!"

"ନହୋଇ ପାରିଲେ ଆଉ କ'ଣ ମରିକରି ଖାଇବି ? ଯେବେ କରିବ, ତେବେ ମୋ ପାଇଁ ଭାତ ପୁଞ୍ଜେ; ଆଉ ପିଠା-ଫିଠା ମୁଁ କିଛି ଛୁଇଁବି ନାହିଁ ।"

ଏତିକି କହି ନୀଳ ଫଟ୍‌କିନି ବାହାରିଗଲା । ହରି କବିରାଜ ସେହି ଗାଁର ଲୋକ । ସେ ଶୁଣିଲାକ୍ଷଣି, ବିଚରା ଶେଯରୁ ଉଠିଥିଲେ, ମୁହଁ ଧୋଇଛନ୍ତି କି ନାହିଁ, ତାଙ୍କର ବଟୁଆଟି କାଖରେ ଜାକି ଧାଇଁଲେ । ନୀଳ ତାଙ୍କୁ ସାଙ୍ଗରେ ଘେନି ଆସିଲା ବେଳକୁ ମୁଁ ସେଠାରେ ଅଛି । କବିରାଜଙ୍କୁ ନୀଳ ସାଙ୍ଗରେ ଦେଖି ପଦ୍ମା କାନ୍ଥଆଡ଼କୁ ମୁହଁ ବୁଲାଇ ଜାକିଜୁକି ହୋଇ ଶୋଇରହିଲା । ମୁଁ ତା'ର ବାଁ ହାତଟି ଲୁଗା ଭିତରୁ ବାହାର କରିଆଣି କବିରାଜଙ୍କୁ ଦେଲି । କବିରାଜ ହାତକୁ ଥରେ ଦି'ଥର ସାଉଁଳି, କାନ ପାଖରେ ଧରି, ଟପ୍ ଟପ୍ ବୁହେ କରି କହିଲେ—"ପିତଶ୍ଳେଷ୍ମା ଜର, ସ୍ତ୍ରୀ ଅଙ୍ଗରେ ଏଉଟା ଭଲ ନୁହେଁ । ତେବେ ଆପଣଙ୍କର ଚିନ୍ତା କ'ଣ ? ମୁଁ ଚାରିପାନ ଔଷଧ ଦେଇଯାଉଚି । ତାକୁ ଇ'ଲେ ପାନେ, ଆଉ ତିନିପାନ ସନ୍ଧ୍ୟାବେଳ ଭିତରେ, ମହୁ ପିପ୍ପଳୀ ପରୀକ୍ଷ କରି ଅଦା ରସରେ ଖାଇବାକୁ ଦିଅନ୍ତୁ ।"

ମୁଁ କହିଲି—"ଭାରି ଶୋଷ ହୋଉଚି ବୋଲି କହୁଚି, ପିଇବାକୁ କ'ଣ ଦିଆଯିବ ?"

କବିରାଜ—"ଅଳେଇଚ ଚୋପା କିମ୍ବା ମସୁର ଡାଲି ସିଝେଇ ତା' ପାଣି ଥଣ୍ଡା କରି ଦିଅନ୍ତୁ ।"

ଏତିକିବେଳେ ପଦ୍ମା ମୋ ହାତ ଧରି ଟାଣିଲା । ମୁଁ କାନ ତା' ମୁହଁ ପାଖକୁ ନେଲାରୁ କହିଲା, "ମୁଣ୍ଡବଥା ଭଲହବ ନାହିଁ ?" ମୁଁ ସେ କଥା କବିରାଜଙ୍କୁ ବୁଝେଇଦେଲି । ସେ ଗୋଟେ କ'ଣ ଗୁଣ୍ଡ ଦେଲେ । କହିଲେ—"ୟାକୁ ଲୁଖୁରା ବଳିତା ଭିତରେ ପୁରେଇ ଶୁଙ୍ଘିଲେ ମୁଣ୍ଡବ୍ୟଥା ଠକ୍‌କରି ରହିବ ।" କବିରାଜ ଚାଲିଗଲେ, ମୁଁ ମଧ୍ୟ ମୋ ଧନ୍ଦାରେ ଆସିଲି ।

କିନ୍ତୁ ଗୋଟେ କଥା ମୋର ମନେହେଲା; ପଦ୍ମାର ଦିହ ବ୍ୟସ୍ତ ହୋଇ ମୋର ଗୁପ୍ତ ରହସ୍ୟ ଭେଦଟା ଅନେକ ପଛକୁ ଘୁଞ୍ଚିଯିବ; କିନ୍ତୁ ନାଏବଙ୍କର କ'ଣ ହବ ? ସେ ଲୋକଟାକୁ କାଲି ସକାଳେ ଟଙ୍କା ଦେବାକୁ ହବ । ସେଥିପାଇଁ ପଦ୍ମାକୁ ଡକାଇଥିଲେ, ତା'ଠାରୁ କିଛି ଆଦାୟ କରିବାର ଅଭିପ୍ରାୟରେ । ପଦ୍ମା ଯାଇପାରିବ ନାହିଁ । ଚିଠି ପାଇପାରିବ କି ନାହିଁ ସେଥିରେ ବି ସନ୍ଦେହ । ତା' ହେଲେ ନାଏବଙ୍କର ବା କି ଉପାୟ ?

ଏଇ ସବୁ କଥା ମୋ ମନରେ ଲେଉଟେଇ-ପାଉଟେଇ ହେଉଥାଏ । ଖା'ପିଅ ସରିଲା; ସବୁ କାମଦାମ ସାରି ମୁଁ ଯାଇ ନିଶ୍ଚିନ୍ତରେ ଟିକିଏ ବିଶ୍ରାମ ନେଲି । ଖବର ନେଇ ବୁଝିଲି, ପଦ୍ମାର ଜର ଅଳ୍ପ କମିଥିଲେ ମଧ୍ୟ ତା'ର ଉଠିବାର ଶକ୍ତି ନାହିଁ । ଶୋଇକରି ଭାବୁ ଭାବୁ ହଠାତ୍ ଗୋଟେ ବୁଦ୍ଧି ଦିଶିଲା । ମୁଁ ଖୁବ୍ ଖୁସି ହୋଇ ଉଠି ବସିଲି । ଦେଖିଲି, ବେଳ ରତ ରତ ହଉଚି । ସନ୍ଧ୍ୟା କିପରି ହବ, ଖା'ପିଆ ସବୁ କିପରି ସରିବ, ସମସ୍ତେ କେମିତି ଶୋଇବେ, ଏଇ କଥା ଭାବୁ ଭାବୁ ବେଳ କୁଆଡ଼େ ଚାଲିଗଲା । ତୁଳସୀ ମୂଳରେ ବସି ମାଳା ଗଡ଼ାଉଥାଏ; କିନ୍ତୁ ମନ ଥାଏ ଆଉ ଠା'କରେ । କାହାରି ସମୟ ବସି ରହେ ନାହିଁ । ବାଇଶିବର୍ଷର ପୁଅ ଖାଇବସିଛି ଯେ ମା', ତାର ବି ଦିନ ସରିଯାଉଚି । ରାତି ଦେଢ଼ପହର ବେଳକୁ ଯେ ଯୁଆଡ଼େ ଶୋଇପଡ଼ିଲେ । କେବଳ ପଦ୍ମା ଘରେ ମିଟି ମିଟି କରି ଦୀପ ଜଳୁଚି । ଯାଇ ଦେଖିଲି ନୀଳ ସେ ଘରେ ଆଗପଟ କାନ୍ଥକୁ ଲଗା ଆଉ ଗୋଟେ ଖଟ ଆଣି ପକାଇ ତା' ଉପରେ ଗଡ଼ପଡ଼ ତ ହେଉଚି । ପଦ୍ମା ଟିକିଏ ତନ୍ଦ୍ରାରେ ପଡ଼ିଚି । ଜର କମ୍ । ମଧୁଆ ମା', ଶାମି ମା' ଦି'ଜଣ ବସି

ତା' ଗୋଡ଼ରେ, ପିଠିରେ ହାତ ବୁଲାଉଛନ୍ତି । ମୁଁ ତୁନିହୋଇ ସେଠାରୁ ଖସିଆସିଲି । ମୋ ଘରକୁ ଯାଇ ଦେଖିଲି ଘର ଅନ୍ଧାର । ସେହି ଅନ୍ଧାରରେ ବାକ୍ସ ଫିଟାଇ ଯାହା ହାତରେ ପଡ଼ିଲା, ତାକୁ ଧରି ନାଏବଙ୍କ ଘରଆଡ଼କୁ ଚାଲିଲି । ଘର ବନ୍ଦ ଥିଲା; ସାହସରେ ହାତ ମାଇଲି । ନାଏବ ଦୁଆର ଫିଟାଇ ମତେ ଦେଖି ଟିକିଏ ଆଶ୍ଚର୍ଯ୍ୟ ହେଲେ; କିନ୍ତୁ ତା'ପରେ ଆତ୍ମସଂଯମ କରିନେଇ କହିଲେ, "ମଣି ନାନୀ ଯେ, ଏ ଗରିବର ଘରକୁ କି ଉଦ୍ଦେଶ୍ୟରେ ?"

"ଉଦ୍ଦେଶ୍ୟ ନଥାଇ ଏତେ ରାତିରେ ମୁଁ ତମ ଘରକୁ ଆସନ୍ତି କାହିଁକି ?"

ନାଏବ ଦୁଆର ମେଲାକରି ଆସ୍ତେ ଆସ୍ତେ ଯାଇ ଟେବୁଲ ପାଖରେ ଠିଆହେଲେ, କୁରୁଚି ଗୋଟାଏ ଦେଖାଇ ଦେଇ କହିଲେ, "ଆସିଚ ଯେବେ ତେବେ ଟିକିଏ ବସିପଡ଼; କ'ଣ ଉଦ୍ଦେଶ୍ୟ ଶୁଣେ ?"

ମୁଁ କୁରୁଚିରେ ବସିଲି । ସେ ମୋର ସାମନାରେ ଠିଆହୋଇ ନଥି ବିଡ଼ାଟାଏ ଧରି ଓଲଟାଇ ଲାଗିଲେ । ମୁଁ ପ୍ରଥମେ କଥାବାର୍ତ୍ତା ଆରମ୍ଭ କରିବି କିପରି ଭାବି ଠିକ୍ କରିପାରୁ ନଥିଲି । ନାଏବ ତାର ଉପାୟ ବତାଇ ଦେଲେ—"ସାନମା'ଙ୍କ ଦେହ କିପରି ?"

"ମୁଁ ତାରି ପାଖରୁ ତୁମ ପାଖକୁ ଆସୁଚି । ତାର ଦେହ ତେତେ ଭଲ ନାହିଁ । ସକାଳ ଭଳି ଜର ନାହିଁ । ତେବେ ବଡ଼ ହାଲିଆ ହୋଇପଡ଼ିଚି । ସେ ନଆସିପାରି ମୋତେ ପଠାଇଚି ।"

ନାଏବ ଟିକିଏ ବିସ୍ମିତ ହେଲେ । ତାଙ୍କର ଭ୍ରୂଲତା ଦୁଇଟା ସଙ୍କୁଚିତ ହୋଇ ଲାଗିଗଲା ପରି ଜଣାଗଲା । କହିଲେ, "ମୋ ପାଖକୁ ? ଆପଣଙ୍କୁ ? ମୁଁ କିଛି ବୁଝିପାରୁ ନାହିଁ ଯେ ? ଟିକିଏ ଖୋଲିକରି କହନ୍ତୁ ଦେଖି ?"

"ଦେଖ ସୋମନାଥ ବାବୁ ! ତୁମେ ଯେ ରକମ ଲୋକ ସେଥିରେ ତୁମ ସାଙ୍ଗେ କଥାବାର୍ତ୍ତା କରିବା କେତେଦୂର ଯୁକ୍ତିସଙ୍ଗତ ମୁଁ ଦେଖିପାରୁ ନାହିଁ । ତୁମେ କ'ଣ ଆମକୁ ସବୁ ଏମିତି ପିଲାକରି ଦେଖିଚ ଯେ ଆମ ଆଖିରେ ଧୂଳି ପକେଇ ଦେଇ ଚାଲିଯିବ, ଆଉ ଆମେ ସେଥିରୁ ଟିକିଏ କିଛି ବୁଝିପାରିବୁ ନାହିଁ । ତୁମେ ସାମାନ୍ୟ ଦରମାର ଚାକର; ନୀଳର ପିଲାଦିନ ସାଙ୍ଗ ବୋଲି ଆଣି ତମକୁ ଘରେ ରଖିଲୁ; ଅଥଚ ତୁମେ ସେ ବନ୍ଧୁତାର କି ମର୍ଯ୍ୟାଦା ରଖିଚ ଶୁଣେ ? ତୁମେ ପରପୁରୁଷ; ଗୋଟେ କୂଳବୁଆସୁଣୀ ପାଖକୁ ଚିଠି ଲେଖିବାକୁ କିପରି ସାହସ କଲ କହିଲ ? ତା'ପରେ ତୁମର ଏତେ ସାହସ ଯେ ତୁମେ ତାକୁ ରାତିଅଧରେ ତୁମ ସାଙ୍ଗରେ ଦେଖା କରିବାକୁ କହିଚ ? କଥା ପଡ଼ିଲା ବେଳକୁ କହୁଛ ଯେ ନା ମୁଁ କିଛି ବୁଝିପାରୁ ନାହିଁ, ଟିକିଏ ଖୋଲିକରି କହନ୍ତୁ ?"

ନାଏବ କ୍ଷଣକ ପାଇଁ ଚୁପ୍ ହେଲେ । ତାଙ୍କର ମୁହଁରେ ସନ୍ଦେହ, ଅବିଶ୍ୱାସ, ଆଶଙ୍କା ଗୋଟିକ ପରେ ଗୋଟିଏ ଖେଳିଗଲା । ତା'ପରେ ଧୀର ଗମ୍ଭୀର ଅଥଚ ବଡ଼ ବିନୀତ ଭାବରେ କହିଲେ, "କ୍ଷମାକର ମଣିନାନୀ ! ମୋର ପ୍ରକୃତରେ ଦୋଷ ହୋଇଚି । ତୁମକୁ ସେ ଚିଠି ଦେଖାଇଛନ୍ତି ବୋଲି ମୁଁ ଜାଣିଲି କିପରି ? ତୁମେ ଯାହା କହିଲ, ସେ ସବୁ ସତ । ତାଙ୍କ ପାଖକୁ ଚିଠି ଦେବା ମୋର ଅନ୍ୟାୟ; କିନ୍ତୁ ତୁମେ ଯେତେବେଳେ ମୋ' ଚିଠି ଦେବା କଥା ଜାଣ, ତେବେ ଜାଣିଥିବ ବୋଧହୁଏ ଯେ ସେ ପ୍ରଥମେ ମୋ ପାଖକୁ ଲେଖିଥିଲେ; ମୁଁ ତାର ଉତ୍ତର ଦେଇଥିଲି ମାତ୍ର । ଏଥିରେ କି ମୋର ଦୋଷ ହୋଇପାରେ ?"

"ତା' ନିଶ୍ଚୟ ନୁହେଁ । ମୋର ଅନେକ କାମ । କ'ଣ ତାକୁ କହିବ ବୋଲି ଲେଖିଥିଲ, ମତେ କହ । ସେ ନଆସିପାରି ମୋତେ ପଠାଇଚି । ତୁମ ତା' ମଧ୍ୟରେ ଯେ ସମ୍ପର୍କ ସେଥିରେ ତମେ ଯେ କେତେବେଳେ କ'ଣ କରିବାକୁ ଭାବୁଥିବ ତା' ନଜାଣିଲେ ସେ ମୁହୂର୍ତ୍ତକ ପାଇଁ ନିଶ୍ଚିନ୍ତ ହୋଇପାରିବ ନାହିଁ । ସେଥିନିମନ୍ତେ ସେ ମତେ ପଠାଇଚି । ଆଉ ଦେଖ, ତୁମେ ଟଙ୍କା ପାଇଁ ଲେଖିଥିଲ; ତା' ପାଖରେ ତ ନଗଦ ଟଙ୍କା ନାହିଁ । ସେ ଏ ହାରଟି ଦେଇଛି । ଯାର ଦାମ୍ ପ୍ରାୟ ଦୁଇଶ' ଟଙ୍କା ହେବ । ତାକୁ ବନ୍ଧା ରଖି ତୁମର ବର୍ତ୍ତମାନ କୃତ୍ୟ ଚଳାଇପାର; ନତୁବା ବିକ୍ରିକରି ଏ ସ୍ଥାନ ଛାଡ଼ି ଚାଲିଯାଇପାର । ତୁମେ ଅନ୍ୟଠାରେ ଚାକିରି ପାଇବା ପର୍ଯ୍ୟନ୍ତ ଏଇତକରେ ଚଳିଗଲ ତ ଭଲ । ତା' ନହେଲେ ଯୁଠେଇଁ ଥାଅ ମୋ ପାଖକୁ ଲେଖିଲେ ମୁଁ ଆଉ କିଛି ପଠାଇବାର ଯୋଗାଡ଼ କରିବି ।"

ଏହା କହି ମୁଁ ଗୋଟିଏ କାଗଜ ପୁଳିନ୍ଦା ତାଙ୍କ ହାତକୁ ବଢ଼ାଇଦେଲି । ସେ ତା' ଭିତରୁ ଜୟପୁରି ସୁନାର ଗୋଟିଏ ମାଳି ବାହାର କରି ଏପଟ ସେପଟ କରି ଦେଖି ଲାଗିଲେ । ତାଙ୍କର ମୁହଁରେ ପୁଣି ପୂର୍ବର ସେହି ସନ୍ଦେହ, ଆଶଙ୍କାର ଚିହ୍ନ ଦେଖାଗଲା; କିନ୍ତୁ ଏଥର ସେତେ ପ୍ରକାଶ୍ୟ ଭାବରେ ନୁହେଁ । ତା'ପରେ ସେ ମୋ ଆଡ଼କୁ ଅନାଇ କହିଲେ, "ତାକୁ କହିବ, ମୁଁ ତା' ପାଖରେ ଚିରଋଣୀ । ଅବଶ୍ୟ ତା'ର ମଙ୍ଗଳ ସକାଶେ ମୁଁ ଏ ସ୍ଥାନ ଛାଡ଼ି ଚାଲିଯାଉଚି, ତଥାପି ସେ ଇଚ୍ଛା କରିଥିଲେ ମତେ ଅଦ୍ୟଭେକ କରି ଛାଡ଼ିପାରିଥାନ୍ତା । ମୋର ଆଉ ବେଶିକିଛି କହିବାର ନାହିଁ । କେବଳ ଏତିକି, ମୋ କଥା ଯେପରି ବେଳେ ବେଳେ ମନେ ପଡୁଥାଏ ।"

ମୁଁ ଦେଖିଲି, ନାଏବ ଅସଲ କଥାଟି ଲୁଚାଇଲେ । କେଜାଣି କାହିଁକି ତାଙ୍କର ମନରେ ମୋ ପ୍ରତି ଅବିଶ୍ୱାସ ଆସିଛି । ତାହାହେଲେ ତ ମୋର ସବୁ ଶ୍ରମ ବୃଥା ହୋଇଗଲା । ଏଇସବୁ ଭାବି ମୁଁ କହିଲି, "ତୁମେ କ'ଣ ଏଇକଥା କହିବାକୁ ତାକୁ ଡାକି ପଠାଇଥିଲ ? ତା' ତ ଚିଠିରେ ଲେଖିଥିଲେ ଭଲ ହୋଇଥାନ୍ତା ।"

ନାଏବ ଅବିଚଳିତ ଭାବରେ କହିଲେ—"ନା, ମୋର ବିଶ୍ୱାସ ନଥିଲା ଯେ ସେ ମୋ ଉପରେ ଏତେଗୁଡ଼େ ଅନୁଗ୍ରହ କରିବ; ସେଥିପାଇଁ ଲେଖିଥିଲି ଆସିବାକୁ । ସେ ଆସିଥିଲେ କନ୍ଦାକଟା କରି କୌଣସିମତେ ସାହାଯ୍ୟ କରିବାକୁ ମଙ୍ଗାଇଥାନ୍ତି । ସେ ସବୁ ତ ଆଉ ଚିଠିରେ ହୁଏ ନାହିଁ ।"

ମୁଁ ଦେଖିଲି, ଧରିବାକୁ ଆସି ନିଜେ ଧରା ପଡ଼ିଲି ପରା । ବଡ଼ ସାହସ କରି ଅନେକ ଏଣୁ ତେଣୁ ଭାବି କହିଲି, "ତା'ହେଲେ ମୁଁ ଯାଉଚି; କିନ୍ତୁ ସାବଧାନ, ସେ କଥା ଯେପରି ପ୍ରକାଶ ନହୁଏ ।" ନାଏବ୍ ଆଶ୍ଚର୍ଯ୍ୟ ହେଲାପରି ପଚାରିଲେ, "ସେ କଥା, କି କଥା ସେ ?"

"ଚେଇଁ ଶୋଇବ ଯେ, ତାକୁ ଉଠେଇବ କିଏ ?" ସତେ ଅବା ଯିମିତି କିଛି ଜାଣନ୍ତି ନାହିଁ ? ମତେ କ'ଣ ତେବେ ଫିଟାଇ କହିବାକୁ ହେବ ?

ନାଏବ, ଦେଖିଲି, ବଡ଼ ଭାବନାରେ ପଡ଼ିଲେ । ହଠାତ୍ ତାଙ୍କର ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ସେ କ'ଣ କହିବାକୁ ଯାଉଥିଲେ, ଏହି ସମୟରେ ମଧୁଆ ମା' ଆସି କହିଲା,

"ସା'ନ୍ତାଣୀ, ସା'ନ୍ତାଣୀ, ଛୋଟମା'ଙ୍କର ଦିହ ଭାରି ବେରାମ; ସା'ନ୍ତେ ଡାକୁଚନ୍ତି, ସଅଳ ଆସ ।" ମୁଁ ମଧୁଆ ମା' ମୁହଁକୁ ଥରେ, ନାଏବଙ୍କ ମୁହଁକୁ ଥରେ ଚାହିଁଲି, ତା'ପରେ ଚାଲିଗଲି । ସମୟ ନଥିଲା । ସୁନାହାରଟା ନାଏବଙ୍କ ହାତରେ ରହିଗଲା ।



## ନାକ କାଟି ନାକ ହାତରେ

ଯାହା କହନ୍ତି, ପରପାଇଁ ଯେ ଟୋପ ଖୋଳିବାକୁ ଯାଏ, ସେଇଥିରେ ଶେଷରେ ନିଜକୁ ପଡ଼ିବାକୁ ହୁଏ ବୋଲି, ମୁଁ ଆଜି ହାଡ଼େ ହାଡ଼େ ତାହା ଅନୁଭବ କଲି । ଯାଇଥିଲି ପଦ୍ମାର ରହସ୍ୟ ଭେଦ କରିବି ବୋଲି; ଶେଷରେ ମୋର ଏକ ରହସ୍ୟ ଆରମ୍ଭ ହେଲା । କାହାକୁ କହିବି ? ଚୋର ମା' କାନ୍ଦେନି, ଯେବେ କାନ୍ଦେ ତେବେ ଦୁଆର ଦେଇ । ମୁଁ ପଦ୍ମାର ଶୋଇଲା ଘରକୁ ଯାଇ ଦେଖିଲି, ପଦ୍ମାର ଦେହରେ ଜର ପୂର୍ଣ୍ଣମାତ୍ରାରେ । ଠିକ୍ ସକାଳଭଳି; କବିରାଜ ମହାଶୟ ଖଟ ପାଖରେ ଗୋଟେ କୁରୁଚିରେ ହାତଗୋଡ଼ ଜାକିଜୁକି ହୋଇ ଖୁଣ୍ଟଟି ପରି ବସିଛନ୍ତି । ନୀଳ ଘରର ଏ'ମୁଣ୍ଡୁ ସେମୁଣ୍ଡ ଥରକୁ ଥର ଯା'ଆସ କରୁଚି । ମତେ ଦେଖି ବିରକ୍ତିଆ ହୋଇ କହିଲା, "ଜର ଫେରେ ଲେଉଟିଲା, କବିରାଜ କହିଛନ୍ତି ତାଙ୍କ ପାଖରେ କି ବଟିକା ଅଛି, ତାକୁ ସୁନାଘୋରା ପାଣିରେ ଖାଇବାକୁ ହେବ । ନୂଆ ସୁନା ଦରକାର । ମୁଁ କାଲି ମାଳିଟା ଦେଇଥିଲି, ତାକୁ ଆଣିଲେ ସେଥିରୁ ଗୋଟେ ପଦକ ଘୋରି ଓଷୁଅ ଦେବା; ଶୀଘ୍ର ନେଇଆସ ।" ମୁଁ ତରବର ହୋଇ ମୋ ଘରକୁ ଯାଇ, ବାକ୍ସ ଫିଟାଇ ଦେଖେ ତ ସେ ମାଳିଟି ନାହିଁ । ଆଉରି ଅନେକ ହାର ଅଛି—କିନ୍ତୁ ସେ ଗୋଟିକ କାହିଁ ? ମୋ ମୁଣ୍ଡରେ ଆକାଶ ଭାଜିପଡ଼ିଲା । କ'ଣ କଲି, କ'ଣ କଲି, ବୋଲି ଭାବୁ ଭାବୁ ମୋର ହୋସ ହେଲା, ଏଇ ମାଳଟା ନେଇ ତ ମୁଁ ନାଏବଙ୍କୁ ଦେଇ ଆସିଚି । ସେତେବେଳେ ଅନ୍ଧାରରେ ଯାହା ହାତରେ ପଡ଼ିଲା ନେଇଗଲି, ଜାଣିଥିଲି କି ଆଉ ଇମିତି ଦଶା ହବ ବୋଲି ? ଭାବିଥିଲି ସିନା ଏଇ ମାଳିଟାର ଛଳରେ ନାଏବଙ୍କ ରହସ୍ୟ ଓଟାରି ଆଣି ତା'ପରେ ଭୟ ଦେଖାଇ ହେଉ ବା କୌଶଳରେ ହେଉ ମାଳିଟା ଆଦାୟ କରି ଆଣିବି—ନାଏବ ଏକାବେଳକେ ବୋକା ବନିଯିବେ ।

କିନ୍ତୁ ଦେଖିଲି ଯେ ହିତେ ବିପରୀତ । ତାଙ୍କ ହାତରେ ରହିଲା ହାର । ମୁଁ ଏବେ ପୋଡ଼ପାଡ଼ କରୁଚି କ'ଣ ? ନୀଳକୁ କହିବି କ'ଣ ? ଯେବେ କହୁଚି ନାଏବଙ୍କ ପାଖରେ ଅଛି, ମୁଁ ନେଇ ତାଙ୍କୁ ଦେଇଥିଲି, ତା'ହେଲେ ସେ ମନରେ କ'ଣ ଭାବିବ ? ହାର ତାଙ୍କ ପାଖକୁ ଗଲା କିଆଁ ? ଯେବେ କହୁଚି ହଜିଗଲା ବୋଲି, ତା'ହେଲେ ଇଲାଗେ ଘରେ ତୁମୁଳ କାଣ୍ଡ ଲାଗିବ । ନନେଇ କରି ବା ଯାଉଚି କିପରି ? ଇମିତି ସାତପାଞ୍ଚ ଭାବି ଠିକ୍ କଲି, କାଲି ଗନ୍ତେଇତଙ୍କ ଘର ଯୁ' ମାଳଟା ବନ୍ଧା ପକେଇ ମୋଠାରୁ ଶହେଟଙ୍କା ନେଇଚନ୍ତି, ତାକୁ ନେଇ ଦେବି । ସେଉଟା ତ ନୂଆ, ଇଲାଗେ କାମ ଆଗ ଚଳିଯାଉ, ପଛକଥା ପଛେ ବିଚାର ହେବ ।

ଏଇଆ ଥିରକରି ମୁଁ ସେଇ ହାରଟା ନେଇଗଲି । ନୀଳ ତାକୁ ଦେଖି କହିଲା, "କାହିଁକି ସେଇଟା କ'ଣ ହେଲା କି ? ନୂଆ ସୁନା ପରା ଦରକାର ବୋଲି କହିଲି ?"

"ଆରେ ପୁଅ, ପଦ୍ମାର ଏ ଅବସ୍ଥା ଦେଖି କ'ଣ ହାତଗୋଡ଼ରେ ପଶୁଚି ? କଣ୍ଢ ମାଳଟା କୁ ଠେଇଁ ରଖିଦେଲି ମନେପଡୁ ନାହିଁ । ମନ ତ ଯାଇ ସାତ ସମୁଦ୍ରରେ ବୁଲୁଚି । ମା' ବିରଢା କରନ୍ତେ, ପଦ୍ମା ମୋର ଆଖିମେଲି ଚାହିଁନ୍ତା, ମୁଁ ଡାହାଣମାହାଣ ବୋଦା ଦିଅନ୍ତି । ମା'ଲୋ, ମୋ ଝିଅଟା ଗୋଟେ ଦିନ ଜରରେ କି କଳାକାଠ ପଡ଼ିଗଲାଣି । ଦେ ଦେ, ମୁଁ ଘୋରେ, ଏଉଟା ବି ନୂଆ ସୁନା ମ, ପଅରିଦିନ ପରା ବଣିଆଘରୁ ଆସିଚି ।" ନୀଳ ଆଉ କିଛି କହିଲା ନାହିଁ । ଆଜି ରାତିଟା ଅନ୍ତତଃ ନିଶ୍ଚିନ୍ତ ହୋଇଗଲି; କିନ୍ତୁ ତା'ପରେ କି ବିଚାର ? ଆଜି ନହେଲେ କାଲି ତ ପୁଣି ସେ ହାରକଥା ପଡ଼ିବ । ପଦ୍ମାର ଦିହ ଭଲ ହୋଇଗଲେ ନୀଳ ଖୋଜିବ; ତା'ରି ପାଇଁ ଗଢ଼ାଇ ଆଣିଥିଲା । ମୁଁ ଭାବି ଦେଖିଲି, ଏ କାମଟା କରିଦେଇ କୁରାଢ଼ି ନିଜ ବେକକୁ ଆଣିଚି । ହାରଟା ନାଏବଙ୍କ ହାତରେ । ଆଉ ସେଦିନ ନାଏବ ସେ ଲୋକଟାର ଭୟରେ ଯେପରି ଛଟପଟ ହେଉଥିଲେ, ସେଥିରୁ ଜଣାଯାଉଚି ସେ ଟଙ୍କା ତ ପାଇବେ ନାହିଁ, ସେଇ ହାରଟା ଦେଇ ତାକୁ ସନ୍ତୁଷ୍ଟ କରିବେ । ନତୁବା ମୋର କଥା ଅନୁସାରେ ତାକୁ ବିକ୍ରିକରି ସେଇ ପଇସାରେ ଏ ସ୍ଥାନ ଛାଡ଼ି ଚାଲିଯିବେ । କ'ଣ କରିବି ? କି ଉପାୟରେ ମାଳଟା ପାଇବି ! ମତେ ଆଉ ରାତିରେ ନିଦ ହେଲାନାହିଁ । ଏପଟ ସେପଟ ହୋଇ ଭାବି ଭାବି ଠିକ୍ କଲି, ଦେବା ସମୟ ଆସିଲେ ବୁଦ୍ଧିକି ଯିମିତି ଦିଶିବ ସେହିପରି ପନ୍ଥା ଧରିବି । ଏ ଦୁର୍ବଳ ହୃଦୟର ସାନ୍ତ୍ୱନା । ପ୍ରୟୋଜନୀୟ କାମରେ ଗୋଟେ ଉପସଂହାରକୁ ନ ଆସିପାରି ଗଡ଼େଇ ରଖିଲେ କି ମନ ଶାନ୍ତ ହୁଏ ?

ତା' ଆରଦିନ ସକାଳେ ହରେକୃଷ୍ଣ ବାବୁ ଡାକ୍ତର ଆସି ପହଞ୍ଚିଲେ । ସେ ରୋଗୀର ଲକ୍ଷଣ ସବୁ ଦେଖି କହିଲେ, "ଏଇଟା ସେରିବ୍ରାଲ୍ ମେଲେରିଆ; କିଛିଦିନ ଭୋଗିବାକୁ ହେବ । ବଡ଼ ଅକଡ଼ବାଜୀ ରୋଗ, ଖୁବ୍ ସାବଧାନରେ ରହିବାକୁ ପଡ଼ିବ ।" ନୀଳର ସାଙ୍ଗ ସେ । ବହୁତ ଅନୁରୋଧରେ ଦି'ଚାରି ଦିନ ସେଠାରେ ରହିବାକୁ ମଙ୍ଗିଲେ । ମତେ ମଧ୍ୟ ଅବକାଶ ଟିକିଏ ମିଳିଗଲା । ସେଦିନ ସନ୍ଧ୍ୟାବେଳକୁ ଅଗଣାରେ ବସି ଆକାଶକୁ ଚାହିଁଚି, ମେଘ ପରିଷ୍କାର, ଗୋଟିଏ ଦିଓଟି ତାରା ଫିକା ଫିକା ହୋଇ ଜଳୁଛନ୍ତି । ତାରିଆଡ଼େ ଟିକିଏ କୁହୁଡ଼ିଆ ଦିଶୁଚି । କୌଣସିଠାରେ ଜୀବଜନ୍ତୁ ଦେଖା ନଗଲେ ସୁଦ୍ଧା ପୃଥିବୀ ଭିତରୁ ଯେପରି ଗୋଟେ ଅବ୍ୟକ୍ତ ଶବ୍ଦ ଗୁମରି ଉଠୁଚି; ସମ୍ଭାବିତ ବିପଦରେ ମନୁଷ୍ୟର ହୃଦୟ ଯେପରି ହୁଏ । ଏହି ସମୟରେ ଉପର ସାହିର ଗୁରୁବାରିଆ ମା' ଆସି ଡାକିଲା, "ସା'ନ୍ତାଣୀ ! ଏବେର ଶମ୍ବର ଦଶମୀ ଗଲା, ମତେ କିଛି ହୁକୁମ ହେଲା ନାହିଁ ?" ମୁଁ ବିରକ୍ତିଆ ହୋଇ କହିଲି, "ତୁ ଆସିବୁ ବୋଲି କ'ଣ ସାଇତି ରଖିଥାନ୍ତି । ଦେ-ଦଉଣୀ ଆସି କିଏ କାଲି ସଞ୍ଜରୁ, କିଏ ଆଜି ସକାଳେ ନେଇଗଲେ । ତୁ ହଲି ଦୋହଲି କରି ଆସୁଚୁ ଏତେ ବେଳକୁ ଯେ ମୁଁ କୁ'ଠଉ କ'ଣ ଆଣି ଦେବି । କାହିଁକି ଏତେବେଳ ଯାଏ କ'ଣ କରୁଥିଲୁ କି, ଆଗରୁ ଆସିଲୁନି ?"

"ଆଗୋ ମା'ସାନ୍ତାଣୀ ! କାହାକୁ କହିବି, ସେ ମୋ କପାଳ । ଘଇତା ବୋଲି ଯୁ ଅଛଦରାଟାର ହାତ ଧଇଲି, ସେ ତ ହେଲା ପାଉଁଶ; ଆପଣା ସୁନା ତ ଭେଣ୍ଡି, ପର ସଙ୍ଗେ କାହିଁକି ଭିଡ଼ାଭିଡ଼ି । ସେ ରଇଜଗା ଯେତେବେରେ ହାଜତରେ ନଥିଲା, ସେତେବେରେ କୁଆଡ଼େ ତା'ର ଗୋଟେ ସାଙ୍ଗ କିଏ ତାକୁ ଭାରି ସାହାଇଜ ହୋଇଥିଲା । ସେ ଚୂଲିପଶା ଆସି ପହଞ୍ଚିଚି

ସପୁରି ଦିନଠୁଁ । ନିଜ ପେଟକୁ ତ ଘରେ ଖୁଦଟିଏ ନାହିଁ, ମୁଁ ଯ୍ୟାକୁ ଚରଚା କରିବି କୁ'ଠଉ । ମୁଁ ଯୁଖିଣିକା କିଛି କରିକିରି ନଦେଲି, ସିଠଉ ଅରପେଇଷ ମେତେ ମାଇଲା । ଗୋ ସା'ନ୍ତାଣୀ ! ଦେଖିଲନି ମୋ ପିଠିରେ ଏତେବେର ଯାଏ ନୋରା ବସିଯାଇଚି । ମୁଁ ସିଉଠୁ କହିଲି, ଦେଖିତ ଦେଖିରେ କାଠେଇଖିଆ କିମିତି ତୁ ଆଜି ଗିରିବୁ ? ଯ୍ୟା କହି ପରେଇଲି ମୋ ବାପଘରକୁ । ଦି'ଦିନ କାର୍ ରହିଲି; ଆଜି ଦଇବିଛଡ଼ା ଯାଇ ହାତଗୋଡ଼ ଧରି କେତେ ନେହୁରା ହେଇ ଡାକିଆଣିଚି । ତା'ନଇଲେ କି ଗୁରୁବାରିଆ ମା' ଆଜିଯାଏ ଆସିନଥାନ୍ତା । ମୋର ଭାତହାଣ୍ଡି ଟି ଏ ଘର !"

ମୁଁ ଉଦାସ ଭାବରେ ଏଗୁଡ଼ାକ ଶୁଣୁଥିଲି । ଗୋଟେ କ'ଣ କହିବାକୁ ହେବ ବୋଲି ଯାହା ତୁଣ୍ଡକୁ ଆସସିଲା କହିପକାଇଲି, "ସେ ଲୋକଟା ଗଲାଣି ?"

"ନାଇଁ ଗୋ ମା' ! ସେ ନଇଶୁଆ ଆଇଚି ମତେ ଭିଣି ଭିଣି କରି ଖାଇବ ବୋଲି । ମୁଁ ସିନା ଭାବିଥିଲି, ମୁଁ ବାପଘରକୁ ଚାଲିଗଲେ ଖାଇବାକୁ କ'ଣ ପାଇବ ଯେ, ବରେ ପରେଇବ; ଆସି ଦେଖେ ତ ଜରଜରାଟା ଘରପୋଡ଼ା ଖୁଣ୍ଟଟି ଦେରିକା ବଇଚି, ମେତେ ଦେଖି କେତେ ସୁଆଗ, କେତେ କଥା ! ଗଛଜରା ଯ୍ୟା ଭିତରେ କୋବେର ହୋଇ ଗଲାନି । ମେତେ କଅଁରେଇ ସଁରେଇ କେତେ କଥା କହିଲା; ତା' ଉତ୍ତାରୁ ଟଙ୍କାଟିଏ ହାତରେ ଦେଇ କହିଲା, ଆମ ସଙ୍ଗାତୁଣୀଙ୍କି ଏଉଟି ଆମର ଭେଟି । ଗଛଜରାର ଯୁ'ରୂପ, ଯୁ'କଥା, ଆଉ ସବୁ କଥାରେ 'ହାମେ, ହାମେ'—ଯିମିତି ଡିଲ୍ଲି ନବାବ ଆଇଚିନି । ଆଉ ସୋରଟା, ମିଛନାଇଁ ଗୋ ସା'ନ୍ତାଣୀ ! ଗୋଟେ ଦଦରା ଆଟିକା ବାଡ଼େଇଲା ଦେରେ ।"

ମୁଁ ଏ ଲୋକଟାର ବର୍ଣ୍ଣନା ଶୁଣୁ ଶୁଣୁ ଆସ୍ତେ ଆସ୍ତେ ନାଏବଙ୍କର ସେ ଅତ୍ୟାଚାର କଥା ଭାବି ଲାଗିଲି । ସେଇ 'ହାମେ', ସେଇ କୁତ୍ସିତ ରୂପ, ସେଇ ଦଦରା ସ୍ୱର, ଆସିଚି ସପୁରିଦିନ । ଏଠାକୁ ଆସିଥିଲା ପରଦିନ, ହୋଇପାରେ, ବିଚିତ୍ର କ'ଣ ? ମୁଁ ପଚାରିଲି, "ଲୋକଟା କେମିତି ଲୋ ଦେଖିବାକୁ ?"

"ଆଉ କିମିତି ଗୋ ମା', ଗୋଟେ ଦରପୋଡ଼ା ମଶାଣି କାଠ ଦେରେ, ତୁଳିଆରେ ମୁଣ୍ଡ ନାଗୁଚି । ବରଗୋଡ଼ ଦେରେ ଗୋଡ଼, କରା ବିରାଡ଼ି ଦେରେ; ଏଡ଼େ ଟିକିଏ ଟିକିଏ ଆଖି । ତା'ର ଓଠୁଟା ନାକ ଓପରେ ଚାଖେଣ୍ଡେ ଭାଙ୍ଗିପଡ଼ିଚି । ଏମିତି ନୋକ, ତେମେ ସାନ୍ତାଣୀ କେଭେ ଦେଖିନଥିବ । ଅନ୍ଧାର ରାତିରେ ଦେଖିଲେ ଭୂତ ବୋଲି ଡରିବ ।" ସଂସାରରେ ଏପରି ଲୋକ କ'ଣ ଦୁଇଟା ହୋଇପାରନ୍ତି ? ମୁଁ ନାନା କଥା ଭାବୁ ଭାବୁ ତାକୁ ଉପରଠାଉରିଆ କରି ପଚାରିଲି, "ସେ ତତେ କ'ଣ କହିଲା ?"

"ମୁଁ ତମ ଘରୁ ଆସିଲା ବେରେ ମତେ ସା'ନ୍ତଙ୍କ କଥା, ସାନ ସା'ନ୍ତାଣୀଙ୍କ କଥା, ନୂଆ ନାଇବଙ୍କ କଥା କେତେ ପଚାରିଲା । ମୁଁ ତାକୁ କହିଲି, ଦଇବଛଡ଼ାଟାରେ, ତୋର ଏତେ କଥାରେ କ'ଣ ଅଛି ? 'ମୋ ସା'ନ୍ତ ସା'ନ୍ତାଣୀ ଭଲ ହୁଅନ୍ତୁ, ମନ୍ଦ ହୁଅନ୍ତୁ, ତୋ ବାପର କ'ଣ ଗଲା ?' ସିଠଉ ଆଉ କିଛି କହିଲାନି । ଆଜି ମୁଁ ସକାରେ ଅନ୍ଧାବଢ଼ା କରି ଶୋଇଚି, ଆର ଘରେ ଦିହେଁଯାକ ବସି ବସି କ'ଣ ଟୁପ୍‌ଟାପ୍ ଚାଲିଥାଏ, ମୁଁ କାନେଇ କରି ଶୁଣିଲୁ ଯେ ସବୁ

କଥା କ'ଣ ଶୁଭିଲା ? ଖାଲି ଏତିକି ବୁଝିଲି, ସେ ଅରପେଇଷର ଗୋଟେ କିଏ ସାଙ୍ଗ ଇଟେଇ ଭଲ କାମରେ ଅଛି । ତାକୁ କ'ଣଟେ କହି ଡରେଇ ଟଙ୍କା ନବାର ଫନ୍ଦି କରୁଥାନ୍ତି । ଆଜି ଫେରେ ମତେ କହୁଛି, 'ସଙ୍ଗାତୁଣୀ, ଆମେ ତମ ଘରେ ମାସେ ଖଣ୍ଡେ ରହିବା, ଟିକିଏ ଥାନ ଦବନାରୁ ?' ମଲାମଲାରେ ନାଗର ! ମୋ ମନ ଇମିତି ହେଲା, ଯୋଗିନିଖିଆର ଡେଣ୍ଡିଆ ଗୋଡ଼ ଝାଡୁବାଡ଼ିରେ ଛୋଟା କରିଦିଅନ୍ତି ।"

ମୁଁ ତାକୁ ବସିବାକୁ ଠାରିଦେଇ ଘରକୁ ଗଲି । ଚାଉଳ ସେରେ, ପନିପରିବା ଦି'ଟା ଆଣି ତାକୁ ଦେଲି । କହିଲି, "କାଲି ଏତିକିବେଳେ ଟିକିଏ ଆସିବୁ ।" ସେ କୃତକୃତ୍ୟ ହୋଇ ଚାଲିଗଲା । ତା' ହେଲେ ସେ ଲୋକଟା ଏଠାରେ ମାସେ ଖଣ୍ଡେ ରହିବ । ହାର ତା'ରି ପାଖରେ, ନା ?



## ଆତ୍ମପ୍ରକାଶ

ଆଜି ପଦ୍ମାର ରୋଗ ବେଶୀ ବଢ଼ିଛି । ତା'ର ହୋସ୍ ନାହିଁ । ବେଳେବେଳେ ଚମକି ଉଠୁଛି । ହାତ ହଲାଇ ଯେପରି କାହାରିକୁ ତଡ଼ିଦେଉଚି । ହଠାତ୍ ଆଖି ଦୁଇଟା ଏଡ଼େ ଏଡ଼େ କରି ଚାହିଁରହୁଛି ଯେପରି ଛାମୁରେ କୌଣସି ଅସଂସାରୀ ଜନ୍ତୁ ତାକୁ ଗିଳିବାକୁ ଆଁ କରି ରହିଚି । ବେଳେବେଳେ ଜ୍ଞାନ ହୁଏ, ନୀଳକୁ ପାଖରେ ଦେଖି ହାତଠାରି ଡାକେ । ନୀଳ ତା' ପାଖରେ ବସି କାନପାଖକୁ ମୁହଁ ନେଲେ କ'ଣ କହିବ ବୋଲି ହଉଥାଏ, କହିପାରେ ନାହିଁ । କେବେ କେବେ ମୁଣ୍ଡ ହଲାଇ ବାରଣ କରେ; କେବେ ବା ଏଣୁତେଣୁ ଗୁଡ଼େ କ'ଣ କହେ । ଡାକ୍ତର ଆସି ଦେଖିଲେ । ତାଙ୍କ ମୁହଁରେ ଗୋଟେ କଳା ବଉଦ ଭାସିଗଲା । ସେ ଧୀର ମାତ୍ର ଦୃଢ଼ସ୍ୱରରେ କହିଲେ, "ନୀଳ ଭାଇ, ସତ କଥା କହୁଚି । ବ୍ୟସ୍ତ ହବୁନାହିଁ । ରୋଗ ବଡ଼ ଗୁରୁତର । ମୋର ଆଶଙ୍କା ଏ କେବଳ ଜର ନୁହେଁ, ମନରେ କୌଣସି ଦୁଷ୍ଚିନ୍ତା ରହି ତାଙ୍କୁ ବେଶି କାଇଲା କରିପକାଉଚି । ତୁ କ'ଣ ଜାଣୁ ସେ ଦୁଷ୍ଚିନ୍ତା କ'ଣ ? କେହି କି ଜାଣେ ? ଯଦି ଜାଣ, ତା'ହେଲେ କିଛି ପ୍ରତିକାର କରିପାରିବ କି ?" ନୀଳର ମୁହଁ କଳାପାଉଁଶ ପଡ଼ିଗଲାଣି । ସେ ଜିଭରେ ତା'ର ଅଧରଦୁଇଟା ଥରେ ଓଦା କରିନେଇ କହିଲା, "ହରି, ମୁଁ ଆଉ ବେଶି କ'ଣ କହିବି ? ତୁ ଯାକୁ ରଖି ନ ପାରିଲେ ମୁଁ ସଂସାର ଛାଡ଼ି ଚାଲିଯିବି । ମୋର ଯେ ଆଉ କେହି ନାହିଁ ।" ଯା କହି ଡାକ୍ତରଙ୍କର ଗୋଟେ ହାତ ଧରିପକାଇଲା । ଡାକ୍ତର ଆର ହାତରେ ଆଖିରୁ ଦି'ଟୋପା ଲୁହ ପୋଛି କହିଲେ, "ମୋର ଯେତେଦୂର ସାଧ୍ୟ, ଡାକ୍ତରୀଶାସ୍ତ୍ରରେ ଯେତେ ଦୂର ଯାହା ହୋଇପାରେ, ତା' ମୁଁ କରିବି, କିନ୍ତୁ... ।" ଏତିକି ବେଳକୁ ପଦ୍ମା "ଉଁ, ଉଁ, ଉଁ" କରି ଉଠି ବସିବାକୁ ଚେଷ୍ଟା କଲା । ସମସ୍ତେ ଧରି ତାକୁ ଶୁଆଇଦେଲେ । ଡାକ୍ତର ଦେଖିଲେ ନାଡ଼ୀ ବଡ଼ କ୍ଷୀଣ । ମୁଣ୍ଡରେ ଟିକିଏ ହାତ ଦେଇ ବସିଲେ । ତା'ପରେ ହଠାତ୍ ଉଠି ତାଙ୍କ ବାକ୍ସରୁ ଗୋଟେ ସିରିଞ୍ଜ, ଆଉ ଗୋଟେ ଓଷୁଓ ଶିଶି ବାହାରକରି, ଓଷୁଅ ସେଥିରେ ପୁରାଇ ପଦ୍ମାର ଡାହାଣ ହାତରେ ଫୋଡ଼ିଦେଲେ । ଏହିପରି ଦୁଇ ଥର କରି କହିଲେ, "ମୁଁ ବ୍ରୋମାଇଡ଼ ଇଞ୍ଜେକ୍ସନ୍ ଦେଲି, ଏଥିରେ ରୋଗୀ ଟିକିଏ ଆଶ୍ୱସ୍ତ ହେବ । ଯଦି ଆଜି ରାତିଟା

କୌଣସିମତେ ଟପିଯାଏ, ତା'ହେଲେ ଆଉ ଭୟ ନାହିଁ ।" ନୀଳର ଅନୁରୋଧରେ ଡାକ୍ତର ସେ ରାତିଟା ରୋଗୀ ପାଖରେ ରହିବାକୁ ଠିକ୍ କଲେ; କିନ୍ତୁ ପାଖ ଘରେ ରହିବେ, କେତେବେଳେ କ'ଣ ହେବ ଆମେ ଯାଇ ବୁଝି କହିବୁ । ଔଷଧ ମଧ୍ୟ ଦିଆଗଲା । ଚାହୁଁ ଚାହୁଁ ପଦ୍ମାକୁ ନିଦ ଆସିଲା, ତା'ର ସେ ପ୍ରଳାପ ବନ୍ଦହେଲା ।

ଆମ୍ଭେମାନେ ଜଗି ବସିଛୁ । ନୀଳ ମୁଣ୍ଡ ଉପରେ ବସି ପଦ୍ମାର ମୁହଁକୁ ଚାହିଁଛି । ମୁଁ ତା' ପାଖରେ ବସିଚି । ଚାକର ଚାକରାଣୀ ପାଳିକରି ଯାଉଛନ୍ତି ଆସୁଛନ୍ତି; କିନ୍ତୁ ଆମର ବିଶ୍ରାମ ନାହିଁ । ରାତି ହବ ଦଶଘଡ଼ି, ପଦ୍ମାର ଅଧର ହଲିଲା ପରି ଜଣାଗଲା । ତା'ପରେ ଏ ଶବ୍ଦ ହେଲା, "ନା, ନା, ତୁମେ ଏଠାରୁ ଚାଲିଯାଅ ।" ଯା ପରେ ବେଳେ ବେଳେ ଆଉରି କେତେ କଥା କହିଲା—"ସାବଧାନ, ମୋତେ ଛୁଅଁନା...ଛି, ମୁଁ ଯେ ପର ସ୍ତ୍ରୀ । ତୁମ ଗୋଡ଼ତଳେ ପଡୁଚି, ମତେ ଛାଡ଼ିଦିଅ, ମତେ ଛୁଅଁନା... ତୁମେ ଜାଣିନାହଁ ? ମୁଁ ଯେ ବିଧବା... ମୁଁ ଯେ ବିଧବା ?" ଏଇ କି ତା'ହେଲେ ପଦ୍ମାର ଗୁପ୍ତ ରହସ୍ୟ ? ମୋର ମନରେ ହେଲା—ଲୋକ ରୋଗଶଯ୍ୟାରେ ପଡ଼ିରହି ଅସାବଧାନତାରେ ବେଳେ ବେଳେ ଅନେକ କଥା କହିଥାଏ । ଏ କ'ଣ ତେବେ ସତ୍ୟ ? ନା କେବଳ ପ୍ରଳାପ ?

ମୋର ଯେତେବେଳେ ଧ୍ୟାନ ଭାଙ୍ଗିଲା, ମୁଁ ଚାହିଁ ଦେଖିଲି, ନୀଳର ଭ୍ରୂଲତା କୁଞ୍ଚିତ । ସେ କ'ଣ ଯା ସନ୍ଦେହ କରିଚି ? ଏଇ ସମୟରେ ପଦ୍ମାର ଫେରେ ପାଟି ଫିଟିଲା—"ସ୍ୱାମୀ, ପ୍ରଭୋ ! ମତେ ଅବିଶ୍ୱାସ କରନାହିଁ । ମୁଁ ଯେ ତୁମର ଦାସୀ; ଦାସୀ ଉପରେ ରାଗ କଲେ ସେ କାହାର ହେବ ? ମତେ ମାରିବ ମାର, କିନ୍ତୁ ତୁମେ ଅବିଶ୍ୱାସ କଲେ ମୁଁ ନିଶ୍ଚେ କହୁଛି ବିଷ ଖାଇ ମରିବି ।" ଠିକ୍ ତା'ର ପରେ ତା'ର ମୁଖ ଉଜ୍ଜ୍ୱଳ ହୋଇଉଠିଲା । ସେ କହିଲା, "ମୁଁ ଜାଣିଥିଲି ତୁମେ ମୋତେ କ୍ଷମା କରିବ, ଜାଣିଥିଲି ତୁମେ ତୁମ ପଦ୍ମିନୀ ଉପରେ ରାଗକରି ରହିପାରିବ ନାହିଁ—ତୁମେ ଯେ ଦେବତା ।" ତା'ର ମୁହଁରେ—ସେ ଶୁଖିଲା ମୁହଁରେ ମଧ୍ୟ ସେ ହସଟିକ କେଡ଼େ ସୁନ୍ଦର !

ପଦ୍ମାକୁ ବେଶ୍ ରକମ ନିଦ ହୋଇଆସିଲା । ତା'ର ବିଧବା କଥାଟା ଶୁଣି ନୀଳର ମୁହଁରେ ଯେ ଚିନ୍ତାର ଲକ୍ଷଣ ଥିଲା, ତାହା ଆସ୍ତେ ଆସ୍ତେ ଲିଭିଗଲା । ମୁଖ ପ୍ରଫୁଲ୍ଲ ହୋଇଉଠିଲା । ସେ ଧୀରେ ପଦ୍ମାର ହାତଟି ନିଜ ହାତ ଭିତରେ ଧରିନେଲା । ପଦ୍ମା ଟିକିଏ ଆଖି ଫିଟାଇ ନୀଳ ଆଡ଼କୁ ଚାହିଁଲା । ତା'ପରେ ନିରୀହ ପିଲାଟି ପରି ଶୋଇପଡ଼ିଲା । ରାତି ପାହିଲା । ଡାକ୍ତର ଆସି ଦେଖି କହିଲେ, "ଆଉ କିଛି ଭୟ ନାହିଁ । ନୀଳ, ତୋର ବଇରାଗୀ ହୋଇଯିବା ନ ହେଲା; କେବଳ ଟିକିଏ ସାବଧାନରେ ରହିବାକୁ ହେବ । କାଲି ରାତିର ସେ ଔଷଧ ଆଉ ଦବନାହିଁ । ଏ ନୂଆ ଔଷଧ ରଖ । ରୋଗୀ ଉଠିଲେ ଖାଇବାକୁ ଦେବ । କିନ୍ତୁ ସାବଧାନ, କଷ୍ଟାନିଦିଆ କରି ଉଠାଇବ ନାହିଁ । କବାଟଟା ମେଲାରଖ, ଆଲୁଅ ଟିକିଏ ଆସୁ ।" ଏହା କହି ସେ ଦାଣ୍ଡଆଡ଼କୁ ଚାଲିଗଲେ ।

●

# ସ୍ୱର୍ଗେ ନରକ

ପଦ୍ମା ମରୁ ମରୁ ବଞ୍ଚିଗଲା । ମୋର ମଧ୍ୟ ଭାଳେଣି ବଢ଼ିଲା । ଆଉ ଦିନ ସାତ ଆଠଟି ମଧ୍ୟରେ ତ ଫେରେ ସେ ହାରଟି ଖୋଜାପଡ଼ିବ । ମୁଁ ଦେବି କେଉଁଠାରୁ ? ନ ଦେଇପାରି କି ଜବାବରେ ନୀଳକୁ ସନ୍ତୁଷ୍ଟ କରାଇବି ? ନୀଳ ଯେ କେତେ ଆଦରରେ ସେଇଟିକୁ ଗଢ଼େଇ ଥିଲା । ତା' ମନରେ ଯଦି ସେ ସମ୍ବନ୍ଧରେ କୌଣସି ରକମ ସନ୍ଦେହ ହୁଏ, ତା' ହେଲେ ବା ମୋର ସ୍ଥାନ କେଉଁଠାରେ ? ମୋର କି ଦଶା ହବ ? ଏ ସଂସାରରେ ଯେ ମୋର ଆଉ ରାହା ନାହିଁ । ଏପରି ଗୁଡ଼େ ଭାବି ସେଦିନ ରାତ୍ରରେ ନିଦ ହେଲାନାହିଁ । ଘରଟା ଯିମିତି ରୁନ୍ଧି ଲାଗିଲା; ମୁଁ କବାଟ ଫିଟେଇ ଧୀରେ ବାଡ଼ିପଟ ବଗିଚା ଆଡ଼କୁ ଗଲି । ମାଧବୀ କୁଞ୍ଜ ତଳେ ଗୋଟିଏ ପିଣ୍ଡି ତିଆରି ହୋଇଛି । ଏଠାରେ ନୀଳ ବେଳେ ବେଳେ ଆସି ବସେ । ହାତରେ ବହି ଖଣ୍ଡେ ଧରି ଅନ୍ୟମନରେ କ'ଣଗୁଡ଼େ ଭାବୁଥାଏ । ଚନ୍ଦ୍ର ପକ୍ଷ ରାତି । ସୋରିଷ ବୁଣିଦେଲେ ଗଣି ହୋଇଯିବ—ଏପରି ଚନ୍ଦ୍ର କିରଣ ପଡ଼ିଛି । ଜାଇ, ଯୁଇ, ମଲ୍ଲୀ ମାଳତୀ, ସେବତୀ, ନିଆଳୀ, ଟଗର, ମନ୍ଦାର ପ୍ରଭୃତି ଫୁଲଗଛର ପତରରୁ ସେହି ଚନ୍ଦ୍ରକିରଣ ଯେପରି ଝରି ତଳେ ଖସିପଡୁଚି ମୁକ୍ତାହାରରୁ ମୁକ୍ତାଗୁଡ଼ିକ ଝରିପଡ଼ିଲାପରି । 'ହୋସେନ୍ ହେନାର ସୁବାସିତ ଗନ୍ଧେ' କବିତାର ଢେଉ ଭାଙ୍ଗି ପଡୁଚି; କିନ୍ତୁ ସେଥିରେ ଯୌବନର ମାଦକତା ନାହିଁ । ପ୍ରଳୟର ଉଚ୍ଛୃଙ୍ଖଳତା ନାହିଁ । ଧ୍ୱଂସର ଭେରିନିନାଦ ନାହିଁ; ଅଛି ଚୋରା ବସନ୍ତର ମନ୍ଦ ମଧୁର ହାଉଆ, ଅଛି ଶାନ୍ତିଦେବୀର ଅର୍ଘ୍ୟ ବନ୍ଦାପନା, ଆଉ କୋମଳ ହୃଦୟର ଶୀତଳ ସ୍ପର୍ଶର, ମୂକ ସହାନୁଭୂତିର, ଭରା ପ୍ରେମନଦୀର ଶାନ୍ତ ଗମ୍ଭୀର ତରଳ ସାନ୍ତ୍ୱନା । ଉପନ୍ୟାସରେ ବାହ୍ୟ ଜଗତର ମନ ଉପରେ କାର୍ଯ୍ୟ ଅନେକ ପଢ଼ିଛି । ପଢ଼ି ଭାବିଥିଲି, ହୃଦୟରେ ନରକର ବହ୍ନି ଜଳିଲାବେଳେ ଉପରେ ଚନ୍ଦନ ଲେପନ କଲେ କି ଶାନ୍ତ ହେବ ! କିନ୍ତୁ ଆଜି ଅନୁଭବ କଲି, ଉନ୍ମତ୍ତ ନହେଲେ, ଅଧୀର ନହେଲେ, ଦୁର୍ବଳ ହୃଦୟ ନହେଲେ, ପ୍ରକୃତିର ଏ ସୁଶୃଙ୍ଖଳ ରାଜ୍ୟରୁ ଉଚ୍ଛୃଙ୍ଖଳ କେହି ହୋଇନପାରେ । ମୋର ମେଜାଜ୍ ଥଣ୍ଡା ହୋଇଆସିଲା । ମୁଁ ବସିବସି ପୂର୍ବ ଓ ପର ସବୁକଥା ଟିକିଏ ଟିକିଏ ଭାବିନେଲି । ମନର ଗୋଳମାଳରେ ହୃଦୟର ଦୁର୍ବଳତା । ମୁଁ ସ୍ଥିର ମନରେ, ଦୃଢ଼ ହୃଦୟରେ ପ୍ରତିଜ୍ଞା କଲି, ଛଳେବଳେ କୌଶଳେ ଯେ କୌଣସି ପ୍ରକାରେ ହାରଟି ହସ୍ତଗତ କରିବି । ଆଉ ମୋର ସେ କାର୍ଯ୍ୟରେ ସାହାଯ୍ୟ କରିବ ଗୁରୁବାରିଆ-ମା । ଏଥିରେ ଏଇ ପର୍ଯ୍ୟନ୍ତ ନିଶ୍ଚିନ୍ତ ହୋଇ ଭାବିଲି ପଦ୍ମାର ସେ ପ୍ରଳାପ କଥାଗୁଡ଼ାକ କ'ଣ ଏକାବେଳକେ ଫାଙ୍କି ?

ନୀଳ ସନ୍ତୁଷ୍ଟ ହୋଇପାରେ; କିନ୍ତୁ ମୁଁ ତ ହୋଇପାରୁନାହିଁ । ନାରୀ ହୃଦୟର କଥା ପୁରୁଷ ବୁଝିବ କଅଣ ? ସେଇ ପଞ୍ଜରାଖଣ୍ଡକରେ ଯେ ସଂସାରଟାଯାକର ଭାବନା, ନରକଟାର ଯନ୍ତ୍ରଣା ପୂରି ରହିଛି । ନାରୀ ଏକା ଏକଶ' ଗୁପ୍ତସମସ୍ୟା । କହନ୍ତି, ନାରୀ ଜାତିଟା କିଛି ପେଟରେ ରଖିପାରେନାହିଁ । ଗୋଟିଏ କଥା କହିଲେ ତାକୁ ଫେଣେଇ ଫେଣେଇ ପଚାଶ କଥା କରି ପାଞ୍ଚଜଣଙ୍କ ଆଗରେ ନକହିବା ପର୍ଯ୍ୟନ୍ତ ତା' ତୁଣ୍ଡ ଖଜବଜ ହେଉଥିବ । ଭ୍ରାନ୍ତି ! ନାରୀର ହୃଦୟ ତୁମେ କେବେ ଦେଖିନାହଁ, ପ୍ରକୃତ ନାରୀ ତୁମେ ଚିହ୍ନି ନାହଁ; ତମେ ଚିହ୍ନିଚ

ତମର ବିଳାସସାମଗ୍ରୀ, ହାତପୋଛା ମାଟି, ଗୋଟେ ରକ୍ତ-ମାଂସର ସଖୀ କଣ୍ଢେଇ । ପ୍ରକୃତ ନାରୀ ତା'ଠାରୁ ଢେର୍ ଉଚ୍ଚରେ, ଢେର ଗମ୍ଭୀରରେ । ତୁମେ ତାକୁ ଖୋଜିନାହଁ, ସୁତରାଂ ପାଇନାହଁ । ନୀଳ ଯେ ଭାବିନେଲା, ପଦ୍ମାକୁ ଭାରି ଭଲପାଏ, ଆଉ ସେ ପ୍ରଳାପରେ ଯାହା କହିଲା ସେଗୁଡ଼ାକ ପ୍ରଳାପ ମାତ୍ର ବୋଲି—ତା'ଛଡ଼ା ଜଗତରେ ବଡ଼ ନିର୍ବୋଧ କିଏ ? କିନ୍ତୁ ପଦ୍ମା କି ସତରେ ବିଧବା ? ବାପା ସା'ନ୍ତେ ଖାଣ୍ଟି ହିନ୍ଦୁ, ସବୁ କଥା ନ ବୁଝି ସେ ତ କେବେ କୁଳକୁ ବୋହୂ ଆଣି ନ ଥାନ୍ତେ ! ତେବେ ତା'ର ରହସ୍ୟ କ'ଣ କୌଣସି ବିଧବା ସମ୍ବନ୍ଧରେ ? ମୋରି ପରି କୌଣସି ହତଭାଗିନୀ ହେତୁରୁ ପଦ୍ମାର ବାଲ୍ୟ ଜୀବନରେ କି କୌଣସି ଏକ ନିଗୂଢ଼ ରହସ୍ୟ ଘଟିଯାଇଚି ? ସୋମନାଥ କ'ଣ ସେ ବିଧବାର ସ୍ୱାମୀ ବା ସେ ବିଧବାର...? ନା, ତେବେ ଆଉରି ଏପରି କେତେ କଥା ଭାବିଥାନ୍ତି । ହଠାତ୍ କିଛି ଦୂରରେ ଶବ୍ଦ ହେଲା ଧୂପ୍ । ମୁଁ ଚାହିଁ ଦେଖିଲି ପାଚେରି ଉପରେ ଗୋଟିଏ ମଣିଷ—ବାହାର ବଗିଚା ଭିତରକୁ ଆସିବାକୁ ଚେଷ୍ଟା କରୁଚି । କଚେରି ଘର ଦୁଆର ମୁହଁରୁ ଆମର ଏ ବଗିଚା ଆରମ୍ଭ ହୋଇ ଖଞ୍ଜା ଚାରିଆଡ଼େ ବୁଲିଚି । ପୁଷ୍ପ ସାଗର ମଧ୍ୟରେ ଆମର ଘରଟି ଯେପରି ଗୋଟିଏ ଦ୍ୱୀପ । ମାଇପିମାନଙ୍କ ପାଇଁ ଏ ଖଣ୍ଡ ଅଲଗା କରିବାକୁ ବାଡ଼ିଘର ପାଡ଼ିଆ କାଛ ସାମିଲ ଦୁଇଟା ପାଚେରି ବୁଲିଚି । ସୁତରାଂ ଏ ନିବୁଜ । ତେବେ ଏଥିରୁ ବାହାରିଯିବାକୁ ବି ପାଚେରି ଦିହରେ ଦୁଇଟା ଦୁଆର ଅଛି । ଦୁଆର ଭିତରପଟୁ ବନ୍ଦଥାଏ । ମୁଁ ଲୋକ ଦି'ଟାଙ୍କୁ ଦେଖି କ'ଣ କରିବି ଭାବୁଚି, ଏଇ ସମୟରେ ସେଇ ନୀରବ ନିସ୍ତବ୍ଧ ପବନ ଉପରେ ଭାଙ୍ଗିପଡ଼ିଲା କାହାର ଘଡ଼ି ଘଡ଼ି ସ୍ୱର । ଏ ଯେ ସେହି ଲୋକଟାର ! ମୋର ଲେଶ ମାତ୍ର ସନ୍ଦେହ ନାହିଁ । ମୁଁ କିଛି ନଭାବି ଧୀରେ ପାଚେରି ଦୁଆର ପାଖକୁ ଯାଇ କାନ ଡେରି ଠିଆହେଲି । ମୁଁ ଶୁଣିଲି ଭୁଟ୍‌ରୁ ଭୁଟ୍‌ରୁ ଶୁଭୁଛି । ତାହେଲେ ସେ ଏକା ନୁହେଁ ? ହଠାତ୍ ପାଟି ବନ୍ଦହୋଇଗଲା, ପାଦଶବ୍ଦ ଟିକିଏ ଦୂରକୁ ଗଲାପରି ଶୁଭିଲା । ମୁଁ ଧୀରେ କବାଟଟା ମେଲେଇ ଆରପଟ ବଗିଚାକୁ ପଶିଲି; ଫୁଲଗଛ ଆଡୁଆଳରେ ଏଣିକି ତେଣିକି ଚାହିଁ ଯାଉ ଯାଉ ଦେଖିଲି, ଗୋଟେ ଝାମ୍ପୁଲା ଗଛମୂଳେ ତିନିଜଣ ଲୋକ ଠିଆହୋଇଚନ୍ତି । ମୁଁ ଅନ୍ଧାରରେ ସେମାନଙ୍କର ଖୁବ୍ ନିକଟକୁ ଆସିଯାଇଚି । ଚିହ୍ନିଲି ଏକ ନାଏବ; ଦୁଇ ସେ ଲୋକଟା, ଆଉ ତା' ସାଙ୍ଗରେ ଗୁରୁବାରିଆ ମା' ବର । ମୁଁ ନିଃଶ୍ୱସା ବନ୍ଦକରି ସେମାନଙ୍କ କଥା ଶୁଣିବାକୁ କାନ ଡେରି ରହିଲି ।

ପ୍ରଥମେ ନାଏବ କହିଲେ, "ତୁ କହିଲୁ ଟଙ୍କା ପାଇଲେ ଚାଲିଯିବୁ ବୋଲି; ଫେରେ ରହିଲୁ କିଆଁ ?"

ସେ ଲୋକ—"ହା-ହା-ହା... । (ବାପ୍‌ରେ ! ବାଘହସ ଶୁଣିଲା ପରି ଦିହଟା ଟାଙ୍କୁରିଉଠିଲା ।) ତୁ ଭାବିଚୁ ଆମେ ଅଗୁଆର, ଆଉ ତୁ ଭାରି ଚଲାକ୍ । ହା ହା ହା...ହାମେ ଇଠେଇଁ ରହିବା ବୋଲି ଠିକ୍ କରିଚୁ ।"

ନାଏବ—"ତା' ବେଶ୍, ତୁ ରହିବାକୁ ତ ମୁଁ ମନାକରୁନାହିଁ । ତେବେ ଆଜି ରାତିରେ ଫେରେ ମୋ ସାଙ୍ଗରେ ତୋର କି ପ୍ରୟୋଜନ ? ମୁଁ ତତେ କହିଥିଲି ନା ଆଉ ମୁଁ ଏଣିକି ତତେ କିଛି ଦେଇପାରିବି ନାହିଁ ବୋଲି ? ବରଂ ପୁଲିସ୍ ହାତରେ ଧରାଦେବି, କିନ୍ତୁ ତୋ ଉତ୍ପାତ ଆଉ ସହିବି ନାହିଁ ।"

ସେ ଲୋକ—"ତୋ କଥା ତୁ ବୁଝିବୁ, ହାମର ସେଥିରେ କି ଯାଏ ଆସେ ? ତୁ ଯଦି ପୁଲିସ୍ ହାତରେ ଧରାଦବୁ ଫାଶୀକାଠରେ ଲଟକିବୁ; ହେଣେ ତୋ ବୁଢ୍ଢା ବାପ ବସିଛି, ତା' ମୁହଁରେ ଚୂନକାଳି ଦବୁ । ସାଙ୍ଗସାଥୀ ହସିବେ । ଆଉ ତୋ'ର ସେ ସାଙ୍ଗ କାନ୍ଦି କାନ୍ଦି ମରିବ । ଏ ଗୁଡ଼ା ଯେବେ ତତେ ଭଲ ଲାଗିବ ତା'ହେଲେ ତୁ କର, ହାମକୁ ଲଗା କଣ ? ହାମେ ସିନା ତୋରି ଫାଇଦା ପାଇଁ ଧାଇଁ ଥିଲି, ତୁ ଯଦି ନ ବୁଝିବୁ ତେବେ ନ ହେଲା । ଚାଲେ ସଇତା ଭାଇ, ହାମର ଯିବା ।"

ନାଏବ—"ତୁ କ'ଣ କହିବାକୁ ଆସିଥିଲୁ ଶୁଣେ । ଏଇ କଥା ତୋଠାରୁ ଅନେକ ଥର ଶୁଣିଲିଣି, ଆଉ କିଛି ନୂଆ ଶଇତାନି ମତଲ୍‌ବ ଅଛି ବୋଇଲେ ବାହାର କର ଦେଖି ।"

ସେ ଲୋକ—"ଦେଖ, ସୁମନାଥ ଭାଇ, ତୁ ସବୁବେଳେ ହାମକୁ ଗାଳିଦେଉଚୁ, ହାମେ ଶଇତାନ୍ ଆଉ ତୁ ଶଇତାନ୍‌ର ଗୋଲାମ । ହାମେ ତୋର ସିଲୁଅ କଲେ ତୁ ହାମ ପାଇଁ ଖିଲ ସଜାଡୁଚୁ, ଏ କୁ'ରାଇଜ କଥା କହନି ଭଲା ?"

ନାଏବ—"ବେଶ୍ ସେ କଥା ଥାଉ । ବର୍ତ୍ତମାନ ଆସିବାର ଉଦ୍ଦେଶ୍ୟ କ'ଣ ଶୁଣେ ?"

ସେ ଲୋକ—"ଏଇ ଦେଖ, ତୋର ଏକ ଡିର୍ଲା ସାଙ୍ଗ ଅଛି । ସେ ଏଇ ଜମିଦାର ଘରର କିଏ ତା' ବି ହାମେ ବୁଝିସାରିଚୁ; ତୁ ତାରି ହାତରେ ଉଉତୁ କାମ କରାଇନେବୁ । ହାମେ ବେଶି ମାଗୁନାହିଁ । ମାସରେ ଟଙ୍କା କୋଡ଼ିଏ କରି ହାମକୁ ଦେଲେ ବେଶ୍ କାମ ଚଳିଯିବ । ତୁ ରହିବୁ ନିଶ୍ଚିନ୍ତରେ । ହାମେ ବି ରହିବ ନିଶ୍ଚିନ୍ତରେ । ହାମେ ବି ବୁଲି ବୁଲି ଥକି ଗଲିଣି । ଘରଦୁଆର କରି ବାହାକୁଢ଼ା ହେଇ ଟିକିଏ ସୁଖରେ ରହିବି ।"

ୟାର ବି ବାହାହବାର ଇଛା !

ନାଏବ—"କିନ୍ତୁ ଗୋଟେ କଥା ଭୁଲିଯାଇଚୁ ଯେ ମୁଁ ଟଙ୍କା କେଉଁଠାରୁ ଆଣିବି ? ମୁଁ ଯେ ନିଜେ କୋଡ଼ିଏ ଟଙ୍କାର ଚାକର; ତତେ କୋଡ଼ିଏ ଟଙ୍କା କୁଠଉ ଦେବି ?"

ସେ ଲୋକ—"ନାଇଁ ନାଇଁ, ହାମେ କ'ଣ କହୁଚି ତୁ ଦବୁ ବୋଲି ? ତୋର ସେ ମାଇକିନିଆ ସାଙ୍ଗ ଦବ ।"

ନାଏବ—"ସେ କିଏ ? ମୋର ତ ମାଇକିନିଆ ସାଙ୍ଗ କେହି ନାହାନ୍ତି ? ମୁଁ ଯେ ଏଠାକୁ ଆସିଚି ଦିନ ପନ୍ଦରଟା ହେବ କି ନାହିଁ ।"

ସେ ଲୋକ—"ଆରେ ପଗଲା, ପେରେମତ ଗୋଟେ ଆକ୍ଷିମିଟିକାରେ ପକ୍‌କା— ପନ୍ଦରଦିନ କ'ଣ ହେବ ? ହାମେ ସବୁ ଜାଣିଚି, ନୁଚେଇଲେ ହେଉନାହିଁ ।"

ନାଏବ—"ତୁ କ'ଣ ଜାଣୁ ?"

ଲୋକ—"ଯେ ଜମିଦାରିଆଣୀ ତୋର ପେରମରେ ପଡ଼ିଚି ।"

ନାଏବ—"ଶଇତାନ, ପାଜି, ବେମାନ—ଯା ଏଠାରୁ ଚାଲିଯା, ମୁଁ ତୋଠାରୁ କିଛି ଶୁଣିବାକୁ ଚାହେଁନାହିଁ ।" ଏହା କହି ନାଏବ ମୁହଁ ଫେରାଇଲେ । ବିକଟ ଅଟ୍ଟହାସ୍ୟ କରି ସେ ଲୋକଟା ତାଙ୍କର ପଛରେ କହିଲା—"ଏକ ସଲାମ ନେହିଁ କରେଗା ତୋ ଶହେ ସଲାମ

କରେଗା । କାଲି ସଞ୍ଜ ଭିତରେ ତୋ ଜବାବ ନ ପାଇଲେ ହାମେ ଚାଲିଲୁ ଠିକ୍ ଜାଗାକୁ ।" ଏହା କହି ସେମାନେ ମଧ୍ୟ ଯେପରି ଆସିଥିଲେ ସେହିପରି ଚାଲିଗଲେ । ମୁଁ ଘରକୁ ଫେରିଆସିଲି ।



## ଛିନ୍ନପତ୍ର

ଦେଖିଲି ହରେକୃଷ୍ଣ ବାବୁ ଜଣେ ଲାଏକ ଡାକ୍ତର । ତାଙ୍କର ଓଷଧଗୁଡ଼ାକ ଗାରେଡ଼ିମନ୍ତ୍ର ପରି ଧରେ । ପଦ୍ମାର ତ ଜର ନାହିଁ । ଏ କେତେଟା ଦିନ ଭିତରେ ତା'ର ଆଗ ଦିହ ଆସିଗଲାଣି । ସେ ଆଗପରି ତା'ର ଦୁଃଖଧନ୍ଦାରେ ଲାଗିଚି । ତା'ର ଭଲ ହେଲା ଦିନ ବ୍ରାହ୍ମଣ-ଭୋଜନି, ଦିଅଁ ଗାଧୁଆ ହେରିକା ହୋଇଯାଇଥିଲା । ନୀଳ ବର୍ତ୍ତମାନ ନିଶ୍ଚିନ୍ତ; ତା'ର ଆନନ୍ଦ କହିଲେ ନ ସରେ । ପଦ୍ମାର ମନରେ ମଧ୍ୟ ପୂର୍ବ ଚାଞ୍ଚଲ୍ୟ ନାହିଁ । କୌଣସି ବିଶେଷ ଭାବନାର ଚିହ୍ନ ମଧ୍ୟ ମୁଁ ଦେଖିପାରିଲି ନାହିଁ । ତେବେ ହେଲା କ'ଣ ? କିନ୍ତୁ ସେ କଥା ଭାବିବାକୁ ମୋର ସମୟ କାହିଁ ? ଦିନଅଧକ ଭିତରେ ଯେ ନୀଳ ତା'ର ସେ ହାରଟା ମାଗିବ—ମୁଁ କ'ଣ କରିବି ? ସେଦିନ ଗୁରୁବାରିଆ-ମା' ଆସିଥିଲା । ତା' ସହିତ ଅନେକ କଥାବାର୍ତ୍ତା କରି ମଧ୍ୟ ଜାଣିପାରିଲି ନାହିଁ । ତାକୁ ବହୁତ ରାଣ-ନିଆମ ପକାଇ କହିଚି, ସେ ହାରଟା କୁଠେଇ ସେମାନେ ରଖିଚନ୍ତି ବା କୁଠେଇ ବିକିଛନ୍ତି, ସେକଥା ସେ ଯିମିତି ବୁଝିବ । ସେ ହଁ ଭରିଯାଇଚି; କିନ୍ତୁ ମୁଁ ନିଶ୍ଚିନ୍ତ ହୋଇପାରୁନାହିଁ । ମୁଁ ଯେ ବାରୁଦଗଦାରେ ବସିଚି । ବେଳେବେଳେ ଭାବିଚି, କହିଦେବି, ହାରଟା ଚୋରିଗଲା ବୋଲି; କିନ୍ତୁ ତାହେଲେ ପଦ୍ମାର ହୋଇ ମୁଁ ଯେ ଯାଇଥିଲି, ସେ ବିଶ୍ୱାସ ତ ନାଏବଙ୍କର ତୁଟିଯିବ । ନାଏବ ଅବଶ୍ୟ ସେ କଥା ପଦ୍ମାକୁ ସୁବିଧା ପଡ଼ିଲେ କହିବେ; କିନ୍ତୁ ସେ ନ କହିବା ପର୍ଯ୍ୟନ୍ତ ତ ଟିକିଏ ସମୟ ଅଛି । ୟା ଭିତରେ ରହସ୍ୟ ଭେଦ ହୋଇପାରେ ।

ବେଳେବେଳେ ଫେରେ ମନହୁଏ ପଦ୍ମାର ରହସ୍ୟରେ ମୋର କି କାମ ? ମୁଁ ପର ଲାଗି କାହିଁକି ନିଜ ମୁଣ୍ଡ ହରେଇବି ? କିଛି ଠିକ୍ କରିପାରୁନାହିଁ । ଏ ସବୁ ଚିନ୍ତା ଭିତରେ ଗୋଟାଏ ଚିନ୍ତା ମୋର ମନରେ ବଡ଼ ବେଶି ଲାଗିଚି, ହାରଟା ଯେକୌଣସି ପ୍ରକାରେ ଉଦ୍ଧାର କରିବାକୁ ହେବ ।

ନାଏବଙ୍କ ସାଙ୍ଗରେ ସାକ୍ଷାତ କଲେ କୌଣସି ଉପାୟରେ ହୁଏତ ହାରଟା ଠାବ କରିପାରିବି, ଏଇ ଆଶାରେ ତାଙ୍କ ଘରକୁ ଯାଇଥିଲି । ଦିନେ ଯାଇ ଦେଖିଲି କବାଟ ଶିକୁଳି ଦିଆ; ସେ ନାହାନ୍ତି । ଶିକୁଳି ଫିଟେଇ ଘର ଖୋଲିଲି, ଦେଖିଲି ନାଏବ ଯେପରି ଖୁବ୍ ତରବର ହୋଇ ଘରୁ ବାହାରିଯାଇଚନ୍ତି । ଜିନିଷପତ୍ରଗୁଡ଼ାକ ଏଣେତେଣେ ପଡ଼ିଚି । ଟେବୁଲ ଉପରେ କଲମଟା ଗୋଟାଏ ଛାପାକାଗଜ ଉପରେ ପଡ଼ିଚି । ବୋଧହୁଏ କିଛି ଲେଖୁଥିଲେ, କାଗଜଗୁଡ଼ାକ ଟେବୁଲଟା ଯାକ ବିଞ୍ଚା ହୋଇଚି । ଗୋଟାଏ ଖାମ ବାହାର କରି ଉପରେ ରହିଚି । ଘରେ ଆଉ କିଛି ଦେଖିଲି ନାହିଁ । ତାଙ୍କର ଚାବି ଖୋଜିଲି, ତାହା ବି ପାଇଲି

ନାହିଁ । ଏଣିକି ତେଣିକି, ସିନ୍ଦୁକ-ସନ୍ଧିକି ଉଣ୍ଡାଉଣ୍ଡି କଲି । ଦେଖିଲି ଘରର ଗୋଟାଏ କଣରେ ସିନ୍ଦୁକ ପଛଆଡ଼େ ଖଣ୍ଡେ କାଗଜ ପଡ଼ିଚି । ତାକୁ ଉଠାଇ ଆଣି ଦେଖିଲି—ଗୋଟେ ଚିଠିରୁ ଅଧେ, ଚିଠିଟି ଦି'ଗଡ଼ ହୋଇ ଲମ୍ବବାଗରେ ଚିରାହୋଇଚି, ଏ ତା'ର ଫାଳେ । ଚିଠିଟା ଦେଖିଲାବେଳୁ ମୋର କୌତୂହଳ ହୋଇଚି, କାରଣ ହସ୍ତାକ୍ଷର ପଦ୍ମାର । ଚିଠିଟା ପଢ଼ିଲି ।

"ସୋମନାଥ ଭାଇ;

ମୋତେ ଏ କେତେ ଦିନ ମୁଁ ଆଉ ତୁମ ପତ୍ରର
ଦେଇ ପାରିନାହିଁ । କଲେ ମୁଁ
ତୁମେ ଲେଖିଥିଲ କେହି ଜଣେ
ଇଚି ବୋଲି ତୁମକୁ ଗୋଟାଏ
ସେ କିଏ ? ମୁଁ କାହାର ହାତରେ
ଯାହା ମଧୁଆ-ମା' ହାତରେ
ଶତ୍ରୁ; କିନ୍ତୁ କିଏ ସେ ମୁଁ ଭାବି
ଚଳିବାକୁ ହେବ । ମୋ ସହିତ
କେହି ଜାଣିଲେ ବଡ଼ ଖରାପ
ଦବା-ନବା "ସେ ଯାଉ" ମୁଁ ଜ୍ୱରରୁ
ଥିବ । ଯାଇନାହିଁ ଯେତେବେଳେ
ନାହିଁ । ତେବେ ଆମ ଭିତରେ
ନହୁଏ, ଥରେ କେହି ଜାଣିଲେ
ଭାବିଦେଖ । ମୋର ଅନୁରୋଧ
ଖାତିରିରେ ତୁମେ ନୀରବ ।

ତୁମର
ପଦ୍ମା"

ଏ ଚିଠି ପଦ୍ମା ସୋମନାଥ ପାଖକୁ ଲେଖିଛି । ଆଉ ଏଥିରେ ଶତ୍ରୁ ଯେ ମୁଁ, ଏ ବିଷୟରେ ମୋର ଆଉ ତିଳାର୍ଦ୍ଧ ସନ୍ଦେହ ନାହିଁ । ମୋର ରହସ୍ୟଟା ସେମାନେ ଭେଦ କରିପାରିଚନ୍ତି; କିନ୍ତୁ ଗୋଟାଏ କଥା—ଏ ଚିଠି ଅଧକରୁ ଯେପରି ଜଣାଯାଉଚି, ନାଏବ ପଦ୍ମାକୁ ମୋର ନାମ କହିନାହାନ୍ତି; କାହିଁକି ? ସେ ବିଷୟ ଘୋଡ଼ାଇ ରଖିବାରେ ତାଙ୍କର କି ଉଦ୍ଦେଶ୍ୟ ? ମୋ ସହିତ ଖେଳିବା କି ତାଙ୍କର ଅଭିପ୍ରାୟ ? ଦ୍ୱିତୀୟ କଥା, ପଦ୍ମା ମୋ ପ୍ରତି ଅବିଶ୍ୱାସ କରିପାରିନାହିଁ । ତା'ର ପଛରେ କିଏ ଲାଗିଚି, ସେକଥା ସେ ଏ ପର୍ଯ୍ୟନ୍ତ ବୁଝିନାହିଁ । ସୁତରାଂ ତା'ର ଗତିବିଧି ଲକ୍ଷ୍ୟ କରିବା ମୋ ପକ୍ଷରେ ପୂର୍ବପରି ସହଜ । ଏ ଚିଠିରୁ ହାରର ମଧ୍ୟ କୌଣସି ସୁରାକ ପାଇଲି ନାହିଁ । ତାଙ୍କ ଟେବୁଲ ଉପରେ କାଗଜଗୁଡ଼ା ଘଣ୍ଟାଘଣ୍ଟି କରୁ କରୁ ଗୋଟାଏ ରସିଦ ପାଇଲି; ଦେଖିଦେବା ମାତ୍ରେ ବିକ୍ରୀ ରସିଦ ବୋଲି ଜାଣିପାରିଲି । ସେଥିରେ ଲେଖାହୋଇଚି, "ଶ୍ରୀଯୁକ୍ତ ସୋମନାଥ ମହାପାତ୍ରଙ୍କଠାରୁ ଆଜି ଦିନ ପୌଷ ଶୁକ୍ଳ ଏକାଦଶୀ

ସ୍ନ ୧୩୩୨ ସାଲ ସୋମବାର ଆମ୍ଭ ମୁକାମରେ ଭ୭ରି ଜୟପୁରି ସୁନାର ଗୋଟିଏ ନୂଆହାର ଟ୨୨୫୦ଙ୍କାକୁ କ୍ରୟକରି ଏ ରସିଦ ଲେଖି ଦେଲୁକି ଦରକାର ବେଳେ କର୍ମରେ ଆସିବ । ଇତି । ଶ୍ରୀ ମୋହନ ସାମଲ; ସୁନାରୀ ମହାଜନ, ଶ୍ରୀରାମ ବଜାର, ଯାଜପୁର ।" ରସିଦଖଣ୍ଡିର ଦେଖି ମୋର ହାଲୁକ ଶୁଖିଗଲା । ହାରଟା ଯେ ଯାଇ ଯାଜପୁରରେ—ମୁଁ କ'ଣ କରିବି ? ମୋ ପାଖରେ କିଛି ଟଙ୍କା ଥିଲା, ପ୍ରାୟ ପାଞ୍ଚଶ ହେବ । ମା'ସାନ୍ତାଣୀଙ୍କ ଅମଳରୁ ଆଜି ପର୍ଯ୍ୟନ୍ତ ମୁଁ ହାତଖରଚ ପାଇଁ ଯୁ'ତକ ଟଙ୍କା ପାଏ, ତାକୁ ବଢ଼େଇ କୁଢ଼େଇ ଏତିକି କରିଚି । ସେଇଥିରୁ କିଛି ଦେଇ ହାରଟା ମୁକୁଳେଇ ଆଣିବି ବୋଲି ଠିକ୍ କଲି ।



# ଧରାପଡ଼ିଲେ

ପଦ୍ମାର ଦିହ ଭଲହୋଇଯାଇଚି । ସେଥିପାଇଁ ସହରର ବିରଜା ଠାକୁରାଣୀଙ୍କି ମୁଁ ଭୋଗ ମନାସିଥିଲି ।

କାଳୀ ଠାକୁରାଣୀ ଖାସା ପ୍ରତ୍ୟକ୍ଷ ଦେବତା । ଭୋଗ ଦେବାରେ ଡେରି ହେବ । ମୁଁ ଯାଇ ଭୋଗକରାଇ ଦର୍ଶନ କରି ଆସିବି ବୋଲି ନୀଳକୁ ଧରିବସିଲି । ନୀଳର ମନ ଦେଖିଲି କିମିତି ମରିଯାଇଚି । ତା'ର ମୁହଁରେ ସେ ହସ ନାହିଁ, ଆଖିରେ ଗୋଟେ କିମିତି କିମିତି ତେଜ । ତା'ର ଅଙ୍ଗଭଙ୍ଗି, ଚାହାଁଣି ସବୁଥିରେ ଗୋଟେ ଅସ୍ଥିରତା । ସେ ଯେପରି କୌଣସି ଗୋଟାଏ କଥା ନେଇ ବଡ଼ ବ୍ୟାକୁଳ ହେଉଚି; କିନ୍ତୁ କିଛି ଠିକ୍ କରିପାରୁନାହିଁ । ସେ ମୋ କଥା ଶୁଣି ମୋ ଆଡ଼କୁ ଯେପରି ଚାହିଁଲା, ସେଥିରେ ମୋର କଲିଜାଆଡୁ ଥରିଆସିଲା । ସେ ଚାହାଣି ସନ୍ଦେହପୂର୍ଣ୍ଣ; କିନ୍ତୁ ନାରୀର କପଟତା ଆଗରେ ପୁରୁଷର ସନ୍ଦେହ କେତେବେଳଯାଏ ରହିପାରେ ? ମୁଁ କଥାଗୁଡ଼ାକ ଏପରି ମଜେଇ-ସଜେଇ କହିଲି ଯେ, ସେ ପ୍ରଥମେ ଅମଙ୍ଗ ହେଉଥିଲେ ମଧ୍ୟ ଶେଷରେ ମଙ୍ଗିଲା । କାଲି ସକାଳେ ପାଣୁଆ ଗାଡ଼ି ଠିକ୍ କରିବ, ରାମା ଚାକର ଓ ଶ୍ୟାମା-ମା' ପୋଇଲୀ ସଙ୍ଗରେ ଯିବେ ।

ମୁଁ ସବୁ କଥା ଠିକ୍‌ଠାକ୍ କରି ଆସି ଶୋଇଲି । ମନରେ ଆଜି ବେଶ୍ ଆଶ୍ୱସ୍ତ । ଶୁଖିଲା କଥାଟାରେ ମୋର ଏତେ ଗୁଡ଼େ ଟଙ୍କା ବ୍ୟୟ ହୋଇଯିବ ବୋଲି ଯେ ଦୁଃଖ ଟିକିଏ ମନରେ ହେଉଥିଲା, ତାହା ଏ ପୋଡ଼ପାଡ଼ ଗୋଳମାଳରୁ ରକ୍ଷା ପାଇବା ଆଶାରେ ତୁଟିଗଲା । ମୁଁ ସହରରେ ଯାଇ କ'ଣ କ'ଣ କରିବି, ସେଇ ସବୁ କଥା ମନରେ ଓଲଟ ପାଲଟ କରି ଭାବୁ ଭାବୁ କେତେବେଳେ ଆଖି ନିଦରେ ଘୋଡ଼େଇ ହୋଇପଡ଼ିଲା । ଛାଇ ନିଦ ଆସି ଯାଇଚି, ହଠାତ୍ ଦୁଆରଟା ଟିକେ କେଁ କରି ହେଲା । ମୁଁ ଚମକି ଉଠିଲି । ମତେ ଲାଗିଲା ଯେପରି କେହି ଧୀର କରି କବାଟ ମେଲେଇ ଚାହିଁଦେଇ ବାହାରିଗଲା ।

ମୁଁ ମଧ୍ୟ ସେହିପରି ତୁନି ହୋଇ ଶେଯରୁ ଉଠି ଧୀରେ ଧୀରେ ଦୁଆର ପାଖକୁ ଆସି ଦେଖିଲି, କିଏ ଜଣେ ପାଚେରି ପିଣ୍ଡାରେ ଗୋଡ଼ ଚିପି ଚିପି ଯାଉଚି । କିଏସେ ସେ ? ନୀଳ ?

ନୀଳ କାହିଁକି ମୋ ଘରକୁ ଆସନ୍ତା ? ସେ ଯେ ବିଶେଷତଃ ଆଜି ନାହିଁ । ରାମ ରଥଙ୍କର ଝିଅବାହା, ସେ ବହୁତ ସାଧ୍ୟ-ସାଧନା କରି କହିଯାଇଥିଲେ, "ଆପଣଙ୍କୁ ଯିବାକୁ ହେବ ।" ନୀଳ କେବେ କାହା ଘରକୁ ଯାଏ ନାହିଁ । ଆଜି ରଥଙ୍କ କଥା ଏଡ଼ି ନପାରି ଯିବ ବୋଲି କହିଥିଲା; ସେଠିକି ଯାଇଛି, ଆସୁ ଆସୁ ରାତି ଦି'ପହରରୁ କମ୍ ହେବନାହିଁ । ତେବେ ଏ କିଏ ? ମୁଁ ସେହିପରି ଧୀରେ ଧୀରେ ତା'ର ପିଛା ଧଇଲି । ଅଷ୍ଟମୀର ଅନ୍ଧାର ରାତି । କେବଳ ସେଇ ଲୋକଟାର ଛାଇ ଛଡ଼ା ଆଉ କିଛି ଦିଶୁନାହିଁ । ମୁଁ ଦେଖିଲି ଲୋକଟା ଅନ୍ଦର ମହଲା ଟପି ମଝି ଖଞ୍ଜାକୁ ଗଲା । ଧୀରେ ଧୀରେ ନାଏବଙ୍କର ଦୁଆରେ ହାତ ମାଇଲା; ଏ ତେବେ କ'ଣ ପଦ୍ମା ? ମୁଁ କିଛି ଦୂରରେ ନିଃଶ୍ୱାସ ବନ୍ଦକରି ଠିଆହୋଇଛି, କବାଟ ଫିଟିଲା । କବାଟ ଫାଙ୍କ ଭିତରୁ ଯେ ଆଲୁଅ ଆସି ଲୋକଟାର ମୁହଁରେ ପଡ଼ିଲା, ସେଥିରେ ମୋର ସନ୍ଦେହ ଠିକ୍—ପଦ୍ମା ! ସେ ଘର ଭିତରକୁ ଗଲା; ମୁଁ ଦୁଆର ପାଖରେ ଠିଆହୋଇ ରହିଲି । ଭିତରୁ ଭୁଟ୍‌ଭୁଟ୍ ଶବ୍ଦ ଆସୁଥିଲା । ମୁଁ କାନ ଡେରି ଶୁଣିଲି । ସବୁକଥା ମତେ ଶୁଭିଲା ନାହିଁ ।

ନାଏବ କହୁଚନ୍ତି—"ମୁଁ ବୁଝିପାରୁଛି, ଏଠିକି ଆସି ତୁ କେତେ ବିପଦ ଡାକିଆଣିଚୁ; କିନ୍ତୁ ଅନ୍ୟ ଉପାୟ ନଥିଲା । ଏ ବିଷୟରେ ଗୋଟେ କିଛି ମୀମାଂସା ନକଲେ ଆଉ ବେଶିଦିନ ଚଳୁନାହିଁ । ତୁମର ଗାଁ ଛାଡ଼ି ଚାଲିଯିବା ଦିନୁ ମୋର ମନରେ ଦିନକ ପାଇଁ ସୁଖ ଆସିନାହିଁ । ତୁ ଥିବାତକ ମୁଁ ତତେ କେତେ ଭଲପାଇଥିଲି, ସେ କଥା ବୁଝିପାରିନଥିଲି; କିନ୍ତୁ ତୁ ଚାଲିଯିବା ପରେ ମତେ ଚାରିଆଡ଼ ଅନ୍ଧାର ଦିଶିଲା । ମୁଁ ପାଗଳଙ୍କ ପରି ହୋଇ ଏଣେତେଣେ ବୁଲୁଥାଏ । ମୋର ସବୁ କାମ କେବଳ ଗୋଟାଏ କଳ ଚାଳିଲା ପରି ହେଉଥାଏ । ଭାବନା କରିବାର ଶକ୍ତି ରହିଲା ନାହିଁ; ନିଜକୁ ଦବେଇ ରଖିବାର ପ୍ରବୃତ୍ତି ରହିଲା ନାହିଁ । ଏଇ ସମୟରେ ନନାଙ୍କ ନାମରେ ମଧୁପୁର ପଣ୍ଡୁ ମିଶ୍ରେ ଗୋଟାଏ ମକଦମା ଆଣିଲେ । ମିଛ ମକଦମା, ଜମିବାଡ଼ି ନେଇ । ଜମିଟା ଆମର; ବନ୍ଦୋବସ୍ତରେ ତା' ନାମରେ ସେ କରେଇ ନେଇ ହଳ ପଠାଇଥିଲା । ନନା ଜାଣିପାରି ଯାଇ ତା' ହଳ ଫିଟେଇଦେଲେ । ସେ ମକଦମା କଲା; କିନ୍ତୁ ଆମେ ହଳ ପଠାଇଲୁ । ଜମି ଚଷିଲୁ । ଧାନ ବୁଣିବାକୁ ମୁଁ ଯାଇଥିଲି; ମୋ ସଙ୍ଗରେ ଗୋଟାଏ ହଳିଆ... କାମଟା କରିଦେଲି ରାଗରେ; କିନ୍ତୁ ଯେତେବେଳେ ଚେତନା ହେଲା, ମୋର ହାଲୁକ ଶୁଖିଗଲା । ମୁଁ କିଛି ଦିନ ଗାଁରେ ରହିଲି, ଗୋଳମାଳଟା ତୁଟି ଯିବା ପର୍ଯ୍ୟନ୍ତ; ତା'ପରେ ଚାକିରି ଛଳନାରେ ଗାଁ ଛାଡ଼ି ପଳେଇଆଇଲି, ସେଇଦିନୁ କେତେ ଆଡ଼େ ବୁଲିଚି; କିନ୍ତୁ ସେ ଲୋକଟା ମୋ ପିଛା ଧରି ମତେ ବହୁତ କଢେଇଚି । ଏଠାକୁ ଆସିଲି, ଏଠାରେ ମଧ୍ୟ ସେ । ଏପର୍ଯ୍ୟନ୍ତ ଜୀବନ ପ୍ରତି ମାୟା-ମମତା ନଥିଲା; କିନ୍ତୁ ଏଠାକୁ ଆସି ତତେ ଦେଖି ପୁଣି ମୋର ପୂର୍ବ ଭାବ ଫେରିଆସିଚି; ମୁଁ ପୁଣି ମଣିଷ...ମତେ ଆଉ ନିରାଶ କରିବୁ ନାହିଁଟି !

ପଦ୍ମା—"ଛି ସୋମନାଥ ଭାଇ...ଯାହା ତ ହୋଇଥିଲା ତା' ତ ଇଲେ ନାହିଁ ? ଆଉ ସେ ବା କି ଭାବ...ସେ ତ ଗୋଟେ ଖିଆଲ ମାତ୍ର; ବର୍ତ୍ତମାନ ମୁଁ ପର ସ୍ତ୍ରୀ, ଗୋଟେ କୁଳର ବୋହୂ, ଦେବତା ପରି ସ୍ୱାମୀର ଭାର୍ଯ୍ୟା । ଏତେବେଳେ ତୁମଠାରୁ ଏ ସବୁ କଥା ଶୁଣିବାରେ ମଧ୍ୟ ପାପ । କେବଳ ମୁଁ ତୁମକୁ ସେତିକି ଭଲପାଏ ବୋଲି..."

ନାଏବ—"ତେବେ କ'ଣ ତୋର ସୁଖ, ତୋର ସ୍ୱାଚ୍ଛନ୍ଦ୍ୟ ପାଇଁ ମୁଁ ବଳି ଦିଆହେବି ? ମୋ ଜୀବନର କି ମୂଲ୍ୟ ନାହିଁ ?"

ପଦ୍ମା—"କାହିଁକି ? ତୁମେ ତ ଏଠାରେ ଅଛ, ବେଶ୍ ଅଛ, ତୁମର ଅଶାନ୍ତି ଅସୁବିଧା କେଉଁଠାରେ ?"

ନାଏବ—"ତୁ ପଚାରୁଛୁ ଅଶାନ୍ତି, ଅସୁବିଧା କେଉଁଠାରେ ? ହାୟ, ନାରି ! ତୋର ସ୍ୱଭାବ କି ଏହିପରି ଉଦାସ ? ଗଙ୍ଗାକୂଳରେ ରହି ଅଲକ୍ଷଣା ପରି ପାଣି ପିଇବାକୁ ଗଲେ, ଗଙ୍ଗାର ମଧ୍ୟ ପାଣି ଶୁଖିଯିବ, ମୋର କେଉଁ ଦୋଷରେ ? ତୁ ଯେ ମୋର ହୃଦୟରେ ଅଗ୍ନି ବୃଷ୍ଟି ସୃଷ୍ଟି କରିଛୁ, ତା'ର ସାନ୍ତ୍ୱନା ତୋର ସେ ଅଧର..."

ପଦ୍ମା—"ସୋମନାଥ ଭାଇ, ତୁମର ଏ ପାଗଳାମି ଶୁଣିବାକୁ ମୁଁ ଏଠାକୁ ଆସିନାହିଁ । ମୁଁ ଯେ..."

ନାଏବ—"ହା, ହା, ହା, ତୁ ଯେ କୁଳବଧୂ ? ତୁ ଯେ ଶାସ୍ତ୍ରମତରେ...ତୋର ଏଠାରେ ରହିବାର କୌଣସି ଅଧିକାର ନାହିଁ । ମୋର ମଧ୍ୟ ସେହିପରି...ଉପରେ ଅଧିକାର ଥାଏ ।"

ପଦ୍ମା—(କାନ୍ଦିକାନ୍ଦ ହୋଇ) "ତୁମେ କି ନିଷ୍ଠୁର ସୋମନାଥ ?"

ନାଏବ—"ମୁଁ ନିଷ୍ଠୁର ନା ତୁ ନିଷ୍ଠୁର ?"

ପଦ୍ମା—"ତୁମେ ତେବେ ମତେ କ'ଣ କରିବାକୁ କହୁଛ ?"

ନାଏବ—"ତୁ ମୋ ସଙ୍ଗରେ...ଆମେ ଦିହେଁ ଯାକ ଏ ସଂସାର ଛାଡ଼ି... ।"

ପଦ୍ମା—"ନା, ନା ତା' ଅସମ୍ଭବ, ତା' ମୁଁ କାହିଁକି କରିବି ? ଶଇତାନ ତୁମେ, ସୋମନାଥ ! ନରକ ତୁମେ, ନା ନା; ମୁଁ ଭୁଲ କହିଚି, ରାଗ ନାହିଁ । ମତେ ରକ୍ଷାକର, ଏହା ଛଡ଼ା ମୁଁ ଆଉ ସବୁ କରିବାକୁ ପ୍ରସ୍ତୁତ ଅଛି ।"

ନାଏବ—"ସବୁ କରିବାକୁ ପ୍ରସ୍ତୁତ ଅଛୁ ? ତେବେ ଶୁଣ—ହୁଏତ ତତେ ମୋ ସଙ୍ଗରେ ଯିବାକୁ ହବ, ତା' ନହେଲେ ମତେ ପ୍ରତି ମାସରେ ତିରିଶ ଟଙ୍କା କରି ଦବାକୁ ହେବ ।"

ପଦ୍ମା—"ମୁଁ ତୁମକୁ ଟଙ୍କା କାହିଁକି ଦେବି ? କୁ'ଠଉ ବା ଦେବି ?"

ନାଏବ—"କୁ'ଠଉ ଦବୁ ସେ ତୋର ବିଚାରିବାର କଥା । କାହିଁକି ଦବୁ ? ତୋର ଚୁଟି ଯେ ମୋ ହାତରେ । ମୁଁ ଯଦି ତୋହଠାରୁ ଯାହା ଆଶା କରିଥିଲି ନପାଇବି, ତୁ ଯଦି ତୋର ସ୍ୱାର୍ଥ ପାଇଁ ମୋତେ ଫୋପାଡ଼ିଦେଇପାରୁ, ତା'ହେଲେ ମୁଁ କାହିଁକି କାହା ଲାଗି କିଛି ସହିବି ? ବାଃ ବାଃ, ତୁ ଜମିଦାର ଘରେ ଖଟ ପଲଙ୍କରେ ସ୍ୱାମୀକୁ ନେଇ ଖେଳିବୁ, ଆଉ ମୁଁ ଫାଶୀକାଠରେ ଝୁଲିବି ? ନଇଲେ ଇଠିକି ସିଠା ହ୍ୱାହି ହ୍ୱାହି ହୋଇ ବୁଲିବି; ଆଉ ସେ ଚଣ୍ଡାଳ ମୋ ପଛେ ପଛେ ଗୋଡ଼େଇ ମତେ ଜାଳିପୋଡ଼ି ମାରୁଥିବ ? ମୁଁ କାହିଁକି ଏଗୁଡ଼ାକ ସହିବି ? ନା, ନା, ସଂସାର ମୋ ପ୍ରତି କି ଅନୁଗ୍ରହ ଦେଖାଇଚି ଯେ ମୁଁ ତା'ପ୍ରତି ଦୟା କରିବି ? ଠିକ୍ ପଦ୍ମା, ତୋର ରହସ୍ୟ ଯଦି ମୁଁ ଗୋପନରେ ରଖେ ତା'ହେଲେ ସେଥିପାଇଁ ପୁରସ୍କାର ପ୍ରୟୋଜନ, ବୁଝିଲୁ—ମାସକୁ ତିରିଶ ଟଙ୍କା । ନଇଲେ....."

ପଦ୍ମା—"ହା ଭଗବାନ ! ଯାଉ; କିନ୍ତୁ ଦେଖ କହୁଚି ସୋମନାଥ; ତୁମର ଏ ଉଦ୍ଦେଶ୍ୟ ସଫଳ ହେବନାହିଁ । ମୁଁ ଭାବି ଦେଖେ; କାଲି ଉତ୍ତର ଦେବି ।" ପଦ୍ମା ଏତିକି କହିଲାବେଳେ ତା'ର ସ୍ୱର ବଡ଼ ସ୍ଥିର, ବଡ଼ ନିଷ୍ଠୁର । ମୋର ଦିହ ସେ ସ୍ୱର ଶୁଣି ଥରିଉଠିଲା ।

ଠିକ୍ ଏତିକିବେଳେ ଆଗ ସାମନା ଘର ଭିତରୁ ଆଲୁଅ ଦିଶିଲା; ତା'ପରେ ଅନ୍ଧାର; କିନ୍ତୁ ଯେପରି ଲାଗିଲା, କେହି ଆମଆଡ଼େ ଆସୁଛି । ମୁଁ ଆସ୍ତେ ଆସ୍ତେ ଆରପଟ ପିଣ୍ଡାକୁ ଚାଲିଗଲି । ଲୋକଟା କିଏ ? କୁଆଡ଼େ ଯିବ ? ଯଦି ନାଏବଙ୍କ ଘରକୁ ଯାଏ ? ପଦ୍ମାର ଅବସ୍ଥା ଭାବି ମୁଁ ବଡ଼ ବିକଳ ହୋଇଉଠିଲି । ପଦ୍ମା ଦୁଆର ମେଲେଇ ଆସିବାକୁ ଉଦ୍‌ଯୋଗ କରୁଛି ସେତିକି ବେଳେ ଏ ଲୋକଟା ଯାଇ ସେଠାରେ ପହଞ୍ଚିଲା । ଉଭୟେ ଉଭୟଙ୍କର ମୁହଁକୁ ଚାହିଁ ଥକାମରା ହୋଇ ଠିଆହୋଇଗଲେ । କବାଟ ଫାଙ୍କ ଆଲୁଅରେ ଦେଖିଲି ସେ ନୀଳ ।

●

## ବୃଥାଶ୍ରମ

ନୀଳକୁ ଦେଖି ଟିକିଏ ନିଃଶ୍ୱାସ ମାରି ଆଶ୍ୱସ୍ତ ହେଲି; ଭାଗ୍ୟକୁ ଆଉ କେହି ନୁହେଁ । ତା' ହେଇଥିଲେ ତା' କଥା ସରିଥିଲା । କିନ୍ତୁ ନୀଳ କ'ଣ ମନରେ ଭାବିଥିବ ? ଯାହା ଇଚ୍ଛା ତା' ମନରେ ଭାବୁ, ସେ ପଦ୍ମାକୁ ଯେପରି ଭଲପାଏ, ଆଉ ପଦ୍ମା ଯେମିତି ବୁଦ୍ଧିମତୀ, ସେ କୌଣସି ମତେ ନୀଳକୁ ବାଗେଇନେବ, ମୋର ସେଥିପାଇଁ କୌଣସି ଭାବନା ନାହିଁ । କିନ୍ତୁ ପଦ୍ମାର ସେ ନିଷ୍କଳ ଦୃଢ଼ତା—ତା'ର ମନେ କ'ଣ ? ସେ ଦୃଢ଼ତାରେ ହତାଶ ଲାଗିରହିଥିଲା । ପଦ୍ମା କି ଭୀଷଣ କାଣ୍ଡ କରିବ କିଏ କହିବ ? ବଡ଼ ଦୟା ହେଲା ତା' ପ୍ରତି । ସେ ଯାହା ଇଚ୍ଛା ତା' ହେଉ, ସେ ଯେ ମୋରି ପରି ହତଭାଗିନୀ । କେତେ କଷ୍ଟ ଏ କେତେ ଦିନ ସହିଚି; ତା'ପରେ ଏ ନିଷ୍ଠୁର ହତାଶା । ନାଇଁ ନାଇଁ, ମୁଁ ଆଉ କାଲି ସକାଳେ ସହରକୁ ଯାଉନାହିଁ; ପଦ୍ମାକୁ ଗୋଡ଼େଗୋଡ଼େ ନଜଗିଲେ ନ ଚଳେ; କିନ୍ତୁ ନ ଗଲେ ଯେ ହାରଟା ମିଳିବନାହିଁ । ତା' ନମିଳିଲେ ଯେ ମୋର ସର୍ବନାଶ । ଆଉ ଗୋଟାଏ ଦିନରେ ବା କି ଅଦ୍ଭୁତ କାଣ୍ଡ ଘଟିଯାଇପାରେ ? ପଦ୍ମା ତ ଭାବିକରି କାଲି ଉତ୍ତର ଦେବବୋଲି କହିଚି—ତା' ପରେ ଯାହା କରିବ ସିନା; ହୁଏତ ସେ ଅନ୍ୟ କିଛି ଉତ୍ତର ଦେଇପାରେ । ସୋମନାଥ ହୁଏତ ତାକୁ ଗ୍ରହଣ କରିପାରନ୍ତି; ତା'ହେଲେ ତ ଆଉ ଆଶଙ୍କାର କଥା କିଛି ନାହିଁ । ଏହିପରି ବହୁତ ଭାବିଚିନ୍ତି ସହରକୁ ଯିବା ଠିକ୍‌କରି ମୁଁ ଶୋଇପଡ଼ିଲି । ବେଶ୍ ନିଦ ହୋଇଗଲା । ଶମ୍ଭୁଆ ମା' ଡାକିବାରୁ ଧଡ଼ପଡ଼ ହୋଇ ଉଠି ମୋର ଗାଧୁଆ ପାଧୁଆ ସାରିନେଲି । ଗାଡ଼ି ଠିକ୍ ହୋଇଗଲା । ଟଙ୍କାତକ ଧରି ବାହାରିପଡ଼ିଲି । ସହରରେ ପହଞ୍ଚିଲି । ଗାଡ଼ି ଶ୍ରୀରାମ ବଜାରକୁ ନେବାକୁ ମୁଁ ସଇସକୁ କହିଲି । ଆମେ ଖଣ୍ଡେ ବାଟ ଯାଇଛୁ, କିଏସେ ପଛରୁ ଡାକପକାଇଲା "ପଞ୍ଚୁଆ, ପଞ୍ଚୁଆ !" ପଞ୍ଚୁଆ ସଇସର ନାଁ । ଗାଡ଼ି ରହିଲା । ଆଉ ଗୋଟେ ଗାଡ଼ି ଆସି ପାଖରେ ରହିଲା ।

ମୁଁ ଗାଡ଼ି କବାଟ ଅଳ୍ପ ଟିକିଏ ମେଲାକରି ଚାହିଁ ଦେଖିଲି ପିତନ ବାବୁ, ନୀଳର ଓକିଲ; ଏହି ସହରରେ ବସା । ସେ ଆଉ ତାଙ୍କ ପିଲେ ଅନେକ ଥର ଆମ ଘରକୁ ଯାଇଚନ୍ତି । ଆମେ ମଧ୍ୟ ଅନେକଥର ତାଙ୍କ ଘରକୁ ଯାଇଚୁ । ସେ ପଞ୍ଚୁଆକୁ ପଚାରିଲେ—"କିରେ, କିଏ ଆଉ ଭିତରେ ?" ରାମା କହିଲେ, "ମଣିଦେଇ । ସା'ନ୍ତାଣୀଙ୍କ ଦିହ ଖରାପ ଥିଲା ଯେ—" "ହଁ, ହଁ, ମୁଁ ହରେକୃଷ୍ଣ ବାବୁଙ୍କଠାରୁ ଶୁଣିଥିଲି, କାଲି ଯିବି ବୋଲି ଠିକ୍ କରିଥିଲି, କ'ଣ ହେଲା ତାଙ୍କ ଦେହ, ଭଲ ଅଛି ତ ?" "ଆଜ୍ଞା, ହଁ, ତାଙ୍କରି ଦେହ ବେସ୍ତବେଳେ ଦେଇ କ'ଣ ଠାକୁରାଣୀଙ୍କୁ ଯାଚିଥିଲେ ଯେ, ସେଇତି ପାଇଁ ଆଇଚିନି ।" "ହେଉ, ଭଲକଥା, ତେବେ ଏଣେ କୁଆଡ଼େ ? ଆଗେ ତ ଆମ ଘରକୁ ଯାଇଥାନ୍ତ, ଖା ପିଅ କରି ଶୀତଳିଆ ହୋଇ ଓପରଓଳି ଯାଇଥାନ୍ତ । ଚାଇ ଚାଲ, ଗାଡ଼ି ବୁଲାରେ ପଞ୍ଚୁଆ ।" ଗାଡ଼ି ବୁଲିଲା । ମତେ ଯୁ ବିରକ୍ତ ଲାଗୁଥାଏ, କ'ଣ କରିବି, ଧରା ତ ପଡ଼ିଚି—ଗାଡ଼ି ଫେରି ଚାଲିଲା ।

ଓକିଲବାବୁଙ୍କ ଘରେ ପହଞ୍ଚିଲାକ୍ଷଣି ତାଙ୍କ ଭାରିଯା ଆସି କେତେ ଆଦର ଅଭ୍ୟର୍ଥନା କରି ଘରକୁ ଡାକିନେଲେ । ମୁଁ ତାଙ୍କୁ କହିଲି, "ଦେଖ ସଙ୍ଗାତ, ମୋର ଭାରି ଜରୁର୍ କାମ, ଘରେ ତ କେହି ନାହାନ୍ତି । ପଦ୍ମା ରୋଗରୁ ଉଠିଚି ଯେ ଖାଲି ଟଳିଲାପରି ହେଉଚି । ନୀଳର କଥା ବୁଝିବାକୁ କେହି ନାହାନ୍ତି । ମତେ ଚଞ୍ଚଳ ଯିବାକୁ ହେବ ।" ସେ କହିଲେ, "ହଁ ହଁ, ମୁଁ ବୁଝିପାରୁଚି ଯେ ତୁମେ ନଥିଲେ ଯିମିତି ଘର ଦଣ୍ଡେ ଚଳିବନାହିଁ । ଯେ ଏତେ କଥାରେ କ'ଣ ଅଛି ! କିଏ କ'ଣ ତୁମକୁ ପାଞ୍ଚଦିନ ରଖୁଚି ? ଆଜିକ ରହ, କାଲି ଯିବ ।" ମୁଁ ଯେତେ ସାଧ୍ୟସାଧନା କଲି କିଛି ଶୁଣିଲେ ନାହିଁ । ମୋର ଯେ ଦିନଟା ସେଠାରେ ରହିବାର ହେଲା । ମୁଁ ରାମାକୁ ଡାକି ଘରକୁ ପଠେଇଦେଲି ।

କିନ୍ତୁ ଭାରି ଖରାପ ଲାଗୁଥାଏ । ତେଣେ ପଦ୍ମା ଚିନ୍ତା, ଏଣେ ମୋ ଚିନ୍ତା । ଇଠେଇଁ ରହିଲି ଯେ, ଏ ତ ଇଲେ କାନିକି କାନି ଗଇଁଠେଇଁ ବୁଲିବେ; ମୁଁ ଯାଇ ହାରଟା ଆଣୁଚି କିପରି ? ଯାହାହେଉ, ଉପାୟ ତ ନାହିଁ । ଖା'ପିଅ ସରିଲା । ଟିକିଏ ଟିକିଏ ଗଡ଼ପଡ଼ ହଉ ହଉ ଦି'ପହରଟା କଟିଗଲା । ଛାଇ ଲେଉଟିବାରୁ ଆମ୍ଭେମାନେ—ମୁଁ, ଓକିଲବାବୁଙ୍କ ସ୍ତ୍ରୀ ଓ ତାଙ୍କର ଝିଅ ଗାଡ଼ିରେ ଠାକୁରାଣୀଙ୍କ ଦେଉଳକୁ ବାହାରିଲୁ । ସେଠାରେ ଯଥାରୀତି ଭୋଗରାଗ ସାରି ଘରକୁ ଫେରିବା ରାସ୍ତାରେ ସେ ବଣିଆଦୋକାନ ପାଖରେ ଗାଡ଼ି ରଖିବାକୁ ମୁଁ କହିଲି । ଗୋଟେ ହାର କିଣିବାକୁ ମୁଁ ବାହାରିପଡ଼ିଲି । ସାଙ୍ଗେ ସାଙ୍ଗେ ଓକିଲବାବୁଙ୍କ ସ୍ତ୍ରୀ ମଧ୍ୟ ଗାଡ଼ିରୁ ଓହ୍ଲାଇ ଆସିଲେ । ଦିହେଁଯାକ ତା' ଦୋକାନକୁ ଆସିଲାକ୍ଷଣି ସେ ଭାରି ଆଦର ସମ୍ଭାଷଣ କରି ଆମକୁ ବସେଇଲା । ମୁଁ ହାର ବରାଦ କଲି । ଚାରି ପାଞ୍ଚଟା ହାର ଦେଖିଲା ପରେ କହିଲି, "ସୋମନାଥ ବୋଲି ଜଣେ ବାବୁ ଏଇ ମାସ ୮ ତାରିଖରେ ଆପଣଙ୍କୁ ଗୋଟିଏ ହାର ବିକିଚନ୍ତି । ସିମିତି ହାର ଯଦି ଥାଏ ତା'ହେଲେ ଦିଅନ୍ତୁ !" ସେ ତାଙ୍କର ଖାତା ଦେଖି ମୁଣ୍ଡ ହଲେଇ କହିଲେ, "ସେ ହାର ତ ମୋ ପାଖରେ ନାହିଁ । କାଲି ଆଉ ଜଣେ ଲୋକ ଆସି ତାକୁ କିଣିନେଇଯାଇଚି । ତା' ଘର ବି ସେଇ ଗାଁରେ ।"

ମୋ ମୁଣ୍ଡରେ ବଜ୍ର ଖସିପଡ଼ିଲା । ଏତେ ଶ୍ରମ, ଏତେ ମିଛକଥା ସବୁ ଯେ ବୃଥା ହୋଇଗଲା । ମୁଁ ବହୁତ ଖୋଳିତାଡ଼ି ତାଙ୍କୁ ପଚାରିବାରେ ବୁଝିଲି ଲୋକଟା ପଞ୍ଚହତା ମରଦ;

କପାଳ ବାଳ ଆଖି ଭୂଲତା ସଙ୍ଗେ ମିଶି ଯାଇଛି । ଆଖି ଦୁଇଟା ଛୋଟ ଛୋଟ, ବର୍ଣ୍ଣ ତ୍ରିପଣ୍ଡ କଳା, ନାକଟା ଅଧା-ପରବତ ପରି, ସ୍ୱର ଦଦରା ହାଣ୍ଡି ବାଡ଼େଇଲା ପରି ବଡ଼ ଭୀଷଣ ।



## ଚୋରୀ

ଏକଥା ଶୁଣି ଯେ ମୋ ମନ କ'ଣ ହେଲା, ତାହା ଲେଖି କଥାରେ ବୁଝାଇବାର ନୁହେଁ । ସବୁ ଶ୍ରମ, ସବୁ ଆଶା, ସବୁ ଭରସା ମାଟିରେ ମିଶିଗଲା । ହାରଟା ଯେ ଲୋକ ହାତରେ ପଡ଼ିଚି ତା'ଠାରୁ ଆଣିବା ସହଜ ନୁହେଁ । କିନ୍ତୁ ତା'ର ହାରଟାରେ କି ପ୍ରୟୋଜନ ? ମୁଁ କିଛି ଭାବି ଠିକ୍ କରି ପାରିଲି ନାହିଁ । କେବଳ ଯୁଆଡ଼େ ଚାହିଁଲି ନିରାଶା, ସବୁ ଅନ୍ଧାର— "ନିଜ ଅର୍ଜିଲା କର୍ମମାନ, ଆଗୁଁ ହୁଅଇ ସାବଧାନ ।" ମୁଁ ଡାକିଡାକି ହାଣ-କଟୁରୀ ବେକକୁ ଆଣିଚି; ତା'ର ଫଳ ମୁଁ ଭୋଗ ନ କରି ଆଉ କିଏ କରନ୍ତା ? ଯାହାହେଉ, ଚୋର ମା' କାନ୍ଦେନି, ଯେବେ କାନ୍ଦେ ଲୁଚେଇ ଲୁଚେଇ ।

ମୁଁ ମନକଥା ମନରେ ମାରି, ଉପରେ ହସି ଖେଳି ଓକିଲଙ୍କ ଘରେ ଆସି ପହଞ୍ଚି ଦେଖେ ରାମା ଫେରିଆସିଚି । ନୀଳର ଇଚ୍ଛା ମତେ ଆଜି ରାତିରେ ଫେରିଯିବାକୁ ହବ, ତା'ର ଦିହ ଖରାପ, ପଦ୍ମାର ଦିହ ପୁଣି ଲେଉଟିଲା ପରି ଲାଗୁଚି । ସେଇ ମର୍ମରେ ଓକିଲଙ୍କ ପାଖକୁ ମଧ୍ୟ ଚିଠି ଲେଖିଚି; ସୁତରାଂ ବିଳମ୍ବ ନ କରି ମୁଁ ଗାଡ଼ିରେ ବସି ବାହାରିପଡ଼ିଲି । ଗାଡ଼ିରେ ନିର୍ଜନରେ ବସି ନାନା କଥା ଭାବୁ ଭାବୁ ମୋତେ ଗୋଟେ ଫନ୍ଦି ଦିଶିଲା; ସେ ଲୋକ ଯେ ହାରଟା ନେଇଚି ସେ ତ ଆଉ ଦାଣ୍ଡରେ ହାଟରେ ତାକୁ ଲଗେଇ ବୁଲିବ ନାହିଁ, ଆଉ ସେ ବି କାହାରିକୁ ଦବା ଲୋକ ନୁହେଁ । ଯେ ସାମାନ୍ୟ ଟଙ୍କା ପାଇଁ ଗୋଟେ ଲୋକକୁ ଏତେ କଲବଲ କରିପାରେ, ସେ କି କେବେ ମୁରୁଛି କରି ଅଢ଼େଇଶ ଟଙ୍କାର ଗୋଟିଏ ହାର ଅନ୍ୟକୁ ଦେଇପାରେ ? ନା, ସେ ନିଷ୍ଚୟ ହାରଟା ନିଜ ପାଖରେ ରଖିଥିବ । ସେ ଅଛି ଗୁରୁବାରିଆ ମା' ଘରେ । ସେଇଠାରେ ନିଷ୍ଚୟ ଲୁଚେଇଚି । ସୁତରାଂ ତାକୁ ଆଦାୟ କରିବାକୁ ହେଲେ ମତେ ଗୁରୁବାରିଆ-ମା'ର ସାହାଯ୍ୟ ନବାକୁ ପଡ଼ିବ । ମୁଁ ମନରେ ଅନେକ କଥା ପାଞ୍ଚିଲି । ତା'ପରେ ରାମା ଓ ଶ୍ୟାମା ମା'ଙ୍କୁ କହିଲି—ଗୋଟେ କାମ କରିପାରିବ ? ବେଶ୍ ପୁରସ୍କାର ଦେବି ।

ରାମା—"ସା'ନ୍ତାଣୀ, ବକ୍‌ସିସ୍ କ'ଣ ହବ ? ତୁମେ କହିଲେ ମୁଁ କ'ଣ ତୁମ କଥାରୁ ବାହାର ହେବି ?"

ମୁଁ—"ନାଇଁ ନାଇଁ, କାମଟାରେ ଟିକିଏ ବିଦ୍ୟାବୁଦ୍ଧି ଦରକାର । ତତେ ଟିକିଏ ମୁଣ୍ଡ ଖରଚ କରିବାକୁ ପଡ଼ିବ, ପାରିବୁ ତ ?"

ରାମା—"ହଁ ସା'ନ୍ତାଣୀ, ତମେ କହିଲେ ମୁଁ ତ କୂଅକୁ ଡେଇଁପଡ଼ିବାକୁ ରାଜି ଅଛି ।"

ମୁଁ—"ତା'ହେଲେ ଏକ କାମ କର । ଗାଡ଼ି ଗୁରୁବାରିଆ-ମା' ଘରବାଟେ ତ ଯିବ; ତୁ ସଇସକୁ କହିଦେ, ସେ ତା' ଘର ପାଖରେ ଗାଡ଼ି ରଖିବ । ଆଉ ତୁ ଯାଇ ଗୁରୁବାରିଆ-ମା'କୁ

କହିବୁ—ସା'ନ୍ତାଣୀ ଗାଡ଼ିରେ ତତେ ଡାକୁଚନ୍ତି କ'ଣ କହିବେ ବୋଲି ଶୀଘ୍ର ଆ । ଏତିକି କହି ଚଟାପଟ ପଳେଇ ଆସିବୁ । ତା' ଉତ୍ତାରୁ ଗାଡ଼ି ଭିତରେ ଶାଲଟା ରଖ । ଶ୍ୟାମା ମା' ଘୋଡ଼ିଘାଡ଼ି ହୋଇ ବସିବ । ମୁଁ ଚାଲିଯାଇଥିବି । ଗୁରୁବାରିଆ-ମା' ଆସିଲାକ୍ଷଣି ଶ୍ୟାମା ମା' ତାକୁ ହାତଠାରି ଗାଡ଼ିରେ ବସିବାକୁ ଡାକିବ । ସେ ବସିଲା ମାତ୍ରକେ ସଇସକୁ ଶିଖାଇଥିବୁ ଗାଡ଼ି ଛାଡ଼ିଦେବ । ତାକୁ ଆଉ କିଛି କହିବୁ ନାହିଁ, ଖଣ୍ଡେ ବାଟ ଯାଇ ଯିମିତି ଘଡ଼ିଏ ଖଣ୍ଡେ ଡେରି ହେବ ଫେରେ ଫେରିଆସିବ ଏଇ ଜାଗାକୁ । ମୁଁ ଅପେକ୍ଷା କରିଥିବି । ପାରିବୁ ତ ?

ରାମା—"ପାରିବି ଯେ ସା'ନ୍ତାଣୀ, ତେବେ ସେ ଯଦି କିଛି ଗୋଳମାଳ କରେ ?"

ମୁଁ—"ସେ ତୋ ତକ୍ । ତୁ କୌଣସି ପ୍ରକାରେ ତାକୁ ରଖିବୁ ।"

ରାମା—"ଆଚ୍ଛା ହଉ ତେବେ ସା'ନ୍ତାଣୀ ! ହଁ, ହଁ, ଯେ ଆଉ କଷ୍ଟ କଥାଟା କ'ଣ ?"

ମୁଁ ତାଙ୍କ ହାତରେ ଟଙ୍କାଟାଏ ଲେଖେ ଗୁଞ୍ଜିଦେଲି । ରାମା ପୁଣି ସଇସ ପାଖକୁ ଫେରିଗଲା । ଗାଁମୁଣ୍ଡ ଚଷାସାହିରେ ଗୁରୁବାରିଆ ମା' ଘର, ଗାଡ଼ି ସେଠାରେ ରହିଲା । ରାମା ଗାଡ଼ିରୁ ଓହ୍ଲାଇଲାକ୍ଷଣି ମୁଁ ଶାଲଖଣ୍ଡକ ରଖିଦେଇ ତୁନିହୋଇ ଗାଡ଼ିରୁ ଓହ୍ଲାଇ ଗୁରୁବାରିଆ ମା' ଘରଆଡ଼କୁ ବାଡ଼ିପଟେ ବୁଲି ଚାଲିଲି ।

ତା' ଘରେ ଯାଇ ପହଞ୍ଚି ଦେଖେଁ, ଦାଣ୍ଡ ଘର ତାଟି ମେଲା । ଗୋରୁ ଗୋଟେ ଦି'ଟା ବନ୍ଧା ହୋଇଚନ୍ତି । ବାଟ ପାଖରେ ହୋଇ ଗୋଟେ ନାଳ, ଗୋବର ମୂତରେ ପୂର୍ଣ୍ଣ । ଅନ୍ଧାରରେ ମୋ ଗୋଡ଼ ସେଥିରେ ପଡ଼ିଯିବାରୁ ପିଚ୍‌କିନି ସେଗୁଡ଼ାକ ଆସି ମୋ ଲୁଗାରେ ପଡ଼ିଲା । ମୁଁ ଅଣ୍ଡାଳି ଅଣ୍ଡାଳି ଆର ଦୁଆରରେ ପହଞ୍ଚିଲି । ତା'ପରେ ଅଗଣା, ଅଗଣାର ଓପର ପାଖ ପିଣ୍ଡା ଭଙ୍ଗା, ଖାଲଢିପ । ଏଇ ଦାଣ୍ଡଘରକୁ ଲାଗି ଆଉ ଗୋଟିଏ ବଖରା ଘର । ତା' ଆଗ ସାମନା ଗୋଟେ ଘରେ ଦୀପଟେ ମିଟିମିଟି ଜଳୁଥିଲା । ମୁଁ ଯାଇ ଦେଖିଲି, ଯୋଡ଼ିଏ ପିଲା ଗୋଟେ ଛିଣ୍ଡା ମୁଦୁରାରେ ଶୋଇଚନ୍ତି; ଦିହରେ ସାତ ଗଇଣ୍ଠା କନ୍ଥା ଖଣ୍ଡେ ଖଣ୍ଡେ ପଡ଼ିଚି । ଦୀପଟା ଉଠେଇନେଇ ତା'ପାଖ ଘରକୁ ଗଲି, ଦେଖିଲି ସେଇଟା ହାଣ୍ଡିଶାଳ, ଗୋଟେ ତେଙ୍ଗଡ଼ା ଉପରେ ପାଞ୍ଚ ଛଅଟା ଆଟିକା ଗଡ଼ଗଡ଼ଉଚି । ଅଳନ୍ଧୁରେ କାଛବାଡ଼ ପୂର୍ଣ୍ଣ । ଗୋଟେ କଣରେ ଦି'ଖଣ୍ଡ କଂସା, ଖଣ୍ଡେ ପୁରୁଣା ଲୋଟା, ଆଉ ଗୋଟେ ଘଡ଼ି, ପଟେ ପନିକି, ଆଉ କ'ଣ ସବୁ ଥିଲା, ମତେ ଦେଖିବାକୁ ତର ନଥିଲା । ମୁଁ ସେ ଘର ଛାଡ଼ି ଉପର ଘରକୁ ଉଠିଲି; ଦେଖିଲି କୁହୁଣ୍ଡା । ତାଲା ସବୁ ନୂଆ ଲାଗିଚି । ବାଟରେ ମୋର ବାଧାବିଘ୍ନ ଯେତେ ପଡ଼ିଲା, ମୋର ପରିଶ୍ରମର ସଫଳତା ସେତିକି ଆଶାପ୍ରଦ ହୋଇଉଠିଲା ।

ମୋ ପାଖରେ ଯେ କଞ୍ଚିଗୋଛାଟା ଥିଲା, ସେଥିରୁ ବାଛି ଏକ କଞ୍ଚି ଲଗାଇଲି; କିନ୍ତୁ କାହିଁରେ ଫିଟିଲା ନାହିଁ । ଶେଷରେ ଚାବି ଥୋଲାର ଗୋଟେ କଣ୍ଟାଚାବି ଲଗାଇ ବୁହେ ଏଣିକି ତେଣିକି କଲାରୁ ବହୁତ କଷ୍ଟରେ ତାଲାଟା ଫିଟିଲା । ମୁଁ ଘର ଭିତରେ ପଶି ଦେଖିଲି ଗୋଟେ ହେଁସ ଗୁଡ଼ିଆହୋଇ ଢଗୁଆଳି ପରି ଗୋଟେ କଣରେ ଠିଆହେଇଚି । ଏପଟେ ସେପଟେ ଶିକା କେତେଟା ଝୁଲୁଚି । ସେଥିରେ ବଡ଼ ଘଡ଼ି ହୋଇ ମାଳେ । ଗୋଟେ ଅବଖୁରା ଉପରେ କେତେଗୁଡ଼େ ଘରକରଣା ଜିନିଷ; ଆଉ ଗୋଟେ କନା ପୁଟୁଳି । ପୁଟୁଳିଟାକୁ ଖୋଲି

ଦେଖିଲି ସେଥିରେ କିଛି ନାହିଁ । ଏଣେ ତେଣେ ବହୁତ ଧନ୍ଦିହୋଇ ଖୋଜିଲି; କିନ୍ତୁ କାହିଁରେ କିଛି ପାଇଲି ନାହିଁ । ତେଣେ ଭୟ କାଳେ କିଏ ଫେରିଆସୁଥିବ । ମୁଁ ଯେ ଅସହାୟା ସ୍ତ୍ରୀ; ଏକା ପର ଘରେ । ତା'ପରେ ମୁଁ ଜମିଦାର ଘରର ମାଲିକ । ଥରେ ଥରେ ଦାଣ୍ଡଦୁଆରମୁହଁ ପର୍ଯ୍ୟନ୍ତ ଫେରିଆସୁଥାଏ । ଟିକିଏ ଚାହେଁ । ଫେରିଯାଇ ବୁହେ ଦରାଣ୍ଡେ । ଏହିପରି କରୁ କରୁ ହଠାତ୍ ଥରେ କାହାର ଖଁକାରଖାଁ ଦାଣ୍ଡଘରଆଡ଼େ ଶୁଭିଲା । ମୁଁ ଚମକିପଡ଼ି କବାଟ ଆଉଜାଇଦେଲି । କ'ଣ କରିବି, କେମିତି ରକ୍ଷା ପାଇବି, କିଛି ଭାବି ନପାରି କବାଟଟା ଚଟ୍‌କରି କିଳିଦେଲି । କିଳିଦେଇ କି ରକ୍ଷା ? ସେମାନେ ଯଦି ଏ ଘରକୁ ଆସି ଦୁଆର ଭିତରୁ ବନ୍ଦ ଥିବାର ଦେଖି ଦୁଆରଟା ଭାଙ୍ଗିପକାନ୍ତି ? ତାଙ୍କ ଶବ୍ଦରେ ତ ଗାଁର କେତେ ଲୋକ ଉଠିଆସିବେ, କେତେ ହଲା ଲାଗିବ; ମୁଁ କ'ଣ କରିବି ? ମୋ ଦିହ ଖାଲି ବରଡ଼ାପତ୍ର ପରି ଥରୁଥାଏ ।

କିଏ ଡାକିଲା, "ପଞ୍ଚୁଆ ଭାଇ ! ଘରେ ନାହୁଁ କିରେ ?" ଏହିପରି ଦି'ତିନି ଥର ଡାକିଲା ପରେ ପୁଣି ଶବ୍ଦ ଶୁଭିଲା, "ମଲା, ଆଲୁଅ ଜାଇଦେଇ ଏ ସବୁ କା'ଡ଼େ ମ ?" ତା'ପରେ ସବୁ ସ୍ଥିର । ମୁଁ ଆସ୍ତେ କବାଟ ଫିଟାଇ ଆସି ଦେଖିଲି କେହି ନାହାନ୍ତି । ତା'ପରେ ଘର ଭିତରକୁ ଆସି ଫେରେ ମୁଁ ଖୋଜି ଲାଗିଲି । ଆଉ ତ କିଛି ପାଇଲି ନାହିଁ, କେବଳ ଗୋଟେ କୋଥଳି ଭିତରେ କେତେ ଗୁଡ଼େ କାଗଜପତ୍ର ପାଇଲି । ଫିଟେଇ ଦେଖି... ପ୍ରଥମ ପୁଡ଼ାରୁ ଜାଣିପାରିଲି ଗୁଡ଼େ ଚିଠି । ତଳକୁ ଚାହିଁ ଦେଖିଲି, "ଅଧମ ସେ... କିଛି ନଭାବି ସେଗୁଡ଼ାକ ମୋ ପଣନ୍ତ ଭିତରେ ପୁରାଇ କବାଟ ବନ୍ଦକରି ଚାଲି... ସ୍ଥାନରୁ ଯାଇଥିଲି ସେଠାକୁ ଆସି ଦେଖିଲି ରାମା ଓ ଗୁରୁବାରିଆ-ମା' ତାଡ଼କୀଯୁ... ଉପରେ । ଗୁରୁବାରିଆ-ମା' କହୁଛି, "ମୋ ଘରେ କେହି ନାହାନ୍ତି । ଦୁଆର ଠିଆ... ଗଛଜରାଟା ମୋତେ ତୁ ଡାକିଆଣିଲୁ । ସା'ନ୍ତାଣୀ କାଇଁରେ ରଇଜରା ? ତୋ ଅସିକପ... ଭାଙ୍ଗିଦେବି ଯେ 'ରହ, ରହ, ଆଡି ପାହୁ, ମୁଁ ସା'ନ୍ତାଣୀଙ୍କ ପାଖକୁ ଯାଏ ।"

ମୁଁ ଏତିକିବେଳେ ପଛରୁ ଯାଇ ତା' କାନ୍ଧରେ ହାତ ରଖି କହିଲି, "କ'ଣ କିଲୋ ନିଆଁଲଗୀଟା ? ମୁହଁରେ ଲାଜ ନାହିଁ । ଦାଣ୍ଡ ମଝିଟାରେ ଗାଁଟାକର ପାଟି କରୁଛୁ ?" ଗୁରୁବାରିଆ-ମା' ହାତେ ଜିଭ ବାହାର କରି କାମୁଡ଼ି କହିଲା, "ସାନ୍ତାଣୀ ତ ସତରେ । ମୁଁ ରାମାକୁ କେତେ ଗାରିଦେଲିଣିଚି, ଏତେ ଆଡିରେ ସା'ନ୍ତାଣୀ କୁଆଡ଼େ ବିଜେ ହୋଇଥିଲେ ?"

ମୁଁ—"ଯାଇଥିଲି ସହରକୁ, କାମ ଥିଲା । ଫେରିଲାବେଳେ ମନେପଡ଼ିଲା ରଘୁ ସାମଲ ବୋହୁକୁ ଭାରି ଜର । ପିଲାଦିନେ ତା' ସାଙ୍ଗେ କେତେ ଖେଳିଚି । ଆଜି ସିନା ମୁଁ ସା'ନ୍ତାଣୀ; ଆସିଚି ତ, ଟିକିଏ ଦେଖିଯାଏ । ତୋ ସାଙ୍ଗରେ ଗୋଟେ କାମ ଥିଲା । ସେଇ ଲୋକଟା ସମ୍ବନ୍ଧରେ ଦି'ଚାରି ପଦ ପଚାରିଥାନ୍ତି, ଥାଉ, ବହୁତ ରାତି ହୋଇଗଲାଣି । ନୀଳ କ'ଣ ମନରେ ଭାବିବ । କାଲି ସକାଳୁ ମୋ ସାଙ୍ଗରେ ଟିକିଏ ଦେଖା କରିବୁ ।" ଏହା କହି ମୁଁ ଗାଡ଼ିରେ ଉଠିଲି ।

●

# ପଦ୍ମାର ଦୁଃଖ

କାଲି ରାତିରେ ଆସି ଘରେ ପହଞ୍ଚିଲାବେଳକୁ ସମସ୍ତେ ଖାଇପିଇ ଶୋଇଥିଲେ । କେବଳ ବ୍ରାହ୍ମଣୀ ନାନୀ ଆସି ଭାତ ବାଢ଼ି ଦେଇ କହିଲା, "ବାବୁ ଆଜି ଦିଓଳି ହେଲା କିଛି ଖାଇନାହାନ୍ତି,.ତାଙ୍କର ଦିହ କ'ଣ ଭାରି ଖରାପ । କିମିତି କଳାକାଠ ପଡ଼ିଗଲାଣି । କାମ-ଫାମ, ଯା ଆସ ତ କରୁଚନ୍ତି ବେଶ୍, କ'ଣ ହୋଇଛି କେଜାଣି ? କଚେରୀ ଘରେ ଶୋଇବେ ବୋଲି ଶେଯହେରିକା ନେଇଯାଇଚନ୍ତି । ବାବୁଆଣୀ ଖାଇଲେ; କିନ୍ତୁ ଖାଲି ଠା ମାରାଗଲା ଭଳି । ମୁହଁକୁ ଗୁଣ୍ଡେ କି ଦି'ଗୁଣ୍ଡା ନେଇଚନ୍ତି କି ନାହିଁ ଉଠିଗଲେ ।" ମୋ ମନରେ ଶେଯ ଯିବା କଥାଟା ଶୁଣି ଟିକିଏ ସନ୍ଦେହ ହୋଇଥିଲା ସତ; କିନ୍ତୁ ଦିନଟାଯାକର ପରିଶ୍ରମରେ ଏତେ ଶ୍ରାନ୍ତ ହୋଇପଡ଼ିଥିଲି ଯେ ଆଉ କିଛି ନଭାବି ଶେଯରେ ପଡ଼ିଲାମାତ୍ରକେ ନିଦେଇଗଲି । ସକାଳୁ ଉଠି ଦେଖେ ପଦ୍ମାର ଆଖି ଦୁଇଟା ଫୁଲିଚି, ନାଲ ବି ପଡ଼ିଛି । ମୁଁ ଯାଇ ପଚାରିଲି, "ସଙ୍ଗାତ, ଦିହ କ'ଣ ହୋଇଚି କି ?" ସେ ଚମକି ପଡ଼ିଲା ପରି ହୋଇ କହିଲେ, "ମୋର ? ନାଇଁମ, ମୁଁ ତ କିଛି ଜାଣିପାରୁନାହିଁ ।" ତା'ପରେ ଟିକିଏ ଭାବି କହିଲେ, "ହଁ, ହଁ, ଟିକିଏ ସରଦି ସରଦି ଲାଗୁଚି—ଆଉ କିଛି ନୁହେଁ ।" ଅବଶ୍ୟ ମୁହଁରେ ହସ ଟିକିଏ ଥିଲା; ସ୍ୱରଟା ଯଥାସମ୍ଭବ ସ୍ଥିର; କିନ୍ତୁ ସେ ହସରେ ପୁରୁଷ ଭୁଲିଯାଇପାରେ, ମୁଁ ନୁହେଁ । ସେ ହସରେ ଜଗତଟାଯାକର ଦୁଃଖ । ଏ ହସରେ ଆଖି ଉଜ୍ଜଳ ହୋଇଉଠେ ନାହିଁ; ମୁହଁରେ ପ୍ରାତଃସୂର୍ଯ୍ୟର ସେ ରକ୍ତିମ ଆଭା ଖେଳିଯାଏ ନାହିଁ, ଭାବଭଙ୍ଗୀରେ ଆତ୍ମାର ଉଷ୍ମ ମେଲିଯାଏ ନାହିଁ । ଏ ଠିକ୍ ଶୁଖିଲା କାଠରେ ଛତୁ ଫୁଟିଲାପରି । ସେ ଦିନ ସୋମନାଥଙ୍କ ସାଙ୍ଗରେ କଥାବାର୍ତ୍ତା କଲାବେଳେ ଶେଷରେ ତା'ର ସ୍ୱରରେ ଯେ ନିଶ୍ଚଳତା, ସ୍ଥିରତା ଅନୁଭବ କରି ମୁଁ ଚମକି ପଡ଼ିଥିଲି, ଆଜି ସେହିପରି; କିନ୍ତୁ ଆଉରି ଗାଢ଼, ଆଉରି ହତାଶାମୟ, ଯେପରି ତା'ର ପ୍ରତ୍ୟେକ କମ୍ପନରେ ଶତସହସ୍ର ହା-ହାକାର ହୃଦୟ ଚିରି ଉଠି ପବନରେ ମିଳେଇଯାଉଚି । ତଥାପି ସେ ସ୍ୱର ବଡ଼ ଶାନ୍ତ, ଗଭୀର !

ଏ କାହିଁକି ? ରମଣୀ ନିଜର ସତୀତ୍ୱ, ସ୍ୱାମୀର ମର୍ଯ୍ୟାଦା, ନିଜର ମାନ ରକ୍ଷା କରିବାକୁ ପ୍ରାଣ ଦେବାର ସ୍ଥିର କଲେ ବଡ଼ ସ୍ଥିର ହତାଶ ଭାବ ଅବଲମ୍ବନ କରେ; କିନ୍ତୁ ସେଥିରେ ଏକ ଗୌରବ ଥାଏ, ସୁଖର ଟିକେ ଛାୟା ଥାଏ । ଏ ସ୍ୱରରେ, ଏ ହସରେ ମାତ୍ର କିଛି ନାହିଁ; ଏ ବିଶୁଦ୍ଧ ଅନାବିଳ ହତାଶା । କାହିଁକି ? ପଦ୍ମା ପ୍ରତି ମୋର ପୂର୍ବ ଭାବ ଯାହା ହୋଇଥାଉ ତା'ର ଏ ଗଭୀର ଯନ୍ତ୍ରଣା ଦେଖି ମୋର ମନ ଟଳିଲା । ସେ ଯେ ନୀଳର ସ୍ତ୍ରୀ, ସେ କଥା ଭୁଲିଗଲି । ମୋର ଆଖିରେ କେବଳ ଦିଶିଲା ମୋରିପରି ଗୋଟିଏ ଆଜୀବନ ଦୁଃଖିନୀ । ମୁଁ ସେ ଦିନଟାଯାକ ତାକୁ ଲକ୍ଷ୍ୟ କରି, ବିଶେଷ କିଛି ଦେଖିଲି ନାହିଁ । ଯାହା ଦେଖିଲି, ତା' ପର ଦୃଷ୍ଟିରେ ନପଡ଼ିପାରେ; କିନ୍ତୁ ମୋ ଦୃଷ୍ଟିରେ ବଡ଼ ହୋଇ ଦେଖାଗଲା । ସାରାଦିନ ଲକ୍ଷ୍ୟକରି ଦେଖିଚି, ପଦ୍ମା ନୀଳର ପଢ଼ାଘରକୁ ଆଉ ପୂର୍ବପରି ଯାଉ ନାହିଁ । ଥରେ ମାତ୍ର ପାଗଳୀପରି ଉଠି ସେ ଘରକୁ ଗଲା; କିନ୍ତୁ ସେ ଘର ଭିତରେ ଗୋଡ଼ ଦେବାମାତ୍ରକେ କ'ଣ ହେଲା ତା' ମନରେ କେଜାଣି, ଗୋଟେ ଦୀର୍ଘ ନିଃଶ୍ୱାସ ପକେଇ ଫେରିଆସିଲା । ମୁହଁ

ଫେରେଇଲାବେଳେ ଦେଖିଚି ତା'ର ଆଖିଲେ ଲୁହ । ନୀଳ ସହିତ ଦେଖାହେଲା । ସେ ଯେପରି ବଡ଼ ବିରକ୍ତ, ବଡ଼ ଶ୍ରାନ୍ତ, ବଡ଼ ବିଚଳିତ । ତା'ର ଆଖିରେ ପ୍ରଳୟ ଅଗ୍ନି ପଡୁଚି ଉଠୁଚି । ସେ ଯେପରି କାହାକୁ ଖୋଜୁଚି, ତା'ର ହୃଦୟ ଯେପରି କାହାକୁ ହାତ ବଢ଼ାଇ ଅନ୍ଧାରରେ ଦଉଣ୍ଡୁଚି ! କେହି ଗୋଟାଏ ମୁଠାରେ ପଡ଼ିଲେ, ତା'ର ମୁଣ୍ଡ ପଥରରେ ବାଡ଼େଇ ଚୁନ୍‌ଚୁନା କରିପକାନ୍ତା । ସେ ମତେ କହିଲା, "ଡାକ୍ତର ମନା କରିଛନ୍ତି, ତା'ର ଦିହ ବଡ଼ ଦୁର୍ବଳ, ସେ ରୋଷେଇ କରିପାରିବ ନାହିଁ । ମୋର ଖାଇବା ପିଇବା ତାକୁ କରିବାକୁ ହବନାହିଁ । ତୁମେ କରିପାରିବ ତ ଉତ୍ତମ, ତା' ନହେଲେ ମୁଁ ମୋର ବନ୍ଦୋବସ୍ତ କରିବି; ସେଥିପାଇଁ ବ୍ୟସ୍ତ ହବନାହିଁ । ମୋର ଦିହଟା ବି ଖରାପ; ଅନ୍ତତଃ ଏ କେତେଦିନ ପାଇଁ ମତେ ଏଣେ ରହି ଟିକିଏ ବିଶ୍ରାମ କରିବାକୁ ପଡ଼ିବ; ମୋର ବହିପତ୍ରଗୁଡ଼ାକ ପଠାଇଦବ ।" କଥାଗୁଡ଼ାକ କହିଲାବେଳେ ଘୃଣାରେ ତା'ର ଶିରା-ପ୍ରଶିରା ପୋଡ଼ିଯାଉଥାଏ । ମୁଁ ଦୁହିଁଙ୍କର ଏପରି ଭାବ ଦେଖି କ'ଣ କରିବି କିଛି ଠିକ୍ କରିପାରିଲି ନାହିଁ । ସେଦିନ କଥା ମନେପଡ଼ିଲା, ସେହି ସୋମନାଥଙ୍କ ଘରକଥା । ଏ କ'ଣ ତେବେ ସେଇଆ ? ନୀଳ କ'ଣ ତାହେଲେ ଅବିଶ୍ୱାସ କରିଚି ? ଈର୍ଷାରେ କି ନୀଳର ଏ ଅବସ୍ଥା ? ଆଉ ପଦ୍ମା ? ମୁଁ ଯେତେ ଭାବିଲି ବିଷୟଟା ସେତିକି ଗୋଳମାଳ ହୋଇଉଠିଲା । ନୀଳ ଯେ ପଦ୍ମାକୁ ଏତେ ଭଲପାଏ ? ପଦ୍ମା କ'ଣ ସେ ଦିନ ସବୁକଥା ନୀଳକୁ ଭାଙ୍ଗିକରି କହିନଥିବ ? କ'ଣ ହେଲା ତେବେ ?

ମୁଁ ବହୁତ ଭାବିଚିନ୍ତି ଠିକ୍ କଲି, କାରଣ ଯାହାହେଉ, ସୋମନାଥଙ୍କ ଉପଦ୍ରବ ଏଥି ମଧ୍ୟରେ ଅଛି । ଏ କଥା ସାଙ୍ଗେ ସାଙ୍ଗେ ଗୁରୁବାରିଆମା' ଘରୁ ଯେ ଚିଠିଗୁଡ଼ା ଆଣିଥିଲି ତା' କଥା ମନେପଡ଼ିଲା । ସେ ସବୁ ଫିଟାଇ ପଢ଼ିବାକୁ ଯାଉଥିଲି; ଫେରେ ମନ ଗଲାନାହିଁ । ଭାବିଲି ଜୀବନର ଗୁପ୍ତ ରହସ୍ୟକୁ ଲୁଚାଇବା ପାଇଁ ସୋମନାଥ ଯେତେବେଳେ ଏତେ ବ୍ୟଗ୍ର, ମୁଁ ଏବେ କାହିଁକି ତାଙ୍କର ବିନାନୁମତିରେ ତାକୁ ଜାଣିବାକୁ ଯିବି ? ମୋର ଦୃଢ଼ବିଶ୍ୱାସ, ଏ ଚିଠିଗୁଡ଼ାକ ଯେତେବେଳେ ସୋମନାଥଙ୍କ ହାତର ଲେଖା, ଆଉ ସେ ଲୋକଟା ପାଖରେ ଥିଲା, ଏ ନିଶ୍ଚୟ କୌଣସି ଗୁରୁତର ରହସ୍ୟ ସମ୍ବନ୍ଧୀୟ । ଆଉ ଏଇ ଚିଠି ବଳରେ ହିଁ ଲୋକଟା ସୋମନାଥଙ୍କୁ ଏପରି କରୁଚି । ସୁତରାଂ ନ ପଢ଼ି ଆଜି ରାତିରେ ନେଇ ସୋମନାଥଙ୍କୁ ଦେଇଆସିବାର ଠିକ୍ କରି ମୁଁ ମୋ ଦୁଃଖଧନ୍ଦାରେ ଲାଗିଲି ।

ସନ୍ଧ୍ୟାବେଳେ ଦେଖିଲି, ପଦ୍ମା ଅତି ଚମତ୍କାର ବେଶଭୂଷା ହୋଇ, ଦର୍ପଣଟେ ଧରି ନିଜ ମୁହଁକୁ ନିଠେଇ କରି ଥରେ ଦେଖିଲା; ତା'ପରେ ହାସ୍ୟର ଗୋଟିଏ ନୀରବ କ୍ଷୁଦ୍ର ଅଫୁଟନ୍ତ ଆଭା ତା'ର ମୁଖର ଦୁଇ କୋଣରେ ଦେଖାଗଲା—ସେତିକି । ଏ ସାଜ ଦେଖି ମୋର ଅନ୍ତରାତ୍ମା କାନ୍ଦିଉଠିଲା । ମୁଁ ସେତିକିବେଳୁ ପଦ୍ମାର ପିଛା ଧରିଲି । ଅଭାଗିନୀ ରମଣୀ ନିଜର ବାହ୍ୟ ସୌନ୍ଦର୍ଯ୍ୟରେ ସଂସାରକୁ କ୍ଷଣକାଳ ନିମନ୍ତେ ମୁଗ୍ଧକରି ରଖିଲେ ସୁଦ୍ଧା ନିଶା ଛାଡ଼ିଗଲେ ଚପଳ ପୁରୁଷ ଜାତି ତାକୁ ଅବହେଳାରେ ଗୋଡ଼ରେ ଫିଙ୍ଗିଦିଏ । ସେତେବେଳେ ଅବୋଧ ସ୍ତ୍ରୀର ହୃଦୟ ଯମକୁ ମଧ୍ୟ ସୌନ୍ଦର୍ଯ୍ୟରେ ମୁଗ୍ଧ କରିବା ଅଭିପ୍ରାୟରେ ଏହିପରି ବେଶ ବାନ୍ଧେ । ରାତି ଘଡ଼ିଏ ଖଣ୍ଡେ ହେଲାବେଳକୁ ଦେଖିଲି, ପଦ୍ମା ନିଜର ଶୋଇଲା ଘରେ ଗୋଟିଏ ଦୀପ ଜାଳି ବଡ଼ ଯତ୍ନରେ ବହୁତ ପରିଶ୍ରମ କରି ପଲଙ୍କ ଉପରେ ଶେଯ ପକାଉଛି, ବେଳେ

ବେଳେ ଶଙ୍କିକରି ପଛକୁ ଚାହୁଁଛି; ଯେପରି ନବବଧୂ ସ୍ୱାମୀର କିଛି କାର୍ଯ୍ୟ ଶାଶୁ-ନଣନ୍ଦଙ୍କୁ ଲୁଚାଇ କରୁଥାଏ । ପାନଗୁଡ଼ାଏ ଭାଙ୍ଗି ପାନ ଡିବାରେ ସଜାଡ଼ି ତକିଆ ପାଖରେ ରଖିଲା । ପିକଦାନୀଟି ପରିଷ୍କାର କରି ପଲଙ୍କ ତଳେ ସଜାଇ ରଖିଲା—ଯିମିତି ତା'ର ଆଜି ମଧୁଶଯ୍ୟା । ତା'ପରେ ପଲଙ୍କ ତଳେ ଖଣ୍ଡିଏ ମଶିଣା ପକାଇ ଗାଲରେ ହାତ ଦେଇ ବସିରହିଲା । ଆହା ! କି ସୁନ୍ଦର ସେ ଭାବନାକୁଟିଳ ମୁଖ ! ଯେପରି ସ୍ୱର୍ଗର ଅପ୍‌ସରା ମର୍ତ୍ତ୍ୟରେ ଜନ୍ମଲଭି ସ୍ୱର୍ଗ ଚିନ୍ତାରେ ବ୍ୟାକୁଳ । କିଛି ସମୟ ପରେ ନୀଳକୁ ସେ ଘରଆଡ଼େ ଆସିବାର ଦେଖି ଆଶ୍ଚର୍ଯ୍ୟ ହେଲି । ଯାହାହେଉ ପଦ୍ମା ଯେ ଏତେ ସଜବାଜ କାହିଁକି କରୁଥିଲା ତାହା ଜଣାପଡ଼ିଲା । ମୁଁ ଲୁଚିକରି ଦେଖୁଥାଏଁ—ନୀଳ ଦୁଆରମୁହଁକୁ ଆସି ଘର ଭିତରକୁ ନଜର ପକାଇବା ମାତ୍ରେ ଦପ୍‌କରି ଠିଆହୋଇଗଲା, ଯେପରି ତା' ଆଗରେ ନନ୍ଦନକାନନର ଗୋଟିଏ ଅଂଶ ହଠାତ୍ ଉଜ୍ଜ୍ୱଳି ଉଠିଲା; କିନ୍ତୁ ପର ମୁହୂର୍ତ୍ତରେ ସେ ଆତ୍ମ-ସମ୍ବରଣ କରିନେଇ ସେହି ଦୁଆରମୁହଁରେ ଠିଆହୋଇ ପଚାରିଲା, "ପ୍ରୟୋଜନ କ'ଣ ?"

ପଦ୍ମା—"ପ୍ରୟୋଜନ ତ ଅଛି । ଟିକିଏ ବସ । କହୁଚି । ନାଇଁ, ନାଇଁ, ଏଇ ପଲଙ୍କ ଉପରେ ।"

ନୀଳ—"ନା, ଦରକାର ନାହିଁ । ଏ ଭୂଇଁରେ ଖୁବ୍ ହବ ।" ତା'ପରେ ଉଠିଯାଇ ଖଣ୍ଡେ ପିଢ଼ା ଆଣି ତାକୁ ମାଡ଼ି ବସିଲା ।

ପଦ୍ମା ପାନବଟାଟା ଆଣି ପାନ ଖଣ୍ଡିଏ ଧରି କହିଲା—"ମୋ ରାଣଟି, ଏ ପାନ ଖଣ୍ଡି ଖାଅ ।"

ନୀଳ—"ନା, ପ୍ରୟୋଜନ ନାହିଁ, ପାନ ଖାଇଚି ।"

ପଦ୍ମା—"ମୋର ମିନତି ରକ୍ଷାକରି ଖାଇବ ନାହିଁ ?"

ନୀଳ—"ଗୋଟେ କଳରେ ତ ପାନ ଅଛି, ଆଉ ଖାଇବି କିପରି ? ଦେଖ, ଏ ବୃଥା ବାଗ୍‌ବିତଣ୍ଡାରେ ସମୟ ନଷ୍ଟ କରିବାର ଅଧିକାର ମୋର ନାହିଁ । ତୁମ୍ଭର ଯଦି କିଛି କହିବାର ଥାଏ ତାହାହେଲେ ଚଞ୍ଚଳ କହ ।"

ପଦ୍ମା—" 'ତୁମେ' ନ କହି 'ତୁ' କହିଲେ କ'ଣ ଦୋଷ ଅଛି ?"

ନୀଳ—"ଆଃ, ବେଳ ଯାଉଚି ଯେ ।"

ତା'ପରେ ପଦ୍ମା ଗୋଟିଏ ଗିନାରେ ମୁନ୍ଦିଏ ପାଣି ନେଇ ତା'ର ଗୋଡ଼ ପାଖରେ ରଖିଦେଲା । ନୀଳ ପଚାରିଲା, "ଏ କ'ଣ ?"

ପଦ୍ମା—"ଆଜି ତ ଦେଖିପାରିଲି ନାହିଁ । ପାଦୋଦକ ପାଇନାହିଁ । ଟିକିଏ ପାଦଦୋକ ଦେଇଯାଅ ।"

ନୀଳ ଆସ୍ତେ କରି ଗିନାଟିକୁ ଆଡ଼େଇ ଦେଇ କହିଲା, "ଶୁଣ, ସେ ସୁଆଙ୍ଗ କରିବାର ଦିନ ଯାଇଚି । ବର୍ତ୍ତମାନ କୌଣସିମତେ ଦାଣ୍ଡରେ ହିନସ୍ତା ନ ହୋଇ, ଲୋକହସାରୁ ରକ୍ଷା ପାଇ ଚଳିବାର କଥା । ସେଇଥିପାଇଁ ତୁମ ଚିଠି ପାଇ ମୁଁ ଆସିଲି, ନ ଆସିଲେ କାଳେ

ଚାକରବାକରଗୁଡ଼ାକ କ'ଣ ଭାବିବେ । କିନ୍ତୁ ତମେ ଯିମିତି ଗୁଡ଼େ ଫାର୍ଶ ଆରମ୍ଭ କଲଣି, ସେଥିରେ ବୋଧହୁଏ ମତେ ଆଉ ଆସିବାକୁ ହବନାହିଁ ।"

ପଦ୍ମା ଢୋକ ଗିଳି, "ସ୍ୱାମୀ, ପ୍ରଭୋ !" ଏତିକି କହିଲା । ଓଃ ସେ କି ବାକ୍ୟ ! ସେଥିରେ ତାହାର ସମୁଦାୟ ହୃଦୟ, ମନ, ଆତ୍ମା, ପ୍ରବୃତ୍ତି ଏକ ହୋଇ ଯେପରି ବାହାରି ଆସିଲା ! ତା'ପରେ ସେ ଦୁଲ୍‌କରି ନୀଳର ଗୋଡ଼ତଳେ ପଡ଼ିଯାଇ ତା'ର ଗୋଡ଼ ଦୁଇଟି ସାଉଁଟି ଧଇଲା—"ଦୋଷ କଲେ କି କ୍ଷମା ପାଇବାର ନାହିଁ ? ମୁଁ ଯେ ତୁମର ପୋଇଲୀ ।" ନୀଳର ମନରେ କ'ଣ ହେଲା କେଜାଣି ସେ ତାକୁ ଉଠେଇ କୁଣ୍ଢେଇ ଧରି, ବନ୍ଧପ୍ରକୃତିର ପୂର୍ଣ୍ଣ ଆବେଗରେ, ଶୁଦ୍ଧ ଅନୁରାଗପୂର୍ଣ୍ଣ ଉଚ୍ଛ୍ୱାସରେ ଥରେ ଦୁଇଥର ପଦ୍ମାର ଅଧର ଚୁମ୍ବନ କଲା । ତା'ପରେ ପୁରୁଷଠାରୁ ଯାହା ଆଶା କରାଯାଏ, ତାହା ହେଲା । ସେ ମୁହୂର୍ତ୍ତକ ଭିତରେ ପଥର ପାଲିଟିଯାଇ ପଦ୍ମାର ଅବନତ ଶରୀରକୁ ଠେଲିଦେଇ କହିଲା, "ପଦ୍ମା, ତୋର ଏ ପଶୁ-ପ୍ରଲୋଭନରେ ଭୁଲିଯାଇ ମୋର ମନରେ ନିଜ ପ୍ରତି ଯେ ଘୃଣା ଆସିଚି ତା' କହିବା ନିଷ୍ପ୍ରୟୋଜନ । ଦିନ ଥିଲା ଯେତେବେଳେ ତୋର ସ୍ପର୍ଶରେ ମୋର ଶିରା-ପ୍ରଶିରାରେ ବିଦ୍ୟୁତ୍ ବହିଯାଉଥିଲା । ସେ ଦିନ ତ ଆଉ ନାହିଁ । ଯାହା ପ୍ରକୃତ କଥା ସେଇଟାକୁ ଘୋଡ଼ାଇ ରଖି ପ୍ରଲୋଭନରେ ଘାଣ୍ଟି ହେବାରେ କି ସୁଖ ଅଛି ? ତୁ ମୋର ସ୍ନେହରେ ସନ୍ତୁଷ୍ଟ ନୋହୁ, ଆଗରୁ ଜାଣିଥିଲେ ମୁଁ ଏତେଦୂର ହୋଇନଥାନ୍ତି । ଯାଉ, ଏଣିକି ମୁଁ ଆଉ ତୋ ବାଟରେ କଣ୍ଟା ପକାଇବାକୁ ଇଚ୍ଛା କରେ ନାହିଁ । ତୁ ତୋ ସୁଖରେ ରହ । ମୁଁ ବେଶ୍ୟାର ଭାଡୁଆ ହୋଇ ରହିବାକୁ ମନେକରେ ନାହିଁ । ସୁତରାଂ ମୁଁ ମଧ୍ୟ ମୋ ପଥ ଦେଖିବି । କେବଳ ସଂସାରର ଅପବାଦ, ଉପହାସ ଏଡ଼ାଇବା ପାଇଁ ତୋ ମୋ ଭିତରେ ଯେତିକି ଘନିଷ୍ଠତା ପ୍ରୟୋଜନ, ସେତିକି ଉପରେ ଉପରେ ଥାଉ । ଅବଶ୍ୟ ୟା ଭିତରେ ଭାବି ଠିକ୍ କରିପାରିଲେ ମୁଁ କିଛିଦିନ ଯାଇ କଟକରେ ରହିବି । ଯାଏଁ, ଆଉ ଡକାଇବୁ ନାହିଁ ।" ଏତିକି କହି ସେ ସେଠାରୁ ଫଟ୍ କରି ବାହାରିଗଲା । ପଦ୍ମା ପଥର ପାଲଟିଗଲାପରି କିଛି ସମୟ ଠିଆହୋଇ ରହିଲା, ତା'ପରେ ପଛଘୁଞ୍ଚା ହୋଇ ପଲଙ୍କ ଉପରେ ପଡ଼ିଗଲା ।

●

## ଖୁଣୀ

ପୁରୁଷ ନାରୀକୁ ମୋଟେ ଚିହ୍ନେ ନାହିଁ, ତା' ହୃଦୟ ମୋଟେ ବୁଝେନାହିଁ । ନୀଳ ଯେତେବେଳେ କହିଗଲା, "ତୋ ସୁଖରେ ତୁ ରହିବୁ," ସେତେବେଳେ ସେ ଭାବିଥିଲା, ଯେପରି ସେ ପଦ୍ମା ପ୍ରତି କେଡ଼େ ବଡ଼ ଅନୁଗ୍ରହଟେ କରିଗଲା । ପଦ୍ମା ବ୍ୟଭିଚାରିଣୀ, ସେ ତ ତାକୁ ମାରିପାରିଥାନ୍ତା; କିନ୍ତୁ ସେ ଯେତେବେଳେ ସେପରି କିଛି ନ କରି, ସେ ଯୁ'. ସା'ନ୍ତାଣୀ ଥିଲା ସେଇ ସା'ନ୍ତାଣୀ କରି ରଖିଗଲା, ସେତେବେଳେ ପଦ୍ମାର ଆଉ ଭାବନା କ'ଣ ? କିନ୍ତୁ ନାରୀର ହୃଦୟରେ ନିଷ୍ଠୁର ବ୍ୟବହାର ଯେତେ କଷ୍ଟ ଦିଏନାହିଁ, ଉଦାସୀନତା ତା'ଠାରୁ ବେଶି ଦିଏ । ସ୍ୱାମୀ ତାକୁ ଲଙ୍ଘା ମାଡ଼ ଦେଇ ପକାଇ ଦେଇପାରେ । ସେ ସବୁ ସହିବ । ସବୁ ନିର୍ଯ୍ୟାତନା

ସତ୍ତ୍ୱେ ପଦେ ମଧୁର କଥା, ପଦେ ଆଶ୍ୱାସନା ବାକ୍ୟ, ଟିକିଏ ସ୍ନେହର ହାସ୍ୟରେ ସେ ସବୁ ଧୋଇଯାଏ, ସବୁ ପାସୋରି ଯାଏ । କିନ୍ତୁ ଉଦାସୀନତା, ପର ହୋଇ ରହିବା ସ୍ତ୍ରୀ ଜାତିର ହୃଦୟ ମୋଟେ ସହିପାରେ ନାହିଁ । ତୁମେ ତାକୁ ନ ଚାହିଁଲେ ତା' ମନରେ ଯେ କେତେ କଷ୍ଟ, ତାକୁ ଚାହିଁ ଦି'ପଦ ବକିଦେଲେ ତା'ର କାଣିଚାଟାଏ କଷ୍ଟ ହୁଏନାହିଁ । ଯେତେବେଳେ ସ୍ତ୍ରୀ ଗୋଟାଏ ଲୋକକୁ ଭଲପାଏ, କିନ୍ତୁ ସେ ଲୋକଟା ତାକୁ ପରବୋଲି ଭାବେ, ସେତେବେଳେ ସେ ସ୍ତ୍ରୀ ପ୍ରକୃତରେ ନରକଯନ୍ତ୍ରଣା ଭୋଗକରେ ।

ନୀଳ ଏ କଥା ନଜାଣି ପାରିଥାଏ; କିନ୍ତୁ ମୁଁ ଜାଣିଚି, କାରଣ ମୁଁ ସହିଚି । ପଦ୍ମାର ମନରେ ଯେ କଷ୍ଟ, ଯନ୍ତ୍ରଣା, ତାହା ଅତି ଭୀଷଣ; ପ୍ରକାଶ କରିବାର ଶକ୍ତି ନାହିଁ । ଅନ୍ୟକୁ କହି ତା'ଠାରୁ ସହାନୁଭୂତି ପାଇବାର ଆଶା ନାହିଁ, ଉପଶମ କରିବାର ଚେଷ୍ଟା ଏକାବେଳକେ ଅସମ୍ଭବ । ତା' ଜୀବନର ଏଇ ଶେଷ ମୁଁ ବୁଝିଲି; ବୁଝି ତାହାର ପ୍ରତିକାର କରିବା ନିମନ୍ତେ ଅଣ୍ଟାବାନ୍ଧି ବାହାରିପଡ଼ିଲି ।

ନୀଳ ଯେ ଗୋଟେ ପ୍ରମାଦରେ ପଡ଼ି ବୁଲୁଚି, ଏଥିରେ ସନ୍ଦେହ ନାହିଁ । ପଦ୍ମା ସତୀ, ସାଧ୍ୱୀ । ସେଦିନର କଥାଗୁଡ଼ାକ ଯେ ଶୁଣିଥିବ, ସେ କେବେ ତାକୁ ଅବିଶ୍ୱାସ କରି ନପାରେ ।

ପଦ୍ମା ଯେ ସବୁ କଥା ସେଦିନ ଖୋଲି ନୀଳକୁ କହିନାହିଁ, ତା'ର କାରଣ ବୋଧହୁଏ ଯେ, ସୋମନାଥଙ୍କ ପାଖକୁ ସେ କାହିଁକି ଯାଇଥିଲା, ତା'ର କାରଣ କହିବାକୁ ଯାଇଥିଲେ ସୋମନାଥ ତା'ର କେଉଁ ଗୁପ୍ତ ରହସ୍ୟଟି ଜାଣନ୍ତି, ତା' ମଧ୍ୟ ପ୍ରକାଶ କରିବାକୁ ପଡ଼ିଥାନ୍ତା ବୋଧହୁଏ । ସେ ରହସ୍ୟର ମୂଳରେ ଏପରି କିଛି ଅଛି, ଯାହା ଅନ୍ୟ ଜାଣିବାରେ ପଦ୍ମାର ଆପତ୍ତି ଯଥେଷ୍ଟ । ସେ ଦିନର ସମସ୍ତ କାଣ୍ଡ ଜାଣନ୍ତି ତିନିଜଣ—ମୁଁ, ପଦ୍ମା ଏବଂ ସୋମନାଥ । ପଦ୍ମା ଯେତେବେଳେ ନ କହିଚି, ଅବଶ୍ୟ କାରଣ ଥାଇ କହିନାହିଁ । ମୁଁ ଯଦି ଇଲେ ଯାଇଁ ନୀଳକୁ ସେଦିନ ସୋମନାଥଙ୍କ ସହିତ ପଦ୍ମାର ସବୁ କଥା କହି ତା'ର ପ୍ରମାଦ ଦୂର କରିବାକୁ ଚେଷ୍ଟାକରେ, ତାହାହେଲେ ମୂଳ କାରଣ ପଦ୍ମାର ଗୁପ୍ତ ରହସ୍ୟଟି ପ୍ରକାଶ କରି ନ ପାରି ନୀଳକୁ ସନ୍ତୁଷ୍ଟ କରିପାରିବି ନାହିଁ । ସୁତରାଂ ମୁଁ ଭାବି ଦେଖିଲି ସେଇ ରହସ୍ୟଟି ଜାଣିଲେ ମୁଁ ନୀଳକୁ ଏବଂ ପଦ୍ମାକୁ ସୁଖୀ କରିପାରିବି; କିନ୍ତୁ କି ଉପାୟରେ ? ମତେ ଗୋଟେ ବୁଦ୍ଧି ଦିଶିଗଲା । ସୋମନାଥଙ୍କ ସମ୍ବନ୍ଧରେ ଯେ କାଗଜ ପତ୍ରଗୁଡ଼ାକ ମୁଁ ଗୁରୁବାରିଆ-ମା' ଘରୁ ଚୋରି କରି ଆଣିଚି, ତାରି ସାହାଯ୍ୟରେ ଚେଷ୍ଟା କଲେ ସୋମନାଥଙ୍କଠାରୁ ସବୁ କଥା ଆଦାୟ କରିପାରିବି; ଭୟ ଦେଖାଇ ହେଉ ବା ତାଙ୍କର ଉପକାର କରି ପ୍ରତ୍ୟୁପକାର ସ୍ୱରୂପ ହେଉ ।

ଏଇ ଆଶାରେ ମୁଁ ସେଦିନ ରାତିରେ ମନରେ ବଡ଼ ସାହସ ବାନ୍ଧି, ସମସ୍ତେ ଖାଇପିଇ ସାରି ଶୋଇଲା ପରେ ସୋମନାଥଙ୍କ ଘରଆଡ଼କୁ ଆସ୍ତେ ଆସ୍ତେ ଗଲି ।

ଦେଖିଲି ଦୁଆରଟା ବାହାରପଟୁ ଶିକୁଳିଦିଆ । ଏ କିପରି ? ସୋମନାଥ ଏତେ ରାତିରେ କୁଆଡ଼େ ? ଶିକୁଳିଟା ଫିଟାଇ ଦେଲି । ଚନ୍ଦ୍ରପକ୍ଷ ରାତି, ଚନ୍ଦ୍ରକିରଣର ଗୋଟିଏ ଧାର ମେଲା ଦୁଆର ବାଟେ ବହିଆସି ହତାଶ ମନରେ ଆଶାର କ୍ଷୀଣରେଖା ପରି ଘରର ଅଧେ ଆଲୁଅ କରିଦେଲା । ମୁଁ ସେହି ଆଲୋକ ଅନ୍ଧାରରେ ଦେଖିଲି ଖଟ ଉପରେ ଜଣେ କିଏ

ଶୋଇଚି । ଭାବିଲି ଚାକରବାକର ଭିତରୁ ଗୋଟେ କିଏ ଆସିଥିଲା, ଶିକୁଳିଟା ଦେଇଯାଇଚି । ମୁଁ ଅତି ଧୀରେ ଖଟ ପାଖକୁ ଯାଇ ଡାକିଲି "ସୋମନାଥ ବାବୁ, ସୋମନାଥ ବାବୁ !" କିଛି ଉତ୍ତର ନାହିଁ । ଆଉରି ଛ' ସାତ ଥର ଡାକିଲି, ତଥାପି କିଛି ଉତ୍ତର ନାହିଁ । କାନ ପାଖରେ ମଧ୍ୟ ମୁହଁ ଦେଇ ଡାକିଲି, ତେବେହେଲେ ମଢ଼ ପରି, ଜ୍ଞାନ ଥିବାର କୌଣସି ଚିହ୍ନ ମିଳିଲାନାହିଁ । ମୋ ମନରେ ସନ୍ଦେହ ହେଲା । ସୋମନାଥଙ୍କର କୁକୁର ନିଦ, ମୂଷାଟେ ଖଡ଼କରି ଚାଲିଗଲେ ତାଙ୍କର ନିଦ ଭାଙ୍ଗିଯାଏ । ଏ ତେବେ କିଏ ? ଆସ୍ତେ ଆସ୍ତେ ଫେରି ମୋ ଘରକୁ ଆସିଲି; ଗୋଟେ ଦୀପ ନେଇ ଫେରିଗଲି ।

ଯାହା ଯାହା ଦେଖିଲି ସେଥିରେ ମୋର ଚକ୍ଷୁ ସ୍ଥିର ହୋଇଗଲା, ହୃଦୟର ସ୍ପନ୍ଦନ ବନ୍ଦ ହୋଇଆସିଲା । ମୁଁ ଥରି ଥରି ମାଟିରେ କିଛି ସମୟ ବସିପଡ଼ିଲି । ମୋର ମନରେ ଆଉ କିଛି ଆସିଲା ନାହିଁ—କେବଳ ସେହି ଭୀଷଣ ଦୃଶ୍ୟ—ସେଇ ନରପିଶାଚର କରାଳ ଅବସାନ ।

ସୋମନାଥ ଖଟ ଉପରେ ଶୋଇରହିଛନ୍ତି, ତାଙ୍କ ମୁହଁରେ ଗୋଟିଏ ତୁଣ୍ଡି । ରକ୍ତର ଧାର ବହିଆସି ତାଙ୍କର କପାଳ ଗାଲରେ ଜମାଟ ବାନ୍ଧିଯାଇଚି । ମୁହଁର ବର୍ଣ୍ଣ ଶେତା, ଯେପରି ପ୍ରାଣ ନାହିଁ । ମୁଣ୍ଡରେ ଗୋଟିଏ ଗାମୁଛା ବନ୍ଧାହୋଇଚି, ସେଇଟା ରକ୍ତରେ ଓଦା । ଘରଯାକ ତାଙ୍କର ଜିନିଷପତ୍ରଗୁଡ଼ାକ ଏଠାରେ ସେଠାରେ ପଡ଼ିଚି, ଯେପରି କେହି ତରତର ହୋଇ କ'ଣ ଖୋଜୁଥିଲା । ଘରର ମଝିରେ ମନ୍ଦାଏ ରକ୍ତ, ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ଯମର ରକ୍ତନେତ୍ର ପରି ଅଥବା ରୌରବର ଜ୍ୱଳନ୍ତ ଅଗ୍ନି ପରି ଦର୍ଶକର ମୁହଁକୁ ଚାହିଁରହିଚି । ବିନ୍ଦୁ ବିନ୍ଦୁ ରକ୍ତ ସେ ସ୍ଥାନରୁ ବହି ଖଟ ପର୍ଯ୍ୟନ୍ତ ଯାଇଚି । ଆତଙ୍କରେ ମୋର ଜ୍ଞାନ ହଜିଗଲା । ମୁଁ କ'ଣ କରିବି ଠିକ୍ କରି ନ ପାରି ଅନେକ ସମୟ ସେଠାରେ ନୀରବରେ ଠିଆହୋଇ ରହିଲି । ତା'ପରେ ଫେରିଯିବା ପାଇଁ ଯେତେବେଳେ ବୁଲିଲି, ଦେଖିଲି ନୀଳ ଦୁଆର ମୁହଁରେ । ସେ ମତେ ଦେଖି ଆଶ୍ଚର୍ଯ୍ୟ ହେଲା । ମୁଁ କିନ୍ତୁ ନୀରବରେ ସେ ରକ୍ତଆଡ଼କୁ ଆଙ୍ଗୁଠି ଦେଖାଇ ଠାରିଦେଲି । ସେ ତାକୁ ଦେଖି ଚମକିପଡ଼ିଲା, କିନ୍ତୁ ତା'ପରେ ପ୍ରକୃତିସ୍ଥ ହୋଇ ଖଟ ପାଖକୁ ଗଲା । ନୀଳକୁ ଦେଖି ମୋର ମଧ୍ୟ ସାହସ ଆସିଚି । ମୁଁ ତା' ସଙ୍ଗରେ ଗଲି । ଲୁଗା କାଢ଼ି ଦେଲାରୁ ଦେଖିଲୁଁ ତାଙ୍କର ହାତଗୋଡ଼ ମଧ୍ୟ ଖଟ ଖୁରାରେ ବନ୍ଧା । ମୁଁ ଆଉ ନୀଳ ତାଙ୍କର ତୁଣ୍ଡିବନ୍ଧା ଫିଟାଇଦେଲୁଁ । ନୀଳ ମାଣ୍ଡି ଚିରି ସେଥିରୁ ତୂଳା ଟିକିଏ ବାହାର କରି ସୋମନାଥଙ୍କର ନାକପୁଡ଼ା ପାଖେ ଧଇଲା । ଅନେକ ସମୟ ପରେ ଟିକିଏ ନିଃଶ୍ୱାସ ବଡ଼ କ୍ଷୀଣ ଭାବରେ ଚାଲୁଥିବାର ଅନୁମାନ ହେଲା । ନାଡ଼ି ଦେଖିଲା, ସେ ମଧ୍ୟ ସେହିପରି ଦୁର୍ବଳ । ତା'ପରେ ନୀଳ ମୋତେ କହିଲା, "ଶୀଘ୍ର ଯାଇ ରାମାକୁ ଡାକିଦିଅ, ମୁଁ ଏଠାରେ ଅଛି ।" ରାମା ଉଠିଲା ବହୁତ କଷ୍ଟରେ । ନୀଳ ତାକୁ କହିଲା, "ତୁ ମୋ ସାଇକଲଟା ନେଇ ଶୀଘ୍ର ସହରକୁ ଯା । ଏ ଚିଠି ଖଣ୍ଡ ହରେକୃଷ୍ଣବାବୁ ଡାକ୍ତରଙ୍କୁ, ଏଇଟା ଓକିଲବାବୁଙ୍କୁ ଆଉ ଏଇଟା ଫାଣ୍ଡିରେ ଦେଇଦେବୁ ।" ଏସବୁ କାଣ୍ଡ ଦେଖି ରାମାର ଜ୍ଞାନ ହଜିଗଲାଣି । ସେ ସେ ସ୍ଥାନରୁ ରକ୍ଷାପାଇବା ପାଇଁ ଦଉଡ଼ିପଳେଇଲା ।

●

# ସୋମନାଥଙ୍କର ଆତ୍ମକଥା

ଡାକ୍ତର ଆସିବାକୁ ପ୍ରାୟ ଦୁଇଘଣ୍ଟା ଡେରି ଲାଗିଲା । ୟା ଭିତରେ ସୋମନାଥଙ୍କର ମୁହଁରେ ପାଣିମାରି ବହୁ ଛିଞ୍ଚାବିଞ୍ଚା କଲାପରେ ତାଙ୍କର ଟିକିଏ ଚେତନା ଆସିଲା । ସେ ଆସ୍ତେ ଆସ୍ତେ ଆଖି ମେଲି ଚାହିଁଲେ ।

ଆମମାନଙ୍କୁ ତାଙ୍କ ପାଖରେ ଦେଖି ଆଶ୍ଚର୍ଯ୍ୟ ହେଲେ । ତା'ପରେ ଆସ୍ତେ ଆସ୍ତେ ହାତ ନେଇ ମୁଣ୍ଡ ଦରାଣ୍ଡିଲେ । ତାଙ୍କର ପୂର୍ବଜ୍ଞାନ ଫେରିଆସିଲା । ସେ ଚାରିଆଡ଼କୁ ଥରେ ଆଖି ବୁଲାଇ ଅନାଇଲେ; ତା'ପରେ ଟିକିଏ ଆଶ୍ୱସ୍ତ ହୋଇ କ'ଣ କହିବାକୁ ଯାଉଥିଲେ । ନୀଳ ତାଙ୍କୁ ମନାକଲା । ତା'ପରେ ସୋମନାଥ ଆସ୍ତେ ଆସ୍ତେ ଅଣ୍ଟାରେ ହାତ ବୁଲାଇ ଖଣ୍ଡେ କାଗଜ କ'ଣ ବାହାର କରି ନୀଳ ହାତକୁ ଦେଲେ । ନୀଳ ତାକୁ ଥରେ ପଢ଼ିବାକୁ ଆରମ୍ଭ କରି ଶେଷ କରିପାରିଲା ନାହିଁ । କାଗଜଟା ହାତରୁ ପଡ଼ିଗଲା । ମୁଁ ଗୋଟାଇ ନେଇ ପଢ଼ିଲି, ପଦ୍ମା ଲେଖିଚି—

"ସଇତାନ,

ମୁଁ କହିଆସିଥିଲି ତୋର ଇଚ୍ଛା ପୂର୍ଣ୍ଣ ହେବନାହିଁ । ମୁଁ ବିଧବା, ଶାସ୍ତ୍ରମତରେ ବେଶ୍ୟା । ମୋ ସ୍ୱାମୀଙ୍କର ମୋ ଉପରେ ଯେ ଅଧିକାର, ତୋର ମଧ୍ୟ ସେଇ ଅଧିକାର ? ଭ୍ରମ, ମୁଁ ବିଧବା ନୁହେଁ, ସଂସାର କହିଲେ ମୁଁ ମାନିବାକୁ ସ୍ୱୀକୃତା ନୁହେଁ । ମତେ ଧରିମାରି ଯାହା ସହିତ ବିବାହ କରାଇଥିଲ, ତା' ସହିତ ମୋର ସମ୍ବନ୍ଧ ନ ଥିଲା, ତା'ର ନାମ ପର୍ଯ୍ୟନ୍ତ ମୁଁ ଜାଣେନାହିଁ, ତା' ପାଇଁ ହୃଦୟରେ ଟିକିଏ ମାତ୍ର ସ୍ପନ୍ଦନ ଆସିନାହିଁ । ସେ ମୋର ସ୍ୱାମୀ ହେବ କିପରି ? ମୋର ସ୍ୱାମୀ, ଦେବତା, ଯାହାଙ୍କୁ କାଶୀ ବିଶ୍ୱନାଥଙ୍କ ଚରଣତଳେ ପ୍ରଥମ ଥର ଦେଖି ଚିହ୍ନିଥିଲି, ତାଙ୍କରି ପ୍ରସାଦରୁ ପାଇଚି । ଭାବିଚୁ କି ସୋମନାଥ, ତୋର ଏ ଅତ୍ୟାଚାରରେ ତାଙ୍କୁ ଛାଡ଼ିଦେବି ବୋଲି ? ସଂସାର, ସମାଜ ମୋର କରିପାରେ କ'ଣ ? କାହିଁକି କାହାର ମନ ନେବା ପାଇଁ ମୁଁ ମୋର ଜୀବନ ତ୍ୟାଗ କରିବି ? ଆତ୍ମୋତ୍ସର୍ଗ ଦେବି ? ମୁଁ ଗରିବ ହୋଇଥିଲେ, ନିଃସହାୟ ହୋଇଥିଲେ, ଦୁର୍ବଳ ହୋଇଥିଲେ ସଂସାରକୁ ଦେଖି ଡରିଥାନ୍ତି; ସମାଜ ତା'ର ବିଷଦନ୍ତରେ ମତେ କ୍ଷତବିକ୍ଷତ କରିପାରିଥାନ୍ତା, କିନ୍ତୁ ମୋର ଅଚଳାଚଳ ସମ୍ପତ୍ତି, ଦେବତା ପ୍ରମାଣ ସ୍ୱାମୀ, କୋଟି ସିଂହର ପରାକ୍ରମ । ଇଚ୍ଛାକଲେ ସମାଜର ଛାତି ଉପରେ ଚାଲିଯାଇପାରେ । ନା, ନା, ମୋର ଏ ଦମ୍ଭ ଅକାରଣ । ବିଧାତା ମୋ ପ୍ରତି ବାମ, ସେଇ ହେତୁରୁ ଆଜି ଯାଉଚି; କିନ୍ତୁ ଦେଖ, ତୁ ମତେ ବିଧବା ବୋଲି କହିଥିଲୁ, ତୋରି ଆଗରେ ଅହ୍ୟତେଙ୍କୁରୀ ବଜାଇ ଯିବି । ହା, ହା, ନିରାଶ ହେଲୁ ସଇତାନ ? ମୋଠାରୁ ଟଙ୍କା ନେବୁ ? ମତେ ଦଗଦହନ କରିବୁ ? କର, ଏ ଥରକ ତୋର ଇଚ୍ଛାମତେ । ଯାଉଚି, କିନ୍ତୁ ମୋର ତପ୍ତ ଅଭିଶାପ ତୋପରି ଅଧମ ପାଷାଣ୍ଡମାନଙ୍କୁ କୋଳରେ ଧରିଚି ଯେ ସମାଜ, ତା' ଉପରେ ଶତବର୍ଷବ୍ୟାପୀ ରହିଲା । ଇତି । ପଦ୍ମା ।"

ଚିଠି ପଢ଼ି ମୋର ମୁଣ୍ଡ ଘୂରିଗଲା । ପଦ୍ମା ସେ ପ୍ରକୃତରେ ବିଧବା, ତା' ଜୀବନର ଗୁପ୍ତ ରହସ୍ୟ ଯେ ସେଇ, ସେ କଥା ଆଉ ମନରେ ତିଳାର୍ଦ୍ଧେ ସମୟ ପାଇଲା ନାହିଁ । ସେ ଯେ ଆତ୍ମହତ୍ୟା କରିସାରିଥିବଣି ! ମୁଁ ବୁଲି ଚାହିଁଲି, ନୀଳ ଆଉ ନାହିଁ । ଯିବାକୁ ହେଉଚି, ସୋମନାଥ ମୋତେ କାତର ସ୍ୱରରେ ଡାକିଲେ, "ମଣି ନାନୀ ! ଟିକିଏ ରହିବ ନାହିଁ ?" ମୁଁ ଫେରିଲି । ସେ କହିଲେ, "ମୁଁ ଯେ ଏଥିରୁ ବଞ୍ଚିବି ସେ ଆଶା ବଡ଼ କମ୍ । ମୋର ଦିହ ଝାଇଁ ଝାଇଁ ହୋଇଯାଉଚି । ପ୍ରତି ମୁହୂର୍ତ୍ତରେ ବେଶି ବେଶି ଦୁର୍ବଳ ଲାଗୁଚି । ମୋର କେତେଗୁଡ଼ିଏ କଥା ଅଛି । ସେଗୁଡ଼ିକ କହି ନଗଲେ ପଦ୍ମା ପ୍ରତି ଓ ମୋ ନିଜ ପ୍ରତି ବଡ଼ ନିର୍ଦ୍ଦୟ ହେବାକୁ ପଡ଼ିବ । ଇଚ୍ଛା ଥିଲା ଚିଠିଟା ଦବା ପୂର୍ବରୁ ନୀଳକୁ ସବୁ କଥା ଖୋଲି କହିଥା'ନ୍ତି; କିନ୍ତୁ ପଦ୍ମାର ବିପଦ ଅନୁମାନ କରିପାରିଲି ନାହିଁ । ନୀଳ ତା' ପାଖକୁ ଯାଇଚି, ଯାହା କରିବାର କଥା କରୁଥିବ । ତୁମେ ମୁହୂର୍ତ୍ତେ ରହି ମୋଠାରୁ ସବୁ କଥା ଶୁଣିଯିବ ନାହିଁ ?"

ମୋ ମନ ପଦ୍ମା ପାଖରେ ବୁଲୁଥିଲେ ମଧ୍ୟ ସୋମନାଥଙ୍କର ଏ କଥାଗୁଡ଼ାକ ଶୁଣି କେଜାଣି କିମିତି ମୁଁ ରହିଗଲି । କଳକୁଣ୍ଢେଇ ପରି ମୋର ଆଖି ତାଙ୍କ ଉପରେ ପଡ଼ିରହିଲା । ସେ ଆରମ୍ଭ କଲେ, "ମୋର ଘର ପୁରୀଜିଲ୍ଲା ମାହେନ୍ଦୀପୁର ଗାଁରେ । ମୋର ବାପା ମଧ୍ୟବିତ୍ତ ଲୋକ, ମତେ ପଇସାପତ୍ର ଦେଇ ଅନେକ ଦୂର ପଢ଼େଇଥିଲେ, ସେକଥା ତୁମେ ଜାଣ । ହରିହର ଦାସଙ୍କ ଘର ଆମରି ଗାଁରେ, ସେ ଆମରି କୁଟୁମ୍ବ । ପଦ୍ମା ତାଙ୍କରି ଝିଅ, ପିଲାଦିନୁ ଆମେମାନେ ଏକାଠି ଖେଳିବୁଲି ଆସିଚୁ । ପଦ୍ମାକୁ ଯେତେବେଳେ ୧୨ ବର୍ଷ ସେତେବେଳେ ପାଖ ସୁଭଦ୍ରାପୁରର ମଧୁ ମହାପାତ୍ରଙ୍କ ପୁତ୍ର ନାରଣ ସାଙ୍ଗରେ ତା'ର ବିବାହ ହୋଇଗଲା । ନାରଣ ମୋର ସାଙ୍ଗ, ପିଲାଟି ବଡ଼ ଶାନ୍ତ, ଶିଷ୍ଟ, ଉଦାର; କିନ୍ତୁ ବଡ଼ ଗରିବ । ହରି ଦାଦା ତା'ର ରୂପ ଗୁଣ ଦେଖି ପଦ୍ମାକୁ ତା' ହାତରେ ସମର୍ପି ଦେଇଥିଲେ; କିନ୍ତୁ କେଜାଣି କାହିଁକି ସାତମଙ୍ଗଳା ବାସିଦିନ କଟକ ଯାଉଚି ବୋଲି କହି ସେ ଯେ ଗଲା ଆଉ ଫେରିଲା ନାହିଁ ।

"ମୁଁ ଗାଁରେ ଥିଲି । ଗ୍ରୀଷ୍ମଛୁଟି ସମୟ । ହରି ଦାଦାଙ୍କ ଅନୁରୋଧରେ ମୁଁ କଟକ ଗଲି, ବହୁତ ଖୋଜିଲି; କିନ୍ତୁ ପାଇଲିନାହିଁ । ପରେ ଶୁଣିଲି ହରିଦାଦା ନିଜେ ଟଙ୍କାପଇସା ଧରି ତାକୁ ଖୋଜିବାକୁ ବାହାରିଲେ । ତାଙ୍କର ପୁଅଝିଅ ଆଉ କେହି ନ ଥାନ୍ତି । ସ୍ତ୍ରୀ ଅନେକ ଦିନରୁ ମରିଯାଇଥିଲେ । ସଂସାରରେ ତାଙ୍କର ଏକମାତ୍ର ପଦ୍ମା । ପଦ୍ମାର ସ୍ୱାମୀ ନିରୁଦ୍ଦିଷ୍ଟ ହେବାର ଶୁଣି ସେ ନିଜେ ଖୋଜି ବାହାରିବେ, ସେ କଥା ତାଙ୍କୁ ଯେ ଚିହ୍ନନ୍ତି ତାଙ୍କ ପାଇଁ କିଛି ଆଶ୍ଚର୍ଯ୍ୟ ନୁହେଁ । ସେ ଗଲାବେଳେ ବାପାଙ୍କୁ 'ଘର ଦୁଆର ଆଉ ପଦ୍ମା ଲାଗିଲା' ବୋଲି କହିଦେଇ ଗଲେ । ପଦ୍ମା ପାଖରେ ଆଉ କେହି ନଥାନ୍ତି, କେବଳ ଗୋଟିଏ ବିଧବା ମାଉସୀ । ଅନେକ ଦିନ ଚାଲିଗଲା । ମୁଁ ପୂଜା ଛୁଟିରେ ଗାଁକୁ ଆସିଥିଲି । ହରିଦାଦା ସେଦିନୁଁ ଫେରି ନ ଥାନ୍ତି । ବେଳେ ବେଳେ ଖଣ୍ଡେ ଖଣ୍ଡେ ଚିଠି କାହିଁ ହରିଦ୍ୱାର, କାହିଁ ସୋମନାଥ, କାହିଁ ରାମେଶ୍ୱରରୁ ଆସୁଥାଏ । ମୁଁ ଗାଁରେ ରହିଲି । ପଇସାପତ୍ର ଅଭାବରେ ଆଉ ପଢ଼ାପଢ଼ି ହୋଇପାରିଲା ନାହିଁ ।

"ଦିନେ—ସେ ଦିନ କଥା ମୋ ମନରେ ଗାର ପଡ଼ିଲାପରି ମନେଅଛି—ପଦ୍ମା ମାଉସୀଙ୍କର ଦେହ ଭାରି ବ୍ୟସ୍ତ ବୋଲି ତାଙ୍କର ଚାକରାଣୀ ଆସି କହିଦେଇଗଲା । ବାପା କ'ଣ ଗୋଟେ କାମରେ ବ୍ୟସ୍ତ ଥାନ୍ତି; ମତେ ପଠାଇଦେଲେ । ମୁଁ ଗଲି । ପଦ୍ମାର ବିବାହ ପରେ ସେଇ ମୋର ପ୍ରଥମ ସାକ୍ଷାତ । ତା'ପରେ ମୋର ଗତିବିଧି ଚାଲିଲା । ମୋର ଅଜ୍ଞାତରେ ପିଲାଦିନର ସେ ମଧୁରଭାବ ଗାଢ଼ ହୋଇ ମୋ ହୃଦୟ ଅଧିକାର କରିବସିଲା । ଦିନେ ପଦ୍ମାକୁ ନ ଦେଖିଲେ, ଦିନେ ତା'ଠାରୁ କଥା ପଦେ ନ ଶୁଣିଲେ, ମନଟା କିମିତି ଛଟପଟ ହୁଏ ।

"ସେ ଏକ ଅତୃପ୍ତ ଆଶାର ମଧୁର ମଦିରା ! ପଦ୍ମାର ବିବାହ, ତା' ସ୍ୱାମୀର ନିରୁଦ୍ଦେଶ, ଏ ସବୁର ସେ ଭାବ ସହିତ କୌଣସି ସମ୍ପର୍କ ନ ଥିଲା । ପଦ୍ମା ସହିତ କଥାବାର୍ତ୍ତା ହେଲାବେଳେ, ତା'ର ହାସ ଶୋକର ବିଚିତ୍ର ରଞ୍ଜିତ ମୁଖକୁ ଚାହିଁରହିଥିଲାବେଳେ ମୋ ମନରେ ସେ ସବୁ କଥା ଆଦୌ ହେଉନଥିଲା । ପଦ୍ମା ଅନ୍ୟର ସ୍ତ୍ରୀ, ଏ କଥା ମୁଁ ଆଦୌ ଧାରଣା କରିପାରିନଥିଲି; ସୁତରାଂ ଏ ପ୍ରବୃତ୍ତି ବନ୍ଦ କରିବାର କୌଣସି କାରଣ ମଧ୍ୟ ଦେଖୁନଥିଲି । ପଦ୍ମା ପ୍ରଥମେ ପ୍ରଥମେ ଟିକିଏ ଲାଜ କରୁଥିଲା । ତାହା ସ୍ୱାଭାବିକ । ଲାଜ କରିବାର ଥିଲା କ'ଣ ? ସେ ବାରବର୍ଷର ବାଳିକା ମାତ୍ର, ଆଉ ମୁଁ ତା'ର ପିଲାଦିନର ଖେଳସାଥୀ । ଦିନ ଏହିପରି କଟିଗଲା । ମୁଁ ପଢ଼ାପଢ଼ି ଛାଡ଼ି ଘରକଥା ବୁଝିବାକୁ ରହିଲି । ପଢ଼ାପଢ଼ି ଛାଡ଼ିଲି ବୋଲି ମନରେ ଯେ କଷ୍ଟ ଥିଲା, ତା' ପଦ୍ମାର ଭାବରେ କୁଆଡ଼େ ଭାସିଗଲା ।

ଜୀବନରେ ସୁଖର ଉପଭୋଗ ଶୀତଦିନିଆ ଖରାପରି ଚଟ୍‌କରି ଖସିପଡ଼େ । ହଠାତ୍ ଦିନେ ଗୋଟେ ତା'ର ଆସିଲା "ହରିଦାଦା ଭାରି ବେମାର, ଶୀଘ୍ର ପଦ୍ମାକୁ ନେଇ କାଶୀ ଯିବାକୁ ହବ ।" ମୋର ମୁଣ୍ଡରେ ବଜ୍ର ଭାଙ୍ଗିପଡ଼ିଲା । ପଦ୍ମା ଚାଲିଗଲେ ଜୀବନଟା କିପରି ରହିବ ଭାବି ଠିକ୍ କରିପାରିଲି ନାହିଁ । ବାପାଙ୍କ ପାଖରେ ଅନେକ ଲଗାଇଲି—ମୁଁ ପଦ୍ମାକୁ ନେଇ କାଶୀ ଯିବି, ତୁମେ ବୁଢ଼ାଲୋକ; କାହିଁକି ସେ ଗୋଳମାଳରେ ପଡ଼ିବ ? କିନ୍ତୁ ସେ ଏକ ଜିଗର କରି ବସିଲେ, "ନାହିଁ ନାହିଁ ମୁଁ ଯିବି, ହରିକି ଟିକିଏ ଦେଖିବି, ଗଙ୍ଗାସ୍ନାନ କରିବି । ଚାରିକାଳ ତ ପୂରିବାକୁ ବସିଲା, ଦିନେ ଘରୁ ଗୋଡ଼ କାଢ଼ିପାରିଲି ନାହିଁ । ଆଜି ଯଦି ଏପରି ଭାବରେ ବିଶ୍ୱେଶ୍ୱରଙ୍କ ଡୋରି ଲାଗିଥାଏ, ତାହେଲେ ନ ଗଲେ ପ୍ରଭୁପଦରେ ଦ୍ରୋହୀ ହେବି ।" ଫଳରେ ସେ ପଦ୍ମାକୁ ନେଇଗଲେ । ମୁଁ ସାଙ୍ଗେ ସାଙ୍ଗେ ତେଲାଙ୍ଗ ଷ୍ଟେସନ ପର୍ଯ୍ୟନ୍ତ ଗଲି । ତାଙ୍କୁ ଗାଡ଼ିରେ ଉଠାଇ ଦେଇ ଫେରିଆସିଲି ଶୂନ୍ୟ ମନରେ, ଶୂନ୍ୟ ହୃଦୟରେ, ଶୂନ୍ୟ ଶାସନକୁ ।

ଏତିକି କହିଚନ୍ତି କି ନାହିଁ ତାଙ୍କ ମୁଣ୍ଡରୁ ଫେରେ ରକ୍ତ ବାହାରିଲା । ସେ ଢାଳିଆ ହୋଇ ପଡ଼ିଗଲେ । ମୁଁ "କ'ଣ ହେଲା, କ'ଣ ହେଲା" କହି ତାଙ୍କ ମୁଣ୍ଡରେ ପାଣି ମାରିବାକୁ ଗଲାବେଳେ ଡାକ୍ତର, ଓକିଲବାବୁ, ଆଉ ଦାରୋଗା ଆସି ପହଞ୍ଚିଲେ । ମୁଁ ତରବର ହୋଇ ସେ ଘରୁ ପଳାଇଗଲି ।

●

# ପଦ୍ମାର ଆତ୍ମକଥା

ପଦ୍ମାର ଘରକୁ ଆସି ଯାହା ଦେଖିଲି ସେଥିରେ ମୋର ହୃଦୟ ଭାଙ୍ଗିପଡ଼ିଲା । ଘରଯାକ ବାନ୍ତିରେ ଭାସୁଛି । ନୀଳ ସୋମନାଥଙ୍କ ପାଖରୁ ଆସି ପଦ୍ମାର ଦୁଆର ଭାଙ୍ଗି ଘରେ ପଶିଛି । ଭଙ୍ଗା ଦୁଆରଟା ଘରର ଗୋଟେ ପଟେ ପଡ଼ିରହିଛି । ପଦ୍ମା କନିଅର ମଞ୍ଜି ଖାଇ ବେହୋସ ହୋଇପଡ଼ିଥିଲା । ତାର ପାଟିରୁ ଗରଳ ଫେଣ ବୋହିପଡୁଥିଲା । ନୀଳ ଆସି କ'ଣ ଓଷଅ ଖାଇବାକୁ ଦବାରେ ସେ ଖୁବ୍ ଗୁଡ଼େ ବାନ୍ତି କରିପକାଇଛି । ସେତିକିବେଳୁ ଆଉ କୁଆଡ଼େ ଫେଣ ବାହାରୁ ନାହିଁ । ଟିକିଏ ଜ୍ଞାନ ମଧ୍ୟ ଆସିଛି । ନୀଳର ଜଙ୍ଘ ଉପରେ ମୁଣ୍ଡଟି ରଖି ତା'ର ମୁହଁଆଡ଼କୁ ତନ୍ଦ୍ରା ଆଖିରେ ଚାହିଁ ରହିଛି । ତା'ର ମୁହଁରେ କିନ୍ତୁ ବିଷାଦ ନାହିଁ । ସେ ଭାବ ଦେଖି କେହି କହିପାରିବ ନାହିଁ, ଏ ଲୋକ ଘଣ୍ଟାକ ତଳେ ବିଷ ଖାଇଥିଲା ବୋଲି ! ନୀଳର ମୁହଁରୁ ଓ ଆଖିରୁ ସେ ଦମ୍ଭ, ସେ ତେଜ ସବୁ ଲିଭିଯାଇଛି । ଯାଇ ପଦ୍ମାର ଆଖିକୁ ଯେତେବେଳେ ଚାହିଁଲି, ଦେଖିଲି ଆଖିଟା ତଥାପି ଭାରି ଲାଲ୍ । ବିଷ ଯେ ଦେହରେ ଚରିଯାଇଛି ସେଥିରେ ସନ୍ଦେହ ନାହିଁ । ଏତେ ବଡ଼ ଗୋରା ମଣିଷଟା ନେଳି ପଡ଼ିଗଲାଣି ।

ମତେ ଦେଖି ନୀଳ ଅତି ଧୀରେ ପଚାରିଲା, "ସୋମନାଥ କିପରି ?" ମୁଁ ମଧ୍ୟ ସେହିପରି ଧୀର ଭାବରେ କହିଲି, "ଫେରେ ମୁଣ୍ଡରୁ ରକ୍ତ ବୋହୁଥିଲା, ଡାକ୍ତର ହେରିକା ସମସ୍ତେ ଆସିଚନ୍ତି, ତୁ ବେଗେ ଯା ।" ଇଚ୍ଛା ନଥିଲେ ମଧ୍ୟ ସେ ଆସ୍ତେ ଆସ୍ତେ ପଦ୍ମାର ମୁଣ୍ଡଟି ତକିଆ ଉପରେ ରଖିଦେଇ ବାହାରିଗଲା । ପଦ୍ମା ବି ଫେର୍ ଝଲକେ ବାନ୍ତିକରିପକାଇଲା । ମୁଁ ତାକୁ ଘେନି ବସିଲି । ନୀଳ ଚାଲିଗଲା । ପ୍ରତ୍ୟେକ ଥର ବାନ୍ତି ପରେ ପଦ୍ମାର ଟିକିଏ ଚେତା ହେବା, ଜଣାପଡୁଛି । ଏ ଥରକ ମଧ୍ୟ ହେଲା । ସେ ମୋ ଆଡ଼କୁ ଚାହିଁ କହିଲା, "ଏ କୁଆଡ଼େ ଗଲେ ?"

ମୁଁ—"ହେଇ ଯାଇଚି, ଅଇଛିକା ଆସିବ ।"

ପଦ୍ମା—"ମଣିନାନୀ, ମତେ ସବୁ କହୁଚନ୍ତି ବିଧବା, ମୁଁ ବିଧବା ହେଲି କିପରି ?"

ମୁଁ—"ନା, ତୁ ବିଧବା କାହିଁକି ହବୁ ? ତୋର ସ୍ୱାମୀ ତ ମରିନାହିଁ ।"

ପଦ୍ମା—"ଛି, ଏତେ ବଡ଼ କଥା ତୁଣ୍ଡରେ ଆଣନ୍ତି ?"

ମୁଁ—"ନାଇଁ ନାଇଁ, ଏ କଥା କହୁ ନାହିଁ ! ତୋ'ର ସେ ଆଗ ସ୍ୱାମୀଟା କଥା...."

ପଦ୍ମା ଚମକିପଡ଼ି ମୋ ଆଡ଼କୁ ଏଡ଼େ ଆଖି କରି କହିଲା, "ଏଁ, ଏଁ, ତୁମେ ଜାଣିଲ କିପରି ?"

ମୁଁ—"ସୋମନାଥ ମତେ ସବୁ ଖୋଲିକରି କହିଚନ୍ତି ।"

ପଦ୍ମା—"କହିଚି ? ତୁମକୁ କହିଚି ? ନାନୀ, ତୁମେ ଆଉ କାହାରି ଆଗରେ କହିବ ନାହିଁ ତ ?"

ମୁଁ—"ଧୁତ୍, ପାଗଳୀ ହେଲୁ ନା କ'ଣ ? ଏ ଘର କ'ଣ ମୋର ନୁହେଁ ? ତୁ ସିନା ଏ ଘରର ବୋହୂ, ମୁଁ ଯେ ଘରର ମାଲିକ !"

ପଦ୍ମା—"ଠିକ୍ ଠିକେ, ମୁଁ ସବୁ କଥା ତାଙ୍କୁ କହିଚି ଆଜି; କିନ୍ତୁ ନାନୀ, ମୁଁ ତ ତାକୁ ଭଲପାଇ ନଥିଲି, ତାକୁ ତ ଦି' ଆଖିରେ ଟିକିଏ ଦେଖି ନାହିଁ । ସେ ମରିଗଲା ବୋଲି...."

ମୁଁ—"ମଲା କିମିତି ? ସେ ପରା କୁଆଡ଼େ ପଳାଇଯାଇଚି ?"

ପଦ୍ମା—"ନା, ତାହାହେଲେ ନାନୀ ! ତୁମେ ସବୁ ଜାଣିନାହଁ । ବାପା ଖୋଜିବାକୁ ଯାଇଥିଲେ, ବହୁତଆଡ଼େ ଖୋଜି ଖୋଜି କାଶୀରେ ଯାଇ ଠାବ କଲେ । ସେ କୁଆଡ଼େ ବାବାଜୀ ବେଶରେ ଥିଲା; ଭାରି ବେମାର । ବାପା ଅନେକ ଦିନ ରହି ସେବା କଲେ । ତା'ପରେ ସେ କୁଆଡ଼େ ମରିଗଲା । ସେ ଲୋକଟା କଥା ଭାବିଲା ବେଳେ ମନରେ ବଡ଼ କଷ୍ଟ ହୁଏ ମଣିନାନୀ !"

ମୁଁ—"ତେବେ ତୁ ମୋରି ପରି ଗୋଟିଏ ପୋଡ଼ାକପାଳୀ !"

ପଦ୍ମା—"ମୁଁ ? କାହିଁକି ହେବି ? ମୋର ସ୍ୱାମୀ ଅଛନ୍ତି, ମୋର ଘରଦୁଆର ଅଛି ।"

ମୁଁ—"ଆଚ୍ଛା, ତୋର ଯେବେ ଏପରି ଅବସ୍ଥା, ତାହାହେଲେ ତୋର ନୀଳ ସଙ୍ଗରେ ବିବାହ ହେଲା କିପରି ?"

ପଦ୍ମା—"କିଆଁ ନହନ୍ତା ? ଆମେ ତ ଭଲ ଜାତି, ଭଲ ଗୋତ୍ର । ମୁଁ କ'ଣ ଦେଖିବାକୁ ସେମିତି ଅସୁନ୍ଦର ମଣିନାନୀ ! ମତେ ଗାଁରେ ସମସ୍ତେ କହୁଥିଲେ ମୁଁ ଗୋଟିଏ ଚାଉଳରେ ଗଢ଼ା । ହଁ, ହଁ, ମୁଁ ଜାଣିପାରିଚି, ମୁଁ ୟାଙ୍କ ଲାଏକ ସ୍ତ୍ରୀ ନୁହେଁ । ମୋ କପାଳ ଟେକ ।"

ମୁଁ—"ବିବାହ ହେଲା କିପରି ?"

ପଦ୍ମା—"ମୁଁ କାଶୀରେ ଯାଇ ପହଞ୍ଚିଲାରୁ ବାପା ମତେ ସବୁକଥା ଖୋଲି କହିଲେ । ମୁଁ କିଛି ଜାଣିପାରିଲି ନାହିଁ । ମୋ ଆଖିକି ଟିକିଏ ଲୁହ ବି ଆସିଲା ନାହିଁ । କଥାଗୁଡ଼ାକ ଏକାନେ ପଶି ସେକାନେ ବାହାରିଗଲା । ଆଉ ଦିନେ ବାପା କହିଲେ, 'ମନ ବ୍ୟସ୍ତ କରିବୁ ନାହିଁ, ମୁଁ କାଶୀରେ କେତେଜଣ ପଣ୍ଡିତଙ୍କୁ ପଚାରିଥିଲି, ସେ ବ୍ୟବସ୍ଥା ଲେଖି ଦେଇଛନ୍ତି । ତୋ ଅବସ୍ଥାରେ ବିଧବାର ବିବାହ ହୋଇପାରେ । ମୁଁ ଏଥିରୁ ଭଲହେଲେ ଫେରେ ଭଲ ବର ଦେଖି ବିବାହ ଦେବି । ମତେ ଲୋକେ ଏକଘରକିଆ କଲେ କରିବେ, କିନ୍ତୁ ମୁଁ ତୋର ଖାଲି ମୁହଁ ଦେଖିପାରିବି ନାହିଁ ।' "

ମୁଁ—"କାହିଁକି ତୋ ଧିଅରେ କ'ଣ ଅଳଙ୍କାର ନଥାଏ ?"

ପଦ୍ମା—"କାହିଁକି ନଥାନ୍ତା ? ମୁଁ ତ କାଶୀ ଆସି ଶୁଣିଲି । କିଏ ଜାଣିବ ଯେ ଅଳଙ୍କାର ଭାଙ୍ଗିବାକୁ ମତେ କହନ୍ତା ? ଆଉ ମୋର କି ଗରଜ ପଡ଼ିଥିଲା ଯେ ମୁଁ ଭାଙ୍ଗିବାକୁ ଯିବି ?"

ମୁଁ—"ହଉ, ତା' ପରେ ?"

ପଦ୍ମା—"ଆମେ ତ ୟାଙ୍କ ଘରେ ଥାଉଁ । ୟାଙ୍କ ସାଙ୍ଗରେ ଅନେକ ଥର ଦେଖାହୁଏ । ଏ ମତେ ଦେଖିଲେ ବୁହାଏ ଗପ ନକରି ଛାଡ଼ନ୍ତି ନାହିଁ । ଦିନେ ଦି'ଦିନ ପରେ ମୋର କ'ଣ ହେଲା କେଜାଣି ସବୁବେଳେ ଇଚ୍ଛାକରି ତାଙ୍କ ଯିବାଆସିବା ବାଟରେ ଠିଆହୋଇଥାଏ । ବାପାଙ୍କ ରୋଗ ଶେଯରେ ଦୁଇଜଣଯାକ ସାରା ରାତି ବସି କଟାଉଥାଉ । ବାପାଙ୍କର ଦେହ

ଯେତେ ଖରାପ ହେଉଥାଏ, ୟାଙ୍କ ମୁହଁ ସେତିକି ସେତିକି ଶୁଖି ଯାଉଥାଏ, ଆଉ ମତେ ଚାହିଁ କ'ଣ ଗୁଡ଼ାଏ ଭାବୁଥାନ୍ତି କେଜାଣି ମୁଁ ଢଳକା ପରି ତାଙ୍କ ସେ ମୁହଁକୁ ଅନାଉଥାଏ । ଥରେ ଶୁଣିଲି, ଶାଶୁ ଶଶୁରଙ୍କୁ କହୁଛନ୍ତି, 'ହେଇ ହେ, ନୀଳ ପାଇଁ ଏ ପିଲାଟି ହେଲେ ହୁଅନ୍ତା ନାହିଁ ? ବଡ଼ ସୁଧାର ପିଲାଟିଏ; ରୂପ ଯେମିତି ଗୁଣ ବି ସେମିତି । ନୀଳକୁ ବେଶ୍ ହୁଅନ୍ତା ।'

"ଶଶୁରେ କହିଲେ—'ମନ୍ଦ ହୁଅନ୍ତା ନାହିଁ । ଦାସଙ୍କ ଜାତି ଗୋତ୍ର ମଧ୍ୟ ବେଶ୍ ଭଲ । ତେବେ ଗରିବ କିନା ? ଆଉ କୁ'ଠ ଦେଖି କଲେ ହୁଏତ କିଛି ମିଳନ୍ତା ।' ଶାଶୁ କହିଲେ, 'ମଲା, ମଲା, ଟଙ୍କାଗୁଡ଼ାକ ମଲାବେଳେ ପୁଅ ସାଙ୍ଗରେ ପଠେଇଦେବ ପରା ? ତୁମର ଟଙ୍କା କ'ଣ ନାହିଁ ? ଏପରି ବୋହୁଟିଏ ପାଇବ କୁଠି ?'

"ଶଶୁରେ କହିଲେ, 'ହଉ, ଦାସଙ୍କ ଦେହ ଭଲ ହେଉ, ତାଙ୍କ ସାଙ୍ଗରେ କଥାବାର୍ତ୍ତା କରିବା ।' ସେଇଦିନୁ ୟାଙ୍କ ଆଗକୁ ଆସିବାକୁ ମତେ କେମିତି ସରମ ଲାଗିଲା; କିନ୍ତୁ ସେ ଯୁ' ମଣିଷ ମୁଁ କ'ଣ ଟିକିଏ ଲୁଚିବାକୁ ରାହା ପାଇଲି ? ଛପି ଛପି ଆସି ମୁଁ ସାତସନ୍ଧିରେ ପଶିଥିଲେ ମଧ୍ୟ ଖୋଜି ବାହାର କରିବେ । କେତେ ଟାପରା କରି କହିବେ । ମୁଁ ଯେତେ ଗୁମ୍‌ମାରି ବସିବି, ନ ହସେଇ ଛାଡ଼ିବେ ନାହିଁ । ଇମିତି ମଣିଷ ।"

ପଦ୍ମାର ମୁହଁ ହସରେ ଉଛୁଳି ପଡ଼ିଲା । ସେ ବଡ଼ ନୀରବ; କିନ୍ତୁ ପୂର୍ଣ୍ଣ ହୃଦୟର ହସ । ତା'ପରେ କହିଲା, "ଭାରି ଶୋଷ ହେଉଚି, ଟିକିଏ ପାଣି ଦେଲ ।"

ପାଖରେ ଗିଲାସ ଥୁଆହୋଇଥିଲା । ପାଣି ଟିକିଏ ନେଇ ଦେଲି । ତା'ପରେ ପଚାରିଲି, "ସିଠଉ କ'ଣ ହେଲା ?"

ପଦ୍ମା—"ୟା ଭିତରେ ବାପାଙ୍କ ଦେହ ଭାରି ଖରାପ ହେଲା । ଡାକ୍ତର ଆସି କହିଲା, 'ସିରିୟସ୍ ହୋଇଗଲାଣି; ଆଉ ଆଶା ନାହିଁ ।' ବାପା ବେହୋସ ହୋଇଗଲେ । ବାପା କଥା ନ କହିବାରୁ ମୁଁ ଭାରି କାନ୍ଦିଲି । ଶାଶୁ ଶଶୁର କେତେ ବୁଝାଇଲେ । ମୁଁ କ'ଣ ସେଥିରେ ବୁଝେ ? ୟାଙ୍କୁ ଏକୁଟିଆ ଦେଖି ୟାଙ୍କ ପାଖକୁ ଯାଇ କାନ୍ଦି କାନ୍ଦି କହିଲି, 'ବାବୁ, ମୋ ବାପା କ'ଣ ଆଉ ବଞ୍ଚିବେ ନାହିଁ ? ମୁଁ କାହା ପାଖରେ ରହିବି ? ବାପାଙ୍କ ଛଡ଼ା ଯେ ମୋର ଆଉ କେହି ନାହିଁ ?' ୟେ ସେଥିରୁ ମୋତେ କୁଣ୍ଢାଇ ପକାଇ କହିଲେ, 'ମୁଁ ଅଛି ପଦ୍ମା ! ମୋ ପାଖରେ ରହିବ ନାହିଁ ?' ମତେ ଭାରି ଲାଜ ମାଡ଼ିଲା, ମୁଁ ଆଉ କିଛି କହିପାରିଲି ନାହିଁ । ତାଙ୍କ ଦିହକୁ ଆଉଜି ପଡ଼ିଲି । କିଛି ସମୟ ପରେ କହିଲି, 'ମତେ ରଖିବନା ?' ସେ ମଧ୍ୟ ତାର କିଛି ଉତ୍ତର ଦେଲେ ନାହିଁ । ତାଙ୍କର ଆଖି ଛଳ ଛଳ ହୋଇଆସିଲା । ମଉନ ହୋଇ ପୁଣି କହିଲେ , 'ପଦ୍ମା, ପଦ୍ମା....' ସେ ହୃଦୟଥରା, ପଦ୍ମା ପଦ୍ମା ଡାକରେ ମନ ଏତେ ଦୂର ଭୁଲିଗଲା ଯେ ମୁଁ ମୋ ବାପାଙ୍କ କଥା ଏକାବେଳକେ ଭୁଲିଗଲି ।"

"ଦିନେ ବାପା ବେହୋସ ହୋଇ ପଡ଼ି ରହିଥିଲେ । ତା'ପରେ ତହିଁଆରଦିନ ସକାଳେ ଟିକିଏ ହୋସ୍ ହେଲା; ସମସ୍ତଙ୍କୁ ପାଖକୁ ଡାକିଲେ । ମୁଁ ବସିଥିଲି ବାଁ ପଟ ମୁଣ୍ଡ ପାଖେ, ୟେ ବସିଥାନ୍ତି ଡାହାଣ ପାଖେ; ଶାଶୁ ଶଶୁରେ ଦି'କର ପଟେ ବସିଥାନ୍ତି । ବାପା ଶଶୁରଙ୍କୁ ଆମ ଜାତି, ଗୋତ୍ର ସବୁ କଥା କହିଲେ । ତା'ପରେ ମୋ ହାତଟି ନେଇ ଶଶୁରଙ୍କ ହାତ ଖୋଜି

ନପାଇବାରୁ ୟାଙ୍କ ହାତ ଧରି ତା' ଉପରେ ରଖିଦେଇ କହିଲେ, 'ଏ ମା' ଛେଉଣ୍ଡ, ବଡ଼ ହତଭାଗିନୀ, ତମକୁ ଲାଗିଲା, ୟାର ଗତି.... ।' ତା'ପରେ ତାଙ୍କର ପାଟି ପଡ଼ିଗଲା, ଆଉ କିଛି କହିପାରିଲେ ନାହିଁ ।"

ପଦ୍ମାର ଆଖିରୁ ଲୁହ ବୋହିପଡ଼ିଲା, ସେ ଆଉ କିଛି କହିପାରିଲା ନାହିଁ ।



## ଉପସଂହାର

ଏଇ ସମୟରେ ନୀଳ ଡାକ୍ତର ଓ ଓକିଲ ବାବୁଙ୍କୁ ଘେନି ଆସି ପହଞ୍ଚିଲା । ମୁଁ ଗୋଟେ ପଟକୁ ଆଡ଼େଇ ହୋଇଯାଇ ଘୋଡ଼ିଘାଡ଼ି ହୋଇ ବସି ରହିଲି । ଡାକ୍ତର ରୋଗୀକୁ ଭଲକରି ପରୀକ୍ଷା କଲେ, ଓଷୁଅପତ୍ର ଖାଇବାକୁ ଦେଲେ । ଇଞ୍ଜେକ୍‌ସନ ଓଷୁଏ କ'ଣ ନଥିଲା, ସେଥିପାଇଁ ରାମାକୁ ଡାକି ଫେରେ ସହରକୁ ପଠାଇଲେ । ତା'ପରେ ତିନିହେଁ ଯାକ ସେଇଠାରେ ବସି ରହିଲେ । କିଛି ସମୟ ଚୁପ୍‌ଚାପ୍ ହୋଇ ବସିରହିବା ପରେ, ଓକିଲ କହିଲେ, "କ'ଣ କରିବା ତେବେ ? ଦାରୋଗାଟା ଯେ ବସିଚି, ସେ ତ ସୋମନାଥଠାରୁ ଗୋଟାଏ ଜମାନବନ୍ଦି ନେବ ?"

ନୀଳ—"ମୁଁ ମଧ୍ୟ ସେଇକଥା ଭାବୁଚି । ଆପଣଙ୍କୁ ଦାଣ୍ଡଘରକୁ ଯିବାକୁ କହିଦେଇ ଇଲେ ସେ ମତେ ଯାହା ସବୁ କହିଲା, ସେଥିରେ ଏ ତଦନ୍ତ ଭାର ପୁଲିସ୍ ହାତରେ ଦବାକୁ ମୋର ସାହସ ହେଉ ନାହିଁ । କ'ଣ କହୁଛ ହରେକୃଷ୍ଣ ବାବୁ, ସୋମନାଥ ବଞ୍ଚିବ ତ ?"

"ମୋର ତ ବର୍ତ୍ତମାନ ଯେତେଦୂର ଆଶା, ବଞ୍ଚିଯିବ; ଅବଶ୍ୟ ସେପ୍‌ଟିକ୍ ହେଲେ କହିପାରୁ ନାହିଁ ।"

ନୀଳ—"ମୋ ମତରେ ପୁଲିସ୍‌କୁ ୟା ଭିତରକୁ ଆଣିବା ଉଚିତ ହେବ ନାହିଁ । ଆପଣଙ୍କୁ ଓକିଲ ବାବୁ ତା'ର ରାହା ଖୋଜିବାକୁ ହେବ ।"

ଓକିଲ—"କିନ୍ତୁ ସମୁଦାୟ ବିଷୟ ନଜାଣିଲେ କିପରି କ'ଣ କରିବି ?"

ନୀଳ—"ଆପଣ ଯାହା ପଚାରିବେ ତାହା ମୁଁ ସବୁ କହିବାକୁ ପ୍ରସ୍ତୁତ ଅଛି ।"

ଓକିଲ—"ଆସାମୀ କିଏ, ତାକୁ ସେ ଚିହ୍ନନ୍ତି କି ?"

ନୀଳ—"ହଁ, ଚିହ୍ନନ୍ତି; ତା'ର ନାମ ମକର ସାମଲ । ଜାତିରେ ଚଷା । ଆଗେ ସୋମନାଥଙ୍କର ହଳିଆ ଥିଲା । ସେ ଆସି ଏ କେତେଦିନ ହେଲା ପଞ୍ଚୁଆ ଚଷା ଘରେ ଅଛି ।"

ଓକିଲ—"ସେ କାହିଁକି ତାଙ୍କୁ ଖୁଣ୍ କଲା ?"

ନୀଳ—"ତା'ର କେତେଗୁଡ଼େ କାଗଜପତ୍ର ପଞ୍ଚୁଆ ଘରୁ ଚୋରି ଯାଇଚି କାଲି । କାଲି ରାତି ଦଶଟା ବେଳେ ସେ ହଠାତ୍ ପାଚେରି ଡେଇଁ ଆସି ସୋମନାଥଙ୍କ ଘରେ ହାଜର

ହେଲା । ସୋମନାଥ ଶୋଇବାକୁ ଯାଉଥିଲେ । ଏ ଲୋକଟା ଦୁଆରରେ ହାତ ମାରିବାରୁ ଦୁଆର ଫିଟାଇ ଦେଲେ । ସେ ଘରକୁ ଆସିଲାକ୍ଷଣି ସଙ୍ଗେ ସଙ୍ଗେ ସୋମନାଥଙ୍କ ତୋଟି ଧରି କହିଲା, 'ଚାଲାକି ଖାଟିବ ନାହିଁ; ମୋ କାଗଜପତ୍ରତକ ଦେଇଦେ ।' ସୋମନାଥ କାଗଜପତ୍ର କଥା କିଛି ଜାଣନ୍ତି ନାହିଁ । ସୁତରାଂ ସେ ଯେତେ ନେହୁରା ହୋଇ କହିଲେ ସେ ଲୋକଟା ଶୁଣିଲା ନାହିଁ । ତା' ହାତରେ ଗୋଟିଏ ଠେଙ୍ଗା ଥିଲା । ସେଥିରେ ସେ ୟାଙ୍କୁ ପାହାରେ ପିଟିଲା । ସେଇତକରେ ସୋମନାଥଙ୍କ ମୁଣ୍ଡ ଫାଟି ରକ୍ତ ବହିଲା । ସେ ବେହୋସ ହୋଇ ତଳେ ପଡ଼ିଗଲେ । ତା'ପରେ କ'ଣ ହେଲା ସେ କହିପାରିଲେ ନାହିଁ । ତେବେ ଯେତେଦୂର ଜଣାଯାଉଛି, କାଳେ ସୋମନାଥଙ୍କର ଜ୍ଞାନ ହୋଇଯିବ, କାଳେ ସେ ଡକାହକା କରିବେ, ଏଇ ଆଶଙ୍କାରେ ସେ ତାଙ୍କୁ ଖଟଉପରେ ଶୁଆଇ ତାଙ୍କର ମୁହଁରେ ଗୋଟିଏ ତୁଣ୍ଡି ବାନ୍ଧିଦେଲା । ହାତଗୋଡ଼ ମଧ୍ୟ ଖଟ ସାଙ୍ଗରେ ବାନ୍ଧିଦେଇ, ପେଡ଼ିପେଟରା ଯାହା ଥିଲା ସବୁ ଖୋଜି କିଛି ନପାଇବାରୁ ପଳାଇଗଲା ।"

ଓକିଲ—"କିନ୍ତୁ ତା'ର ସେ କାଗଜପତ୍ର ସହି—" ଠିକ୍ ଏତିକିବେଳେ ପଦ୍ମା ବଡ଼ ବ୍ୟସ୍ତ ହୋଇଉଠିଲା । ସମସ୍ତେ ତା' ପାଖକୁ ଧାଇଁଗଲେ । ଡାକ୍ତର ନାଡ଼ୀ ଦେଖି ଆଉ ପାନେ ଓଷୁଅ ଦେଲେ । ତା'ପରେ ଫେରେ ସେ ଆଗପରି ହାଲିଆ ହୋଇ ପଡ଼ିରହିଲା । ନୀଳ ଡାକ୍ତରଙ୍କ ମୁହଁକୁ କାତର ଦୃଷ୍ଟିରେ ଚାହିଁ ରହିଲା । ସେ କହିଲେ, "ବ୍ୟସ୍ତ ହେବାର କିଛି ନାହିଁ । ଅବସ୍ଥା ପୂର୍ବପରି ।" ନୀଳ ଆଶ୍ୱସ୍ତ ହେଲା । ତା'ପରେ ଓକିଲ ପୁଣି ଆରମ୍ଭ କଲେ, "କିନ୍ତୁ କାଗଜଗୁଡ଼ାକ ସହିତ ସୋମନାଥଙ୍କର କି ସମ୍ବନ୍ଧ ଯେ ତାଙ୍କୁ ସନ୍ଦେହ କରି ଲୋକଟା ଖୁଣ୍ କରିଦେଇଗଲା ?"

ନୀଳ ଟିକିଏ ଥାଥାମାମା ହୋଇ କହିଲା, "ସେ କଥା ବଡ଼ ଗୁରୁତର; କିନ୍ତୁ ଆପଣଙ୍କଠାରେ ମୋର ମାୟା କ'ଣ ! ମୁଁ ଖୋଲିକରି କହୁଚି । ସୋମନାଥଙ୍କ ଗାଁ ପାଖ ଆଉ ଗୋଟେ ଗାଁରେ ଶମ୍ଭୁ ମିଶ୍ର ବୋଲି ଜଣେ ଭଦ୍ରଲୋକଙ୍କ ସହିତ ଜମିବାଡ଼ି ନେଇ ସୋମନାଥଙ୍କ ଘରର ମାଲିମକଦମା ଲାଗିଥିଲା । ଜମି ଖଣ୍ଡ ପ୍ରକୃତରେ ସୋମନାଥଙ୍କର । ମିଶ୍ରେ ଏହି ବନ୍ଦୋବସ୍ତରେ ନିଜ ନାମରେ କରିନେଇ ଚାଷବାସ ବେଳକୁ ହଳ ପଠାଇଦେଲେ । ୟାଙ୍କର ମଧ୍ୟ ହଳ ଯାଇଥିଲା । କଳିଗୋଳ ଖୁବ୍ ହେଲା ପରେ ସୋମନାଥଙ୍କର ବାପା ଆସି ମକଦମା ଦାଏର୍ କଲେ । ତା'ପରେ ଶମ୍ଭୁ ମିଶ୍ର ଆଉ ଜମି ପାଖ ମାଡ଼ିଲା ନାହିଁ । ଏମାନେ ହଳ ପଠାଇ ଜମି ଚାଷକଲେ । ବୁଣାବୁଣି ବେଳକୁ ହଠାତ୍ ଦରକାର ପଡ଼ିବାରୁ ସୋମନାଥଙ୍କର ବାପା କାଶୀ ଚାଲିଗଲେ । ସୁତରାଂ ସୋମନାଥ ଦିନେ ଓପରଓଳିଆ ହଳ ନେଇ ବୁଣିବାକୁ ଯାଇଛନ୍ତି, ଏ ହଳିଆଟା ସାଙ୍ଗରେ ଥାଏ । ବୁଣାବୁଣି ସରିଗଲାଣି, ଆଉ ଗୋଟେବାର ମଡ଼େଇ ଦେବାର କଥା, ସେ ଚକରେ କେହି ନାହାନ୍ତି, ଏଇ ଦି'ଜଣ କେବଳ—ଏତିକିବେଳେ ଶମ୍ଭୁ ମିଶ୍ରେ ଏକ ଠେଙ୍ଗା ଧରି ଆସି ସୋମନାଥଙ୍କୁ ବହୁତ ଫଜିତ୍ କଲେ । ସୋମନାଥର ମାନସିକ ଅବସ୍ଥା ସେତେ ଭଲ ନଥିଲା । ସେ ମଧ୍ୟ ତାଙ୍କୁ କ'ଣ ଦି'ଚାରି ପଦ କହିଦେଲା । ସେଠାରୁ ସେ ରାଗ ହୋଇ ତାକୁ ମାରିବାକୁ ଆସିଲେ । ପାହାରେ ଦି' ପାହାରେ ବି ଦେଇଛନ୍ତି । ସୋମନାଥ ଆଉ

ସହି ନପାରି ହଳିଆକୁ ଆସିବାକୁ କହିଦେଇ ମିଶ୍ରଙ୍କର ଥାନ ମୁଣ୍ଡାକୁ କରି ଗୋଟେ ଥୋଇଦେଲା । ମିଶ୍ରେ ସେଇତକରେ ତଳେ ପଡ଼ିଗଲେ ।

"ଲୋକଟା ତଳେ ପଡ଼ିଯିବାରୁ ସୋମନାଥଙ୍କର ଚେତା ହେଲା । ସେ ଆଉ ହଳିଆ ଦିହେଁଯାକ ମିଶ୍ରଙ୍କୁ ଧରାଧରି କରି ନେଇ ଯାଉଁ ଯାଉଁ ସେ ଅଧାବାଟରେ ଶେଷ ପଡ଼ିଗଲେ । ସୁତରାଂ ଆଶଙ୍କାରେ ଏମାନେ ତାଙ୍କୁ ନେଇ କିଆରୀରେ ଶୁଆଇ ଦେଇ ପଳେଇ ଆସିଲେ । ବାଟରେ କ'ଣ କରିବା ଉଚିତ ଏକଥା ଭାବୁ ଭାବୁ ସୋମନାଥଙ୍କର ମନେ ହେଲା, ଏ ଘଟଣା ତ ଆଉ କେହି ଦେଖି ନାହାନ୍ତି; ଏକା ତାଙ୍କ ହଳିଆ । ତାକୁ ଚୁପ୍ କରିପାରିଲେ ସେ ନିଶ୍ଚିନ୍ତ । ସେଥିପାଇଁ ତାକୁ ଅନେକ ଟଙ୍କା ଦେଇ ବୋଧକଲେ । ତା'ପରେ ପୁଲିସ୍ ଏ ସମ୍ବାଦ ପାଇପାରି ଖୁବ୍ ଧୁମ୍‌ଧାମ୍ ଆସି କଲା । ଲାସ୍ ଡାକ୍ତର ମାଇନା ହେବାରେ ଲୋକଟାର ପାକସ୍ଥଳୀରୁ ଆର୍ସେନିକର ଅଂଶ ବାହାରିଲା । ଅନୁସନ୍ଧାନରୁ ମଧ୍ୟ ଜଣାପଡ଼ିଲା ଯେ ଲୋକଟା ଭୟଙ୍କର ଭଙ୍ଗଡ଼ି ।

"ଶଙ୍ଖୁଆ ବାଟି ଘୋଟି ଭାଙ୍ଗ ସାଙ୍ଗରେ ଖାଇବା ତା'ର ଅଭ୍ୟାସ । ସେଦିନ ବୋଧହୁଏ ମାତ୍ରା ଟିକିଏ ବଢ଼ିଥିଲା, ତାରି ଫଳରେ ହଠାତ୍ କୌଣସି ସାମାନ୍ୟ ଆଘାତ ପାଇବାରୁ ହାର୍ଟଫେଲିଓର ହୋଇଯାଇଚି । ଏଇ ହେଲା ଡାକ୍ତରୀ ମାଇନାର ଉପସଂହାର । ଏ ମଧ୍ୟରେ ବି ଯାହା ଜମି ଉପରେ ଲୋକଟା ପଡ଼ିଥିଲା, ସେ ବଡ଼ ଧନୀ ଏବଂ ତାଙ୍କ ସହିତ ଦୁଇ ଚାରିଦିନ ତଳେ ମିଶ୍ରଙ୍କର ଝଗଡ଼ା ହୋଇଯାଇଚି । ସୁତରାଂ କାଳେ ମକଦମା ତାଙ୍କ ଉପରକୁ ଆସିବ, ଏଥିପାଇଁ ପୁଲିସ୍‌କୁ ହାତକରି ସାକ୍ଷୀ ଗୁହା ପ୍ରମାଣ ଯୋଗାଇ ମକଦମାଟା ଉଡ଼ାଇ ଦେଲେ । ସୋମନାଥ ମଧ୍ୟ ନିଃଶ୍ୱାସ ମାଇଲେ । ଯା ଭିତରେ ତାଙ୍କ ବାପା କାଶୀରେ ଥିଲେ । ସେ ବାପାଙ୍କ ପାଖକୁ ସବୁକଥା ଲେଖି ଚିଠି କେତେଖଣ୍ଡ ଦେଇଥିଲେ । ଏ ଲୋକଟା ହାତରେ ଚିଠି ପକାଇବାକୁ ଦିଅନ୍ତି; କିନ୍ତୁ ସେ ଡାକଘରେ ନପକାଇ ସବୁ ନିଜ ହାତରେ ରଖେ ।

"ଏ ମକଦମା ସୁର ଥିବାଯାଏ ବହୁତ ଟଙ୍କା ସୋମନାଥଠାରୁ ସେ ଆଦାୟ କରି ନେଇଚି । ତା'ପରେ ସେ ଚିଠିଗୁଡ଼ାକର ଭୟ ଦେଖାଇ ଅନେକ ଟଙ୍କା ଥରକୁ ଥର ଆଦାୟ କରି ନେଇଚି । ତାରି ଉପଦ୍ରବରେ ସୋମନାଥ ଘରଦ୍ୱାର ଛାଡ଼ି କଟକ ଜିଲ୍ଲାର ଏକ ମଫସଲରେ ଚାକିରି କଲେ । ସେଠାରେ ମଧ୍ୟ ଲୋକଟା ତାକୁ ଅତି ବ୍ୟସ୍ତ କରିପକାଇଲା । ତା'ପରେ ସେ ଏଠାକୁ ଆସିଲେ । ଏଠାରେ ମଧ୍ୟ ସେ ଆସି ପହଞ୍ଚିଲା । ସୁତରାଂ ଆପଣ ଦେଖୁଛନ୍ତି କାଗଜଗୁଡ଼ାକ ଚୋରି ଯିବାରେ ସୋମନାଥଙ୍କର ସ୍ୱାର୍ଥ ପୂର୍ଣ୍ଣମାତ୍ରାରେ ଅଛି; କିନ୍ତୁ ଆଉ ଯେ କିଏ କାହିଁକି ଚୋରି କରି ନେଲା ସେ ସମ୍ବନ୍ଧରେ ମୋର ବଡ଼ କୌତୂହଳ ହେଉଚି । ସୋମନାଥ ମଧ୍ୟ ସେ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ । ଏ ଏକ ବଡ଼ ପକ୍କା ରହସ୍ୟ ।"

ଓକିଲ—"ତାହାହେଲେ ସେ ଲୋକଟା ଯଦି ମକଦମାରେ ଗ୍ରେପ୍ତାର ହୁଏ, ସେ ତ ସୋମନାଥଙ୍କୁ ମଧ୍ୟ ନିଜ ଆଡ଼କୁ ଟାଣିବ । ଅବଶ୍ୟ ତାହା ନିକଟରେ ବର୍ତ୍ତମାନ ପ୍ରମାଣପତ୍ର

କିଛି ନଥିଲେ ମଧ୍ୟ ସୋମନାଥ ଗୁଡ଼େ ଘୋଷରା ଖାଇବେ । ତାଙ୍କର ସମ୍ମାନ ହାନି ମଧ୍ୟ ଘଟିବ । ତେବେ ମୋ ମତରେ ସୋମନାଥ ବର୍ତ୍ତମାନ ପାଇଁ ଅନ୍ତତଃ ତାଙ୍କ ଜମାନବନ୍ଦୀରେ କହନ୍ତୁ ଯେ, ଲୋକଟା କିଏ ଜାଣେ ନାହିଁ, ଘର ଅନ୍ଧାର ଥିଲା, ମୁଁ ପ୍ରସା କରିବାକୁ ଦୁଆର ମେଲାଇଲା ବେଳକୁ ସେ ଆସି ମତେ ଆକ୍ରମଣ କଲା । ପ୍ରଥମ ପାହାରରେଇ ମୋର ଚେତା ହଜିଲା । ମୁଁ ଆଉ କିଛି ଜାଣେ ନାହିଁ ।" ତା'ପରେ ତୁମେ ଯାହା ଦେଖିଛ, ସବୁ କଥା ଖୋଲିକରି କହିବ । ସେଥିରେ ବେଶି କିଛି ଆପତ୍ତି ନାହିଁ । ଯଦି ସୋମନାଥ ବଞ୍ଚିଯାଆନ୍ତି, ତାହାହେଲେ ଏଇ ଜମାନବନ୍ଦୀ ହିଁ ସାର ହେବ । ନାହିଁ ଯଦି ତାଙ୍କର କିଛି ହୁ ଏ, ତାହାହେଲେ ଏ ଲୋକଟା ଉପରେ ଦୃଷ୍ଟି ରଖିଥାଆନ୍ତୁ, ସେତେବେଳେ ପୁଲିସ୍‌ରେ ଦେଇଦେବା; କିନ୍ତୁ ଗୋଟିଏ କଥା, ଏ ମହାତ୍ମା କାହିଁକି ସେ ଘରକୁ ଯାଇଥିଲେ ?"

ନୀଳ ମତେ ଚାହିଁଲାରୁ ମୁଁ ତାକୁ ପାଖକୁ ଡାକି ତା' କାନରେ ସବୁକଥା ଖୋଲିକରି କହିଦେଲି । ସେ ପ୍ରଥମେ ଚମକି ପଡ଼ିଲା ପରି ହେଲା । ମୁଁ ଯେତେବେଳେ ମୋର ଏ ଦୁଷ୍କର୍ମ କରିବାର କାରଣ ଖୋଲିକରି କହିଲି; କିପରି ଏ ଚିଠିପତ୍ର ଜୋର୍‌ରେ ପଦ୍ମାର ରହସ୍ୟ ସୋମନାଥଙ୍କଠାରୁ ଆଦାୟ କରି, ପଦ୍ମା ପ୍ରତି ତା'ର ଅଯଥା ଏ ଅନ୍ୟାୟ କ୍ରୋଧ କମାଇବାର ଚେଷ୍ଟା କରିବି । "ସତକଥା କହୁଚି ନୀଳ, ପଦ୍ମାର କିଛି ଦୋଷ ନାହିଁ । ସେ ତୋ ଛଡ଼ା"....ସେହିପରି ଅନୁଚ୍ଚ ସ୍ୱରରେ "ମୁଁ ଜାଣେ" କହି ଓକିଲଙ୍କୁ କହିଲା, ମଣିନାନୀ କହୁଚି, ତାକୁ ନିଦ ମୋଟେ ହୋଇନଥିଲା । ସେ ହଠାତ୍ ଗୋଟେ ଶବ୍ଦ ଶୁଣି ଉଠିପଡ଼ିଲା, ଦୀପ ଧରି ଶବ୍ଦ ଯୁଆଡୁ ଶୁଭୁଥିଲା ତେଣିକି ଆସି ସୋମନାଥଙ୍କ ଘର ଦୁଆରମୁହଁରେ ପହଞ୍ଚି ଏ ସବୁ ଦେଖି କାଠ ବନିଗଲା । ଏତିକିବେଳେ ମୁଁ ଆସି ପହଞ୍ଚିଲି ।"

ଡାକ୍ତର କହିଲେ, "ସେ କଥା ଯାଉ । ଓକିଲ ଯାହା କହିଲେ ସେଇଆ କର !" ଏତିକିବେଳେ ରାମା ଓଷୁଅ ନେଇ ପହଞ୍ଚିଲା, ଡାକ୍ତର ଓଷୁଅ ନେଇ ଇଞ୍ଜେକ୍‌ସନ୍ ଦେବାକୁ ଯୋଗାଡ଼ କଲେ ।

ପଦ୍ମାର ଦେହ ଭଲହୋଇ ଆସିଲା ସନ୍ଧ୍ୟାବେଳକୁ । ଡାକ୍ତରହେରିକା ସାରାଦିନ ସାରାରାତି ଖାଟି ଖାଟି ହାଲିଆ ହୋଇପଡ଼ିଥିଲେ । ସେମାନେ ଟିକିଏ ବିଶ୍ରାମ ନେବାକୁ ଦାଣ୍ଡଘରକୁ ଚାଲିଗଲେ । ମୁଁ ଆଉ ନୀଳ ଏକା ସେ ଘରେ ରହିଲୁଁ । ପଦ୍ମା ଆଖି ମେଲାଇ ନୀଳକୁ ଥରେ ଭଲକରି ଦେଖିନେଲା, ତା'ପରେ ଥିର୍‌କରି କହିଲା, "ଦାସୀର ଦୋଷ କ୍ଷମାକରିବ ନାହିଁ ?"

ନୀଳ ଆଖିରେ ଆଖିଏ ଲୁହ ଭରି କହିଲା, "ପଦ୍ମା ! ଦୋଷ ମୋର, ମୁଁ ନବୁଝି ତୋ ପ୍ରତି ଯାହା କରିଚି, ତା' ନିମନ୍ତେ କ୍ଷମା ମାଗିବାର ଅଧିକାର ମୋର ନାହିଁ । ତୁ କ'ଣ କଲୁ ? ତୁ କାହିଁକି ସେଦିନ ରାତିରେ ମତେ ସବୁକଥା ଖୋଲିକରି କହିଲୁ ନାହିଁ ? ତା'ହେଲେ ତ ଆଉ ଏ ଦୁର୍ଦ୍ଦଶା ହୋଇନଥାନ୍ତା । ମତେ ମଧ୍ୟ କି ପାପବୁଦ୍ଧି ଘୋଟିଗଲା, ମୁଁ ଗୋଟେ ଚିଠିରୁ ଅଧେ ପାଇ ସବୁକଥା ନବୁଝି ଯାହା କଲି, ସେଥିପାଇଁ ମୁଁ ଏ ଦୋଷରେ ଯେ ପୂର୍ଣ୍ଣ ଭାଗୀ ?"

ମୁଁ ଚମକି ପଡ଼ିଲି । ତାକୁ ଚିଠି କଥା ପଚାରିବାରୁ ସେ ଖଣ୍ଡେ କାଗଜ ମତେ ବଢ଼ାଇଦେଲା । ମୁଁ ଦେଖିଲି ପଦ୍ମାର ଯେ ଚିଠିର ଅଧେ ମୁଁ ପାଇଥିଲି ଏହା ତାହାର ଅନ୍ୟ ଅଧକ । ନୀଳ କିନ୍ତୁ ଏତକ କହି ବଡ଼ କାତର ଭାବରେ ପଦ୍ମାକୁ ଅନାଇଁ ରହିଲା । ସେ ଚାହାଣିରେ ସ୍ନେହମିଶ୍ରିତ ତିରସ୍କାର ।

ପଦ୍ମା କହିଲା—"କ୍ଷମା କର, ମୋର ସାହସ ହେଲା ନାହିଁ, ଭୟ ହେଲା—ମୁଁ ବିଧବା ବୋଲି ଶୁଣି କାଳେ ତୁମେ ମତେ ଘୃଣା କରିବ । ତା'ଉପରେ ପୁଣି ସମାଜର ଭୟ । ଅନ୍ୟ କେହି ଜାଣିପାରିଲେ, ତୁମ ବଂଶର ଯେ କେତେ ନିନ୍ଦା ହେବ; ତୁମେ ଯେ କେତେ ହିନସ୍ତା ହେବ, ଏଇ ଆଶଙ୍କାରେ ମୁଁ କିଛି କହିପାରିଲି ନାହିଁ । କେତେଥର ଭାବିଚି କହିଦେଇ ସବୁ ଜ୍ୱାଳା ସାରିଦେବି; କିନ୍ତୁ ତୁମ କଥା ଭାବି କହିଆସିଲା କଥା ଢୋକିଦିଏ । ସେଦିନ ଯାଇଥିଲି ସୋମନାଥଙ୍କ ଘରକୁ କାନ୍ଦିବୋବେଇ ତାଙ୍କୁ ସ୍ୱୀକୃତି କରାଇବି, ସେ ଯେପରି ନୀରବ ହୁଅନ୍ତି; କିନ୍ତୁ ମୋର ଭାଗ୍ୟକୁ ସେ ତ ମଙ୍ଗିଲେ ନାହିଁ । କେବଳ ଫଳ ହେଲା ତୁମର ମନରେ ଦାରୁଣ ଯନ୍ତ୍ରଣା । ଓଃ, ତମେ କେତେ କଷ୍ଟ ସହିଥିବ ! ମତେ କେତେ ଘୃଣା କରିଥିବ ?"

ନୀଳ—"ପଦ୍ମିନୀ !"

ପଦ୍ମା—"ସ୍ୱାମୀ !"

ପଦ୍ମାର ହାତ ନୀଳର ହାତରେ, ତା'ର ଚକ୍ଷୁ ସ୍ଥିର, ଉଜ୍ଜ୍ୱଳ ! ସବୁ ଯେପରି ପୂର୍ଣ୍ଣ ହୃଦୟର ଗମ୍ଭୀର ନୀରବତାରେ ପୂର୍ଣ୍ଣ । ମୁଁ ମୁହଁ ବୁଲାଇ ଦି'ଟୋପା ଲୁହ ଗଡ଼ାଇ ପକାଇଲି ।

॥ ସମାପ୍ତ ॥

# ଏକ

କେତେବେଳେ ମନେପଡ଼େ, ମୁଁ ଯେ ଜାତି, କୁଳ, ମାନ ସବୁ ଛାଡ଼ି କେବଳ ଗୋଟାଏ ରାଗର ଦାଉରେ ଆସି ସେ ନରକରେ ପଡ଼ିଥିଲି, ସେଥିରେ ମୋର କି ଲାଭ ହୋଇଥିଲା ? ଶାଶୁ-ଶଶୁରଙ୍କ ମୁହଁରେ କାଳି ଦେଲି, ବାପ-ମା'ଙ୍କ ନାମ ଦାଣ୍ଡରେ ପକାଇଲି, ମୋର ନାମ ଶୁଣିଲେ ବିଟପୀ ବୋଲି କୁଳସ୍ତ୍ରୀମାନେ ନାକ ଟେକିଲେ, ସାଙ୍ଗସାଥୀମାନେ ଲାଜରେ ମୁହଁ ତଳକୁ କଲେ । ଖାନ୍‌ଦାନ୍ କୁଳର ଗୃହଲକ୍ଷ୍ମୀ ହୋଇ ତେତେବେଳେ ସେହି ବଜାରି ମଦୁଆ କୁକୁରଗୁଡ଼ାଙ୍କ ମନ ନେବାପାଇଁ କେତେ ଥଟ୍ଟା-ପରିହାସ—କେତେ ନିନ୍ଦା-ଟାପରା—କେତେ ଗାଳିମନ୍ଦ, ବେଳେବେଳେ ମଧ୍ୟ କେତେ ମାଡ଼ ସହୁଥିଲି, ସେଇ ସଇତାନଗୁଡ଼ାଙ୍କର ଲକ୍ଷ୍ୟ ହୋଇ ରହିଥିଲି । ବର୍ତ୍ତମାନ ମଧ୍ୟ ମୁଁ ଟିକିଏ ଧର୍ମକାର୍ଯ୍ୟ କରିବସିଲେ ଲୋକେ କହୁଛନ୍ତି— 'ବୃଦ୍ଧା ବେଶ୍ୟା ତପସ୍ୱିନୀ !'

ପଇସାପତ୍ର ଅବଶ୍ୟ ସେତେବେଳେ ମୋର ଯଥେଷ୍ଟ ଥିଲା, ମନଇଚ୍ଛା ଖର୍ଚ୍ଚ କରି ମଧ୍ୟ ଦିନେ ମୋର ପଇସା ସରିଯିବାର ଆଶଙ୍କା ନଥିଲା । ଶାଶୁଘରେ ଭଙ୍ଗା ମାଟିଘର ଦେଖି ଦିନେ ବାପଘରର ପକ୍କା ଘରର କଥା ମନେ ପଡୁଥିଲା; କିନ୍ତୁ ସେତେବେଳକୁ ଦୋତାଲା କୋଠାଘରେ ବିଜୁଳିବତୀ, ବିଜୁଳିପଙ୍ଖା ତଳେ ଦିନ କଟାଇବା ମୋ ଭାଗ୍ୟରେ ଘଟିଥିଲା । ଶାଶୁଘରେ ରୋଷେଇବାସଠାରୁ ବାସନମଜା, ଘରଲିପା ପର୍ଯ୍ୟନ୍ତ ସବୁକାମ ନିଜ ହାତରେ କରିବାକୁ ପଡୁଥିଲା ବୋଲି ଦିନେ ବାପଘରର ଚାକରବାକରଙ୍କ କଥା ମନେ ପଡ଼ି କାନ୍ଦ ମାଡୁଥିଲା । ସେତେବେଳକୁ କିନ୍ତୁ ତିନିଟା ଚାକର, ପାଞ୍ଚଟା ଚାକରାଣୀ ଦିନରାତି ମୋ ଗୋଡ଼ତଳେ ଖଟୁଥିଲେ । ସତକଥା କହିବାକୁ ଗଲେ, ମୋ ଗୋଡ଼ ତଳେ ଲାଗୁନଥିଲା । ବାପଘରୁ ଯେଉଁ ଅଳଙ୍କାରପତ୍ର ଦି'ଖଣ୍ଡ ଆଣିଥିଲି ସେଥିରୁ ଖଣ୍ଡି ଖଣ୍ଡି କରି ଶାଶୁଘର ବିକି ଖାଇବାର ଦେଖି ମନରେ ଦିନେ ଭାରି କଷ୍ଟ ହେଉଥିଲା । ଆଉ ଆଉ ସ୍ତ୍ରୀମାନଙ୍କର ଗହଣାପତ୍ର ଦେଖି ବେଳେ ବେଳେ ମନରେ ବି ଈର୍ଷା ଜାତ ହେଉଥିଲା; କିନ୍ତୁ ସେତେବେଳକୁ ମନର ଭାବ ଏକାବେଳକେ ଓଲଟି ଯାଇଥିଲା । ସେତେବେଳେ ମୋର ଚାରିଥାନ ସୁନାର ଅଳଙ୍କାର, ଅଙ୍ଗୁଠିରେ ହୀରାବସା ମୁଦି ! ଶାଶୁଘରେ ପଖାଳ ଭାତ ସାଙ୍ଗକୁ କେଉଁଦିନ ଲୁଣଟାଏ, କେଉଁଦିନ ବାଇଗଣ ପୋଡ଼ାଟାଏ ଘେନି ଖାଇବସିଲା ବେଳେ ଦିନେ ଦିନେ ଲୁହ ନାଳ ଏକାଠି ହେଉଥିଲା; ସେତେବେଳେ କିନ୍ତୁ ମାଛ ମାଉଁସ, ଘିଅ ଦୁଧ କିଛି ଅଭାବ ନଥିଲା ।

ଶାଶୁ ଘରର ମୋଟା ବଗଡ଼ା ଚାଉଳର ଭାତ ତୋଟିରେ ଗଳୁନଥିଲା ବୋଲି ଦିନେ ବାପା-ବୋଉଙ୍କୁ କେତେ କାନ୍ଦିକାଟି ଲେଖୁଥିଲି । ବିବାହ ପରେ ଯେ ବାପା-ବୋଉ ଛଅ ମାସ ଖଣ୍ଡେ ବଞ୍ଚିଥିଲେ, ବରାବର ଭାର ଭାର କରି ସରୁ ଚାଉଳ ପଠାଉଥିଲେ । ଶାଶୁ, ନଣନ୍ଦ ତାକୁ ଲୁଚାଇ ଦିଅନ୍ତି, ବିକିଭାଙ୍ଗି କରି ପଇସାପତ୍ର କରନ୍ତି । ପ୍ରତିଦିନ କଷ୍ଟ ହୋଇ ପାଏ ଲେଖାଏଁ ସରୁ ଚାଉଳ ଓଳିକି ଦିଆଯାଏ । ତାକୁ ବୁଢ଼ା ଶଶୁରେ ଖାଆନ୍ତି; ଯାହା ବଳେ ସେ ନଣନ୍ଦଙ୍କ

ପେଟରେ ପଡ଼େ । ମୋ ଭାଗ୍ୟରେ ଯେଉଁ ବଗଡ଼ାକୁ ସେହି ବଗଡ଼ା । ସେତେବେଳେ କିନ୍ତୁ ମୋର ଚାକରମାନେ କୃଷ୍ଣଭୋଗ ଚାଉଳର ଭାତ ଖାଇବାକୁ ପାଉଥିଲେ ।

ମୋଟ ଉପରେ ସଂସାରରେ ଯାହା ସବୁ ଥିଲେ ସୁଖରେ ଅଛି ବୋଲି ଲୋକେ କହନ୍ତି, ସେତେବେଳେ ମୋର ସେ ସବୁ ଥିଲା । ତଥାପି କେଜାଣି କାହିଁକି, ମନରେ ଟିକିଏ ହେଲେ ଶାନ୍ତି ନଥାଏ । ହୃଦୟଟା ସବୁବେଳେ ଖାଲି ଖାଲି ଲାଗୁଥାଏ । କେତେ ଛୋଟ ଛୋଟ କଅଁଳା ପିଲା ମୋରି ଦାଣ୍ଡବାଟେ ଧାଇ କୋଡ଼ରେ, ପିଲା ଗାଡ଼ିରେ, ମାଆ କୋଡ଼ରେ ବସି ଯାଉଥାନ୍ତି । ମୁଁ ସେତେବେଳେ ଦୋତାଲା ଉପରେ ଝରକା ପାଖରେ ବସି ସେମାନଙ୍କୁ ଦେଖୁ ଦେଖୁ କାହିଁକି କାନ୍ଦିପକାଏ । ମୋର ପଞ୍ଜରାହାଡ଼ କମ୍ପାଇ କାହିଁକି ଦୀର୍ଘ ନିଃଶ୍ୱାସ ବାହାରିପଡ଼େ । ଧୂଳି-ସରସର ଶୀତ-ଥରଥର ଗରିବ ଛୁଆଗୁଡ଼ିକ ଦାଣ୍ଡରେ କେତେ଼ ସୁନ୍ଦର ଗୁଡୁଗୁଡୁ ହୋଇ ଯାଉଥାନ୍ତି । ସେତେବେଳେ ମୋର ଇଚ୍ଛାହୁଏ, ସେଗୁଡ଼ିକୁ ଘେନିଆସି ଏ କୋଡ଼ରେ—ମୋ ହୃଦୟରେ ଜାକି ଧରନ୍ତି । କେତେ ସ୍ୱାମୀ-ସ୍ତ୍ରୀ ମଟରରେ, ଘୋଡ଼ାଗାଡ଼ିରେ ବା ଚାଲିକରି ଯେତେବେଳେ ବୁଲି ବାହାରନ୍ତି, ସେତେବେଳେ ମୁଁ ସେମାନଙ୍କ ମୁହଁକୁ ଚାହେଁ । ହସରେ, କେତେବେଳେ ଅବା' ଆନନ୍ଦରେ, ଥରେ ଥରେ ମଧ୍ୟ ଅଭିମାନରେ ସେମାନଙ୍କ ମୁହଁ ଫାଟିପଡୁଥାଏ । ସେ ସବୁ ଦେଖି ମୋର ହୃଦୟ ଜାକିଜୁକି ହୋଇ ଏଡ଼େ ଟିକିଏ ହୋଇଯାଏ । ସେତେବେଳେ ମୋର ମନେ ପଡ଼ିଯାଏ ସ୍ୱାମୀଙ୍କ କଥା ।

ପ୍ରଥମ ଯୌବନରେ ସ୍ୱାମୀଙ୍କୁ ଥରେ କି ଦି'ଥର ଦେଖିବାର ସୁଯୋଗ ପାଇଥିଲି । ସେତେବେଳେ ସେ ବଡ଼ ଉଦାସୀ । ଏମ୍. ଏ. ପାସ୍ କରିଥିଲେ, ବଡ଼ ଚାକିରି ପାଇବାର ଆଶା ଥିଲା । ସାଇପଡ଼ିଶା, ବାପା, ସମସ୍ତେ ତାଙ୍କ ଉପରେ ଖୁସି ଥିଲେ । ଏମ୍. ଏ. ପଢ଼ିବାକୁ ଯେଉଁ ବର୍ଷ ଗଲେ, ସେହି ବର୍ଷ ତାଙ୍କର ପ୍ରଥମ ସ୍ତ୍ରୀ—ମୋର ସଉତୁଣୀ ଶେଷ ହୋଇ ଯାଇଥିଲେ । ମୋର ସ୍ୱାମୀ ବୋଧହୁଏ ତାଙ୍କର ପ୍ରଥମ ସ୍ତ୍ରୀଙ୍କୁ ବଡ଼ ଭଲପାଉଥିଲେ । ସେ ମଲାଦିନରୁ ତାଙ୍କ ମୁହଁରୁ ହସ ଶୁଖିଗଲା, ଆଉ ସେ ଦେହମୁଣ୍ଡକୁ ପଚାରିଲେ ନାହିଁ, ନାନା ବାରବ୍ରତ ଆରମ୍ଭ କରି ଦେହଟାକୁ ଶୁଖାଇବାକୁ ଲାଗିଲେ ।

ଏସବୁ କଥା ଦେଖି ବାପା-ମା'ଙ୍କର ବଡ଼ ଚିନ୍ତା ହେଲା । ଆମ ବାପା ଆଉ ମୋ ଶଶୁରେ ଦିହେଁଯାକ ପିଲାଦିନ ସାଙ୍ଗ—ଏକାଠି ପାଠ ପଢ଼ିଥିଲେ । ମୋ ସ୍ୱାମୀଙ୍କୁ ବାପା ବରାବର ପୁଅ ପରି ଭଲପାଉଥିଲେ । ତାଙ୍କର ପଢ଼ାପଢ଼ିର ଖର୍ଚ୍ଚ ସେ ଦେଇଆସୁଥିଲେ । ଅବଶ୍ୟ ମୋର ସ୍ୱାମୀ ସେ କଥା ଜାଣନ୍ତି ନାହିଁ, କି ତାଙ୍କୁ ସେ କଥା କେହି କହନ୍ତି ନାହିଁ । କାରଣ, ସେ ଅଭିମାନୀ, ଜାଣିଲେ ରାଗିବେ । ସେ ବୁଝିଥିଲେ ଯେ, ତାଙ୍କ ବାପା-ମାଆ ପେଟକୁ ନଖାଇ ତାଙ୍କୁ ପଇସା ଦେଉଛନ୍ତି । ପ୍ରକୃତରେ ଏ ବିଷୟରେ ଆଜିକାଲି ମୋର ବଡ଼ ସନ୍ଦେହ ହେଉଛି । ସ୍ୱାମୀ ମୋର ଏଣ୍ଟ୍ରାନ୍‌ସ ପାସ୍ କରିବାଠାରୁ ଏମ୍. ଏ. ପାସ୍ କରିବା ପର୍ଯ୍ୟନ୍ତ ବରାବର ବୃତ୍ତି ନେଇ ଆସୁଥିଲେ । କୋଡ଼ିଏ, ପଚିଶ, ତିରିଶ କରି ବୃତ୍ତି ପାଉଥିଲେ । ସେ ମଧ୍ୟ ବଡ଼ କଷିକାଷି କରି ଚଳନ୍ତି । ଖଣ୍ଡେ ଧୋବ ଲୁଗା ଆଉ ଧୋବ କାମିଜ, ହଳେ ଚଟି ଜୋତା ହେଲେ ହେଲା । ସେ ଯାହା ବୃତ୍ତି ପାଉଥିଲେ, ତାହା ତ ଅଣ୍ଟିଯାଉଥାନ୍ତା; ଶଶୁରେ ଯେ ପ୍ରତି ମାସରେ ଦଶ ପନ୍ଦର କରି ଆମ ବାପାଙ୍କ ପାଖରୁ ନେଉଥିଲେ, ସେ କ'ଣ ହେଉଥିଲା ?

ଯାହାହେଉ ଆମ ବାପା ମୋ ସ୍ୱାମୀଙ୍କୁ ଖୁବ୍ ଦେଖିପାରୁଥିଲେ । ମୋ ସ୍ୱାମୀଙ୍କର ପ୍ରଥମ ବିବାହ ଯେତେବେଳେ ହୁଏ, ସେତେବେଳେ ସମସ୍ତେ ଆଶା କରିଥିଲେ ଯେ ମୋ ସାଙ୍ଗରେ ତାଙ୍କର ବିବାହ ହେବ; କିନ୍ତୁ ବାପା ସେ କଥା ଶୁଣିଲେ ନାହିଁ । ସେ କହିଲେ—"ମୁଁ ହରଗୋବିନ୍ଦଙ୍କୁ ଖୁବ୍ ସୁଖପାଏ, ତା'ର ଯେପରି ଭଲ ହେବ, ତା' ମୁଁ କରିବାକୁ ପ୍ରସ୍ତୁତ ଅଛି; କିନ୍ତୁ ଯାହା ହେଉ ସେ ଗରିବ, ଚାକିରିବାକିରି ତ କରି ନାହିଁ, କରୁ କରୁ ଚାରି ପାଞ୍ଚ ବର୍ଷ ଯାଏ । ଏତେଦିନ ମୋ କମଳୀ ଦୁଃଖକଷ୍ଟରେ ତାଙ୍କ ଘରେ ଚଳିବ କିପରି ? ତା'ପରେ ମଧ୍ୟ କମଳୀର ବୟସ ନିତାନ୍ତ କମ୍ । ତା' ସଙ୍ଗରେ ହରର ବିବାହ ହେଲେ ଅସୁନ୍ଦର ଦିଶିବ ।" ଏହିପରି କହିବାରୁ ଶଶୁରେ ଅନ୍ୟଆଡ଼େ ସମ୍ବନ୍ଧ କଲେ ।

ପ୍ରକୃତରେ ବାପାଙ୍କର ଇଚ୍ଛାଥିଲା—ମୋତେ କୌଣସି ବଡ଼ଲୋକ ଘରେ ଦେବେ; ଜୋଇଁଟି ପାଠଶାଠ ପଢ଼ିଥିବ । ସେଥିପାଇଁ ସେ ମୋତେ ବେଶ୍ ପାଠ ପଢ଼ାଉଥିଲେ । ହାରମୋନିୟମ୍ ବଜାଇବା, ସିଲେଇ କରିବା ଇତ୍ୟାଦିରେ ମୋର ସୁନ୍ଦର ଦକ୍ଷତା ଜନ୍ମିଥିଲା । ଗାଁ ଲୋକେ କହୁଥିଲେ, ମୁଁ ଏସବୁ ପଢ଼ିଶିଖି ସାହାବାଣୀ ହୋଇଯିବି । ବୋଉଙ୍କର ମଧ୍ୟ ସେହି ଭୟ ହେଉଥିଲା । ସେଥିପାଇଁ ମୁଁ ପାଠପଢ଼ି ଯାହା ସବୁ ଶିଖୁଥିଲି, ବୋଉ ମୋତେ ଗାଉଁଲି ସାଣ୍ଟଣା ଶିକ୍ଷା ଦେଇ ସେ ସବୁକୁ ଏପରି ଜୁଆଇ ନେଉଥିଲେ ଯେ, ମୁଁ ପାଠଶାଠ ପଢ଼ି ମଧ୍ୟ ଯେଉଁ ଗାଉଁଲିକୁ ସେହି ଗାଉଁଲି ରହିଗଲି ।

ମୋର ଯେ ସଉତୁଣୀ ସେ ପ୍ରକୃତରେ ଭାରି ସୁନ୍ଦରୀ ଥିଲେ । ସେ ମଧ୍ୟ ଥିଲାଲୋକର ଝିଅ । ମୁଁ ଶୁଣିଛି, ମୋର ସ୍ୱାମୀ ଆଉ ସଉତୁଣୀ ବିବାହ ଆଗରୁ ମଧ୍ୟ ଭାରି ସାଙ୍ଗ ଥିଲେ । ଦୁହିଁଙ୍କ ଇଚ୍ଛାରେ ଏହି ବିବାହ ହୋଇଥିଲା । ମୋ ସଉତୁଣୀଙ୍କ ଘର କଟକ ହୋଇଥିବ, ମୁଁ କିନ୍ତୁ ଠିକ୍‌କରି ଜାଣେ ନାହିଁ । ଯାହାହେଉ, ବିବାହ ପରେ ସେ ଦି'ବର୍ଷ ବଞ୍ଚିଥିଲେ । ତା'ପରେ ତାଙ୍କର କାଳ ହେଲା । ସାଙ୍ଗେ ସାଙ୍ଗେ ମୋ ସ୍ୱାମୀଙ୍କର ମତିଗତି ବଦଳିଗଲା । ସେ କଥା ଦେଖି ଶାଶୁ-ଶଶୁର, ଆଉ ଆମ ବାପା-ମାଆଙ୍କର ବଡ଼ ଭାବନା ପଡ଼ିଲା । ସାଇପଡ଼ିଶାର ଭଦ୍ରଲୋକମାନେ ମଧ୍ୟ ଚିନ୍ତାକରି ବସିଲେ । ସମସ୍ତେ ଠିକ୍ କଲେ ତାଙ୍କର ମତିଗତି ଫେରାଇ ଆଣିବା ପାଇଁ ମୋ ସଉତୁଣୀ ଭଳି ଗୋଟିଏ ସୁନ୍ଦରୀ ବାଳିକା ସଙ୍ଗରେ ବିବାହ ଦେବାକୁ । ସମସ୍ତଙ୍କର ନଜର ପଡ଼ିଲା ମୋରି ଉପରେ । ବାପା-ମାଆ ପ୍ରଥମେ 'ନାହିଁ' 'ନାହିଁ' କରୁଥିଲେ; ପରେ କ'ଣ ହେଲା କେଜାଣି, ମଙ୍ଗିଗଲେ ।

ମୋର ବିବାହ ହେଲା । ବିବାହ ଦିନ ଜୋଇଁ ଆସିବ, ଜୋଇଁ ଆସିବ ବୋଲି ହୁରି ପଡ଼ିଗଲା । ସମସ୍ତେ ଭାବିଥିଲେ ଜୋଇଁ ଖୁବ୍ ବେଶଭୂଷା ହୋଇ ଆସିବ; କିନ୍ତୁ ଦେଖିଲା ବେଳକୁ ଜୋଇଁଙ୍କର ତିନି ଦିନର ନିଶଦାଢ଼ି ସେହିପରି ରହିଛି । ଖଣ୍ଡେ ଧୋବ ଲୁଗା ଉପରେ ଖଣ୍ଡେ ମୋଟା ଧୋବ ଚାଦର, ଚନ୍ଦନପାଟୀ ନାହିଁ, କଜଳ ନାହିଁ, ଅଳତା ନାହିଁ, ଅଳଙ୍କାରପତ୍ର ନାହିଁ, ଫୁଲହାର ନାହିଁ, ମୁଣ୍ଡରେ ବି ଘିଅହାତ ଟିକିଏ ବାଜି ନାହିଁ । ତାଙ୍କର ଏ ବେଶ ଦେଖି ସମସ୍ତେ ଦୀର୍ଘ ନିଃଶ୍ୱାସ ପକାଇଲେ । ମୋ ମନରେ ଦାରୁଣ ଦୁଃଖ ମଧ୍ୟ ହେଲା—ଏ ଯେପରି ମୋ ପକ୍ଷରେ ଗୋଟାଏ ଅପମାନ ।

ଭାଉଜ ମୋର କାନେ କାନେ କହିଲେ, "ତୁମେ ଯେବେ ଏ ବୈରାଗୀଙ୍କୁ ପୁଣି ନାଗର ବେଶରେ ସଜାଇ ଏଠିକି ଆଣିପାରିବ, ତା' ହେଲେ ଜାଣିବା ତୁମେ ଜଣେ ଖାସା ଟୋକୀ । ତାହା ନହେଲେ ଆମ ମାଇପିଙ୍କ ନାକ ନିଶ ତଳେ ପଡ଼ିଯିବ ।" ଯାହାହେଉ ବିବାହ ସରିଗଲା । ହାତଗଣ୍ଠି ଯେତେବେଳେ ପଡ଼ିଲା ସେତେବେଳେ ତାଙ୍କ ହାତଟି ମୋ ହାତ ଉପରେ ଆସି ଥୁଆହେଲା । ମୋ ହାତଟା ମୋତେ ଜଣାପଡୁଥାଏ ଯେପରି ନିଆଁ ଭଳି ଜଳୁଛି; କିନ୍ତୁ ତାଙ୍କ ହାତଟା ବରଫ ପରି ଥଣ୍ଡା । ସେହି ଥଣ୍ଡା ମୋର ଶିରା-ପ୍ରଶିରା ଦେଇ ଯେପରି ମୋ ହୃଦୟର ରକ୍ତକୁ ଜମାଟ କରିଦେଲା ।

ସେତେବେଳେ ମୁଁ ଗୃହଯୋଗ୍ୟା ହୋଇନଥାଏ । ତଥାପି ଶାଶୂ-ଶଶୁରେ ଧରିବସିଲେ, ବୋହୂ ଘରେ ଯାଇ ରହିଲେ ସିନା ପୁଅର ମନ ବଦଳିବ ! ମୁଁ ଯାଇ ରହିଲି । ପ୍ରଥମେ କିଛିଦିନ ବେଶ୍ ଆଦରରେ, ଆନନ୍ଦରେ କଟିଗଲା । ମୁଁ ଗୃହଯୋଗ୍ୟା ହେଲି । ମଧୁଶଯ୍ୟା ଦିନ ଭାଉଜ ହେରିକା ଆସି ମୋତେ ଶିଖେଇଲେ—"ତୁ ଯିବୁ ଯେ, ଶେଯକୁ ଯିବୁ ନାହିଁ, ଗୋଟାଏ କୋଣରେ ଠିଆହୋଇ ରହିବୁ । ସେ ଆସି ଭିଡ଼ାଓଟରା କଲେ ତୁ ଲୁଚିବୁ । ଧରାପଡ଼ିଲେ ଶେଯକୁ ଯାଇ ତାଙ୍କୁ ପଛକରି ଶୋଇବୁ । ମୋଟେ ଜଣେଇଦେବୁ ନାହିଁ ଯେ, ସେଠାରେ ରହିବାକୁ ତୋର ଏତେ ଟିକିଏ ମନ ଅଛି !" ତା' ଉତ୍ତାରୁ ଭାଉଜ ସେହି ଗୀତଟିକୁ ଗାଇଲେ-

"ନରମ ହୋଇଲେ ଗରମ ହୋଇବୁ
ସରମେ ଭରମି ଯିବୁ ନାହିଁ ।"

ଏସବୁ ଶିଖିଶାଖି ମୁଁ ମଧୁଶଯ୍ୟା ଘରକୁ ଗଲି । ବାହାରପଟୁ ଗୋଠାଏ କିଏ ଆସି ଶିକୁଳି ପକାଇଦେଲା । ମୁଁ ଚକ୍ କରି ଯାଇ ଦୀପଟା ଲିଭେଇଦେଲି । ସେହି ଦୁଆର ଜୁଳୁକିକି ଧରି ସେହିଠାରେ ଠିଆହୋଇ ରହିଲି । ସେ ଥରେ ଦି'ଥର ମୋତେ ଡାକିଲେ । ତା'ପରେ ଆସି ମୋ ହାତ ଧରିଲେ । ମୁଁ ହାତ ଛିଞ୍ଚାଡ଼ି ଦେଇ କବାଟ କଣକୁ ଚାଲିଗଲି । ସେ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ ଶେଯରେ ଯାଇ ଶୋଇଲେ । ଆହୁରି ଦି'ଚାରି ଥର ଡାକିଲେ; ମୁଁ ଶୁଣିଲି ନାହିଁ ।

କିଛି ସମୟ ଗଲା, ମୋତେ ନିଦ ଲାଗିଆସିଲା । ସେ ଚେଇଁଛନ୍ତି କି ଶୋଇଛନ୍ତି କିଛି ବୁଝିପାରିଲି ନାହିଁ, ଭାବିଲି ବୋଧହୁଏ ଶୋଇପଡ଼ିଛନ୍ତି । ମୁଁ ଯାଇ ଶେଯରେ ଶୋଇଲି, ତାଙ୍କ ଆଡ଼କୁ ପିଠି କରି । ମୋତେ ସାଙ୍ଗେ ସାଙ୍ଗେ ନିଦ ଆସିଗଲା । କେତେକ ସମୟ ପରେ ସେ ମୋ ଉପରେ ହାତ ପକାଇ ମୋତେ ଡାକିଲେ; ମୁଁ ନିଦ ବାଉଳାରେ ତାଙ୍କ ହାତ ଏଡ଼େଇ ଦେଇ ମୁହଁମାଡ଼ି ଶୋଇପଡ଼ିଲି ।

ସେହି ନିଦ ବାଉଳାରେ ମୋର ମନେପଡୁଛି, ସେ ଯେପରି କେତେ କ'ଣ ମୋତେ କହୁଥାନ୍ତି; କିନ୍ତୁ ମୋର କିଛି ମନେ ନାହିଁ । ମୁଁ ମଧ୍ୟ ସେଥିରୁ କିଛି ଜାଣିପାରେ ନାହିଁ । ସେଦିନ ସେହିପରି ଗଲା । ତହିଁ ଆରଦିନ ଶଶୁରଙ୍କୁ ଧଇଲା ହଇଜା । ଛଅ ସାତଦିନ କାଳ ସେଠି ସ୍ୱାମୀ ମୋର ରହିଲେ । ଆମ ଘରେ ମୁଁ, ମୋର ସ୍ୱାମୀ, ଶାଶୂ, ଶଶୁର ଆଉ ନଣନ୍ଦ । ଆମ ଆଶୀର୍ବାଦ ଘରକୁ ଯେ କେତେଜଣ ବନ୍ଧୁବାନ୍ଧବ ଆସିଥିଲେ ସେମାନେ ଶଶୁରଙ୍କ ହଇଜା

ଧରିବାର ଦେଖି ଛାନିଆରେ ପଳେଇଲେ । ସ୍ୱାମୀ, ଶାଶୁ, ନଣନ୍ଦ ତିନିହେଁ ଯାକ ଶଶୁରଙ୍କ ପାଖରେ ରହିଲେ । ମୁଁ ହାଣ୍ଡିଶାଳରେ ଏକା, ଟିକିଏ ସାହାଯ୍ୟ କରିବାକୁ କେହି ନାହିଁ । ପାଣି ଆଣିବି ମୁଁ, ପରିବା କାଟିବି ମୁଁ, ଚାଉଳ ଧୋଇବି ମୁଁ, ରୋଷେଇ କରିବି ମୁଁ । ତା' ଉପରେ ବାସିଆଡ଼ତି ତ ଅଛି । ମୁଁ ଏସବୁ କଥାକୁ ନୂଆ । ମୋତେ ବଡ଼ କଷ୍ଟ ହେଲା ସେ କେତେ ଦିନ । ଅଥଚ ସେଥିରେ ଆଶ୍ୱାସନା କରି ଦି'ପଦ କହିବା ଦୂରେ ଥାଉ ମୁଁ ଖାଇଲିଣି କି ନାହିଁ, ଏ କଥା ବୁଝିବାକୁ କେହି ନାହିଁ । ଶାଶୁ, ନଣନ୍ଦ ତାଙ୍କର ଆସନ୍ତି ପୁଞ୍ଜିଏ ପୁଞ୍ଜିଏ ଖାଇଦେଇ ଚାଲିଯାନ୍ତି । ସ୍ୱାମୀଙ୍କ ପାଇଁ କେଉଁଓଳି ନେଲେ ନିଅନ୍ତି, କେଉଁଓଳି ଏକାବେଳେ ନାହିଁ । ଗଣ୍ଡିଏ ଭାତ ମୋ ପାଇଁ ବାଢ଼ିଦେବା, କି ଖା' ବୋଲି କହିବା କାହାରି ଭିତେ ହୋଇ ନାହିଁ । ମୁଁ ନୂଆ ବୋହୂ, ମନକୁ ଯଦି ବାଢିଆଣି ଖାଇବି, ତା' ହେଲେ ଲୋକେ ଦେଖିଲେ— ଓଲେଇ, ପେଟକାବୁରୀ ବୋଲି କେତେ ଟାପରା କରିବେ । ସେଇ ନଣନ୍ଦ ଓଲଟିପଡ଼ି କାଲି ଖୁଣ୍ଟା ଦେବ ।

ମୁଁ ସେ ଦିନଯାକ କିଛି ଖାଇ ନାହିଁ । ବଡ଼ କଷ୍ଟ ହେଲା । ତହିଁ ଆରଦିନ ସକାଳୁ ଗୋଡ଼ହାତ ଆଉ ଚଳିଲା ନାହିଁ, ଦେହଟା ଯାକ ଝାଇଁମାରିଲା ଭଳି ହେଲା । ଯୋଷାରି ହୋଇ କୌଣସି ମତେ ବାସିଆଡ଼ତିଟା ସାରିଲି । ତା'ପରେ କୂଅମୂଳକୁ ଯାଇ ଲୁଗାଟା ଧୋଇପକାଇ କାଖରେ ପାଣିଗରା ଘେନି ଆସୁ ଆସୁ ପଡ଼ିଗଲି । ଗରା ମଙ୍ଗଟା ବାଜି କପାଳଟା ଫାଟିଗଲା । ଝର ଝର ହୋଇ ରକ୍ତ ବୋହିଗଲା, ପ୍ରାଣ ଛଟପଟ ହୋଇଗଲା । ବାଡ଼ିଆଡ଼ଟା, କିଏ କାଳେ ଦେଖିବ ବୋଲି ମୁଁ ଝାଡ଼ିଝୁଡ଼ି ହୋଇ ଉଠୁଛି, ଏତିକିବେଳେ ଆମ ପଡ଼ିଶା ଘର ଢେଠେଇ ଶାଶୁ ହାରାବୋଉ—ସେ ଆସି ପହଞ୍ଚିଗଲେ, କହିଲେ, "ମଲା ! ପଡ଼ିଗଲୁ ? କି ଜାତି ମାଇପିଟା ମ ! କି ବଡ଼ଲୋକ ଘରର ଝିଅ ଲୋ ! ଅଲକ୍ଷଣୀଟା ତ; ଗୋଡ଼ ଦେଉ ଦେଉ ଶଶୁରକୁ ଖାଇବା ଉପରେ । ଆଉ ଏମିତି ସେରନ୍ତା କିଆଁ ? ବାଟ ଚାଲୁ ଚାଲୁ ପଡ଼ିଯାଉଛୁ କିଆଁ ?"

ମୁଁ ହେଲେ ତାଙ୍କୁ କ'ଣ କହିଥାନ୍ତି ! ଅକାରଣେ ଏତିକି ବକା ! ଶଶୁରଙ୍କର ହଇଜା ହେଲା; ମୁଁ କ'ଣ ହଇଜାକୁ ଡାକିଆଣି କହିଲି—ତୁ ଯା ଶଶୁରଙ୍କ ଦେହରେ ଲାଗ୍ । କେମିତି କ'ଣ ହୋଇ ତାଙ୍କର ଏ ଦଶା ହେଲା; ମୋ ଉପରେ ରାଗ କାହିଁକି ? ମୁଁ ସମ୍ଭାଳି ପାରିଲି ନାହିଁ । ଲୁହ, ରକ୍ତ ଆସି ପାଟିରେ ପଶିଯାଉଛି । ରାଗ, ଦୁଃଖ ଅଭିମାନରେ ମୋ ଛାତିଟା ଫାଟିଯାଉଛି । ମୁଁ କହିପକାଇଲି—"ମୁଁ ଲକ୍ଷଣୀ ଅଲକ୍ଷଣୀ ହେଲେ କାହାର କ'ଣ ଅଛି ? ମୁଁ ତ କାହା ଘରେ ଯାଇ ରହୁ ନାହିଁ ଯେ କାହାର ଅନିଷ୍ଟ କରିପକାଇବି ? ମୋ ଦୁଃଖରେ ତ ମୁଁ ଅଛି, ମୋ କର୍ମ ଘେନି ମୁଁ ଭୋଗୁଛି—କିଏ କାହିଁକି ଏତେ କହିବ ।"

ରାଗ ଦାଉରେ ଏତେଗୁଡ଼ାଏ କଥା ତ କହିପକାଇଲି, କଥା ସରୁ ନସରୁଣୁ ମନରେ ହେଲା—"କିଲୋ, କଲି କ'ଣ ? ମୁଁ ପରା ନୂଆ ବୋହୂ । ପାଞ୍ଚବରଷର ପିଲାଟାକୁ ମଧ୍ୟ ମୋତେ ଠାରିକରି କହିବାକୁ ହେବ । ମୁଁ ଯେ ଢେଠେଇ ଶାଶୁଟାକୁ ଏତେଗୁଡ଼ାଏ କଥା ମୁହଁ ଫିଟାଇ କହିପକାଇଲି—କି ସର୍ବନାଶ ! ଭବିଷ୍ୟତକୁ ମୋ ଦେହକୁ ଗୋଟାଏ ଖୁଣ୍ଟା ରହିଗଲା । ଲାଜରେ ଭୟରେ ମୁଁ ସେଠୁ ଛାଡ଼ି ପଳାଇ ଯିବାକୁ ଉଠିଲି । ହାରା ମା' ମାଇବିରାଡ଼ି କଳି

କଲା ପରି ଝଙ୍କାର କରି କହିଲେ—"କି ଲୋ ଖଜିବି ! ଅଲକ୍ଷଣୀ ! ଅଣ୍ଟିରା ଚଣ୍ଡୀ ! ତୁ ମୋତେ ଜବାବ ଦେଲୁ ! ମୁଁ ତୋତେ ଡିଆରିବାକୁ କିଏ ? ରହ ରହ ଲୋ, ବାପ-ମୁଣ୍ଡ-ଖାଇ, ଭାଇ-ମୁଣ୍ଡ-ଖାଇ, ତୋ ଶଶୁର ଦେହ ଭଲ ହେଉ, ଏ କଥା ତୋ ଶାଶୁ-ଶଶୁରଙ୍କ ପାଖରେ ପକେଇବି ।"

ଏମିତି କେତେ କ'ଣ ସେ କହୁଥାନ୍ତି । ମୁଁ ନଶୁଣିଲା ପରି ହୋଇ ପଳାଇ ଆସିଲି । ଦେହ ଗୋଟାକଯାକ ବରଡ଼ାପତ୍ର ପରି ମୋର ଥରୁଥାଏ । ଘରକୁ ଆସି ଆଗ ରକ୍ତଗୁଡ଼ାକ ମୁଣ୍ଡରୁ, ମୁହଁରୁ ଧୋଇଦେଲି । ପୋଡ଼ା କନା ମେଞ୍ଚାଏ ସେ ଖଣ୍ଡିଆରେ ମାଡ଼ିଦେଇ ଖାଇ ବସିଲି । ଶାଶୁ, ନଣନ୍ଦଙ୍କ କଥା ପେଟ ଦାଉରେ ଏକାବେଳକେ ଭୁଲିଗଲି । ସେ ପଖାଳ ପୁଞ୍ଜାକ ପେଟରେ ଯେମିତି ପଡ଼ିଗଲା ମୋର ତ ଆଉ ଗୋଡ଼ହାତ ଚଳିଲା ନାହିଁ । ଖାଲି ଭାଜି ଭାଜି ପଡ଼ିଲା ପରି ଲାଗିଲା । ମୁଁ ସେହି ହାଣ୍ଡିଶାଳ ଚୂଲିମୁଣ୍ଡରେ ସେମିତି ପଡ଼ିଗଲି । ମୋତେ ଟିକିଏ ଛାଇନିଦ ଲାଗି ଆସିଥିଲା ବୋଧହୁଏ, ହଠାତ୍ ଚମକି ଉଠି ଦେଖେ ତ ମୋର ସ୍ୱାମୀ ପାଖରେ । ମୁଁ ଦିହମୁଣ୍ଡ ଲୁଗାରେ ଘୋଡ଼ାଇ ପକାଇ ଯାଇ କବାଟ କଣରେ ଠିଆ ହୋଇଗଲି ।

ସେ କହିଲେ—"ବାଃ, ବେଶ୍ ତ । ବାପାଙ୍କର ଏପରି ଅବସ୍ଥା, ଦିନ ଆସି ହେଲାଣି ପହରେ, ତୁମର ନିଦ ଭାଙ୍ଗି ନାହିଁ ! ମୁଁ ପରା କାଲି କହିଥିଲି ସକାଳୁ ପାଣି ଗରମକରି ରଖିଥିବ ବୋଲି ? ଡାକ୍ତର ଆସିଲେ ଇଞ୍ଜେକ୍ସନ ଦେବ । ଏପର୍ଯ୍ୟନ୍ତ ଚୁଲୀ ଲାଗି ନାହିଁ ।"

ସେତେବେଳେ ମୋର ମନେହେଲା, ତାଙ୍କ ଗୋଡ଼ତଳେ ପଡ଼ି ମୋର ସବୁ ଦୁଃଖତକ କହିଦିଅନ୍ତି; କିନ୍ତୁ ଲାଜ ମୋତେ ମୂକ କରି ରଖିଲା । ମୁଁ ଏତକ ମଧ୍ୟ କହିପାରିଲି ନାହିଁ ଯେ, ସକାଳୁ ପାଣି ଗରମ କରିବା କଥା ତ ମୋତେ କେହି କହି ନାହାନ୍ତି । ବୁଝିଲି, ସେ ବୋଧହୁଏ ଶାଶୁ କି ନଣନ୍ଦ କାହାକୁ ଏ ପାଣି ବିଷୟ କହିଛନ୍ତି । ଏ ମନେ କରିଥିଲେ ଯେ ସେମାନେ ମୋତେ ସାବଧାନ କରି ଦେଇଥିବେ; କିନ୍ତୁ ସେମାନେ ମନ ଦୁଃଖରେ ହେଉ ବା ଅନ୍ୟ କୌଣସି କାରଣରୁ ହେଉ ସେ କଥା ମୋତେ କହି ନାହାନ୍ତି । ମୁଁ ଧଡ଼ପଡ଼ ହୋଇ ଯାଇ ଚୁଲୀରେ କୁହୁଳା ପକାଇଦେଲି । ଛୋଟ ଗରାଟା ଘେନିଯାଇ ଗରାଏ ପାଣି ଆଣି ଗୋଟାଏ ନୂଆ ହାଣ୍ଡିରେ ବସେଇଦେଲି । ମୁଁ ପିଲା ହେଲେ ମଧ୍ୟ ବୁଝିଲି ଯେ, ଶାଶୁ ନଣନ୍ଦଙ୍କର ଏ କଥା ମୋତେ ନ କହିବା ଦ୍ୱାରା ସ୍ୱାମୀଙ୍କର ମୋ ପ୍ରତି ଗୋଟାଏ ଖରାପ ଧାରଣା ହେଲା ।

ଯାହାହେଉ କେତେବେଳେ ସୁବିଧା ହେଲେ ମୁଁ ସବୁ କଥା ଖୋଲିକରି କହିବି ବୋଲି ଆଶା ରଖିଲି । ସେ ଦିନଟା ଏହିପରି ଗଲା । ତହିଁ ଆରଦିନ ଓପରଓଳି କଥା । ମୁଁ ସେହି ପାଣି ଗରମ କଥା ହେଲାବେଳୁ ସତର୍କ ହୋଇଗଲିଣି । ଆଉ ହାଣ୍ଡିଶାଳେ ସବୁବେଳେ ନରହି, କେହି ନଥିଲା ବେଳେ ଆସି ଅଗଣାରେ, ନହେଲେ ଉପର ମହଲା ମଝିଘରେ ବସିଥାଏ । ଯଦି ସ୍ୱାମୀ କୌଣସି କଥା କରିବାକୁ କହନ୍ତି ତା'ହେଲେ ମୁଁ ନିଜେ ଶୁଣିପାରିବି; ଆଉ ଶାଶୁ ନଣନ୍ଦଙ୍କ ଉପରେ ନିର୍ଭର କରିବାକୁ ହେବ ନାହିଁ । ଓପରଓଳି ସ୍ୱାମୀ ଦାଣ୍ଡଘରେ ଠିଆହୋଇ କହିଲେ, "ବାଲି ତବାଟା ଏଠି ରହିଲା, ଟିକିଏ ବାଲି ସଅଳ କରିଦିଅ ।" ସେ ଦାଣ୍ଡଘରେ ଶଶୁରେ ପଡ଼ିଥାନ୍ତି । ଶାଶୁ ସେ ଘର ଭିତରୁ ବାହାରି ଆସି କହିଲେ—"ଆଲୋ ବୋହୂ, ବାଲି ଟିକିଏ ସଅଳ କରିଦେ , ଶଶୁରେ ପିଇବେ ।"

ଏହା କହି ସେ ବାଡ଼ିଆଡ଼କୁ ଚାଲିଗଲେ । ନଣନ୍ଦ ମଧ୍ୟ ନଥାନ୍ତି । ଦାଣ୍ଡଘରେ ବାଲି । ମୁଁ ସେପାଖକୁ ଯାଇ ଦେଖେ ତ ଦାଣ୍ଡ କବାଟଟା ମେଲା, ପଲେ ମିଣିପେ ବସି କଥାବାର୍ତ୍ତା କରୁଛନ୍ତି; ମୁଁ କିପରି ଏତେ ଲୋକଙ୍କ ଆଗରେ ଯାଇ ବାଲି ତବାଟା ଆଣିବି ? ଅଗଣାପଟ ଦୁଆର ଶିକୁଳିଟାକୁ ଧରି ବୁହେ ଝଣଝଣ କଲି, କେହି ଶୁଣିଲେ ନାହିଁ । ବାଡ଼ିଆଡ଼କୁ ଆସି ବୁହେ ଅନିଷା କଲି, ଯଦି କେହି ପିଲାପିଚିକା ଯାଉଥିବେ ତାହାହେଲେ ତାଙ୍କୁ ଡାକି ତାଙ୍କ ହାତରେ ହେଲେ ମଗାଇନେବି; କିନ୍ତୁ ଘଡ଼ିଏ କାଳ ଠିଆହେଲି, କାହାରିକୁ ଆସିବାର ଦେଖିଲି ନାହିଁ । ଆସି ଚୁଲୀ ଲଗାଇଲି, ପୁଣି ଦାଣ୍ଡଘର ଆଡ଼କୁ ଗଲି । ସେ ମଣିଷଗୁଡ଼ାକ ସେମିତି ବସିଥାନ୍ତି, ଆହୁରି ଗୁଡ଼ାଏ ଲୋକ ଭିତରେ ଆସି ପାହାଚ ଉପରେ ଠିଆହୋଇ ଗଲେଣି । ଫେର ବୁହେ ଶିକୁଳି ଝଣଝଣ କଲି, ଶୁଣିଲେ ନାହିଁ ।

ଏମିତି ଆହୁରି ଘଡ଼ିଏ ଖଣ୍ଡେ ବିତିଗଲା । ନଣନ୍ଦ ଆସିଲେ । ମୁଁ ସେତେବେଳକୁ ଦାଣ୍ଡଘର ଭିତର ପଟର ଦୁଆର ମୁହଁରେ ବସିଥାଏ । ସେ ମୋତେ ଯେମିତି ଦେଖିଲେ, କହିଲେ, "କିଲୋ ଭାଉଜ, ତୋର ଟିକିଏ ଲାଜ ସରମ ନାହିଁ ? ତୁ ଆସି ଦାଣ୍ଡଘରେ ବସି କ'ଣ ମିଣିପଙ୍କ କଥା ଶୁଣୁଛୁ ମ ? ଏ ମାଲୋ, ଅଣ୍ଡିରାଚଣ୍ଡୀ ତ ମୁଁ କେଉଁଠି ଦେଖି ନାହିଁ ।" ମୁଁ ସେ କଥା ଶୁଣି ନ ଶୁଣିଲା ପରି ହୋଇ ଚୁଁ ଚୁଁ କରି କେତେ ଡାକିଲି—ଖାଲି କହିବି ଯେ ବାଲି ତବାଟା ଆଣି ଦିଅ । ସେ ମୋ ଆଡ଼କୁ ନ ଚାହିଁ କ'ଣ ଗୁଡ଼ାଏ ନିଜ ମନକୁ ଭଡ଼ର ଭଡ଼ର ହୋଇ ତାଙ୍କ ଘରକୁ ଚାଲିଗଲେ । ମୁଁ ଯାଇ ପୁଣି ଡାକିଲି । ସେ ଚାହିଁଲେ; ମୁଁ ଠାରିଲି । ସେ ବୁଝିଲେ କି ନବୁଝିଲେ କେଜାଣି, କହିଲେ—"ଆଲୋ ମାଆ ଲୋ ! ତୋ ଠାର ତୁ ବୁଝୁଥିବୁ, ମୁଁ ବୁଝିପାରୁ ନାହିଁ । ମଲା ମୋର, ଏମିତି କେଉଁଠି ବଢ଼ିଛ ମ, ବ୍ରାହ୍ମଣ ଘର ଠାରଟିଏ ବି କରି ଆସିବ ନାହିଁ ? ତୋ ବୋଉକୁ ଲାଜ ମାଡ଼ିଲା ନାହିଁ ଲୋ ଏମିତି କରି ଶାଶୁଘରକୁ ପଠେଇ ଦେଇଛି ।"

ଏ କଥାରେ ମୋର ହାଡ଼ ଜଳିଗଲା । ଆମ ଗାଁରେ ବୋଉ ମୋର ସମସ୍ତଙ୍କଠାରୁ ପ୍ରଶଂସା ପାଏ ଯେ ତା'ର ଉପୁଜଙ୍ଗର ହୋଇ ଟିକିଏ ନାହିଁ, ମାନ୍ୟ ସଣ୍ଟଣାରେ ତା' ଭଳି କେହି ନାହିଁ । ସେ ମୋତେ କେତେ ଯତ୍ନ କରି କେତେ ଠାର ଶିଖେଇଛି । ଆଉ ସେ ଠାର ଯ୍ୟାଙ୍କର ପସନ୍ଦ ହେଲା ନାହିଁ । ଭାବିଲି ନହେଲା ତ ନହେଲା, ମୁଁ ଆଉ କ'ଣ କରିବି ? ମତେ ବାଲି ଆଣି ଦେଲେ ସିନା ବାଲି କରନ୍ତି ! ମୁଁ ଆଉ କ'ଣ ଦାଣ୍ଡକୁ ଯିବି ନା, ବାଲି ପାଇତି ରଖିଛି ଯେ ତିଆରି କରିଦେବି । ତାଙ୍କ କଥା ସେ ବୁଝିବେ ।

ଏଇ ରାଗରେ ମୁଁ ଯାଇ ହାଣ୍ଡିଶାଳରେ ବସିଲି । ମୁଁ ଯେ ଏ ଘରକୁ ଆସିଲି, କିପରି ଚଳିବି ? ଯାହାର ହାତ ଧରିଲି ସେ ଏ ତିନି ଚାରିଦିନ ହେଲା ଟିକିଏ ପଚାରିଲେ ନାହିଁ— ପିଲାଟିଏ, ଘରକୁ ଆସିଛି ଯେ ସେ ଖାଇଲା କି ନଖାଇଲା, କେମିତି ଅଛି, କ'ଣ କରୁଛି । ନଣନ୍ଦ—ଏ ଯେ, ମୋ ନାଁକୁ ରାଇକୁ ଚାଇଁ ହେଉଛନ୍ତି । ଶାଶୁ ତ ଆସିଲା ଦିନରୁ ହସିକରି ପଦେ କଥା କହୁ ନାହାନ୍ତି । ମୁଁ କାହାକୁ ନେଇ ଚଳିବି ? ଏହିପରି ନାନା କଥା ବସି ଭାବୁଛି, ଏତିକି ବେଳକୁ ସ୍ୱାମୀ ଆସି କହିଲେ—"ବାଲି ଆଣ ।"

ନଣନ୍ଦ କହିଲେ, "କିଲୋ, ବାଲିପାଇଁ ପରା ଭାଇନା କହିଥିଲେ—"ବାଲି କାହିଁ ?" ମୁଁ ଠାରିକରି କହିଲି, "ବାଲି ତ କେହି ଆଣି ଦେଇ ନାହିଁ, ମୁଁ କ'ଣ କରିବି ?" ସେ ଠାରରୁ କ'ଣ ବୁଝିଲେ କେଜାଣି, ଗରଜନ କରି କହିଲେ, "କିଲୋ, ମାରିବୁ କିଲୋ ? ଏ ଭାଇନା, ଭାଉଜଙ୍କ ଗୁଣ ଦେଖିଯା ! ମୁଁ ବାଲି କଲୁଣି କି ନାହିଁ ପଚାରୁଛି, ସେ ନାଲ ନାଲ ଆଖି କରି ମାଇଲା ଭଳି କ'ଣ ଗୁଡ଼ାଏ ଠାରୁଛି । ଏ ମା' ! ଏତିକି ବେଳକୁ ତ ୟା, ଆଉ କିଛିଦିନ ଗଲେ ତ କାହାକୁ ଘରେ ରଖେଇ ଦେବ ନାହିଁ ପରା !"

ସ୍ୱାମୀ ଚାଲି ଚାଲି ମୋ ପାଖକୁ ଆସିଲେ । ମୁଁ ଲାଜରେ ସଢ଼ିଯାଇ ଠିଆହୋଇଗଲି । ସେ ମୋତେ ପଚାରିଲେ, "ବାଲି କାହିଁ ?" ମୁଁ ମୁଣ୍ଡ ହଲାଇ ନାହିଁକଲି । ସେ ଟିକିଏ ରାଗିଯାଇ କହିଲେ, "କରିନାହଁ ? ଏ ତ ବଡ଼ ଅନ୍ୟାୟ । ମୁଁ କହିକରି ଗଲିଣି ପ୍ରାୟ ଘଣ୍ଟାଏ ହେବ, ରୋଗୀଟାଏ ଖାଇବ, ତୁମର ଏତିକି ଦୟା ହେଲା ନାହିଁ ।" ମୁଁ କହିବାକୁ ଯାଉଥିଲି, ଦେଖିଲି ସ୍ୱାମୀଙ୍କ ପଛରେ ନଣନ୍ଦ ଓ ଶାଶୁ । ମୋ ତୋଟିକଥା ତୁଣ୍ଡରେ ମଲା; ମୁଁ ମୁଣ୍ଡ ପୋତି ଠିଆହୋଇ ରହିଲି । ଶାଶୁଏ କହିଉଠିଲେ —"ଆଉ କହିଲେ କ'ଣ ହେବରେ ପୁଅ, ଯେ ତ ଯାହା ସେ ତ ସେଇଆ । ଏ ଖଳବୀ ଘର ଝିଅ ପରା ! ଆସିଲା ଦିନ ହାରା ମା'କୁ ସେମିତି ପାଟି ଫିଟାଇ କ'ଣ ଗୁଡ଼ାଏ ଫୋ ଫୋ କରି କହିଦେଲା ଯେ ସାଇଟାଯାକ ହାଟ ବସିଛି । ବାଡ଼ିଆଡ଼କୁ ଲାଜରେ ଟିକିଏ ମୁହଁ କାଢ଼ିହେଲା ? ହଉ ଚାଲ, ନକଲା ନାହିଁ, ମୁଁ କରିଦେଉଛି ।" ସେମାନେ ସମସ୍ତେ ଚାଲିଗଲେ । ମୁଁ ଦେଖିଲି ମୋର ଏ କି କପାଳ ! ବିନା ଦୋଷରେ ମୋ ପ୍ରତି ଏ ଦଣ୍ଡ କାହିଁକି ? ମୁଁ ଯେ ଦି' ଦି'ଟା କଥାରେ ସ୍ୱାମୀଙ୍କ ପାଖରେ ଦୋଷୀ ହେଲି, ସେଥିରେ ମୋର କ'ଣ ଚାରା ଅଛି ?

ମୁଁ ଆସିବାର ଦଶମ ଦିନେ ଶଶୁରେ ପଥିକଲେ । ସେଦିନ ସନ୍ଧ୍ୟାବେଳକୁ ସ୍ୱାମୀ କଟକ ଚାଲିଗଲେ—ତାଙ୍କର କ'ଣ ପରୀକ୍ଷା ଥିଲା । ମୁଁ ରହିଲି ଏଠି । ଯାହାସବୁ କହିଗଲି, ସେଥିରୁ ଅନୁମାନ କରି ନେଉଥିବ ମୋର ଦଶାଟା । ଏହା ଭିତରେ ଥରେ ବାପା ଆସିଥିଲେ, ତାଙ୍କୁ ସବୁ ଫିଟାଇ କହିଲି । ସେ ଶୁଣି ତାଟଙ୍ଗା ହେଲେ, ମୋତେ କେତେ ତିଆରି କରି କହିଲେ । ମୋର ସ୍ୱାମୀଙ୍କ ପାଖକୁ ଲେଖିବେ ବୋଲି କହିଗଲେ । ମାସକ ପରେ ଖବର ଆସିଲା, ସ୍ୱାମୀ କଟକ ଛାଡ଼ି କେଉଁଆଡ଼େ ପଳାଇଛନ୍ତି । ସେହିଦିନୁଁ ମୋ ଗଞ୍ଜଣାର ମାତ୍ରା ବଢ଼ିଲା । ମୁଁ ପୁଞ୍ଜିଏ ପଖାଳ ଖାଇ ବସିଲେ ଶାଶୁ ନଣନ୍ଦଙ୍କ ଆଖିରେ ଗଲା ନାହିଁ । ବସିଲେ ହେଲି ଅଳସୋଇ, ଠିଆହେଲେ ହେଲି ଦଣ୍ଡପାଟ, ଚାଲିଲେ ହେଲି ଚଇତିଘୋଡ଼ା, ଶୋଇଲେ ହେଲି ମୁର୍ଦାର । ଯେତେ ଯତନ କରି ମୁଁ କାମଦାମ କଲି, ସେଗୁଡ଼ାକ ସବୁ ହେଲା ଅସୁନ୍ଦର । ବାପଘରକୁ ଚିଠି ଲେଖିଲି, ସେମାନେ ନବାକୁ ତିନିଥର କି ଚାରିଥର ଆସିଲେ; କିନ୍ତୁ ଏମାନେ ମତେ ଛାଡ଼ିଲେ ନାହିଁ । କେତେ କଳିଗୋଳ ହେଲା ସେଥିପାଇଁ; ଶେଷରେ ବାପା କହିଗଲେ, "ଆଲୋ ମା ! ତୁ ସିନା ସୁଖ ପାଇବୁ ବୋଲି ମୁଁ ଏଠି ଦେଇଥିଲି, ତୋ କପାଳରେ ଯେ ସୁଖ ନାହିଁ ମୁଁ କିପରି ଜାଣନ୍ତି ? ଜନ୍ମ ଦେଇଛି ବୋଲି ତ କର୍ମ ଦେଇ ପାରିବି ନାହିଁ ।" ମୋର ଆଉ ଆଶ୍ରା ଭରସା କ'ଣ ? ସ୍ୱାମୀ ଥାଉଁ ଥାଉଁ ମୁଁ ବିଧବା; ଶାଶୁ, ଶଶୁର, ବାପ-ମାଆ ଥାଉଁ ଥାଉଁ ମୁଁ ଅନାଥା ।

ମୋର ଏତିକି ଆଶା ଥାଏ ଯେ ସ୍ୱାମୀ ଫେରିଆସିବେ । ତାଙ୍କର ଚାଲିଯିବାର ମାସକ ପରେ ସେ ମାନ୍ଦ୍ରାଜରୁ ଚିଠି ଦେଲେ ଯେ ସେ ଭଲ ଅଛନ୍ତି, ଖଣ୍ଡେ ଚାକିରି ପାଇଛନ୍ତି । ତା'ପରେ ଚାରି ପାଞ୍ଚ ମାସ ସେ ଚାରିଶ ପାଞ୍ଚଶ କରି ପଠାଇଲେ । ଛଅମାସ ପରେ ଆଉ ନା ଚିଠି ନା ଟଙ୍କା ! ଏହାପରେ, ଯାହା ସବୁ ଗଞ୍ଜଣା କଥାରେ କଥାରେ ହେଉଥିଲା, ଏଥର ହାତଗୋଡ଼ ବୋଲ କଲା । ପ୍ରତିଦିନ ଦି' ଚାରି ଖଡୁମୁଷା ଓ ପାଞ୍ଚ ଛଅ ଗୋଇଠା ଖାଇବା ମୁକର । ମୁଁ ଆଉ ସହିପାରିଲି ନାହିଁ । ଏହା ଭିତରେ ବାପା-ବୋଉ ଦିହେଁଯାକ ପନ୍ଦର ପନ୍ଦର ଦିନ ଛଡ଼ାରେ ମରିଗଲେ । ଭାଉଜ ବିଧବା, ସାନଭାଇ ନାବାଳକ । ଭାଉଜ ତା' ବାପଘରକୁ ଚାଲିଗଲା; ସାନଭାଇ ଗଲା କଟକ ପଢ଼ିବାକୁ । ସମ୍ପତ୍ତି ବାଡ଼ି ରହିଲା ସରକାର ହାତରେ । ମୋର ଶେଷ ଆଶା, ଶେଷ ଭରସା ଟିକକ ଗଲା । ଶେଷରେ ଯେଉଁଦିନ ଶାଶୁ, ନଣନ୍ଦ , ଢେଠେଇ ଶାଶୁ ମିଳି ମତେ ନିଆଁଖୁଣ୍ଟାରେ ଠା ଠା କରି ପୋଡ଼ି ପକାଇଲେ । ସେ ଦିନ ମୁଁ ଠିକ୍ କଲି—ଯାହାହେଉ, ଲୋକେ ଯାହା କହନ୍ତୁ, ମୁଁ ଏ ସ୍ଥାନ ଛାଡ଼ି ଚାଲିଯିବି । ବଡ଼ଦାଣ୍ଡରେ ବସିବି ପଛକେ, ଏ ଦୁଃଖକଷ୍ଟ ସହିପାରିବି ନାହିଁ ।



## ଦୁଇ

କେତେଥର ଆତ୍ମହତ୍ୟା କରିବି ବୋଲି ଚେଷ୍ଟା କରିଛି; କିନ୍ତୁ କରିପାରି ନାହିଁ—ଖାଲି ଭୟରେ । ଯଦି କନିଅର ମଞ୍ଜି ଖାଇ ନମରେ, ଯଦି କୁଅକୁ ଡେଇଁପଡ଼ିଲା ବେଳେ କିଏ ଦେଖେ, ଯଦି ଦଉଡ଼ି ଦେଲାବେଳକୁ ଚାଳଘର ବତା କି ଶେଣୀ ଛିଣ୍ଡିପଡ଼େ, ତା'ହେଲେ କି ଲଜ୍ଜା । ଦିନେ ଠିକ୍ କଲି, ପଳେଇବି । ବାପଘରୁ ଆସିଲାବେଳେ ମୋ ପାଖରେ ପ୍ରାୟ ପାଞ୍ଚଶ ଯାକେ ଟଙ୍କା ଥିଲା । ଆଉ ବାପା ବଞ୍ଚିଥିବାତକ ଲୁଚେଇ କରି ପଚାଶ ପଚାଶ ପଠାଉଥିଲେ । ଏସବୁ ମୁଁ ଅତି ସାବଧାନରେ ଲୁଚେଇ କରି ରଖିଥିଲି । ପ୍ରଥମେ ମୋ ବାକ୍ସ ଭିତରେ; ଆଉ ଯେତେବେଳେ ଅଳଙ୍କାର ସବୁ ମୋ ଦେହରୁ ଯାଇ ବିକିରି ହେବାକୁ ଲାଗିଲା, ସେତେବେଳେ ହାଣ୍ଡିଶାଳରେ ଗୋଟାଏ ଖାତ ଖୋଳି ତା' ଭିତରେ । ମୋଟରେ ପ୍ରାୟ ହଜାରେ ଟଙ୍କା ହେବ । ଏଇତକ ଘେନି ଦିନେ ରାତିରେ ପଳାଇଗଲି ।

ଗାଁ ପାଖରୁ ପ୍ରାୟ ପାଏ ଦୂରରେ ଷ୍ଟେସନ । ପାହାନ୍ତିଆ ଗାଡ଼ିରେ ଟିକଟ କାଟି ପଳାଇ ଆସିଲି କଟକ । ମୁଁ ଯେଉଁ ତବାରେ ବସିଥିଲି ସେ ତବାରେ ଆଉ ଜଣେ ବାବୁ ବସିଥିଲେ । ଗାଡ଼ି ଚାଲିବାର କିଛି ସମୟ ପରେ ସେ ବାବୁ ମୋତେ ପଚାରିଲେ—"ତୁମେ କୁଆଡ଼େ ଯିବ ?"

ମୁଁ—କଟକ ।

ସେ—ତୁମେ ଏକା, ନା ସାଙ୍ଗରେ କିଏ ଅଛି ?

ମୁଁ—ନାଁ, ମୁଁ ଏକା ।

ସେ—କଟକ କାହିଁକି ଯିବ ?

ମୁଁ—ମୋ ଭାଇ ପାଖକୁ ।

କଟକରେ ପହଞ୍ଚି ଗୋଟିଏ ବସାଘରେ ସେ ମୋତେ ରଖାଇ ଦେଲେ । କିଛି ସମୟ ପରେ ଜଣେ ସ୍ତ୍ରୀଲୋକ ଆସି ମୋ ପାଖରେ ପହଞ୍ଚିଲେ । ବେକରେ ପଦକମାଳ ଉପରେ ସୋରିଷିଆ ହାର, ଅଣ୍ଟାରେ ଲୁଗା ଉପରେ ଚାରିସରୀ ହେଇ ଅଣ୍ଟାଶିକୁଳି; ଦେହରେ ଖଣ୍ଡିଏ ଝାଲରଲଗା କଳା ସେମିଜ୍, ଗୋଡ଼ରେ ଦି'ପଟ ଗୋଡ଼ଖଡୁ ଝୁଣୁ ଝୁଣୁ ବାଜୁଥାଏ । ଦରବୁଢ଼ୀର ଏ ବେଶଭୂଷା ଦେଖି ମତେ ହସ ମାଡ଼ିଲା ।

ସେ ଆସି ମତେ କହିଲା—ଅବିନାଶ ବାବୁ ତାକୁ ପଠାଇଛନ୍ତି, ସେ ମଧ୍ୟ ଏସବୁ ଜିନିଷ ଦେଇ ପଠାଇଛନ୍ତି । ତା'ପରେ ଦୁହେଁଯାକ ସାଙ୍ଗହୋଇ ଗାଧୋଇବାକୁ ଗଲୁ । ସେ ବାଟଯାକ ଅବିନାଶ ବାବୁଙ୍କ ପ୍ରଶଂସା କରିବାରେ ଲାଗିଥାଏ; ମଝିରେ ମଝିରେ ମୋଠାରୁ ମଧ୍ୟ କଥା ଆଦାୟ କରି ନେଉଥାଏ । ମୁଁ ଗାଧୋଇ ସାରି ଆସିଲା ବେଳକୁ ମୋ ଜୀବନରେ ସବୁ କଥା ଉଣା ଅଧିକେ ଜାଣି ସାରିଲାଣି । ମୁଁ ମଧ୍ୟ ଜାଣିଲି ଯେ, ଅବିନାଶ ବାବୁ କଟକର ଜଣେ ନାମଜାଦା ଡାକ୍ତର । ସେ ଥାଆନ୍ତି ରାଣୀହାଟରେ । ତାଙ୍କର ଦୁଇ ପୁଅ, ଗୋଟିଏ ଝିଅ । ପିଲାପିଲି ଏବେ ଛଅମାସ ହେଲା ଅଛନ୍ତି ଗାଁରେ । ଅବିନାଶ ବାବୁଙ୍କ ସଙ୍ଗେ ତାଙ୍କ ସ୍ତ୍ରୀଙ୍କର ବନେ ନାହିଁ । ତାଙ୍କ ସ୍ତ୍ରୀଟା ନିତାନ୍ତ ଅସୁନ୍ଦରୀ—କାଳୀମଡ଼ଛିଟାଏ, ଭାରି କଳିକାଣ୍ଡୋଇ । ଟିକକ କଥାରେ ତାଙ୍କ ସାଙ୍ଗରେ କଳି ଲଗାଇବ । ସେ ଖଟି ଖଟି ସନ୍ଧ୍ୟା ବେଳକୁ କାମରୁ ଫେରି ଘରେ ପଶିଲାକ୍ଷଣି ଗୃହିଣୀ ଗୋଟାଏ କିଛି ଛଳ ଘେନି କାଳୀମୂର୍ତ୍ତି ହୋଇ ବସିଥିବ । ଅବିନାଶ ବାବୁ ଆଉ ଏଥିରେ ଘରେ ରହିବେ କ'ଣ, ଏକାବେଳକେ ଆସି ଦାଣ୍ଡରେ ହାଜର । ଶୁଣାଯାଏ ବଡ଼ ଗୁପତ କଥା—ମୁଁ ଏକଥା ଯେପରି କାହାରିକି ନକହେ—ସେ ମାଇପିଟା ତାଙ୍କ ଘର ହରିଆ ଭଣ୍ଡାରି ସାଙ୍ଗରେ କ'ଣ ଲଟପଟ କରେ ବୋଲି । ଏବେ ଯାଇଚି ସେ ସେହି ହରିଆକୁ ଘେନି ଘରକୁ । ଅବିନାଶ ବାବୁ ବିଚରା ବଡ଼ ଭଲ ଲୋକ । କ'ଣ କରିବେ, ଦାଣ୍ଡ ମର୍ଯ୍ୟାଦାକୁ ଜଗି କିଛି କହିପାରୁ ନାହାନ୍ତି ।

ସେଦିନ ରନ୍ଧାବଢ଼ା ସାରି ଖିଆପିଆ କଲି । ସନ୍ଧ୍ୟାବେଳକୁ ଅବିନାଶ ବାବୁ ଆସିଲେ, କହିଲେ—"ମୁଁ ଏହିକ୍ଷଣି ଅଫିସରୁ ଆସୁଛି । ଏଇଲାଗେ ଯାଇ ତୁମ ଭାଇଙ୍କର ପତ୍ତା ନେବି । କାଲି ତୁମେ ତୁମ ଭାଇଙ୍କ ପାଖକୁ ଯାଇପାରିବ । ଆଉ କିଛି ଅସୁବିଧା ନାହିଁ ତ ? ସେ ଯେ ମାଇକିନିଆଟିକୁ ପଠାଇଥିଲି, ସେଇଟି କାମଦାମ ଠିକ୍ କରୁଛି ତ ? ଆଜି ରାତିରେ ସେ ମଧ୍ୟ ଆସି ତୁମ ପାଖରେ ଶୋଇବ ।"

ଏହିପରି କହି ସେ ଚାଲିଗଲେ । ସେ ମାଇକିନିଆଟା ଆସିଲା । ତା ନାଁ ମାଳତୀ । ତହିଁ ଆରଦିନ ସନ୍ଧ୍ୟାବେଳେ ଅବିନାଶ ବାବୁ ଆସିଲେ । ଅନେକ ବଙ୍ଗଳା ବହି ଓ ଓଡ଼ିଆ ବହି ଆଣିଥିଲେ—ସେ ସବୁ ମତେ ଦେଲେ । ସେତେବେଳେ ମାଳତୀ ନଥାଏ; ବଜାରସଉଦା କରିବାକୁ ଯାଇଥାଏ । ଅବିନାଶ ବାବୁ କେତେବେଳଯାଏ ବସି କଥାବାର୍ତ୍ତା ହେଲେ । ବୁଝିଲେ ଯେ ମୁଁ ଭଲ ହାରମୋନିୟମ୍ ବଜାଇ ଜାଣେ, ଖୁବ୍ ଭଲ ମଧ୍ୟ ଗାଇଜାଣେ । ସେ ତହିଁ ଆରଦିନ ଖଣ୍ଡେ ହାରମୋନିୟମ୍ କିଣି ଆଣିଲେ । ମତେ ବଜାଇବାକୁ କହିଲେ; ମୁଁ ବଜାଇଲି ।

ତା'ପରେ ଗାଇବାକୁ କହିଲେ; କିନ୍ତୁ ମୋତେ ଲାଜ ମାଡ଼ିବାରୁ ମୁଁ ନାହିଁ କଲି । ସେ ଆଉ ବାଧ୍ୟ କଲେ ନାହିଁ । ବାଧ୍ୟ କରିଥିଲେ ବୋଧହୁଏ ମୁଁ ଗାଇଥାନ୍ତି । ସେ ମୋର ଯାହା ଉପକାର କରିଥିଲେ ସେଥିରେ ଗୋଟାଏ ଦି'ଟା ଗୀତ ଶୁଣାଇବା ତ କିଛି ନୁହେଁ ! ବିଶେଷତଃ ଯେ ଗୀତ ଗାଇଜାଣେ ବା ବଜାଇଜାଣେ, ସେ ନିଜର ପାଣ୍ଡିତ୍ୟ ଦେଖାଇ ସାବାସ୍ ନେବାକୁ ବଡ଼ ଉନ୍ମୁଖ ଥାଏ ।

ସେ ଦିନ ଗଲାବେଳକୁ ଅବିନାଶ ବାବୁ କହିଲେ—ସେ ବୁଝିଛନ୍ତି, ଇସ୍କୁଲରେ ଗ୍ରୀଷ୍ମଛୁଟି ହୋଇଗଲା । ମୋ ଭାଇ ତାର ମାଷ୍ଟର ସାଙ୍ଗରେ କଲିକତା ବୁଲି ଯାଇଛି । ଫେରୁ ଫେରୁ ମାସେ ଖଣ୍ଡେ ଡେରି ହେବ ।

ଏ କଥା ଶୁଣି ମୋର ବୁଦ୍ଧି ବଣା ହୋଇଗଲା । ମୁଁ ଏବେ କ'ଣ କରିବି ? ଫେରିଯିବାର ତ ଉପାୟ ନାହିଁ । ମୁଁ କହିଲି, "ମୁଁ ଯେପରି ଅଛି, ଆସିବା ପର୍ଯ୍ୟନ୍ତ ସେହିପରି ରହିବି । ମୋ ହାତରେ କିଛି ପଇସାପତ୍ର ଅଛି, କୌଣସି ଅଭାବ ହେବ ନାହିଁ ।"

ତହିଁ ଆରଦିନ ସେ ଆସିଲେ । ଅନେକ ବେଳଯାଏ ରହିଲେ । ମୁଁ ଗୀତ ଗାଇଲି । ସେ ମୋର ଭାରି ପ୍ରଶଂସା କଲେ । ଏହିପରି ପ୍ରତିଦିନ ସନ୍ଧ୍ୟାବେଳେ ଅବିନାଶ ବାବୁ ଆସନ୍ତି । କେଉଁଦିନ ଗାଉଣା-ବାଜଣାରେ, କେଉଁଦିନ ବା ଯୁକ୍ତିତର୍କ ଓ ଅନ୍ୟାନ୍ୟ ବିଷୟ ଆଲୋଚନାରେ ସମୟ କଟିଯାଏ । ଅବିନାଶ ବେଶ୍ ପଢ଼ାଶୁଣା ଲୋକ, ତାଙ୍କର ଯୁକ୍ତି କରିବାର ଶକ୍ତି ମଧ୍ୟ ଖୁବ୍ । ସେ ଯୁକ୍ତି କଲାବେଳେ ତାଙ୍କର ଆଖି ଝଲସି ଉଠେ, ମୁହଁ ନାଲି ପଡ଼ିଯାଏ; କି ଏକ ଉତ୍ତେଜନାରେ ତାଙ୍କର ସ୍ୱର ଗମ୍ଭୀର ଓ ମର୍ମସ୍ପର୍ଶୀ ହୋଇଉଠେ । ସେ ଯେତେବେଳେ ସ୍ତ୍ରୀ ଜାତିର ଅଧିକାର ଓ କର୍ତ୍ତବ୍ୟ ସମ୍ବନ୍ଧରେ କହି ବସନ୍ତି, ମୁଁ ଅବାକ୍ ହୋଇ ଶୁଣେ । ଅନ୍ୟ କୌଣସି ସମୟରେ କେହି ଯଦି ମୋତେ କହିଥାନ୍ତା ଯେ, ସ୍ତ୍ରୀ ପୁରୁଷର ସମକକ୍ଷ, ଆମ୍ଭମାନଙ୍କର ଏ ବିବାହ ପ୍ରଣାଳୀ ଭ୍ରମପୂର୍ଣ୍ଣ, ହୃଦୟର ମିଳନରେ ହିଁ ପ୍ରକୃତ ବିବାହ, ସାମାଜିକ ପ୍ରଥା ଅନୁସାରେ ଦୁଇଟା ହସ୍ତର ମିଳନ କିଛିମାତ୍ର ନୁହେଁ.... ଇତ୍ୟାଦି, ତାହାହେଲେ ମୁଁ ତାକୁ ହସରେ ଉଡ଼ାଇ ଦେଇଥାନ୍ତି । କିନ୍ତୁ ଅବିନାଶ ବାବୁଙ୍କଠାରୁ ଏ ସବୁ ଶୁଣି ମୋର ମନେହେଲା, ଏ ସବୁ ଯେପରି ବେଦସତ୍ୟ । ଯେପରି ମୋର ବିବାହ ବିବାହ ନୁହେଁ; ମୁଁ ସେଥିନିମନ୍ତେ ମୋର ସ୍ୱାମୀଙ୍କ ପ୍ରତି ଅନୁରକ୍ତ ରହିବାକୁ ବାଧ୍ୟ ନୁହେଁ । ମୋର ହୃଦୟ ଯେଉଁଠାକୁ ଯିବ, ସେହିଠାରେ ଆତ୍ମସମର୍ପଣ କରିବା ହିଁ ମୋର ଧର୍ମ ।

ମୋ ଅଲକ୍ଷ୍ୟରେ କି ଅଜାଣା ଭାବରେ ମନପ୍ରାଣ ଆସ୍ତେ ଆସ୍ତେ ଅବିନାଶ ବାବୁଙ୍କ ଆଡ଼କୁ ଆକୃଷ୍ଟ ହୋଇପଡ଼ିଲା । ମୁଁ ପୁରୁଷର ସ୍ନେହ, ଆଦର, ସୋହାଗ କିଛି ମାତ୍ର ଜାଣେ ନାହିଁ । ନାରୀ ପୁରୁଷର ସଂଯୋଗ ସମ୍ବନ୍ଧରେ ମୋର ଜ୍ଞାନ ଯାହା କିଛି ଶୁଣାଶୁଣି । ମୋର ହୃଦୟ ପ୍ରକୃତରେ ଏ ପର୍ଯ୍ୟନ୍ତ କଢ଼ ଆକାରରେ ଥିଲା; ଆସ୍ତେ ଆସ୍ତେ ଯେପରି ଫୁଟିବାକୁ ଲାଗିଲା । ମୁଁ ଅବିନାଶ ବାବୁଙ୍କ ଆସିବା ସମୟକୁ ଉତ୍‌କ୍ଷିପ୍ତ ଭାବରେ ଚାହିଁ ରହିଲି । ସେ ବାହାରିଗଲେ ମୋର ସଂସାର ଶୂନ୍ୟ ବୋଧ ହେଉଥିଲା । ସେ ବେଳେ ବେଳେ କୌତୁକରେ

ମତେ ଛୁଇଁ ଦେଉଥିଲେ ମୋର କାନମୂଳ ପର୍ଯ୍ୟନ୍ତ ନାଲି ପଡ଼ିଯାଉଥିଲା । କ୍ରମେ ମୋର ଚଞ୍ଚଳ ମନ ଧୀରେ ଧୀରେ ଅବିନାଶ ବାବୁଙ୍କ ଆଡ଼କୁ ଢଳିଲା । ମୁଁ ପାପ-ପୁଣ୍ୟ କିଛି ବୁଝିପାରିଲି ନାହିଁ । ମୋର ପ୍ରାଣ ଉଚ୍ଚାଟ ହୋଇଉଠିଲା । ମୋର ପ୍ରାଣର ସୁପ୍ତ ଆକାଙ୍‌କ୍ଷା ଯେ ମୋତେ ନରକ ଆଡ଼କୁ ଟାଣିନେଉଛି, ସେତେବେଳେ ମୁଁ ସେ କଥା ବୁଝିପାରିଲି ନାହିଁ ।

କିଛିଦିନ ଏହି ମୋହରେ ବେଶ୍ କଟିଗଲା । ତା'ପରେ ହଠାତ୍ ଦିନେ ଅବିନାଶ ବାବୁ ଆସିଲେ ନାହିଁ । ତିନି ଚାରିଦିନ ହୋଇଗଲା । ମୁଁ ପାଗଳ ପ୍ରାୟ ହୋଇଗଲି । ମାଳତୀ କହିଲା, "ତାଙ୍କର ସ୍ତ୍ରୀ ଆସିଛନ୍ତି, ସେହି ହେତୁରୁ ସେ ଆସିପାରିଲେ ନାହିଁ ।" ମୋର କୌତୂହଳ ହେଲା; ମୁଁ ମାଳତୀ ସାହାଯ୍ୟରେ ତାଙ୍କ ସ୍ତ୍ରୀକୁ ଦେଖିଲି । ସେ ଅପୂର୍ବ ରୂପବତୀ—ମୋଠାରୁ ମଧ୍ୟ ସୁନ୍ଦରୀ । ମାଳତୀକୁ ପଚାରିବାରୁ ସେ କହିଲା, ଅବିନାଶ ବାବୁଙ୍କ ସ୍ତ୍ରୀ ସମ୍ବନ୍ଧରେ ସେ ସବୁ ଗପ ମୋ ଆଗରେ ସେପରି କହିବାକୁ ଅବିନାଶ ବାବୁ ତାକୁ ଶିଖାଇଥିଲେ । ମୋ ଭାଇର କଲିକତା ଯିବା କଥା ମିଛ । ସେ ଏହିପରି ମତେ ମାୟା-କୁହୁକରେ ଭୁଲାଇ ଭଣ୍ଡେଇଛି ।

ସେତେବେଳେ ଯାଇ ମୁଁ ବୁଝିଲି, ଅବିନାଶ ବାବୁ ପ୍ରେମିକ ନୁହନ୍ତି, କାମୁକ ! ସେଦିନ ମୋର ମୋହ ଭାଙ୍ଗିଗଲା; କିନ୍ତୁ ସେତେବେଳେ କି ଉପାୟ ! ଆଉ ତ ମୁଁ ଭାଇ ପାଖକୁ ଯାଇପାରିବି ନାହିଁ । ପାଖରେ ଯେତେକ ପଇସାପତ୍ର ଥିଲା କ୍ରମେ ସେସବୁ ସରିଆସିଲାଣି । ତହିଁରୁ ଯା ଦି'ପଇସା ହେବ, ସେଇଥିରେ ଚଳିବି; କିନ୍ତୁ ଯେଉଁଠିକି ସଙ୍ଗୀତ ଶିଖେଇବାକୁ ଗଲି ସେଠାରୁ ମୁଁ ଅପମାନ ପାଇ ଫେରିଲି—ମୁଁ କଳଙ୍କିନୀ, ମୁଁ ବେଶ୍ୟା । ଚାକିରି କରି ସାଧୁଭାବରେ ଦି'ପଇସା ରୋଜଗାର କରିବାକୁ ଚେଷ୍ଟା କଲି; ତା' ମଧ୍ୟ ହେଲା ନାହିଁ । କୌଣସି ଗୃହସ୍ଥ ଘରର ସ୍ତ୍ରୀଲୋକ ମତେ ଚାକରାଣୀ କରି ରଖିବାକୁ ରାଜି ହେଲେ ନାହିଁ; କାରଣ ମୋର ଯୌବନ, ମୋର ରୂପ, ଆଉ ମୋର ଅତୀତ ଜୀବନ !

ମୁଁ ଏବେ କରେ କ'ଣ ? କିଛିଦିନ କୌଣସି ଆଡ଼େ ନଯାଇ ଚୁପ୍‌ହୋଇ ରହିଲି । କେତେ ଲୋକଙ୍କର କେତେ ପ୍ରକାର ପ୍ରସ୍ତାବ ନେଇ ମାଳତୀ ଆସିଲା । ମୁଁ ସବୁ ଲେଉଟାଇ ଦେଲି । ଶେଷରେ ଅବିନାଶ ବାବୁ ଦିନେ ଆସିଲେ, କେତେ କାକୁତି-ମିନତି କଲେ । ମୁଁ କିନ୍ତୁ ଘୃଣାରେ ମୁହଁ ଫେରାଇ ଆଣିଲି । ତାଙ୍କର ଏଥିରେ ରାଗ ହେଲା । ସେ କହିଲେ, "ସାମାନ୍ୟ ବେଶ୍ୟା ତୁ, ତୋର ପୁଣି ଏଡ଼େ ଦିମାକ୍ ? ମୋ ଯୋଗୁଁ ସିନା ତୋର ଆଜି ଏ ଘର, ଦ୍ୱାର, ରୂପ ! ଆଚ୍ଛା ଦେଖିବି, ତୁ କିପରି ଚଳିବୁ ?"

ମୁଁ ତାଙ୍କର ଏହି ରାଗକୁ ରାଗରେ ଅଭ୍ୟର୍ଥନା କରି କହିଲି, "ମୁଁ ବି ଦେଖିବି, ତୋ ଭଳି ପାଞ୍ଚପାଞ୍ଚଟା ମୋର ଗୋଡ଼ତଳେ ବନ୍ଧା ରହିବେ ।" ଯାହା କହିଥିଲି ତାହା କାର୍ଯ୍ୟରେ କଲି । ହାୟ ! ହାୟ ! ନକଲି କ'ଣ ? ରାଗର ସୁଅରେ ପଡ଼ି ନରକର ବାଟକୁ ଏକାବେଳକେ ପ୍ରଶସ୍ତ କରିଦେଲି ସିନା ! ଆଜି ସେ କଥା ମନେ ପଡ଼ିଲେ ଦେହ ଶୀତେଇ ଉଠୁଛି, ପ୍ରାଣ ଝାଉଁଳି ପଡୁଛି ।

●

# ତିନି

ମୁଁ କି ପ୍ରକାରେ ସେ ଭୀଷଣ ଅବସ୍ଥାରେ ପଡ଼ିଥିଲି, ପ୍ରଥମ ଅବସ୍ଥାରେ ମୋର ମନଟା କିପରି ଥିଲା, ମତେ କିଏ ସାହାଯ୍ୟ କଲା—ସେ ସବୁ ଜଘନ୍ୟ ଇତିହାସ ଲେଖିବାର କୌଣସି ପ୍ରୟୋଜନ ନାହିଁ । ମଇଳା ଘାଣ୍ଟି କିଏ କେବେ କିଛି ଲାଭ ପାଇ ନାହିଁ । ତେବେ ଏତିକି, ଯେଉଁମାନେ କହନ୍ତି ଯେ ନରକର ମାର୍ଗ ବଡ଼ ପ୍ରଶସ୍ତ ଓ ସହଜ, ସେମାନଙ୍କର ଗୋଟାଏ ବଡ଼ ପ୍ରମାଦ ଅଛି । ଏ ସଂସାରରେ ଲୋକେ ଯେ ଖାଲି ସ୍ୱର୍ଗପ୍ରୟାସୀ ତାହା ନୁହେଁ, ଅନେକ ନରକ-ପ୍ରୟାସୀ ମଧ୍ୟ ଅଛନ୍ତି । ଫଳରେ ନରକର ବାଟରେ ବାଧାବିଘ୍ନ, ପ୍ରତିଦ୍ୱନ୍ଦ୍ୱିତା କମ୍ ନାହିଁ । ମୋର ଯେପରି ବିଶ୍ୱାସ, ମନୁଷ୍ୟ ସ୍ୱର୍ଗ ଚାହେଁ ନାହିଁ, କି ନରକ ମଧ୍ୟ ଚାହେଁ ନାହିଁ; କାରଣ ସେ ସ୍ୱର୍ଗ କିପରି ବା ନରକ କିପରି ଜାଣେ ନାହିଁ । ସେ ଚାହେଁ ସୁଖ । ବର୍ତ୍ତମାନ ଯଦି ତା' ଦେହରେ ଆଞ୍ଚ ନ ବାଜେ—ତା'ର ଇଚ୍ଛାରେ ବାଧା ନପଡ଼େ, ତା'ହେଲେ ସେ ସ୍ୱର୍ଗ ନରକ ସବୁ ଭୁଲିଯିବ । ତା'ର ସେହି ସ୍ୱର୍ଗ !

ସେତେବେଳେ ମୋ ଘରେ ଜଣେ ପଣ୍ଡିତ ଥିଲେ; ତାଙ୍କ କଥା ପରେ କହିବି । ସେ କହିଥିଲେ—ସ୍ୱର୍ଗ, ନରକ ହୋଇ ଜଗତରେ କିଛି ନାହିଁ । ମନ ଯେଉଁଆଡ଼େ ଯାଏ, ସେହି ହେଲା ସ୍ୱର୍ଗ, ଆଉ ସେଥିରେ ବାଧା ପଡ଼ିଲେ ସେ ହେଲା ନରକ । ମୋଟ କଥା, ମୋର ଏ ପଥରେ ମୁଁ ଅନେକ ବାଧାବିଘ୍ନ ପାଇଛି, ଅନେକ ପ୍ରତିଦ୍ୱନ୍ଦ୍ୱିତା ମଧ୍ୟ ସହିଛି । ମୁଁ କୁତ୍ସିତ ରୋଗର ଭଣ୍ଡାର; ମୋର ଅଭିରୁଚି ନିତାନ୍ତ କଦର୍ଯ୍ୟ—ଏହିପରି କେତେ ପ୍ରକାର ନିନ୍ଦା କିଏ କେତେ କରିଛନ୍ତି । ମୋତେ ମାଡ଼ ଦେବାର ଭୟ ମଧ୍ୟ ଅନେକ ଥର ଦେଖା ହୋଇଛି । ସେସବୁ ହୋଇ ମଧ୍ୟ ମୁଁ କଟକର ବେଶ୍ୟା ମହଲରେ ସେତେବେଳେ ଅଦ୍ୱିତୀୟ ହୋଇ ଉଠିଥିଲି । ଖାଲି କଟକ ନୁହେଁ, ଓଡ଼ିଶା ତମାମ ନାଗର ମହଲରେ ମୋ ନାଁ ବାଜି ଯାଇଥିଲା । ତେବେ, ଏତେ ଦୂର ଉଠିବାକୁ ଅନ୍ୟ କେହି ହୋଇଥିଲେ ଯେତେ ଶ୍ରମ କରିଥାନ୍ତା, ମୁଁ ତାହା ଅପେକ୍ଷା ଢେର୍ କମ୍ କରିଛି । ତା'ର କାରଣ—ମୋର ଆଗରୁ ଗଚ୍ଛିତ ଧନ, ଶିକ୍ଷା ଓ ଭଦ୍ରତା, ଆଉ ମୋର ପ୍ରଧାନ ସହାୟ ମାଳତୀ ।

ଏହିପରି ଭାବରେ ପ୍ରାୟ ପାଞ୍ଚବର୍ଷ କଟିଗଲା । ସେଥିମଧ୍ୟରେ ମୁଁ କାହାରି ପାଖରେ ବନ୍ଧାହୋଇ ରହିନଥିଲି । ବନ୍ଧାହୋଇ ରହିବାର ପ୍ରସ୍ତାବ ମୁଁ ଦି'ଚାରି ଜଣ ବଡ଼ ଜମିଦାରଙ୍କଠାରୁ ପାଇଥିଲି । ଦି'ଜଣ ରାଜା ମଧ୍ୟ ସେମାନଙ୍କ ନଅରରେ ରହିବାକୁ ମତେ ଅନୁରୋଧ କରିଥିଲେ; କିନ୍ତୁ ମୁଁ ସେ ସବୁଥିରେ କାନ ଦେଇନାହିଁ । ମୁଁ ସ୍ୱର୍ଗକୁ ଯାଏ ବା ନରକରେ ରହେ, ପରାଧୀନ ହୋଇ ରହିବି ନାହିଁ ବୋଲି ମୋର ପ୍ରତିଜ୍ଞା ଥିଲା ।

ଦିନକର ମାଳତୀ ଆସି ମତେ କହିଲା—"ଶୁଣିଲଣି ଗୋ ! ଜଣେ ବାବୁ ଆସି ବସାଘର ଖୋଜୁଛନ୍ତି । ଜଣାପଡୁଛି, ଲୋକଟି ଥିଲାବାଲାଘରର ପୁଅ । ତୁମେ କ'ଣ କହୁଛ ? ତୁମର ଏତେ ଘର କ'ଣ ହେଉଛି ? ଖାଲି ପଡ଼ିଛି ସିନା ! ତାକୁ ଯଦି ଆଣି ରଖନ୍ତ—ତା'ହେଲେ ଘରଭଡ଼ା କିଛି ପାଆନ୍ତ; ଆଉ କଥା ତ ଅଛି ।" ଏସବୁ ଶୁଣି ମୋର କୌତୁହଳ ହେଲା । ମୁଁ କହିଲି—"ଆଚ୍ଛା ! ତାଙ୍କୁ ଡାକ ଦେଖି ।"

ସେ ଆସିଲେ । କି ସୌମ୍ୟ ମୂର୍ତ୍ତି ! ସୁଗୋଲ ବଳିଷ୍ଠ ଶାଳ-ସରଳ ଦେହ—ଯେପରି ସୁନାର ଗୋଟିଏ ପିଟା ଖମ୍ବ । ଆଖିର ତେଜ ହୋମଅଗ୍ନି ପରି । ସେ ମୋ ଆଡ଼କୁ ଚାହିଁଲା ବେଳେ ମୋର ଯେପରି ମନେହେଲା, ତାଙ୍କର ସେ ଦୃଷ୍ଟି ରକ୍ତମାଂସ, ହାଡ଼ପଞ୍ଜରାର ବାଧା ନ ମାନି ଏକାବେଳକେ ମୋର ଅନ୍ତରାତ୍ମା ଭେଦକରି ଉଠୁଛି । ମୁଣ୍ଡରେ ସେ କଳାକୁଞ୍ଚକୁଞ୍ଚ ବାଳଗୁଡ଼ିକ ଦେଖାଯାଉଥିଲା ଯେପରି ମରକତର ମୁକୁଟ ! ତାଙ୍କର ବେଶଭୂଷାରେ କିଛି ଆଡ଼ମ୍ବର ନଥିଲା । ସାମାନ୍ୟ ଖଣ୍ଡେ ପରିଷ୍କାର ଧୋତି ଉପରେ ଖଣ୍ଡିଏ କାମିଜ, ଖଣ୍ଡିଏ ମଠା ଚାଦର, ଗୋଡ଼ରେ ହଳିଏ ଅଧା ଜୋତା; କିନ୍ତୁ ତାଙ୍କର ସମୁଦାୟ ଦେହରୁ ଏପରି କି ତେଜ, କି ସୌନ୍ଦର୍ଯ୍ୟ, କି ଲାବଣ୍ୟ ଝଲସି ଉଠୁଥିଲା ଯେ, ତାହା ଦେଖି ସେ ଯେ ସମ୍ଭ୍ରାନ୍ତ ଘରର ସନ୍ତାନ, ଆଉ ନିଜେ ମହାଗୁଣୀ, ମହାପଣ୍ଡିତ ଓ ପରମବିବେକୀ—ସେ ବିଷୟରେ ମୋର ଆଦୌ ସନ୍ଦେହ ରହିଲା ନାହିଁ ।

ତାଙ୍କ କପାଳର ରେଖା, ଆଖିତଳେ ଟିକିଏ ଟିକିଏ କଳାଦାଗ, ଆଉ ଓଠଲାଞ୍ଜି ଯାହା ଟିକିଏ ତଳକୁ ଖସିପଡ଼ିଲା ପରି ହୋଇଥିଲା, ସେଇଥିରୁ ଜଣାଯାଉଥିଲା ଯେ ତାଙ୍କ ମନରେ କିଛି ଗୋଟିଏ ଦୁଃଖ—ଗୋଟିଏ କିଛି କଷ୍ଟ ଅଛି । ମୁଁ ମୋ ବୈଠକଖାନାକୁ ତାଙ୍କୁ ଡକାଇଲି । ସେ ଆସିବାର ଦେଖି ମୁଁ ଉଠି ନମସ୍କାର କଲି । ତାଙ୍କୁ ଗୋଟିଏ ଚୌକିରେ ବସିବାକୁ ଅନୁରୋଧ କଲି । ସେ ଥରେ ମତେ କଟମଟ କରି ଚାହିଁଲେ; ତା'ପରେ ତାଙ୍କର କପାଳ କୁଞ୍ଚିତ ହୋଇଆସିଲା । ମୁଁ ବୁଝିଲି—ସେ ବୋଧହୁଏ ଆଶ୍ଚର୍ଯ୍ୟ ହୋଇଯାଉଛନ୍ତି ଯେ, ଏତେ ବଡ଼ ଘର ବେଶ୍ୟାର; ସେ ପୁଣି ଗ୍ରାହକ ସଙ୍ଗରେ ଦେଖାକରିବାକୁ ଆସିଲାବେଳେ ଏତେ ସାଦାସିଧା ବେଶରେ ଆସିଲା କିପରି ?

ତାଙ୍କ ସହିତ ମୋର ବାହାଲିଘରର ଭଡ଼ା ନିଷ୍ପତ୍ତି ହୋଇଗଲା । ସେ ଚାଲିଗଲେ; ପୁଣି ଘଣ୍ଟାକପରେ ଆସି ପହଞ୍ଚିଲେ । ଦେଖିଲି, ଗୋଟିଏ ନୂଆ ଟ୍ରଙ୍କ, ନୂଆ ଶେଯ, ଗୋଟାଏ ଷ୍ଟୋଭ, ଆଉ ଗୋଟିଏ କୁକର୍ ତାଙ୍କ ସାଙ୍ଗରେ ଅଛି । ମୁଁ ଟିକିଏ ମୁରୁକି ହସା ଦେଇ ଘର ଭିତରକୁ ଗଲି । ସେ ରହିଲେ ।

•

## ଚାରି

ତାଙ୍କର ରହିବା ଭିତରେ ମୁଁ ଅନେକ ଥର ତାଙ୍କ ସହିତ କଥାବାର୍ତ୍ତା କରିଥିଲି । ଶେଷରେ ଦି'ପହରଓଳା ଖାଇପିଇ ସାରି ମୋହର ବୈଠକଖାନାରେ ଘଣ୍ଟାଏ ଖଣ୍ଡେ କଥାବାର୍ତ୍ତା କରିବା ଆମର କର୍ତ୍ତବ୍ୟ ମଧ୍ୟରେ ପଡ଼ିଗଲା । ମୁଁ ଅନେକ ଥର ତାଙ୍କର ଉଦ୍ଦେଶ୍ୟ ଜାଣିବାକୁ ଚେଷ୍ଟାକଲି—କଥାବାର୍ତ୍ତାରୁ ତାଙ୍କ ମନକଥା ବୁଝିବାକୁ ଉଦ୍ୟମ କଲି; କିନ୍ତୁ ସେ ଏପରି ଗମ୍ଭୀର ଲୋକ ଯେ, ମୋର ସମସ୍ତ ଚେଷ୍ଟା ପଣ୍ଡ ହୋଇଯାଇଥିଲା । ତାଙ୍କ ସହିତ ଘନିଷ୍ଠତା ପରେ ମଧ୍ୟ ମୁଁ କିଛି ଜାଣିପାରିନଥିଲି । ପ୍ରକୃତରେ କହିବାକୁ ଗଲେ, ତାଙ୍କ ପ୍ରତି ମୋର ଗୋଟିଏ ମମତା ଆସିଯାଇଥିଲା । ସୁତରାଂ ତାଙ୍କ ହୃଦୟର ବ୍ୟଥା ଜାଣିବାକୁ ମୋର ବଡ଼ ଇଚ୍ଛା

ଥିଲା । କଥାବାର୍ତ୍ତାରେ ନ ପାରି ମୁଁ ତାଙ୍କର କାର୍ଯ୍ୟକଳାପ ଉପରେ ଆଖି ରଖିଲି । ସେଥିରୁ ମଧ୍ୟ ବିଶେଷ କିଛି ଜାଣିପାରିଲି ନାହିଁ ।

ତାଙ୍କର କର୍ତ୍ତବ୍ୟ ମଧ୍ୟରେ ସେ ସକାଳଓଳି ଶେଯରୁ ଉଠି ନିତ୍ୟକୃତ୍ୟ ସାରି ଯେ ଯାଆନ୍ତି ଫେରନ୍ତି ପ୍ରାୟ ବାରଟାବେଳକୁ । ଏତକ ସମୟ ସେ ଖାଲି ବସିଥାନ୍ତି କାଠଯୋଡ଼ି ଉପର ବଡ଼ ବୁରୁଜ ଚଉକିରେ । ତାଙ୍କର ଦୃଷ୍ଟିଥାଏ ଗାଧୋଉଥିବା ଲୋକଙ୍କ ଉପରେ । ତା'ପରେ ପୁଣି ସେ ଘରୁ ବାହାରନ୍ତି ପାଞ୍ଚଟା ପରେ । ପ୍ରାୟ ସାତଟା ପର୍ଯ୍ୟନ୍ତ କଟେଗିଘାଟଠାରୁ ପୁରୀଘାଟ ପର୍ଯ୍ୟନ୍ତ ବୁଲନ୍ତି; ତା'ପରେ ବଜାରକୁ ଯାଆନ୍ତି । ଫେରୁଫେରୁ କେଉଁ ଦିନ ରାତି ଏଗାର—କେଉଁ ଦିନ ବା ବାର । ଏଥିରେ ମଧ୍ୟ ବିଫଳ ହୋଇ ମୁଁ ଠିକ୍ କଲି—ତାଙ୍କ ପିଛା ଗୋଟାଏ ଲୋକ ରଖିବି । ସେ ବଜାରରେ ଯେ ଏତେ ସମୟ ରହନ୍ତି—କ'ଣ କରନ୍ତି, କୁଆଡ଼େ ଯାଆନ୍ତି—ତାହା ଲକ୍ଷ୍ୟ କରିବାକୁ ।

ତାଙ୍କର ଅଜଣା ଗୋଟିଏ ଲୋକକୁ ନିଯୁକ୍ତ କଲି । ସେ ପ୍ରତିଦିନ ଆସି କହେ—ବାବୁ ଆଜି ବଜାରରେ ଏଠୁ ସେଠା ପର୍ଯ୍ୟନ୍ତ ବୁଲିଲେ, ତା'ପରେ ବାଇସ୍କୋପ ଦେଖିବାକୁ ଗଲେ, କେଉଁଦିନ ଥିଏଟର ଦେଖିବାକୁ ଘଣ୍ଟାଏ ଦେଢ଼ଘଣ୍ଟା ଆଗରୁ ଯାଇ ଜନାନାମାନଙ୍କ ଦୁଆର ପାଖରେ ବୁଲି ବୁଲି ଦୁଆର ବନ୍ଦ ହେବାରୁ ଫେରିଆସିଲେ । କେଉଁ ଦିନ ଅମୁକ ବେଶ୍ୟାଘରକୁ ଗଲେ । ସେ ବେଶ୍ୟାମାନଙ୍କଠାରୁ କୌଶଳରେ ବୁଝିଲି ଯେ, ସେ କୌଣସି ଆମୋଦ-ପ୍ରମୋଦ କରିନାହାନ୍ତି; ଖାଲି ବସିକରି ବୁହେ ଏଣୁତେଣୁ ଗପ କଲେ, ବେଶ୍ୟାର ଦୁଃଖସୁଖ ବୁଝିଲେ । ଗୋଟାଏ ଦି'ଟା ଗୀତ ଶୁଣିଲେ । ପରେ ତା'ର ସମୁଦାୟ ଘରଗୁଡ଼ିକ ଦେଖିବାକୁ କହି, ଦେଖି ଫେରିଆସିଲେ । ଏଥିରେ ମୁଁ ଆଶ୍ଚର୍ଯ୍ୟ ହେଲି—ଏ କି ପ୍ରକାର ଲୋକ ! ମୁଁ ଭାବି ଠିକ୍ କଲି, ଏ ହୁଏତ ଗୁଇନ୍ଦା ପୁଲିସ, କୌଣସି ଆସାମୀ ପଛରେ ବୁଲୁଛନ୍ତି । ନହେଲେ କୌଣସି ଲେଖକ; ଉପନ୍ୟାସ ଇତ୍ୟାଦି ଲେଖିବା ପାଇଁ ଲୌକିକ ଚିତ୍ର ସଂଗ୍ରହ କରିବାକୁ ଏପରି ବେଶରେ ଆସିଛନ୍ତି । ତା' ନ ହେଲେ ଯାଙ୍କର କେହି ପ୍ରିୟ ଆତ୍ମୀୟ ଏହି କଟକ ସହରରେ ଅଛି—ସେ ତା'ର ଠିକଣା ନେଉଛନ୍ତି—ଆଉ ସେ ଆତ୍ମୀୟ କୌଣସି ସ୍ତ୍ରୀଲୋକ । ତା' ନ ହେଲେ ଥିଏଟର ଦେଖିବାକୁ ଯାଇ ଜନାନା ଦ୍ୱାରରେ ବୁଲନ୍ତେ କାହିଁକି ? ବେଶ୍ୟାମାନଙ୍କର ଘରସବୁ ଖୋଜନ୍ତେ କାହିଁକି ? ଆଉ ନଈଘାଟରେ ସ୍ତ୍ରୀମାନଙ୍କର ଗାଧୋଇବା ଜାଗାକୁ ଅପେକ୍ଷା କରନ୍ତେ କାହିଁକି ? ତେବେ ଏ ତିନିଟା ମଧ୍ୟରୁ କେଉଁଟା ଠିକ୍ ?

ସେ ଯେ କାମୁକ ନୁହନ୍ତି—ଏ ବିଷୟରେ ମୋର ତିଳାର୍ଦ୍ଧ ସନ୍ଦେହ ନାହିଁ । ସେ ଅନେକ ବେଶ୍ୟାଘରକୁ ଯିବାର ମୁଁ ଶୁଣିଛି । ସେମାନଙ୍କ ମଧ୍ୟରେ ସୁନ୍ଦରୀ ଯୁବତୀ ବେଶ୍ୟା ମଧ୍ୟ ଜଣେ ଦି'ଜଣ ଅଛନ୍ତି; କିନ୍ତୁ କାହାରି ପ୍ରତି ତାଙ୍କର ସେପରି ଭାବ ପ୍ରକାଶ ପାଇବାର ମୁଁ ଶୁଣିପାରିନାହିଁ । ସେ କୌଣସି ଦିନ ମାତାଲ ହେବାର ମୁଁ ଦେଖିନାହିଁ । ଖିଲେ ପାନ କି ଖଣ୍ଡିଏ ସିଗାରେଟ୍ ଖାଇବାର ମଧ୍ୟ ମତେ ଜଣାନାହିଁ । ସେ ଦେହର ଅଯନ୍ କରନ୍ତି ନାହିଁ; କିନ୍ତୁ କାମାସକ୍ତ ବ୍ୟକ୍ତି ଯେତେଦୂର ଯନ୍ ନିଏ ସେତେଦୂର ନୁହେଁ । ସୋରିଷତେଲ କି ନଡ଼ିଆତେଲ ଟିକିଏ ଲଗାଇ ଗାଧୋଇବା, ପରିଷ୍କାର ଭାବରେ ଘଷାଘଷି ହେବା, ଗାଧୋଇ ଆସି ପାନିଆରେ

ମୁଣ୍ଡଟିକୁ ପରିଷ୍କାର ଭାବରେ କୁଣ୍ଡାଇବା, ସଫାଲୁଗା ପିନ୍ଧିବା—ଏଇ ହେଲା ତାଙ୍କର ଶରୀର ଯନ୍ତ୍ରର ଦାମ୍ । ଆଡ଼ମ୍ବର ନାହିଁ, ଅଥଚ ପରିଷ୍କାର-ପରିଚ୍ଛନ୍ନ, ଚନ୍ଦ୍ରକିରଣ ପରି ଶୁଭ୍ର, କାର୍ତ୍ତିକ ମାସ କାଠଯୋଡ଼ି ପାଣି ପରି ନିର୍ମଳ !

ସେ ଯେ ଏତେ ଜଣ ସୁନ୍ଦରୀ ଯୁବତୀଙ୍କ ପାଖରୁ ନିଷ୍କଳଙ୍କଭାବରେ ଫେରିଆସିଛନ୍ତି, ତାହା ଶୁଣି ମୋ ମନରେ ବୋଧହୁଏ ସେତେବେଳେ ଏହିପରି ଭାବନା ଆସିଥିଲା—ମୁଁ ଯଦି ଏହାଙ୍କର ଦମ୍ଭ ଭାଙ୍ଗି ପାରେ, ତେବେ ମୋର ବେଶ୍ ଆତ୍ମତୃପ୍ତି ହେବ । କେତେକ ଏହି ଉଦ୍ଦେଶ୍ୟରେ ମଧ୍ୟ ତାଙ୍କ ମନ ନେଇ ତାଙ୍କ ହୃଦୟର କଥାଟା ବାହାରକରି ମୋର କୌତୁହଳ ଚରିତାର୍ଥ କରିବା ପାଇଁ ମୁଁ ଠିକ୍ କଲି—ମୋ ମୋହନମନ୍ତ୍ର ପଢ଼ି ତାଙ୍କୁ ଆୟତ୍ତ କରିବି । ସେହି ହେତୁରୁ ମୁଁ ତାଙ୍କୁ ଦିନେ ରାତିରେ ମୋ ଘରେ ଜଳଖିଆ କରିବାକୁ ନିମନ୍ତ୍ରଣ କଲି । ମୋର ସମସ୍ତ ଜ୍ଞାନ ଓ ଉପକରଣ ସାହାଯ୍ୟରେ ସ୍ୱର୍ଗର ଅପ୍‌ସରାଟି ପରି ବେଶଭୂଷା ହୋଇ ଘରଟିକୁ ଅତି ମଧୁର ମନୋହର ଭାବରେ ସଜାଇ ମୁଁ ବସିରହିଲି । ଗୋଟିଏ ରୁପାଥାଳିରେ କିସ୍‌ମିସ୍, ଖଜୁରୀ, ବେଦାନା, କଦଳୀ, ଆମ୍ବ, ସପୁରୀ, କମଳାଲେମ୍ବୁ ପ୍ରଭୃତି ଫଳ, ଅନ୍ୟ ଗୋଟିଏ ଥାଳିରେ ଲୁଚି, କ୍ଷୀରମୋହନ, ପାନତୁଆ ଇତ୍ୟାଦି ମିଷ୍ଟାନ୍ନ; ଗୋଟିଏ ଗିଲାସରେ ସରବତ୍ ତିଆରି କରି ରଖିଲି ।

ସେ ଠିକ୍ ନଅଟାବେଳକୁ ଆସିଲେ । ଘର ଭିତରକୁ ପଶିଯାଇ ସେ ସାଙ୍ଗେ ସାଙ୍ଗେ ନାକରେ ଲୁଗାଦେଲେ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଏତେ ମଧୁର ବାସନା ସେ ଘରୁ ବାହାରୁଥିଲା ଯେ, ଭୋକପେଟରେ ମଧ୍ୟ ଘଡ଼ିଏ ବସିଯିବାକୁ ଲୋକର ଇଚ୍ଛା ହେବ; କିନ୍ତୁ ଏ ଯେ ନାକରେ ଲୁଗା ଦେଲେ ? ମୁଁ ତାଟକା ହୋଇ ତାଙ୍କ ଆଡ଼କୁ ଚାହିଁରହିଲି । ସେ ମୋ ପାଖକୁ ଲାଗିଆସି ମୋ ମୁହଁ ଆଡ଼କୁ ନଇଁପଡ଼ିଲେ, ଘଡ଼ିଏ ଖଣ୍ଡେ ଚାହିଁଲେ । ତା'ପରେ କହିଲେ—"ଇସ୍, କି କୁତ୍ସିତ, କି ଅସୁନ୍ଦର ତୁମେ ।"

ମୋର ଧ୍ୟାନ ଭାଙ୍ଗିଗଲା । ମୁଁ ଭାବିଲି—"ମୁଁ କ'ଣ ସ୍ୱପ୍ନ ଦେଖୁଛି, ନା ଏ ସତ୍ୟ ? ମୁଁ ଅସୁନ୍ଦର, କୁତ୍ସିତ ? ମୁଁ ବେଶ ହୋଇସାରି ଦର୍ପଣରେ ଦେଖିଛି, ମୋର ସେତେବେଳେ ଯେ ସୁନ୍ଦର ଚେହେରା, ସେ କଟକ ସହରରେ ଅପୂର୍ବ; ଅଥଚ ଏ କହୁଛନ୍ତି କଅଣ ନା ମୁଁ ଅସୁନ୍ଦର, ମୁଁ କୁତ୍ସିତ ! ଏତେଦିନକେ ୟାଙ୍କ ଭିତର କଥା ମୁଁ ଜାଣିପାରିଲି, ଲୋକଟା ପାଗଳ । ଶୁଣିଛି, ଯୌବନର ଦାଉରେ ଯେ ଲୋକଗୁଡ଼ାକ ବାୟା ହୋଇଯାଆନ୍ତି, ସେମାନଙ୍କର ଭୋଗଶକ୍ତି ନଥାଏ; ଅଥଚ ସ୍ତ୍ରୀମାନଙ୍କ ପାଖରେ ରହିବା, ସେମାନଙ୍କ କଥା ଶୁଣିବା, ସେମାନଙ୍କୁ ଚାହିଁରହିବା ପ୍ରଭୃତିରେ ସେମାନଙ୍କର ତୃଷା ମେଣ୍ଟିଯାଏ । ଏ ସେହିପରି ଗୋଟିଏ ବାୟା ।" ମୁଁ ଠୋ-ଠୋ କରି ହସିଉଠିଲି ।

କୌଣସି ଭଦ୍ରଲୋକଙ୍କୁ ଦାଣ୍ଡରେ କେହି ଗୋଟାଏ ଛତରଖିଆ ଆସି ଚାପୁଡ଼ାଟାଏ ପକାଇଦେଲେ ତାଙ୍କର ଯେପରି ଭାବ ହୁଅନ୍ତା, ସେହିପରି ଚମକୃତ ଓ ଆହତ ହୋଇ ସେ କହିଲେ—"ଓଃ, ତୁମକୁ ପସନ୍ଦ ଲାଗିଲା ନାହିଁ ପରା ମୁଁ ଯାହା କହିଲି, ଆଚ୍ଛା, କହିପାରିବ, କାଠଯୋଡ଼ିକୂଳରେ ଚାନ୍ଦିନୀ ରାତି ବେଶି ସୁନ୍ଦର, କି ରଙ୍ଗୀନ୍ ସୂର୍ଯ୍ୟାସ୍ତ ବେଶି ସୁନ୍ଦର ?"

ମୋର ଅଜାଣାରେ ପାଟିରୁ ବାହାରିପଡ଼ିଲା—"ଚାନ୍ଦିନୀ ରାତି ।" ସେ ଟିକିଏ ଆଶ୍ୱସ୍ତ ହୋଇ କହିଲେ, "କହିପାରିବ କାହିଁକି ? ସୂର୍ଯ୍ୟାସ୍ତରେ ରଙ୍ଗର ଏତେ ଛଟା, ଚିତ୍ର ବିଚିତ୍ରର ଏତେ ଘଟା; ତଥାପି ସେ କାହିଁକି ଚାନ୍ଦିନୀ ରାତିଠାରୁ କମ୍ ସୁନ୍ଦର ?" ମୋର ବୁଝିବାକୁ ବାକି ରହିଲା ନାହିଁ; ନିଜେ ତ ସରଳ ସହଜ, ସେ ଅନ୍ୟଠାରେ ଆଡ଼ମ୍ବର ଦେଖିଲେ ସୁଖୀ ହେବେ କିପରି ? ଏତେ ବଡ଼ ସାମାନ୍ୟ କଥାଟା ଯେ ଏତେବେଳଯାଏ ମୋ ମୁଣ୍ଡରେ ପଶିପାରିନଥିଲା, ସେଥିପାଇଁ ନିଜକୁ ଧିକ୍‌କାର ଦେଇ ମୁଁ ତାଙ୍କୁ କହିଲି—"ଆପଣ ଟିକିଏ ବସନ୍ତୁ, ମୁଁ ଏଇ ଆସୁଛି ।"

ଏହା କହି ପଳାଇଗଲି । ସେ ବେଶଭୂଷା ଛାଡ଼ି, ଗାଧୋଇ-ପାଧୋଇ ସାଧାରଣ ବେଶଭୂଷାରେ ଆସି ପହଞ୍ଚିଲି । ଦେଖିଲି, ସେ ଏଥିମଧ୍ୟରେ ଝରକାଗୁଡ଼ିକ ଖୋଲିଦେଇଛନ୍ତି; ଖୋଲା ପବନର ସୁଅରେ ଘରର ଅତରଗନ୍ଧ ଭାସିଯାଉଛି । ଟେବୁଲ୍ ଉପରୁ ସେ ଝିଲିମିଲି ସୁନା ଜରି କାମକରା କନାଖଣ୍ଡିକ ଉଠାଇ ଦେଇଛନ୍ତି; ତା' ସ୍ଥାନରେ ଖଣ୍ଡେ ସଫା କନା ପକାଇଛନ୍ତି । ମୁଁ ଆସିବାର ଜାଣିପାରି ସେ କହିଲେ—"ଏଇ ଥର ତୁମପରି ତୁମେ ଦିଶିଲ ! ମୋତେ ଭୋକ କଲାଣି, କଅଣ ଖାଇବାକୁ ଦିଅ ।" ଯେ ସବୁ ଜଳଖିଆ ମୁଁ ଯୋଗାଡ଼ କରି ରଖିଥିଲି, ତାଙ୍କ ଆଗରେ ରଖିଲି । ସେ ତାକୁ ଚାହିଁ କହିଲେ, "ନା, ରାତିଓଳି ଜଳଖିଆ କରିବାର ଅଭ୍ୟାସ ତ ମୋର ନାହିଁ । ମତେ ଭାତ ପୁଞ୍ଜିଏ ଦେଲେ ଭଲହୁଅନ୍ତା ।"

ମୁଁ ଚମକିପଡ଼ିଲି । ମୁଁ ବେଶ୍ୟା, ଏ ମୋ ଘରେ ଶଙ୍ଖୁଡ଼ି ଖାଇବେ କିପରି ? ନା, ଏକାବେଳକେ ମୋ ହାତରେ ନ ଖାଇବାର ଏ ଗୋଟିଏ ଫନ୍ଦି । ସେଇଆ ଭାବି ମୁଁ କହିଲି—"ଆପଣଙ୍କର ଉପଯୁକ୍ତ ହେଲାନାହିଁ ! ମୋ ହାତରେ ଖାଇବେ ନାହିଁ, ଏ କଥା ସ୍ପଷ୍ଟ କରି ନ କହି 'ମୁଁ ଜଳଖିଆ ଖାଏନାହିଁ' ବୋଲି ବାହାନା କରିବାରେ କି ଫଳ ?"

ସେ କହିଲେ—"ବାହାନା ? ନା, ମୁଁ ତ ବାହାନା ଧରିନାହିଁ । ଭାତ କ'ଣ ରାନ୍ଧି ନାହଁ ?" ମୁଁ କିଛି ବୁଝି ନ ପାରି କହିଲି—"ମୁଁ ଯେ ବେଶ୍ୟା ! ଆପଣ ମୋ ପାଗରେ ଖାଇବେ କିପରି ?" ସେ ଟିକିଏ ଆଶ୍ୱସ୍ତ ହୋଇ କହିଲେ—"ଓଃ, ସେ କଥା ! ତୁମେ ବେଶ୍ୟା ବୋଲି ତ ପଶୁ ନୁହଁ । ଆମ୍ଭେମାନେ ତଥାପି ତ ପଶୁରକ୍ତରୁ ତିଆରି ଦୁଧ ମହାଆଦରରେ ଖାଉଁ, ଆଉ ଦେବତାଙ୍କୁ ଅର୍ପଣ କରୁଁ । ବେଶ୍ୟାବୃତ୍ତି କଲ ବୋଲି ଯେ ତୁମେ ଅମନୁଷ୍ୟ ହୋଇଗଲ, ଏ କଥାଟା ଭାବିବା ତୁମର ଭୁଲ୍ । ବେଶ୍ୟାର ଗୋଟିଏ ଆତ୍ମା ଅଛି । ସେ ମଧ୍ୟ ସମସ୍ତଙ୍କ ପରି ସୁଖ ଦୁଃଖ, ମାନ ଅପମାନ, ରାଗ ଶାନ୍ତି ଅନୁଭବ କରିପାରିବାର ହୃଦୟ ପାଇଛି । ଭଲମନ୍ଦ, ନ୍ୟାୟାନ୍ୟାୟ, ପାପପୁଣ୍ୟ ବିଚାର କରିବାର ମନ ମଧ୍ୟ ତା'ର ଅଛି । ତା'ର ବୃତ୍ତି ଛାଡ଼ିଦେଲେ, ସେ ଠିକ୍ ମା' ପରି । ଆଉ ବୃତ୍ତିର କଥା—ସେ ତ ଜୀବନର ଗୋଟିଏ ଆନୁଷଙ୍ଗିକ ବିଷୟ !"

ମୁଁ ଆଶ୍ଚର୍ଯ୍ୟ ହୋଇ କଥାଗୁଡ଼ିକ ଶୁଣିଲି । ଠିକ୍ କରିପାରିଲି ନାହିଁ—ଏସବୁ ସ୍ୱାଙ୍କ ପାଣ୍ଡିତ୍ୟର ଫଳ କି ଯୁକ୍ତିବଳରେ ବିବେକକୁ ଡୁବେଇ ଦେଇ ନରକର ବାଟରେ ଚାଲିବାର ଚେଷ୍ଟା । ମୁଁ ପଚାରିଲି, "ମନୁଷ୍ୟର ବ୍ୟବସାୟ କ'ଣ ତା'ର ଜୀବନ ନୁହେଁ ? ଅନ୍ତତଃ ତା'ର ଗୋଟାଏ ବଡ଼ ଛାଇ କ'ଣ ମନୁଷ୍ୟର ଜୀବନ ଉପରେ ପଡ଼ି ଜୀବନକୁ—ତା'ର ହୃଦୟକୁ

ଅନେକ ଅଂଶରେ ପ୍ରଭାବିତ କରେନାହିଁ ? ତା'ହେଲେ ବ୍ରାହ୍ମଣ ପବିତ୍ର କାହିଁକି ? ଆଉ ଚାଣ୍ଡାଳ ଅପବିତ୍ର କାହିଁକି ? ତା'ହେଲେ ଜାତିଭେଦ ଆମର ପୂର୍ବପୁରୁଷମାନେ କରିଯାଇଥିଲେ କାହିଁକି ?"

ସେ କହିଲେ—"ସେ ଅନେକ କଥା; କହିବାକୁ ବେଳ ନାହିଁ କି ଶୁଣିବାକୁ ତୁମର ଅବସର ନାହିଁ। ଗୋଟିଏ କଥା କହେ, ଜାତିଭେଦ ଯେଉଁମାନେ ତିଆରିକଲେ, ସେମାନେ ପ୍ରଥମେ ଆର୍ଯ୍ୟ ଜାତିକୁ ତିନିଭାଗ କଲେ—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଏମାନଙ୍କର ପ୍ରାୟ ସମାନ ଅଧିକାର । ଏ ତିନି ଜାତିର ସଂସ୍କାର ହୋଇପାରେ । ଏ ତିନି ଜାତି ପଇତା ପକାଇପାରନ୍ତି; ଏ ତିନି ଜାତି ବେଦ ପଢ଼ିପାରନ୍ତି । ତେବେ କାଳକ୍ରମେ ଭେଦଭାବ ଆସିଗଲା; କର୍ମ ଭେଦରେ ଲୋକମାନଙ୍କ ମନର ଗତି ଅନୁସାରେ ଅର୍ଥାତ୍ ଜିଲ୍ଲା ମେଜେଷ୍ଟର, ଜିଲ୍ଲା ଇଞ୍ଜିନିଅର ସାହାବ, ଆଉ କଲେଜର ପ୍ରିନ୍‌ସିପାଲ, ଏ ତିନିଙ୍କର ଦରମା ସମାନ । ଯେ ଏମାନଙ୍କୁ ଏସବୁ ଗାଦିରେ ବସାଇଛନ୍ତି, ତାଙ୍କ ଆଖିରେ ଏମାନେ ସମସ୍ତେ ସମାନ । ତଥାପି ଲୋକେ ଜିଲ୍ଲା ମେଜେଷ୍ଟରଙ୍କୁ ବେଶି ଭୟ ଓ ଭକ୍ତି କରନ୍ତି; କାରଣ ତାଙ୍କ ନାମ ହେତୁରୁ । ସିମିତି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏମାନଙ୍କୁ ଯେ ତିଆରି କରିଥିଲେ, ସେ ସମାନ କରି ତିଆରି କରିଥିଲେ; କାରଣ ବ୍ୟବସାୟ ନେଇ ମନୁଷ୍ୟର ବା ଜାତିର ତାରତମ୍ୟ ହୋଇନପାରେ । ଆଉ ଶୂଦ୍ରମାନେ ଯେ ଅସ୍ପୃଶ୍ୟ ହୋଇ ରହିଗଲେ, ତାଙ୍କ ଛାଇ ପଡ଼ିଲେ ଯେ ଆର୍ଯ୍ୟମାନଙ୍କ ଦେହରେ ପାପ ସଞ୍ଚରିଗଲା, ସେ ବ୍ୟବସାୟଭେଦ ହେତୁରୁ । ଶୂଦ୍ର ଓ ଆର୍ଯ୍ୟଜାତି ପରସ୍ପର ଶତ୍ରୁ । ଶୂଦ୍ର ଅନାର୍ଯ୍ୟ, ସେମାନେ ପ୍ରଥମେ ପ୍ରଥମେ ଆର୍ଯ୍ୟମାନଙ୍କୁ ବହୁତ ବାଧା ଦେଇଛନ୍ତି, ଅନେକ ଯୁଦ୍ଧ କରିଛନ୍ତି, ବଡ଼ ହଇରାଣରେ ପକାଇଛନ୍ତି । ଦୁଇଟି ଶତ୍ରୁ ଭିତରେ ଯେ ହାରିଯାଏ, ସେ ତ ନିଜକୁ ଛୋଟ ବୋଲି ମନେକରେ; ଆଉ ଜିତାବାଲା ମଧ୍ୟ ତାକୁ ଘୃଣା ଓ ଈର୍ଷାରେ ଚକ୍ଷୁରେ ଦେଖେ । ଶୂଦ୍ରମାନଙ୍କୁ ଏତେ ତଳକୁ ପକାଇଦେବାର କାରଣ ହେଉଛି ଦୁଇଟି, ପ୍ରଥମତଃ—ଜିତିବା ଲୋକର ହାରିବା ଲୋକ ପ୍ରତି ସହଜ ଘୃଣା ଆଉ ଅବଜ୍ଞା, ଦ୍ୱିତୀୟତଃ—ଶତ୍ରୁଜାତିକୁ ସବୁବେଳେ ଛୋଟ କାମରେ ରଖିଲେ, ଛୋଟ କଥା ଶୁଣାଇଲେ, ଛୋଟ ବୋଲି କହିଲେ, ସେ ବଡ଼ ହେବାର ସୁବିଧା ଆଉ ପାଇପାରେ ନାହିଁ । ଏହି ହେତୁରୁ ଆର୍ଯ୍ୟଜାତିର ଆଉ ସେମାନଙ୍କଠାରୁ ଭୟ କରିବାର କିଛି କାରଣ ରହିଲାନାହିଁ । ଏଇ ହେଲା ଜାତିଭେଦର ରହସ୍ୟ । ଏଥିରେ ବ୍ୟବସାୟ ହେତୁରୁ ସାନ ବଡ଼ ହେବାର କୌଣସି କାରଣ ନାହିଁ ।"

ମୁଁ କହିଲି—"କିନ୍ତୁ ମୁଁ ଯେ ବେଶ୍ୟାବୃତ୍ତି କଲି; ସେଥିରୁ କ'ଣ ଅନୁମାନ ହେଉନାହିଁ ଯେ ମୋର ପ୍ରବୃତ୍ତି ନିତାନ୍ତ ନୀଚ, ମୋର ମନ ପାପରେ ପୂର୍ଣ୍ଣ ? ତା' ନହେଲେ ସଂସାରରେ ହଜାର ହଜାର ବ୍ୟବସାୟ ଥାଉଁ ଥାଉଁ ମୁଁ ନୀଚ ବୃତ୍ତିକୁ ଆସନ୍ତି କାହିଁକି ? ଆଉ ମୋର ମନ ଓ ପ୍ରବୃତ୍ତି ଯଦି ଛୋଟ ହୁଏ, ତା'ହେଲେ ମୁଁ ଘୃଣ୍ୟ ନ ହେବି କାହିଁକି ?"

ସେ କହିଲେ—"ତୁମେ ନିଜେ କି ଅବସ୍ଥାରେ ପଡ଼ି ଏ ବ୍ୟବସାୟକୁ ଆସିଛ, ମୁଁ ଜାଣେନାହିଁ । ତେବେ ତୁମର ଯାହା ସବୁ କାର୍ଯ୍ୟ ଦେଖିଛି, ସେଥିରୁ ମୁଁ ଅନୁମାନ କରିନେଇଛି, ତୁମେ ଘରକରଣାଘରର ଝିଅ ବୋହୂ ଥିଲ । ବୋଧହୁଏ ଦୁଃଖକଷ୍ଟରେ ପଡ଼ି ଅବସ୍ଥାବଶରେ

ଏ ବୃତ୍ତି ଗ୍ରହଣ କରିବାକୁ ବାଧ୍ୟ ହୋଇଛ । ମୁଁ ଯେତେ ଦୂର ଜାଣେ, କେହି ମନସୁଖରେ, ଭାବିଚିନ୍ତି, ଧୀରମନ ସ୍ଥିର-ହୃଦୟରେ ଏ ବୃତ୍ତିକୁ ଆସେନାହିଁ । ତୁମ କଟକ ସହରରେ ଯେତେ ବେଶ୍ୟା ଅଛନ୍ତି, ସେଥିରୁ ଆଠପଣ କି ଦଶପଣ ବେଶ୍ୟାହେବାକୁ ତିଆରି ହୋଇଛନ୍ତି—କେହି ବେଶ୍ୟାର ଝିଅ, କେହି ଅବା ଅତି ପିଲାଦିନୁଁ ବେଶ୍ୟାଘରେ ବଢ଼ିଆସିଛି, ତା'ର ଅନ୍ୟାନ୍ୟ ବ୍ୟବସାୟ ସମ୍ବନ୍ଧରେ ଧାରଣା ଖୁବ୍ କମ୍ । ବେଶ୍ୟାମାନଙ୍କ ସଙ୍ଗେ ବରାବର ରହିଆସିବାରୁ ତା'ର ବେଶ୍ୟାବୃତ୍ତି ପ୍ରତି ଘୃଣା କି ଅସନ୍ତୋଷ ନାହିଁ । ସେ ବିଶ୍ୱାସ କରେ ଯେ ପେଟ ପାଇଁ ଚାକିରି କରିବା ଯେପରି; ବେଶ୍ୟାବୃତ୍ତି ମଧ୍ୟ କରିବା ସେହିପରି; ଏଥିରେ ତା'ର ଦୋଷ କାହିଁକି ହେବ ? ସେ କାହିଁକି ମୋ ଆଖିରେ ଘୃଣ୍ୟ ହେବ ? ଆଉ ଯେଉଁମାନେ ଅଛନ୍ତି, ସେମାନଙ୍କ ମଧ୍ୟରୁ କେହି କେହି ଶାଶୁ ନଣନ୍ଦ ହେରିକାଙ୍କ ଅତ୍ୟାଚାରରେ ପଡ଼ି ଘରୁ ବାହାରି ଆସିଛନ୍ତି, ଆଉ ନିଜର ବୁଦ୍ଧିହୀନତା ଯୋଗୁଁ ଏ ବ୍ୟବସାୟରେ ପଶିଛନ୍ତି । କେହି ଅବସ୍ଥା ଦୋଷରୁ ଥରେ ସିଧାବାଟରୁ ଟଳି ଯାଇଅଛନ୍ତି, ଆଉ ସେଥିପାଇଁ ସମାଜ ସେମାନଙ୍କୁ ନିଷ୍ଠୁର ଭାବରେ ଏ ବ୍ୟବସାୟରେ ପଶିବାକୁ ବାଧ୍ୟ କରିଛି । ଏହି ସବୁ କାରଣରୁ ମୁଁ ବେଶ୍ୟାକୁ ଘୃଣା କରିବା ଉଚିତ ମନେକରେନାହିଁ । ମୋର ବିଶ୍ୱାସ, ଯଦି ସମାଜ ତା'ର ନିୟମ ଟିକେ ଶିଥିଳ କରନ୍ତା, ଆଉ ସମାଜରେ ଯଦି ମୁଖିଆ ମୁଖିଆ ଲୋକମାନେ ନିଜର ଆଦର୍ଶ ଓ ନୈତିକ ବଳ ଲଗାଇ ବେଶ୍ୟାଜାତି ବା ପତିତା ରମଣୀର ଉଦ୍ଧାର ପାଇଁ ଚେଷ୍ଟା କରନ୍ତେ, ତା'ହେଲେ ସମାଜରୁ ଏ ପାପପ୍ରବୃତ୍ତି ଅନେକ ଅଂଶରେ କମିଯାଆନ୍ତା । ତୁମେ ମୋତେ ପୁଞ୍ଜାଏ ଖାଇବାକୁ ଦେବ ନା ସାରାରାତିଟା ଏଇପରି ଗପେଇବ ?"

ମୁଁ ୟାଙ୍କ କଥାବାର୍ତ୍ତା ସୁଅରେ ଭାସିଯାଇଥିଲି । ମୋ ମନରେ ନିଜ ପ୍ରତି ଯେ ଅବଜ୍ଞା ଆସିଯାଇଥିଲା, ତା' ସହିତ ୟାଙ୍କର ଏ କଥାଗୁଡ଼ିକର ଗୋଟାଏ ଭୟାନକ ଲଢ଼େଇ ଲାଗିଥିଲା । ମୁଁ ସେ ଲଢ଼େଇର ଅବସ୍ଥା ଅନୁଭବ କରିବାରେ ବୁଡ଼ି ରହିଥିଲି । ଅତିଥିକୁ ଯେ ନିମନ୍ତ୍ରଣ କରି ଆଣିଛି, ତାଙ୍କର ଖାଇବା ପିଇବା ଯେ ଏ ପର୍ଯ୍ୟନ୍ତ ହୋଇନାହିଁ, ସେ କଥା ମୋର ମନେନଥିଲା । ମୁଁ ଲାଜରେ ମରିଗଲା ପରି ହୋଇଯାଇ ସେଠାରୁ ଉଠି ପଳାଇଲି । ରୋଷେଇଆଣୀକି ପଚାରି ବୁଝିଲି ସେ ଭାତ, ଡାଲି, ମାଛ ତରକାରି ଆଉ ଲାଉଖିରିଷା କରିଛି । ଚଞ୍ଚଳ ଦୁଇ ଚାରି ପ୍ରକାର ଭଜା, ଆଉ ଠାଏ ଦୁଇଠା କ'ଣ ତରକାରି କରିବାକୁ କହିଦେଇ ମୁଁ ଆସିଲି । କହିଲି, "କ୍ଷମାକରିବେ, ଆପଣ ମୋ ଘରେ ଭାତ ଖାଇବେ, ସେ କଥା ମୋ ମନରେ ଆଦୌ ନଥିଲା । ସେହି ହେତୁରୁ ମୋ ଖାଇବା ଭଳି କିଛି ସାମାନ୍ୟ କରିଥିଲି । ଆଉ କ'ଣ ଟିକିଏ କରିବାକୁ କହିଦେଇ ଆସିଛି । ଏହି ଅଧଘଣ୍ଟାକ ଭିତରେ ମୋର ଚାକରାଣୀ ନେଇ ଆସିବ, ମୋର ଦୋଷ କ୍ଷମା କରିବେ ।"

ସେ ଟିକିଏ ହସି କହିଲେ—"ସେ ତୁମର ଦୋଷ ନୁହେଁ, ତୁମର ମହତ୍ତ୍ୱ । ତୁମେ କିପରି ଜାଣନ୍ତ ମୋର ମନକଥା ?" ମୁଁ କହିଲି—"ଆପଣ ତାହାହେଲେ କ'ଣ ଆମ୍ଭମାନଙ୍କ ଭଳି ପତିତା ସ୍ତ୍ରୀମାନଙ୍କର ଚରିତ୍ର ଆଉ ଅବସ୍ଥା ଦେଖି ଲୋକଙ୍କୁ ଲେଖାଲେଖି ଦ୍ୱାରା ଜଣାଇବାକୁ ଏତେ କଷ୍ଟକରି ଏଠାରେ ଅଛନ୍ତି ?"

ସେ କହିଲେ—"ଲେଖାଲେଖି କରି ଲୋକଙ୍କୁ ଜଣାଇବି ? ଲୋକେ ଭଲା କିଛି ମନଦେଇ ପଢ଼ନ୍ତି ? ସୁନ୍ଦର ଉପନ୍ୟାସଟିଏ, ଭଲ ଗଳ୍ପଟିଏ, ନହେଲେ ତାଙ୍କର କୌଣସି ଗୁଣକୁ ପ୍ରଶଂସା କରିବାଭଳିଆ ପ୍ରବନ୍ଧଟିଏ ହେଲେ ସେମାନେ ପଢ଼ିବେ । ଶିଖିବାପାଇଁ ନୁହେଁ, ଜାଣିବାପାଇଁ ନୁହେଁ, କାମ କରିବାପାଇଁ ନୁହେଁ, ନିଜର କୌଣସି ପ୍ରବୃତ୍ତିର ପ୍ରଶଂସା ସେଥିରେ ଦେଖି ନିଜକୁ ଆଶ୍ୱାସନା ଦେବାପାଇଁ । ସେମାନଙ୍କ ପାଇଁ ଲେଖିବାର ଅର୍ଥ ସେମାନଙ୍କୁ ଖୋସାମତ କରିବା । ସେ ମୋ ଦେଇ ହେବନାହିଁ ।

ମୁଁ : ତାହାହେଲେ କ'ଣ ଆପଣ ଆମ୍ଭମାନଙ୍କ ଉଦ୍ଧାର ସମ୍ବନ୍ଧରେ କିଛି କରିବେ ବୋଲି ଆମ୍ଭମାନଙ୍କର ଏ ଅବସ୍ଥା ଦେଖୁଛନ୍ତି ?

ସେ : ନା, ସେ ଆଶା ମୋର ମଧ୍ୟ ନାହିଁ । ନିଜ ବଳରେ ମୁଁ ଯଦି କୌଣସି ସ୍ତ୍ରୀ ଲୋକକୁ ବାଟକୁ ଆଣିପାରେ, ତା'ହେଲେ ନିଶ୍ଚୟ ସେ କଥା କରିବି; କିନ୍ତୁ ଅନ୍ୟମାନଙ୍କୁ ମତେଇ ସଙ୍ଘବଦ୍ଧ ଭାବରେ କିଛି କରିବାର ଶକ୍ତି ମୋର ନାହିଁ, କି ଇଚ୍ଛା ମଧ୍ୟ ନାହିଁ । ମୁଁ ଦେଖିଛି, ଆମ ଦେଶରେ ଯେଉଁମାନେ ମାନ୍ୟଗଣ୍ୟ ନେତା ସ୍ଥାନର ଲୋକ, ସେମାନଙ୍କ ଭିତରୁ ବାରପଣ ହାମ୍‌ବଡ଼ା, ଆଉ ଚାରିପଣ ଭୟଙ୍କର ସ୍ୱାର୍ଥାନ୍ୱେଷୀ । ବାରପଣିଆଙ୍କର ଇଚ୍ଛା, ସେମାନେ ଯାହା କହିବେ, ଆଉ କରିବେ, ସେଇଟାକୁ ବେଦର ଗାର ବୋଲି ଲୋକ ମାନିନିଅନ୍ତୁ । ଅନ୍ୟ ଠାରୁ ସୂଚନା ନେବା, ଅନ୍ୟ କଥାରେ ସାର ଦେଖିବା ଭଳି ହୃଦୟ ସେମାନଙ୍କର ନାହିଁ । ଚାରିପଣିଆତକ ପର ପସରାରେ ହାତ ପୂରାଇ ନିଜ ମୁଣ୍ଡରେ ତେଲ ଘଷିବାରେ ବ୍ୟସ୍ତ । ଆଉ ସେଥିରେ ଯଦି ଟୋପାଏ ଦି'ଟୋପା ତେଲ ପଡ଼ିଯାଇ କାହାରି କିଛି କାମରେ ଲାଗେ, ତା'ହେଲେ ସେଥିପାଇଁ ବାହାବା ନେବାକୁ ସେମାନେ ଭୋକିଲା କୁକୁର ପରି । ଏମାନଙ୍କ ହାତରେ କିଛି କାମ ହୋଇପାରେ ନାହିଁ ।

ମୋ ମନକୁ କାହିଁକି ଏ କଥା ଆସିଲା କେଜାଣି, କହିପକାଇଲି—"ଇଚ୍ଛାହେଲେ ଆପଣ ଆମ୍ଭମାନଙ୍କ ମଧ୍ୟରୁ କାହାରିକୁ ବିବାହ କରିବାକୁ ପ୍ରସ୍ତୁତ ଅଛନ୍ତି ?"

ସେ ଚମକିପଡ଼ିଲାପରି ହୋଇଗଲେ । କହିଲେ—"ବିବାହ, ନା, ନା, ସେ ଆଶା ତୁମେ ରଖ ନାହିଁ । ବିବାହ, ନା, ନା, ସେ କଥା ତ ମୁଁ କହିନାହିଁ; ତୁମେ ସେ କଥା ମନେକଲ କାହିଁକି ?"

ମୁଁ : ତା'ହେଲେ ଆପଣ କି ରକମ ଭାବରେ ଆମ୍ଭମାନଙ୍କର ଉପକାର କରିବାକୁ ଇଚ୍ଛା କରନ୍ତି ?

ସେ : ନା, ସେ ମୋର ଉଦ୍ଦେଶ୍ୟ ନୁହେଁ, ମୁଁ ମଧ୍ୟ ତାକୁ ବ୍ରତ କରିନେଇନାହିଁ । ମୋର ଏଠାକୁ ଆସିବାର ଉଦ୍ଦେଶ୍ୟ... ନା ନା, ମୋର ଉଦ୍ଦେଶ୍ୟ ଯାହା ହେଉ, ଏପରି କିଛି କହିବା ମୋର ମୁଖ୍ୟ ଉଦ୍ଦେଶ୍ୟ ନୁହେଁ । କାର୍ଯ୍ୟ ମଧ୍ୟରେ ଯଦି ମୋର ଆଦର୍ଶ ଆଉ ନୀତି ଦ୍ୱାରା ମୁଁ ତୁମ୍ଭମାନଙ୍କ ମଧ୍ୟରୁ କାହାରି ମନରେ ଟିକିଏ ଆତ୍ମସମ୍ମାନ ଓ ଉଚ୍ଚଭାବ ଆଣିପାରେ, ତା'ହେଲେ ସେଇ ହେବ ମୋ ପକ୍ଷରେ ଯଥେଷ୍ଟ ।

ଏତିକିବେଳକୁ ଚାକରାଣୀ ଆସି କହିଲା—"ଠାଆ କରିବି ?" ଆମେ ଉଠି ଠିଆ ହେଲୁଁ । ସେଇ ଘରେ ଠାଆହେଲା । ସେ ଖାଇ ବସିଲେ । ମୁଁ ତାଙ୍କ ପାଖରେ ବସି ଆଉ

ଅନେକ କଥା ପକେଇଲି । ସେ ଖାଇ ସାରିଲେ । ମୁହଁ ହାତ ଧୋଇ ବସିଲେ । ମୁଁ ବୀଣା ଧରି ଗୀତ ଆରମ୍ଭ କଲି—

'ବିଶ୍ୱବନ୍ଦ୍ୟ ହେ !
ତୁମର ପଦେ ଦେଇଛି ଅରପି ଜୀବନ ।'

ଯେତେବେଳେ ମୁଁ—

'ରଖ ବା ନରଖ ଶ୍ରୀପଦେ ଦାସୀକୁ
ତୁମ୍ଭେ ମୋର ଧ୍ୟାନ ଧରମ,
ପ୍ରଣୟ-ଡୋରିରେ ହୃଦୟ ମଧ୍ୟରେ
ବାନ୍ଧିବି କରି ମୁଁ ଯତନ ।'

ଏ ପଦଟି ଲହର ଓ ମୂର୍ଚ୍ଛନା ଦେଇ ଗାଇଲି, ସେତେବେଳେ ମୁଁ ତାଙ୍କ ଆଡ଼କୁ କଣେଇ କରି ଚାହିଁଛି, ଦେଖିଛି ତାଙ୍କର ଆଖି ଝଲସି ଉଠିଛି, ମୁହଁ ଲାଲ ହୋଇଯାଇଛି, ସେ ମୋ ଆଡ଼କୁ ଢଳିପଡ଼ିବାର—ଏତେ ଟିକିଏ ଢଳିପଡ଼ିବା ପରି ଦେଖାଯାଇଛନ୍ତି । ହୋଇପାରେ ସେ ମୋର ଭ୍ରମ, କିନ୍ତୁ ସେ ଭ୍ରମରେ ମୋ ହୃଦୟ ମଧ୍ୟରେ କ'ଣ ଗୋଟାଏ ଦମକି ଉଠିଲା; ମୋର ସ୍ୱରଭଙ୍ଗ ହେଲା, ମୁଁ ବୀଣା ଥୋଇଦେଇ ତାଙ୍କ ଆଡ଼କୁ ଚାହିଁଲି । ଦେଖିଲି, ସେ ଉଠି ଠିଆହୋଇଛନ୍ତି । ମୁଁ କହିଲି, "ବସନ୍ତୁ; ଆଉ ଗୋଟାଏ ଦି'ଟା ଗୀତ ଶୁଣିଯିବେ ।" ସେ ତରବର ହୋଇ କହିଲେ, "ନା, ମତେ ନିଦ ଲାଗିଲାଣି, ଆଉ ରହିପାରିବି ନାହିଁ ।" ଆଉ ପ୍ରତ୍ୟୁତ୍ତରକୁ ଅପେକ୍ଷା ନ କରି ସେ ଚାଲିଗଲେ ।

ସେ ଦିନ ଖାଇପିଇ ମୁଁ ଶୋଇବାକୁ ଗଲି । ମତେ ଅନେକ ବେଳଯାଏ ନିଦ ଲାଗିଲା ନାହିଁ । ମୁଁ ଏପଟ ସେପଟ ହୋଇ ଖାଲି ତାଙ୍କରି କଥା ଭାବିଲି । ମୋ ମନରେ ନିଜ ପ୍ରତି ଓ ନିଜ ବୃତ୍ତି ପ୍ରତି ଯେ ଅବଜ୍ଞା ଥିଲା, ତାହା ଅନେକ ପରିମାଣରେ ଚାଲିଗଲା । ନିଜ ପ୍ରତି ଟିକେ ସମ୍ମାନ ମଧ୍ୟ ଆସିଲା । ତା'ପରେ ଭାବିଲି, "ସେ ତ ଲେଖକ ନୁହନ୍ତି, କି ସମାଜ-ସଂସ୍କାରକ ନୁହନ୍ତି; ତା'ହେଲେ ଆଉ କୁଆଡ଼େ ଆସିଛନ୍ତି ? ଏପରି ଭାବରେ ରହିବାର କାରଣ କ'ଣ ? ଗୁଇନ୍ଦା ପୋଲିସ୍ ? ଅସମ୍ଭବ ନୁହେଁ; କିନ୍ତୁ ମୋ ମନ କାହିଁକି ସେଥିରେ ମାନିଲାନାହିଁ । ମୁଁ ଅନେକ ପୋଲିସ୍ ହାକିମ ସଙ୍ଗେ ବସିଛି, କଥାବାର୍ତ୍ତା ହୋଇଛି । ମୁଁ ଦେଖିଛି, ସେମାନେ ଚୋରି ନାରୀ ନେଇ ଏତେ ବ୍ୟସ୍ତ, ଭଲଲୋକକୁ ଦୋଷୀ କରି ଠିଆକରିବାରେ ଏପରି ଦକ୍ଷ ଯେ, ଚୋରଠାରେ ଯେ ଭଲ ଗୁଣ ଥାଏ, ସେ କଥାଟି ସେମାନଙ୍କୁ ପ୍ରମାଣ କରେଇଦେଲେ ମଧ୍ୟ ସେମାନେ ଗ୍ରହଣ କରିବାକୁ ନାରାଜ । ସେ ଶ୍ରେଣୀ ଲୋକଙ୍କଠାରୁ ଏ ଉଦାର ନୀତି, ଲୋକଚରିତ୍ର ସମ୍ବନ୍ଧରେ ଏପରି ବିଶ୍ୱାସ ଆଶା କରାଯାଇ ନ ପାରେ ।

ତା'ହେଲେ ତାଙ୍କର ଉଦ୍ଦେଶ୍ୟ କଅଣ ? ବାକି ରହିଲା, ମୋର ଶେଷ ଅନୁମାନ—ସେ ତାଙ୍କର କୌଣସି ଆତ୍ମୀୟଙ୍କୁ ଖୋଜିବାକୁ ଆସିଛନ୍ତି; ବୋଧହୁଏ ମୋରି ପରି କେହି ଦୁଃଖିନୀ ଆତ୍ମୀୟା ତାଙ୍କର ଘର ଛାଡ଼ି ପଳାଇଆସିଛନ୍ତି । ସେ ଅନ୍ୟଆଡ଼େ ଖୋଜି ନିରାଶ ହୋଇ ଶେଷରେ ବେଶ୍ୟା ପଲ୍ଲୀରେ ଥିବାର ଅନୁମାନ କରନ୍ତି । ବେଶ୍ୟାମାନଙ୍କ ସମ୍ବନ୍ଧରେ ଏତେଗୁଡ଼ାଏ

କଥା ଯେ ସେ ଭାବିଛନ୍ତି, ସେଥିରୁ ଜଣାପଡୁଛି—ଏ ବିଷୟଟା ତାଙ୍କ ମନରେ ଖୁବ୍ ଖେଳୁଛି । ତା'ପରେ ବିବାହ କଥା ପକେଇଲାବେଳେ ସେ ଏପରି ଚମକିପଡ଼ିଲେ କାହିଁକି ? ବିବାହ ପ୍ରତି ଅନିଚ୍ଛା ବା ଘୃଣା ଥିଲେ, ଲୋକ ବିବାହ କଥା ଶୁଣିଲେ ଏପରି ଚମକିପଡ଼େନାହିଁ । ତା'ର ଭାବ ଏପରି ତରବରିଆ ହୁଏନାହିଁ । ତା'ହେଲେ ସେ କ'ଣ ବିବାହିତ ? ଯଦି ବିବାହିତ, ତା'ହେଲେ ନିଶ୍ଚୟ ସେ ବିବାହରେ ସୁଖୀ ନୁହନ୍ତି । ସ୍ତ୍ରୀ ଦୋଷରେ ? ସ୍ତ୍ରୀ ଦୋଷରେ ହୋଇଥିଲେ ତାଙ୍କର ବିବାହ ପ୍ରତି ଘୃଣା ଆସିଥାନ୍ତା; ସୁତରାଂ ତାହା ନୁହେଁ, ତାହାହେଲେ କ'ଣ ନିଜ ଦୋଷରେ ? ମତେ ହସ ମାଡ଼ିଲା । ଏ ଯେପରି ନୀରସ ଆତ୍ମମ୍ଭରୀ ଲୋକ, ସେଥିରେ କୌଣସି ରକ୍ତ ଥିବା ସ୍ତ୍ରୀ ଯାଙ୍କୁ ଘେନି ସୁଖୀ ହୋଇପାରିବ ନାହିଁ । ସେ ନିଜକୁ ଭାବନ୍ତି ଦେବତା; ସୁତରାଂ ଆଶା କରନ୍ତି ଯେ ସମସ୍ତେ ତାଙ୍କୁ ଦେବତା ଭଳି ପୂଜା କରନ୍ତୁ । ସ୍ତ୍ରୀର ପ୍ରେମ ହେଲେ ସେ ସ୍ୱାମୀକୁ ପୂଜା କରିପାରେ; କିନ୍ତୁ ଖାଲି ପୂଜା କରିବାରେ, ମୁଠା ମୁଠା ଫୁଲ ବେଲପତ୍ର ସ୍ୱାମୀର ପାଦରେ ଦେବାରେ ତା'ର ହୃଦୟ ତ ସନ୍ତୁଷ୍ଟ ହେବନାହିଁ । ତା'ର ହୃଦୟ ପ୍ରେମ ଦେବାକୁ, ପ୍ରେମ ନେବାକୁ ଖୋଲି ହୋଇଥିବ । ଏ କ'ଣ ତା' କରାଇଦେବ ?

ତା'ପରେ ଯୁବତୀ—ସେ ଗରିବ ଘରର ହେଉ ବା ଧନୀଘରର ହେଉ—ଟିକିଏ ବିଳାସ ଇଚ୍ଛା କରେ । ଭଲ ଲୁଗା ପିନ୍ଧିବା, ଭଲ ଭଲ ଅଳଙ୍କାର ଲଗାଇବା, ଏ ସବୁ ପ୍ରତି ତା'ର ଇଚ୍ଛା ହେବା ସ୍ୱାଭାବିକ । ଆଉ ସେ ସବୁ ଇଚ୍ଛା ପ୍ରତି ଅନ୍ଧାର ମୁଲକ ଯାଙ୍କପରି କେହି ନାହିଁ । ମୁଁ ବୁଝିପାରିଲି, ଯାଙ୍କର ଯଦି ସ୍ତ୍ରୀ ଥାଏ, ତା'ହେଲେ ତା'ର ଅବସ୍ଥା କ'ଣ ହୋଇଥିବ ? ଏ ତା'ଠାରୁ ଅଳଙ୍କାରପତ୍ର, ଭଲ ଭଲ ଲୁଗା ସବୁ କାଢ଼ି ନେଇଥିବେ । ତା'କୁ ଧଳାଶାଢ଼ୀ ଖଣ୍ଡେ ପିନ୍ଧାଉଥିବେ, ତା' ହାତରେ ଶଙ୍ଖା, ଆଉ କାନରେ ନିମକାଠି ଦେଇଥିବେ । ଗାଁଶିତେଲ ଟିକକରେ ମୁଣ୍ଡ କୁଣ୍ଡାଇବାକୁ ଦେଉଥିବେ । ଆଉ ପଢ଼ିବାକୁ ଦେଉଥିବେ ଭାଗବତ, ଦର୍ଶନ, ନ୍ୟାୟ—ଓଃ, ଭଗବାନ ! ଏ ଜୀବନ ଯେ ଅସହ୍ୟ ! କୌଣସି ସ୍ତ୍ରୀ, ବିଶେଷତଃ ନବଯୁବତୀ ଏ ସବୁ ସହିପାରିବ ନାହିଁ । ସେ ହୁଏତ ପାଗଳ ହୋଇଯିବ; ନ ହେଲେ ଘର ଛାଡ଼ି ପଳେଇବ । ଏ କ'ଣ ତାଙ୍କର ସେହିପରି ସ୍ତ୍ରୀକୁ ଖୋଜିଆସିଛନ୍ତି ?

ତାହା ଯଦି ହୁଏ, ତା'ହେଲେ ସେଥିରେ କାହାର କ'ଣ ଲାଭ ? ଯଦି ସେ ତାଙ୍କୁ ପାଆନ୍ତି, ତା'ହେଲେ ତାଙ୍କର ଏ ଦମ୍ଭ ନ ଭାଙ୍ଗିବା ପର୍ଯ୍ୟନ୍ତ ସେ ତ ଆଉ ସ୍ତ୍ରୀକୁ ଗ୍ରହଣ କରିବେ ନାହିଁ । ଓଃ, ବୁଝିଲି, ତାଙ୍କୁ କ୍ଷମା କରିବେ, ତାଙ୍କର ଅନ୍ନ-ସଂସ୍ଥାନ କରିବେ, ତାଙ୍କୁ ଏ ପାପବାଟରୁ ଖସାଇନେବେ, ନିଜର ମହତ୍ତ୍ୱ ଦେଖାଇବେ—ଏଇ ତାଙ୍କର ଉଦ୍ଦେଶ୍ୟ । ବାପ୍‌ରେ ବାପ, ଲୋକଟା କି ଆତ୍ମମ୍ଭରୀ, କି ଅହଙ୍କାରୀ ! ଏତେ ବଡ଼ ପାଣ୍ଡିତ୍ୟ, ଏତେ ବଡ଼ ହୃଦୟ, ଏତେ ବେଶି ବୁଦ୍ଧି-ସେଥିରେ ଏ ଅହଙ୍କାର ତ ନିତାନ୍ତ ଅସୁନ୍ଦର ! ମୋର ଆଗ କଳ୍ପନା ଯଦି ଠିକ୍ ହୁଏ, ତାହେଲେ ମୋର କ'ଣ ସେଥିରେ କିଛି କର୍ତ୍ତବ୍ୟ ନାହିଁ ? ମୁଁ ଭାବିଦେଖିଲି, ସେ କେବେ ଧକ୍‌କା ଖାଇନାହାନ୍ତି, ସଂସାରର ପାପ ସନ୍ତାପ କେବେ ତାଙ୍କୁ ଆୟତ୍ତ କରିନାହିଁ, ସେହି ହେତୁରୁ ତାଙ୍କର ଏ ଦମ୍ଭ । ଏ ଦମ୍ଭ ଭାଙ୍ଗିଲେ ସେ ନିଶ୍ଚୟ ତାଙ୍କର ପଥଭ୍ରଷ୍ଟା ସ୍ତ୍ରୀ—ନା ନା, ଆତ୍ମୀୟାଙ୍କୁ ଗ୍ରହଣ କରିବେ । ମୋର ଏ କଳ୍ପନା ଠିକ୍ ନହେଲେ ମଧ୍ୟ ଯାଙ୍କର ଦମ୍ଭ ଥିବା ପର୍ଯ୍ୟନ୍ତ ଜୀବନରେ ପ୍ରକୃତ ସୁଖ କ'ଣ ଏ ଜାଣିପାରିବେ ନାହିଁ । ନା, ଯାଙ୍କର ଏ ଦମ୍ଭ

ଭାଙ୍ଗିବା ଦରକାର; କିନ୍ତୁ କିଏ ଭାଙ୍ଗିବ ? ମୁଁ ? ମୋର କି ପ୍ରୟୋଜନ ? ସେ ମୋର କିଏ ଯେ ମୁଁ ତାଙ୍କର ନୀତି ଭାଙ୍ଗିବାର ଭାର ନେବି ?

ସେ ମୋର କେହି ନୁହନ୍ତୁ ପଛକେ, ମୁଁ ଘର ଛାଡ଼ିଲା ଦିନୁଁ ମୋ ପାଖରେ ପ୍ରଥମ କରି ଖାଇଲେ ସେ । ମୋ ମନରେ ନିଜ ପ୍ରତି ଯେ ଅବଜ୍ଞା ଥିଲା, ତାକୁ ଦୂର କଲେ ସେ । ଏହା ଠାରୁ ବଳି ଆଉ କି ଉପକାର ମୋର କିଏ କରନ୍ତା ? ତା'ପରେ ଦେଖ, ଯଦି ତାଙ୍କ ସ୍ତ୍ରୀ ସତରେ ତାଙ୍କର ଏ ନିର୍ମମ ନୀତିର ଦାଉରେ ଘର ଛାଡ଼ି ଚାଲିଆସିଥାନ୍ତି, ତାହେଲେ ତାଙ୍କର ଅବସ୍ଥା କ'ଣ ହେବ ? ମୋର ଜୀବନ ତ ଯାଇଛି । ମୁଁ ଯଦି ଆଉ ଗୋଟିଏ ଜୀବନର ଉଦ୍ଧାର ପାଇଁ କିଛି କରିପାରେ, ତାହେଲେ କ'ଣ ଧର୍ମ ହେବନାହିଁ ? ନା, ଯଦି ପାରେ ତାହେଲେ ୟାଙ୍କର ଏ ଦମ୍ଭ ଭାଙ୍ଗିବା ଉଚିତ । କିନ୍ତୁ କିପରି ? ମୁଁ ବେଶ୍ୟାବୃତ୍ତିର ଯେ ସବୁ କୌଶଳରେ ଅନ୍ୟ ପୁରୁଷର ଇନ୍ଦ୍ରିୟସବୁଙ୍କୁ ମୋହି ତାଙ୍କୁ ଗଦଶୁଙ୍ଘା ସାପକରି ମୋର ଆୟତ୍ତରେ ରଖେ, ସେ ସବୁ କୌଶଳ ଯଦି ମୁଁ ୟାଙ୍କଠାରେ ପ୍ରୟୋଗ କରେ, ତାହେଲେ ଏ ଏଠା ଛାଡ଼ି ପଳାଇବେ । ତାହେଲେ ଉପାୟ ? ଭାବି ଦେଖିଲି, ମୋର ବେଶଭୂଷା ତାଙ୍କୁ ଭଲ ଲାଗି ନ ପାରେ; କିନ୍ତୁ ମୋର ରୂପ ତାଙ୍କୁ ଭଲ ଦିଶେ । ଆଉ ମୋର ଗୀତ ଗାଇବା ସ୍ୱରରେ ଏପରି କିଛି ଜିନିଷ ଅଛି, ଯାହା ତାଙ୍କ ହୃଦୟରେ ଗୋଳମାଳ ଆରମ୍ଭ କରିପାରେ । ମୁଁ ଯଦି ଭାବିଚିନ୍ତି ଧୀରସ୍ଥିର ଭାବରେ ମୋର ଏ ଦୁଇଟି ଅସ୍ତ୍ର ପ୍ରୟୋଗ କରିବି, ତାହେଲେ ତାଙ୍କର ଦମ୍ଭ ଭାଙ୍ଗିବାରେ ସମର୍ଥ ହେବି । ଏହିପରି ନାନା କଥା ଭାବି ଭାବି ମୋର ମୁଣ୍ଡଟା ଗରମ ହୋଇଉଠିଲା । ମୁଁ ଶେଯ ଛାଡ଼ି ଦାଣ୍ଡପଟ ଝରକାଟା ମେଲାକରି ମୁଣ୍ଡ ଗଳାଇ ଦାଣ୍ଡକୁ ଚାହିଁଲି । ଦେଖିଲି, ଚନ୍ଦ୍ରକିରଣରେ ସେ ଦାଣ୍ଡରେ ବୁଲୁଛନ୍ତି । ନିଦ ଲାଗିବାଟା ତାହେଲେ ଛଳନା—ବୋଧହୁଏ, ତାଙ୍କ ଜୀବନର ପ୍ରଥମ ଛଳନା, ଉତ୍ତମ !

ମୁଁ ମନେ ମନେ ବେଶ୍ ଖୁସିହୋଇ ଧୀରେ ଆସି ଶୋଇଲି । ଅଳ୍ପ ସମୟ ପରେ ମୋତେ ନିଦଲାଗିଲା ।



## ପାଞ୍ଚ

ମୁଁ ମଝିରେ ମଝିରେ ଏହିପରି ତାଙ୍କୁ ନିମନ୍ତ୍ରଣ କରେ । ସେ ଆସି ଖିଆପିଆ କରନ୍ତି । ଆଉ ଗୀତ ଶୁଣନ୍ତି । ଆସ୍ତେ ଆସ୍ତେ ପ୍ରତିଦିନ ରାତିଓଳି ସେ ମୋ ଘରେ ଖାଇବାକୁ ଲାଗିଲେ ଏବଂ ମୋ ଗୀତ ଶୁଣିବା କ୍ରମେ ତାଙ୍କର ଗୋଟାଏ ନିଶା ହୋଇଉଠିଲା । କେଉଁ ଦିନ ପଦ୍ମତୋଳାବଶ ସାପପରି, କେଉଁ ଦିନ ଅବା ଲାଳସା-ବ୍ୟସ୍ତ ପ୍ରେମିକ ପରି ସେ ମୋ ସ୍ୱରକୁ କାନ ଡେରିଥାନ୍ତି, ମୋତେ ଚାହିଁରହିଥାନ୍ତି; ତଥାପି ଦିନେ ହେଲେ ସେ ବ୍ୟବହାର ବା କଥାରେ ନିଜର ଇଚ୍ଛା—ନିଜ ହୃଦୟର ଭାବ ମୋତେ ଜଣାଇ ଦେଇନାହାନ୍ତି । କିନ୍ତୁ ମୁଁ ଦେଖିଛି, ରାତିରେ ତାଙ୍କୁ ଭଲ ନିଦ ହୁଏନାହିଁ । ଦିନରେ ଯେତେବେଳେ ସେ ଘରେ ରହନ୍ତି, ସେତେବେଳେ

ଅନେକ ଥର ଗୁଣୁଗୁଣୁ କରି ମୋର ଗାଇବାର ଗୀତଗୁଡ଼ିକୁ ଗାଉଥାଆନ୍ତି—ଯେପରି ମୋ ଗୀତର ମୂର୍ଚ୍ଛନା ତାଙ୍କ ହୃଦୟରେ ଲାଗିରହିଛି । କେଉଁ ଆଡୁ ବୁଲିଆସିଲାବେଳେ ସେ ଦାଣ୍ଡରୁ ଦୋତାଲା ଉପରକୁ ଚାହାନ୍ତି—ଯେପରିକି କାହାକୁ ଦେଖିବା ପାଇଁ । ମୁଁ ତାଙ୍କ ରଙ୍ଗ ଦେଖିବାକୁ ଦିନେ ଦିନେ ପଦେ ଅଧେ ଗୀତ ଘର ଭିତରେ ଥାଇ ଗାଇଦିଏ, ଆଉ ସେ ଗାଣଦେଲାପରି ଦାଣ୍ଡର ଯେଉଁ ଜାଗାରେ ଥାଆନ୍ତି ସେହିଠାରେ ଠିଆହୋଇ ରହନ୍ତି ।

ଶେଷକୁ ସେ ମୋର ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କରିବାକୁ ଆରମ୍ଭ କଲେ । ପ୍ରଥମେ ପ୍ରଥମେ ନିଜେ ଆସି କହନ୍ତି, "ମୋର ଗୋଟାଏ ଜରୁରୀ କାମ ଅଛି, ମୁଁ ଆଜି ରାତିରେ ତମର ନିମନ୍ତ୍ରଣ ରକ୍ଷା କରିପାରିବିନାହିଁ, ମତେ କ୍ଷମା କରିବ ।"—ଏହା କହି ସେ ଏପରି ଭାବରେ ମୋ ଆଡ଼କୁ ଚାହିଁରହନ୍ତି ଯେ, ମୁଁ ସେଥିରୁ ବୁଝିନିଏ—ତାଙ୍କର କିଛି ମାତ୍ର କାମ ନାହିଁ କୌଣସିଠାରେ, ଭିତରର କୌଣସି ଗୋଟାଏ ଜିନିଷ ତାଙ୍କୁ ତାଙ୍କ ହୃଦୟର ଇଚ୍ଛା ବିରୁଦ୍ଧରେ ଯେପରି ଯିବାକୁ ବାଧ୍ୟ କରୁଛି, ଆଉ ମୁଁ ଟିକିଏ ଉପରୋଧ କଲେ, ସେ ନିଶ୍ଚୟ ରହିବେ । କେଉଁ କେଉଁ ଦିନ ମୁଁ ତାଙ୍କର ଛଳନା ସୁନାପିଲାଟି ପରି ମାନିନିଏ । କେଉଁ କେଉଁ ଦିନ—

'ଯିବ ଯେବ ଯାଅ ବନ୍ଧୁ !
ଘେନିଯିବ ସିନା ଦେହ;
ମନ ଯେ ମନରେ ଛନ୍ଦା
ଛିଣ୍ଡିବ ପ୍ରେମ-ବନ୍ଧନ ଏ ଆଶା ଦୁରୂହ ।'

ବୋଲି ଗାଇଦିଏ, ଆଉ ସେ ନିର୍ଜୀବ ଅସକ୍ତ ଭଳିଆ ଠିଆହେବା ସ୍ଥାନରେ ବସିପଡ଼ନ୍ତି । କେଉଁ ଦିନ ମୁଁ କପଟ-ଲୁହ କାଢ଼ି କାନ୍ଦଣା ସ୍ୱରରେ କହେ, "ଆଜି ମତେ ବଡ଼ ଏକୁଟିଆଟା ଲାଗୁଥିଲା । ଆଶା କରିଥିଲି, ଆପଣ ଆସିଲେ କଥାବାର୍ତ୍ତା କରି, କୌଣସିମତେ ମନଟା ଟିକିଏ ଆନମାନ କରିନେଇଥାନ୍ତି । ଆପଣ ଯେ ମତେ ସେଥିରୁ ବଞ୍ଚିତ କଲେ ? ହଁ, ମୋ ଦୁଃଖ ଆପଣ କାହିଁକି ବୁଝିବେ ? ଯିବେ, ଯାଆନ୍ତୁ !! ମୋର ଆପଣଙ୍କ ଉପରେ କି ଅଧିକାର ଅଛି ଯେ, ଜୋର୍ କରି ରଖାଇ ପାରିବି ? ଆଉ ସେ ଠିକ୍ ଲହୁଣୀ ପରି କଅଁଳ ହୋଇ ବସି ରହନ୍ତି ।

ଶେଷରେ ଦେଖିଲି, ସେ ଆଉ ମୋ ପାଖକୁ ତାଙ୍କର ଛଳନା ଘେନି ଆସିଲେ ନାହିଁ । ଚାକରବାକରଙ୍କ ହାତରେ କହିପଠାନ୍ତି, କାମ ଅଛି, ରାତିରେ ରହିପାରିବି ନାହିଁ । ତଥାପି ସାଙ୍ଗେ ସାଙ୍ଗେ ଘରୁ ବାହାରି ଯାଆନ୍ତିନାହିଁ । ଗଲାବେଳେ ମଧ୍ୟ ପଛକୁ ଚାହିଁ ଚାହିଁ ଯାଆନ୍ତି—ଯେପରି ମୁଁ ତାଙ୍କୁ ଡାକିବାର ଆଶା ସେ କରନ୍ତି ।

ଏହି ଉନ୍ମାଦନାରେ ବ୍ୟସ୍ତ ରହି, ତାଙ୍କ ଦମ୍ଭ ଭାଙ୍ଗିବା ଉଦ୍ଦେଶ୍ୟରେ ନାନା ଉପାୟ ଭାବି ଭାବି, ମୁଁ ଅସଲ କଥାଟା ଭୁଲିଯାଇଥିଲି—ତାଙ୍କର ଏହି ସ୍ଥାନକୁ ଆସିବାର ଉଦ୍ଦେଶ୍ୟ ମୁଁ ଏ ପର୍ଯ୍ୟନ୍ତ ଜାଣିପାରିନାହିଁ । ମୋ ମନର କୌତୂହଳ ଏ କେତେ ଦିନ ହେଲା ଅନ୍ୟ ଭାବରେ ବୁଡ଼ିରହିଥିଲା । ଦିନେ ହଠାତ୍ ବଡ଼ ନିଷ୍ଠୁର ଭାବରେ ସେଥିରେ ବ୍ୟାଘାତ ପଡ଼ିଲା । ମୋର ମୋହ ଭାଙ୍ଗିଗଲା, ସୁପ୍ତ କୌତୂହଳ ପୁଣି ଦୁଇଗୁଣ ତେଜରେ ଜଳିଉଠିଲା ।

ଶ୍ରୀନାଥ ବାବୁ ଥିଲେ ମୋ ଗ୍ରାହକମାନଙ୍କ ଭିତରେ ବେଶି ପ୍ରିୟ । ସେ ଯେ ମୋତେ ବେଶି ଟଙ୍କାପଇସା ଗହଣାଗାଣ୍ଠି ଦେଉଥିଲେ, ତାହା ନୁହେଁ; ଦେବାର ଶକ୍ତି ମଧ୍ୟ ତାଙ୍କର ନଥିଲା । ତାଙ୍କର ବାପା କଟକର ଜଣେ ଖୁବ୍ ଜଣାଶୁଣା ଓକିଲ । ସେ ନିଜେ ପୁଣି ନୂଆକରି ଓକିଲାତି ଆରମ୍ଭ କରିଥାନ୍ତି । ବଡ଼ ସୁପୁରୁଷ ସେ, ବୟସ ଅଳ୍ପ—ହୁଏତ ଚବିଶ ପଚିଶ ବର୍ଷ ହେବ; କିନ୍ତୁ ସେ ବଡ଼ ଭଦ୍ର, ନିଶା ଖାଆନ୍ତି ନାହିଁ । ଫଳରେ ମଦୁଆମାନେ ଆସି ଯେ ହୋ ହୋ, ଧୋ ଧୋ ଆରମ୍ଭ କରନ୍ତି, ସେ ସବୁ ତାଙ୍କର ନଥାଏ । ଯେଉଁଥିରେ ମୋର କଷ୍ଟ ହେବ, ସେ କଥା ସେ କେବେ କରନ୍ତିନାହିଁ । ମୋ ମନ ଜାଣି ସେ ତାଙ୍କର ବ୍ୟବହାରକୁ ବନେଇ ଚଳନ୍ତି । ପ୍ରକୃତରେ ସେ ତାଙ୍କ ନବଯୌବନର ସମସ୍ତ ଉଦାମ ବେଗ ଘେନି ମତେ ସ୍ନେହ କରନ୍ତି । ମୁଁ ତାଙ୍କଲାଗି ବେଳେ ବେଳେ ବଡ଼ ଭାବନାରେ ପଡ଼ିଥାଏ । ଅପାର ଜୀବନ ତାଙ୍କ ଆଗରେ ପଡ଼ିରହିଛି । ସେ କ'ଣ ସାରା ଜୀବନଟା ବେଶ୍ୟାର ପ୍ରେମରେ ମୁଗ୍ଧ ହୋଇ ରହିବେ ? ତାଙ୍କ ବାପ, ମା' ଯେ ତାଙ୍କୁ ଏ ପର୍ଯ୍ୟନ୍ତ ବିବାହ ଦେଇନାହାନ୍ତି, ଭାବି ମୁଁ ଆଶ୍ଚର୍ଯ୍ୟ ହୁଏ । ଆଉ ସେହି ଆଶାହିଁ ଥାଏ ମୋର ଏକମାତ୍ର ଭରସା । ସେ ବିବାହ କଲେ ବୋଧହୁଏ ତାଙ୍କର ମୋ ପ୍ରତି ମୋହ ଭାଙ୍ଗିଯିବ । ସେ ସବୁଦିନେ ମୋ ଘରକୁ ଆସିବାକୁ ଜିଦ୍ ଧରି ବସନ୍ତି, କିନ୍ତୁ ତାଙ୍କୁ ଘେନି ରହିଲେ ତ ମୋର ସଂସାର ଚଳିବନାହିଁ—ମୋତେ ଅନ୍ୟ ଗ୍ରାହକମାନଙ୍କର ମନ ରଖିବାକୁ ହେବ । ସେଥିପାଇଁ ମୁଁ ଯେତେ ମଧୁର ଭାବରେ ପାରେ, ସବୁ କଥା କହି ତାଙ୍କୁ ଶେଷରେ ସପ୍ତାହରେ ଦି'ଦିନ ଆସିବାକୁ କହିଥାଏ । ଏ ଦି'ଦିନଟି ମୋର ବିଶ୍ରାମ ।

ଆମର ଏ ବାବୁ ଆସିଲା ଦିନୁଁ ଅବଶ୍ୟ ମୋର ବିଶ୍ରାମର ଦିନ ବଢ଼ିଯାଇଛି । ଏ ଆସିବା ମଧ୍ୟରେ ପ୍ରାୟ ପାଞ୍ଚ ଛଅ ଥର ଶ୍ରୀନାଥ ବାବୁ ଆସିଛନ୍ତି । ଏ ବାବୁ ମୋ ଘରେ ଅଛନ୍ତି ବୋଲି ସେ ମଧ୍ୟ ପ୍ରଥମରୁ ଜାଣିଛନ୍ତି । ତଥାପି ଦିନେ ସେ ଆସିଲା ମାତ୍ରେ ଧରି ବସିଲେ—"ଏ ଲୋକଟାକୁ ତୁମ ଘରୁ ବାହାର କରିଦିଅ ।"

ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି—"କାହିଁକି ? ଆଜି ଏ କଥା ତୁମ ମୁଣ୍ଡରେ ଢୁକିଲା କାହିଁକି ?"

ସେ : ସେ ସବୁ କଥାରୁ ତୁମେ କ'ଣ ପାଇବ ? ଏ ଘରେ ଦୁଇଜଣଙ୍କର ସ୍ଥାନ ନାହିଁ । ହୁଏତ ସେ ରହିବ, ଆଉ ମୁଁ ଯିବି, ନହେଲେ ସେ ଯିବ ଆଉ ମୁଁ ରହିବି ।

ମୁଁ : ଆପଣଙ୍କ ମନରେ କ'ଣ ଈର୍ଷା ହେଉଛି ଯେ ମୁଁ ତାଙ୍କୁ ଭଲପାଏ ବୋଲି ? ତା' ଯଦି ହୋଇଥାଏ, ତା'ହେଲେ ଆପଣ ବଡ଼ ଭୁଲ୍ କରିଛନ୍ତି । ମୁଁ ତାଙ୍କୁ ଭଲପାଏ ନାହିଁ ।

ସେ : ତାହାହେଲେ ସେ ଏଠାରେ ଅଛି କାହିଁକି ?

ମୁଁ : ସେ କଥା ମୁଁ କ'ଣ ଜାଣେ ? ଭଡ଼ା ଦେଉଛନ୍ତି, ଅଛନ୍ତି; ମୁଁ ଯାହା କିଛି ପାଉଛି ସେଇ ମୋର ଲାଭ ।

ସେ : କିନ୍ତୁ ଭଡ଼ାଘର କ'ଣ କଟକ ସହରରେ ଅପୂର୍ବ ଯେ ସେ ଆସି ତୁମ ଘରେ ରହିଲା ?

ମୁଁ : ସେ କଥାର ଜବାବ ସିନା ସେ ଦେବେ ? ସେ ବେଶ୍ୟାସାହିରେ ଭଡ଼ାଘର ଖୋଜୁଥିଲେ, ମୋର ଘର ବେଶି ଥିଲା, ମୁଁ ଦେଲି ?

ସେ : କିନ୍ତୁ ସେ କାହିଁକି ବେଶ୍ୟାଘରେ ଅଛି ? ତୁମେ ତ ନିଶ୍ଚୟ ବୁଝିଥିବ ।

ମୁଁ : ପଚାରିଥିଲି; ସେ କହିଲେ ନାହିଁ, ମୁଁ କ'ଣ କରିବି ?

ସେ : ମିଛକଥା । ଗୋଟାଏ ଲୋକକୁ ଆଣି ଘରେ ରଖିଲ, ସେ କାହିଁକି ରହିଲା, ତା' ତୁମେ ଜାଣନା ? ଏତେ ଦିନ ହେଲା ସେ ଏଠି ଅଛି, ତଥାପି ତୁମେ କହିପାରୁନା ତା'ର କାମ କ'ଣ ? ଏ କଥା କିଏ ବିଶ୍ୱାସ କରିବ ? ନା, ସେ ଏଠାରୁ ନଗଲେ ମୁଁ ଆସିବି ନାହିଁ ।

ମୁଁ : କିନ୍ତୁ ସେ ମତେ ଭଡ଼ା ସ୍ୱରୂପ ଯେ ମାସରେ ୩୦ ଟଙ୍କା ଲେଖାଏଁ ଦେଉଛନ୍ତି, ସେ ଟଙ୍କାଟା ମତେ କିଏ ଦେବ ? ଆପଣ ଦେବେ ?

ସେ : ଓଃ, ମୁଁ ଯେ ତୁମକୁ ତୁମ ଯୋଗ୍ୟ ଟଙ୍କାପଇସା, ଗହଣାଗାଣ୍ଠି ଦେଇପାରୁନାହିଁ, ଆଉ ତୁମେ ଯେ ବଡ଼ ଗ୍ରାହକମାନଙ୍କୁ ଛାଡ଼ି ଅନୁଗ୍ରହ କରି ମତେ ସ୍ଥାନ ଦେଇଛ—ଏ କଥାଗୁଡ଼ାକ ମୁଁ ନିଜେ ବେଶ୍ କରି ଜାଣେ—ସେଗୁଡ଼ାକ ମୋ ମୁହଁ ଉପରେ ଫୋପାଡ଼ି କିଛି ଲାଭ ନାହିଁ; କିନ୍ତୁ ମୋର ଶେଷ କଥା, ତୁମେ ଯେବେ ମୋର ସ୍ନେହ ଇଚ୍ଛା କର ତାହେଲେ ସେ ଲୋକଟାକୁ ବାହାର କରିଦିଅ ।

ଏ ଜିଗର ମତେ ବଡ଼ ଖରାପ ଲାଗିଲା । ମୁଁ ରାଗଚିତ୍ତରେ କହିଦେଲି—"ତୁମର ଇଚ୍ଛା । ତୁମେ ଆସିବ ତ ଆସିବ, ନ ଆସିବ ତ ନାହିଁ । ମୁଁ ତୁମର କିଣା ଖରିଦା ନୁହେଁ ଯେ, ତୁମ କଥାରୁ ୟାଙ୍କୁ ମୋ ଘରୁ ବାହାର କରିଦେବି । କଥାଟା ତ କହିଦେଲି, କିନ୍ତୁ ସାଙ୍ଗେ ସାଙ୍ଗେ ମନରେ ବଡ଼ କ୍ଷୋଭ ଆସିଲା । ମୋ କଥାଗୁଡ଼ାକ ଶୁଣି ଶ୍ରୀନାଥବାବୁଙ୍କର ମୁହଁ ଯେପରି ହୋଇଗଲା, ତାହା ଦେଖି ମୋ ଛାତିରେ କଣ୍ଟା ଭୂଷି ହୋଇଗଲା ପରି ଜଣାପଡୁଥିଲା । ସେ କାତର ଆଉ ଯନ୍ତ୍ରଣାମିଶା ଗୋଟାଏ ଚାହାଣି ମୋ ଆଡ଼କୁ ପକାଇ ବୁଲିପଡ଼ି ଚାଲିଯାଉଥିଲେ ମୁଁ ଯାଇ ତାଙ୍କ ହାତ ଦି'ଟା ଧରିପକାଇଲି । କେତେ ଅନୁନୟ ବିନୟ ପରେ ତାଙ୍କର ରାଗ କମିଲା, ସେ ଫେରିଲେ ।

ମୁଁ କଥାରେ କଥାରେ ବୁଝିନେଲି—ତାଙ୍କୁ ଜଣେ ଭଦ୍ରଲୋକ ବିଶ୍ୱାସ କରାଇ କହିଛନ୍ତି ଯେ, ମୁଁ ଏ ବାବୁଙ୍କ ପ୍ରେମରେ ମୁଗ୍ଧ ହୋଇ ମୋର ପୂର୍ବ ଗ୍ରାହକମାନଙ୍କୁ ଆଉ ପାଖ ପୂରାଉ ନାହିଁ; କିନ୍ତୁ ପ୍ରକୃତରେ ଏ ବାବୁ ଆସିବା ଦିନଠାରୁ ମୋର କୌଣସି ଗ୍ରାହକ ମୋ ଘରୁ ଫେରିଯାଇ ନାହାନ୍ତି ।

ମୋର କେଉଁ ଗ୍ରାହକ ତାହେଲେ ୟାଙ୍କୁ ଏ କଥା କହିଲା ? ତା'ର ଉଦ୍ଦେଶ୍ୟ କ'ଣ ? ତା' ମନରେ ଯଦି ମୋ ପ୍ରତି ଏପରି ସନ୍ଦେହ ହୋଇଥାନ୍ତା, ତାହେଲେ ସେ ମୋତେ ନିଜେ ନ କହିଲା କାହିଁକି ? ଆଉ ଶ୍ରୀନାଥବାବୁ ଯେ ମୋ ଘରକୁ ଆସନ୍ତି, ଏ କଥା ଅନେକ ଗ୍ରାହକଙ୍କୁ ଜଣାନଥିଲା । ମୋ ଜାଣିବାରେ ତ କେହି ସେ କଥା ଜାଣନ୍ତି ନାହିଁ; କାରଣ ଶ୍ରୀନାଥବାବୁ ଆସିଲାଦିନ ଅନ୍ୟ ଗ୍ରାହକମାନେ ଆସନ୍ତି ନାହିଁ; ବରଂ ଅନ୍ୟ ଗ୍ରାହକମାନେ ନ ଆସିଲା ଦିନ ଶ୍ରୀନାଥବାବୁ ଆସନ୍ତି । ଆଉ ତାଙ୍କ ବାପ ମା' ଜାଣିଲେ ଦୁଃଖ କରିବେ ବୋଲି ତାଙ୍କର କଥା

ଅନୁସାରେ ମୁଁ ଚାକରବାକରଙ୍କୁ ମଧ୍ୟ ମନା କରି ଦେଇଥିଲି ଯେ, ଶ୍ରୀନାଥବାବୁଙ୍କ ଆସିବା କଥା ସେମାନେ ଯେପରି କାହାରିକୁ ନ କହନ୍ତି । ତାହାହେଲେ ଏ ଲୋକଟା ଜାଣିଲା କିପରି ?

ସମସ୍ତେ ଜାଣିଲାଭଳି କଥା ଯଦି ହୋଇଥାନ୍ତା, ତାହେଲେ ତ ଶ୍ରୀନାଥବାବୁଙ୍କ ବାପା ମାଆଙ୍କ କାନକୁ ନିଶ୍ଚୟ ଯାଇସାରନ୍ତାଣି । ତା' ଯେତେବେଳେ ହୋଇନାହିଁ, ସେତେବେଳେ ଅନୁମାନ କରିନେବାକୁ ହେବ ଯେ, ଏ କଥା ସମସ୍ତେ ଜାଣନ୍ତି ନାହିଁ । ଆଉ ଯେ ଜାଣେ, ସେ ଏ କଥା ସାଧାରଣରେ ପ୍ରକାଶ କରିନାହିଁ । ଏପରି ଲୋକ କିଏ ? ତାହେଲେ ନିଶ୍ଚୟ ଶ୍ରୀନାଥବାବୁଙ୍କର କେହି ବିଶ୍ୱାସୀ ବନ୍ଧୁ, ଯେ କି ମୋର ମଧ୍ୟ ଗ୍ରାହକ । ଏପରି କିଏ ଅଛି, ଭାବି ଦେଖିଲି । ଏକମାତ୍ର ଗୋପସୁନ୍ଦରବାବୁ ଡେପୁଟି ଶ୍ରୀନାଥବାବୁଙ୍କର ସାଙ୍ଗ, ଆଉ ମୋର ମଧ୍ୟ ଗ୍ରାହକ । ଏତେଗୁଡ଼ାଏ କଥା ମୋ ମନରେ ଖେଳିଗଲା, ଅଥଚ ଏଣେ ଶ୍ରୀନାଥବାବୁଙ୍କ ସାଙ୍ଗରେ ବାଜେଗପ ଚାଲିଛି । ମୁଁ କଥାଟା ପୁଣି ସେଇଆଡ଼େ ବୁଲାଇ ନେଇ ପଚାରିଲି— "ତା'ହେଲେ ଗୋପବାବୁ ଆପଣଙ୍କୁ ଏ କଥା କହିଛନ୍ତି ?"

ସେ ଆଶ୍ଚର୍ଯ୍ୟ ହୋଇ କହିଲେ—"ଗୋପବାବୁ ? କୋଉ ଗୋପବାବୁ ?" ମୁଁ କହିଲି— "ଭାରି ସୁନାପିଲା ତ ! କିଛି ଯେପରି ଜାଣନ୍ତି ନାହିଁ । ଗୋପସୁନ୍ଦରବାବୁ ଡେପୁଟିଙ୍କ ସାଙ୍ଗରେ ତ ପାଣି ଗଳେନାହିଁ, ଆଉ ମୋ ଆଗରେ ଥଟ୍ଟା କାହିଁକି ?" ସେ ଆକାଶରୁ ପଡ଼ିଲାପରି ହୋଇଯାଇ କେତେବେଳଯାଏ ରହିଗଲେ । ତା'ପରେ କହିଲେ, "ଗୋପ, ତାକୁ ତୁମେ ଚିହ୍ନ ? ସେ ବଦ୍‌ମାସ ତୁମ ପାଖକୁ ଆସେଟିକି ? ଉପରେ ତ କେତେ ଋଷି ପରି ଦେଖାଇହୁଏ— ଯେପରି ଏ ସବୁ ବିଷୟରେ କିଛି ଜାଣେ ନାହିଁ—ଆଉ ଭିତରେ ଭିତରେ ପୁଣି ଏମିତି ? ରହ, ରହ, ସେ ଚୋରକୁ କାଲି ଦେଖିଲେ ତା' ମାଗୁରନିଶ ଉପାଡ଼ି ଆଣିବି !" ଯେ କୌତୁକଟା ହେବ, ସେ କଥା ଭାବି ତାଙ୍କ ମୁହଁରେ ଆନନ୍ଦ ଉଛୁଳି ଉଠିଲା; କିନ୍ତୁ ମୁଁ ଠିକ୍ କରିନେଲି, ଗୋପବାବୁ ତାଙ୍କୁ ଏକଥା କହିନାହାନ୍ତି । ତାହେଲେ ଆଉ କହିଲା କିଏ ? ଯା ମଧ୍ୟରେ ଯେତେ ଗ୍ରାହକ ମୋ ଘରକୁ ଆସିଥିଲେ, ସେ ସମସ୍ତଙ୍କ କଥା ଭାବିନେଲି—ସେମାନେ କେହି ଯେ ଗୋପବାବୁଙ୍କର ବା ଶ୍ରୀନାଥବାବୁଙ୍କର ସାଙ୍ଗ ଓ ବିଶ୍ୱାସୀ ନୁହନ୍ତି, ସେ ବିଷୟରେ ମୋର ସନ୍ଦେହ ରହିଲା ନାହିଁ । ତେବେ ସେ କିଏ ?

ମୁଁ କହିଲି, "ଦେଖ, ସାବଧାନ ! ଗୋପବାବୁ ମୋ ଘରକୁ ଆସନ୍ତି—ଏ କଥା ତୁମେ ମୋଠଉଁ ଶୁଣିଛ ବୋଲି ଯେବେ କହିବ, ତାହେଲେ ମୁଁ ମଧ୍ୟ ତୁମ ଗଳାନିଶ ଉପାଡ଼ିଦେବି । କାରଣ, ଆମ ବ୍ୟବସାୟରେ ଆମେ ଆମର କୌଣସି ଗ୍ରାହକ କଥା ଅନ୍ୟ ଗ୍ରାହକ ଆଗରେ କହୁନାହିଁ । ସେତିକି ହେଲା ଆମର ଗୁମର୍ ।" ଆଉ ଅନ୍ୟାନ୍ୟ ଅନେକ କଥା ହେଲା । ଶ୍ରୀନାଥବାବୁ ଚାଲିଗଲେ । ମୁଁ ଅନେକ ସମୟ ଏ କଥା ବସି ଭାବିଲି । ବହୁତ ଏପଟ ସେପଟ ହେବା ପରେ ଠିକ୍ କଲି ବୋଧହୁଏ କେହି ଗୁପ୍ତରେ ମୋ ଘରର ସମସ୍ତ ସନ୍ଧାନ ନେଉଛି । ଆଉ ଶ୍ରୀନାଥବାବୁଙ୍କ ମନରେ ଏ ସନ୍ଦେହ ଜାଗ୍ରତ କରି ଏ ବାବୁଙ୍କୁ ମୋ ଘରୁ ତଡ଼ିବାରେ ତା'ର କୌଣସି ନା କୌଣସି ଉଦ୍ଦେଶ୍ୟ ଅଛି । ଏହି ଉଦ୍ଦେଶ୍ୟ ସହିତ ଏ ବାବୁଙ୍କ ଉଦ୍ଦେଶ୍ୟରେ କିଛି ସମ୍ବନ୍ଧ ଅଛି କି ?

●

# ଛଅ

ତହିଁ ଆରଦିନ ଦି'ପହରେ ମୁଁ ଖାଇ ଶୋଇଛି, ଆମର ଏ ବାବୁ ଝଡ଼ତୋଫାନ ପରି ହଠାତ୍ ଆସି ମୋ ଘରେ ହାଜର । କୁହାନାହିଁ, ବୋଲାନାହିଁ—ଏପରି ଭାବରେ ଆସିବାର ଦେଖି ମୁଁ ଟିକିଏ ଚମକିପଡ଼ିଲି । ତାଙ୍କର ମୁଖ ଉଜ୍ଜ୍ୱଳ, ଚକ୍ଷୁ ଦୀପ୍ତିମାନ୍ । ଉତ୍ତେଜନାର ସବୁ ଲକ୍ଷଣଗୁଡ଼ିକ ତାଙ୍କ ମୁହଁରେ ଫୁଟିଉଠୁଛି । ସେ ଆସିଲାମାତ୍ରକେ କହିଲେ—"ଦେଖିଲଣି ଏ ପ୍ରବନ୍ଧଟା ? ମୁଁ ଯାହା ସେଦିନ ତୁମକୁ ବେଶ୍ୟା ଓ ପତିତାମାନଙ୍କ ସମ୍ବନ୍ଧରେ କହିଥିଲି—ଏ ପ୍ରବନ୍ଧଟି ତାକୁ ବେଶ୍ ପରିଷ୍କାର ଭାବରେ ବୁଝାଇ ଦେଇଛି । ଶୁଣ ସେ ଲେଖିଛନ୍ତି—'ବେଶ୍ୟାମାନଙ୍କର ବୃତ୍ତି କ'ଣ ? ପରପୁରୁଷ ସହିତ ବସବାସ ।' ଯେଉଁମାନେ କହନ୍ତି, ବେଶ୍ୟାମାନେ ଅର୍ଥ ନିମନ୍ତେ ଯାହାକୁ ଇଚ୍ଛା ତାକୁ ଆତ୍ମବିକ୍ରୟ କରନ୍ତି, ସମ୍ମାନ ବଳିଦେଇ ଉଦର ରକ୍ଷା କରନ୍ତି, ସେମାନେ ଭ୍ରାନ୍ତ । ବେଶ୍ୟା ତା'ର ଗ୍ରାହକମାନଙ୍କୁ ସ୍ନେହ କରେ ନାହିଁ, ଆତ୍ମସମର୍ପଣର ଫଳ ସ୍ୱରୂପ ସହବାସଲବ୍ଧ ସୁଖ ଆମୋଦ ପାଏ ନାହିଁ । ସେ ତାକୁ ଭାବେ, ଗୋଟାଏ ଅସ୍ପୃହଣୀୟ କର୍ତ୍ତବ୍ୟ । ଏପରି ସହବାସର ଅର୍ଥ କ'ଣ ? କେବଳ ଦୈହିକ କର୍ମ; ଏଥିରେ ଚିତ୍ତର, ହୃଦୟର, ମନର ବା ଆତ୍ମାର କୌଣସି କ୍ରିୟା ନାହିଁ । କେତୋଟି ଉଦାହରଣ ଦେଲେ ଏ ବିଷୟଟି ସ୍ପଷ୍ଟ ପ୍ରତୀୟମାନ ହେବ ।

"ମହାତ୍ମା ଗାନ୍ଧୀ କର୍ତ୍ତବ୍ୟ ଅନୁରୋଧରେ ଗୋବଧ କରିପାରନ୍ତି । ସେଥି ନିମନ୍ତେ ତାଙ୍କୁ ନୃଶଂସ କହିବା ଯେପରି ଦୋଷାବହ, ଫରାସୀନେତା ରବସପିୟରେ ଓ ଲଫାୟତ ପ୍ରଭୃତିଙ୍କୁ ରକ୍ତ-ପିପାସୁ ନରରାକ୍ଷସ ବୋଲି କହିବା ଯେପରି ଭ୍ରମପୂର୍ଣ୍ଣ, ପରଶୁରାମଙ୍କୁ ମାତୃହନ୍ତା କହିବା ଯେପରି ଅସ୍ୱାଭାବିକ, ବେଶ୍ୟାକୁ ମଧ୍ୟ ଆତ୍ମହୀନା ରାକ୍ଷସୀ କହିବା ସେହିପରି ଦୂଷଣୀୟ । ଏମାନଙ୍କର ଏ ସମସ୍ତ କାର୍ଯ୍ୟ ଭ୍ରମପୂର୍ଣ୍ଣ ହୋଇପାରେ; କିନ୍ତୁ ନରକମୟ ନୁହେଁ । କଥାରେ ଅଛି, 'ପେଟ ପୋଷ, ନାହିଁ ଦୋଷ' । ଘଟଣା-ପରମ୍ପରାର ଘାତ-ପ୍ରତିଘାତରେ ମନୁଷ୍ୟ ଏପରି ଏକ ଅବସ୍ଥାରେ ଆସି ଉପସ୍ଥିତ ହୁଏ—ଯେତେବେଳେ ତା'ର ଶକ୍ତି ଓ ଉପାଦେୟତା ଦୃଷ୍ଟିରେ ସେ ହୁଏତ କୌଣସି ଦୂଷଣୀୟ କାର୍ଯ୍ୟ କରେ, ନହେଲେ ମୃତ୍ୟୁବରଣ କରିନେବ । ମୋ ମତରେ ଏପରି ଅବସ୍ଥାରେ ତା'ର ଦୂଷଣୀୟ କାର୍ଯ୍ୟ କରିବାହିଁ ଶ୍ରେୟଃ । ଈଶ୍ୱର-ପ୍ରଦତ୍ତ ଏ ଜୀବନ ରକ୍ଷା କରିବାର କିଛିମାତ୍ର ଉପାୟ ଥିବା ପର୍ଯ୍ୟନ୍ତ ସେ ଜୀବନକୁ ସାମାନ୍ୟ ଲୋକନିନ୍ଦା ଭୟରେ ବା ଚକ୍ଷୁଲଜ୍ଜା ଖାତିରରେ ବିସର୍ଜନ କରିବା ଲୋକଚକ୍ଷୁରେ ସ୍ପୃହଣୀୟ ହୋଇପାରେ; କିନ୍ତୁ ଭଗବାନଙ୍କ ଚକ୍ଷୁରେ ମହାପାପ !!"

ସେ ଏଇଭଳି ପଢ଼ିଲାବେଳକୁ ମୋର ହୃଦୟରେ କି ଏକ ଆନନ୍ଦ ଆସି ପହଞ୍ଚିଲା । ମୋ କାର୍ଯ୍ୟ ସପକ୍ଷରେ ଏପରି ଯୁକ୍ତିଯୁକ୍ତ କଥାସବୁ ଯେ କହିବାର ଅଛି, ତାହା ଶୁଣି ମୋ ହୃଦୟରେ ବିସ୍ମୟ ପୂରିଉଠିଲା । ମୁଁ ଉଠି ଠିଆହେଲି । ସେହି ଶବ୍ଦରେ ତାଙ୍କର ଧ୍ୟାନ ଭାଙ୍ଗିଗଲା—ସେ ମୋ ଆଡ଼କୁ ଚାହିଁଲେ । ଏତେ ଦିନେ ମୁଁ ତାଙ୍କ ଚାହାଣିରେ ଲାଳସା ଦେଖିଲି । ମୋର ଅନ୍ତରାତ୍ମା ଥରିଉଠିଲା । ବୁଝିଲି, ମୁଁ ଜାଣିଶୁଣି ଏହାଙ୍କ ମନରେ ଯେ ଇଚ୍ଛା

ଜନ୍ମାଇଛି, ତାକୁ ଭଲ ଦିଗରେ ଟାଣିନେବା ପାଇଁ ମତେ ଯଥାସାଧ୍ୟ ଯତ୍ନ କରିବାକୁ ପଡ଼ିବ । ସେ କହିଉଠିଲେ—"ଅନେକ ଦିନରୁ ମୁଁ ଏଇ କଥା ଭାବୁଛି; ଭାବି, ଯାହା ଉଚିତ ତାହା ମଧ୍ୟ ଠିକ୍ କରିଛି । ତେବେ ଏ ମତରେ ମୁଁ ଏକା । ଅନ୍ୟର କି ମତ, ସମାଜ ଏ ସମ୍ବନ୍ଧରେ କଅଣ ଭାବେ, ମୁଁ ଜାଣି ନଥିଲି । ସେହି ହେତୁରୁ ଚିତ୍ତରେ ଟିକିଏ ଦ୍ୱିଧା ଥିଲା; ଆଜି ସେତିକି ଯାଇଛି । ବଡ଼ ସୁଖର କଥା, ଆଉ ତ କୌଣସି ବାଧା ନାହିଁ; ଆସ ଆସ, ତେବେ ପ୍ରିୟତମ...!" ଏତିକି କହି ସେ ଜିଭ କାମୁଡ଼ିପକେଇଲେ, ସେଠାରୁ ପଳାଇଗଲେ, ଗଲାବେଳେ ବହିଖଣ୍ଡି ପକାଇ ଦେଇଗଲେ । ମୁଁ ତ ପ୍ରଥମେ ଟିକିଏ ଭୟ ପାଇଯାଇଥିଲି; ପରେ ତାଙ୍କର ଏ ଚିତ୍ତବଳ ଦେଖି ମୋ ମନରେ ଆଶ୍ୱସ୍ତି ଆସିଲା । ମୁଁ ବହିଖଣ୍ଡି ଉଠାଇନେଲି । ସୂଚୀପତ୍ର ଦେଖୁ ଦେଖୁ ଦେଖିଲି ଗୋଟାଏ ପ୍ରବନ୍ଧ—"ସାମାଜିକ ଦାରୁଣତା—ବାରବିଳାସିନୀ", ଲେଖକ—ଗୋପେନ୍ଦ୍ର କିଶୋର ମହାପାତ୍ର, ବି.ଏ. ।

ମୁଁ ଚମକିଉଠିଲି । ମୋର ପଞ୍ଚପ୍ରାଣ କି ଗୋଟାଏ ଧକ୍କା ଖାଇ ଯେପରି ମାଟିରେ ମିଶିଗଲା । ଗୋପେନ୍ଦ୍ର କିଶୋର ମହାପାତ୍ର, ବି.ଏ. ! ଏ ଯେ ମୋ ଭାଇର ନାମ !! ମୋ ଭାଇ ? ମୋର ଆଉ ଭାଇ କାହିଁ ? ମୁଁ ଯେ ବେଶ୍ୟା, ସମାଜର ବାହାରେ, କୁଟୁମ୍ବ-ସୁଖ ମୋର ଆସିବ କେଉଁଠାରୁ ? ମୁଁ ଆଜି ଯଦି ଯାଇ କାହାରିକୁ ମୋର ସମସ୍ତ ସମ୍ପଦ ଦେଇ କହେ ଯେ, ତୁମେ ମୋର ଭାଇ—ତା'ହେଲେ ମଧ୍ୟ ସେ ମୁହଁ ଫେରାଇ ନେବ, ଘୃଣାରେ ମୋର ସମ୍ପଦକୁ ପଦାଘାତ କରିଯିବ । ମୋର ଭାଇ ? ମୁଁ ଯେ ସମାଜର ପାପ ! କୁଟୁମ୍ବର କଳଙ୍କ ! ମତେ ସ୍ୱୀକାର କରିବ କିଏ ? ଗ୍ରହଣ କରିବ କିଏ ? ଯାଉ, ସେ କଥା ଭାବି ମୋର କି ଲାଭ ? ଗୋପ କଥା ଆଉ ଭାବିବି ନାହିଁ । ସେ ସୁଖରେ ରହୁ, ଘରଦ୍ୱାର କରୁ, ମହାପ୍ରଭୁ ତାକୁ ବଞ୍ଚାଇ ରଖନ୍ତୁ—ଏତିକି ମୋର ପ୍ରାର୍ଥନା ।

କିନ୍ତୁ ମୋ ମନ କାହିଁକି ତେଣୁ ଆଉ ଫେରିଲା ନାହିଁ; ଆଖି କାହିଁକି ସେହି ଛପା କେତୋଟି ଅକ୍ଷରରୁ ଆଉ ଟଳିବାକୁ ଇଚ୍ଛା କଲା ନାହିଁ । ମୁଁ ବସି ବସି ସମୁଦାୟ ପ୍ରବନ୍ଧଟି ପଢ଼ିଲି । ପଢ଼ି ଆଶ୍ଚର୍ଯ୍ୟ ହେଲି—ଗୋପ ଏପରି ପ୍ରବନ୍ଧ ଲେଖିପାରେ ! ପଢ଼ୁ ପଢ଼ୁ କେତେ ଥର ମୁଁ କାନ୍ଦିଛି । ଅବିକଳ ମୋ ଜୀବନର ଚିତ୍ର ଦେଇ ସେ ବୁଝାଇବାକୁ ଚେଷ୍ଟା କରିଛି । ଅତ୍ୟାଚାର ଭୋଗି ଭୋଗି, ଅକାରଣରେ କଷ୍ଟ ସହି ସହି, ଅଳ୍ପବୟସର କୋମଳ ହୃଦୟ—କୋମଳ ମନ—ଅଦମ୍ୟ ବିବେକର ଯୁବତୀ ଯଦି ସମାଜନିର୍ଦ୍ଦିଷ୍ଟ ପଥରୁ ବିଚଳିତ ହୁଏ—ତାହେଲେ ସେ ଘୃଣାର ପାତ୍ରୀ ହୋଇପାରେ ନାହିଁ । ସେ ଦୋଷ ସମାଜର । ସମାଜ ଏ ଦୋଷର ପ୍ରାୟଶ୍ଚିତ ସ୍ୱରୂପ ସେ ଯୁବତୀଙ୍କୁ ସତ୍‌ପଥରେ ଆଣିବାକୁ ଚେଷ୍ଟା କରିବା ଉଚିତ । ତା'ର ବାଟରେ କଣ୍ଟା ପକାଇବା, ପତିତାକୁ ଚିରପତିତା କରି ରଖିବା ନିତାନ୍ତ ଭୁଲ୍ ।

ଗୋପ ମୋର ଏ ଦୁଃଖ-କଷ୍ଟ ଜାଣିଲା କିପରି ? ସେ ଏସବୁ ବିଷୟରେ ଭାବିବାକୁ ଗଲା କାହିଁକି ? ନିଶ୍ଚୟ ମୋ କଥା ତା' ମନରେ ଖୁବ୍ ଲାଗିଛି । ସେ ମୋ ଶାଶୁଘର ଗାଆଁର କାହାରି ପାଖରୁ ମୋ ଜୀବନର ସବୁ ଦୁଃଖ କଷ୍ଟ ଜାଣିଛି । ଜାଣିପାରି ସେସବୁ ସମ୍ବନ୍ଧରେ ସେ ଭାବି ଭାବି ଏପରି ଏକ ସିଦ୍ଧାନ୍ତରେ ପହଞ୍ଚିଛି । ବୋଧହୁଏ ମୋ ଲାଗି ତା'ର ପ୍ରାଣ ଆକୁଳ

ହୋଇଛି—ମୁଁ ଚିହ୍ନାଦେଲା ମାତ୍ରେ ସେ ମୋତେ 'ନାନୀ' ବୋଲି ସାଉଁଟିନେବ—ନେବ ନାହିଁ ? ପିଲାଦିନର ଆମର କେତେ ଧୂଳିଖେଳ, କଳିକଜିଆ, ସାଙ୍ଗସୁଖ—ସେ କ'ଣ ଭୁଲିଯିବଣି ? ସେ ମୋଠାରୁ ଦି'ବର୍ଷ ମାତ୍ର ସାନ ! ମତେ ଏକ୍ଷଣି ବାଇଶ ବର୍ଷ; ତାକୁ କୋଡ଼ିଏ ହେବ । ସେ କେତୁଟିଏ ହୋଇଯିବଣି । ଥରେ ହେଲେ ତାକୁ ଦେଖନ୍ତି ! ତାକୁ କ'ଣ ଚିହ୍ନାଦେବି ? ସେ ଯେତେବେଳେ ବେଶ୍ୟାମାନଙ୍କ ସମ୍ବନ୍ଧରେ ଏପରି କଥା ସବୁ ଲେଖିଛି, ସେ କ'ଣ ମୋ ଭାଇ ଗୋପ ? ଏ ସଂସାରରେ କ'ଣ ଗୋପେନ୍ଦ୍ର କିଶୋର ମହାପାତ୍ର ଆଉ କେହି ନାହାନ୍ତି ? ଗୋପ କ'ଣ ବି·ଏ· ପର୍ଯ୍ୟନ୍ତ ପଢ଼ିବଣି ? ଦେଖି—ମୁଁ ଯେତେବେଳେ ଏଠାକୁ ଆସିଲି, ସେତେବେଳେ ସେ ଏଣ୍ଟ୍ରାନ୍‌ସ ଦ୍ୱିତୀୟ ଶ୍ରେଣୀରେ ପଢୁଥିଲା । ଏଣ୍ଟ୍ରାନ୍‌ସ ବର୍ଷେ, ଏଫ୍·ଏ· ଦୁଇବର୍ଷ, ବି·ଏ· ଦୁଇବର୍ଷ—ହଁ, ହେଲା ତ ! ତେବେ ଏ ନିଶ୍ଚୟ ମୋରି ଗୋପ !

ଏହିପରି ବସି ଭାବୁଛି, ଏତିକିବେଳେ ମାଳତୀ ଆସି କହିଲା—"ଆଗୋ, ଦେଖିଲଣି ଗୋ, ଗୁଡ଼ାଏ ପୁଲିସବାଲା କାହିଁକି ଆସି ଆମ ଦୁଆରେ ଠିଆହୋଇଛନ୍ତି !" ମୁଁ ଚମକି ଉଠିଲି—ପୁଲିସବାଲା ମୋ ଦୁଆରେ ! କାହିଁକି ? ମୁଁ ଝରକା ଫିଟାଇ ଚାହିଁଲି—ଦାଣ୍ଡରେ ତିନି ଚାରିଜଣ ପୋଲିସ ସିପାହି ଠିଆହୋଇଛନ୍ତି । ମୁଁ ଓହ୍ଲାଇଗଲି । ଏ ବାବୁଙ୍କ ଘର ଭିତରେ କ'ଣ କଥାବାର୍ତ୍ତାର ସ୍ୱର ଶୁଭିଲା । ମୁଁ ତାଙ୍କ ଘର ପାଖକୁ ଯାଇ ଦୁଆରମୁହଁରେ ହୋଇଛି, ଶୁଣିଲି, ସେ କହୁଛନ୍ତି—"ମୁଁ ଚମ୍ପଳା ଗ୍ରାମର ଲୋକ ।" ଆଉ ଜଣେ କିଏ—ମନମୋହନବାବୁ ଇନିସ୍‌ପେକ୍ଟରଙ୍କ ପାଟିଭଳି ଶୁଭିଲା—ପଚାରିଲେ—"ଏଠିକି କାହିଁକି ଆସିଛନ୍ତି ?"

ବାବୁ : ଏଇ, ବୁଲାବୁଲି କରି ।

ମନ : ବୁଲାବୁଲି କରି ଆସିଲେ ତ, ବେଶ୍ୟାଘରେ ରହିଲେ କାହିଁକି ? କଟକ ସହରରେ କ'ଣ ଭଡ଼ାଘର ଅପୂର୍ବ ଥିଲା ?

ବାବୁ : ନା, ସେ କଥା ନୁହେଁ ଯେ, ଗରିବ ମଣିଷ, ଭଡ଼ାଟଙ୍କା ପାଇବି କେଉଁଠୁ ? ଆସି ୟା ଘରେ ରହିଲି ମାଗଣା ।

ମନ : ଗରିବ ଲୋକର କଟକ ଦେଖିବାର ସଉକି କାହିଁକି ?

ବାବୁ : ଗରିବ ହେଲେ କ'ଣ ସଉକି ହେବା ପେନାଲକୋଡ଼ ଭିତରେ ?

ମନମୋହନବାବୁ ନିଜର ଭ୍ରମ ବୁଝିପାରି ପଚାରିଲେ—"ଓ, ତୁମେ ପେନାଲକୋଡ଼ କଥା ଜାଣ ? ତାହେଲେ ତୁମ ଘର କେଉଁଠି କହିଲ ?"

ବାବୁ : ଚମ୍ପଳା ଗାଁରେ ?

ମନ : ଚମ୍ପଳା ଗାଁରେ ? ଚମ୍ପଳା ଗାଁରେ ! ସେ କେଉଁଠି ? ଗାଁ ନାଁ କ'ଣ ?

ବାବୁ ହସି ହସି କହିଲେ—"ପୁଲିସଙ୍କୁ କ'ଣ ଏ କଥା ଆଜିଯାଏ ଅଛପା ଯେ, ମତେ ପୁଣି କହିବାକୁ ପଡ଼ିବ ?"

ମୁଁ ଦେଖିଲି, ବାବୁ ଠିକ୍ ମନମୋହନବାବୁଙ୍କ ହାତରେ ଧରାପଡ଼ିସାରିଲେଣି । ବୁଝିଲି ତାଙ୍କର ଅସୁବିଧା । ନିଜର ପରିଚୟ ଦେବେ ନାହିଁ । ମୋର ଚିହ୍ନା, ଆଉ ମୋ ଗାଁରେ,

ବୋଲି କହିପକାଇଛନ୍ତି; ଅଥଚ ମୋ ଗାଁ କେଉଁଠି ଜାଣନ୍ତି ନାହିଁ । ମୁଁ ଘର ଭିତରକୁ ପଶିଯାଇ କହିଲି—"ଆରେ ମନବାବୁ ଯେ ! ଆପଣ ଆଜି କୁଆଡ଼େ ?"

ମନବାବୁଙ୍କ ମୁହଁ ସେତେବେଳକୁ ନାଲି ପଡ଼ିଗଲାଣି । ସେ ମୋ ଆଡ଼କୁ କଟମଟ କରି ଚାହିଁରହି କହିଲେ—"ତୁମେ ଏ ଲୋକଟାକୁ ଜାଣ ?"

ମୁଁ : ନିଶ୍ଚୟ, ସେ ମୋର ଲେଖାଯୋଖା ଭାଇ ଘନଶ୍ୟାମ । ମନମୋହନବାବୁ ପକେଟ ବହି ବାହାର କରିପକାଇ ଲେଖିବାକୁ ଆରମ୍ଭ କଲେ—"ଘନଶ୍ୟାମ, କ'ଣ ?"

ମୁଁ : ଘନଶ୍ୟାମ ଦାସ ।

ମନ : ବୟସ ?

ମୁଁ : ପ୍ରାୟ ୨୮ ବର୍ଷ ହେବ ।

ମନ : ଜାତି ?

ମୁଁ : କରଣ ।

ମନ : ଘର ?

ମୁଁ : ମାଧବାନନ୍ଦପୁର ।

ମନ : ଥାନା ?

ମୁଁ : ସତ୍ୟବାଦୀ ।

ମନ : ବ୍ୟବସାୟ ?

ମୁଁ : ଚାଷବାସ ।

ମନ : ତୁମେ ଠିକ୍ କରି ଜାଣ, ସେ କେବେ ଚୋରି କି ଡକେଇତି କି ଦାଗି ହେବା ଭଳି କିଛି କାମ କରିନାହାନ୍ତି ।

ମୁଁ : ସେ ଚୋରି ଡକେଇତି କରିବେ କାହିଁକି ? ତାଙ୍କର ଯେ ପଚାଶ ବାଟି ଜମି ଚାଷ !

ମନ : ପଚାଶ ବାଟି ଜମି ଚାଷ । ତେବେ ତୁମ ଘରେ ଆସି ଅଛନ୍ତି କାହିଁକି ?

ମୁଁ : ଆସିବେ ବୋଲି ମୋ ପାଖକୁ ଲେଖିଥିଲେ, ଘର ଭଡ଼ା ନେବାପାଇଁ ମଧ୍ୟ କହିଥିଲେ । ଆସିଲାଉତ୍ତାରୁ ମୁଁ କହିଲି ମୋ ଘରେ ରହ—ରହିଲେ ।

ମନ : ପାଠଶାଠ କ'ଣ ପଢ଼ିଛନ୍ତି ?

ମୁଁ : ଏଫ୍.ଏ. ପାସ୍ କରିଛନ୍ତି । କ'ଣ ୟାଙ୍କ ଉପରେ କିଛି ସନ୍ଦେହ ହେଉଛି ? ତେବେ ମୋ ଘର ଖାନତଲାସ କରିବେ ଆସନ୍ତୁ । ଚୋରିମାଲ କିଛି ନାହିଁ ।

ମନ : ହଁ, ଘର ଖାନତଲାସ କରିବାକୁ ହେବ—ଚାଲ ।

ଏହା କହି ମନବାବୁ ମୋ ପଛେ ପଛେ ବାହାରିଲେ । ମୁଁ କହିଲି—"ଖାନତଲାସ କରିବାର ଇଚ୍ଛା ଯେବେ କରନ୍ତୁ, କିନ୍ତୁ ଆପଣ ଦେଇଥିବା ସୁନାଚେନଟା, ଆଉ ସେହିଭଳି

କେତେଗୁଡ଼ିଏ ଜିନିଷ ଛଡ଼ା କିଛି ପାଇବେ ନାହିଁ । ଆଚ୍ଛା ମନବାବୁ, ଆପଣ କ'ଣ ମତେ ଏକାବେଳକେ ଭୁଲିଗଲେ ?"

ଆମେ ଆସି ବୈଠକଘରେ ପହଞ୍ଚିଲୁ । "କେତେ ଦିନ ହେଲା ଯେ ଆପଣଙ୍କ ପାଦ ଆଉ ଏ ଘରେ ପଡ଼ି ନଥିଲା"—କହି ମୁଁ ତାଙ୍କ ଆଡ଼କୁ ଟିକିଏ ଢଳିପଡ଼ିଲି—ଟିକିଏ ବାଙ୍କେଇ କରି ଚାହିଁଦେଲି । ବଟାରୁ କାଢ଼ି ପାନ ଖଣ୍ଡିଏ ତାଙ୍କ ମୁହଁ ପାଖରେ ଦେଖାଇଲି । ମନବାବୁ ସେ ହାତଟି ଧରିପକାଇ ମୁହଁ ଆଡ଼କୁ ନେଇ ପାନଖଣ୍ଡିକ ଖାଇଦେଲେ । ମୁଁ ତାଙ୍କ ହାତକୁ ଟିକିଏ ଚିପିଦେଇ ହାତରେ ହାତଟି ରଖି କଥାବାର୍ତ୍ତା ଆରମ୍ଭ କଲି ।

କଥାରେ କଥାରେ ବୁଝିଲି—କିଏ ଗୋଟିଏ ଲୋକ ପୁଲିସସାହେବ ପାଖରେ ବେନାମି ପକାଇଛି ଯେ, ମୋ ଘରେ ଜଣେ ଦାଗୀ ଭଦ୍ରଲୋକ ବେଶରେ ଆସି ଅଛି—କଟକରେ ମୋ ସାହାଯ୍ୟରେ ଚୋରି କରିବାର ଯୋଗାଡ଼ କରୁଛି । ସାହେବ ମନବାବୁଙ୍କୁ ତଦନ୍ତ କରିବାକୁ ପଠେଇଲେ; ଆଉ ତା'ର ଫଳ ଇଏ । ମୁଁ ପୂଜାପୂଜି କରି ମନବାବୁଙ୍କୁ ସନ୍ତୁଷ୍ଟ କରି ଛାଡ଼ିଲି । ଭାବିଲି, ଏ ବାବୁଙ୍କର ପରମ ଭାଗ୍ୟ ଯେ, ମନବାବୁଙ୍କ ଉପରେ ଇନ୍‌କୁଆରି ଭାର ପଡ଼ିଗଲା



## ସାତ

ତା'ପରେ ବସି ଭାବିଲି, ଏ ବେନାମୀ ଚିଠି ଦେଲା କିଏ ? ତା'ର ଉଦ୍ଦେଶ୍ୟ କଅଣ ? ମୋର କ୍ଷତି କରିବା ନା ଏ ବାବୁଙ୍କର କ୍ଷତି କରିବା ? ମୋର କ୍ଷତି କରିବାରେ କାହାର କି ଲାଭ ? କେବଳ ମୋ ବ୍ୟବସାୟର ଲୋକମାନଙ୍କ ଛଡ଼ା ମୋତେ କଟକରୁ ତଡ଼ିବା ଦ୍ୱାରା ବା ମୋର ଅନିଷ୍ଟ କରିବା ଦ୍ୱାରା ତ କାହାରି କିଛି ଲାଭ ନାହିଁ । ଆଉ ପାଞ୍ଚ ବରଷକାଳ ମୋର ବ୍ୟବସାୟିନୀମାନେ ଯେତେବେଳେ ତୁନି ହୋଇ ରହିଥିଲେ, ବର୍ତ୍ତମାନ ବିନା କାରଣରେ ମୋ ବିରୁଦ୍ଧରେ ଯିବାର ବିଶେଷ ହେତୁ କ'ଣ ? ନା, ଏ ସମ୍ଭବ ନୁହେଁ । ତା'ହେଲେ କ'ଣ ଏ ବାବୁଙ୍କର କ୍ଷତି କରିବାହିଁ ଉଦ୍ଦେଶ୍ୟ ! ପ୍ରକୃତରେ ଭାବି ଦେଖିଲେ, ଏହା ଦ୍ୱାରା ମୋର ତ କୌଣସି କ୍ଷତି ହେବ ନାହିଁ । କେବଳ ଏତିକି, ଏ ବାବୁଙ୍କ ବିଷୟରେ ମୋ ମନରେ ଗୋଟାଏ ସନ୍ଦେହ ଓ ଭୟ ଆଣିବା ଛଡ଼ା ଏହାର ମତଲବ୍ ତ ଆଉ କିଛି ନାହିଁ । ମୋ ମନରେ ସନ୍ଦେହ ଓ ଭୟ ହେଲେ ମୁଁ ୟାଙ୍କୁ ମୋ ଘରୁ ବାହାର କରିଦେବି । ଏହି କି ମୁଖ୍ୟ ଉଦ୍ଦେଶ୍ୟ ? ତାହେଲେ ବେନାମୀ ଚିଠି ଲେଖିବା ଲୋକ ଓ ଶ୍ରୀନାଥବାବୁଙ୍କୁ ପ୍ରବର୍ତ୍ତାଇବା ଲୋକ ନିଶ୍ଚୟ ଏକ । କାହିଁକି ଏ ଶତ୍ରୁତା ? ଏ ବାବୁଙ୍କର ଗୁପ୍ତ ଉଦ୍ଦେଶ୍ୟରେ ଏପରି କିଏ ଶତ୍ରୁ ଛପିରହିଛି ? ମୁଁ ୟାଙ୍କ ଉଦ୍ଦେଶ୍ୟ ସମ୍ବନ୍ଧରେ ଯାହା ଅନୁମାନ କରିଥିଲି, ସେପରି ସହଜ ଏ ବୋଧହୁଏ ନୁହେଁ । ଏଥିରେ ତାଙ୍କ ପ୍ରତି ବିଶେଷ ବିପଦ ଥିବାର ମଧ୍ୟ ସମ୍ଭାବନା । ଖାଲି ତାଙ୍କର ଯେ ବିପଦ ତାହା ମଧ୍ୟ ନୁହେଁ; ମୋର ମଧ୍ୟ ଯଥେଷ୍ଟ ବିପଦ ଅଛି ।

ତାଙ୍କୁ ଘରୁ ବାହାର କରିଦେବା ପାଇଁ ମୁଁ ଯଥେଷ୍ଟ ଇଙ୍ଗିତ ପାଇସାରିଲିଣି । ଏଣିକି ଯଦି ସେ ମୋ ଘରେ ରହନ୍ତି, ତା'ହେଲେ ଇଙ୍ଗିତ ଦେବା ଲୋକ ମୋ ପ୍ରତି ଅନିଷ୍ଟ କରିବାକୁ ଛାଡ଼ିବ ନାହିଁ । ମୁଁ ତା' ହେଲେ କ'ଣ କରିବି ? ଏହାଙ୍କୁ କହିଦିଏଁ, ଏ ମୋ ଘର ଛାଡ଼ି ଚାଲିଯାଆନ୍ତୁ । କି ଦରକାର ମୋର ଯାଙ୍କ ଲାଗି ହାଣ କୁରାଢ଼ି ବେକକୁ ନେବା ?

ମୁଁ ଏହିପରି ବସି ନାନାକଥା ଭାବୁଛି, ସେ ଦିନ ଦ୍ୱିତୀୟ ଥର ସେ ପୁଣି ଝଡ଼ ତୋଫାନ ପରି ଆସି ହାଜର ହୋଇଗଲେ ! ଆସିଲାମାତ୍ରକେ କହିଲେ—"ଏତେ ଲୋକଙ୍କର ସର୍ବନାଶ କରି ତୁମର ଆଶା କ'ଣ ମେଣ୍ଟିନାହିଁ ଯେ, ତୁମେ ପୁଣି ମୋର ଏ ଦେହ ଖଣ୍ଡକ ଉପରେ ଲୋଲୁପ ଦୃଷ୍ଟି ପକାଇବାକୁ ଉଦ୍ୟତ । ମୁଁ ତୁମର କି ଦୋଷ କରିଛି ଯେ, ମୋର ସର୍ବନାଶ ପାଇଁ ତୁମର ଏ ଜିଗର ? ତୁମର କ'ଣ ଏତେ ଟିକିଏ ହୋଇ ହୃଦୟ ନାହିଁ ? ତୁମେ କ'ଣ ଏଡ଼େ ଅନ୍ଧ ? ଦେଖିପାରୁନାହଁ, ତୁମର ଏ ମାୟାଜାଲରେ ପଡ଼ି ମୋର ଅନ୍ତରାତ୍ମା କ'ଣ ହେଉଛି ? ମୁଁ କଅଣ ଏଇଥିପାଇଁ ତୁମକୁ ଏତେ ଭଲ ଉପଦେଶ ଦେଇଥିଲି ? ତୁମର ମନରେ ଆତ୍ମବିଶ୍ୱାସ ଜନ୍ମାଇବାକୁ ଚେଷ୍ଟା କରିଥିଲି ? ଓହୋ ! କେଡ଼େ କୃତଘ୍ନ ତୁମେ ! କେଡ଼େ କୁତ୍ସିତ ତୁମେ !! ପୁଣି କେଡ଼େ ବୀଭତ୍ସ ତୁମେ ।"

ଏତିକି କହି ସେ ସେହି ଝଡ଼ବେଗରେ ସେ ସ୍ଥାନ ଛାଡି ପଳାଇଗଲେ । ମୁଁ ପ୍ରଥମେ ତ ତାଙ୍କର ଏ ରାଗ, ଏ ଗାଳି ଶୁଣି ତାଟକା ହୋଇଯାଇଥିଲି; କିନ୍ତୁ ପରେ ଭାବି ଦେଖିଲି, ସେ ଯେ ଏତେଗୁଡ଼ାଏ କଥା କହିଦେଇଗଲେ, ଅଥଚ ଥରେ ହେଲେ ମୋ ଆଡ଼କୁ ସିଧା ହୋଇ ଚାହିଁନାହାନ୍ତି ! ତାଙ୍କର ସ୍ୱରରେ ମଧ୍ୟ ଯେପରି ପ୍ରକୃତ ରାଗର ସେ କୁରାଢ଼ିଦାଢ଼ ନଥିଲା ପରି ଜଣାଗଲା । ଯେପରି ସେ ଥିଏଟରରେ ତାଙ୍କର ଘୋଷା ପାଟ୍‌ଟା ଅଭିନୟ କରିଦେଇଗଲେ । ମୁଁ ବୁଝିଲି, ଏ ବିରାଗର ଛଳନା, ଅନୁରାଗର ଶେଷ ସ୍ତର ! ନିଜ ଉପରେ ରାଗ ହୋଇଛି, ସୁତରାଂ ସେ ରାଗଟା ମୋରି ଉପରେ ସାଧିନେଲେ । ମୋ ପ୍ରତି ଅନୁରାଗ ହୋଇଛି; ସୁତରାଂ ବିରାଗର ଛଳନା କରିଗଲେ । ନିଜକୁ ଆଉ ଦବାଇବାର ଶକ୍ତି ନାହିଁ; ସୁତରାଂ ମୋ ମନରେ କ୍ରୋଧ ଜନ୍ମାଇ ମୋର ଦାୟିତ୍ୱରେ ଏ ସମ୍ବନ୍ଧ ଛିନ୍ନ କରିବାର ପ୍ରୟାସ ପାଇଁ ଉଦ୍ୟମ କରିଗଲେ । କିନ୍ତୁ ମୁଁ ତାଙ୍କର ଏ ଉଦ୍ୟମରେ ସାହାଯ୍ୟ କରିବି ନାହିଁ, ତାହେଲେ ଯେ ତାଙ୍କର ଦମ୍ଭ ଅତୁଟ ରହିଯିବ । ଯାହା ଇଚ୍ଛା ତାହା ହେଉ ପଛକେ, ମୁଁ ତାଙ୍କୁ ମୋ ଘରୁ ତ ବାହାର କରିଦେଇ ପାରିବି ନାହିଁ । ମୁଁ ଏ ବ୍ୟବସାୟରେ ରହି ମଧ୍ୟ ଆଜି ଅନୁଭବ କରୁଛି, ମୁଁ ବହୁତ ପବିତ୍ର ହୋଇଯାଇଛି । ମୋର ନିଜ ପ୍ରତି ବିଶ୍ୱାସ ଅନେକ ଗୁଣରେ ଆସିଯାଇଛି । ମୁଁ ଯେ ନରକର କୀଟ ନୁହେଁ, ଇଚ୍ଛା ଓ ସାମାନ୍ୟ କଷ୍ଟ କଲେ ଭାଗବତର 'ପିଙ୍ଗଳା' ପରେ ମୁଁ ଯେ ସ୍ୱର୍ଗଲାଭ କରିପାରିବି—ସେ ବିଷୟରେ ମୋର ଦମ୍ଭ ଅଛି । ଏ ସମସ୍ତ ଯାଙ୍କରି ହେତୁରୁ । ସେ ଯେ ମୋତେ ନରକର ଅନ୍ଧାର ପାତାଳପୁରୀରୁ ଏ ଆଲୋକରାଜ୍ୟକୁ ଟାଣିଆଣିଛନ୍ତି, ମୁଁ କ'ଣ ତାଙ୍କୁ ଏ ବିପଦ ସମୟରେ ଏପରିଭାବରେ ଛାଡ଼ିଦେଇ ପାରେ ? ନା, କଦାପି ନୁହେଁ । ତାହେଲେ ପ୍ରକୃତରେ ମୁଁ କୃତଘ୍ନ ହେବି । ସେତିକିବେଳେ ମୁଁ ଠିକ୍ କଲି—ଯାହା କିଛି ବିପଦ ଆସୁ, ମୋତେ ଏହାଙ୍କୁ ରଖିବାକୁ ପଡ଼ିବ । ଖାଲି ସେତିକି ନୁହେଁ, ସେ ଯେପରି ବିପଦରେ ନ

ପଡ଼ନ୍ତି ବା ବିପଦ ଆସିଲେ ତା'ର ଦାଉ ଯେତେ କମ୍ ଅନୁଭବ କରନ୍ତି, ସେଥିପାଇଁ ଚେଷ୍ଟା ମଧ୍ୟ ମତେ କରିବାକୁ ହେବ । କିନ୍ତୁ କିପରି ?

ମୁଁ ତ ତାଙ୍କର ଉଦ୍ଦେଶ୍ୟ ସମ୍ବନ୍ଧରେ କିଛି ଜାଣେ ନାହିଁ ! କେବଳ ଅନୁମାନ !! ଉଦ୍ଦେଶ୍ୟ ନ ଜାଣିଲେ କେତେବେଳେ କି ବିପଦ ଆସିବ, ମୁଁ କିପରି ନିଶ୍ଚୟ କରିବି ଯେ, ଯ୍ଯାଙ୍କର ସହାୟ ହୋଇପାରିବି । ନା, ଯ୍ଯାଙ୍କର ଉଦ୍ଦେଶ୍ୟ କୌଣସିମତେ, ଜୋର୍‌କରି ହେଲେ ମଧ୍ୟ, ୟାଙ୍କଠାରୁ ବାହାର କରିବାକୁ ପଡ଼ିବ । ଏହି ସିଦ୍ଧାନ୍ତ କରି ମୁଁ ତଳକୁ ଓହ୍ଲାଇଗଲି । ଦେଖିଲି, ସେ ଦୁଆର ବନ୍ଦ କରି ତାଙ୍କ ଘର ଭିତରେ । ଦୁଆରେ ହାତ ମାଇଲି । ସେ କହିଲେ—"କିଏ ?"

ମୁଁ ଉତ୍ତର ଦେଲି; କିନ୍ତୁ ସେ କିପରି ଏକ ଅଭିମାନମିଶା ସ୍ୱରରେ କହିଲେ—"ଦୂର ହୁଅ । ମୁଁ ତୁମର ସେ ପାପ ମୁହଁ ଆଉ—ନା, ନା, କ୍ଷମାକର, କ୍ଷମାକର—ମୁଁ ଦୁଆର୍ ଫିଟାଉଚି ।" ଘର ଭିତରୁ ତାଙ୍କର ଏଇ କ୍ରୁଦ୍ଧ ଗର୍ଜନ ସଙ୍ଗେ ସଙ୍ଗେ କ୍ଷମାଭିକ୍ଷାର କରୁଣ ସ୍ୱର ଶୁଣି ମୁଁ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲି । ସଙ୍ଗେ ସଙ୍ଗେ ସେ ଦୁଆର ଫିଟାଇଦେଲେ । ମୁଁ ଦେଖିଲି—ତାଙ୍କର ମୁଖ ବଡ଼ ବିଷର୍ଣ୍ଣ । ମୁଁ ଘରକୁ ପଶିଯିବା ମାତ୍ରେ, ସେ ଆସି ମୋ ହାତ ଦିଓଟି ଧରିପକାଇ କହିଲେ—"ମତେ କ୍ଷମା କର, ଚଞ୍ଚଳା ! ମୁଁ ବିନା କାରଣରେ ତୁମକୁ ବହୁତ ଗାଳିଦେଇ ଆସିଲି । ଏ ଗଲା କେତେଦିନ ମୋର ମୁଣ୍ଡ ଆଦୌ ଠିକ୍ ନାହିଁ । ମୁଁ କେତେବେଳେ କ'ଣ କହୁଛି, ସେ ସମ୍ବନ୍ଧରେ ମୋର କୌଣସି ଧାରଣା ରହୁନାହିଁ । ମତେ କ୍ଷମା କର—କହ ଥରେ 'କ୍ଷମା କଲି' ବୋଲି । ତୁମେ ତ ମତେ ତୁମ ଘରୁ ବାହାରିଯିବାକୁ କହିବା ପାଇଁ ଆସିନାହଁ ? ନା, ନା, ତା' କର ନାହିଁ । ମୁଁ ଜବାବ୍ ଦେଉଛି ଆଉ କେବେ ତୁମକୁ ବିରକ୍ତ କରିବି ନାହିଁ ।"

ଏତିକି କହି ସେ ଏପରି କରୁଣଭାବରେ ମୋ ଆଡ଼କୁ ଚାହିଁରହିଲେ ଯେ, ମୋ ଆଖିରେ ଲୁହ ଆସିଗଲା । ମୁଁ ସେ ଲୁହ ପାପୁଲିପିଠିରେ ଘଷିଦେଇ କହିଲି—"ମୁଁ ଆପଣଙ୍କୁ କ୍ଷମା କରିଛି । ମୁଁ ଜାଣିଛି, ଆପଣଙ୍କ ମୁଣ୍ଡ ଠିକ୍ ନାହିଁ । ଆଉ ଆପଣଙ୍କୁ ତଡ଼ିଦେବା କଥା ଆପଣ ମୋଟେ ମନରେ ଆଣନ୍ତୁ ନାହିଁ; ବରଂ ଆପଣ ଯଦି ଇଚ୍ଛାକରି ଚାଲିଯାଆନ୍ତି, ତାହେଲେ ମଧ୍ୟ ମୁଁ ଛାଡ଼ିଦେବି ନାହିଁ । ଆପଣଙ୍କ କଥାବାର୍ତ୍ତା, ମହତ୍ ଉପଦେଶ ଓ ଉଦାର ଉଦାହରଣ ଦେଖି ମୋର ଜୀବନ ପବିତ୍ର ହୋଇଆସୁଛି । ମୁଁ ଏ ବ୍ୟବସାୟ ଛାଡ଼ିଦେବାର ଯୋଗାଡ଼ କରୁଛି । ଏ ସମୟରେ ଆପଣ ଚାଲିଗଲେ ତ ମୋର ସବୁ ଉଦ୍ୟମ ଭଣ୍ଡୁର ହୋଇଯିବ । ମୁଁ କହିବାକୁ ଆସିଲି ଯେ, ଆଜି ରାତିରେ ଆପଣ ମୋ ଘରେ ଖାଇବେ । ମୁଁ ଆଜି କୌଣସି ବାହାନା ଶୁଣିବି ନାହିଁ । ପ୍ରତିଜ୍ଞା କରନ୍ତୁ, ଆସିବେ ।"

ସେ ଆନନ୍ଦରେ ଅଧୀର ହୋଇ ମୋ କଥାରେ ସ୍ୱୀକାର କଲେ । ତା'ପରେ ମୁଁ ସେଠାରୁ ଚାଲିଆସିଲି । ଦେଖିଲି—ମୋର ବିଜୟ ସମ୍ପୂର୍ଣ୍ଣ ।



# ଆଠ

ସେଦିନ ରାତିରେ ସେ ଆସିଲେ । ବହୁତ ଆମୋଦ-ପ୍ରମୋଦ ହେଲା । ମୁଁ ମୋର ହୃଦୟ ମନ ପ୍ରାଣ ଦେଇ ଗୀତ ଉପରେ ଗୀତ ଗାଇଲି । ସେ ପାଗଳ ପରି ହୋଇ ଉଠିଲେ । ମୁଁ ଯେତେବେଳେ ମୋର ସେହି ଚିରପ୍ରିୟ ଗୀତଟିର ମଝିରେ, ସେତେବେଳେ ବାସ୍ତବିକ୍ ମୁଁ ମଧ୍ୟ ଗୀତର ଭାବରେ ଓ ସଙ୍ଗୀତର ମୂର୍ଚ୍ଛନାରେ ତନ୍ମୟ—

"ପରାଣେ ବାଜିବ ପ୍ରଣୟ-ବଂଶୀ
ପିନ୍ଧିଲା ବସନ ପଡ଼ିବ ଖସି,
ଫିଟିବ କୁନ୍ତଳ ଫୁଲିବ କଲ୍ଲୋଳ
ହୃଦୟ ମଝିରେ ମନ ଉଲ୍ଲସି ।"

ମୁଁ ଗାଉଛି, ସେ ହଠାତ୍ ଆସି ମୋର ହାତଟି ଧରିପକାଇଲେ । ମୋର ଧ୍ୟାନ ଭାଙ୍ଗିଲା । ହାତରୁ ଝନ୍‌ଝନ୍ ସ୍ୱରରେ ବୀଣା ଖସିପଡ଼ିଲା । ମୂକପରି ମୁଁ ତାଙ୍କ ଆଡ଼କୁ ଚାହିଁ ବସିଲି । ସେ କହିଲେ—"ପ୍ରିୟ-ତ-ମେ, ହୃ-ଦ-ୟେ-ଶ୍ୱ-ରୀ... ।"—ଆଉ କିଛି କହିପାରିଲେ ନାହିଁ । ଲାଳସାର ବେଗରେ ତାଙ୍କର ସମୁଦାୟ ଦେହ ଥରଥର ହୋଇ କମ୍ପୁଥିଲା, ସ୍ୱର ରୁଦ୍ଧ ହୋଇଆସୁଥିଲା । ମୁଁ ଆସ୍ତେ ଆସ୍ତେ ଅତି ଯତ୍ନରେ ତାଙ୍କ ହାତରୁ ମୋ ହାତ ଖସାଇ ଆଣି ତାଙ୍କ ଆଡ଼କୁ ଟିକିଏ ଉଳିପଡ଼ି କହିଲି—"ବାବୁ !"

ସେ ଆହୁରି ଉତ୍‌କ୍ଷିପ୍ତ ହୋଇଉଠିଲେ । ମତେ ତାଙ୍କର ବଳିଷ୍ଠ ବାହୁଯୁଗଳରେ ବାନ୍ଧିପକାଇ ମୋର ମୁହଁ ଆଡ଼କୁ ମୁହଁ ଆଣୁଥିଲେ । ମୁଁ ପଛେଇ କରି ଆଉଜିପଡ଼ି କହିଲି, "ଛି ! ବାବୁ, ଆପଣ କ'ଣ ଆପଣଙ୍କ ଆଦର୍ଶ ଭୁଲିଗଲେ ? ମୁଁ ଯେ ସାମାନ୍ୟ ବେଶ୍ୟାଟାଏ ! ଏକାବେଳକେ ଆପଣଙ୍କର ଅନୁପଯୁକ୍ତ !"

ସେ : ମୋର ଆଦର୍ଶ ? ମୋର ଆଦର୍ଶ ଆଉ ନାହିଁ ଚଞ୍ଚଳା ! ସେ ଗର୍ବ ମୋର ଯାଇଛି । ମୁଁ ଯେ ଋଷିତ୍ୱ, ନୈତିକ ବଳର ଦମ୍ଭ କରୁଥିଲି, ସେ ଆଉ ମୋର ନାହିଁ । ବୁଝୁଛି, ମୁଁ ଭ୍ରାନ୍ତ; ମୁଁ କେତେଥର ମୋର ଆଦର୍ଶ ଅନୁସାରେ ଅନ୍ୟମାନଙ୍କୁ ବିଚାର କରି ସେମାନଙ୍କୁ ଧିକ୍କାର ଦେଇଛି—ମୋର ନିଷ୍ଠୁର ନିର୍ମମ ଏକଦେଶୀ ନୀତିର ଦାଉରେ କେତେ ନିରପରାଧ ଅସହାୟ ଲୋକଙ୍କ ମନରେ ଦାରୁଣ ଯନ୍ତ୍ରଣା ଆଣିଛି; କିନ୍ତୁ ଆଜି ବୁଝୁଛି, ମୁଁ ସେ ସମସ୍ତଙ୍କଠାରୁ ମହାହୀନ । ଅନ୍ୟମାନଙ୍କର ଆତ୍ମସଂଯମ ଶିଖିବାର ଯଥେଷ୍ଟ ସୁବିଧା ନଥିଲା; ସେମାନେ ନୈତିକ ପବିତ୍ରତାର ମୂଲ୍ୟ ଯଥାଯଥ ବୁଝିନଥିଲେ । ସେମାନଙ୍କ ପତନ ଓ ସ୍ଖଳନ କ୍ଷମଣୀୟ ହୋଇପାରେ; କିନ୍ତୁ ମୁଁ ଆଜୀବନ ସଂଯମ ଅଭ୍ୟାସ କରିଆସିଛି । ମୁଁ ପିଲାଦିନୁ ନୈତିକ ବଳର ମର୍ମ ହୃଦୟଙ୍ଗମ କରିଛି, ଋଷିର ନିରାଡ଼ମ୍ବର ସଂଯତ ଜୀବନ ଆଦର୍ଶ କରି ଧରିନେଇଛି, ଜନ୍ମଦିନ ଠାରୁ ପିତାଙ୍କର ସେ ଆଦର୍ଶ ଆଖିଆଗରେ ଦେଖିଆସିଛି; ତେଣୁ ମୋର ଏଯେ ସ୍ଖଳନ—ଏ କ୍ଷମଣୀୟ ନୁହେଁ । ମୁଁ ବୁଝୁଛି, କିନ୍ତୁ ନିରୁପାୟ, ମୋ ହୃଦୟରେ ବଳ ନାହିଁ, ମୋ ମନରେ ଧୈର୍ଯ୍ୟ ନାହିଁ—ଭଲମନ୍ଦ, ନ୍ୟାୟଅନ୍ୟାୟ ବିବେଚନ କରିବାର ଶକ୍ତି ମୋର ଲୋପ

ପାଇଛି । ମୁଁ ଆଜି ଉନ୍ମତ୍ତ, କ୍ଷିପ୍ତ; ଆଉ କ୍ଷିପ୍ତ ତୁମରି ପାଇଁ ଚଞ୍ଚଳା ! ମୁଁ କେତେଥର ତୁମର ଏ ସ୍ୱର୍ଗୀୟ ଶୋଭା ମନ ମଧ୍ୟରୁ ପୋଛିଦେବାକୁ ଚେଷ୍ଟା କରିଛି; କିନ୍ତୁ ପାରି ନାହିଁ; କାରଣ ଏ ଶୋଭା, ଏ ଲାବଣ୍ୟ ଭୁଲିବାର ଜିନିଷ ନୁହେଁ, ପ୍ରିୟତମେ ! ମତେ ଦୟା କର, ଚଞ୍ଚଳା ! ମତେ ଚରଣରେ ସ୍ଥାନ ଦିଅ ।

ମୁଁ ଦେଖିଲି ମହା ବିପଦ । ଯାଙ୍କୁ ପ୍ରକୃତରେ ପାପପଥକୁ ଟାଣିନେବା ମୋର ଉଦ୍ଦେଶ୍ୟ ନୁହେଁ, ଯାଙ୍କୁ ଏକାବେଳେ ରସାତଳେ ପକାଇଦେଇ ମୋର କୌଣସି ଆନନ୍ଦ ହେବ ନାହିଁ । କ'ଣ କରିବି ? ଯାଙ୍କର ଏ ଉଦ୍ଦାମ ତେଜ କିପରି କମାଇବି ? ମୁଁ କହିଲି—"କିନ୍ତୁ ଏ ତ ପ୍ରେମ ନୁହେଁ ବାବୁ, ଏ ଯେ କେବଳ ଜଘନ୍ୟ ଲାଳସା !"

ସେ : ମୁଁ ଜାଣେ ନାହିଁ, ଜାଣିବାକୁ ଚାହେଁ ନାହିଁ । ମୁଁ ସଂସାରରେ ପ୍ରେମ ଜାଣେ ନାହିଁ, ଲାଳସା ଜାଣେ ନାହିଁ—ଜାଣେ ମାତ୍ର ତୁମର ଏହି ଶ୍ରୀମୁଖ ଲାବଣ୍ୟ, ତୁମର ଏହି ଅପାର୍ଥିବ ସ୍ୱରର ସେହି ସ୍ୱର୍ଗୀୟ ମାଦକତା !

ମୁଁ : କିନ୍ତୁ ସେଥିରେ କି ଲାଭ ? ଆପଣ ବିବେକୀ, ଆଜି ଲାଳସାର ଦାଉରେ ଅନ୍ଧ ହୋଇ ଆପଣ ଭଲମନ୍ଦ ବିଝିପାରୁ ନାହାନ୍ତି ବୋଲି ମତେ ଏ ଆଦର କରୁଛନ୍ତି । ଆଜି ଯଦି ଆପଣଙ୍କର ଲାଳସା ପୂର୍ଣ୍ଣ ହୁଏ, ତା'ହେଲେ କାଲି ଆପଣଙ୍କ ମନରେ କ୍ଷୋଭ ଆସିବ । ଆପଣ ମତେ ଅଭିଶାପ ଦେବେ, ଘୃଣା କରିବେ । ମୁଁ ଆପଣଙ୍କର ଏ ଦିନକର ପାଗଳାମୀକୁ ଚରିତାର୍ଥ କରି କି ଲାଭ ପାଇବି ?

ସେ : ଘୃଣା ! କ୍ଷୋଭ ! ଭ୍ରମ ତୁମର ଚଞ୍ଚଳା, ଭ୍ରମ ତୁମର । ମୁଁ ହାଡ଼େ ହାଡ଼େ, ଶିରାରେ ଶିରାରେ ଅନୁଭବ କରୁଛି—ମୁଁ ଯେ ନିଶାରେ ବିଭୋର, ଆତ୍ମହରା, ସେ ନିଶା ଛାଡ଼ିବାର ନୁହେଁ । ଚିରଦିନ ମୁଁ ଏହାର ଦାଉରେ ଘାରି ହେଉଥିବି—କାହିଁକି ଜାଣ ? ମୋର ଇଚ୍ଛା—ଏ ନିଶା ଆହୁରି ପିଇବି, ଆଉରି ମାତାଲ ହେବି । ମୁଁ ତୁମକୁ ଆଉ ଭୁଲି ରହିପାରିବି ନାହିଁ, ଚଞ୍ଚଳା ! ହୃଦୟ, ମନ, ପ୍ରାଣ, ଆତ୍ମା—ସବୁଥିରେ ମୁଁ ତୁମର !

ମୁଁ : କିନ୍ତୁ ମୁଁ ସେ କଥା କିପରି ବିଶ୍ୱାସ କରିବି ? ଆପଣଙ୍କର ମୋ ପ୍ରତି ଯଦି ଏତେ ଦୟା, ସେ ଦୟା କେବଳ ଏଇ କଥା ଛଡ଼ା ଆଉ କ'ଣ ଦେଇ ଆପଣ ମୋ ମନରେ ବିଶ୍ୱାସ କରାଇଛନ୍ତି ? ମୁଁ ଆପଣଙ୍କ ସମ୍ବନ୍ଧରେ କ'ଣ ଜାଣେ ? ମୁଁ ଆପଣଙ୍କର ନାମ ପର୍ଯ୍ୟନ୍ତ ମଧ୍ୟ ଜାଣେ ନାହିଁ । ଅଥଚ....

ସେ ଅଧୀର ହୋଇ କହିଲେ—"ଦରକାର ନାହିଁ ଜାଣିବା, କି ଲାଭ ସେଥିରେ ? ନାମ ? ସେ ତ କେତେଟା ଅକ୍ଷର ? ମୋର ପରିଚୟ ? ସେଥିରେ କ'ଣ ଅଛି ? ମୁଁ କ'ଣ ଥିଲି, ସେ କଥା ଶୁଣି ତୁମର କି ଲାଭ ? ବର୍ତ୍ତମାନ ହିଁ ଆମର ସର୍ବସ୍ୱ, ଏଇ ବର୍ତ୍ତମାନରେ ଆସ ବୁଡ଼ି ରହିବା ପ୍ରିୟତମେ ! ଅତୀତ ପୋଡ଼ିଯାଉ—ଭବିଷ୍ୟତ ଅନ୍ଧାରରେ ସଢ଼ିଯାଉ ।"

ମୁଁ : କିନ୍ତୁ ପ୍ରେମିକା ଆଖିରେ ପ୍ରେମିକ ଜୀବନର ପ୍ରତ୍ୟେକ ଘଟଣାଟି ଯେ ସୁନ୍ଦର ଆଉ ପ୍ରିୟ ! ମୁଁ ସେତକ ଛାଡ଼ିଲେ ତ ସନ୍ତୁଷ୍ଟ ହୋଇ ରହିପାରିବି ନାହିଁ, ପ୍ରିୟତମ ! ମତେ କହ—ତୁମେ କିଏ ?

ସେ : "ମୁଁ କିଏ ? ମୁଁ କିଏ ? ମୁଁ—ନା, ମୁଁ କେହି ନୁହେଁ । ମୋର କେହି ନାହିଁ—ଅଛି ମାତ୍ର ଚମ୍ପଳା । ମୁଁ କେହି ନୁହେଁ, କେବଳ ମାତ୍ର ଚମ୍ପଳାର ପ୍ରଣୟଭିକ୍ଷୁ; ମୋର ନାମ—କିଛି ନାହିଁ—କେବଳ ମାତ୍ର ଚମ୍ପଳାର ଦାସ । ମୋର ଧନ, ମାନ, ଯଶ, ବଂଶ—ସବୁ ଚମ୍ପଳା ! କି ପରିଚୟ ଆଉ ତୁମକୁ ଦେବି ? ମୁଁ ଯାହା ଥିଲି, ତା' ଭୁଲିଯାଇଛି । ମୋର ଅତୀତକୁ ମୁଁ ବିସ୍ମୃତିର ଅତଳ ଗର୍ଭରେ ନିକ୍ଷେପ କରିପାରିଛି । ସେସବୁ ସ୍ମୃତି ମନରେ ଆଣି ଆଉ ମତେ ପାଗଳ କରିଦିଅନା ଚମ୍ପଳା ! ମୁଁ ଏସବୁ ଭୁଲିବାକୁ ଚାହେଁ—ମତେ ଭୁଲିବାକୁ ଦିଅ ।"

ଏହିପରି କେତେ କ'ଣ କହି ସେ ମତେ ଏପରି ଜୋରରେ ଟାଣିନେଲେ ଯେ, ମୁଁ ଦେଖିଲି—ବୋଧହୁଏ ୟାଙ୍କୁ ଆୟତ୍ତ କରିବା ମୋର ସାଧ୍ୟାତୀତ ହୋଇପଡ଼ିଲା ପରା ! ମୁଁ ଦିଅଁ ଗଢ଼ିବାକୁ ଯାଉ ଯାଉ ଯେ ବାନ୍ଦର ହେବା ଉପରେ । ମୁଁ ଗୋଟାଏ ଖିଆଲରେ ଯେ ଶକ୍ତି, ଯେ ଦାବଦାହ ମୁକୁଳେଇ ଦେଇଛି, ତାକୁ ଆୟତ୍ତ କରିବା ବୋଧହୁଏ ଅସମ୍ଭବ । ମୁଁ କ'ଣ କରିବି ? ଏ ଯେ ମତେ ତାଙ୍କର ଆଲିଙ୍ଗନ-ପାଶରେ ମୋ ଦେହର ହାଡ଼ ପର୍ଯ୍ୟନ୍ତ ଚୁନା କରିବାକୁ ଲାଗିଲେ ! ୟାଙ୍କର ଦାବାନଳ ପରି ତାତିଲା ନିଃଶ୍ୱାସ ଯେ ମୋର ଆଖି, ମୋର ଓଠ, ମୋର ମୁହଁ ସବୁ ପୋଡ଼ିପକାଇଲା । ମୁଁ କେତେ ଲୋକଙ୍କର ହୃଦୟରେ କେତେ ପ୍ରକାର ଲାଳସା ଆଣିଛି; କିନ୍ତୁ ଏଡ଼େ ବେଗ, ଏଡ଼େ ଉଦ୍ଦାମ ତେଜ, ଏଡ଼େ ଅଦମ୍ୟ ଅଧୀରତା କାହାରିଠାରେ ତ କେବେ ଦେଖି ନାହିଁ । କରିବି କ'ଣ ? ମୁଁ କ'ଣ ଶେଷରେ ୟାଙ୍କର ପାପପଥର ଚାଳିକା ହେବି । ମୁଁ ଆତଙ୍କରେ, ପ୍ରମାଦରେ ପ୍ରକୃତକେ ମୁହୂର୍ତ୍ତକ ପାଇଁ ପାଗଳିନୀ ପରି ହୋଇଗଲି । ସେହି ମୁହୂର୍ତ୍ତରେ ହଠାତ୍ ଗୋଟାଏ କଥା ମୋର ମନେ ପଡ଼ିଗଲା । ମୁଁ ବଡ଼ ଅସ୍ପଷ୍ଟ ସ୍ୱରରେ କହିଲି, "ଆପଣଙ୍କର ସ୍ତ୍ରୀ ଯେ.... ।" ମୋ କଥା ଶେଷ ହେଲା ନାହିଁ । ସେ ଯେପରି ବଳରେ ମତେ ଧରିଥିଲେ, ସେହିପରି ବଳରେ ମତେ ଛାଡ଼ିଦେଲେ । ମୁଁ ପଡ଼ିଲା ପରି ହେଉଁ ହେଉଁ ରହିଗଲି ।

ଦେଖିଲି—ସେ ତଳେ ମୁଣ୍ଡରେ ହାତ ଦେଇ ବସି ଯାଇଛନ୍ତି । ତାଙ୍କର ସେ ତେଜ, ସେ ବେଗ ସବୁ ମୁହୂର୍ତ୍ତକ ମଧ୍ୟରେ କୁଆଡ଼େ ଉଭେଇ ଯାଇ ତା' ସ୍ଥାନରେ ଘୋର ବିଷାଦ, ଭୀଷଣ ଦୁଶ୍ଚିନ୍ତା ଆସିଯାଇଛି । ମୁଁ ତାଙ୍କର ଏ ଧ୍ୟାନ ଭାଙ୍ଗିବାକୁ ଆଉ ସାହସ କରିପାରିଲି ନାହିଁ । ମୁଁ ମଧ୍ୟ ସେହିପରି ଭାବରେ ତାଙ୍କୁ ଚାହିଁ ବସିଗଲି ।

ଏହିପରି ଭାବରେ ପ୍ରାୟ ପନ୍ଦର ମିନିଟ୍ କଟିଗଲା । ସେତେବେଳକୁ ତାଙ୍କର ସେ ଜ୍ୱଳନ୍ତ ରଡ଼ ନିଆଁର ତେଜ ଏକାବେଳକେ ଝାଉଁଳି ଯାଇ ବାସି ପାଉଁଶ ପରି ହୋଇଯାଇଛି । ସେ ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ—"ଚମ୍ପଳା ! ତୁମେ ମତେ ଆଜି ସେ ମହା ପାପରୁ ଉଦ୍ଧାର କରିଛ, ତା' ତୁମେ ପାଞ୍ଚଦିନ ବସି ଭାବିଲେ ମଧ୍ୟ ଜାଣିପାରିବ ନାହିଁ । ମୁଁ କେବଳ ପାପୀ ନୁହେଁ—ଘୋରତର ପାପୀ—ନରକର କୀଟ । ମୁଁ ବୋଧହୁଏ ଏ ସମୟ ମଧ୍ୟରେ ତୁମକୁ ବହୁତ କଷ୍ଟ ଦେଇଛି, ମତେ କ୍ଷମା କରିବ । ଆଜି ଦୁଇଦୁଇଟା ବିପଦରୁ ମତେ ରକ୍ଷା କରିଛ—ତମେ ଦେବୀ । କିନ୍ତୁ ମୁଁ ବରାବର ଲକ୍ଷ୍ୟ କରିଛି, ତୁମର ଗୋଟିଏ ହେଲେ ଗ୍ରାହକ ଆସୁନାହାନ୍ତି । ଥରେ ଅଧେ ମଧ୍ୟ ଜଣେ ଦୁଇଜଣ ତୁମ ଦୁଆରୁ ଫେରିଗଲା ବେଳେ ବକାବକି କରି ଯାଇଛନ୍ତି । ଏ ସବୁର ଅର୍ଥ କ'ଣ ଚମ୍ପଳା ?"

ମୁଁ : ଅର୍ଥ କିଛି ନାହିଁ । ପ୍ରଥମ କଥା, ମୁଁ ସାଧାରଣ ବଜାରୀ ଲୋକଙ୍କୁ ଘରେ ପୂରାଏ ନାହିଁ । ମୋର କେତୋଟି ଧରାବନ୍ଧା ଗ୍ରାହକ । ସେମାନେ ସବୁଦିନେ ଆସନ୍ତି ନାହିଁ । ଏହା ଭିତରେ ସେମାନଙ୍କ ମଧ୍ୟରୁ କେହି ଫେରିଯାଇ ନାହାନ୍ତି । ଦ୍ୱିତୀୟରେ ମୋର ଏ ବ୍ୟବସାୟ ପ୍ରତି ଆଉ ଇଚ୍ଛା ନାହିଁ । ମୋର ପଇସାପତ୍ରରେ ଆଉ ଅଭାବ ନାହିଁ; ତେଣୁ ଭାବିଛି ଛାଡ଼ିଦେବି ।

ସେ : କିନ୍ତୁ ଛାଡ଼ିଦେଲେ ଚଳିପାରିବ ତ ? ତୁମେ ଯେ ଏତେ ଭୋଗରେ ଥିଲ । ହଠାତ୍ ସେ ସବୁ ଭୋଗ ହରାଇଲେ ତୁମର ବହୁତ କଷ୍ଟ ଓ ଅସୁବିଧା ହେବ । ସେ ସବୁ ସହି ଚଳିପାରିବ ?

ମୁଁ : ତୁମ ସାହାଯ୍ୟରେ ନିଶ୍ଚୟ ପାରିବି ।

ସେ : ମୋର ସାହାଯ୍ୟ ? ମୁଁ କିପରି ତୁମର ଏ କାର୍ଯ୍ୟରେ ସହାୟ ହୋଇପାରିବି ?

ମୁଁ : ଏ ବ୍ୟବସାୟ ବନ୍ଦ କରିବା ପରେ କିଛିଦିନ ତୁମେ ମୋ ପାଖରେ ରହିବ । ତୁମର ସଦୁପଦେଶ ଓ ଆଦର୍ଶରେ ମୁଁ ନିଶ୍ଚୟ ମୋ ଅବସ୍ଥା ପରିବର୍ତ୍ତନର ଅସୁବିଧା ସହି ପାରିବି ।

ସେ : କିନ୍ତୁ ଆଜି ଯାହା ହୋଇଗଲା ସେଥିରେ ମୋର ଆଉ ଏଠାରେ ରହିବା ଉଚିତ କି ? ପୁଣି କେତେବେଳେ ଯେ ମୁଁ ଆତ୍ମବିସ୍ମୃତ ହୋଇ କ'ଣ ନାହିଁ କ'ଣ କରିବସିବି ।

ମୁଁ : ନା, ସେ ବିଷୟରେ ମୋର ଭୟ ନାହିଁ । ତୁମର ଚିତ୍ତ ଦମ୍ଭ ଅସାଧାରଣ । ତୁମର ସଂଯମ ଋଷି ପରି । ମୁଁ ନିଶ୍ଚୟ କରି ଜାଣେ, ଆଉ ଏପରି ଘଟଣା ତୁମଆଡୁ ହେବ ନାହିଁ । ହେଲେ ମଧ୍ୟ ସେଥିରେ ବାଧା ଦେବାକୁ, ତୁମର ଚୈତନ୍ୟ ଆଣିବାକୁ ଯଥେଷ୍ଟ ଶ୍ରଦ୍ଧାଭକ୍ତି ମୁଁ ତୁମକୁ କରେ ।

ମୁଁ ଠିକ୍ ଏହି କଥାଟି ଆଶଙ୍କା କରିଥିଲି । ସେ ଯେ ଏହା ପରେ ମୋ ଘରେ ରହିବା ଉଚିତ ମନେ କରିବେ ନାହିଁ, ସେ କଥା ମୁଁ ବୁଝିଥିଲି; କିନ୍ତୁ ତା'ହେଲେ ତାଙ୍କର କି ଉପାୟ ହେବ ? କଟକ ସହରରେ ତାଙ୍କର ଯେ ଗୋଟାଏ ବଡ଼ ନିର୍ମମ ଶତ୍ରୁ ଅଛି, ସେ ବିଷୟରେ ତ ସନ୍ଦେହ ନାହିଁ । ଏ ବିପଦରେ ତାଙ୍କର କିଏ ସହାୟ ହେବ ? ସେହି ହେତୁରୁ ମୁଁ ଏପରି ଗୋଟିଏ ମାୟାଜାଲ ବିଛାଇଲି । ସେ ସ୍ୱୀକାର କଲେ ।



## ନଅ

ତା'ପରେ ଦୁଇଦିନ ବିତିଗଲା । ତା' ମଧ୍ୟରେ ସେପରି କୌଣସି ବିଶେଷ ଘଟନା ଘଟିନଥିଲା । ଚତୁର୍ଥଦିନ ରାତି ଆଠଟା ବାଜିଲା, ଏହି ସମୟରେ ହଠାତ୍ ମୋ ଦୁଆରେ କିଏ ଆସି ଆଘାତ କଲା । କୌଣସି ଗ୍ରାହକ ଆସିଲେ ବୋଲି ଭାବି ମୁଁ ଟିକିଏ ବ୍ୟସ୍ତ ହୋଇଉଠିଲି । ଦେଖିଲି, ମାଳତୀ ଏକାବେଳକେ ଅଣନିଃଶ୍ୱାସୀ ହୋଇ ଆସି ମୋ ପାଖରେ ହାଜର୍ ! ମୁଁ

କହିଲି—"କି ଲୋ ! ଏ କ'ଣ ?" ସେ କହିଲା—"ପାଞ୍ଚଟା କି ଛଅଟା ଟୋକା ଆସି ଦୁଆରେ ମାଇଲେ । ମୁଁ ଦୁଆର ଫିଟାଇଦେଲି । ସେମାନେ ଘର ଭିତରକୁ ପଶିଲେ । ମୁଁ ମନା କଲି, ସେମାନେ କିନ୍ତୁ ମାନିଲେ ନାହିଁ । ଲୋକଗୁଡ଼ାକ ମଦ ଖାଇଲା ପରି ଜଣାପଡୁଛନ୍ତି । କ'ଣ କରିବି ?"

ମୁଁ ରାଗିଯାଇ କହିଲି—"ତୁ ନିତାନ୍ତ ଅପଦାର୍ଥ ! ଘରେ ମୋର ଏତେ ଚାକରବାକର ଅଛ କାହିଁକି ? ପାଞ୍ଚଟା ମଦୁଆ ଟୋକାଙ୍କୁ ଅଟକ କରି ରଖିବାର ଶକ୍ତି...." ମୋ ତୁଣ୍ଡ କଥା ତୁଣ୍ଡରେ ରହିଲା । ସେ ପାଞ୍ଚଜଣ ଯୁବକ ଗୋଟି ଗୋଟି ହୋଇ ସେ ଘରକୁ ଝୁଣ୍ଟିପଡ଼ିଲା ପରି ଆସି ପହଞ୍ଚିଲେ । ମୁଁ ସେମାନଙ୍କ ଆଡ଼କୁ ଚାହିଁଲି । ଆଖି ଆଉ ଫେରି ଆସିବାକୁ ମନ କଲା ନାହିଁ । ହୃଦୟ କମ୍ପିଉଠିଲା, ଭୀଷଣ ଆପଦ ଆଶଙ୍କାରେ ମୋର ପଞ୍ଚଭୂତ ଆତ୍ମା ଥର ଥର ହୋଇଗଲା । ମୋ ସମ୍ମୁଖରେ ଗୋପର ମୂର୍ତ୍ତି—ମୋ ଭାଇ ! ଅନେକ ଦିନ ପରେ ଏ ଦେଖା ସତ; କିନ୍ତୁ ଯେଉଁ ଭାଇ ସାଙ୍ଗରେ ବାରବର୍ଷ କାଳ ଧୂଳିଖେଳିଆସିଛି—ଯାହାକୁ ହୃଦୟର ଗ୍ରନ୍ଥିପରି ସୁଖ ପାଇଛି, ତାକୁ କି ଭୁଲିପାରେ ? ସେ ମଧ୍ୟ ଦେଖିଦେଇ ପ୍ରଥମେ କାଠପିତୁଳିଟି ପରି ଠିଆହୋଇଗଲା । ତା'ପରେ ନିରିଖି କରି ଅନାଇଁ ସେ କହିଉଠିଲା—"କିଏ ଏ ? ନାନୀ ?"

ମୁଁ ମହା ପ୍ରମାଦରେ ପହଞ୍ଚିଲି; କିନ୍ତୁ ତା'ର ଶେଷ କଥାଟି ସରୁ-ନସରୁଣୁ ମାତାଲ ଦଳ ଠୋ-ଠୋ କରି ହସିଉଠି କହିଲେ—"ସାବାସ୍ ଗୋପ ! ସାବାସ୍ ଗୋପ ! ଖାସା, ନା ? ନାନୀ ! ବାଃ, ବାଃ, ବେଶ୍, ବେଶ୍ !!" ଗୋପ ଅଧୀର ହୋଇ ସେମାନଙ୍କ ଆଡ଼କୁ ତୀବ୍ର ଦୃଷ୍ଟିରେ ଚାହିଁଲା । ତା'ପରେ କହଲା—"ମୁଁ କ'ଣ ସ୍ୱପ୍ନ ଦେଖୁଛି ? ନାଁ ଏ ସତ୍ୟ ?" ମୁଁ ଏତେବେଳକୁ ଟିକିଏ ଥଳ ପାଇଥିଲି, କହିଲି—"ନା, ବାବୁ, ଆପଣ ସ୍ୱପ୍ନ ଦେଖୁଛନ୍ତି ନିଶ୍ଚୟ, ମୁଁ ଆପଣଙ୍କ ନାନୀ ନୁହେଁ । ମୁଁ ଚଞ୍ଚଳା ବେଶ୍ୟା ।"

ମୋର ଏ କଥା ଶୁଣି ତା'ର କପାଳ କୁଞ୍ଚୁ ହୋଇଗଲା । ସେ କିଛି ସମୟ ମୋତେ ଚାହିଁ ରହିଲା । ତା'ପରେ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ ବସିପଡ଼ିଲା । ଏହା ଭିତରେ ତା' ମାତାଲ ସାଙ୍ଗମାନେ ଭୟଙ୍କର ଗୋଳମାଳ ଆରମ୍ଭ କରିଅଛନ୍ତି । ମୁଁ ଭାବିଲି, ଏମାନଙ୍କୁ ଆଜି ରାତି ପାଇଁ ଘଉଡ଼ାଇ ଦିଏ, ତା'ପରେ ଦେଖାଯିବ । କିନ୍ତୁ ପୁଣି ମନେହେଲା ଏମାନଙ୍କର ଯେ ଅବସ୍ଥା, ଏଥିରେ ମୁଁ ଯଦି ଏମାନଙ୍କୁ ମୋ ଘରୁ ତଡ଼ିଦିଏଁ, ତା'ହେଲେ ଏମାନେ ନିଶ୍ଚୟ ଯାଇ ଆଉ କାହା ଘରେ ପଶିବେ । ଗୋପ ମଧ୍ୟ ସେମାନଙ୍କ ସାଙ୍ଗରେ ଯିବ । ହୋଇପାରେ ଏ ତା' ପ୍ରଥମ ପତନ । ମୁଁ ଯଦି ଏତେବେଳେ ତାକୁ ରକ୍ଷା ନକରେ, ତା'ହେଲେ ତ ତା'ର ଅଧଃପତନ ନିଶ୍ଚୟ । କିନ୍ତୁ ଏ ଅବସ୍ଥାରେ ବା ମୁଁ ଏମାନଙ୍କୁ ମୋ ଘରେ ରଖିବି କିପରି ? କ'ଣ କରିବି ? ମୋ ମୁଣ୍ଡ ଘର୍ ଘର୍ ହୋଇ ଘୂରିବାକୁ ଲାଗିଲା; ତୋଟି ତାଳୁ ଶୁଖିଗଲା । ମୁଁ ଏକ ଲୟରେ ଭଗବାନଙ୍କୁ ଡାକିଲି—"ହେ ଦୀନନାଥ ! ହେ ଦ୍ରୌପଦୀ ଲଜ୍ଜା ନିବାରଣ ! ମତେ ଏ ମହା ବିପଦରୁ ରକ୍ଷାକର ପ୍ରଭୁ ! ମୁଁ ବଡ଼ ନିଃସହାୟ—ବଡ଼ ବିପନ୍ନ ।'

ସେତେବେଳେ କୁଆଡୁ ମୋ ହୃଦୟରେ ବଳ ଆସିଲା । ମୁହୂର୍ତ୍ତକ ମଧ୍ୟରେ ଆଶଙ୍କାର ଏ ଅନ୍ଧାର-ପର୍ଦ୍ଦା ମୋ ଆଖି ଆଗରୁ ଅପସରିଗଲା । ମୁଁ ମାଳତୀକୁ ମଦ ବୋତଲ, ସୋଢ଼ା,

ଆଉ ଗିଲାସ ଆଣିବାକୁ କହିଲି । ମୋର ଶେଷ ଉପାୟ—ଏମାନଙ୍କୁ ନିଶାରେ ଅଚେତ କରି ପକାଇଦେବା । ତା'ହେଲେ ଆଜି ରାତିଟା ପାଇଁ ଅନ୍ତତଃ ମୁଁ ରକ୍ଷା ପାଇଯିବି । ଏହାପରେ ମୋର କର୍ତ୍ତବ୍ୟ କ'ଣ—ତାହା ମତେ ଏଥି ମଧ୍ୟରେ ଠିକ୍ କରିବାକୁ ହେବ ।

ମଦ ଚାଲିଲା । ପ୍ରଥମେ ପ୍ରଥମେ ମୁଁ ବରାବର ଲକ୍ଷ୍ୟ କରିଛି—ଗୋପ ମୋ ଆଡ଼କୁ ଅନିମେଷ ଆଖିରେ ଚାହିଁ ରହିଥାଏ । ଆଉ ଗୋଟିଏ ବିଚିତ୍ର କଥା ମୁଁ ଲକ୍ଷ୍ୟ କଲି—ଏ ପାଞ୍ଚଜଣ ଯୁବକ ମଧ୍ୟରୁ ଜଣେ ନିଜେ ମାତାଲ ଭଳି ବ୍ୟବହାର କରୁଥିଲେ ସୁଦ୍ଧା ପ୍ରକୃତରେ ମାତାଲ ନଥିଲା । ତା'ର ଆଖି ଲାଲ ପଡ଼ି ନାହିଁ । ସେଥିରେ ନିଶାର ଢାଲ ଜଣାଯାଉ ନାହିଁ । ତା'ର ଓଠ ମଧ୍ୟ ଶୁଖିନାହିଁ । ସେ ବରାବର ମୋ ଉପରେ ଓ ଗୋପ ଉପରେ କଡ଼ା ନଜର ରଖିଥାଏ । ଗୋପ ପାଖରେ ସେ ବସିଥାଏ । ଆଉ ତା' କାନରେ ପଦେ ପଦେ କ'ଣ କହୁଥାଏ । ଗୋପ ସେ କଥା ଶୁଣି ମୋ ଆଡ଼କୁ ଚାହୁଁଛି, ଆଉ ଚାହିଁ ଉନ୍ମନା ହୋଇଉଠୁଛି । ମୁଁ ଯାଇ ସେଇ ଲୋକଟାର ପାଖରେ ବସିଲି; ତାକୁ ମଦ ଖାଇବାକୁ ଅନୁରୋଧ କଲି । ନିଜ ହାତରେ ଗିଲାସରେ ମଦ ଢାଳି ତା'ର ମୁହଁ ପାଖରେ ନେଇ ଧରିଲି । ଅନୁଭବ କଲି, ତା'ର ଇଚ୍ଛା ନଥିଲେ ମଧ୍ୟ ସେ ପିଇଲା । ଗିଲାଶ ପରେ ଗିଲାସ ମୁଁ ଚଳାଇଲି । ସେ ଥରେ ଥରେ ନାହିଁ କରୁଥାଏ; କିନ୍ତୁ ମୁଁ ତ ଛାଡ଼ିବାର ନୁହେଁ । ମୋ ମନରେ କିପରି ଗୋଟିଏ ବିଶ୍ୱାସ ହେଲା, ଏ ଲୋକଟା ସମସ୍ତ ଅନିଷ୍ଟର ମୂଳ । ମୁଁ କେବଳ ଗୋପ ଗିଲାସରେ ଖୁବ୍ କମ୍ କମ୍ ମଦ ଦେଉଥାଏ । ଅନ୍ୟମାନେ ଯାହା ପିଇଛନ୍ତି, ଗୋପ ତା'ର ଆଠ ଭାଗରୁ ଭାଗେ ପିଇଛି କି ନାହିଁ; କିନ୍ତୁ ସମସ୍ତଙ୍କଠାରୁ ସେ ବେଶି ମାତାଲ । ମୁଁ ବୁଝିଲି, ତା'ର ଏ ମଦପିଆ ନୂଆ । ସେ ଯେ କାହିଁକି ଏ କାମ କରିବାକୁ ଗଲା ଭାବି ଠିକ୍ କରିପାରିଲି ନାହିଁ । ଏମାନଙ୍କୁ ନିଶା ଚୌକସ ଲାଗିଆସିଲା । ଏମାନେ ଭୟଙ୍କର ଗୋଳମାଳ କରିବାକୁ ଆରମ୍ଭ କଲେ ।

କ୍ରମେ ନିଶାରେ ଏତେ ଘାରିହୋଇପଡ଼ିଲେ ଯେ, ଏମାନଙ୍କର ଆଉ କୌଣସି ଶକ୍ତି ରହିଲା ନାହିଁ । ମୁଁ କବାଟ ପାଖରେ ଅନ୍ତରାଳରେ ଠିଆ ହୋଇ ସବୁ ଦେଖିଲି । ଚାହୁଁ ଚାହୁଁ ମଦନିଶାରେ ଏମାନେ ଢଳିପଡ଼ିଲେ । ସବୁ ପାଗଳାମୀ, ସବୁ ଗୋଳମାଳ ଏକାବେଳକେ ବନ୍ଦ ହୋଇଗଲା । ଭୟଙ୍କର ନିଶା—ନିଦରେ ଏମାନେ ମୁହୂର୍ତ୍ତକ ଭିତରେ ଅଚେତ ହୋଇପଡ଼ିଲେ ।

ମୁଁ ଗୋପକୁ ମାଳତୀ ସାହାଯ୍ୟରେ ଟେକାଟେକି କରି ନେଇ ମୋ ଶେଯରେ ଶୁଆଇଲି । ତା'ର ଖଟ ପାଖରେ ମୁହଁଆଡ଼କୁ ଦର୍ପଣଟିଏ ରଖି ସେଠାରୁ ଚାଲିଆସିଲି । ପାଖ ଘରେ ଗୋଟିଏ ମଶିଣା ପକାଇ ତା'ରି ଉପରେ ଶୋଇପଡ଼ିଲି । ଏ ଘଣ୍ଟାକର ଯେ ମର୍ମଯାତନା, ସେଥିରେ ମୋର ଦେହ, ମନ ଓ ପ୍ରାଣ ସବୁ ଅବଶ ହୋଇପଡ଼ିଥିଲା । ମୁଁ ମଡ଼ା ଭଳି ଶୋଇରହିଲି; କେତେବେଳକେ ନିଦ ଲାଗିଗଲା ।



# ଦଶ

ଏ ମଦୁଆଗୁଡ଼ାକ ଶୋଇଲେ ଯେ ସାରାରାତି, ଚେତା-ଚଇତନ କିଛି ନାହିଁ । ମୋ ନିଦ ପାହାନ୍ତିଆରେ ଭାଙ୍ଗିଗଲା । ସେତିକିବେଳୁ ଉଠି ମୁଁ ମୋ ଅବସ୍ଥାର କଥା ଭାବୁଛି । ରାଗର ଦାଉରେ ହେଉ ବା ଘଟନାବଶରେ ହେଉ ଏ ବ୍ୟବସାୟରେ ପଶିଲାବେଳେ ମୋ ଜୀବନରେ ଯେ ଏପରି ଗୋଟାଏ ବିପଦ ଆସିପାରେ, ତା'ର ଆଶଙ୍କା କରି ନଥିଲି—ସ୍ୱପ୍ନରେ ସୁଦ୍ଧା କଳ୍ପନା କରିନଥିଲି । ଏବେ ଅପ୍ରତ୍ୟାଶିତ ଭାବରେ ଏହାର ସମ୍ମୁଖରେ ପଡ଼ି ମୋର ଜ୍ଞାନ ହଜିଗଲା । ନିଶା ଜୋରରେ ଗୋପ ମତେ ଚିହ୍ନିପାରିଛି; ତା'ର ଜ୍ଞାନ ଆସିଲେ ସେ କ'ଣ କରିବ ? ଏ ଅବସ୍ଥାରେ ମୋର କ'ଣ କରିବା ଉଚିତ ?

ପ୍ରଥମେ ମନେହେଲା ଯେ, ଏମାନଙ୍କ ସହିତ ଏପରି ରୂଢ଼ ବ୍ୟବହାର କରିବି ଯେ, ଏମାନେ ଆଉ ଯେପରି ମୋ ପାଖକୁ ଆସିବାକୁ ସାହସ କରିବେନାହିଁ । ଏ ଉପାୟଟି ଅବଶ୍ୟ ମୋ ସ୍ୱାର୍ଥ ପକ୍ଷରୁ ବଡ଼ ସହଜ ଓ ନିଶ୍ଚୟ ଫଳପ୍ରଦ ହେବ ବୋଲି ଆଶା; କିନ୍ତୁ ଗୋପର କଅଣ ହେବ ? ସେ ସଙ୍ଗଦୋଷରୁ ହେଉ ବା ନିଜ ପ୍ରବୃତ୍ତିବଳରୁ ହେଉ, ଏ ପାପ-ପଥକୁ ଆସିଲାଣି । ମୁଁ ଯଦି ତାକୁ ଘଉଡ଼ାଇଦିଏଁ, ତା'ହେଲେ ସେ ନିଶ୍ଚୟ ଯାଇ ଅନ୍ୟର ଆଶ୍ରୟ ନେବ । ତା' ପ୍ରତି କ'ଣ ମୋର କିଛି କର୍ତ୍ତବ୍ୟ ନାହିଁ ?

ତା'ର ଏ ଅବସ୍ଥା ଦେଖି ମନରେ ମୋର ଦାରୁଣ କଷ୍ଟ ହେଲା । ମୋ ହୃଦୟର ଗୋପ-ମୋ ଜୀବନର ଏକମାତ୍ର ଅବଲମ୍ବନ ଗୋପ ଯେ ଆଜି ମଦ ପିଇ ବେଶ୍ୟାଦ୍ୱାରରେ, ଏ ଦୃଶ୍ୟ ବଡ଼ କଠୋର ! ତାକୁ ଏଥିରୁ ଉଦ୍ଧାର କରିବାକୁ ହେଲେ ମତେ ତାକୁ ଆଖି ଉପରେ ରଖିବାକୁ ହେବ; କିନ୍ତୁ ତା' କି ସମ୍ଭବ ? ଚଞ୍ଚଳା ବେଶ୍ୟା ଭାବରେ ତାକୁ ପାଖକୁ ଆଣିବାର କଳ୍ପନା ତ ଏକାବେଳକେ ମନରୁ ଦୂର କରିବା କଥା । ତେବେ ତାକୁ ପରିଚୟ ଦେଇ ତା' ଭଉଣୀ 'କମଳା' ରୂପରେ ମୁଁ କ'ଣ କିଛି କରିପାରିବି ? ମତେ ତା'ର ଭଉଣୀ ବୋଲି ସେ ବା ଆଉ ଗ୍ରହଣ କରିବ କାହିଁକି ? ମୋର ଏ ବ୍ୟବସାୟ ଜାଣିପାରିଲେ, ସେ ଘୃଣାରେ ମୁହଁ ଫେରାଇ ଚାଲିଯିବ ନାହିଁ ତ ? ସେତେବେଳେ କି ଉପାୟ !

ତା'ପରେ ମନେପଡ଼ିଗଲା, ତା'ର ସେ ପ୍ରବନ୍ଧ କଥା ? ସମ୍ଭବ ସେ ସେହି ପ୍ରବନ୍ଧ ଲେଖିନାହିଁ; ତା' ନାମର ଅନ୍ୟ କେହି ଲୋକ ତାକୁ ଲେଖିଛି । ଯଦି ବା ଗୋପ ନିଜେ ସେ ପ୍ରବନ୍ଧଟା ଲେଖିଥାଏ, ତା'ହେଲେ ସେଥିରେ ବା ଲାଭ କ'ଣ ? ଟୋକା ସେ; ଟୋକାମାନେ କେତେବେଳେ କେତେ କଥା କହି ନ ଦିଅନ୍ତି ! ଗୋଟାଏ କିଛି ବହି ପଢ଼ିଲେ ସେଥିର ଭାବ ତାଙ୍କ ମନକୁ ଆସିଲା, ଆଉ ତା'ରି ଉପରେ ଗୋଟାଏ ପ୍ରବନ୍ଧ ଲେଖିପକାଇଲେ, କି ବକ୍ତୃତା ଦେଇବସିଲେ; ସେଥିରୁ ସେମାନେ କ'ଣ କରିବେ, କ'ଣ ନ କରିବେ ଧରିବାର ଉପାୟ ନାହିଁ । ତା'ହେଲେ ମୁଁ କଅଣ କରିବି ?

ଏହିପରି ନାନା କଥା ଭାବି ଭାବି ରାତି ପାହିଗଲା । କୁଆ କା' କା' ଡାକିଲା । ମୁଁ କୌଣସି ସିଦ୍ଧାନ୍ତରେ ପହଞ୍ଚି ନପାରି ଉଠିଲି । ଭାବିଲି, ସେ ବାବୁଙ୍କୁ ସବୁକଥା ପଚାରିବି,

ତାଙ୍କର ପରାମର୍ଶ ନେବି । ଏହି ଉଦ୍ଦେଶ୍ୟରେ ମୁଁ ତଳକୁ ଓହ୍ଲାଇଗଲି । ଗଲାବେଳେ ଦେଖିଗଲି, ଏ ଲୋକଗୁଡ଼ାକ ଏ ପର୍ଯ୍ୟନ୍ତ ନିର୍ଧୂମ ନିଦରେ ପଡ଼ିଛନ୍ତି । ଏ ପୁଣି ଆହୁରି ଏକ ବିପଦ ! ଯାହାହେଉ, ଏ ବିପଦ ପରେ ଦେଖାଯିବ ! ତଳକୁ ଯାଇ ଦେଖିଲି, ବାବୁ ଉଠି ମୁହଁ ଧୋଉଛନ୍ତି । ମତେ ଦେଖି ସେ ପଚାରିଲେ—"ଆଜି ସକାଳୁ ହଠାତ୍ କ'ଣ ଭାବି...?"

ମୁଁ : ମୋର ଗୋଟାଏ କଥା ପଚାରିବାର ଅଛି । ଆପଣ ମୁହଁ ଧୋଇସାରି ନିଶ୍ଚିନ୍ତ ହୁଅନ୍ତୁ, ମୁଁ କହିବି ।

ସେ ମୁହଁହାତ ଧୋଇ ଘରେ ବସିଲେ । ମୁଁ ଆରମ୍ଭ କଲି—"ମୁଁ ଯାହା କହିବି, ସେଥିରୁ ଆପଣ ଗୋଟାଏ କିଛି ଅସମ୍ଭବ କଥା ଅନୁମାନ କରିବସିବେ ନାହିଁ । ମୁଁ କାଲି ରାତିରେ ଯେ ଘଟଣାର ଇତିହାସ ଶୁଣିଲି, ତାହାହିଁ ଆପଣଙ୍କୁ କହୁଛି ।"

ସେ ମୁଣ୍ଡ ହଲାଇ କହିଯିବାକୁ ସଙ୍କେତ କଲେ । ମୁଁ ଆରମ୍ଭ କଲି—"ଜଣେ ବେଶ୍ୟା, ସେ ସମ୍ଭ୍ରାନ୍ତ ଘରର ଝିଅ ବୋହୂ । ନାନା କାରଣରୁ ଘର ଛାଡ଼ି ପଳାଇ ଆସିଥିଲା । ତା'ର ଗୋଟିଏ ଭାଇ ଥାଏ । ସେ ଏହି କଟକ କଲେଜରେ ପଢ଼େ । ଚାରି ପାଞ୍ଚ ବର୍ଷ ପରେ ଦିନେ ହଠାତ୍ ତା'ର ସେଇ ଭାଇ କେତେଗୁଡ଼ାଏ ମଦୁଆ ସାଙ୍ଗଙ୍କୁ ଘେନି ଆସି ତା'ର ଘରେ ହାଜର ହେଲା । ସେ ନିଜ ଭାଇକୁ ଚିହ୍ନିଲା, ଭାଇ ମଧ୍ୟ ତାକୁ ସନ୍ଦେହ କରିଥିଲା; କିନ୍ତୁ ସେ ହଠାତ୍ ଆତଙ୍କରେ ପଡ଼ି ସେମାନଙ୍କୁ ନିଶାରେ ବୁଡ଼ାଇ ରଖି କୌଣସି ମତେ ରାତିଟା ଅବ୍ୟାହତି ପାଇଲା । ତା'ପରେ ତା'ର କ'ଣ କରିବା ଉଚିତ ?

ସେ : ତୁମେ କହୁଛ, ମୁଁ ଏଥିରୁ କିଛି ଅସମ୍ଭବ ଅନୁମାନ କରିନେବିନାହିଁ । ବେଶ୍ ଭଲ କଥା । ସରଳ ଭାବରେ ତୁମର ସରଳ ପ୍ରଶ୍ନର ଉତ୍ତର ଦେଲେ ତୁମର—ଓଃ, ରାମ ରାମ—ସେ ବେଶ୍ୟାର ତା' ଭାଇ ପାଖରେ ଆତ୍ମ-ପରିଚୟ ଦେବା ଉଚିତ ।

ମୁଁ : କିନ୍ତୁ ତାହେଲେ ସେ ଯେବେ ଘୃଣାରେ ମୁହଁ ଫେରାଇ ଚାଲିଯାଏ ?

ସେ : ଯାଉ, ଯଦି ତା'ର ମନ ସେ ଧରଣର ହୁଏ, ତାହେଲେ ସେ ଆଉ କୌଣସି ବେଶ୍ୟାଦ୍ୱାର ମାଡ଼ିବ ନାହିଁ । ଏହି ଯେ ଧକ୍କା ଖାଇବ—ତାହା ତାହାର ମନରେ ଚୈତନ୍ୟ ଆଣିପାରିବ । ଯଦି ସେ ସେପରି ଲୋକ ନ ହୋଇ ଭଉଣୀକୁ କ୍ଷମାକରେ, ଆଉ ସ୍ୱୀକାର କରେ, ତାହେଲେ ଭଉଣୀ ତାକୁ ପାପପଛାରୁ ଫେରାଇ ଆଣିପାରିବ । ନା, ମୁଁ ଯେତେଦୂର ଭାବୁଛି, ଏହି ହେଉଛି ପ୍ରକୃତ ଉପାୟ । ସେ ଟୋକା କାହିଁ ?

ମୁଁ : ସେ କଥା ମୁଁ କିପରି କହିବି ? ଗୋଟାଏ କଥା ଶୁଣିଥିଲି, ସେ କଥାଟା ତୁମକୁ ପଚାରିଲି । ତୁମର ତା' ଉପରେ ଆଉ କିଛି ଖୋଳିତାଡ଼ି ପଚାରିବାଟା ଉଚିତ ନୁହେଁ ।

ସେ : ଓଃ, ପବନଟା ଏତେ ଦୂରକୁ ବହୁଛି, ମତେ ଜଣା ନଥିଲା । ହଉ, ହଉ, ମୁଁ ସେ ଟୋକାଟାକୁ ଖୋଜି ବାହାର କରିବି ।

ମୁଁ : ସାବଧାନ ! ତୁମେ ଯଦି ଏ ବିଷୟରେ କୌଣସି ପ୍ରକାର ହସ୍ତକ୍ଷେପ କର, ତାହାଲେ ମୁଁ ଆଉ ତୁମକୁ କେବେହେଲେ କ୍ଷମା କରିବି ନାହିଁ ।

ଏତିକି କହି ମୁଁ ସେଠାରୁ ଚାଲିଆସିଲି । ଆସୁ ଆସୁ ଦେଖିଲି, ଜଣେ ସେଥିରୁ ଚୋରଙ୍କ ପରି ଲୁଚି ଲୁଚି ପଳେଇଯିବାର ଚେଷ୍ଟା କରୁଛି । ମୁଁ ତାକୁ ଡାକି କହିଲି—"କି ବାବୁ ! ଭାରି ମଉଜି ତ ତୁମେ ! ସାରା ରାତିଟା ଆସି ଏଠି ନବାବି କରିଗଲ—ପାଉଣା ପତ୍ର ନାମ ନାହିଁ । ତୁମର ଏ ସାଙ୍ଗଗୁଡ଼ାକ ଯେ ମୁର୍ଦ୍ଦାର ଭଳି ପଡ଼ିଛନ୍ତି, ତାଙ୍କର ମଧ୍ୟ କିଛି କରିବାକୁ ନାହିଁ; ଆଉ ତମେ ଲୁଚି ଲୁଚି ଚମ୍ପଟ୍‌ଦେବା ଉପରେ ! ନା ବାବୁ, ସେ କଥା ହେବନାହିଁ । ମୋର ପାଉଣା ଦିଅ, ତୁମର ସାଙ୍ଗସାଥୀଙ୍କୁ ନିଅ । ତା'ପରେ ସୁନାପିଲା ହୋଇ ଘରକୁ ଯାଅ । ଆଉ ତା' ଯଦି ନ କରିବ, ମୋର ଚାକରବାକରଙ୍କ ହାତରେ ତୁମ ଗାଲରେ ଚୂନକାଳି ଦେଇ ଛାଡ଼ିବି ।" ସେ ଧରାପଡ଼ି ଅପ୍ରସ୍ତୁତ ହୋଇଗଲା; ପୁଣି ବୈଠକଖାନାକୁ ଫେରିଗଲା । ମୁଁ ବି ତା' ସାଙ୍ଗେ ସାଙ୍ଗେ ଗଲି; ଦେଖିଲି, ଅନ୍ୟ ଜଣେ ଦି'ଜଣ ଉଠୁଛନ୍ତି, କେହି ବା ଉଠିବାର ଚେଷ୍ଟା କରୁଛି; କିନ୍ତୁ ସାଙ୍ଗେ ସାଙ୍ଗେ ମୁହଁଟା ଆମ୍ବିଳା କରିଦେଇ ପଡ଼ିଯାଉଛି । କେବଳ ସେହି ଯେ ବାବୁ କାଲି ରାତିରେ ଆମ ଉପରେ ଓ ଗୋପ ଉପରେ ଦୃଷ୍ଟି ରଖିଥିଲେ ବୋଲି କହୁଥିଲି, ସେହି କେବଳ ପୂର୍ଣ୍ଣ ସଚେତ ଥିବାର ଦେଖିଲି । ସେ ସମସ୍ତଙ୍କୁ ଉଠାଇବାର ଚେଷ୍ଟା କରୁଛନ୍ତି । ମତେ ଦେଖି କହିଲେ—"ଗୋପ କୁଆଡ଼େ ଗଲା ?" ମୁଁ କହିଲି—"ଗୋପ ? ଗୋପ କିଏ ? ଓଃ, ଆଉ ସେ ଯେଉଁ ବାବୁଜଣକ ? ସେ ଚାଲିଗଲେଣି କେତେ ଆଗରୁ ।"

ସେ : ତୁମେ ତେବେ ଖଣ୍ଡିଏ ଗାଡ଼ି ମଗେଇଦିଅ । ମୁଁ ଏଗୁଡ଼ାଙ୍କୁ ନେଇ ପଳାଏ ।

ମୁଁ : ପଳାଇବ ତ ନିଶ୍ଚୟ; କିନ୍ତୁ ମୋର ପାଉଣା ?

ସେ ଆବାକାବା ହୋଇଗଲା । ଗଣ୍ଡିଧନଗୁଡ଼ିଙ୍କର ମୁଁ ଦେଖିଲି, ମୋ ପାଉଣା କଥା ମନେନାହିଁ । ଭାବିଲି, ଆଚ୍ଛାକରି ପାନେ ଶିଖେଇଦିଏ ଯେ ଆଉ ଯେପରି ଦିନେ ସେମାନେ ବେଶ୍ୟାଘରମୁହାଁ ନ ହୁଅନ୍ତି । ମୁଁ କହିଲି—"ହଁ ଗୋ ହଁ, ପାଉଣା । ଭାବିଥିଲି କ'ଣ ଏଇଟା ବାପଘର, ନା ଖଇରାତିଖାନା ?"

ସେମାନେ ମହାମୁସ୍କିଲରେ ପଡ଼ି ଅଣ୍ଟା ଦରାଣ୍ଡିଲେ । ସମସ୍ତଙ୍କ ଅଣ୍ଟାରୁ ସବୁ ମିଶି ପ୍ରାୟ ଟଙ୍କା ଦଶଟା ବାହାରିଲା । ମୁଁ କହିଲି—"ବାଃ ! ବେଶ୍ ତ ! ଯେଉଁତକ ମଦ ଗିଳିଛ, ତା'ର ଦାମ୍ ତ ଏଥିରୁ ଉଠିବ ନାହିଁ । ମୁଁ ଏହାକୁ ନେଇ କ'ଣ କରିବି ?" ସେ ଲୋକଟା କହିଲା—"ଆମ ପାଖରେ ତ ଆଉ ପଇସା ନାହିଁ, ଆଜି ଆସି ଦେଇଯିବି ।"

ମୁଁ : ସେ କଥା ତ ହେବନାହିଁ ଲୋ ବାପଧନ ! ଏଠା ଛାଡ଼ିଲେ ଆଉ ସେ କଥା ମନେ ରହିବ ନା ? ଦିଅ, ଯାଅ; ନ ଦେବ ତ ମୋ କଥା ମୁଁ କରିବି ।

ସେ : କିନ୍ତୁ ଆମ ପାଖରେ ଯେ ଆଉ କିଛି ନାହିଁ ।

ମୁଁ : କାହିଁକି ? ତୁମ ହାତରେ ସବୁ ଘଣ୍ଟା ଅଛି । ସୁନା ମୁଦି ଅଛି, ସୁନା ଚେନ୍ ଅଛି—ସେ ସବୁ ଦେଉନା ?

ସେମାନେ ଆସ୍ତେ ଆସ୍ତେ ଘଣ୍ଟା, ଚେନ, ମୁଦି ସବୁ କାଢ଼ି ଥୋଇଲେ । ମୁଁ କହିଲି—"ମୋର ପାଉଣା ଜଣକୁ ପଚାଶ ଟଙ୍କା କରି । ତୁମେ ଆସିଥିଲ ପାଞ୍ଚଜଣ, ମୋର ଦାବି ୨୫୦

ଟଙ୍କା । ଏ ଯେ ଚାରିଟା ଘଣ୍ଟା ଦେଇ ଏହାର ଦାମ୍ ବୋଧହୁଏ ନୂଆବେଳେ ହେବ ୩୦ ଟଙ୍କା କରି; ପୁରୁଣାବେଳେ ଅଧା ଦାମ୍ ହେବ କି ନାହିଁ । ଏହାର ଅଧା ଦାମ୍ ଷାଠିଏ ଟଙ୍କା । ସୁନା ମୁଦି ଯେ ତିନିଟା, ସେ ପ୍ରାୟ ହେବ ପଚାଶ ଟଙ୍କା । ଏପରି ହେଲା ୧୧୦ ଟଙ୍କା । ଦୁଇଟା ସୁନାର ଚେନ୍ ପ୍ରାୟ ତିରିଶ ଟଙ୍କା । ମୋଟ ୧୪୦ ଟଙ୍କା । ନଗଦ ଟଙ୍କା ଦଶ, ଏପରି ହେଲା ସର୍ବମୋଟ ଶଏପଚାଶ । ଆଉ ବାକୀ ଶହେ ?"

ସେମାନେ ଏ କଥା ଶୁଣି ରାଗିଗଲେ । ଜଣେ କହିଲା—"ବେଟି ରାକ୍ଷସୀ, ଡାନ୍ ! କିଛୁତେଇ ଓର୍ ପେଟ ଭର୍‌ବେ ନା । ନା, ଆମରା କିଛୁଇ ଦିବନା । ତୋର ହାତେ କି ହବେ କର୍ ।"

ମୁଁ କହିଲି—"ଭଲକଥା ବାବୁ ! ଆଲୋ ମାଳତୀ ! ରମା ହେରିକା ସମସ୍ତଙ୍କୁ ଡାକିଦେ ତ ?" ତାଙ୍କ ଭିତରୁ ଆଉ ଜଣେ କହିଲା—"ଓଃ ! ଭାରି ଧମକ ତ ! ଆମେ ଯେମିତି..."

ମୁଁ : ତା' ଦେଖାଯିବ । ମାଡ଼ ଫୌଜଦାରୀ ହେବ । ଦାଣ୍ଡରେ ଲୋକ ଜମିଯିବେ । ପୁଲିସ ଆସି ପହଞ୍ଚିବ । ତା'ପରେ ଦେଖାଯିବ ।

ସେମାନଙ୍କ ତେଜ ଭାଙ୍ଗିଗଲା, ମୁହଁ ଶୁଖିଗଲା । ଦି'ତିନି ଜଣ ତା' ଭିତରୁ କାନ୍ଦ କାନ୍ଦ ହୋଇଗଲେ । ମୋ ମନରେ ଟିକିଏ ଦୟା ଆସିଲା; କିନ୍ତୁ ପରେ ପୁଣି ଭାବିଲି—ନା, ଦୟାକରି ଏମାନଙ୍କୁ ଛାଡ଼ିଦେଲେ ଏମାନେ ପୁଣି ଏ ନରକରେ ବୁଡ଼ିବାକୁ ଧାଇଁବେ । ମୁଁ ପୁଣି ଟାଣ ହୋଇ କହିଲି—"କ'ଣ ବିଚାର ?"

ସେମାନଙ୍କ ଭିତରୁ ଜଣେ କହିଲା—"ଆମର ତ ଆଉ କିଛି ନାହିଁ; ଯାହା ନେଲ ନେଇ, ଆମକୁ ଛାଡ଼ିଦିଅ । ଆମେ ତମ ହାତ ଧରୁଛୁଁ । ଆଜି ସନ୍ଧ୍ୟାବେଳେ ଆସି ଟଙ୍କା ଦେଇଯିବୁ ।"

ମୁଁ : ସେ କଥା ନାହିଁ ହେ ବାବୁ ! ଏ ନଗଦ କାରବାର ।

ସେ : କିନ୍ତୁ ଆଉ କ'ଣ ଦେବୁ ?

ମୁଁ : କାହିଁକି ? ତୁମର ଏଇ ଯେ କୋଟ, ରେଶମି କାମିଜ, ରେଶମି ଚାଦର—ଏସବୁ ଦିଅ । ଏ ସବୁରୁ ତ ଶହେ ଟଙ୍କା ଉଠିବ ନାହିଁ, ଯାହା ହେବ; ଆଉ କ'ଣ କରିବା । ଭଲ ଲୋକ ଘରର ପିଲା ବୋଲି ତ ଘରେ ରଖିଲି । ଇମିତି କାଙ୍ଗାଳିଆ ଛତରଖିଆଗୁଡ଼ାଏ ବୋଲି ଜାଣିଥିଲେ କ'ଣ ଦୁଆର ମଡ଼ାଇଥାନ୍ତି ?"

ସେମାନେ କାନ୍ଦ କାନ୍ଦ ହୋଇ ଦେହରୁ କୋଟ କାମିଜ ବାହାର କରିଦେଲେ । ଜଣେ କହିଲା—"ଆଜି ଗଲେ ସିନା ସେ ବଦ୍‌ମାସ ଅବିନାଶ ବାବୁଙ୍କୁ ପଚାରିବି । ସେ ଜୁଆଚୋର କାହିଁକି ଏତେ ପ୍ରଶଂସା କରି ଆମକୁ ଏଠିକି ପଠାଇଲା ?"

●

# ଏଗାର

ଏମିତି କେତେ ଆଉ କେତେ କଥା କହି, ଖାଲି ଲୁଗା ଖଣ୍ଡିକମାନ ପିନ୍ଧି ସେମାନେ ବାହାରିଲେ । ମୁଁ ତାଙ୍କ ଶେଷ କଥାଗୁଡ଼ିକ ଶୁଣି ଚମକି ପଡ଼ିଲି । ଅବିନାଶ ବାବୁ ଏମାନଙ୍କୁ ପଠାଇଥିଲା ? ସେ ତ ଜାଣେ, ଗୋପ ମୋର ଭାଇ । ତା'ର ତେବେ ଏପରି କରିବାର କାରଣ ? ସେ ନିଜେ କେତେଥର ମୋ ଘରକୁ ଆସିଛି । ସେ ପ୍ରଥମ ଦିନର କଳି ଓ ରାଗ ମୋ ମନରୁ ଯେ ଭୁଲିଯାଇଥିଲା, ମୁଁ ଯେ ତାଙ୍କୁ ମୋ ପ୍ରଥମ ଯୌବନର ସମସ୍ତ ଉଦ୍ଦାମ ଆବେଗ ଦେଇ ଭଲ ପାଉଥିଲି ସେ କଥା ମଧ୍ୟ ପାସୋରି ଦେଇଥିଲି । ସାଧାରଣ ଗ୍ରାହକମାନଙ୍କ ସାଙ୍ଗରେ ମୋର ଯେ ସମ୍ବନ୍ଧ, ଅବିନାଶ ବାବୁ ସାଙ୍ଗରେ ମଧ୍ୟ ସେହିପରି; କିନ୍ତୁ ସେ ତ ଦିନେ ହେଲେ ସେଥିରେ ଅସନ୍ତୋଷ ଦେଖାଇ ନାହିଁ; ତେବେ ଏତେଦିନ ପରେ ଏବେ ମୋର ଏପରି ସର୍ବନାଶ କରିବାକୁ ତାର ଚେଷ୍ଟା କାହିଁକି ? ଏ କ'ଣ ଆଗ ଷଡ଼ଯନ୍ତ୍ରର ଗୋଟାଏ ସ୍ତର ? ଶ୍ରୀନାଥ ବାବୁଙ୍କୁ ତା'ହେଲେ କ'ଣ ଏଇ ଅବିନାଶ ବାବୁ ମତାଇଥିଲା ? ସେ ବେନାମୀ ଚିଠି କ'ଣ ଏଇ ଅବିନାଶ ବାବୁ ଲେଖିଥିଲା ? ଅବିନାଶର ଉଦ୍ଦେଶ୍ୟ କ'ଣ ? ଏ ବାବୁ ନିଜର ଯେଉଁ କୁଟୁମ୍ବିନୀଙ୍କି ଖୋଜିବାକୁ ଆସିଛନ୍ତି ବୋଲି ମୋର ବିଶ୍ୱାସ, ସେ କ'ଣ ଅରବିନାଶ ବାବୁ ଏହାଙ୍କର କୁଟୁମ୍ବିନୀଙ୍କୁ ଉଦ୍ଧାର କରିବାକୁ ଆସିବା କଥା ଜାଣିପାରି କ'ଣ ଏପରି କରିଛି ?

ମୋର ଦେହ ଶୀତେଇ ଉଠିଲା । ଅବିନାଶ ବାବୁ ଯେ କେଡ଼େ ବଡ଼ ସଇତାନ, ତାହା ବୁଝିବାକୁ ମୋର ବାକି ନଥିଲା । ଏ ବିଷୟଟା ଭଲ ରୂପେ ପରୀକ୍ଷା କରି ଦେଖିବାର ସଙ୍କଳ୍ପ କରି ମୋ ଶୋଇଲା ଘରକୁ ଆସିଲି । ଦେଖିଲି, ଗୋପ ସେ ଘରେ ପଡ଼ି ଛଟେଇ-ପଟେଇ ହେଉଛି । ତା' ଆଗରେ ଯେ ଦର୍ପଣଟା ରଖିଦେଇଥିଲି, ସେଇଟା ଚୁନା ହୋଇ ତଳେ ପଡ଼ିଛି । ମୁଁ ତା' ଦେହରେ ହାତ ବୁଲାଇ ଡାକିଲି—"ଗୋପ !"

ସେ ଚମକିଲା ପରି ହୋଇ ଉଠିଲା । ବୁଲିପଡ଼ି ମତେ ଚାହିଁ କହିଲା, "କମ ନାନୀ ! କମ ନାନୀ ! ତୁ ଏଠି ?"

ମୁଁ ଏ କଥାର କ'ଣ ବା ଜବାବ ଦେବି ? ବିଶେଷତଃ ତା'ର ସେ 'କମ ନନୀ !' ଡାକ ଶୁଣି ମୋର ତୋଟି ବନ୍ଦ ହୋଇ ଆସିଲା । ମୁଁ ମୁହଁ ପୋତି ରହିଲି । ସେ କହିଲା—"ଓଃ, ବୁଝିଛି, ତୁ ଚଞ୍ଚଳା ବେଶ୍ୟା ! କମ ନାନୀ ବେଶ୍ୟା, ଓଃ ! ମୋ ମୁଣ୍ଡଟା କିନ୍ତୁ ଫାଟିଗଲା ପରି ଲାଗୁଛି । ନାନୀ, ମତେ ବଡ଼ କଷ୍ଟ ହେଉଛି ।"

ମୁଁ ଧାଇଁଯାଇ 'ଓଡିକଲୋନ୍' ଶିଶିଟା ଆଣି ତା' ମୁଣ୍ଡରେ ଗୋଟାଏ ପଟି ପକାଇଦେଲି । ସେ ଦଶ ପନ୍ଦର ମିନିଟ୍ ତୁନି ହୋଇ ପଡ଼ିଗଲା । ତା'ପରେ ଟିକିଏ ଆରାମ ପାଇ କହିଲା— "ନନୀ !"

ମୁଁ ତା' ଖଟତଳେ ଆଣ୍ଠୁମାଡ଼ି ବସି କହିଲି, "ଗୋପ !" ମୋ ଆଖିରୁ ଧାର ଧାର ହୋଇ ଲୁହ ବୋହିଯାଉଥାଏ—"ଗୋପ, ମୁଁ—କୁଳକଳଙ୍କିନୀ ! ମୁଁ ତୁମ ସମସ୍ତଙ୍କ ମୁହଁଟେକ ଭାଙ୍ଗିଦେଇଛି; କିନ୍ତୁ ଭାଇ, ବଡ଼ କଷ୍ଟରେ ପଡ଼ି—ବଡ଼ ଯନ୍ତ୍ରଣା ଭୋଗି...."

ସେ କ୍ଷଣକାଳ ପାଇଁ ନୀରବ ରହି କ'ଣ କେତେ ଭାବିଲା ପରି ବୋଧହେଲା । କ୍ରମେ ତା'ର ଆଖିଦିଓଟି ଲୁହରେ ଛଳ ଛଳ ହୋଇଉଠିଲା । ତା'ପରେ ସେ ଆରମ୍ଭ କଲା—"ଥାଉ, ସେ କଥା ଆଉ କହନା ନାନୀ ! କହନା ! ମୁଁ ସେ ସବୁ ଜାଣେ । ତୁ ସେ ନରକ ଯନ୍ତ୍ରଣା ସହି ନପାରି ପଳାଇ ଆସିଲା ପରେ ମୁଁ ଯେତେବେଳେ ସେ କଥା ଶୁଣିଲି, ସେତେବେଳେ ଅବଶ୍ୟ ତୋ ଉପରେ ମୋର ଭାରି ରାଗ ହୋଇଥିଲା । ମୁଁ ସେତେବେଳେ ପିଲା, ପାଞ୍ଚ ଲୋକ ପାଞ୍ଚ କଥା କହିଲେ । ମୁଁ ସେଥିରେ ଭାସି ଯାଇଥିଲି; କିନ୍ତୁ ପାସୋରି ପାରି ନଥିଲି । ବେଳେ ବେଳେ କାହୁଁ ଆସି ତୋର ଓ ମୋର ସେ ପିଲାଦିନର ଧୂଳିଖେଳ କଥା ମନେ ପଡ଼ିଯାଏ । ତୁ ଯେ ଅପମାନରେ କେଡ଼େ ଅସହିଷ୍ଣୁ, ତା'ର କୋଡ଼ି କୋଡ଼ି ଉଦାହରଣ ମୋ ଆଖି ଆଗରେ ନାଚିଯାଏ । ଏଇପରି ଦୁଇ ତିନିବର୍ଷ କଟିଗଲା । ପରେ ମୁଁ ଦିନେ କାଗଜରେ ଦେଖିଲି—ଜଣେ କୁଳସ୍ତ୍ରୀ ଶାଶୂ-ଶସୁରଙ୍କ ଅତ୍ୟାଚାରରେ ପୀଡ଼ିତ ହୋଇ ଘରଦ୍ୱାର ଛାଡ଼ି ଚାଲିଆସିଥିଲା, ଅନ୍ୟ ପାଖରେ ରହିଥିଲା । ସେଥିପାଇଁ ଶାଶୂ-ଶଶୁର ମୋକଦମା କଲେ । ମୋକଦମାରେ ତାଙ୍କର ଦୁଷ୍କୃତି ସବୁ ପ୍ରମାଣିତ ହେବାରୁ ହାଇକୋର୍ଟ ସେମାନଙ୍କ ମକଦ୍ଦମା ଡିସ୍‌ମିସ କଲେ । ଜଜ୍‌ସାହେବ ରାୟରେ ଏକଥା ଲେଖିଥିଲେ—

"ମନୁଷ୍ୟ ପ୍ରତି ପଶୁ ସଦୃଶ ବ୍ୟବହାର କରିବାର ଅଧିକାର କାହାରି ନାହିଁ । ସମସ୍ତ ମନୁଷ୍ୟ ସମାନ ଓ ସମସ୍ତ ସାମାଜିକ ବନ୍ଧନ ପବିତ୍ର । ଯେ ଲୋକ ଏହି ପବିତ୍ରତା ନଷ୍ଟ କରେ, ମନୁଷ୍ୟତାର ଅବମାନନା କରେ—ଅପରର କାର୍ଯ୍ୟ ସମାଜ ଚକ୍ଷୁରେ ଯେତେ ଅଗ୍ରହଣୀୟ ହେଉ ପଛକେ, ତା'ର ବିରୁଦ୍ଧରେ କୌଣସି ପ୍ରତିକାର ସେ ପାଇନପାରେ ।"

ଏହି କେତୋଟି କଥା ପଢ଼ି ମୁଁ ଭାବିଲି ତୋର କଥା । ତୁ ଯଦି ଏହିପରି ନିର୍ଯାତନାର ଦାଉରେ ଘର ଛାଡ଼ି ଚାଲିଯାଇଥାଉ, ତା'ହେଲେ ତୋ ପ୍ରତି ମୋର ଏ ରାଗ ଓ ଘୃଣା ତ ନ୍ୟାୟ୍ ନୁହେଁ । ସେହି ଦିନୁଁ ମୁଁ ସଙ୍କଳ୍ପ କଲି, ତୋର ଶାଶୁଘରେ ଥିବା ଦିନତକ ସମ୍ବନ୍ଧରେ ଯେତେ କଥା ମୁଁ ଜାଣିପାରେ, ଜାଣିବାର ଚେଷ୍ଟା କରିବି । ସେଥିପାଇଁ ମୁଁ ଥରେଅଧେ ତୋ ଶାଶୁଘର ଗାଁକୁ ଯାଇଛି । ଗୋଟା ଦି'ଟା ମାଇକିନିଆ ନିଯୁକ୍ତ କରିଛି । ଶେଷରେ ମୁଁ ବୁଝିଲି, ତୋ ପ୍ରତି କେତେଦୂର ଅହେତୁକ ନିର୍ଯ୍ୟାତନା, ଅତ୍ୟାଚାର ଓ ଉତ୍ପୀଡ଼ନ ହୋଇଥିଲା । ସେ ସମସ୍ତ ଶୁଣି ମୋ ମନରେ ଏପରି ରାଗ ହେଲା ଯେ, ଭାବିଲି—ତୋର ଶାଶୁ ଓ ନଣନ୍ଦଙ୍କୁ ଯାଇ ଘୋଡ଼ା ଚାବୁକରେ ପିଟନ୍ତି । ତା' ପରେ ମୋର ବ୍ରତ ହେଲା, ତୁ ଯେଉଁଠାରେ ଥା, ମୁଁ ଖୋଜି ବାହାର କରିବି ଓ ତୋର ଶତ ଅପରାଧ ସତ୍ତ୍ୱେ ତତେ ମୋର ନାନୀ ବୋଲି ଗ୍ରହଣ କରିବି । ତୁ ଯେ ଏ ଅବସ୍ଥାର ଆସି ପଡ଼ିଥିବୁ, ସେ କଥା ମୋର ମନେ ହୋଇନଥିଲା—ମନେ କରିଦେଲେ ତୋର ସ୍ୱାମୀ ।"

ମୁଁ ଅଧୀର ହୋଇଉଠି ପଚାରିଲି—"ମୋର ସ୍ୱାମୀ ! ତାଙ୍କର ସନ୍ଧାନ ତୁ କ'ଣ ପାଇଛୁ ? ସେ କେଉଁଠାରେ ଅଛନ୍ତି ?" ମୋର ଏଇ ପ୍ରଶ୍ନଗୁଡ଼ିକରେ ଦେଖିଲି, ସେ ବଡ଼ ବିବ୍ରତ ହୋଇପଡ଼ିଲା । ମତେ ସବୁ କଥା କହିବ କି ନାହିଁ, ସେ ସମ୍ବନ୍ଧରେ ତା'ର ସନ୍ଦେହ ଆସିଲା । ଶେଷରେ ସେ ବୋଧହୁଏ ଠିକ୍ କଲା କହିବ ନାହିଁ । ଉତ୍ତର ଦେଲା—''ସେଥିରେ ତୋର ଲାଭ କ'ଣ ? ତାଙ୍କ କଥା ତୋର ପାସୋରି ଦେବା ଉଚିତ । ତେବେ ମୁଁ ଏତିକି କହିପାରେ, ସେ

ତୋର ନିର୍ଯ୍ୟାତନାର କଥା ଜାଣନ୍ତି, ଆଉ ସେଥିପାଇଁ ତୋତେ କ୍ଷମା କରିଛନ୍ତି । ସେଇ ମତେ କଥା ଛଳରେ କହିଥିଲେ, ତୁ ହୁଏତ ଭାଗ୍ୟ ବିପର୍ଯ୍ୟୟରେ ଶେଷରେ ଏ ପଛାର ଆଶ୍ରୟ ନେଇଥିବୁ । ସେହିଦିନୁଁ ବେଶ୍ୟାମାନଙ୍କର ମତିଗତି ଓ ଅବସ୍ଥାର ବିଷୟ ମୁଁ ସବୁବେଳେ ଭାବିବାକୁ ଲାଗିଲି ।"

ମୁଁ ବାଧାଦେଇ ପଚାରିଲି—"ତୁ କ'ଣ ତା'ହେଲେ 'ଉତ୍କଳ ସାହିତ୍ୟ'ରେ ସେ 'ବାରନାରୀ' ବୋଲି ପ୍ରବନ୍ଧଟା ଲେଖିଥିଲୁ ?"

ସେ : ହଁ, ସେ ମୋର ଏହି ସବୁ ଚିନ୍ତାର ଫଳ । ଆଉ ସେହି ହେତୁରୁ ମଧ୍ୟ ମୁଁ ଆଜି ତତେ ଦେଖିଲି ।

ମୁଁ : ସେହି ହେତୁରୁ ମତେ ଦେଖିଲୁ ? ସେ କିପରି ?

ସେ : "ମୋର ଏ ପ୍ରବନ୍ଧଟା ପ୍ରକାଶିତ ହେଲା ପରେ ଆମ ଛାତ୍ର ମହଲରେ ଭାରି ଯୁକ୍ତିତର୍କ ଆରମ୍ଭ ହେଲା । ଡିବେଟିଂ ସୋସାଇଟିରେ, ବାଟରେ ଘାଟରେ, ବୁଲିଗଲା ବେଳେ ଏହି କଥା ନେଇ ଖୁବ୍ ଚହଳ ପଡ଼ିଲା । ମତେ ଥରେ ହେଲା ଜର । ଅବିନାଶ ବାବୁ ଆସିଲେ ଚିକିତ୍ସା କରିବା ପାଇଁ । ଜର ଭଲ ହୋଇଗଲା ପରେ ଅବିନାଶ ବାବୁ ଥରେଅଧେ ମୋ ବସାକୁ ଯା'ଆସ କରିଥିଲେ । ସେତେବେଳେ ତାଙ୍କ ସାଙ୍ଗରେ ମୋର ଅଧିକାଂଶ ସମୟ ଏହି ବିଷୟ ନେଇ ଯୁକ୍ତିତର୍କ ହେଲା; ସେ କିନ୍ତୁ ମତେ କେତେଥର କହିଛନ୍ତି—'ତୁମେ ବେଶ୍ୟାମାନଙ୍କୁ ଜାଣିନାହଁ; ତାଙ୍କର ହୃଦୟ ନାହିଁ—ଆତ୍ମା ନାହିଁ ।' ମୁଁ ବେଶ୍ୟାମାନଙ୍କ ସହିତ ମିଶିବାର ଇଚ୍ଛା ପ୍ରକାଶ କଲାରୁ ସେ ମଧ୍ୟ ମତେ ଖୁବ୍ ଜୋର୍‌ରେ ସେଥିରୁ ନିବୃତ୍ତ କରାଇଛନ୍ତି । କାଲି ସନ୍ଧ୍ୟାବେଳେ ହଠାତ୍ କାହିଁକି ସେ ଆସି କହିଲେ—'ବେଶ୍ୟାର ହୃଦୟ ଓ ମନ କଥା ଜାଣିବାକୁ ତୁମର ଇଚ୍ଛା ପରା ? ଆଚ୍ଛା, ମୁଁ ଗୋଟାଏ ନାମଜାଦା ବେଶ୍ୟାର ଠିକଣା ଦେଉଛି, ସେଠାକୁ ଯାଅ, ଦେଖିବ ସେ କିପରି ପଦାର୍ଥ ।' ଏହା କହି ସେ ତାଙ୍କର ତିନି-ଚାରିଜଣ ଛାତ୍ରଙ୍କୁ ମୋ ସଙ୍ଗରେ ଦେଲେ । ଆମ୍ଭେମାନେ ହୋଟେଲରେ ଖାଇଲୁ । ଆମ ସାଙ୍ଗ ମହେନ୍ଦ୍ର କହିଲା—'ଆଜି ଯଦି ବେଶ୍ୟାର ହୃଦୟ-ରହସ୍ୟ ଜାଣିବାକୁ ଯିବା, ତା'ହେଲେ ବେଶ୍ୟାଗାମୀ ଲୋକର ସମସ୍ତ କାର୍ଯ୍ୟ କରାଯାଉ ।' "

ଏହା କହି ମଦ ଖାଇବାର ପ୍ରସ୍ତାବ ସେ କଲା । ମୁଁ ପ୍ରଥମେ ନାହିଁ କଲି; କିନ୍ତୁ ସେ ଯୁକ୍ତିତର୍କବଳରେ ବୁଝାଇଦେଲା ଯେ, ଆମେ ଯଦି ନିତାନ୍ତ ସୁନାପିଲାମାନଙ୍କ ପରି ବେଶ୍ୟା ଘରକୁ ଯିବା, ତାହେଲେ ସେ ଆମ୍ଭମାନଙ୍କର ଏ ଶିଷ୍ଟାଚାର ଦେଖି ଦବିଯିବ, ଆଉ ଆମ ସାଙ୍ଗରେ ସେ ମନ ଖୋଲି ବ୍ୟବହାର କରିପାରିବ ନାହିଁ, ଆମ୍ଭମାନଙ୍କର ପରିଶ୍ରମ ପଣ୍ଡ ହେବ । ତାହାର ଏ ଯୁକ୍ତି ଖୁବ୍ ସରସ ବୋଲି ମନେହେଲା । ମୁଁ ଅନିଚ୍ଛା ସତ୍ତ୍ୱେ ମଦ ଖାଇଲି, ତା'ପରେ ଏଠାକୁ ଆସିଲୁ ।

ଅବିନାଶବାବୁର ନାମ ଶୁଣିଲାବେଳୁଁ ମୁଁ ସତର୍କ ହୋଇ ଯାଇଥିଲି; ପଚାରିଲି, "ସେଇ ତ କାଳିଆହାଣ୍ଡିମୁହାଁ ଷଣ୍ଢମାର୍କା ଟୋକାଟା ନା ? ସେଇ ତତେ କହିଲା ମଦ ଖାଇବାକୁ ।"

ଗୋପ : ହଁ ।

ମୁଁ : ସେ କ'ଣ ଡାକ୍ତର ?

ଗୋପ : ନା, ଡାକ୍ତରୀ ପଢ଼ୁଛି । ଶୁଣିଛି, ସେ ଅବିନାଶବାବୁଙ୍କ ଠାରୁ ସାହାଯ୍ୟ ନିଏ ।

ତା'ପରେ ଆଉ ବାଜେ କଥା ଅନେକ ପଡ଼ିଲା—ଭାଉଜ କଥା, ଘରକଥା । ମୁଁ ଆଉ ଥରେ ମଧ୍ୟ ମୋ ସ୍ୱାମୀଙ୍କ ବିଷୟ ଜାଣିବା ପାଇଁ ତାକୁ ପଚାରିଲି; କିନ୍ତୁ ସେ ଶୁଣି ବାଆଁରେଇଦେଲା । ଦେଖିଲି—କୌଣସି ବିଶେଷ କାରଣ ହେତୁରୁ ସେ ତାଙ୍କ କଥା ମତେ କହିବାକୁ ନାରାଜ ।

ତା'ପରେ ଗୋପ ପଚାରିଲା—"ୟା ପରେ ?" ମୁଁ କିଛି ବୁଝିନପାରି ପଚାରିଲି—"ୟା ପରେ ? ୟାପରେ କ'ଣ ?"

ଗୋପ : ତୁ ତ ଆଉ ଏଠି ରହିପାରିବୁ ନାହିଁ । ତତେ ଯେ ମୋ ସାଙ୍ଗରେ ଯିବାକୁ ହେବ !

ମୁଁ : ଯିବାକୁ ହେବ ? କେଉଁଠିକି ?

ଗୋପ : ଗାଆଁକୁ ।

ମୁଁ : ଗାଆଁକୁ ? ତୁ କ'ଣ ପାଗଳ ହେଲୁ ଗୋପ ? ଏସବୁ ପରେ ମୁଁ ଆଉ ଗାଆଁକୁ ଯିବି କେଉଁ ମୁହଁରେ ?

ଗୋପ : ତା' ନହେଲେ କ'ଣ କରିବୁ ? ପୁଣି ଏଇ ନରକରେ ଘାଣ୍ଟି ହେବୁ ? ମୁଁ ଆଉ ତା' କୌଣସି ପ୍ରକାରେ କରିବାକୁ ଦେବି ନାହିଁ ।

ମୁଁ : ତା' ନହେଲେ ମୁଁ ଏ ବ୍ୟବସାୟ ଛାଡ଼ି ଦେଇ ଅନ୍ୟଠାରେ ରହିବି; କିନ୍ତୁ ଗାଆଁକୁ ଯିବି ନାହିଁ ।

ଗୋପ : କାହିଁକି ? କି ଦୋଷରୁ ?

ମୁଁ : ମୁଁ ଯେ ଦୋଷ କରିଛି; ତା'ଠାରୁ ବଳି ଆଉ କି ଦୋଷ ହୋଇପାରେ ? ମୁଁ ଏ କଳଙ୍କବୋଝ ଘେନି—ଏ ପୋଡ଼ା ଅଙ୍ଗାର ହୃଦୟ ନେଇ ପୁଣି ତୋ ଘରେ ରହିବି ? ତୋର ସାରା ଜୀବନ ଆଗରେ ପଡ଼ିଛି; ମୁଁ ଜାଣିଶୁଣି ତାକୁ ନଷ୍ଟ କରିବି ? ଏ ତ ସମ୍ଭବ ନୁହେଁ ଗୋପ ! ମୁଁ ଏଡ଼େ ହୀନା, ଏଡ଼େ ରାକ୍ଷସୀ ନୁହେଁ ।

ଗୋପ : କିନ୍ତୁ ତୁ ଯାଇ ଗାଆଁରେ ରହିଲେ ମୋ ଜୀବନର ଗତିରେ କିପରି ବାଧା ପଡ଼ିବ, ତା' ତ ମୁଁ ଜାଣିପାରୁନାହିଁ ।

ମୁଁ : ତୁ ପିଲା, ସେ ସବୁ କଥା କିପରି ଜାଣିବୁ ? କିନ୍ତୁ ଭାବି ଦେଖ୍, ମୁଁ ଯାଇ ରହିଲେ, ସମାଜରେ ଛି'ଛାକର କରିବେ । ତୁ ବାହାସାହା ହୋଇପାରିବୁ ନାହିଁ—ଏ ସବୁ କ'ଣ ମୁଁ ସହିପାରିବି ?

ଗୋପ : ଓଃ, ଏଇ କଥା । ମୋର ସେଥିକି ଖାତିର ନାହିଁ । ସମାଜ ମତେ ଏକଘରିଆ କରିବ, କରୁ—ମୁଁ ସମାଜ ଛାଡ଼ିଦେବି । ଆଜାକାଲି ସମାଜରେ କ'ଣ ଅଛି ? ମୁଁ ଯଦି ଆସି

ସହରରେ ରହେ, ତାହେଲେ ମୋର ସାଙ୍ଗସୁଖ ଅଭାବ ହେବେନାହିଁ । ଆଉ ବାହାସାହା କଥା—ସେ ତ ସେପରି କିଛି ବଡ଼ କଥା ନୁହେଁ । ତା'ପରେ ବିବାହ ହେବାରେ ବି ମୋର ସେପରି ଇଚ୍ଛା ନାହିଁ । ଯଦି ହୁଏ, ତାହାହେଲେ ସହରର ସଭ୍ୟସମାଜରେ ଉପଯୁକ୍ତ ପାତ୍ରୀର ଅଭାବ ହେବନାହିଁ ।

ମୁଁ : ତା'ମାନେ ତୁ ମୋ ଲାଗି ବାପ-ଅଜାଙ୍କ ଅମଳର ଘରଦ୍ୱାର ଛାଡ଼ି ସମାଜ, ଜାତି, କୁଳ, ସବୁ ଛାଡ଼ି ଆସି ସହରରେ ବ୍ରାହ୍ମ ବା ଖ୍ରୀଷ୍ଟିଆନ ହୋଇ ରହିବୁ । ଭାଇ ଗୋପରେ ! ତୋଠାରେ ଏତେ ଦୟା, ଏତେ ଅନୁଗ୍ରହ ପାଇବି ବୋଲି ମୁଁ ଆଶା କରି ନ ଥିଲି ।

ମତେ ଭାରି କାନ୍ଦମାଡ଼ିଲା । ମୁଁ ବହେ ଭଲ କରି କାନ୍ଦିଲି । ଗୋପ ମଧ୍ୟ ମୋ କାନ୍ଦିବା ଦେଖି କାନ୍ଦିପକାଇଲା । ଶେଷରେ ମୁଁ କହିଲି—"ନା ଗୋପ, ମୁଁ ବରଂ ବିଷ ଖାଇ ମରିବି, କିନ୍ତୁ ତତେ ଏ କଳଙ୍କ ଭିତରକୁ ଟାଣିଆଣିବି ନାହିଁ । ମୋର ନିଜ ମୁଣ୍ଡ ମୁଁ ଖାଇଛି, ତୋର ଜୀବନକୁ ପୁଣି ପୋଡ଼ି ଅଙ୍ଗାର କରିବି କାହିଁକି ?

ମୋର୍ ଏ କଥା ଶୁଣି ତା' ମୁହଁ କଳା ପଡ଼ିଗଲା । କାନ୍ଦ କାନ୍ଦ ହୋଇ ସେ କହିଲା, "ନାନୀ ! ମୋର ଆଉ କେହି ନାହିଁ—ସଂସାରରେ ମୁଁ ବଡ଼ ଏକା । ଛୁଟିରେ ଗାଁକୁ ଗଲେ ସେ ଖାଲି-ଘର ଦେଖି ମୁଁ ପଳାଇଆସେ । ଏଡ଼େ ବଡ଼ ସହର, ସେଥିରେ ସାଙ୍ଗସାଥୀ ଘେନି ବୁଲିଲାବେଳେ ମୁଁ ବରାବର ଭାବେ—ଏତେ ଲୋକଙ୍କ ମଧ୍ୟରେ ମୁଁ ଏକା ! କେବଳ ଆଶା କରିଥିଲି, ଯଦି କେଉଁ ଦିନ ତତେ ଖୋଜି ପାଏ, ତାହେଲେ ଆଣି ପାଖରେ ରଖିବି, ମନର ଏ ଏକୁଟିଆ ଭାବ ମେଣ୍ଟାଇବି । ଶେଷରେ ତୁ ମଧ୍ୟ ମତେ ଏକୁଟିଆ କରି ଛାଡ଼ିଦେବାକୁ ଯାଉଛୁ ନାନୀ ! ଆଜି ବାପା ବୋଉ ଆସି ତତେ ଏ କଥା କହିଥିଲେ, ତୁ କ'ଣ ତାଙ୍କୁ ଏପରି ଏଡ଼ିଦେଇଥାନ୍ତୁ ?

କହୁଁ କହୁଁ ସେ କାନ୍ଦିପକାଇଲା । ମୋର ସମସ୍ତ ଦମ୍ଭ, ସମସ୍ତ ସଂକଳ୍ପ ତା'ର ସେହି ଲୁହର ସୁଅରେ—ବର୍ଷାଦିନ କାଠଯୋଡ଼ିରେ ମୁର୍ଦ୍ଦାର ଭାସିଗଲା ପରି ଭାସିଗଲା, ମୁଁ ତାକୁ ଧରିପକାଇ ବୁହେ କାନ୍ଦିଲି । ଆମ ଦୁହିଁଙ୍କର ଲୁହ ଏକାଠି ହୋଇ ଗଙ୍ଗାଯମୁନାର ସଙ୍ଗମ ପରି ବଡ଼ ପବିତ୍ର—ବଡ଼ ନିର୍ମଳ ଭାବ ଆଣିଲା । ହୃଦୟର ସମସ୍ତ ଦୁଃଖ କଷ୍ଟ—ସମସ୍ତ ସନ୍ଦେହ ଯାତନା ଦୂରୀଭୂତ ହୋଇଗଲା । ତଥାପି ମୋର ମନ ହେଲା ଯେ, ଗୋପ ଯାହା କହୁଛି, ତାହା କରିବା ବୋଧହୁଏ ଠିକ୍ ହେବନାହିଁ । ଏ ବିଷୟରେ ସେ ବାବୁଙ୍କର ପରାମର୍ଶ ନେବା ଉଚିତ ବୋଲି ମୁଁ ଭାବିଲି । ଗୋପକୁ ପଚାରିଲି, "ତୁ ତୋ ବସାକୁ ଯିବୁ ନା ?"

ସେ : ନା, ଆଜି ମୁଁ କୌଣସି ମତେ ତତେ ଛାଡ଼ି ଯିବିନାହିଁ । କେତେଦିନ ପରେ...ଓଃ, କେତେ ଯୁଗ ପରେ ଆଜି ତତେ ଦେଖିଛି କମ ନାନୀ ! କେତେବର୍ଷ ପରେ ମୁଁ ସଂସାରରେ ଏକା ନୁହେଁ ବୋଲି ଭାବୁଛି, ଆଜି ମୁଁ ଏହି ଭାବ ହୃଦୟ ମନ ପୂରାଇ ଅନୁଭବ କରିବି ।

ମୁଁ : କିନ୍ତୁ ତୋ ବସାଲୋକେ ତୁ ନ ଗଲେ କ'ଣ କହିବେ ?

ସେ : ଓଃ ! ତାଙ୍କ କଥା ? ତୋର ଗୋଟାଏ ଚାକରକୁ କହ, ସେ ଖଣ୍ଡେ ଚିଠି ନେଇଯିବ, ସେହି ତ ଯଥେଷ୍ଟ । ତୁ ଗାଁକୁ ଯିବୁ କି ନାହିଁ, ସେ କଥା ତ କହିଲୁ ନାହିଁ ?

ମୁଁ : ସେ କଥା ପରେ କହିବି । ତୁ ଆଗ ଉଠି ମୁହଁହାତ ଧୁଆଧୋଇ ଓ ଗାଧୁଆ ପାଧୁଆ ଶେଷ କର ।

ସେ : ଆଜି କିଛି କରିବାକୁ ମୋ ମନ ହେଉନାହିଁ ।

ମୁଁ ଦେଖିଲି, ଆଜି ଗୋପ ମତେ ପ୍ରତି ମୁହୂର୍ତ୍ତରେ କନ୍ଦେଇବ; କିନ୍ତୁ ଏ କାନ୍ଦିବାରେ କି ସୁଖ ! କି ଆନନ୍ଦ ! କି ଆଶ୍ୱାସ ! ମୁଁ କହିଲି—"ବାୟାଟା ପରା ! ଯା, ସବୁ କାମ ସାରିଦେ । କେତେ ସମୟ ଲାଗିବ ଯେ ! ମୁଁ ଏଇ ଅଧ ଘଣ୍ଟାକ ଭିତରେ ଆସୁଛି ।" ଏହା କହି ରାମାକୁ ଡାକିଦେଲି । ଗୋପକୁ ପାଣି, ଗୁଡ଼ାଖୁ, ଦାନ୍ତକାଠି ଫେରିକା ଦେବାକୁ କହି ମୁଁ ମୋ କାମ ସାରିବାକୁ ଚାଲିଗଲି ।



## ବାର

ସେଦିନ ସ୍ୱର୍ଗ-ଅପ୍‌ସରାର ସଙ୍ଗୀତରେ, ପର୍ବତ ଝରଣାର କୁଳୁକୁଳୁ ଶବ୍ଦରେ, ବସନ୍ତର କୋଇଲି କୁହୁତାନରେ, ଶିଶୁର ଦରୋଟି ସ୍ୱରରେ ମୋର ହୃଦୟ ମନ, ପଞ୍ଚଭୂତ ଆତ୍ମା ପୂର୍ଣ୍ଣ । ଚାଲିବାବେଳେ ମୋ ଗୋଡ଼ ତଳେ ଲାଗୁନଥିଲା । ମୋର ଶିରାପ୍ରଶିରାରେ, ରକ୍ତର ପ୍ରତ୍ୟେକ ଉଚ୍ଛ୍ୱାସରେ ସଙ୍ଗୀତର ଯେ ତାଳ ଉଠୁଥିଲା, ସେଥିରେ ନାଚିଯିବାକୁ ମୋର ଗୋଡ଼ ଯେପରି ଉଛନ୍ନ । ମୋର ଏପରି ଭାବ ଦେଖି ମାଳତୀ ଆସି କହିଲା—"କିଗୋ, ଆଜି ତ କ'ଣ ଭାରି କୁରୁଳୁଛ ? ନୂଆ ନାଗର ପାଇଲେ ଲୋକେ କ'ଣ ଏମିତି ହୁଅନ୍ତି କି ଲୋ ?"

ମୁଁ ତାକୁ କଟମଟ କରି ଅନାଇଁ କହିଲି—"ଚୁପ୍ ହୋ, ଖଳବି ! ଆଉ ଫେରେ ନାଗର-ଫାଗର କଥା ଯେ ମତେ କହିବ, ମୁଁ ତା' ମୁଣ୍ଡରେ ଗାତ ଖୋଳିଦେବି । ଆଜି ଠାରୁ ମୁଁ ମୁକ୍ତ ! ଆଜି ଠାରୁ ମୋର ନରକ ଭୋଗ ଶେଷ । ମୁଁ ଥିଲି ଦେବୀ—ଋଷିର ଅଭିଶାପରେ ଏ ନରକରେ ଆସି ପାଣ୍ଡି ହେଉଥିଲି, ଆଜି ପୁଣି ଦେବୀ ହୋଇଛି । ମୋର ଅଭିଶାପ ତୁଟିଯାଇଛି । ଏ ବେଶ୍ୟାଘର ନୁହେଁ, ମାଳତୀ ! ଏ ସ୍ୱର୍ଗପୁରୀ । ଆଜି ଉତ୍ସବ କର—ଆଜି ଖୁବ୍ କ୍ଷୀରୀ ପିଠା, କାନିକା ପଲାଉ କରି ଖାଅ । ଆଜି ସମସ୍ତଙ୍କୁ ମୁଁ ନୂଆଲୁଗା ଦେବି—ଆଜି ଦୁଃଖସୁଖ ଅନୁତାପ ସବୁ ପୋଡ଼ିଯାଉ ।"

ମୋର ଏ ଉତ୍ତେଜନା—ଏପରି କଥା ଶୁଣି ମାଳତୀ ମୁହଁ ବୁଲାଇ ପଳାଇଗଲା । ସେ କିପରି ଜାଣିବ—ହୃଦୟର ଏ ଶାନ୍ତି—ଏ ଆନନ୍ଦ ! କହିଲା—"ମାଲୋ ! ଶେଷବେଳକୁ ଏ ମାଇପିଟି ବାଇଆଣୀ ହୋଇଗଲା ନା କ'ଣ ?" ପ୍ରକୃତରେ ମୁଁ ସେତେବେଳେ ବାୟାଣୀ ହୋଇଯାଇଥିଲି । ଏତେ ଆନନ୍ଦ ଘେନି କି କେହି ପାଗଳ ନହୋଇ ରହିପାରେ ? ସକାଳେ କାମଦାମ ସାରି ଯେ ବସିଲୁଁ ଯେ, ଆମର ଆଉ ଗପ ସରେ ନାହିଁ । କେତେ ଯୁଗର କେତେ କଥା ଆସି ଯେ ପଡ଼ିଲା, ତା'ର କିଛି ଠିକଣା ରହିଲା ନାହିଁ । ଏମିତି କଥାବାର୍ତ୍ତା କରୁ କରୁ

ଆସି ତିନିଟା ବାଜିଲା । ସେତେବେଳେ ମୁଁ ଆଉ କାନ୍ଦ ସମ୍ଭାଳିପାରିଲି ନାହିଁ । ମୋ ହୃଦୟର ଗୀତ ଫୁଟି ବାହାରିପଡ଼ିଲା—

"ବାଜ ବଂଶୀ ବାଜ,
କୁଞ୍ଜ କାନନେ ବଂଶୀ ବାଜୁଛି
ସାଜ ଗୋପନାରୀ ସାଜ ।
ଚାନ୍ଦ-କିରଣ- ଧଉତ ଯମୁନା
ଚାନ୍ଦ କିରଣଧଉତ ନଭ,
ରଜତ-ସାଗରେ ମରକତ-ଢେଉ
ଏ କି ଦୃଶ୍ୟ ଅଭିନବ ।
ମନ୍ଦ ମଧୁର ପବନ
ସ୍ତବ୍ଧ ନିଶୀଥ ଗଗନ
ଉଲ୍ଲସି ଉଲ୍ଲସି ବାଜୁଛି ବଂଶୀ
ସାଜ ଗୋପନାରୀ ସାଜ ।"

ମୁଁ ମୁକ୍ତକଣ୍ଠରେ, ଉନ୍ମତ୍ତ ହୃଦୟରେ ଏ ଗୀତଟା ଯେତେବେଳେ ଗାଇଲି, ଗୋପ ଚମକି ଉଠି କହିଲା—"ଏ କ'ଣ ? ଏ କ'ଣ ତୋର ସ୍ୱର ନାନୀ ! ଏ ଯେ ଅମୃତ । ଏ ସ୍ୱର ତ ମୁଁ ତୋର କେବେ ଶୁଣିନଥିଲି !"

ଏହି ସମୟରେ ପଛରୁ ଜଣେ କିଏ କହିଲା—"କେହି ତ କେବେ ଶୁଣିନଥିଲା ବାବୁ ! ଏ ଯେ ହୃଦୟର ବଂଶୀ ।" ମୁଁ ଚମକି ପଡ଼ି ପଛକୁ ଚାହିଁଲି । ଦେଖିଲି, ସେ ବାବୁ ଆସି ହାଜର । ଗୋପ ଉଠି ଠିଆହେଲା; ତା'ର ମନର ବିରକ୍ତି ମୁଖରେ, ଆଖିରେ, କପାଳରେ ସ୍ପଷ୍ଟ ଜଣାପଡୁଛି । ମୁଁ ଆଉ ବିଳମ୍ବ ନକରି କହିଲି—"ଗୋପ, ଭାଇ, ଏ ଭଦ୍ରଲୋକ ମୋର ପରମ ଉପକାରୀ । ସୁତରାଂ ତୋର ମଧ୍ୟ ବନ୍ଧୁ ହେବା ଉଚିତ । ଏ ଆସିବା ଦିନୁ ମୋ ଜୀବନରେ ପରିବର୍ତ୍ତନ ଆସିଛି । ଆଉ ସେ ପରିବର୍ତ୍ତନର ଶେଷରେ ତୋ ସାଙ୍ଗରେ ଦେଖା । ଏଇ ଭଦ୍ରଲୋକ ପ୍ରଥମରେ ମୋ ମନରେ, ବେଶ୍ୟା ଯେ ପାପୀ ନୁହେଁ, ତା'ର ଯେ ମୁକ୍ତ ହେବାପାଇଁ ଗୋଟାଏ ପନ୍ଥା ଅଛି—ଏ ଭାବ ଆଣିଦେଇଥିଲେ । ଏ ପ୍ରଥମେ ବେଶ୍ୟାର ହାତରୁ ଅନ୍ନ ଖାଇ, ମହାପ୍ରଭୁ ଶବରୁଣୀକୁ ମୁକ୍ତ କଲା ପରି ମତେ ମୁକ୍ତ କରିଥିଲେ । ଏ ଜଣେ ଦେବତା, ନମସ୍କାର କର ତାଙ୍କୁ ।"

ଦେଖିଲି, ମୋର ଏ କଥାଗୁଡ଼ିକରେ ତା' ମନରୁ ସନ୍ଦେହ ଓ ବିରକ୍ତି ଦୂର ହେଲାନାହିଁ । ସେ ବାବୁଟି ଯେ ମୋର ଜଣେ ଗ୍ରାହକ, ତା' ମନରେ ଏହି ସନ୍ଦେହ ସେ ପର୍ଯ୍ୟନ୍ତ ରହିଥାଏ । ମୁଁ ଆଉ କ'ଣ କହିବାକୁ ଯାଉଥିଲି, ସେ ବାବୁ ମତେ ବାଧା ଦେଇ କହିଲେ, "ଏ ସ୍ତୋକ-ବାକ୍ୟରେ ଭୁଲିଯିବେ ନାହିଁ ବାବୁ ! ଯେ ମହତ୍ ସେ ଅନ୍ୟକୁ ମହତ୍ ବୋଲି କହି ନିଜ ମହତ୍ତ୍ୱର ପରିଚୟ ଦିଏ । ଆପଣଙ୍କର ଏ ଯେଉଁ ଭଉଣୀଟି, ଏ ଏକାବେଳେ ପିଟା ସୁନା ଖଣ୍ଡେ । ବିପଦର ନିଆଁରେ ପରୀକ୍ଷିତ ହୋଇ ହୋଇ ଏହାଙ୍କର ଅନ୍ତର ବାହାର ଏକାବେଳକେ ପବିତ୍ର, ଶୁଦ୍ଧ ହୋଇଯାଇଛି ।"

ଗୋପ ଅପ୍ରସନ୍ନ ମନରେ କହିଲା—"ତା' ତ ବୁଝିଲି, କିନ୍ତୁ ଆପଣଙ୍କର ହଠାତ୍ ଏତେବେଳେ ଏଠିକି ଆଗମନ କାହିଁକି ? ବୁଝିପାରୁନାହିଁ ।"

ସେ : ଯେତେବେଳେ ଦୁଇଟି ସରଳ ପବିତ୍ର ଆତ୍ମାର ମିଳନ ହୁଏ, ସେତେବେଳର ସେ ଦୃଶ୍ୟ ଦେଖିବାକୁ କାହାର ଲୋଭ ନହେବ ବାବୁ ?

ଗୋପ : ବୁଝିଲି, ଆପଣଙ୍କ ଦୃଷ୍ଟି ବେଶ୍ ତୀକ୍ଷ୍ଣ; କିନ୍ତୁ ଆମର ଏ ମିଳନ-ସଙ୍ଗୀତ ଆପଣଙ୍କ ଘରେ ଯାଇ ପହଞ୍ଚିବାର ସମ୍ଭାବନାଟା ଟିକିଏ ବିଶ୍ୱାସଯୋଗ୍ୟ ନୁହେଁ ।

ସେ : ଓଃ, ସେ ବିଷୟରେ କିଛି ମାତ୍ର ସନ୍ଦେହ ନାହିଁ । ଆପଣ ପରୀକ୍ଷା କରିପାରନ୍ତି ।

ମୁଁ ଦେଖିଲି, ଏ ଦୁହେଁଯାକ ବାଗ୍‌ଯୁଦ୍ଧ ଆରମ୍ଭ କରିବା ଉପରେ । ମୁଁ ତ ଏ ବାବୁଙ୍କୁ ଭଲକରି ଜାଣେ, ଅଳ୍ପକଥାରେ ତାଙ୍କର ରାଗ ଆସିଯାଏ । ଏହାର ଫଳ ଯେ କ'ଣ ହେବ—ଭାବି ଭାବି ମତେ ଟିକିଏ ଡରମାଡ଼ିଲା । ମୁଁ କହିଲି—"ଗୋପ ! ତୋର ସନ୍ଦେହ ନିତାନ୍ତ ଭୁଲ୍, ଆଉ ତୁ ଯେ ମତେ କ୍ଷମା କରିଛୁ, ତା'ର ଠିକ୍ ବିରୁଦ୍ଧ । ମୁଁ ଯେତେବେଳେ କହୁଛି ଯେ ମୋର ଉପକାରୀ ତେଣୁ ଦେବତା, ସେତେବେଳେ ତୋର ଏ କଥାଟା ମାନିନେବା ଉଚିତ ।" ମୋର ଏହି କଥା ଶୁଣି ଗୋପର ରାଗ ଟିକିଏ କମିଆସିବାର ଦେଖି ସେ ବାବୁଟି ପୁଣି କହିଲେ—"ଜଣକର ଆକାର-ଇଙ୍ଗିତରୁ ଏତେ ସରଳ ଯେଉଁ ସତ୍ୟଟି ଫୁଟିଉଠୁଛି, ତାକୁ ଯେ ବୁଝି ନପାରେ ସେ ବଡ଼ ଅନ୍ଧ ।"

ଗୋପ : ତା' ହୋଇପାରେ, କିନ୍ତୁ ଅଯାଚିତଭାବରେ ଉପଦେଶ ଦେବାଟା ଭଦ୍ରଲୋକର କାର୍ଯ୍ୟ ନୁହେଁ ।

ମୁଁ ଦେଖିଲି, ନିଆଁରେ ଘିଅ ଆହୁତି ପଡ଼ିଲା ପରି ପୁଣି ଏ ଯୁକ୍ତିର ଆଶ୍ରୟରେ ଦୁହିଁଙ୍କର ରାଗ ବଢ଼ିବା ଉପରେ । କ'ଣ କରିବି ? ବଡ଼ ମୁସ୍କିଲରେ ପଡ଼ିଲି । ଶେଷ ବେଳକୁ ମୁଁ ସେ ବାବୁଙ୍କୁ କହିଲି—"କିନ୍ତୁ ଆପଣ ଦିନେ ଯେ ଗୋପର ପ୍ରଶଂସାରେ ମତେ ଏକାବେଳକେ କାଲ କରିପକାଇଥିଲେ, ଆଜି ପୁଣି ତାକୁ ଅନ୍ଧ ବୋଲି କହିବା ଆପଣଙ୍କ ତୁଣ୍ଡରେ ସୁନ୍ଦର ଦିଶୁନାହିଁ ।"

ସେ : ୟାଙ୍କର ପ୍ରଶଂସା ମୁଁ କରିଥିଲି ?

ମୁଁ : ସେଦିନ 'ଉତ୍କଳ ସାହିତ୍ୟ'ରେ ସେ ପ୍ରବନ୍ଧଟା... ।

ସେ : ପ୍ରବନ୍ଧଟା ? ତାକୁ ଏ କ'ଣ ଲେଖିଥିଲେ ? ଏ ଗୋପେନ୍ଦ୍ର କିଶୋର ମହାପାତ୍ର ?

ତାଙ୍କର ଭାବ ହଠାତ୍ ପରିବର୍ତ୍ତିତ ହୋଇଗଲା । ସେ କହିଲେ—"ଗୋପଭାଇ ! ମୋର ଦୋଷ, ମୁଁ ବଡ଼ ଅଭଦ୍ର, ମୁଣ୍ଡଟାକୁ ଠିକ୍ ରଖିପାରିନାହିଁ । ମତେ କ୍ଷମା କର ଭାଇ !" କହୁ କହୁ ଯାଇ ଗୋପର ହାତଟି ଧରିପକେଇଲେ । ଏଥିରେ ଗୋପର ରାଗ ବି ହଠାତ୍ କମିଗଲା । ତାହୁଁ ତାହୁଁ ଦୁହେଁଯାକ ଯୁକ୍ତିତର୍କରେ ନାନା ବିଷୟ ଆଲୋଚନାରେ ଲାଗିଗଲେ—ଯେପରି କି ସେମାନେ ମୋର ଅସ୍ତିତ୍ୱ ପର୍ଯ୍ୟନ୍ତ ଭୁଲିଯାଇଛନ୍ତି ।

ମୁଁ କିଛି ସମୟ ତୁନି ହୋଇ ରହିଲି; କିନ୍ତୁ ଆଉ ପାରିଲି ନାହିଁ । ସୁବିଧା ଦେଖି ମଝିରେ ମୁଁ କହିଉଠିଲି—"ଆପଣ ତ ଗୋପ ସାଙ୍ଗରେ କଥାବାର୍ତ୍ତା କରିବାରେ ରହିଲେ, କିନ୍ତୁ ମୋର ଗୋଟିଏ ବିଶେଷ ଅନୁରୋଧ ଥିଲା, ତାକୁ କ'ଣ ଶୁଣିବେ ନାହିଁ ?"

ସେ : ହେଉ ତେବେ ! ଆମର କଥାବାର୍ତ୍ତା ଏହିଠାରୁ ଶେଷ ହେଲା । କ'ଣ କହିବାର ଅଛି, କହ ।

ମୁଁ : ଗୋପ କହୁଛି ମୁଁ ତା' ସାଙ୍ଗରେ ଗାଁକୁ ଯାଇ ଘରେ ରହିବି । ଏଥିରେ ମୋର କର୍ତ୍ତବ୍ୟ କ'ଣ ?

ସେ : କର୍ତ୍ତବ୍ୟ ? ଘରକୁ ଯିବ ଆଉ ରହିବ—ଭାଇର ସୁଖ-ଦୁଃଖରେ ଭାଗୀହେବ—ଯାଠାରୁ ବଳି ବଡ଼ କର୍ତ୍ତବ୍ୟ ଆଉ କ'ଣ ଅଛି ?

ତାଙ୍କର ଏ କଥାଗୁଡ଼ିକ ମୋ ଅନ୍ତରରେ କି ଏକ ପୁଲକର ଧାରା ଖେଳାଇଦେଲା, ମୁଁ କ୍ଷଣକାଳ ସେ ଆନନ୍ଦରେ ବୁଡ଼ିରହି ଆତ୍ମସତ୍ତା ଭୁଲିଗଲି । ମୋର ନୀରବତା ଦେଖି ସେ ପୁଣି କହିଲେ—"ଏଥିରେ ଭାବିବାର ସେପରି କିଛି ନାହିଁ । ମୋର ଏ ଉପଦେଶକୁ ଆଦେଶ ବୋଲି ତୁମକୁ ମାନିବାକୁ ହେବ । ଯଥେଷ୍ଟ ଦିନ ସ୍ୱାଧୀନ ଭାବରେ ଚଳିଆସିଛ; ଏଣିକି ଟିକିଏ ପରାଧୀନ ନ ହେଲେ ଆଉ ଗତି ନାହିଁ । ଏହି ମୋର ଶେଷ କଥା ।"

ଏହାପରେ ସେ ଅନ୍ୟ କଥା ପକାଇଲେ । ମୁଁ ତାଙ୍କର ଏ ଜବରଦସ୍ତିରେ ବିରକ୍ତ ହେବା ଦୂରେ ଥାଉ, ପରମ ଶାନ୍ତି ଅନୁଭବ କଲି ।



## ତେର

ଠିକ୍ ହେଲା, ଯେତେ ଶୀଘ୍ର ସମ୍ଭବ ମୋର ଏ ଜିନିଷପତ୍ର ସବୁ ବିକାବିକି କରି ଆମ୍ଭେମାନେ ଗାଁକୁ ଚାଲିଯିବୁ । ଗୋପ ପ୍ରଥମେ ଧରି ବସିଲା, ଏ ଜିନିଷପତ୍ର ଏହିପରି ପଡ଼ିଥାଉ—ଏ ପାପଧନରେ କାହାର କ'ଣ ହେବ ? କିନ୍ତୁ ସେ ବାବୁଟି କହିଲେ, "ସେ ଅନର୍ଥକ ନଷ୍ଟ ! ଏ ଜିନିଷପତ୍ର ବିକାବିକି କରିଦିଅ । ସେ ପଇସା ଯଦି ତୁମେ ନ ନେବ, ତା'ହେଲେ କୌଣସି ସ୍କୁଲ ବା ଅନ୍ୟ ଆଶ୍ରମକୁ ସେ ସବୁ ଦାନ କରିଯାଅ—ଗୋଟାଏ ଉପକାର ହେବ । ଅନର୍ଥକ ଏଗୁଡ଼ାକ ଏଠାରେ ଫୋପାଡ଼ି ଦେଇଗଲେ ଖାଲି ଭୂତ ଖାଇବ ସିନା !" ଶେଷରେ ସେହି ବାବୁଙ୍କ କଥା ରହିଲା । ଗୋପ ଯେ ଏତେ ଚଞ୍ଚଳ ସେ ବାବୁଙ୍କ ମୁଠାରେ ରହିଗଲା, ତାହା ଦେଖି ମୁଁ ତାଟକା ହୋଇଗଲି ।

ଏ ଦିନର ଆନନ୍ଦ ଆହ୍ଲାଦରେ ବୁଡ଼ିରହି ମୁଁ ୟାଙ୍କ ବିପଦ କଥା ଆଦୌ ଭାବିନାହିଁ । ହଠାତ୍ ବଡ଼ ଅପ୍ରତ୍ୟାଶିତ ଭାବରେ, ବଡ଼ ନିଷ୍ଠୁର ଧକ୍କା ଖାଇ ମୋର ଚେତନା ଭାଙ୍ଗିଗଲା । ସେଦିନ ପ୍ରାୟ ରାତି ନଅଟା, ଗୋପ ଆଉ ମୁଁ ଖାଇପିଇ ସାରି କଥାବାର୍ତ୍ତା କରୁଛୁଁ, ଏତିକିବେଳେ ହଠାତ୍ ମୋ ଦୁଆର ସାମନାରେ ଗୋଳମାଳ ଶୁଭିଲା । ଆମେ ଝରକାବାଟେ ଅନାଇଁ ଦେଖୁଁ ଦେଖୁଁ ଯେ ପଞ୍ଚାଏ ଲୋକ ମାଡ଼ଗୋଳ ଲଗାଇଛନ୍ତି । ଜଣାପଡ଼ିଲା, ଦଳେ ଲୋକ ଯେପରି ଜଣେ କାହାକୁ ମାରୁଛନ୍ତି, ଆଉ ସେ ଜଣକ ତାଙ୍କ ପ୍ରାଣ ପଣ କରି ମଧ୍ୟ ପ୍ରତିଶୋଧ ନେବାରେ ତ୍ରୁଟି କରୁନାହାନ୍ତି । ଆମେ ସବୁ ତଳକୁ ଓହ୍ଲାଇଗଲୁଁ । ଆମର ଚାକରବାକରମାନେ

ମଧ୍ୟ ଆସି ରୁଣ୍ଡ ହୋଇଗଲେ । ଦେଖୁ ଦେଖୁ ସେ ଲୋକଗୁଡ଼ାକ ପଳାଇଲେ । ଆଉ ଜଣେ ଲୋକ ମୋ ପାହାଚ ଆଡ଼କୁ ଆସୁ ଆସୁ ହଠାତ୍ ପଡ଼ିଗଲେ । ଆମେ ଦଉଡ଼ି ଯାଇ ଦେଖୁଁ ଯେ, ସେ ଜଣକ ଆମର ଏ ବାବୁ ।

ମୋର ଚେତନା ଆସିଲା, ବୁଝିଲି ଏ ସବୁ କାର୍ଯ୍ୟ କାହାର । ଆଉ ବିଳମ୍ବ ନକରି ଏ ବାବୁଙ୍କୁ ଘରକୁ ଉଠାଇ ଆଣିଲୁଁ । ଦେଖିଲୁଁ, ମୁଣ୍ଡରେ ଭୟଙ୍କର ଆଘାତ ଲାଗିଛି । ବୋଧହୁଏ ଗୋଟାଏ ଠେଙ୍ଗା ପ୍ରାହରରେ ତାଙ୍କ ତାଳୁ ଉପର ଫାଟିଯାଇଛି । ରକ୍ତ ଧାରଧାର ବହି ତାଙ୍କ ମୁହଁଯାକ ହୋଇଗଲାଣି । ନାକଟା ମଧ୍ୟ ଫାଟିଯାଇଛି, ନୃଶଂସ ଭାବରେ ଯେ ମାଡ଼ ହୋଇଛି, ସେଥିର ସବୁ ପ୍ରମାଣ ଠିକ୍ । ଆତତାୟୀଗୁଡ଼ାଙ୍କ ଉପରେ ବଡ଼ ରାଗ ହେଲା । ସେଗୁଡ଼ାକ ଆମ ହାତରୁ ପଳେଇଗଲେ ବୋଲି ମନରେ ବଡ଼ ଧୀକ୍କାର ଆସିଲା । ମୁଁ ଗୋବିନ୍ଦାକୁ ପଠାଇ ଦେଲି—"ଯା ଦାଣ୍ଡଟା ଦେଖି ଆସିବୁ—ଯଦି ସେ ଗୁଣ୍ଡାମାନଙ୍କ ଦେହରୁ କିଛି ପଡ଼ିଯାଇଥାଏ, ଆଉ ସେଥିରୁ ସେମାନଙ୍କର କିଛି ପତ୍ତା ମିଳେ... ।"

ଗୋବିନ୍ଦା ଗଲା । ମୁଁ ଏଣେ ୟାଙ୍କର ମୁଣ୍ଡ ଧୋଇ ସେଥିରେ ପୋଡ଼ାକନା ଦେବାର ଯୋଗାଡ଼ରେ ରହିଲି । ଗୋପ ଡାକ୍ତର ଡାକିବାକୁ ଗଲା । ଗଲାବେଳେ କହିଗଲା—"ମୁଁ ଅବିନାଶବାବୁଙ୍କୁ ଡାକି ଆଣେ । ସେ ମୋର ବନ୍ଧୁ ଓ ଭଲ ଡାକ୍ତର । ଏଇ ଲାଗେ ତାଙ୍କୁ ସାଙ୍ଗରେ ଧରି ଆସୁଛି ।" ମୁଁ ତାକୁ ମନା କରିବାକୁ ଯାଉଥିଲି, କାରଣ ମୋର ସନ୍ଦେହ, ଅବିନାଶ ବାବୁ ଏହି ରହସ୍ୟ ମଧ୍ୟରେ କୌଣସିଠାରେ ଅଛି । ତା'ପରେ ଭାବିଲି—"ନା, ଯାଉ, ଯେବେ ଅବିନାଶବାବୁ ଆସେ ତାହେଲେ ତା' କାରିଗରି ହୋଇଥିଲେ ଦେଖିଲା ମାତ୍ରେ ନିଶ୍ଚୟ ତା'ର ମନରେ ପରିବର୍ତ୍ତନ ଆସିବ । ତା' ମୁଖଭାବରୁ ମୁଁ ସେ କଥା ଜାଣିପାରେ ।" ଏହା ଭିତରେ ମୋର ଯତ୍ନରେ ବାବୁଙ୍କ ଚେତା ଆସିଯାଇଥିଲା । ସେ ହଠାତ୍ କହିଉଠିଲେ, "କିଏ, ମନୋରମା ? ଆସିଛୁ, ଏତେ ଦିନ ପରେ ଆସିଛୁ ? ମୁଁ ଯେ କେତେ ଖୋଜିଲିଣି !"

ମୁଁ ଏ କଥା ଶୁଣି ଅବାକ୍ ହୋଇଗଲି । ମନୋରମା ? ମନୋରମା କିଏ ? ହଠାତ୍ ତାଙ୍କର ପୂର୍ଣ୍ଣ ଜ୍ଞାନ ଆସିଗଲା । ସେ କହିଲେ—"ଓଃ ! ତୁମେ ? ସେ ବଦ୍‌ମାସଙ୍କୁ ଖୁବ୍ ମାଡ଼ ଦେଇଛି, ନା ?" ମୁଁ କହିଲି—"ଖାଇଛ ତ କମ୍ ନୁହେଁ । ଆଉ ପ୍ରୋଢ଼ି କରିବା ଦରକାର ନାହିଁ, ତୁନିହୋଇ ଶୋଇ ରହ । ପାଟିତୁଣ୍ଡ କଲେ ବେଦନା ବେଶି ହେବ ।" ସେ ତୁନି ହୋଇ ପଡ଼ିରହିଲେ । ଏତିକିବେଳେ ଗୋବିନ୍ଦା ଆସି କହିଲା—"ସାଆନ୍ତାଣୀ ଗୋ ! କେତେ ଖୋଜିଲି, କିଛି ପାଇଲି ନାହିଁ—ଖାଲି ଏଇ ଖୋଳଖଣ୍ଡିକ ପଡ଼ିଥିଲା । ତାଙ୍କର କି ଆଉ କାହାର କେଜାଣି ?"

ମୁଁ ସେ ଖୋଳଖଣ୍ଡି ଉଠାଇ ନେଲି । ଉପରର ଠିକଣା ଦେଖି ଠିକ୍ କଲି—ପ୍ରକୃତ ଲୋକର ସୂଚନା ପାଇଛି । ଲଫାପାରେ ଠିକଣା ଲେଖା ହୋଇଛି—'ରାମା ପହିଲମାନ୍, ବାଲୁବଜାର, ଚାନ୍ଦନୀଚଉକ, ପୋ: ଅ: କଟକ ।' ରାମା କଟକ ସହରର ଜଣେ ବଡ଼ ଗୁଣ୍ଡା; କିନ୍ତୁ ଭଦ୍ର ଗୁଣ୍ଡା । ସେ ମସ୍ତବଡ଼ ଜୁଆନ ଭେଣ୍ଡା, ଭାରି ସଉକି, ଭୟାନକ ନିଶାଖୋର, ଭୀଷଣ ଜାଲିଆ । ତା'ର ଗୋଟାଏ ଆଡ଼ା ଅଛି । ପୁଲିସ ଜାଣେ ତା' ଆଡ଼ାର କଥା; କିନ୍ତୁ ସେ ଏତେ ଚାଲାଖ୍ ଚତୁରରେ ଚଳେ ଯେ, କଟକ ସହରର ଆଠପଣ ଚୋରି ଆଉ ବାରପଣ

ଦଙ୍ଗା ହେଙ୍ଗାମ ତା'ରି ଲୋକଙ୍କ ଦ୍ୱାରା ହେଉଥିଲେ ମଧ୍ୟ, ପ୍ରମାଣ ଅଭାବରୁ ପୁଲିସ୍ ତାହାର ଆଡ଼ା ଭାଙ୍ଗିପାରି ନାହିଁ କି ରାମାକୁ ମଧ୍ୟ ଆୟତ୍ତ କରିପାରି ନାହିଁ । ପ୍ରଥମେ ପ୍ରଥମେ ରାମା ମୋ ଘରକୁ ଖୁବ୍ ଯା'ଆସ କରୁଥିଲା । ତା'ର ଏତେ ବେଶି ଜୋର୍, ଏତେ ବଡ଼ ପ୍ରତାପ ମୋ ପାଖରେ ଲହୁଣୀପରି ହୋଇଯାଉଥିଲା; କିନ୍ତୁ ମୋର ପ୍ରସାର ବଢ଼ିବା ସାଙ୍ଗେ ସାଙ୍ଗେ ସେ ମଧ୍ୟ ଜାଣିଶୁଣି ପଛଘୁଞ୍ଚା ଦେଲା । ବେଳେ ବେଳେ ମଝିରେ ମଝିରେ ଆସେ । ତା'ଠାରୁ ଟଙ୍କା ପଇସା ପାଇବା ହେତୁରୁ ନୁହେଁ; କିନ୍ତୁ ଏଡ଼େ ବଡ଼ ଦୁର୍ଦ୍ଦାନ୍ତ ଲୋକକୁ ହାତରେ ରଖିବା ଉଦ୍ଦେଶ୍ୟରେ ମୁଁ ତା' ସହିତ ସଦ୍‌ବ୍ୟବହାର କରେ ।

ଆଜି ସେହି ଯେ ମୋର ବନ୍ଧୁର ଆତତାୟୀ ଭାବରେ ଠିଆହେବ ଏ କଥା ମୁଁ ବିଶ୍ୱାସ କରିପାରିଲି ନାହିଁ । ଭାବିଲି, ବୋଧହୁଏ ଏ ଚିଠି ସହିତ ଗତ ଗୋଳମାଳର କିଛି ସମ୍ବନ୍ଧ ନାହିଁ । ତଥାପି ଏ କଥାଟା ଟିକିଏ ଭଲକରି ଦେଖିବା ଉଚିତ ବୋଲି ଠିକ୍ କରି ମୁଁ ଅନ୍ୟ କାର୍ଯ୍ୟରେ ମନଦେଲି । ଗୋପ ଅବିନାଶ ବାବୁଙ୍କୁ ଧରି ପହଞ୍ଚିଲା । ମୁଁ ତାଙ୍କର ମୁଖଭଙ୍ଗୀ ପ୍ରତି ଖୁବ୍ ଲକ୍ଷ୍ୟ କରିଥିଲି; କିନ୍ତୁ ସେଥିରୁ କିଛି ବୁଝିପାରିଲି ନାହିଁ । ସେ କିଛି ନଜାଣିଲା ପରି ରୋଗୀକୁ ଦେଖି ଚମକି ଉଠିଲେ ଓ ଘଟଣାର ଆଦ୍ୟୋପ୍ରାନ୍ତ ଜାଣିବାକୁ ପଚାରିଲେ । ତାଙ୍କର ଚିକିତ୍ସାରେ ମଧ୍ୟ କୌଣସି ଏଣେତେଣେ ହେବାର ମୁଁ ଦେଖିଲି ନାହିଁ । ବଡ଼ ଭାବନାରେ ପଡ଼ିଗଲି । ଲୋକଟା କ'ଣ ଏତେ ଗଭୀର ଯେ, ସେ ନିଜ ହାତର କାରିଗରିର ଏ ଭୀଷଣ ପରିଣାମ ଦେଖି ମଧ୍ୟ କୌଣସି ରକମ ଉତ୍ତେଜନା କି ସନ୍ତୋଷ ଦେଖାଇଲା ନାହିଁ ? ନା, ମୋର ସନ୍ଦେହ ଭୁଲ୍ ! ଯାହାହେଉ ସେ ଘା'ଗୁଡ଼ିକ ଧୁଆଧୋଇ କରିସାରି ଔଷଧ ଲଗାଇ ପଟି ବାନ୍ଧିଦେଲା ଓ ଗଲାବେଳେ କହିଗଲା—"ଆଘାତ ବଡ଼ ସାଙ୍ଘାତିକ; ହୁଏତ ଜର ଆସିପାରେ ଏବଂ ତା' ଫଳରେ ରୋଗୀର ବାଚାଳତା ମଧ୍ୟ ଦେଖାଯାଇପାରେ । ରୋଗୀ ଯେପରି ବେଶି ହଲ୍‌ଚଲ୍ ନହୁଏ କି ବେଶିଗୁଡ଼ାଏ ନଗପେ, ତା' ପ୍ରତି ସାବଧାନ ରହିବ । ଆଉ ଜର ଆସିଲେ ମତେ ଡକେଇ ପଠାଇବ । ହୁଏତ ଏସବୁ କିଛି ନହୋଇପାରେ; କିନ୍ତୁ ହେବାର ବେଶି ସମ୍ଭାବନା ।"

ଠିକ୍ ଚାରିଟା ବେଳକୁ ପ୍ରକୃତରେ ରୋଗୀ ଦେହରେ ଜର ଦେଖାଗଲା । ସେ ଏପଟ ସେପଟ ହୋଇ ଛଟପଟ ହେବାକୁ ଲାଗିଲା । ମୁଁ ଅବିନାଶ ବାବୁଙ୍କୁ ଡକାଇ ପଠେଇଲି । ସେ ଆସି କହିଲା—"ମତେ କିଛି ଭଲ ଦିଶୁ ନାହିଁ । ମୁଣ୍ଡରେ ଯେ ଆଘାତ ଲାଗିଛି, ତା'ର ଫଳରେ ହୁଏତ ରୋଗୀ ପାଗଳ ହୋଇଯାଇ ପାରେ , ନହେଲେ ତା'ର ସ୍ମୃତି ଲୋପ ହୋଇଯିବ । ଏପରି ଅବସ୍ଥାରେ ଆଉ ଜଣେ ଡାକ୍ତରଙ୍କୁ ଡାକିବା ଆବଶ୍ୟକ ।" କଟକରେ ସଦାନନ୍ଦ ବାବୁଙ୍କ ନାମ ସମସ୍ତେ ଶୁଣିଥିବେ । ସେ ପୁରୁଣାକାଳିଆ ଡାକ୍ତର ଆଉ ଭାରି ଦକ୍ଷ । ତାଙ୍କୁ ଡକାଇ ପଠାଇଲି । ଅବିନାଶ ବାବୁ ଓ ସେ ଆସି ଅନେକ ତର୍କବିତର୍କ ପରେ ଔଷଧର ମାର୍ଗ ଠିକ୍ କଲେ ।

ସେ ରାତିଟା ମଧ୍ୟ ଆମ୍ଭମାନଙ୍କର ସେହିପରି ଗଲା । ଗୋପ ଆଉ ମୁଁ ପାଳିକରି ତାଙ୍କୁ ଜଗି ରହିଲୁ । ରାତିରେ ସେ ଅନେକ ପ୍ରଳାପ କଲେ । ସେଥିଭିତରୁ ମନୋରମା କଥାଟା

ବହୁତ ଥର ଆମେ ଶୁଣିଲୁ । ଥରେଅଧେ ମୋ ନାମ ମଧ୍ୟ ଶୁଣିବାକୁ ମିଳିଲା । ମୁଁ ତାଙ୍କର ଏ ପ୍ରଳାପରୁ ତାଙ୍କ ଗୁପ୍ତ ରହସ୍ୟ ସମ୍ବନ୍ଧରେ କିଛି ବୁଝିବାର ଆଶା କରିଥିଲି; କିନ୍ତୁ 'ମନୋରମା', 'ମେଦ୍ରିପୁର', 'ଦାରୁଗା', 'ଡାକ୍ତର', 'ଡାଇରି', 'ଅଭିମାନ' ଓ 'କ୍ଷମା' ଇତ୍ୟାଦି କେତୋଟି ଶବ୍ଦ ଛଡ଼ା ମୁଁ ଆଉ ସେଥିରୁ କିଛି ଧରିପାରିଲି ନାହିଁ । ଅନେକ ସମୟରେ ତାଙ୍କର ପ୍ରଳାପ ଇଂରାଜୀରେ, କେତେବେଳେ ଅବା ହିନ୍ଦୀରେ—ସେ ସବୁରୁ ମୁଁ କିଛି ବୁଝିପାରେ ନାହିଁ । ଓଡ଼ିଆରେ ଯାହା କହନ୍ତି, ସେଥିରୁ ସବୁ ଧରିହୁଏ ନାହିଁ । ଯାହା ହେଉ, ରହସ୍ୟ ଭେଦ କରିବା ସେତେବେଳେ ମୋର ଲକ୍ଷ୍ୟ ନଥିଲା । ଏ କିପରି ଭଲ ହେବେ—ଏଇଆ ହେଲା ଚିନ୍ତା ।

ତୃତୀୟ ଦିନ ଜର ହେଲା ଅତି ପ୍ରବଳ । ଅବିନାଶ ବାବୁ ଆସିଲା, ସଦାନନ୍ଦ ବାବୁ ଆସିଲେ; ପୁଣି ବିଚାର ଚାଲିଲା । ଔଷଧ ବଦଳିଲା । ଅବିନାଶ ବାବୁ ଜଣେ ଧାଇ ପଠାଇବାକୁ କହିଲା—ମୁଁ ବାରଣ କଲି । ସେ କିନ୍ତୁ ବଡ଼ ଜିଗର କରି କହିଲା, "ତୁମେ ତିନି ରାତି ହେଲା ଅନିଦ୍ରା ହେଲଣି । ଏ ସବୁ କାମ କରିବା ତୁମର ଅଭ୍ୟାସ ନୁହେଁ । ଶେଷରେ ତୁମେ ଯଦି ରୋଗାଅ, ତା'ହେଲେ ତୁମେ ପୁଣି ମୋ ହାତରେ ପଡ଼ିବ । ସେତେବେଳେ ମୁଁ ଆଉ ୟାଙ୍କ ପ୍ରତି ସେତେ ଦୃଷ୍ଟି ଦେଇ ପାରିବି ନାହିଁ । ବିଶେଷତଃ ରୋଗୀର ଅବସ୍ଥା ବର୍ତ୍ତମାନ ଯେପରି, ସେଥିରେ ବଡ଼ ସାବଧାନତା ଦରକାର । ଘଣ୍ଟା ଘଣ୍ଟା ଔଷଧ ଦେବାକୁ ହେବ, ଛାତି ଦେଖିବାକୁ ହେବ । ରାତି ଭିତରେ ହୁଏତ ଦି' ତିନି ଥର ଔଷଧ ବଦଳେଇବାକୁ ପଡ଼ିବ ।"

ଏହିପରି କହି ଶେଷରେ ସେ ଧାଇ ଆଣିବାକୁ ମଙ୍ଗେଇଲା । ଧାଇ ଆସିଲା । ସେ ଶିକ୍ଷିତା ଯୁବତୀ; କିନ୍ତୁ ତା'ର ଆଖିରେ ଆଉ ଚିବୁକରେ ଗୋଟାଏ କିପରି କର୍କଶ ଭାବ । ଭାବିଲି, ବୋଧହୁଏ ରୋଗ, ଶୋକ ଓ ଯନ୍ତ୍ରଣା ଦେଖି ଦେଖି ଏପରି ଭାବ ଆସିଛି । ସେ ରୋଗୀ ଘର ମାଡ଼ିବସିଲେ, ମୁଁ ବିଦାୟ ନେଲି । ସେଦିନ ସନ୍ଧ୍ୟାବେଳକୁ ରୋଗୀ ବଡ଼ ଅଥୟ ହେଲେ । ଜରର ମାତ୍ରା ମଧ୍ୟ ବଢ଼ିଲା । ପ୍ରଳାପ ସେହି ଅନୁସାରେ ଦେଖି ଡାକ୍ତରଙ୍କୁ ଡକାଇଲୁ । ସେ ଦୁହେଁଯାକ ବସି ପ୍ରାୟ ଘଣ୍ଟାଏ ଖଣ୍ଡେ ତାଙ୍କର ପ୍ରଳାପ ଶୁଣିଲେ । ତା'ପରେ ସେମାନଙ୍କର ବିଚାର ଚାଲିଲା । ଦେଖିଲି, ଦୁହିଁଙ୍କ ଭିତରେ ଟିକିଏ ମନୋମାଳିନ୍ୟ ହେଲା । ଶେଷରେ ସଦାନନ୍ଦ ବାବୁ ମତେ ଡାକି କହିଲେ—"ଦେଖନ୍ତୁ, ଅବିନାଶ ବାବୁ ପ୍ରଥମରୁ ଆସିଛନ୍ତି, ସୁତରାଂ ରୋଗୀ ତାଙ୍କର—ମୁଁ ଅଳଙ୍କାର ମାତ୍ର । ତାଙ୍କ ବ୍ୟବସାୟରେ ମୁଁ ବାଧା ଦେବାକୁ ଇଚ୍ଛା କରେ ନାହିଁ । କେତେକ ବିଷୟରେ ତାଙ୍କର ମୋର ମତ ମିଳୁ ନାହିଁ; ସୁତରାଂ ମୋର ଆସିବା ଏଣିକି ଅନାବଶ୍ୟକ । ତେବେ ଯିବା ଆଗରୁ ମୋର ଗୋଟାଏ କଥା କହିଯିବା ନିତାନ୍ତ ଦରକାର । ରୋଗୀର ମନରେ କୌଣସି ଗୁପ୍ତ କଷ୍ଟ ଥିବାର ତୁମେ ଜାଣ କି ?"

"ମୁଁ କିନ୍ତୁ ଠିକ୍ ବୁଝିପାରିଛି, ତାଙ୍କ ମନରେ କିଛି କଷ୍ଟ ଅଛି ।"

ଡାକ୍ତର ବାବୁଙ୍କ ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ସେ ଅବିନାଶ ବାବୁଙ୍କ ଆଡ଼କୁ ଚାହିଁଲେ । ସେ ଚାହାଣି ଯେପରି ଜୟ ଗର୍ବରେ ଉଜ୍ଜ୍ୱଳ । ତା'ପରେ ସେ କହିଲେ—"ସେ କଷ୍ଟ ତାଙ୍କ ମନରୁ ନଗଲେ ସେ ଏ ଯାତ୍ରାରୁ ଫେରିଲା ପରି ମୋର ମନେ ହେଉ ନାହିଁ ।" ଏତିକି କହି ସଦାନନ୍ଦ ବାବୁ ଚାଲିଗଲେ । ଅବିନାଶ ବାବୁ କହିଲା—"ଏସବୁ ମରହଟ୍ଟୀ କାଳର ଡାକ୍ତରୀ

ପାଠ । ଆଜିକାଲି ଡାକ୍ତରୀ ଜିନିଷଟା ଯେ କେତେଦୂର ଆଗକୁ ଚାଲିଗଲାଣି, ତା' ଏ ବୁଢ଼ାଗୁଡ଼ାଙ୍କୁ ଜଣା ନାହିଁ । ସେମାନେ ସେହି ପୁରୁଣା କଥାକୁ କୁଣ୍ଢେଇ ବସିଛନ୍ତି । ବର୍ତ୍ତମାନ ପ୍ରମାଣ ଦ୍ୱାରା ଜଣାପଡ଼ିଛି ଯେ, କୌଣସି ମାନସିକ କଷ୍ଟ ଶରୀରର ଆରୋଗ୍ୟରେ ବାଧା ଦେଇପାରେ ନାହିଁ । ଔଷଧପତ୍ର ଯେପରି ଚାଲୁଥିଲା, ସେହିପରି ଚାଲୁ, ତୁମେ କିଛି ବ୍ୟସ୍ତ ହୁଅନା ।" ଏହାପରେ ସେ ଚାଲିଗଲା ।

ମୁଁ ଭାବନାରେ ବସିଲି । ସଦାନନ୍ଦ ବାବୁ ବୁଢ଼ା ସତ; କିନ୍ତୁ ପୁରୁଣାକାଳିଆ ବୋଲି ତାଙ୍କୁ କେହି କେବେ କହିବାର ମୁଁ ଜାଣି ନାହିଁ । ସମସ୍ତେ ବରଂ ବଡ଼ ବଡ଼ ଦୁଃସାଧ୍ୟ ରୋଗରେ ତାଙ୍କୁ ଡାକନ୍ତି । ତାଙ୍କ କଥା ଏଡ଼ିଦେଇ ଅବିନାଶ ବାବୁ କଥାରେ ବିଶ୍ୱାସ କରି ନିଶ୍ଚିନ୍ତ ରହିବାକୁ ମୋ. ମନ ବଳିଲା ନାହିଁ । ମୁଁ ଭାବି ଠିକ୍ କଲି—"ନା, ଗୋଟାଏ କିଛି କରିବାକୁ ହେବ । କିନ୍ତୁ କ'ଣ ? ମୁଁ କ'ଣ ଜାଣେ ଯେ କି ପ୍ରତିକାର କରିବି ? ଜାଣେ ଏତିକି ଯେ, ୟାଙ୍କ ମନରେ ଗୋଟାଏ କଷ୍ଟ ଅଛି । କ'ଣ ସେ କଷ୍ଟ ? ସେ ସବୁ ତ କିଛି ମୁଁ ଜାଣେ ନାହିଁ । ତା'ହେଲେ ସେ କଷ୍ଟ ଘୁଞ୍ଚାଇବି କିପରି ? ମୁଁ ବସି ଭାବିଲି, ମନୋ୍ରମା ବୋଲି କେହି ଜଣେ ୟାଙ୍କର ଅଛି । ବୋଧହୁଏ ସ୍ତ୍ରୀ; ହୋଇପାରେ ମଧ୍ୟ ଭଉଣୀ ! ସମ୍ଭବତଃ ପ୍ରଣୟିନୀ ! ଏହି ମନୋରମାଙ୍କୁ ନେଇ ତାଙ୍କ ମନରେ କୌଣସି କଷ୍ଟ ହେବା ସ୍ୱାଭାବିକ, ଆଉ ସମ୍ଭବ । କିନ୍ତୁ କାହିଁକି ? ମନୋରମା ବର୍ତ୍ତମାନ କେଉଁଠି ? ସେ କ'ଣ ଏଇ କଟକ ସହରକୁ ପଳାଇ ଆସିଅଛି ? ସେହି ହେତୁରୁ କ'ଣ ୟାଙ୍କ ଉପରେ ଏପରି ମାଡ଼ ହେଲା ? ମାଡ଼ କିଏ ଦେଲା ? କାହିଁକି ବା ଦେଲା ? ମୋ ଦୁଆର ଆଗରେ ଦେବାର ଅର୍ଥ କ'ଣ ? ମୋର ମନେ ପଡ଼ିଗଲା, ରାମା ପହିଲମାନର ସେ ଚିଠିଟା । ଅନ୍ଧ ଲୋକ ବାଟ ଖୋଜୁ ଖୋଜୁ ଟାଣ ଭୂଇଁ ଉପରେ ତା' ବାଡ଼ି ବାଜିଯିବାର ଜାଣିପାରିଲେ ସେ ଯେପରି ହୁଏ, ସେହିପରି ଭାବରେ ମୁଁ ପହିଲମାନ ପାଖକୁ ଖବର ଦେଲି—"ଆଜି ଯେପରି ଓପରଓଳି ସେ ମୋ ସାଙ୍ଗରେ ଦେଖା କରନ୍ତି ।" ଖବର ଆସିଲା ତାଙ୍କ ଦେହ ବେମାର, ସେ ଆସି ପାରିବେ ନାହିଁ । ଭିତର ଖବର ଯେ, ସେ ତାଙ୍କ ଦୋକାନରେ ବସିଥିଲେ ଏଇ ଘଡ଼ିକ ତଳେ । ପଚାରି ବୁଝିଲି, ତାଙ୍କ ଉପର ଭୂଲତା ପାଖ ଫୁଲିଛି, ଆଉ ବାଁ ଗାଲର ନାକ ପାଖଟା ଚୋଚୋଡ଼ା ପଡ଼ିଛି । କାହିଁକି ? କସରତ କରି ନା ୟାଙ୍କ ମାଡ଼ ହେତୁରୁ ? ମୁଁ ଡାକିଲେ ସେ ନଆସି ମିଛ କହିଥିଲା କେବେ ? ନା, ମୁଁ ତା'ହେଲେ ଆଜି ଯେ କୌଣସି ମତେ ତା' ସଙ୍ଗେ ସାକ୍ଷାତ କରିବି ।

ଏହା ଭାବି ଚାରିଟା ବେଳେ ଗାଡ଼ିଖଣ୍ଡେ କରି ତାଙ୍କ ଦୋକାନ ସାମନାରେ ଯାଇ ପହଞ୍ଚିଲି । ଜଣକଠାରୁ ଶୁଣିଲି, "ସେ ଆଜି ଦିନଗାଡ଼ିରେ ପୁରୀ ଚାଲିଯାଇଛି । ଯିବାର କୌଣସି କଥା ଆଗରୁ ନଥିଲା କି ତାଙ୍କର ବ୍ୟବସାୟ ହେତୁରୁ ସେ ଯାଇ ନାହାନ୍ତି । ଆଜି ତୁମ ଲୋକ ଆସି ଯିବାର ଘଡ଼ିକ ଉତ୍ତାରୁ ଡାକ୍ତର ବାବୁ ଆସି କ'ଣ ତୁନି ତୁନି କରି ତାଙ୍କୁ କହିଲେ; ଆଉ ସେ ତାହାପରେ ଗାଡ଼ି ଡାକିବାକୁ କହିଦେଇ ଖା'ପିଆ କରିବାକୁ ଗଲେ ।"

ଏକଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି—"ଡାକ୍ତର ବାବୁ ? ଅବିନାଶ ବାବୁ ?" ସେ ଉତ୍ତର କଲା—"ହଁ, ଅବିନାଶ ବାବୁ । ମୁଁ ଆସ୍ତେ ଆସ୍ତେ କୂଳ ଦେଖିବାକୁ ପାଇଲି; ପଚାରିଲି, "ପହିଲମାନଙ୍କ ଦେହ ପରା ଖରାପ ଥିଲା ?"

ତାଙ୍କ ଚାକର ଆସି କହିଲା—"ନାହିଁ, ଖରାପ ଆଉ କ'ଣ ? କୁସ୍ତି କରୁଥିଲେ ଯେ, ପହିଲମାନର ହାତ ବାଜି ଆଖିପତାଟା ଟିକେ ଫୁଲିଯାଇଥିଲା । ଆଉ ଠାଏ କି ଦି'ଠା କ'ଣ ଟିକିଏ ସେମିତି ହୋଇଯାଇଥିଲା । ଅଭି ଆଉ ସେପରି କିଛି ନାହିଁ ।"

ମୁଁ : କୋଉଦିନ କୁସ୍ତି କରୁଥିଲେ ମ ? ମୁଁ ତ ଜାଣି ନାହିଁ ।

ସେ : ହେଟି କ'ଣ ସେଦିନ ! ହେଟି ମ, ହେଟି ପହରି ଦିନ । ଘରେ କୁଆଡ଼େ ଖେଳ ହେଲା । ପହିଲମାନ ଫେରିଆସିଲା ବେଳକୁ ରାତି ଦି'ପହର । ଦିହମୁଣ୍ଡ ତାଙ୍କର ସବୁ ଖୁଣ୍‌.... ।

ଏହିପରି ସେକେତେ କ'ଣ ଗପିବାକୁ ଯାଉଥିଲା, ମୁଁ ତାକୁ ବାଧା ଦେଇ ପଚାରିଲି, "ସେଦିନ ଡାକ୍ତର ବାବୁ ଆସିଥିଲେ କି ପହିଲମାନ ପାଖକୁ ?"

ସେ : ସେ କଥା ତ ମୁଁ ଜାଣି ନାହିଁ ।

ତା'ପରେ ଦୁଃଖ ସୁଖ ଦି'ଚାରିପଦ ହୋଇ ମୁଁ ସେଠାରୁ ଚାଲିଆସିଲି । ଏ ବାବୁଙ୍କ ଉପରେ ରାମା ପହିଲମାନ ଦଳ ଯେ ପଡ଼ିଥିଲେ, ସେ ବିଷୟରେ ଆଉ କିଛି ସନ୍ଦେହ ନାହିଁ । ଆଉ ସେ ଆକ୍ରମଣ ଯେ ଅବିନାଶ ବାବୁର ହେତୁରୁ ହୋଇଥିଲା, ସେ ବି ସମ୍ଭବ ।

ମୁଁ ଘରକୁ ଫେରିଅଇଲି । ସେ ଦିନଯାକ ତାଙ୍କର ଅବସ୍ଥା ସେହିପରି ରହିଲା । ମୋ ମନରେ ବଡ଼ ଭୟ ହେଲା । ଅବିନାଶ ବାବୁ ଚାଲିଗଲା ପରେ ମୁଁ ସଦାନନ୍ଦ ବାବୁଙ୍କୁ ଡକାଇଲି । ସେ ସବୁ ଦେଖିଲେ । ଔଷଧର ବ୍ୟବସ୍ଥାଟା ମଧ୍ୟ ଦେଖିଲେ । ହଠାତ୍ ତାଙ୍କ କପାଳ କୁଞ୍ଚିତ ହୋଇ ଆସିଲା । ମୁଁ ପଚାରିଲି—"ଔଷଧରେ କିଛି ଭୁଲ ଅଛି କି ?"

ସେ : ନା, ଭୁଲ କିଛି ନାହିଁ । ଔଷଧଟା ଏପରି ଅବସ୍ଥାରେ ବେଳେ ବେଳେ ଦିଆଯାଏ । ପ୍ରଳାପ ସହିତ ଜ୍ୱର ଥିଲେ, 'ବ୍ରୋମାଇଡ୍' ଦେବା କେତେ ଡାକ୍ତରଙ୍କ ମତ । କିନ୍ତୁ ଏଇଟା ଠିକ୍ ଜ୍ୱରର ପ୍ରଳାପ ନୁହେଁ—ଏଥିରେ ଯେ ମୁଣ୍ଡର ଆଘାତ ଅଛି । ରୋଗୀ ସୁସ୍ଥ ଓ ସବଳ ଥିଲେ ଏ ଔଷଧ ବି ଚଳିଥାନ୍ତା । କିନ୍ତୁ ରୋଗୀ ଚାରି ଦିନର ଯନ୍ତ୍ରଣା ଆଉ ଅନାହାରରେ ବଡ଼ ଦୁର୍ବଳ । ଏଥିରେ ବ୍ରୋମାଇଡ୍ ଏତେ ପରିମାଣରେ ଦେଲେ ସେ ପାଗଳ ହୋଇଯିବା ସମ୍ଭବ ।

ମୋ ମନରେ ଅବିନାଶ ବାବୁ ପ୍ରତି ଯେ ସନ୍ଦେହ-ଚେର ମାଡ଼ି ବସୁଥିଲା ସେ ଆସ୍ତେ ଆସ୍ତେ ଦୃଢ଼ ହେଉଛି । ଏହା ଶୁଣି ସେ କିଛି ସମୟ ଭାବି କହିଲେ—"ମୁଁ ବୁଝୁଛି, ଅବିନାଶ ବାବୁ କି ହେତୁରୁ ଏପରି ବ୍ୟବସ୍ଥା କରିଛନ୍ତି । ରୋଗୀର ମୁଣ୍ଡରେ ଆଘାତ, ଗୁଡ଼ାଏ ଗପିବା ହେତୁରୁ ସେ ଆଘାତ ଉପରେ ଜୋର୍ ପଡୁଛି, ଆଉ ତା'ରି ଫଳରେ ଘା'ଟା ଶୁଖିପାରୁ ନାହିଁ ।" ଏହି ସବୁ କାରଣରୁ ସେ ଭାବିଚିନ୍ତି କହିଲେ—"ରୋଗୀ ଯଦି କିଛି ସମୟ ଚୁପ୍ କରି ଶୋଇରହେ, ତା'ହେଲେ ଘା'ଟା ଶୁଖି ଆସିବ—ଜ୍ୱର ଛାଡ଼ିଯିବ ।" ମୁଁ ପଚାରିଲି—କିନ୍ତୁ ସେଥିରେ ଯେ ରୋଗୀ ପାଗଳ ହୋଇଯିବାର ସମ୍ଭାବନା ବୋଲି କହୁଛନ୍ତି ?"

ସେ : ସେ କଥା ବି ସତ; କିନ୍ତୁ ବର୍ତ୍ତମାନ ଅବସ୍ଥାରେ ମୁଁ ଏ ବ୍ୟବସ୍ଥାକୁ ଅନ୍ୟାୟ ବୋଲି ତ କହିପାରୁ ନାହିଁ । ଆପଣ ଏ ଔଷଧ ଆଜି ଦିନଟା ଦିଅନ୍ତୁ, ଦେଖନ୍ତୁ କ'ଣ ହେଉଛି । ତା' ପରେ ମତେ ଡକାଇବେ ।

ମୁ : କିନ୍ତୁ ଏ ଦିନକର ଔଷଧ ବ୍ୟବହାରରେ ଯଦି ରୋଗୀର ମୁଣ୍ଡ ଖରାପ ହୋଇଯାଏ ?

ସେ : ଆପଣ କ'ଣ ମୋ ଉପରେ ଏ ରୋଗୀର ଭାର ଦେଉଛନ୍ତି ?

ମୁଁ : ସମ୍ପୂର୍ଣ୍ଣ ।

ସେ : ତା'ହେଲେ ଅବିନାଶ ବାବୁଙ୍କୁ ନାହିଁ କରିଦେବା ଉଚିତ ।

ମୁଁ : ନା, ମୋର କେତେଗୁଡ଼ାଏ ବିଶେଷ କାରଣ ହେତୁରୁ ଅବିନାଶ ବାବୁର ଯିବା ଆସିବାକୁ ମନାକରିବା ଭଲ ଭାବୁ ନାହିଁ । ସେ ଯେପରି ଆସୁଛି ଆସୁ ; କିନ୍ତୁ ଆପଣ ଔଷଧ ବନ୍ଦୋବସ୍ତ କରିବେ, ଆଉ ଆପଣଙ୍କ ଔଷଧହିଁ ଦିଆଯିବ ।

ସଦାନନ୍ଦ ବାବୁ କିଛି ସମୟ ଭାବିଲେ । ତା'ପରେ କହିଲେ—"ଆଚ୍ଛା, ହେଉ । ମୁଁ ଏହି ବ୍ୟବସ୍ଥାଟା ରଖୁଛି । କେବଳ କିଛିମାତ୍ର ବ୍ରୋମାଇଡ଼୍ରୁ କମାଇ ଦେଉଛି । ଏଇ ଔଷଧଟା ଦିଅନ୍ତୁ । ଦେଖନ୍ତୁ ରୋଗୀର କି ଉପକାର ହେଉଛି । ଏ ମାତ୍ରା କମାଇ ଦେଲେ ରୋଗୀର ମସ୍ତିଷ୍କ ଖରାପ ହେବାର ସମ୍ଭାବନା ଖୁବ୍ କମ୍ ।" ଏହା କହି ସେ ବ୍ୟବସ୍ଥା ପତ୍ର ଲେଖି ଚାଲିଗଲେ । ମୁଁ ବ୍ୟବସ୍ଥା ପତ୍ର ନେଇ ଗୋପକୁ ଡାକ୍ତର ଦୋକାନକୁ ଔଷଧ ଆଣିବା ପାଇଁ ପଠାଇଲି । ସେ ଆଣିଲେ ଧାଇକୁ ଏ ଔଷଧ ଯଥାବିଧି ଦେବାପାଇଁ କହିଗଲେ ।



## ଚଉଦ

ମୁଁ ବସି ଭାବିଲି, ଅବିନାଶ ବାବୁ ନିଶ୍ଚୟ ଗୋଟେ ଚକ୍ରାନ୍ତ କରିଛି । ଏହି ଚକ୍ରାନ୍ତ ଭାଙ୍ଗିବାକୁ ଉଦ୍ୟମ କରିବାର ଏହି ସମୟ । କିନ୍ତୁ କିପରି ? ତା'ର ମତଲବ୍ କ'ଣ ? ୟାଙ୍କର ଯେ ଆତ୍ମୀୟାଙ୍କୁ ଆୟତ୍ତ କରି ରଖିବାର ମୋର ସନ୍ଦେହ, ସେ କେଉଁଠି ଅଛନ୍ତି ? ଏସବୁ ମୁଁ କିପରି ଜାଣିବି ? ୟାଙ୍କର ମନ କଷ୍ଟ କିପରି ଘୁଞ୍ଚାଇବି ? ଭାବି ଠିକ୍ କଲି—ଅବିନାଶ ବାବୁ ପଛରେ ନଲାଗିଲେ ଆଉ ଗତି ନାହିଁ; କିନ୍ତୁ କାହାକୁ ଲଗେଇବି ? ପହିଲମାନ କଥାକୁ ମୁଁ ବୁଝିଛି ଯେ, ଅବିନାଶ ହୁଏତ ମୋ ଚାକରବାକର କାହାକୁ ଆୟତ୍ତ କରିସାରିଛି, ତା' ନହେଲେ ମୁଁ ଯେ ପହଲିମାନ ପାଖକୁ ମଣିଷ ପଠାଇଥିଲି ବୋଲି ସେ ଜାଣନ୍ତା କିପରି ? ତା' ପୁଣି ଏତେ ଶୀଘ୍ର ଜାଣନ୍ତା କିପରି ? ସେ ଚାକର ଯେ କିଏ, ତା' ଜାଣିବାର ବର୍ତ୍ତମାନ ଉପାୟ ନାହିଁ । ଫଳରେ କୌଣସି ଚାକରବାକରଙ୍କୁ ଏ କାମରେ ଲଗାଇ ହେବ ନାହିଁ । ଗୋପ କଥା ଛାଡ଼ିଦିଅ । ତା' ହେଲେ ବାକୀ ରହିଲି ମୁଁ; ମୋତେହିଁ ତା' ପିଛା ଧରିବାକୁ ପଡ଼ିବ । କାମଟା କିନ୍ତୁ ବଡ଼ ସହଜ ନୁହେଁ । ମୋତେ ହୁଏତ ସେଥିପାଇଁ କଟକ ସହର ଗୋଟାକଯାକ ବୁଲିବାକୁ ପଡ଼ିବ । ତା' ପାରିବି ତ ! ବେଶ୍ୟା ମୁଁ, ମୋର ଲାଜ ଅପମାନ କ'ଣ ? ତେବେ ମୋର ଏ ରୂପ କୌଣସି ମତେ ଘୋଡ଼ାଇବାକୁ ହେବ । ଏ ବେଶ୍ୟା ସାହିରେ ମୋର ଜଣେ ମାତ୍ର ସାଙ୍ଗ ଥାଏ । ସେ ନିତାନ୍ତ ଗରିବ, ବଡ଼ ଅଭାଗିନୀ । ବେଶ୍ୟାବୃତ୍ତି କରି ମଧ୍ୟ ପେଟ ପୂରିଲା ନାହିଁ । ଦେଖିବାକୁ ସେ ଅସୁନ୍ଦର, ତାହା ନୁହେଁ । ଏ କଟକ ସହରରେ ତା'ଠାରୁ ବହୁତ କୁତ୍ସିତରୂପା ବେଶ୍ୟା ମୁଁ ଦେଖିଛି । ସେମାନେ ୟା ଅପେକ୍ଷା ଢେର୍ ସୁଖରେ ଥାଆନ୍ତି ।

ଏହାର ନା ହାରାମଣି । ତା'ରି ଘରେ ମୁଁ ବେଶ ବଦଳାଇ ଯିବି ବୋଲି ଠିକ୍ କଲି । ସେଦିନ ସନ୍ଧ୍ୟା ଆଗରୁ ଖିଆପିଆ କରିଦେଲି । ଗୋପକୁ ଘରେ ରଖାଇ ଦେଇ ବୁଲିଆସେ ବୋଲି କହି ଘରୁ ବାହାରି ପଡ଼ିଲି । ଦୁଆରମୁହଁରେ ହୋଇଛି, ମୋର ଦୃଷ୍ଟି ପଡ଼ିଗଲା ନର୍ଦ୍ଦମା ଉପରେ । ଦେଖିଲି, ଗୋଟାଏ ଶିଶି ଭାଙ୍ଗିକରି ପଡ଼ିଛି । ସେ ଶିଶିଟା ଗୋପ ଆଣିଥିବା ଔଷଧ ଶିଶି ଭଳି ଦେଖାଗଲା; କିନ୍ତୁ ଏ ବିଷୟରେ ଭାବିବାକୁ ବା ଭିତିରି ଅନୁସନ୍ଧାନ କରିବାକୁ ମୋର ବେଳ ନଥିଲା କି ମନ ବି ନଥିଲା । ମୁଁ ଏହାପରେ କ'ଣ କରିବି, କିପରି ଭାବରେ ଅବିନାଶ ବାବୁ ଠାରୁ କଥା ବାହାର କରିବି ସେହି ଚିନ୍ତାରେ ସେତେବେଳେ ବୁଡ଼ି ରହିଲି ।

ହାରା ଘରେ ପହଞ୍ଚି ମୁଁ ପ୍ରଥମେ କଳା ପାଉଡର ପୁଳାଏ ମୁହଁରେ, ହାତରେ ଭଲକରି ଘଷିନେଲି । ଖଣ୍ଡିଏ ଛିଣ୍ଡା ମଇଳା ଲୁଗା ପିନ୍ଧିଲି । ମୁହଁର ଦି'କୋଣକୁ ଦି'ଆଡ଼େ ଲମ୍ବାଇ ଦେଇ ଦେଖିଲି, ଏ ମୁହଁରେ ଆଉ ଏ ବେଶରେ ମତେ ହଠାତ୍ ଚିହ୍ନିବା ବଡ଼ ସହଜ ନୁହେଁ । ସେତେବେଳକୁ ଅନ୍ଧାର ପଡ଼ି ଆସିଥିଲା । ମୁଁ ଗୋଟିଏ ଗୋଟିଏ ସେଠାରୁ ବାହାରିପଡ଼ି ଚୌଧୁରୀ ବଜାର ଗାଡ଼ିଖାନାରେ ଖଣ୍ଡିଏ ଗାଡ଼ି ଭଡ଼ା କରିବାକୁ ଗଲି । ଗାଡିବାଲା ମୋ ରୂପ ଦେଖି ମତେ ଥଟ୍ଟାକଲା । ମୁଁ ଟଙ୍କାଟିଏ ତା' ହାତରେ ଗୁଞ୍ଜିଦେଲି । ସେ କ'ଣ ଭାବି ସାଙ୍ଗେ ସାଙ୍ଗେ କଅଁଳ ହୋଇଗଲା । ସଲାମ୍ କରି କହିଲା—"ହଜୁର୍ ବୈଠିଏ ।"

ମୁଁ ବସିଲି । ରାଣୀହାଟ ଛକକୁ ଗାଡ଼ି ଚଳାଇବାକୁ ଆଦେଶ ଦେଲି । ମୁଁ ଯେ ଅବିନାଶ ବାବୁ ସାଙ୍ଗରେ ସାକ୍ଷାତ କରିପାରିବି—ସେ ଆଶା ମୋର ନଥିଲା । ତେବେ ଛଳେ ବଳେ କୌଶଳେ ଯଦି ତା'ର ଚାକରବାକରଙ୍କଠାରୁ କିଛି କଥା ଆଦାୟ କରିପାରେଁ, ଏହି ଆଶାରେ ଯାଉଛି । ରାଣୀହାଟ ଛକ ପାଖରେ ଗାଡ଼ିବାଲାକୁ ବିଦାୟ କଲି । ସେ ଚାଲିଯିବାର ଦଖି ମୁଁ କେନାଲ୍ ଆଡ଼େ ଗଲି । ଏହି କେନାଲ୍ ପାଖରେ ଅବିନାଶ ବାବୁର ଘର । ମୁଁ ଦି'ତିନିଥର ତାହା ଦେଖିବାର ସୁବିଧା ପାଇଥିଲି । ତାଙ୍କର ଘର ପାଖରେ ହୋଇଛି, ଦେଖିଲି—ତାଙ୍କ ମଟରଟା ଦୁଆରେ ଠିଆହୋଇଛି, ଆଉ ଭିତରେ ସେ ଚାକରବାକରମାନଙ୍କୁ କହୁଛନ୍ତି, "ମୁଁ ଯଦି ଆଜି ଫେରି ନଆସେ, ତୁମେ ସବୁ ଘର ଦୁଆର ଦେଇ ଶୋଇବ । ମୋର ଆଜି ଗୋଟାଏ ରୋଗୀ ଅଛି । ହୁଏତ ମତେ ସାରା ରାତିଟା ତା'ରି ପାଖରେ ରହିବାକୁ ପଡ଼ିବ । ଏଗାରଟା ପର୍ଯ୍ୟନ୍ତ ଅପେକ୍ଷା ରଖିଥିବ । "

ଏସବୁ କଥା ଶୁଣି ମୁଁ ହଠାତ୍ ଭାବନାରେ ପଡ଼ିଗଲି । ରାତି ଜାଗି ରୋଗୀ ପାଖରେ ରହିବା ଅବିନାଶ ବାବୁର କାମ ନୁହେଁ । କେବେ ଏପରି କଥା ମୁଁ ଶୁଣି ନାହିଁ । ତା'ହେଲେ ଏ ଫନ୍ଦି କାହିଁକି ? ବୋଧହୁଏ ମୁଁ ଯାହାର ଅନୁସନ୍ଧାନରେ ଏଠାକୁ ଆସିଛି, ତା'ରି ପାଖରେ ଆଜି ରାତିଟା କଟାଇବାର ଇଚ୍ଛା । ଅବିନାଶ ବାବୁର ଏ ଫିକର ମତେ ଅଜଣା ନଥିଲା । ମୁଁ ଦେଖିଲି, ଆଜି ଯଦି କୌଣସି ମତେ ମୁଁ ଯ୍ୟା ସାଙ୍ଗରେ ଯାଇପାରନ୍ତି, ତା'ହେଲେ ସବୁ କଥା ଜାଣିପାରନ୍ତି; କିନ୍ତୁ କିପରି ଯିବି ? ମୁଁ କଟକ ସହରରେ ଭଡ଼ା ମଟର ଖୋଜି ଯ୍ୟା ପିଛା ଧରି କୃତକାର୍ଯ୍ୟ ହେବି କିପରି ? କ'ଣ କରିବାକୁ ହେବ ?

ଏତିକିବେଳେ ସେ ଘରୁ ବାହାରି ଆସିବାର ଜୋତା ଶବ୍ଦ ଶୁଭିଲା । ଆଉ ଭାବିବାର ସମୟ ନାହିଁ । ମୁଁ ମଟରର ପଛ ଦୁଆରଟା ଖୋଲିଦେଇ ଆଗ ବୈଠକୀର ମଝିରେ ଥିବା

ଗଳି ଖଣ୍ଡିକରେ ଗଳିପଡ଼ିଲି । ଲେପଟେଇ ସୋଇରହିଲି । ଆତଙ୍କରେ—ଆଶଙ୍କାରେ ମୋର ନିଃଶ୍ୱାସ ବନ୍ଦ ହୋଇଯିବା ଉପରେ, ଦିହ ଝାଳରେ ବୁଡ଼ିଗଲା ଭଳି । ସେ ଆସିଲା, ଗୁଣୁ ଗୁଣୁ କରି କ'ଣ ଗୀତ ଗାଉଥାଏ । ଆସି ମଟର ଚାରିଆଡ଼େ ଟିକିଏ ବୁଲିଗଲା । ଦୁଆରଟା ମେଲାଥିବାର ଦେଖି ମନେ ମନେ କହିଲା, "ଶାଲା, ଦରଜା ଖୋଲେ କୌନ୍ ?"

ମୁଁ ମରିଗଲା ପରି ହୋଇଗଲି—ସେ ଯଦି ଆଲୁଅ ପକାଇ ଦେଖେ କି ଏହା ଭିତରକୁ ଆସେ । ଏତିକିବେଳକୁ ଟିକ୍ କରି ଗୋଟାଏ ଶବ୍ଦ ହେଲା ଆଉ ଫଟ୍‌କରି ଗୋଟାଏ ଆଲୁଅ ଆସି ପଛ ବୈଠକୀ ଉପରେ ପଡ଼ିଲା । ମୁଁ ଭାବିଲି ଏଇଥରକ ଦଫା ଶେଷ । ଟର୍ଚ୍ଚ ଆଲୁଅଟା ଟିକିଏ ତଳକୁ ଖସିଆସିଲେ, ଏଇ ଦି' ଆଙ୍ଗୁଳି ହାତଟା ନଇଁଗଲେ ମୁଁ ଧରାପଡ଼ିଲି । ମୋର ସବୁ କଳ୍ପନା ଜଳ୍ପନା ତ ଯିବ । ତା'ପରେ ଯଦି ଚୋର ବୋଲି ମତେ ପୁଲିସ୍ ହାତରେ ଦିଏ, ତା'ହେଲେ ସର୍ବନାଶ । ମୋ ଦେହରେ ଆଉ ସେତେବେଳେ ଚେତା-ଚୈତନ ନଥାଏ । ବିପଦରେ ପଡ଼ି ଭଗବାନଙ୍କୁ ଡାକିବାର ଶକ୍ତି ମଧ୍ୟ ମୋର ଚାଲିଯାଇଥାଏ । ତ୍ରାହି ମଧୁସୂଦନ ! ହଠାତ୍ ପୁଣି ଅନ୍ଧକାର ହୋଇଗଲା । ଟିକ୍ କରି ଗୋଟାଏ ଶବ୍ଦ ହେଲା । ଟର୍ଚ୍ଚ ଲିଭିଗଲା । ଅନ୍ଧାରଟା ମନୁଷ୍ୟର ଏତେ ପ୍ରିୟ, ଏତେ ଟିକିଏ ଟିକ୍ ଶବ୍ଦରେ ଯେ ଏତେ ଆରାମ, ଆଉ ଆମୋଦ, ଏହା ମୁଁ କେବେହେଲେ ଅନୁଭବ କରିନଥିଲି । ଅବିନାଶ ବାବୁ ଝଟ୍ ଝଟ୍ କରି ସେ ଦୁଆରଟା ବନ୍ଦ କରିଦେଇ ଆଗ ବୈଠକୀରେ ବସି ମଟର ଚଳାଇଲେ । ମଟରଟା ଯେପରି ଏହାର ପାପ କାମରେ ସାହାଯ୍ୟ କରୁଛି ବୋଲି ଗୋଟିଏ ଆର୍ତ୍ତନାଦ କରି ଉଠିଲା । କୌଣସି ଭୟର ଆଶଙ୍କାରେ ଯେପରି ତା'ର ସମୁଦାୟ ଦେହ ଥର ଥର ହୋଇ କେତେ ଥର କମ୍ପିଗଲା । ତା'ପରେ ଧକ୍କା ଖାଇ ମଣିଷ ଝୁଣ୍ଟି ଚାଲିଲା ପରି ମଟରଟା ଚାଲିଲା । ମୁଁ ଟିକିଏ ନିଃଶ୍ୱାସ ମାଇଲି ।

ମୋର ବର୍ତ୍ତମାନ ଅବସ୍ଥା ଆଲୋଚନା କରି ଦେଖିଲି । ମୁଁ ଯାଇ ଏହାର ଲକ୍ଷ୍ୟ ସ୍ଥାନରେ ନପହଞ୍ଚିବା ପର୍ଯ୍ୟନ୍ତ ଅନ୍ତତଃ ନିଶ୍ଚିନ୍ତ । ତା'ପରେ କ'ଣ କରିବାକୁ ହେବ ? ଛଳେ ବଳେ କୌଶଳେ ଏ କେଉଁ ଘରକୁ ଯିବ—ସେ ଘରକୁ ମତେ ମଧ୍ୟ ଯିବାକୁ ପଡ଼ିବ । ତା'ପରେ ଯାହା ହେଉ, ଯେ ପରମାତ୍ମା ମତେ ଏପର୍ଯ୍ୟନ୍ତ ଧରା ନପକେଇ ବିପଦରୁ ରକ୍ଷା କରିଛନ୍ତି, ସେ ଅନ୍ୟ ବିପଦରୁ ମଧ୍ୟ ରକ୍ଷା କରିବେ । ଯେ ଦୀନାର୍ତ୍ତନାଶନ ମତେ ମଟରରେ ଚଢ଼ି ବସିବାକୁ ବୁଦ୍ଧି ଦେଇଛନ୍ତି, ସେ ମଧ୍ୟ ୟା ପରେ କ'ଣ କରିବାକୁ ହେବ ତା'ର ବୁଦ୍ଧି ଦେବେ । ଏହି ଆଶ୍ୱାସରେ ପଡ଼ିରହିଲି । ମଟରଟା ବଜାର ଭିତରେ ଗୋଟାଏ ଦୋକାନ ପାଖରେ ରହିଲା । ଅବିନାଶ ବାବୁ ଦୋକାନୀକୁ ଯାଇ କହିଲା, ଦୋକାନର ଜଣେ ଲୋକ କ'ଣ ଗୋଟାଏ ଆଣି ମଟର ପାଖରେ ଠିଆହେଲା ।

ଅବିନାଶ ବାବୁ କହିଲା—"ପିଛେ ରଖୋ ।" ସେ ଲୋକଟା ଦୁମ୍ କରି ସେ ଜିନିଷ ମୋ ପିଠି ଉପରେ ଥୋଇଦେଇ ଚାଲିଗଲା । ମଟର ମଧ୍ୟ ସାଙ୍ଗେ ସାଙ୍ଗେ ଚାଲିଲା । ମୁଁ ଆସ୍ତେ ହାତ ବଢ଼ାଇ ଦେଖିଲି, ସେଇଟା ଗୋଟାଏ ଟିଣ । ଭାବିଲି ପେଟ୍ରୋଲ ଟିଣ । ପେଟ୍ରୋଲ ଟିଣ କାହିଁକି ? ଏ ଆଜି ରାତିରେ କେତେ ଦୂର ଯିବ କି ? ଏହାର ଉଦ୍ଦେଶ୍ୟ ମୁଁ ଯାହା

ଭାବିଥିଲି, ତା' କ'ଣ ନୁହେଁ ? ମୁଁ ତା'ହେଲେ ୟା ସଙ୍ଗରେ କେତେଦୂର ଯିବି ? ଅଜଣା ଅଶୁଣା ସ୍ଥାନରେ ଯଦି ଧରାପଡ଼େ, ତା'ହେଲେ ମୋର ଉପାୟ ? କିନ୍ତୁ ଭାବି ଆଉ ଲାଭ କ'ଣ ? ଯାହା କରିଛି ତାହା ଆଉ ଫେରି ଆସିବାର ନୁହେଁ । ଏ ମଟରର ଗତି ବନ୍ଦ କରିବା ଯେପରି ମୋ ପକ୍ଷରେ ଦୁଃସାଧ୍ୟ—ଯାହା କରିଛି ତାକୁ ଫେରାଇ ଆଣିପାରିବି ନାହିଁ, ତାହା ଭାବି କି ଲାଭ ? ତୁନିହୋଇ ପଡ଼ିରହେଁ, ଯାହା ଥିବ ମୋ ଭାଗ୍ୟରେ ।

ମଟର ଅନେକଆଡ଼େ ବୁଲି ଫେରି ଶେଷରେ ଯାଇ ପହଞ୍ଚିଲା ଗୋଟାଏ ଗଳି ଭିତରେ । କଟକ ସହରର କେଉଁ ସ୍ଥାନ ସେ, ମୁଁ ଜାଣେ ନାହିଁ । କିପରି ଜାଣିବି ? ମଟର ରହିଲା ଗୋଟାଏ ଘର ପାଖରେ—ଏକମହଲା ପକ୍କା । ମୁଁ ଟିକିଏ ମୁଣ୍ଡଟେକି ଚାହିଁ ଦେଖିଲି, ଗୋଟାଏ ଗଳିର ମୋଡ଼ ଉପରେ ଘର । ଘରଟା ବଡ଼ ପୁରୁଣା, ଭଙ୍ଗାଟୁଟା—ମଟର ଆଲୁଅରେ ସଫା ଦେଖାପଡ଼ିଲା । ଗୋଟାଏ ଦି'ଟା ବରଗଛ ତା' ଉପରେ ଉଠିଗଲାଣି । ପାଖରେ ଘରଦ୍ୱାର କିଛି ନାହିଁ, ସାମନାରେ ତା'ର ଗୋଟାଏ ବଗିଚା—ଇଟା ପାଚିରିରେ ଘେରା । ସେଥିରେ ଆମ୍ବ-ଫାମ୍ବ କେତେ କ'ଣ ଗଛ ଦିଶିଲା, ଭାରି ଗହଳିଆ । ମଟର ଆଗ ଆଲୁଅ ଯେତେଦୂର ପଡ଼ିଛି ସେତେଦୂର ଚାହିଁଲି—କୌଣସି ପଟରେ ଗୋଟିଏ ସୁଦ୍ଧା ଘର ଦିଶିଲା ନାହିଁ ।

ଏ ଘର ଦୁଆରକୁ ଲକ୍ଷ୍ୟ କଲି । ଦେଖିଲି, ଗୋଟିଏ ପ୍ରୌଢ଼ା ସ୍ତ୍ରୀଲୋକ ଆଉ ଗୋଟିଏ ଯୁବତୀ—ବାରଣ୍ଡା ଉପରେ ଠିଆହୋଇଛନ୍ତି । ସେମାନଙ୍କର ଚେହେରାଟା ଦେଖିବାର ସମୟ ଓ ସୁବିଧା ହେଲା ନାହିଁ । ସେମାନେ ଥିଲେ ମଟରର କଡ଼ବାଗିଆ, ଅନ୍ଧାରରେ । ଅବିନାଶ ବାବୁ ସେମାନଙ୍କୁ କହିଲା—"ପ୍ରସ୍ତୁତ ଅଛ ତ ?"

ପ୍ରୌଢ଼ା ଉତ୍ତର କଲା— ସେ ସ୍ୱର କି କଠୋର ! କି ତୀବ୍ର !—"ଆ କେତେବେଳରୁ ତ ଚାହିଁ ଚାହିଁ ଆମ ଆଖିରୁ ପାଣି ମଲାଣି । ଆ, ଏ ଦେଶର ପୁଣି ମରଦଗୁଡ଼ାକ କ'ଣ ବା ? କଥାରେ ଠିକ୍ ନାହିଁ ।" ସେ ଆହୁରି କ'ଣ କେତେ କହିବାକୁ ଯାଉଥିଲା, ଅବିନାଶ ବାବୁ ବାଧା ଦେଇ କହିଲା—"ଥାଉ ଥାଉ, ସେ ସବୁ ବ୍ୟାଖ୍ୟାରେ ଦରକାର ନାହିଁ, ଆସ ତେବେ ଯିବା ।"

ସେ ସ୍ତ୍ରୀଲୋକଟା କହିଲା—"ଯିବା ? ଆ ମା'ଲୋ, କି କଥା ? ଯିବା ? ତୁମେ ତ ତୁମ ନାଗରୀକୁ ନେଇଯିବ, ଆଉ ମୁଁ ଏଠି କ'ଣ ଉପରକୁ ଚାହିଁଥିବି ? ମୋ ପାଉଣା ଗଣ୍ଡାକ ଦିଅ, ତା'ହେଲେ ଛାଡ଼ିବି, ନଇଲେ ଅଇଛିକା ଫେଣେ ଦେଖିବ ।"

ଅବିନାଶ ବାବୁ ଆଉ କଥା ନକହି କ'ଣ ତା' ହାତକୁ ବଢ଼ାଇ ଦେଲା । ସେ ତାକୁ ଓଲଟପାଲଟ କରି ଦେଖିଲା । ତା'ପରେ କହିଲା—"ହେଉ, ତେବେ ଯାଅ । ଯାଲୋ, ଖୁମାଣୀଟା ପରି ଠିଆହେଲୁ କାହିଁକି ମ ?"

ଅବିନାଶ ବାବୁ କହିଲା—"ଆସ, ଆସ, ଡେରି ହୋଇଯାଉଛି ଯେ !" ତା'ପରେ ବୀଣାନିନ୍ଦିତ ସ୍ୱରରେ ଝଙ୍କାର ଉଠିଲା, "ମୁଁ କ'ଣ ତୁମର ନାଗରୀ ? ତୁମେ କ'ଣ ଏଇପରି ଭାବରେ ସମସ୍ତଙ୍କ ସାମନାରେ ମୋର ପରିଚୟ ଦେଉଛ ? ତୁମର ଉଦ୍ଦେଶ୍ୟ କ'ଣ ସ୍ପଷ୍ଟକରି ନକହିଲେ ମୁଁ ତ କେବେ ମଟରରେ ଉଠିବି ନାହିଁ ।"

ଅବିନାଶ : ବୃଥା କାହିଁକି ଏପରି ପିଲାମି କରୁଛ ? ମୋର ଉଦ୍ଦେଶ୍ୟ ତ ମୁଁ ଅନେକ ଥର ତୁମକୁ ବୁଝାଇ କହିଛି, ଏଇଲାଗେ ବୁଝାଇ କହିବାର ବେଳ ନାହିଁ । ଆଉ ତୁମେ ଏ ମୁଖରାଟାର ଟାଣକଥା ଶୁଣୁଛ କାହିଁକି ? ସେ କ'ଣ ଜାଣେ ? ବଜାରି ଲୋକ, ଯାହା.... ।

ପ୍ରୌଢ଼ା ଗର୍ଜନ କରି କହିଲା—"କି ମୁଁ ବଜାରି ? ମୁଁ ମୁଖରା ? ଆଉ ଏଇଟି ସୁନାପିଲା । ଯେ ଘରଦୁଆର, ଘଇତା, ଶାଶୁ, ଶଶୁର ଛାଡ଼ି ଚାଲିଆସେ ସେ ହେଲା ଭଲ—ଆଉ ଆମେ କୁଳରେ ରହି ହେଲୁ ବଜାରି ! ହାରାମଜାଦି, ବେଧେଇ ଟୋକୀ !" ଏହା କହି ସେ ଘର ଭିତରକୁ ଚାଲିଗଲା । ଅବିନାଶ ବାବୁ ମଟରରୁ ଓହ୍ଲାଇ ଯୁବତୀଟିର କାନରେ କ'ଣ ତୁନି ତୁନି କରି କହିଲା । ସେ ତା' ଶୁଣି ଆଉ ଦ୍ୱିରୁକ୍ତି ନକରି ଆସିଲା । ମୁଁ ଯେ ବଖରାରେ ଥିଲି ସେଇ ବଖରାରେ ଆସି ସେ ଗୋଟାଏ କୋଣରେ ଜାକିଜୁକି ହୋଇ ବସିଲା । ମୁଁ ମଧ୍ୟ ଗୋଟିଏ କୋଣରେ ଜାକିଜୁକି ହୋଇ ପଡ଼ିରହିଲି । କବାଟ ବନ୍ଦହେଲା, ମଟର ଚାଲିଲା ।

କ୍ରମେ ଆମେ ସହର ପାରିହୋଇ ଆସ୍ତେ ଆସ୍ତେ ବିଡ଼ାନାସୀ ଦିଗରେ ଗତି କଲୁ । ମୁଁ କିଛି ବୁଝିପାରିଲି ନାହିଁ, ଅବିନାଶ ବାବୁର ମତଲବ କ'ଣ ? ହେଲେ ସେ ଯୁବତୀଟି ମଧ୍ୟ ଡେରିହୋଇ ବସିବାର ଉଦ୍ୟମ କରୁଛି । ସେହି ଉଦ୍ୟମ ଫଳେ ତା'ର ଗୋଡ଼ଟା ଆସି ମୋ ଗୋଡ଼ ଉପରେ ପଡ଼ିଲା । ସାଙ୍ଗେ ସାଙ୍ଗେ ସେ ଚମକି ପଡ଼ିଛି, ତା' ମଧ୍ୟ ମୁଁ ଜାଣିପାରିଲି । ସେ କାଳେ ଗୋଟାଏ କିଛି ଗୋଳମାଳ କରି ବସିବ, ସେହି ଭୟରେ ମୁଁ ହାତ ବଢ଼ାଇ ତା'ର ଗୋଡ଼କୁ ଟିକିଏ ଚିପିଦେଲି । ମୁଁ ଆସ୍ତେ ଆସ୍ତେ ଅତି ଧୀରେ ସିଧା ହୋଇ ବସିଲି । ମଟର ସେହିପରି ଅବାରିତ ଗତିରେ ଚାଲୁଥାଏ । ସେ ଯୁବତୀକି ସଙ୍କେତ କଲି । ସେ ମୋ ସଙ୍କେତ ଅନୁସାରେ ତା'ର ବୈଠକୀ ଉପରେ ଶୋଇପଡ଼ିଲା । ବାରି ଦେଖିଲା, ମୁଁ ଜଣେ ସ୍ତ୍ରୀଲୋକ । ମୁଁ ତା' କାନ ପାଖରେ ମୁହଁ ରଖି ଅତି ଧୀରେ କହିଲି—"ମୁଁ ତୁମର ହିତୈଷୀ, ଭୟ କର ନାହିଁ । ତୁମ ନାଁ କ'ଣ ମନୋରମା ?"

ସେ ଚମକି ଉଠିଲା । ମୁଁ ପୁଣି କହିଲି—"ସାବଧାନ ! ଗୋଟିଏ କଥା ଯେପରି ବଡ଼ ପାଟିରେ ନକହ । ତା'ହେଲେ ସବୁ ନଷ୍ଟ ହୋଇଯିବ ।" ସେହିପରି ମୋ ପାଖରେ ମୁହଁ ରଖି କହିଲା—"ମୋ ନାଁ ମନୋରମା ବୋଲି ତୁମେ କିପରି କହୁଛ ? ତୁମେ କିଏ ?" ମୁଁ ସେହିପରି କହିଲି—"ମୁଁ ଯେ ହୁଏ ସେ କଥା ପଛେ । ବର୍ତ୍ତମାନ କଥା ହେଉଛି, ଏ ବିପଦରୁ କିପରି ଉଦ୍ଧାର ପାଇବା ?"

ସେ : ବିପଦ କ'ଣ ? ମୁଁ ତ କିଛି ଦେଖିପାରୁ ନାହିଁ !

ମୁଁ : ସହର ବାହାରେ ବିଡ଼ାନାସୀ ପାଖକୁ ଆସି ମଧ୍ୟ ବିପଦ କିଛି ଦେଖିପାରୁ ନାହିଁ ?

ସେ : ନାଁ, ମୁଁ ମୋ ସ୍ୱାମୀଙ୍କ ସହିତ ସାକ୍ଷାତ କରିବାକୁ ଯାଉଛି । ସେହି ଉଦ୍ଦେଶ୍ୟରେ ଅବିନାଶ ବାବୁ ମତେ ଡାକି ଆଣିଛନ୍ତି ।

ମୁଁ : ତୁମ ସ୍ୱାମୀ କେଉଁଠି ଜାଣ ?

ସେ : ନା, ତେବେ ଏଣେ କୁଆଡ଼େ ଥିବେ ବୋଧହୁଏ ।

ମୁଁ : ଭଲ, ତୁମର ସ୍ୱାମୀ ମୋ ଘରେ । ବର୍ତ୍ତମାନ ବୋଧହୁଏ ଶୋଇ ତୁମରି ସ୍ୱପ୍ନ ଦେଖୁଥିବେ । ମୋ ଘର ତେଲଙ୍ଗାବଜାର ।

ସେ : ତୁମ ଘରେ ? ତୁମେ କିଏ ?

ମୁଁ : ସେ କଥା ପରେ, ମୁଁ ଯାହା କହୁଛି ତାହା କର । ବର୍ତ୍ତମାନ ଦେଖୁଛି ଅବିନାଶ ବାବୁର ଉଦ୍ଦେଶ୍ୟ ଭଲ ନୁହେଁ । ତୁମେ ପଚାର, ସେ ତୁମକୁ କୁଆଡ଼େ ନେଉଛି, କାହିଁକି ନେଉଛି—ଇତ୍ୟାଦି ।

ମନୋରମା ମୋ କଥାର କୌଣସି ଜବବ ନଦେଇ ସେହିପରି ଶୋଇ ରହି ଡାକିଲା—"ବାବୁ !" କୌଣସି ଜବାବ ମିଳିଲା ନାହିଁ । ପୁଣି ଥରେ ଉଚ୍ଚ ସ୍ୱରରେ ଡାକିଲା—"ବାବୁ !"

ଅବି : କି ? ହୁଁ କ'ଣ ?

ମନୋରମା : ଏଣେ କୁଆଡ଼େ ଆସିଲେଣି ? ଏ ଯେ ସହର ବାହାରେ ।

ଅବି : ତୁମର ସ୍ୱାମୀଙ୍କୁ ଦେଖିଯିବ ପରା ! ଡର ଲାଗୁଛି କି ? କହିବ ତ ଏଠାରୁ ମଟର ଫେରାଇ ନେବି ।

ମନୋରମା ମୋ ଆଡ଼କୁ ଢଳିଲା । ମୁଁ କହିଲି—"ଫେରିବାକୁ ନାହିଁ କର ଆଉ ପଚାର କେଉଁଠିକି ?"

ମନୋରମା : ନାହିଁ ନାହିଁ, ଆସିଛି ଯେତେବେଳେ ଆଉ ଫେରିଯିବି ନାହିଁ; କିନ୍ତୁ ସେ ଏଣେ କୁଆଡ଼େ ଅଛନ୍ତି ?

ଅବି : ଏଠାରେ ଧବଳେଶ୍ୱର ବୋଲି ଗୋଟାଏ ପଠା ଅଛି, ସେହି ପଠାରେ ତମର ସ୍ୱାମୀ ବେରାମ ହୋଇ ପଡ଼ିଛନ୍ତି । ସେହିଠାରେ ତାଙ୍କ ସହିତ ଦେଖାହେବ ।

ମୁଁ ତାକୁ ତୁନି ହେବାକୁ ସଙ୍କେତ କଲି । ମୋର ବର୍ତ୍ତମାନ ଉଦ୍ଦେଶ୍ୟ ଅନ୍ତତଃ ସିଦ୍ଧ ହୋଇଛି; କିନ୍ତୁ ଧବଳେଶ୍ୱର କାହିଁକି ? ସେ ଯାହା ହେଉ, ମୁଁ ବିଡ଼ାନାସୀରେ ପହଞ୍ଚିଲେ କ'ଣ କରିବି ? ଅବିନାଶ ବାବୁ ଅବଶ୍ୟ ଡଙ୍ଗା ଠିକ୍ କରିଥିବ । ସେ ତ ଯ୍ୟାକୁ ଘେନି ଖସିଯିବ । ମୁଁ ଯିବି କିପରି ? ତା'ପରେ ମୋର ଯିବା କ'ଣ ଉଚିତ ? ମୁଁ ଯଦି ଯାଇ ସେଠି ରହେ, ତା'ହେଲେ ମନୋରମା ସ୍ୱାମୀଙ୍କର କ'ଣ ହେବ ? ଅବିନାଶ ବାବୁ କାଲି ଫେରିବ । ନିଶ୍ଚୟ ମୋ ଘରଠାକୁ ଯିବ । ସେ ଯେ ଔଷଧ ଦ୍ୱାରା ମନୋରମା ସ୍ୱାମୀଙ୍କର ଅନିଷ୍ଟ କରିବାକୁ ତତ୍ପର, ସେଥିରେ ମୋର ବର୍ତ୍ତମାନ ଆଉ ତିଳାର୍ଦ୍ଧ ସନ୍ଦେହ ନାହିଁ । ମୁଁ ନଥିବା ଅବସ୍ଥାରେ ସେ ଯଦି ଔଷଧ ଇତ୍ୟାଦି ବଦଳାଇ ଦିଏ ତା'ହେଲେ ତାକୁ ବାଧା ଦେବାକୁ କେହି ନାହିଁ । ଅନ୍ୟ ପକ୍ଷରେ ମୁଁ ଯଦି ମନୋରମାକୁ ଏ ସ୍ଥାନରେ ଏ ରାକ୍ଷସ ହାତରେ ଏକାକୀ ଛାଡ଼ିଦେଇ ଯାଏ, ତା'ହେଲେ ଯ୍ୟାର ଅବସ୍ଥା କ'ଣ ହେବ ? ଅବଶ୍ୟ ମୁଁ ଏହି ସାମାନ୍ୟ କେତେଟା କଥା ଯେ ମନୋରମା ଠାରୁ ଶୁଣିଛି, ସେଥିରୁ ବୁଝିନେଇଛି—ମନୋରମାର ହୃଦୟ ମୋ ହୃଦୟ ଭଳି

ଲହୁଣୀ-କୋମଳ ନୁହେଁ, ସେ କଥାଚାତୁରୀରେ ବା ମିଛ ପ୍ରଲୋଭନରେ ପଡ଼ି ଭୁଲିଯିବ ନାହିଁ । ଜାଣିଶୁଣି ସ୍ୱ-ଇଚ୍ଛାରେ ନିଜର ଧର୍ମ ଲୋପ କରିବ ନାହିଁ । କିନ୍ତୁ ଅବିନାଶ ଯଦି ବଳ ପ୍ରୟୋଗ କରେ, ତା'ହେଲେ ଏ କ'ଣ କରିବ ? ମୁଁ କିପରି ବା ଯ୍ୟାକୁ ଏ ରାକ୍ଷସ ମୁହଁରେ ଜାଣିଶୁଣି ସମର୍ପି ଦେଇଯିବି ? ଗଲେ କ'ଣ ଆଉ ଯ୍ୟାକୁ ଦେଖିବାକୁ ପାଇବି ? ସଦାନନ୍ଦ ବାବୁ କହିଛନ୍ତି--ମନୋରମାକୁ ନଦେଖିଲେ ତା' ସ୍ୱାମୀର ରୋଗ ଭଲହେବ ନାହିଁ । ମୁଁ ଦେଖିଲି, ଯେଉଁଆଡୁ ଧର, ସେଆଡୁ ଯ୍ୟା ସ୍ୱାମୀଙ୍କର ଭାରି ବିପଦ ।

କିପରି କ'ଣ କରିବି କିଛି ଭାବି ଠିକ୍ କରିପାରିଲି ନାହିଁ । ଶେଷରେ ଭାବିଲି ମନୋରମାକୁ କହେଁ—ଯଦି ତା' ବୁଦ୍ଧିକି କିଛି ଉପାୟ ଦିଶେ ! କିନ୍ତୁ ଚାହିଁ ଦେଖିଲି, ସବୁ କଥା ଖୋଲି କହିବାର ଉପାୟ ନାହିଁ । ବିଡ଼ାନାସୀ ଗାଁ ମୁଣ୍ଡରେ ହେଲୁଣି, ମୋ ମୁଣ୍ଡ କୁମ୍ଭାର ଚକ ପରି ଘୁରିଲା । ଆଉ ସେଥିରୁ ତିଆରି ହେଲା ଏଇ ଫିକରଟା—ଧବଳେଶ୍ୱର କିଛି ରାଜ୍ୟ ବାହାରେ ନୁହେଁ । ମୁଁ ଚେଷ୍ଟାକଲେ ଧବଳେଶ୍ୱରଠାରୁ କାଲି ସବୁ ଖବର ଗୋପ ପାଖକୁ ପଠାଇପାରେଁ । ତା'ହେଲେ ମନୋରମାର ସ୍ୱାମୀଙ୍କ ସମ୍ବନ୍ଧରେ ମୋର ଆଶଙ୍କା ଅନେକ ପରିମାଣରେ ସମ୍ଭାଳି ହୋଇଯିବ । ମନୋରମାର ବିପତ୍ତି ତା'ର ସ୍ୱାମୀଙ୍କର ବିପଦଠାରୁ ବେଶି । ଆଉ ମନୋରମାର ମଙ୍ଗଳ ଉପରେ ତା' ସ୍ୱାମୀଙ୍କର ମଙ୍ଗଳ ନିର୍ଭର କରେ । ସୁତରାଂ ମନୋରମାର ଅନୁସରଣ ହିଁ ମୋର ବର୍ତ୍ତମାନ କର୍ତ୍ତବ୍ୟ; କିନ୍ତୁ କିପରି ?

ଯେ ଭାବରେ ଆସି ମଟରରେ ଲୁଚି ରହିଲି, ସେପରି ଭାବରେ ଡଙ୍ଗାରେ ତ ଲୁଚି ରହିବା ଅସମ୍ଭବ । ନା, ମତେ ଯ୍ୟାଙ୍କ ସାଙ୍ଗ ଛାଡ଼ି ଅନ୍ୟ ଉପାୟ ଦେଖିବାକୁ ପଡ଼ିବ । ଠିକ୍ କଲି, ଏଇଠାରେ ଓହ୍ଲାଇ ମୁଁ ମହାନଦୀ ଚଡ଼ାରେ ଚଡ଼ାରେ ଧବଳେଶ୍ୱର ଘାଟ ପର୍ଯ୍ୟନ୍ତ ଚାଲିଯିବି । ତା'ପରେ ଘାଟବାଲାକୁ କିଛି ବକ୍‌ସିସ ଦେଇ ସେଇଠାରେ ପାରହେବି । ଏମାନେ ଯିବେ ନଇରେ । ବାର ବାଙ୍କ, ଡେର ବୁଲାଣି ଟପୁ ଟପୁ ମୁଁ ସିଧାବାଟରେ ଯାଇ ଏମାନଙ୍କ ଆଗରୁ ଧବଳେଶ୍ୱରରେ ପହଞ୍ଚିବି ।

ଏହିପରି ଠିକ୍ କରି ମୁଁ ମନୋରମାକୁ କହିଲି—"ମଟର ରହିବା ସଙ୍ଗେ ସଙ୍ଗେ ତୁମେ ଓହ୍ଲାଇବ ନାହିଁ । ଆଉ 'ଏକକୁ ଯାଉଛି' ବୋଲି କହି ମଟର ପଛଆଡ଼େ ପ୍ରାୟ କୋଡ଼ିଏ ହାତ ଖଣ୍ଡେ ଚାଲିଯିବ । ମୁଁ ସେହିଠାରେ ତୁମକୁ ସବୁ କହିବି ।"

ମଟର ଆସି ଘାଟ ପାଖରେ ଗୋଟାଏ ମୋଡ଼ ଉପରେ । ଗଡ଼ାଣିଆ ହୋଇଥିବାରୁ ମଟରଟା ଅତି ଧୀରେ ଚାଲିଲା । ମୁଁ ଖୁବ୍ ଆସ୍ତେ ଆସ୍ତେ କବାଟଟା ଫିଟାଇ ଠିଆହେଲି । ଅବିନାଶ ବାବୁ କହିଲେ—"ଉଠ ନାହିଁ, ମଟର ରହୁ, ଓହ୍ଲାଇବ ।" ମୁଁ ଚୁପ୍ ହୋଇ ଠିଆହେଲି । ମୋଡ଼ ପାଖରେ ମୁଁ ଜାଣେ, ଅବିନାଶ ବାବୁଙ୍କର ସମସ୍ତ ମନ ଧ୍ୟାନ ମଟରକଳ ଉପରେ ରହିବ; ସେତିକିବେଳେ ମୁଁ ଓହ୍ଲାଇ ପଡ଼ିଲି । ମଟର ପଛେ ପଛେ ଚାଲିଲି । ମଟର ନଇ କୂଳରେ, ଘାଟ ଉପରେ ଠିଆହେଲା । ପ୍ରାୟ କୋଡ଼ିଏ ପଚିଶ ହାତ ପଛରେ ଗୁଡ଼ାଏ କାଠ ପଡ଼ିଥିଲା, ଦୁଇଟା କାଠ ମଧ୍ୟରେ ମୁଁ ଶୋଇ ରହିଲି । ଦୁଇ ଚାରି ମିନିଟ ପରେ ମନୋରମା ଆସିବାର ଛାଇ ମତେ ଅନ୍ଧାରରେ ଭୂତପରି ଦେଖାଗଲା । ମୁଁ ତୋଟିରେ ଟିକିଏ ଅସ୍ପଷ୍ଟ ଶବ୍ଦ

କରି ତାକୁ ମୋ ଆଡ଼କୁ ଆସ୍ତେ ଆସ୍ତେ ଡାକିଆଣିଲି । ପାଖରେ ହେଲାରୁ କହିଲି—"ବସ ।" ସେ ବସିଲା । ମୁଁ କହିଲି, "ଏହିଠାରେ ତୁମର ମୋର ଛାଡ଼ଛୁଡ଼ ।"

ମନୋରମା : ତୁମେ କ'ଣ ମୋ ସାଙ୍ଗରେ ଯାଇପାରିବ ନାହିଁ ?

ମୁଁ : କିପରି ? ମୁଁ ଡଙ୍ଗାକୁ କି ଉପାୟରେ ଉଠିବି ଯେ ସେ ଜାଣି ନପାରିବ ? ଉଠିଲେ ବା ଡଙ୍ଗାରେ ଏପରି କି ଜାଗା ଅଛି, ଯେଉଁଠି ମୁଁ ଲୁଚି ରହିପାରିବି ?

ମନୋରମା : ସତ ! ଆଚ୍ଛା, ଆମେ ଦିହେଁଯାକ ବର୍ତ୍ତମାନ ଯଦି ପଳାଇଯାଆନ୍ତେ....!

ମୁଁ : ନା, ସେ ଅସମ୍ଭବ । ତା' ପାଖରେ ବିଜୁଳି ଆଲୁଅ ଅଛି । ଆମେ ବିଡ଼ାନାସୀ ବନ୍ଧ ଉପରକୁ ଉଠୁଁ ନଉଠୁଣୁଁ ସେ ଆମକୁ ଧରିବ । ତା'ର ମଧ୍ୟ ଅନେକ ଲୋକ ଥିବେ ।

ମନୋରମା : ଆଚ୍ଛା, ଆମେ ଯଦି ନାଉରୀମାନଙ୍କୁ ସବୁ କଥା ଖୋଲି କହିବା, ତା'ହେଲେ ସେମାନେ କ'ଣ ଆମକୁ ସାହାଯ୍ୟ କରିବେ ନାହିଁ ?

ମୁଁ : କଲେ କରିପାରନ୍ତି, ନକଲେ ମଧ୍ୟ ନକରିପାରନ୍ତି । ଏ ସଂସାରରେ ଏପରି ଲୋକ ଅଭାବ ନାହିଁ, ଯେ କି ପଇସା ଲୋଭରେ ପୁଞ୍ଜା ପୁଞ୍ଜା ନିରୀହ ମଣିଷଙ୍କୁ ନିଷ୍ଠୁର ଭାବରେ ହାଣି ପକାଇବାକୁ ଟିକିଏ ହେଲେ କୁଣ୍ଠାବୋଧ କରିବେ ନାହିଁ । ଆଉ ଅବିନାଶ ବାବୁ ଯେପରି ଲୋକ, ସେଥିରେ ସେ କଦାପି ଭଲ ନାଉରୀ ଆଣିନଥିବ । ସଇତାନ ନାକକୁ ଭଲ ମଣିଷର ଦେହ ଭାରି ଗନ୍ଧାଏ ।

ଏତିକବେଳେ ଅବିନାଶ ବାବୁ ବିଜୁଳି ଆଲୁଅ ପକାଇ ଚାରିଆଡ଼ ଦେଖିଲା । ମୁଁ କହିଲି—"ତୁମେ ଯା, ସେ କାଳେ ଯାଡ଼େ ଆସିବ ବାହାରି ।"

ମନୋରମା : କିନ୍ତୁ ମୋର ଉପାୟ କ'ଣ ହେବ ?

ମୁଁ : ଭୟ ନାହିଁ । ମୁଁ ଅନ୍ୟବାଟେ ତୁମ ଆଗରୁ ଯାଇ ଧବଳେଶ୍ୱରରେ ପହଞ୍ଚିଥିବି ।

ମନୋରମା : ସେ ଯଦି ନାଆ ଉପରେ ମତେ ଧରେ....?

ମୁଁ ; ତା'ହେଲେ ନଈ ଅଛି....! ତୁମେ ଯାଅ, ହେଇ ସେ ଏଣିକି ଆସୁଛି ।

ମନୋରମା ଉଠି ଚାଲିଗଲା । ମୁଁ ତାକୁ ଚାହିଁ ପଡ଼ି ରହିଥାଏ । ସେ ବିଜୁଳି ଆଲୁଅରେ ମୁଁ ତା'ର ମୁହଁ ଦେଖିପାରିଲି ନାହିଁ; କାରଣ ତା'ର ମୁହଁ ଆଲୁଅ ଆଡ଼କୁ, ଆଉ ପିଠି ମୋ ଆଡ଼େ; କିନ୍ତୁ ସେଇ ପିଠିପଟୁ ଯାହା ଦେଖିଲି, ସେଥିରୁ ମୁଁ ହାଡ଼େ ହାଡ଼େ ଅନୁଭବ କଲି, ସେ ନିଶ୍ଚୟ ସୁନ୍ଦରୀ । ତା'ର ପେଣ୍ଡାଗୁଡ଼ିକ ବେଶ୍ ଗୋଲ—ପିଟା ସୁନାର ଦୁଇଟି ପଲଙ୍କ ଗୋଡ଼ ପରି । ସିଧାସଳଖ ଦେହ; ମୁଣ୍ଡ ଟିକିଏ ନଇଁପଡ଼ିଥାଏ ଯାହା ମାତ୍ର । ତା' ହାତର ଆଙ୍ଗୁଠିଗୁଡ଼ିକ ଚମ୍ପାକଢ଼ି ପରି । ଚାଲି ଧୀର, ଯେପରି ସୁନାର ଗୋଟିଏ ଲତା ଦେହରେ ଶିଉଳି ଲାଗିଛି; ଆଉ ସେ ଲତାଟି ବସନ୍ତ ପବନର ମୃଦୁମନ୍ଦ ବେଗରେ ଦୋହଲି ଦୋହଲି, ନାଚି ନାଚି ଚାଲିଛି । ମୁଁ ତା'ର ସ୍ୱରୂପ, ତା'ର ଚାଲିଚଳନରୁ ଅନୁଭବ କଲି—ସେ ବୋଧହୁଏ ପନ୍ଦର ଷୋହଳ ବର୍ଷର ବାଳିକାଟିଏ ମାତ୍ର । ମୋର ବଡ଼ ମନହେଲା ଧାଇଁଯାଇ ଦେଖନ୍ତି ମୋର ଅନୁମାନ ମୁତାବକ ତା'ର ମୁହଁଟି କି ନାହିଁ । କିନ୍ତୁ ମନର ବେଗ ସମ୍ଭାଳି ନେଇ ମତେ ନୀରବ

ଓ ନିଷ୍ପନ୍ଦ ଭାବରେ ପଡ଼ି ରହିବାକୁ ହେଲା । ମନୋରମା ଅବିନାଶ ପାଖରେ ପହଞ୍ଚିଲା । ମୁଁ ଦେଖିଲି, ଗୋଟାଏ ଦସିପକା ଡଙ୍ଗା କୂଳରେ ଭିଡ଼ାହୋଇଛି । ଦି'ମଙ୍ଗରେ ଦି'ଟା ଯମଦୂତ ପରି ନାଉରୀ ଯମଦଣ୍ଡ ପରି ଦି'ଟା କାତ ଘେନି ଠିଆ ହୋଇଛନ୍ତି । ଅବିନାଶ ପ୍ରଥମେ ମନୋରମାକୁ ଡଙ୍ଗାରେ ଚଢ଼ାଇଲା ଓ ତା'ପରେ ନିଜେ ଡେଇଁ ବସିଲା । ଆଲୁଅ ଲିଭିଗଲା । ଝୁପ୍‌ଝାପ୍ ଶବ୍ଦ ହେଲା, ଡଙ୍ଗା ଚାଲିଲା । ମୁଁ ମଧ୍ୟ ଉଠି ଚାଲିଲି ।



## ପନ୍ଦର

ନିର୍ଜ୍ଜନ ରାତି, ତା'ଉପରେ ପୁଣି ଅନ୍ଧାର—ମନରେ ବଡ଼ ଭୟ ହେଉଥାଏ । ଚଣ୍ଡୀଗଛ, ଆଉ ବେଣାଗଛଗୁଡ଼ାକ ମଣିଷମାନେ ଠିଆ କି ବସିଲାପରି ଦେଖାଯାଉଥାନ୍ତି । ବେଳେ ବେଳେ ଗୋଟାଏ ଗୋଟାଏ ବିଲୁଆ 'ହୁକେ ହୁ' କରି ଏପଟରୁ ସେପଟକୁ ପଳାଉଥାନ୍ତି । ମୁଁ ଚାଲିଥାଏ; କିନ୍ତୁ ଦେହରେ ପ୍ରାଣ ନଥାଏ; ଯାହା କରିଛି, ତାହା ବାହୁଡ଼ାଇ ଆଣିବା ଅସମ୍ଭବ । ଆଗରେ ଯେପରି ନିର୍ଜ୍ଜନ ପ୍ରାନ୍ତର, ପଛରେ ମଧ୍ୟ ସେହିପରି । ଆଗକୁ ନଯାଇ ପଛକୁ ଯିବି କାହିଁକି ତେବେ ? କିଛିବାଟ ଯାଇଛି ଚନ୍ଦ୍ର ଉଇଁ ଆସିଲା । ମୋ ମନରେ ଟିକିଏ ସାହସ ହେଲା । ମୁଁ ଆହୁରି ଚଞ୍ଚଳ ଚାଲିଲି । ଆସ୍ତେ ଆସ୍ତେ ମଧ୍ୟ ଠାଏ ଠାଏ ମଣିଷ କୁଡ଼ିଆ ଦେଖା ପଡ଼ିଲା । କଟକ ବିଡ଼ାନାସୀର ଲୋକେ ସବୁ ଆସି ପଠାରେ ବାଇଗଣ, କଖାରୁ ଇତ୍ୟାଦି ପନିପରିବା କରିଥାନ୍ତି । କିଆରି ମଝିରେ ଗୋଟିଏ କୁଡ଼ିଆ, କୋଉଠେଇଁ ବା ମଞ୍ଚା । ଏଥିରେ ସେମାନେ ରାତି ଜଗି ଶୁଅନ୍ତି । ଚାରିଆଡ଼ ନିଃଶବ୍ଦ, କେବଳ ବେଳେ ବେଳେ ବିଲୁଆର ଆହାର ଖୋଜିବାର 'ହୁକେ ହୁ' ଶବ୍ଦ, କେତେବେଳେ ଅବା ମଣିଷର ଆହାର ଜଗିବାର 'ହେଇ, ହେଇ ହୋ' ଶବ୍ଦ; ଏହି ନିଃଶବ୍ଦତା ଭାଙ୍ଗିଦିଏ, ବାଟୋଇର ମନରେ ଚମକ ଆଣେ । ବେଳେ ବେଳେ ମଝିରେ ମଝିରେ ଥିବା ହିଜଳ ଗଛଗୁଡ଼ାକ ସୁଲୁସୁଲିଆ ନଈ ପବନରେ ମୁଣ୍ଡ ହଲାଇ ମଣିଷ ଆଉ ବିଲୁଆଙ୍କର ଏହି ଦ୍ୱୈତ ସଙ୍ଗୀତର ବେତାଳ ରାବ ପ୍ରକାଶ କରେ । କେତେବେଳେ ବା ସାଇଁ ସାଇଁ କରି ଗୋଟାଏ ପବନ ମଣିଷ ଆଉ ବିଲୁଆଙ୍କର ଏ ବିକଟ ସ୍ୱରରେ ପୃଥିବୀର ନିଦ୍ରାଭଙ୍ଗ ହେବାର ସୂଚନା କରେ । ସେହି ପବନର କଶାଘାତରେ ନଈର ପାଣିଗୁଡ଼ାକ ଅତାଡ଼ିରେ ବାଡ଼େଇ ହୋଇଯାଇ ଜଣାଇଦିଏ, ଯେପରି ଏ ବେତାଳ ସଙ୍ଗୀତରେ ପୃଥିବୀର ନିଦ ଭାଙ୍ଗିଯାଇ ସେ ସଂପାତ କରି କଡ଼ ବଦଳାଇ ଶୋଇବାର ଚେଷ୍ଟା କରୁଛି, କେତେବେଳେ ବା ଖଣ୍ଡେ ଖଣ୍ଡେ ଅତାଡ଼ି ପାଣି ଉପରେ ଖସିପଡ଼େ 'ଭୁସ୍‌ଭାସ୍, ଧୁସ୍‌ଧାସ୍' ଗୋଡ଼ହାତ ବାଡ଼େଇଲା ପରି ଶବ୍ଦ କରୁଛି ।

ଏହି ଅଶାନ୍ତ ତାଣ୍ଡବ ନୃତ୍ୟରେ ରହି ରହି ପେଚା, ହୁଁ-ହାଁ ପ୍ରଭୃତି ରାତିଚଢ଼େଇ ଆସି ଯୋଗଦିଅନ୍ତି । ସବୁ ଯେପରି ବେତାଳ—ସବୁ ଯେପରି ଅଶାନ୍ତ । କେବଳ ଯେପରି ଭୟ-ତେଙ୍ଗୁରାରେ ସଂସାର ଗୋଟାକଯାକ ପୂରିଯାଇଛି । ବାହାରେ ଭିତରେ ଚାରିଆଡ଼େ ଭୟ । ପ୍ରକୃତି ସେହି ଭୟରେ ଥରଥର । ତଥାପି ଚନ୍ଦ୍ର ସେହିପରି ଆକାଶରେ ବସି ହସୁଛି । ମେଘମାଳା

ସେହିପରି ଠିଆ ହୋଇରହିଛି । ପୃଥିବୀ ଘୂରିଯାଉ ନାହିଁ । ପବନ ବନ୍ଦ ହୋଇଯାଉ ନାହିଁ । ନଇସୁଅରେ ବାଧାପଡୁ ନାହିଁ । ମୋର ଗୋଡ଼ ମଧ୍ୟ ଥୟ ହୋଇ ରହୁନାହିଁ । ପ୍ରକୃତିର ସବୁ ପଦାର୍ଥ ଯେପରି ଏ ଭୟ ଆଶଙ୍କାର ତାଣ୍ଡବ ନୃତ୍ୟ ମଧ୍ୟରେ କଳପିତୁଳା ପରି ନିଜନିଜର କାମ କରୁଛନ୍ତି । ମୁଁ ମଧ୍ୟ ସେହିପରି ଭିତର ବାହାରର ଏ ଆତଙ୍କ ମଧ୍ୟରେ ଜଡ଼-ଜୀବହୀନ ପଦାର୍ଥ ପରି ଚାଲିଛି । କେତେବେଳକୁ ଯାଇ ଧବଳେଶ୍ୱର ଘାଟରେ ପହଞ୍ଚିଲି । ନଇକୂଳକୁ ଲାଗି ଖଣ୍ଡିଏ ଚାଳି; ତା' ଚାରିପଟରେ ତାଳପତ୍ର ତାଟି ଘେରା ହୋଇଛି । ଚାଳିଆ ଭିତରେ ଗୋଟିଏ ଖଟିଆ, ତା' ଭିତରେ କିଏ ଜଣେ ଦେହମୁଣ୍ଡ ଘୋଡ଼େଇ ହୋଇ ଶୋଇଛି ।

ସେଠାରେ ପହଞ୍ଚି ଟିକିଏ ନିଃଶ୍ୱାସ ମାରି ମୁଁ ବସିପଡ଼ିଲି । ମନରେ ଟିକିଏ ଦମ୍ଭ ଆସିଲା । ତା'ପରେ ଡାକିଲି—"ଏ ବେହେରାପୁଅ, ବେହେରାପୁଅ ମ ! ଏ ବେହେରା ପୁଅ !" ଖଟିଆ ଉପରେ ଲୋକଟା ଆଖି ମେଲେଇଲା, ହାଇମାରିଲା, ପୁଣି କଡ଼ ବଦଳାଇ ଶୋଇବାକୁ ଗଲା । ମୁଁ ପୁଣି ଡାକିଲି । ସେ 'ଉଃ, ଆଃ, କରି ଥରେ ଦି'ଥର ଚିତ୍କାର କଲା, ପୁଣି କଡ଼ ଲେଉଟାଇ ଭଲକରି ଘୋଡ଼ିଘାଡ଼ି ହୋଇ କୁକୁରଚେକି ମାରି ଶୋଇଲା ।

ମୁଁ ତୁହାଇ ତୁହାଇ ଡାକିଲି । କେତେବେଳକେ ସେ ଆଖି ମଳିମଳିକା ଉଠିଲା । ମୁଁ ଆଉ ବିଳମ୍ବ ନ କରି କହିଲି—"ବେହେରାପୁଅ, ମତେ ଟିକିଏ ନଇଟା ପାର କରିଦିଅ ।"

ତା'ର ନିଦ ଭାଙ୍ଗି ଯାଇଥିଲା, ସେ ଗର୍ଜନ କରି କହିଲା—"କ'ଣ କହିଲୁ ?"

ମୁଁ : ନଇଟା ପାର କରି କୂଦରେ ଲଗାଇଦିଅ ।

ନାଉରୀ : ନଇଟା ପାରି କରି କୂଦରେ ଲଗାଇ ଦେବି ? ଆମେ କ'ଣ ତୋର ଗୋଲାମ୍ ? ବସ୍ ବସ୍, ସକାଳେ ନାଆ ଛାଡ଼ିଲେ ଯିବୁ ।

ଏହା କହି ସେ ପୁଣି ଶୋଇବାକୁ ଯାଉଥିଲା । ମୁଁ କହିଲି—"ଏ ବେହେରାପୁଅ, ନେହୁରା କରୁଛି ତତେ, ମତେ ପାରିକରିଦିଅ । ମୋର ଭାରି ଗୋଟାଏ କାମ ଅଛି, ଏଇ ରାତିରେ ପହଞ୍ଚିବା ନିତାନ୍ତ ଦରକାର । ମୁଁ ତତେ ବକ୍‌ସିସ୍ ଦେବି ।"

ନାଉରୀ : ବକ୍‌ସିସ୍ ! ଲକ୍ଷେ ଟଙ୍କା ଦେଲେ ବି ତ ମୁଁ ଏ ରାତିଅଧରେ ନାଆ ଛାଡ଼ିବି ନାହିଁ । ଏ ଚାଳିଆରେ ଶୋଇପଡ଼, ସକାଳ ହେଲେ ବିନା ମାସୁଲରେ ପାର କରିଦେବି ।

ମୁଁ ଦେଖିଲି, ତା' ଆଖିରେ ଲାଳସାର ଦୃଷ୍ଟି । ଏ ଦୃଷ୍ଟି ମୁଁ ଜୀବନରେ ବହୁବାର କେତେ ଲୋକଙ୍କ ପାଖରେ ଦେଖିଛି । ମନରେ ମୋର ଭାରି ଭୟ ହେଲା । ମୁଁ ରଙ୍ଗ ଦେଇ ସିନା ଦେହର ବର୍ଣ୍ଣଟାକୁ ଲୁଚାଇ ନେଇଥିଲି, କିନ୍ତୁ ମୋର ଡଉଲଡାଉଲ ତ ଲୁଚାଇବାର ନୁହେଁ ।

କ'ଣ କରିବି, କିଛି ବୁଦ୍ଧି ଦିଶିଲା ନାହିଁ । ଏତିକିବେଳେ ଆହୁରି ଦି'ଜଣ ମଣିଷ ସେ ତାଳ ତାଟିଘର ଭିତରୁ ବାହାରିଲେ । ମୁଁ ଦେଖିଲି, ସେ ତିନିଜଣଯାକ ଷଣ୍ଢାମାର୍କା ମର୍ଦ୍ଦ, ଆଉ ମୁଁ ଏକାକୀ ଜଣେ ସ୍ତ୍ରୀଲୋକ । ଆଉ ଡେରି ନକରି ଆସ୍ତେ ଆସ୍ତେ ମୁଁ ପଛକୁ ଘୁଞ୍ଚିଲି । ଯେଉଁ ଦି'ଜଣ ଘରଭିତରୁ ବାହାରି ଆସିଥିଲେ, ସେମାନଙ୍କ ଭିତରୁ ଜଣେ କହିଲା—"କି ବେ ହରିଆ, ତୁ ବଦ୍‌ମାସ ତ ଭାରି ମଉନି ! ଏକା ଏକା ମାରିନେବୁ ବୋଲି ବସିଛୁ ନା କ'ଣ ?

ପ୍ରଥମ ଜଣଙ୍କର କଥା ସରୁଁ ନ ସରୁଣୁଁ ଆଉ ଜଣକ କହିଲା—"ଆରେ ସତେ ତ ! ଏଇଟି କିଏ ?"

ନାଉରୀ : ତୁମେ ଶଶୁରଘର ପୁଅ ଦୁହେଁ କେଉଁଠି ଥିଲି କି ? ମୁଁ ପାଇଲି, ଖାଇବି ନାହିଁ କାହିଁକି ? ସେଟା କୋଉଠି ଥିଲା କେଜାଣି—ରାତିଅଧରେ ଆସି ନଇ ପାରିହେବାକୁ କହୁଛି । କୋଉଠୁ ଚୋରି ଫୋରି କରି ପଳେଇ ଆସିଛି ପରା ।

ଦ୍ୱିତୀୟ : ମାଲ ତ କିଛି ପାଖରେ ଥିବ ?

ତା'ପରେ ମୋ ଆଡ଼କୁ ବୁଲିପଡ଼ି ସେ କହିଲା—"ହଇଲୋ ମାଉସୀ ! ତୁ କୁଆଡ଼େ ଯିବୁ ମ ?" ମୁଁ ସେତେବେଳକୁ ଆସି ଘାଟ ଗଡ଼ନ୍ତି ଉପରେ ହେଲିଣି, କହିଲି—"ଧବଳେଶ୍ୱର ପଠାକୁ ଯିବିରେ ପୁଅ ।"

ସେ : ଏତେ ରାତିରେ ? ପାରିକରିବାର ତ ହୁକୁମ ନାହିଁ ।

ମୁଁ : ବକ୍‌ସିସ୍ ଦେବି !

ସେ : କେତେ ଦେବୁ ?

ମୁଁ : ପାଞ୍ଚଟଙ୍କା ।

ମୋ କଥା ଶୁଣି ସେମାନେ ମୁହଁ ଚାହାଁଚାହିଁ ହେଲେ ଏବଂ ଫୁସରଫାସର୍ ହୋଇ କ'ଣ କଥାବାର୍ତ୍ତା ହୋଇ କୁଡ଼ିଆ ଭିତରକୁ କାହିଁକି ପଶିଗଲେ ।

ମୁଁ କାଳବିଳମ୍ବ ନକରି ଚୁପ୍‌ଚାପ୍ ଆସି ପାଣି ପାଖରେ ପହଞ୍ଚିଲି; ଦେଖିଲି, ଖଣ୍ଡେ ସାପୁଆ ଡଙ୍ଗା କୂଳରେ ବନ୍ଧାହୋଇଛି, ଆଉଗୁଡ଼ାକ ବଡ଼ ଡଙ୍ଗା । ସାପୁଆ ଡଙ୍ଗାଟିକୁ ଖୋଲିଦେଇ ସେଥିରେ ହଠାତ୍ ବସିପଡ଼ିଲି । ସେମାନଙ୍କ ଭିତରୁ ଜଣେ ପୁଣି ପଦାକୁ ବାହାରି ଆସି ଦେଖେ ତ ମୁଁ ଡଙ୍ଗା ଉପରେ ! ସେ ହୁରି ଛାଡ଼ି କହିଲା—"କିଲୋ ବଜାତ୍ ମାଇକିନିଆ, ତୁ ଘାଟ ପଇସା ନ ଦେଇ କ'ଣ ଯାଇ ଡଙ୍ଗାରେ ବସିଲୁଣି । ମୁଁ ଆଗ ଡଙ୍ଗାଟାକୁ ନଇ ଭିତରକୁ ଠେଲିଦେଇ କହିଲି—"ଘାଟ ପଇସା ଆଉ ବକ୍‌ସିସ୍ ଘାଟ ଡଙ୍ଗା ମଙ୍ଗଉପରେ ଥୁଆହୋଇଛି ।"

ଏତିକି କହି ମୁଁ ଆହୁଲାରେ ଦି'ଚାରି ଖେପା ପକାଇଲି । ଡଙ୍ଗାଟି ଶର ବିନ୍ଧିଲା ପରି ନଇ ଭିତରକୁ ଚାଲିଗଲା । ତା' ବେଗରେ ମୁଁ ଅଣେଇ ହୋଇ ପଡ଼ିଲି । ଭାବିଲି, ବୋଧହୁଏ ଏଥର ବୁଡ଼ିବି । କିନ୍ତୁ ଡଙ୍ଗାଟି ପୁଣି ମନକୁ ସମ୍ଭାଳି ହୋଇଗଲା । ଏତେବେଳକୁ ସେ ତିନିଚାରିଯାକ ମରଦ ଆସି ଭୁସ୍‌ଭାସ୍ ହୋଇ ପାଣିରେ ପଡ଼ିଲେ । ଦେଖିଲି, ସେମାନେ ପାଣିରେ ପହଁରି ମତେ ଧରିବା ଉଦ୍‌ଯୋଗରେ ଅଛନ୍ତି । ଖରାଦିନ ନଇ, ଶୁଖିଲା ପଡ଼ିଛି; ମଝି ଗଣ୍ଡଟାରେ ପ୍ରାୟ ଦୁଇଶ ହାତ ପାଣି । ସେଥିରେ ପହଁରି ଆସିବା ଏମାନଙ୍କ ପକ୍ଷରେ ବେଶି କିଛି କଷ୍ଟ ନୁହେଁ ।

ମୁଁ ଆହୁଲା ପକେଇଲି । ଡଙ୍ଗାଟା ତୀରବେଗରେ ଛୁଟିବାକୁ ଲାଗିଲା; କିନ୍ତୁ ଆହୁଲା ପକାଇବା ତ ସେପରି ସହଜ କାମ ନୁହେଁ । ଚାରି ପାଞ୍ଚ ଥର ପକେଇଲା ପରେ ମୋ ବାହା କଟକଟ ହୋଇ ଆସିଲା । ଆହୁଲା ରଖି ଦେଇ ମୁଁ ଟିକିଏ ଦମ୍ ନେଲି । ଏହି ଅବସରରେ ସେମାନଙ୍କ ଭିତରୁ ଜଣେ ଆସି ମୋ ପାଖରେ ହୋଇଗଲା । ମୁଁ ଆଉ ବସିବି କ'ଣ, ପୁଣି

ଆହୁଲା ପକାଇଲି । କିନ୍ତୁ ଡଙ୍ଗାଟା କାହିଁକି ସେତେ ଜୋର୍‌ରେ ଏ ଥରକ ଗଲା ନାହିଁ । ଲୋକଟା ମଧ୍ୟ ଆସି ଡଙ୍ଗାଟାକୁ ଧରେ କି ନଧରେ । ତା' ମୁଣ୍ଡଟା ଡଙ୍ଗା କଡ଼ରେ ଦିଶୁଥାଏ । ମୁଁ ତା' ମୁଣ୍ଡକୁ ଚାହିଁ ଆହୁଲାରେ ପାହାରେ ଦେଲି । ସେ ବୁଡ଼ିଗଲା; ଭାବିଲି ମାଡ଼ଦାଉରେ ବୋଧହୁଏ ଲୋକଟା ମରିଗଲା ! କିନ୍ତୁ ସେ ଆଶା ବୃଥା, ସେ ପୁଣି ମୋ ପାଖରେ ଉଠିଲା । ଡଙ୍ଗା ଦାଢ଼କୁ ଧରି ଉଠିବାର ଉଦ୍‌ଯୋଗ କଲା । ମୁଁ ତା' ହାତକୁ, ଆଉ ଦାଢ଼ ଉପରେ ଥିବା ଆଙ୍ଗୁଠିକି ପାହାରେ ଦେଲି । ସେ 'ଇଲୋ ବାପାଲୋ' ବୋଲି କହି ଡଙ୍ଗାରୁ ହାତ ଛାଡ଼ିଦେଲା । ତା' ଛାଡ଼ିଦେବା ଜୋର୍‌ରେ ବୋଧହୁଏ ଡଙ୍ଗାଟା ସଟ୍‌କରି ଆଗକୁ ଥୋଡ଼ାଏ ବାଟ ଖସିଗଲା ।

ମୁଁ ପୁଣି ଆହୁଲା ପକେଇଲି । ଆଗକୁ ଚାହିଁ ଦେଖିଲି ୟା ଭିତରେ ପ୍ରାୟ ଅଧେ ବାଟ ଆସିଲିଣି—ଆହୁରି ଅଧେ ! ଦି'ହାତିଆ କରି ମୁଁ ପ୍ରାଣପଣେ ଆହୁଲା ମାରିଲି; କିନ୍ତୁ ସେ ଲୋକଗୁଡ଼ାକ ମୋ ଆଡ଼କୁ ଆସ୍ତେ ଆସ୍ତେ ଭାସିଆସୁଛନ୍ତି । କିପରି ଉଦ୍ଧାର ପାଇବି ଭାବି କୂଳକିନାରା ପାଇଲି ନାହିଁ । ଏତିକିବେଳେ କୁଆଡ଼େ ଥିଲା, ମୋ ଭାଗ୍ୟକୁ ଦକ୍ଷିଣା ପବନ ଟିକିଏ ଜୋର୍‌ରେ ଦେଲା । ଆହୁଲା ଆଉ ପବନ ଜୋରରେ ଡଙ୍ଗା ବେଶ୍ ଜଲଦି ଚାଲିଗଲା, ମୁଁ ଆସ୍ତେ ଆସ୍ତେ କୂଳକୁ ଆସିଲି । ଡଙ୍ଗାଟା ଲାଗୁ ନ ଲାଗୁଣୁଁ ମୁଁ ଡେଇଁପଡ଼ିଲି—ଆଣ୍ଠୁଏ ପାଣି । ଆଖିବୁଜି ଦଉଡ଼ି ପଳେଇଲି । କୂଳରୁ ବାଲି ପଡ଼ିବ ପ୍ରାୟ ପାଞ୍ଚଶ' ହାତ । ସେତକ ପାର ହୋଇଗଲେ ପଡ଼ିବ ଗୋଟାଏ ଆମ୍ବ ବଗିଚା । ଆମ୍ବ ବଗିଚା ପାଖ ହେଲାବେଳକୁ ମୋର ଧଇଁ ଉଠିଲା । ପାଖରେ ଗୋଟାଏ ବେତବଣ ଥିଲା । ମୁଁ ତାରି ଭିତରେ ପଶିଗଲି । ଆମ୍ବ ବଣିଆଟା ଭାରି ଅନ୍ଧାର, ପତ୍ରଗହଳରେ କୋଉଠି ଟିକିଏ ଟିକିଏ ଚାନ୍ଦ ଆଲୁଅ ଆସି ପଡ଼ିଛି; କିନ୍ତୁ ତା'ର ଆଲୁଅ ବଡ଼ କମ୍ । ତା'ପରେ ପୁଣି ମୁଁ ବେତ ବୁଦା ଭିତରେ ।

ଏହିପରି ଭାବରେ ପ୍ରାୟ ଅଧଘଣ୍ଟାଏ ରହିଲି । କେହି ନ ଆସିବାର ଦେଖି ଭାବିଲି ବୋଧହୁଏ ସେମାନେ ନିରାଶ ହୋଇ ଫେରିଯାଇଛନ୍ତି । ଖୁବ୍ ସାବଧାନରେ ମୁଁ ସେଠୁ ବାହାରିଲି । ଗୋଡ଼ରେ ଦି'ଚାରିଟା ବେତକଣ୍ଟା ଫୁଟିଯାଇଥିଲା, ତାକୁ ବାହାର କରି ଚାଲିଲି । ଆମ୍ବବଣିଆ ପରେ ଧବଳେଶ୍ୱରଙ୍କ କୁଦ । ପଚାଶ ଷାଠିଏ ହାତ ଉପରକୁ ଉଠିବାକୁ ହୁଏ । ଉପରକୁ ଯାଇ ମୁଁ ଦେଖିଲି, ଉପରେ ଦୋକାନ କେତେଟା—ଦୋକାନୀମାନେ ଯେ ଯୁଆଡ଼େ ଶୋଇଛନ୍ତି; ନିର୍ବିଘ୍ନରେ ମୁଁ ଦୋକାନଗୁଡ଼ା ପାର ହୋଇ ଦେଉଳ, ଧର୍ମଶାଳା, ଶଶିବାବୁଙ୍କ 'ନିଭୃତ ନିଳୟ' ବାଟ ଦେଇ ଆସି ମଞ୍ଚେଶ୍ୱର ତରଫ ଘାଟ ଉପର ବରଗଛ ମୂଳରେ ବସିରହିଲି ।



## ଷୋହଳ

ପ୍ରାୟ ଦେଢ଼ଘଣ୍ଟା ପରେ ଅବିନାଶବାବୁଙ୍କ ଡଙ୍ଗାଟା ଆସି ଲାଗିଲା । ମୁଁ ପାହାଡ଼ ତଳକୁ ଖସି ଯାଇ ଲୁଚି ରହିଲି । ସେମାନେ ଡଙ୍ଗାରୁ ଓହ୍ଲାଇ ଆସିଲେ । ମୁଁ ସେଇଠି ଟିକିଏ ଉହୁଙ୍କି କରି ଦେଖିଲି । ସେମାନେ ଶଶିବାବୁଙ୍କ ଘର ପାରହୋଇ ଦେଉଳ ଆଗ ମଣ୍ଡପ

ପାଖଦେଇ ପୂର୍ବକୁ ଗଲେ । ମୁଁ ଜାଣେ, ଏପଟରେ କେବଳ ରାଜାଙ୍କ ଘର ଛଡ଼ା ଆଉ ଘର ନାହିଁ । ସେମାନେ ମୋତେ ପାରହୋଇଗଲା ପରେ ମୁଁ ବାହାରିଲି । ଚଞ୍ଚଳ ଚଞ୍ଚଳ ଯାଇ ଦେଖିଲି, ସତକୁସତ ଏମାନେ ଆସି ରାଜାଙ୍କ ବାରଣ୍ଡାରେ ଉଠିଛନ୍ତି । ମନୋରମା ଠିଆ ହୋଇଛି, ଅବିନାଶ ତାଳି ଫିଟାଉଛି । ମୁଁ ମୋଡ଼ ଉପରେ ଟିକିଏ ଠିଆହେଲି । ମନୋରମାର ଦୃଷ୍ଟି ମୋ ଉପରେ ପଡ଼ିବାର ଦେଖିଲି । ମୁଁ ଲୁଚି ଲୁଚି ଗଛ ବୁଦାମାନଙ୍କର ପଛେ ପଛେ ସେହି ଘର ପାଖକୁ ଗଲି । ଭିତରର ଖଡ଼ଖାଡ଼ ଶବ୍ଦରୁ ବାରିଲି, ସେମାନେ ଆଲୁଅ ଲଗାଇବାର ଯୋଗାଡ଼ରେ ଅଛନ୍ତି । ମୁଁ ବୁଲିଯାଇ ଆରପଟ ପିଣ୍ଡାରେ ଶୋଇପଡ଼ିଲି ।

ତା'ପରେ ଭାବିଲି, ଆଜି ଅବିନାଶବାବୁ ଯଦି ଏହି ସ୍ଥାନରେ ଏହି ରାତିରେ ମନୋରମା ଉପରେ ଅତ୍ୟାଚାର କରିବାକୁ ଯାଏ, ତାହେଲେ ତାକୁ ବାଧା ଦେବାର କି ଶକ୍ତି ମୋର ଅଛି ? ତା'ଦେହରେ ଅଗାଧ ବଳ; ସେ ବଳ ବିରୁଦ୍ଧରେ ମନୋରମା ଆଉ ମୁଁ କିଞ୍ଚିତ୍ ମାତ୍ର । ନା, ଅନ୍ୟ ଲୋକର ସାହାଯ୍ୟ ବିନା ମନୋରମାର ଉଦ୍ଧାର ଅସମ୍ଭବ; କିନ୍ତୁ ଏତେ ରାତିରେ ଏ ନିର୍ଜନ ଟାପୁରେ ମୁଁ ମଣିଷ କାହୁଁ ପାଇବି ? ଭାବିଲି—ଦେଖେଁ, ଶଶିବାବୁଙ୍କ ଘରେ ଯଦି କେହି ଭଦ୍ରବ୍ୟକ୍ତି ଥାନ୍ତି । ନହେଲେ ଦୋକାନର ଦୋକାନୀମାନଙ୍କୁ ଯାଇ ଧରିବି । ଏହିପରି ଭାବି ଭାବି ପୁଣି ଉଠିଲି । ଶଶିବାବୁଙ୍କ ଘରକୁ ଗଲି; ଦେଖିଲି—ଘର ବାହାରୁ ବନ୍ଦ; ସୁତରାଂ ଫେରିଆସିଲି । ଦୋକାନ ଆଡ଼େ ଯାଉଥିଲି, ଧର୍ମଶାଳାର ଗୋଟିଏ ବଖରାର ଦୁଆର ମୁହଁରେ ଦେଖିଲି ଗୋଟାଏ ମନୁଷ୍ୟ ମୂର୍ତ୍ତି—ମନେକଲି କେହି ପାନ୍ଥ । ପଚାରିଲି—"କିଏସେ ?"

ଅପରିଚିତ ଉତ୍ତର କଲେ—"ତୁମେ କିଏ ?" ତାଙ୍କ ସ୍ୱରରେ ଭୟ ଓ ସନ୍ଦେହର ଗୋଟାଏ ମୂର୍ଚ୍ଛନା ଥିଲା ପରି ଜଣାପଡ଼ିଲା ।

ମୁଁ କହିଲି—"ମୁଁ ଜଣେ ଅସହାୟା ନାରୀ ।"

ଅପରିଚିତ; ଅସହାୟା ନାରୀ ? ପୁଣି ଯୁବତୀ ପରି ଜଣାପଡୁଛ । ଏ ନିର୍ଜନ ଦ୍ୱୀପରେ ଏକାକିନୀ କାହିଁକି ?

ବୁଝିଲି ଲୋକଟି ଶିକ୍ଷିତ । କହିଲି—"ସେ ଅନେକ କଥା, କହିବାର ବେଳ ନାହିଁ । ମୋରି ପରି ଆଉ ଗୋଟିଏ ଅସହାୟା ସ୍ତ୍ରୀ ଏହି ଟାପୁରେ ଅଛି; ତା'ର ଆଜି ଭାରି ବିପଦ ! ଗୋଟାଏ ବଦ୍‌ମାସ୍ ଲୋକ ତାକୁ ଏଠାକୁ ଭୁଲେଇ ଘେନି ଆସିଛି; ବୋଧହୁଏ ବର୍ତ୍ତମାନ ତା' ଉପରେ ଅତ୍ୟାଚାର କରିବାକୁ ବସିଥିବ । ଆପଣ ଯେ କେହି ହୁଅନ୍ତୁ, ଦୟାକରି ମୋ ସାଙ୍ଗରେ ଆସନ୍ତୁ, ଗୋଟିଏ କୁଳବଧୂର ଧର୍ମ ରକ୍ଷା କରନ୍ତୁ, ଭଗବାନ ଆପଣଙ୍କର ମଙ୍ଗଳ କରିବେ ।"

ଅପରିଚିତ : ମୋର ମଙ୍ଗଳ ! ସେ ଆଶା ବଡ଼ କମ୍ । ହେଉ, ତେବେ ଚାଲ, ବିପନ୍ନା ସ୍ତ୍ରୀ ଲୋକର ସାହାଯ୍ୟ କରିବା ଧର୍ମ ନ ହୋଇପାରେ, କର୍ତ୍ତବ୍ୟ ନିଶ୍ଚୟ ।

ଏହା କହି ସେ ଅନ୍ଧାରରୁ ଆଲୁଅକୁ ବାହାରି ଆସିଲେ । ଦେଖିଲି, ଜଟାଜୁଟଧାରୀ ଜଣେ ବାବାଜି । ସରଳ ସରସ ଦେହ, ବୟସ ବୋଧହୁଏ ତିରିଶ ଆଖ ପାଖ । ଆଖି ଉଜ୍ଜ୍ୱଳ, ମୁହଁ ଦୀପ୍ତିମାନ । ସାମାନ୍ୟ କିଛି ନିଶଦାଢ଼ି ମୁହଁର ପୂର୍ଣ୍ଣ ସୌନ୍ଦର୍ଯ୍ୟକୁ ଘୋଡ଼ାଇ ପକାଇଛି ।

ଖାଲି ଦେହ, କାନ୍ଧରେ ଶୁଭ୍ର ପଇତା । ବାହୁ ଯୋଡ଼ିକରେ ବହୁତ ଜୋର ଥିବାର ଅନୁମାନ । ମୁଁ ତାଙ୍କୁ ଟିକିଏ ଭଲ କରି ନିରେଖି ଚାହିଁଲି । ତାଙ୍କର ସେ ଚାହାଣିରେ, ସେ ଚାଲିରେ ଯେପରି ମୋର କୌଣସି ପରିଚିତ ବ୍ୟକ୍ତିଙ୍କୁ ଦେଖିଲା ପରି ମନେହେଲା । ସେ ମଧ୍ୟ ମୋ ଆଡ଼କୁ ଟିକିଏ ଚାହିଁଲେ । ମୁଣ୍ଡଠାରୁ ଗୋଡ଼ଯାଏ ସବୁ ଦେଖିଗଲେ । ଗୋଡ଼କୁ ଚାହିଁ ସେ ହଠାତ୍ ସ୍ଥିର ଭାବରେ ଠିଆହୋଇଗଲେ, ତା'ପରେ ମୋ ମୁହଁକୁ ଚାହିଁଲେ ।

ତା'ପରେ ମୁଁ ଦୀର୍ଘ ନିଃଶ୍ୱାସଟିଏ ପକାଇ ଆଗେ ଆଗେ ଚାଲିଲି । ସେ ମଧ୍ୟ ମୋ ପଛେ ପଛେ ଆସିଲେ । ତାଙ୍କ ଆକାର ଇଙ୍ଗିତରୁ ମୁଁ ଜାଣିପାରିଲି ଯେ, ସେ ମୋତେ ଦେଖି ଯେପରି ମନେ ମନେ କ'ଣ ଭାବୁଛନ୍ତି । ଯାହାହେଉ, କ୍ରମେ ଦୁହେଁଯାକ ଆସି ରାଜାଙ୍କ ଘର ପାଖକୁ ହେଲୁ । ମୁଁ ପିଣ୍ଡାକୁ ଯାଇ ଦେଖେ ତ, ଦୁଆର ବାହାର ପଟୁ ବନ୍ଦ । ଏ ପୁଣି କି ଚାଲ ! ଅବିନାଶ କାହିଁ ? ମନୋରମା କାହିଁ ? ମୁଁ ଏଠା ଛାଡ଼ିଯିବାର ବୋଧହୁଏ ଘଣ୍ଟାଏ ହେବ । ଏହା ମଧ୍ୟରେ ସେ କୁଆଡ଼େ ଗଲେ ? ଅବିନାଶ କ'ଣ ସନ୍ଦେହ କରି ପୁଣି ଡଙ୍ଗାରେ ବସାଇ ମନୋରମାକୁ ଅନ୍ୟ ସ୍ଥାନକୁ ନେଇଗଲା ? ନା, ସେ ତ ସମ୍ଭବ ନୁହେଁ । ଆମେ ଦୁହେଁ ତ ଧର୍ମଶାଳା ଆଗରେ ଠିଆହୋଇ କଥାବାର୍ତ୍ତା କରୁଥିଲୁଁ । ଯଦି, ଯେଉଁ ଘାଟରେ ଡଙ୍ଗା ଥିଲା, ସେହି ଘାଟକୁ ସେମାନେ ଯାଇଥାନ୍ତେ, ତାହେଲେ ଧର୍ମଶାଳା ପାଖ ରାସ୍ତାରେ ଯିବା ଏକମାତ୍ର ଉପାୟ । କେହି ଯିବାର ଯେତେବେଳେ ଦେଖିନାହୁଁ, ସେତେବେଳେ ତାହାତ ହୋଇ ନ ପାରେ ।

ମୁଁ ଠିଆ ହୋଇ ଏହିପରି ଭାବୁଛି, ବାବାଜି କହିଲେ—"କି ହୋ, କ'ଣ ହେଲା କି ? କାଠପିତୁଳାଟି ପରି ଠିଆହୋଇ ରହିଲ ଯେ ?"

ମୁଁ କହିଲି—"ଏଇ ଘରେ ସେମାନେ ଥିଲେ, ଘଣ୍ଟାକ ତଳେ ମୁଁ ଦେଖିଯାଇଥିଲି । କିନ୍ତୁ ବର୍ତ୍ତମାନ ଦେଖୁଛି ଦୁଆର ବନ୍ଦ ବାହାର ପଟୁ ।"

ବାବାଜି : କିନ୍ତୁ ଏହି ଘରେ ଯେ ଆଲୁଅ ଦିଶୁଛି ?

ସେ ଦେଖାଇବା ଅନୁସାରେ ଦେଖିଲି, ବାଁ ତରଫ ଘରର ପଞ୍ଜର ଦେଇ ଆଲୋକର ଗୋଟିଏ କ୍ଷୀଣରେଖା ଦେଖାଯାଉଛି । ମୁଁ ସେ ପଞ୍ଜର ପାଖରେ ଡାକିଲି—"ମନୋରମା, ମନୋରମା !" କୌଣସି ଉତ୍ତର ନାହିଁ । ବାବାଜିଙ୍କ ଆଡ଼କୁ ମୁଁ ଫେରି ଚାହିଁଲି । କି ଏକ ଅଜଣା ଆଶଙ୍କାରେ ମୋର ହୃଦୟ ଥରିଉଠିଲା । ମୁଁ ମୂକ ହୋଇଗଲି । ବାବାଜି ମୋର ଏ ଭୟ ଦେଖି କହିଲେ—"ସେମାନେ କେତେଦିନ ହେଲା ଏଠିକି ଆସିଚନ୍ତି ?"

ମୁଁ : ଆଜି ରାତିରେ ପ୍ରାୟ ଦୁଇଘଣ୍ଟା ତଳେ ।

ବାବାଜି : କିପରି ଆସିଲେ ?

ମୁଁ : ବିଡ଼ାନାସୀଠାରୁ ଡଙ୍ଗା କରି ।

ବାବାଜି : ଡଙ୍ଗା କେଉଁଠି ଲାଗିଲା ?

ମୁଁ : ରାଜରାଣୀ ଘାଟରେ ।

ବାବାଜି : ତୁମେ ଏଠି ଟିକିଏ ଥାଅ, ମୁଁ ଆସୁଛି ।

ସେ ଫେରିଗଲେ । ପ୍ରାୟ ପନ୍ଦର ମିନିଟ୍ ପରେ ପୁଣି ଆସି କହିଲେ—"ନା, ଡଙ୍ଗାଟା ସେହିଠାରେ ଅଛି । ସୁତରାଂ ସେମାନେ ଫେରି ଯାଇ ନାହାନ୍ତି, କି ଅନ୍ୟ ସ୍ଥାନକୁ ମଧ୍ୟ ଯାଇ ନାହାନ୍ତି । ବୋଧହୁଏ..." ଏହା କହି ସେ ରାଜାଙ୍କ ବଙ୍ଗଳା ସାମନାରେ ନଈ ତୁଠକୁ ଯେ ରାସ୍ତା ଯାଇଛି ସେହି ରାସ୍ତାରେ ଗଲେ । ପୁଣି ପନ୍ଦର କି କୋଡ଼ିଏ ମିନିଟ୍ ପରେ ଫେରିଆସି କହିଲେ—"ନା, ଏପଟରେ ତ କେହି ନାହାନ୍ତି—କିନ୍ତୁ ସେମାନେ ଏ ଟାପୁ ଛାଡ଼ି ଯାଇ ନାହାନ୍ତି—ଏକଥା ନିଶ୍ଚୟ ! ବୋଧହୁଏ ଅନ୍ୟ ଆଡ଼େ ଅଛନ୍ତି ।"

ମୁଁ : କିନ୍ତୁ ଏ ବଙ୍ଗଳାରୁ ତ ଟାପୁର ଅନ୍ୟ ଅଂଶକୁ ଯିବାକୁ ହେଲେ ଦେଉଳ ଆଗ ଦେଇ ଯିବାକୁ ପଡ଼ିବ । ଆମେ ତ କାହାରିକୁ ସେପରି ଦେଖି ନ ଥାଇଁ ।

ବାବାଜି : ନା, ଆଉ ଗୋଟାଏ ରାସ୍ତା ଅଛି । ବଙ୍ଗଳାର ପଛପଟରେ ଗୋଟାଏ ରାସ୍ତା ଯାଇଛି । ସେହି ରାସ୍ତାରେ ଗଲେ ଗୁପ୍ତଗଙ୍ଗା ଦେଇ ହାତୀଘାଟରେ ପହଞ୍ଚିବାକୁ ହୁଏ । ବୋଧହୁଏ, ସେମାନେ...

ତାଙ୍କ ତୁଣ୍ଡକଥା ତୁଣ୍ଡରେ ରହିଲା । ସେ ନୈଶ ନିସ୍ତବ୍ଧତା ଭଙ୍ଗକରି "କିଏ କୁଆଡ଼େ ଅଛ ଧାଇଁଆସ ! ରକ୍ଷା କର, ରକ୍ଷା କର" ବୋଲି ଗୋଟାଏ ମର୍ମଭେଦୀ ଡାକ ଯୁବତୀ କଣ୍ଠ ଭେଦ କରି ଦିଗ୍‌ଦିଗନ୍ତ କମ୍ପାଇଦେଲା । ବାବାଜି କିଛି ନ କହି ବଙ୍ଗଳାର ଦକ୍ଷିଣ ତରଫ ବାଟରେ ଧାଇଁ ଚାଲିଲେ । କଣ୍ଟା ଖୁଣ୍ଟା, ବଣବୁଦା, ଗଛଲତା କିଛି ନ ମାନି ସେ ଧାଇଁଛନ୍ତି, ମୁଁ ମଧ୍ୟ ସେହିପରି ତାଙ୍କ ପଛେ ପଛେ । ଧାଇଁ ଧାଇଁ ଗୋଟିଏ ସ୍ଥାନରେ ପହଞ୍ଚିଲୁଁ । ସମ୍ମୁଖରେ ଖଣ୍ଡେ ପଥର ଚଟାଣ । ତା'ର ଶେଷ ଭାଗରେ ଆଲୁଳାୟିତକେଶା ସ୍ରସ୍ତବସନା, ଦୀପ୍ତିନୟନା ଏକ କନକପ୍ରତିମା ଦେବୀ ମୂର୍ତ୍ତି ଦୂରେ ଆମର ଚକ୍ଷୁ ଆକର୍ଷଣ କଲା । ତା'ର ସମ୍ମୁଖରେ ଲାଳସାଲୁବ୍‌ଧ ମହିଷାସୁର ପରି ଦଣ୍ଡାୟମାନ ଅବିନାଶ । ସେମାନଙ୍କର ଦୃଷ୍ଟି ଆମ ଉପରେ ପଡୁ ନ ପଡୁଣୁଁ ମନୋରମା କହିଉଠିଲା—"ଶୁଣ ରାକ୍ଷସ ! ତୁ ଯଦି ଆଉ ପାଦେ ମାତ୍ର ଆଗକୁ ଆସୁ, ତାହେଲେ ମୁଁ ନଈକୁ ଡେଇଁପଡ଼ିବି ନିଶ୍ଚୟ !"

ଅଟ୍ଟହାସରେ ସେ ନୀରବତାକୁ ମୁଖରିତ କରି ଅବିନାଶ ଉତ୍ତର କଲା—"ବୃଥା ଚେଷ୍ଟା ମନୋରମା ! ତୁ ଯେ ଏପରି ମିଛ ଭୟ ଦେଖାଇ ମତେ ନିରାଶ କରିବୁ ବୋଲି ଭାବିଛୁ, ସେ ଆଶା ତୋର ଭୁଲ୍ ।" ଏହା କହି ସେ ଆଗକୁ ଲମ୍ଫଦେଲା । ନିକଟରେ ନଈ, ସାଙ୍ଗେ ସାଙ୍ଗେ ଗୋଟାଏ ଝୁପ କରି ଶବ୍ଦ ହେଲା । ମନୋରମା ଅନ୍ତର୍ଦ୍ଧାନ ! ମୋର ଆଖି ହଠାତ୍ ଯାଇ ପଡ଼ିଲା ପଥରଦାଢ଼ ଉପରେ । ବାବାଜି ମଧ୍ୟ ସେହି ସଙ୍ଗେ ସଙ୍ଗେ ଛୁଟିଯାଇ ପାଣିକି ଡେଇଁପଡ଼ିଲେ । ତା'ର ପର ମୁହୂର୍ତ୍ତରେ ଅବିନାଶ ପୂର୍ବପରି ଲମ୍ଫଦେଇ ପଳାଇଗଲା ବଙ୍ଗଳା ଆଡ଼େ । ମୁଁ ଆଗକୁ ଚାଲ ଚାଲ ହୋଇ ଯାଇ ଦେଖିଲି, ଏ ପଥରଖଣ୍ଡ ମଝିରେ ହଠାତ୍ ସରିଯାଇଛି । ତା'ପରେ ପ୍ରାୟ ଦୁଇହାତ ଓସାର ଗୋଟାଏ ପ୍ରକାଣ୍ଡ ଗଭୀର ନାଳ, ତା'ପରେ ଆଉ ଖଣ୍ଡେ ପଥର ନଈ ଉପରକୁ ଓହଳି ପଡ଼ିଛି । ମୁଁ ଦେଖିଲାବେଳେ ଅବିନାଶ ଥିଲା ପଛ ପଥର ଦାଢ଼ରେ; ଆଉ ମନୋରମା ଥିଲା ଆଗ ପଥର ଦାଢ଼ରେ । ମନୋରମା ଯେ କିପରି କେଉଁ ସାହସରେ ଏ ଗଭୀର ନରକକୁଣ୍ଡ ପରି ନଳା ଡେଇଁ ଆର ପଥର ଉପରକୁ ଗଲା—ତାହା ଭାବି ମତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ମୁଁ ତାହାର ସାହସକୁ ଶତ ଧନ୍ୟବାଦ ଦେଲି ।

ଆର ପଟରେ ନଇରେ ଯେ କଅଣ ହେଉଛି, ଦେଖିବାପାଇଁ ମୋର ମନ ବ୍ୟଗ୍ର ହୋଇଉଠିଥିଲା; କିନ୍ତୁ ଏ ନଳାଟା ଡେଇଁ ଯିବାର ସାହସ ମୁଁ କୌଣସି ମତେ ଆଣି ପାରିଲି ନାହିଁ । ବିଶେଷତଃ ଆଜି ରାତିର ଏଇ ଘଟଣା-ଚିତ୍ରରେ ପଡ଼ି ମୋର ଦେହ ମନ ଅବଶ ହୋଇ ଆସୁଥିଲା । ଏହା ଉପରେ ମନୋରମାର ଏହି ଅସୀମ ସାହସିକ କାର୍ଯ୍ୟରେ ମୋର ହୃଦୟ ଏକାବେଳକେ ଭାଙ୍ଗିଗଲା । ମୁଁ ଜାଣେ, ଏପଟେ ପାଣି ଅଥଳ, କୁମ୍ଭୀରମାନଙ୍କ ମେଳ ମଧ୍ୟ ଅନେକ । ତା'ପରେ ପାଣିଭିତରେ ଖଣ୍ଡେ ଦୂର ଗଭୀରରେ ପାହାଡ଼ ଖଣ୍ଡମାନ ଲୁଚି ରହିଛନ୍ତି । ମନୋରମା ଯେତେ ଉଚ୍ଚରୁ ଯେତେ ବେଗରେ ପଡ଼ିଲା, ସେଥିରେ ସେ ବୁଡ଼ିଗଲାବେଳେ ଯଦି ତା'ର ମୁଣ୍ଡ ଏହି ଚୋରା ପାହାଡ଼ ଦେହରେ ବାଡ଼େଇ ହୋଇଯାଇଥାଏ, ତାହେଲେ ତ ସେ ସେହିଠାରେ ଶେଷ ହୋଇଯାଇଥିବ । ଯଦି ସେଥିରୁ ରକ୍ଷାପାଏ, ତାହେଲେ କୁମ୍ଭୀରଙ୍କ ପାଟିରୁ ରକ୍ଷା ପାଇବା ବଡ଼ ଦୂରୁହ । ମନୋରମାର ଆଶା ବୃଥା । ମୁଁ ତା'ର ସ୍ୱାମୀଙ୍କୁ କ'ଣ ଯାଇ କହିବି ? ଏ ସମ୍ବାଦ ଶୁଣିଲେ ସେ ଆଉ କ'ଣ ରୋଗରୁ ଉଠିବେ ? ଆଜି—ଆଜି ଏହି କାମୁକର ଲାଳସା ହେତୁ ଯେ ଦୁଇଟି ନିରୀହ ପ୍ରାଣୀଙ୍କର ଜୀବନ ଗଲା । ଦୁଇଟି କ'ଣ କହୁଛି, ତିନୋଟି ! ବାବାଜିଟି ତାରି ଭିତରେ ! ସେ ଆଉ କ'ଣ ଫେରିଆସିବେ ?

ଏହି ସବୁ ଭାବି ଭାବି ଗଭୀର ନୈରାଶ୍ୟ ଓ ଅକଥନୀୟ ଶୋକରେ ମୋର ହୃଦୟ ଭାଙ୍ଗି ଚୂନା ହୋଇଗଲା । ମୋ ଆଖିରୁ ଅବିରଳ ଧାରାରେ ଲୋତକ ବହିବାକୁ ଲାଗିଲା; କିନ୍ତୁ ମୁଁ ବେଶି ସମୟ କାନ୍ଦି ପାରିଲି ନାହିଁ । ହଠାତ୍ ପାଣି ଭିତରେ ଚବର ଚବର ଶବ୍ଦ ହେଲା, ସଁ ସଁ ନିଃଶ୍ୱାସ ମଧ୍ୟ ହେଲା । କେହି ଗୋଟାଏ ଲୋକ ପହଁରୁ ପହଁରୁ କଳ କଳ କରି ପାଣି ଥୁ-ଥୁ କରି ପକାଇବାର ଶବ୍ଦ ମଧ୍ୟ ଶୁଣିପାରିଲି । ମୋ ମନରେ ପୁଣି ଆଶା ଖେଳିଗଲା । ମୁଁ ସୁବିଧାରେ କିପରି କୂଳକୁ ଯିବି, ତାହାର ଉପାୟ ଖୋଜିଲି । ଦେଖିଲି, ବାଁ ତରଫରେ ଗୋଟିଏ ରାସ୍ତା ଅଛି । ସେହି ରାସ୍ତା ଧରି ଯାଉଁ ଯାଉଁ ହଠାତ୍ ମୁଁ ଆସି ଗୋଟାଏ ଘାଟରେ ପହଞ୍ଚିଲି । ପାଣି ଭିତରକୁ ପଶିଯାଇ ଦେଖିଲି, ସେ ବାବାଜି ପହଁରି ଆସୁଛନ୍ତି—ଠିଆ ପହଁରା, ଆଉ ତାଙ୍କ କାନ୍ଧରେ ମନୋରମା ।

ସେ ଆସି ସେହିଲାଗେ ପହଞ୍ଚିଲେ । ମୁଁ ଯାଇ ଲକ୍ଷ୍ୟକଲି ଯେ, ଭାଗ୍ୟକୁ ଆମର ମନୋରମା ଯେଉଁଠାରେ ଡେଇଁଥିଲା, ସେଠାରୁ ଏ ଘାଟଟା ଖୁବ୍ ପାଖ—ପ୍ରାୟ ହାତ ପନ୍ଦର କୋଡ଼ିଏ ହେବ । ବାବାଜି ଆସି ମନୋରମାକୁ କୂଳରେ ଶୁଆଇଦେଲେ । ତା' ଦେହରୁ ଲୁଗାଟା ଫିଟିଯାଇଥିଲା । ମୁଁ ତା' ଦେହରେ ଲୁଗା ଘୋଡ଼ାଇଦେଲି । ଦେଖିଲି ସେ ଜ୍ଞାନହୀନା । ବାବାଜି ଟିକିଏ ବସି ଦମ୍ ନେଲେ । ତା'ପରେ ଉଠି ମନୋରମାକୁ ଓଲଟ-ପାଲଟ କରି ଦେଖିଲେ । କହିଲେ, "ଭଗବାନଙ୍କ ଇଚ୍ଛା, ଏ ପଛଆଡ଼ିଆ ଡେଇଁଛନ୍ତି; କିନ୍ତୁ ଏ ଅଧବାଟରେ ବୋଧହୁଏ ବିଧାତାର ନିର୍ଦ୍ଦେଶରେ ବୁଲିପଡ଼ିଲେ । ସେହି ହେତୁରୁ ସିଧା ହୋଇ ପାଣିରେ ବୁଡ଼ିଯାଇଛନ୍ତି ! ତା' ନହେଲେ ପଥରରେ ବାଜି ମୁଣ୍ଡଟା ଯେ ଛତୁ ହୋଇଯାଇଥାନ୍ତା ସେଥିରେ ଆଉ କୌଣସି ସନ୍ଦେହ ନ ଥିଲା ।"

ମୁଁ ଏତିକିବେଳେ ତାଙ୍କ ଆଡ଼କୁ ଚାହିଁଲି । ଦେଖିଲି ତାଙ୍କର କପାଳଟା ଫାଟି ଯାଇ ଧାର ଧାର ରକ୍ତ ବୋହୁଛି । କହିଲି, "ଆପଣଙ୍କ କପାଳଟାରୁ ଯେ ରକ୍ତ ବୋହୁଛି ! ଆପଣ

ବସନ୍ତୁ, ମୁଁ ବାନ୍ଧିଦିଏ ।" ବାବାଜି କହିଲେ—"ସେ କିଛି ନୁହେଁ, ଖଣ୍ଡେ ପଥର ଦାଢ଼ ବାଜି ଏପରି ଟିକିଏ ଖଣ୍ଡିଆ ହୋଇଛି । ବନ୍ଧାବନ୍ଧି ପଛେ, ବର୍ତ୍ତମାନ କଥା ହେଉଛି—ଯାଙ୍କର ସଂଜ୍ଞା ଆଣିବା ! ତୁମେ ଗୋଟାଏ କାମ କର—ଯାଙ୍କର କାନ ନାକରେ ଖୁବ୍ ଜୋର୍ କରି ଫୁଙ୍କ ।"

ଏହା କହି ସେ ମନୋରମାର ହାତଯୋଡ଼ିକ ମୁଣ୍ଡ ଆଡ଼କୁ ସିଧାକରି ଟାଣିନେଲେ ଓ ପୁଣି ଛାତିଉପରକୁ ବଙ୍କାଇ ଆଣିଲେ । ସେ ଏହିପରି କରୁଥାନ୍ତି, ଆଉ ମୁଁ ତା' କାନ ନାକ ଫୁଙ୍କୁଥାଏ । ଅନେକ ବେଳ ପରେ ତା'ର ଚେତନା ହେଲା । ନିଃଶ୍ୱାସ ଟିକିଏ ଧୀର ଧୀର ହୋଇ ବହିଲା । ତା' ଉତ୍ତାରୁ ବାବାଜି କହିଲେ—"ତୁମେ ତାଙ୍କର ଗୋଡ଼ ପଟ ଧର, ମୁଁ ହାତ ଧରୁଛି ।" ଏହିପରି କରି ଆମେ ଦୁହେଁଯାକ ଚକ୍ରପରି ବୁଲିଲୁ । ଶେଷରେ ମୋ ମୁଣ୍ଡ ବୁଲେଇ ହେଲା; ମୁଁ ଆଉ ପାରିଲି ନାହିଁ—ବସି ପଡ଼ିଲି । ମନୋରମା ଯା ସାଙ୍ଗେ ସାଙ୍ଗେ ଭାକୁ ଭାକୁ କରି ଗୁଡ଼ାଏ ବାନ୍ତି କରିପକାଇଲା ଖାଲି ପାଣି । ଏହି ବାନ୍ତି ପରେ ସେ ଉଠିବସିଲା । ଆମେ ତିନିହେଁଯାକ ଧର୍ମଶାଳାକୁ ଫେରିଗଲୁଁ । ସେଠାରେ ମୁଁ ବାବାଜିଙ୍କ ମୁଣ୍ଡରେ ମେଞ୍ଚାଏ ପୋଡ଼ାକନା ମାଡ଼ିଦେଇ ଖଣ୍ଡେ କନା ବାନ୍ଧିଦେଲି । ତା'ପରେ ବାବାଜି ତାଙ୍କ ମୁଣିରୁ ଦୁଇଖଣ୍ଡି ଗେରୁଆଲୁଗା କାଢ଼ି ଆମ ଦୁହିଁଙ୍କୁ ଦେଲେ । ପ୍ରଥମେ ପ୍ରଥମେ ମନୋରମା ଫେରାଇଦେଲା । ବାବାଜି କହିଲେ—"ଓ, ମୋର ଭୁଲ୍ । ତୁମେ ସଧବା !"

ମୁଁ ବୁଝିଲି ମନୋରମା ସଧବା ବୋଲି ଗେରୁଆଲୁଗା ପିନ୍ଧିବାକୁ ନାରାଜ । କିନ୍ତୁ ମୋର ସେପରି କିଛି ଅହଂକାର ନାହିଁ—ମୁଁ ପିନ୍ଧିଲି । ବାବାଜି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କି, ତୁମେ ପିନ୍ଧିଲ ଯେ ? ତୁମେ କ'ଣ ସଧବା ନୁହଁ ?"

ମୁଁ : ସଧବା କି ବିଧବା ଜାଣେନାହିଁ । ତେବେ ଏତିକି ଜାଣେ—ସଧବା ବୋଲି କହିବାର ଅଧିକାର ମୋର ନାହିଁ ।

ବାବାଜି ଓ ମନୋରମା ଦୁହେଁଯାକ ଟିକିଏ ଆଶ୍ଚର୍ଯ୍ୟ ହେଲେ । ମନୋରମା କହିଲା—"ଭଉଣୀ ! ତୁମେ ଯାହା ହୁଅ, ଯେତେବେଳେ ବିଧବା ବୋଲି ଜାଣିନାହଁ, ସେତେବେଳେ ସଧବାର ଆବରଣହିଁ ତୁମର ଶ୍ରେୟ, ନହେଲେ ତୁମ ସ୍ୱାମୀଙ୍କର ଅମଙ୍ଗଳ ହେବ ଯେ ।" ମୁଁ ଗେରୁଆ ଖଣ୍ଡିକ ଫେରାଇଦେଲି ।

ସେତେବେଳକୁ ସକାଳ ହୋଇଆସିଥିଲା । ବାବାଜି ନିତ୍ୟକୃତ୍ୟ କରିବାକୁ ବାହାରିଲେ । ମୁଁ ବାଧା ଦେଇ କହିଲି—"ବାବାଜି, ନିତ୍ୟକୃତ୍ୟକୁ ଯେ ବେଳ ନାହିଁ । ବର୍ତ୍ତମାନ ଯେ କଟକ ଯିବାକୁ ହେବ ।

ବାବାଜି : କଟକ ଯିବାକୁ ହେବ ? କାହାକୁ ? ମତେ ? କାହିଁକି ?

ମୁଁ : ସେଠାରେ ଆଉ ଗୋଟିଏ ପ୍ରାଣୀର ଜୀବନ ରକ୍ଷା କରିବାକୁ ପଡ଼ିବ ।

ବାବାଜି : ରକ୍ଷା କରିବାକୁ ହେବ ତ ତୁମେ କର ଯାଇ । ମୁଁ ପର ପାଇଁ ପ୍ରାଣ ଦେବାକୁ ପ୍ରସ୍ତୁତ ନୁହେଁ ।

ମୁଁ : ଏହାଭିତରେ ତ ପ୍ରାଣ ଦେବାର କଥା ମୁଁ କିଛି ଦେଖୁନାହିଁ । ଆପଣ ଖଣ୍ଡେ ଡଙ୍ଗା କରି ଆମକୁ ସବୁ ନେଇ କଟକରେ ପହଞ୍ଚାଇ ଦେବେ ମାତ୍ର । ତା'ପରେ ପୁଲିସ ଆଗରେ ଇଜ୍‌ହାର ହୋଇଗଲେ ଆପଣ ପୁଣି ଫେରିଆସିବେ ।

ବାବାଜି : ପୁଲିସ ଆଗରେ ଇଜ୍‌ହାର—ସେ ପୁଣି କଅଣ ?

ମୁଁ : ଏଇ ଯେ ଲୋକଟା ଆଜି ରାତିରେ ଏତେ କାଣ୍ଡ କରିଦେଇଗଲା, ତା'ର ତ ଦଣ୍ଡ ହେବା ଉଚିତ । ସେ ଏହିପରି କେତେ କୁଳନାରୀଙ୍କୁ ନଷ୍ଟ କରିଛି । ତାହାର ଦଣ୍ଡ ନହେଲେ ସେ ଆହୁରି ମଧ୍ୟ କେତେ ନଷ୍ଟ କରିବ । ସେଇଥିଲାଗି ମୁଁ ପୁଲିସରେ ଏତଲା କରିବି । ଆପଣ ଆଉ ମନୋରମା କେବଳ ମାତ୍ର ସାକ୍ଷୀ । ଆପଣ ନ ରହିଲେ ତ ମକଦମାଟା ଟେକିବ ନାହିଁ । ସଇତାନ ଖଲାସ ପାଇ ପୁଣି ସଇତାନି କରିବ ।

ବାବାଜି : ତୁମେ ଯାହା କୁହ ସେ କାମକୁ ମୁଁ ପାରିବି ନାହିଁ ।

ମୁଁ : କାହିଁକି ? ଏଥିରେ ଆପଣଙ୍କର ଆପତ୍ତିର କାରଣ ?

ବାବାଜି : ଆପତ୍ତିର କାରଣ ? ନ ଶୁଣିଲେ ଯେବେ ତୁମେ ସନ୍ତୁଷ୍ଟ ହେବ ନାହିଁ, ତାହାହେଲେ ଶୁଣ । ମୁଁ ନରହନ୍ତା—ନା—ନାରୀହନ୍ତା । ଧରାପଡ଼ିବା ଭୟରେ ଛଦ୍ମବେଶରେ ଏପରି ସ୍ଥାନେ ସ୍ଥାନେ ବୁଲୁଛି ।

ମୁଁ : ମିଛ କଥା ! ଆପଣ ନର କି ନାରୀହନ୍ତା ହୋଇ ନ ପାରନ୍ତି । ଯଦି ବା ହୋଇଥାନ୍ତି ତେବେ ଥରେ ଅନ୍ୟାୟ ଅଧର୍ମ କରିଥିଲେ ବୋଲି କ'ଣ ଆଉ ଧର୍ମ କରିବେ ନାହିଁ ? ଚୋରର ସାଙ୍ଗ ଚୋରର ଦୁର୍ନୀତି ଘୋଡ଼ାଇ ରଖିଲା ପରି ଏ ପାପିଷ୍ଠର ଦୁର୍ନୀତି ଘୋଡ଼ାଇବାରେ ସାହାଯ୍ୟ କରିବେ ! ଗୋଟିଏ ମଣିଷ ମାରିଥିଲେ ବୋଲି, ସାହାଯ୍ୟ ନକରି ଅନ୍ୟ ଗୋଟିଏ ମହାପ୍ରାଣ ଲୋକର ବିନାଶରେ ସହାୟତା କରିବେ ?

ତା'ପରେ ଭାବି ଦେଖନ୍ତୁ, ଆପଣ ଏ ନାରୀହତ୍ୟା ଅପରାଧରୁ ଲୁଚି ଲୁଚି ହୁଏତ ମଣିଷଠାରୁ ଦଣ୍ଡ ନପାଇ ପାରନ୍ତି; କିନ୍ତୁ ଆପଣଙ୍କର ବିବେକ—ଆପଣଙ୍କ ଆତ୍ମାର ନିକଟରୁ ଆପଣ କିପରି ପରିତ୍ରାଣ ପାଇବେ ? ଯଦି ଗୋଟିଏ ନାରୀହତ୍ୟା ଅପରାଧରେ ବୁଡ଼ିରହି ଆପଣ ହଜାର ହଜାର ନାରୀହତ୍ୟାରେ ସାହାଯ୍ୟ କରନ୍ତି, ତାହାହେଲେ ଆପଣଙ୍କ ଉଦ୍ଧାରର ଉପାୟ କେଉଁଠି ? କିନ୍ତୁ ଆପଣ ଯେପରି ଆଜି ମନୋରମାର ପ୍ରାଣ ରକ୍ଷା କଲେ, ସେହିପରି ଯଦି ସେ ମହାତ୍ମାଙ୍କ ପ୍ରାଣରକ୍ଷା କରିବାରେ ସାହାଯ୍ୟ କରନ୍ତି, ଆଉ ଅବିନାଶର ଦଣ୍ଡବିଧାନର କାରଣ ହୋଇ ନିରୀହ ଶତ ଶତ କୁଳନାରୀଙ୍କ ମାନ ଓ ପ୍ରାଣ ରକ୍ଷାରେ ସାହାଯ୍ୟ କରନ୍ତି, ତା'ହେଲେ ବିବେକ ଓ ଆତ୍ମା ପାଖରେ ଆପଣଙ୍କର କହିବାର ଜୋର ନଥିବ କି ଯେ ଆପଣ ଏକ ଅପରାଧର ପ୍ରାୟଶ୍ଚିତ୍ତ ଶତସହସ୍ର ବାର କରିପାରିଛନ୍ତି ? ହୁଏତ ସେଥିପାଇଁ ଆପଣ ଧରାପଡ଼ିବେ, ଆପଣଙ୍କର ଦଣ୍ଡ ହେବ; କିନ୍ତୁ କେଉଁ ଦଣ୍ଡର ତାପ ବେଶି—ମନୁଷ୍ୟଦଣ୍ଡର ନା ବିବେକଦଣ୍ଡର ।

ବାବଜି : ଚାଲ, ତେବେ ଚାଲ । ମୁଁ ତୁମ କଥା କରିବି । ତୁମ ସାଙ୍ଗରେ ଯାଇ ଏ ପ୍ରାଣ ବିସର୍ଜନ କରିବି । ନାରୀ ଏ ପର୍ଯ୍ୟନ୍ତ ମୋ ଜୀବନର ସର୍ବନାଶର ମୂଳ କାରଣ ହୋଇଆସିଛି । ଆଜି ଏହି ଶେଷ ଯବନିକାରେ ମଧ୍ୟ ସେହି ନାୟିକା ହେବା ଉଚିତ ।

ଏତିକି କହି ସେ ଚାଲିଗଲେ ।



## ସତର

ତା'ପରେ ସେ ଟଙ୍ଗା ଇତ୍ୟାଦିର ବନ୍ଦୋବସ୍ତ କରି ଆସି ଆମ୍ଭମାନଙ୍କୁ ଡାକିଲେ । ଆମ୍ଭେମାନେ ସମସ୍ତେ ଟଙ୍ଗାରେ ବସି ଯାଇ କଟକରେ ପହଞ୍ଚିଲୁଁ ପ୍ରାୟ ଏଗାରଟାବେଳେ । ବାଟରେ ବାବାଜିଙ୍କଠାରୁ ଶୁଣିଲି ଯେ, ଯେଉଁ ନାଉରୀଗୁଡ଼ାକ ଅବିନାଶ ଓ ମନୋରମାକୁ ଟଙ୍ଗାରେ ଆଣିଥିଲେ, ସେମାନେ ସମସ୍ତେ ମଞ୍ଚେଶ୍ୱରିଆ ନାଉରୀ । ଦରକାର ହେଲେ ସେମାନେ କିଛି ପାଉଣାପତ୍ର ପାଇଲେ କଚେରିରେ ସତକଥା କହିଦେବାକୁ ନାରାଜ ହେବେ ନାହିଁ । ମନୋରମା ମଧ୍ୟ ମୋ ଆଗରେ ସବୁ ଘଟଣା କହିଲା । ପ୍ରଥମେ ଅବିନାଶ ସେଠାରେ ପହଞ୍ଚି ଆଲୁଅ ଇତ୍ୟାଦି ଲଗାଇ ସାରି ତାକୁ କହିଲା—"କାଲି ସକାଳେ ତ ତୁମକୁ ଏ ଥାନ ଛାଡ଼ି ଯିବାକୁ ହେବ; କିନ୍ତୁ ଏଠି ଗୋଟିଏ ବଡ଼ ସୁନ୍ଦର ଜାଗା ଅଛି ।" ଏ କଥାରେ ତାହା ସଙ୍ଗରେ ମନୋରମା ଗଲା । ତା'ପରେ ସେଇ ପଥର ଉପରେ ଅବିନାଶ ତା'ର ହୃଦୟ ଭାବ ବ୍ୟକ୍ତ କଲା । ମନୋରମା କିନ୍ତୁ ଉତ୍ତ୍ୟକ୍ତ ହୋଇ ଗାଳିଦେଲା । ତା'ପରେ ତ ଯାହା ଘଟିଲା, ସେ ସବୁ ଆଖିରେ ଦେଖିଛି । ତେଣୁ ମନୋରମାଠାରୁ ସେସବୁ ବିଷୟର ପୁନରାବୃତ୍ତି ଶୁଣିବାକୁ ମନ ହେଲା ନାହିଁ ।

ବାଟରେ ଆଉ ଗୋଟିଏ କଥା ମୁଁ ଲକ୍ଷ୍ୟ କରିଥିଲି । ସେ ବାବାଜି କାହିଁକି ଘନ ଘନ ମୋ ଆଡ଼କୁ ଚାହୁଁଥାନ୍ତି । ସେତେବେଳକୁ ମୋ ମୁହଁର ଓ ଦେହର ରଙ୍ଗଗୁଡ଼ାକ ଛଡ଼ାଇ ମୁଁ ମୋ ନିଜ ଆକୃତି ନେଇସାରିଥିଲି । ସେ ମୋତେ ଚାହିଁ କ'ଣ କହିଲା ପରି ହେଉଥିଲେ; କିନ୍ତୁ ମୁହଁ ଖୋଲି କିଛି କହିପାରୁ ନଥିଲେ । ଘନ ଆଲୁଅରେ ମୁଁ ମଧ୍ୟ ତାଙ୍କୁ ଦୋଦୋଚିହ୍ନା ହେଲି । ଏଇପରି ଭାବରେ ବାଟତକ କଟିଗଲା ।

କଟକ ସହର ହେଲାରୁ ମୁଁ ମନୋରମା ଓ ବାବାଜିଙ୍କୁ କହିଲି—"ମୋର ଗୋଟିଏ ନିବେଦନ ଅଛି । ମୁଁ ବେଶ୍ୟା, ଆପଣମାନେ ଯଦି ମୋ ଘରକୁ ଯିବାପାଇଁ କିଛି ଖରାପ ଭାବନ୍ତି ତାହେଲେ କହନ୍ତୁ—ମୁଁ ଅନ୍ୟତ୍ର ଆପଣମାନଙ୍କ ପାଇଁ ବ୍ୟବସ୍ଥା କରିଦେବି । କିନ୍ତୁ ମନୋରମା ! ତୋତେ ଅତି ଶୀଘ୍ର ମୋ ଘରକୁ ଯିବାକୁ ହେବ । ତୋର ସ୍ୱାମୀ ମୋ ଘରେ ବେମାର ପଡ଼ିଛନ୍ତି ।" ଦେଖିଲି, ମନୋରମାର ମୁହଁ କଳା ପଡ଼ିଗଲା, କେତେ ସନ୍ଦେହ ଓ ଆଶଙ୍କାର ରେଖା ମଧ୍ୟ ତହିଁରେ ଫୁଟିଉଠିଲା । ମୁଁ ଆଉ ନୀରବ ନ ରହି କହିଲି—"ମନୋରମା ! ତୋର ସନ୍ଦେହ ନିତାନ୍ତ ଅମୂଳକ । ଦେବତା ସେ, ତାଙ୍କଠାରେ ଆଶଙ୍କା ପୋଷଣ ଅନୁଚିତ । ସେ କେବଳ ତୋରି ଅନୁସନ୍ଧାନରେ ଆସି ବେଶ୍ୟାପଲ୍ଲୀରେ ଘରଭଡ଼ା

ଖୋଜି ବୁଲୁଥିଲେ । ମୋର ଘରଗୁଡ଼ାଏ ଥିଲା; ମୁଁ ତାଙ୍କୁ ଭଡ଼ା ଦେଲି । ତାଙ୍କ ଓ ମୋ ଭିତରେ ଭଡ଼ାଟିଆ ଓ ଘରବାଲାର ସମ୍ବନ୍ଧ ଛଡ଼ା ଆଉ କିଛି ନାହିଁ ।"

ମୋର ଏ କଥା ଶୁଣି ମନୋରମାର ସନ୍ଦେହ ଦୂର ହେଲା । ବଡ଼ ନିରାଶାବ୍ୟଞ୍ଜୀ ସ୍ୱରରେ ସେ କହିଲା—"ଅବିନାଶଠାରୁ ମୁଁ ଶୁଣିଥିଲି; କିନ୍ତୁ ତୁମେ ଯାହା କହିଲ ଠିକ୍ ତା'ର ବିପରୀତ । ଆଚ୍ଛା, ତୁମେ ତାଙ୍କର କାହିଁକି ଏତେ ପ୍ରଶଂସା କରୁଛ କହିଲ ?"

ମୁଁ : ତତେ ମରଣ ନାହିଁ ମନୋରମା, ବେଶ୍ୟା କେଉଁଦିନ କାହାକୁ ଭଲ ପାଇବାର ଶୁଣିଥିଲୁ ? ଆମେମାନେ ପରା ପଇସାର ଚାକର । ପଇସା ଯୋଉଠୁ ପାଇବୁ ସେଠି ସବୁ ଆପଣା କରିଦେବୁଁ । ଆମେ ଦେବତା ଚାହୁଁ ନା ସତ, କିନ୍ତୁ ଦେବତାକୁ ଦେଖିଲେ ତାକୁ ଦେବତା ବୋଲି ନ କହି ଆଉ କ'ଣ କହିବୁ ? ୟାକୁ ସିନା ତୁ ପ୍ରଶଂସା ବୋଲି କହୁଛୁ !

ମନୋରମା : ତୁମେ କିନ୍ତୁ ଯାହା କୁହ, ମୁଁ ତ ତୁମକୁ କେବେହେଲେ ବେଶ୍ୟା ବୋଲି ମାନିବି ନାହିଁ । ବେଶ୍ୟା କେବେ ପର ପାଇଁ ନିଜ ପ୍ରାଣଟା ହସି ହସି ବଳି ଦିଏ ନାହିଁ । ତୁମେ ଯାହା କରିଛି, ଆଉ ମୋ ପାଇଁ ଯାହା କଷ୍ଟ ସହିଛ, ସେଥିରେ ତୁମକୁ ଯେ ବେଶ୍ୟା ବୋଲି କହିବ ମୁଁ ତା'ର ଜିଭ ଓଟାରି ଆଣିବି ।

ମନୋରମାର ଏ ବିଶ୍ୱାସ ଓ ସ୍ନେହ ଦେଖି ମତେ କାନ୍ଦ ମାଡ଼ିଲା । ମୁଁ ଆଉ ଦ୍ୱିରୁକ୍ତି ନକରି ବାବାଜିଙ୍କ ମୁହଁକୁ ଚାହିଁ ରହିଲି । ଦେଖିଲି, ବାବାଜି ଆସ୍ତେ ଆସ୍ତେ ବେଶି ବେଶି ଚିନ୍ତାନ୍ୱିତ ହେଉଅଛନ୍ତି । ମୁଁ ଚାହିଁବାର ଦେଖି ସେ କହିଲେ—"ମୁଁ ବାବାଜି ଲୋକ, ମୋର କିଛି ବାଛବିଚାର ନାହିଁ । ଚାଲ ମୁଁ ତୁମରି ଘରେ ରହିବି ।"

ମନୋରମା, ମୁଁ ଆଉ ବାବାଜି ତିନିହେଁଯାକ ମୋ ଘରକୁ ଆସିଲୁଁ । ଦେଖିଲି, ଘର ଆଗରେ ଗୋଟାଏ ମଟର ରଖା ହୋଇଛି । ମୁଁ ଏ ଦୁହିଁଙ୍କୁ ମୋର ବୈଠକଖାନାରେ ବସାଇ ଦେଇ ମନୋରମାର ସ୍ୱାମୀ ଯେଉଁ ଘରେ ଶୋଇଥିଲେ ସେହି ଘରକୁ ଗଲି । ସେଠାରେ ଦେଖିଲି, ଧାଇ, ସଦାନନ୍ଦ ବାବୁ, ଆଉ ଗୋପ ତିନିହେଁଯାକ ଠିଆହୋଇଛନ୍ତି । ସଦାନନ୍ଦ ବାବୁ ଗୋଟାଏ ଔଷଧ ଶିଶି ଧରି ହଲାଉଛନ୍ତି, ଆଉ ନିରେଖି କରି ଚାହିଁଛନ୍ତି । ମନୋରମାର ସ୍ୱାମୀ ଶେଯଉପରେ ଅର୍ଦ୍ଧୋତ୍‌ଥିତ ଭାବରେ ବସିଛନ୍ତି । ତାଙ୍କର ଚକ୍ଷୁ ଶୂନ୍ୟରେ ଲାଖି ରହିଛି । ଦେଖିଲାମାତ୍ରେ ମୋର ଛାତି ଥରିଉଠିଲା ।

ମୁଁ ଆସିବାର ଦେଖି ସଦାନନ୍ଦବାବୁ ପଚାରିଲେ-"ଓଃ, ତୁମେ ଆସିଛ ? ହେଉ, ଭଲ ହେଲା ! ଏ ଔଷଧ କିଏ ଆଣିଥିଲା ?" ସଙ୍ଗେ ସଙ୍ଗେ ଗୋପ କହିଲା—"ମୁଁ ଆଣିଥିଲି ।"

ସଦାନନ୍ଦବାବୁ : କାହା ଦୋକାନରୁ ?

ଗୋପ : ହରିକୃଷ୍ଣ ସାହୁଙ୍କ ଦୋକାନରୁ ।

ସଦାନନ୍ଦବାବୁ ଟିକିଏ ଶିଶି ଉପରେ କାଗଜକୁ ଚାହିଁଲେ ଏବଂ ତା'ପରେ ପୁଣି ପଚାରିଲେ "ହୁଁ, ଔଷଧ ତିଆରି କଲା କିଏ ?"

ଗୋପ : ହରିକୃଷ୍ଣ ବାବୁ ନିଜେ । ତାଙ୍କ କମ୍ପାଉଣ୍ଡର ନଥିଲା ।

ସଦା : ଏ ଲେବଲ୍ କିଏ ଲେଖିଲା ?

ଗୋପ : ହରିକୃଷ୍ଣ ବାବୁ ନିଜେ ।

ମୁଁ ଏତିକିବେଳେ କହିଲି, "କାହିଁକି, ଔଷଧରେ କିଛି ଖରାପ ଅଛି କି ?"

ସଦା : ଖରାପ ! ଏ ଯେ ବିଶୁଦ୍ଧ ବିଷ । ଅବିନାଶବାବୁ ଏ ମିକ୍ଷ୍ଚରଟାରେ ବ୍ରୋମାଇଡ଼ ପ୍ରତି ପାନରେ ତିନି ମିନିମ୍ କରି ବ୍ୟବସ୍ଥା କରିଥିଲେ; କିନ୍ତୁ ତାହା ମତେ ଠିକ୍ ନ ଦିଶିବାରୁ ମୁଁ ସେ ତିନି ମିନିମ୍‌କୁ କମାଇ ଏକ ମିନିମ୍‌ରେ ରଖିଥିଲି । ବର୍ତ୍ତମାନ ଏ ଯେ ସେ ଔଷଧ, ଏଥିରେ ପ୍ରାୟ ଦଶ ମିନିମ୍ ପର୍ଯ୍ୟନ୍ତ ବ୍ରୋମାଇଡ଼ ପ୍ରତ୍ୟେକ ପାନରେ ଅଛି । ରୋଗୀ କାଲି ରାତି ଆଜି ସକାଳ କରି ପ୍ରାୟ ପାଞ୍ଚପାନ ଔଷଧ ଖାଇସାରିଛି । ଏଥିରେ ସେ ଯେ ଏକାବେଳକେ ସାବାଡ଼ ନ ହୋଇଚି ଏହାହିଁ ଆଶ୍ଚର୍ଯ୍ୟ ।

ମୋର ଦେହ ଥରଥର ହୋଇ କମ୍ପିଉଠିଲା । ମୁଁ ଭଗ୍ନସ୍ୱରରେ ପଚାରିଲି—"ରୋଗୀ ତାହେଲେ କ'ଣ ପାଗଳ ?"

ସଦା : ନା, ମୁଖଭଙ୍ଗୀରୁ ପାଗଳ ପରି ଜଣାପଡୁଛି ସତ, କିନ୍ତୁ ନାଡ଼ି ଓ ଫୁସ୍‌ଫୁସ୍ ଠିକ୍ ଅଛି । ବ୍ଲଡ଼ପ୍ରେସର ମଧ୍ୟ ଠିକ୍ ଅଛି । ସେହି ଜିନିଷଟା ହିଁ ମୋତେ ଆଶ୍ଚର୍ଯ୍ୟ ବୋଧ ହେଉଛି । ୫୦ ମିନିମ୍ ବ୍ରୋମାଇଡ଼ ଖାଇଲେ, ଯେ ଇଚ୍ଛା ସେ ହେଉ ପଛକେ, କୌଣସି ଲୋକ ଏପରି ସୁସ୍ଥ ରହି ନପାରେ । ତା'ପରେ ଆହୁରି ଆଶ୍ଚର୍ଯ୍ୟ କଥା, ଜ୍ୱର ଛାଡ଼ିଯାଇଛି । ଏ ମୁଖଭଙ୍ଗୀ ଆଉ ମୁଣ୍ଡର ଘାଆଟା ଛାଡ଼ିଦେଲେ, କୁହାଯାଇ ପାରିବ ଯେ ରୋଗୀ ସମ୍ପୂର୍ଣ୍ଣ ସୁସ୍ଥ । ଆଚ୍ଛା ବାବୁ, ଆପଣ ସେ ଔଷଧ ଆଣି କେଉଁଠାରେ ରଖିଥିଲେ । ?

ଗୋପ : ନାନୀକୁ ଦେଇଥିଲି ।

ମୁଁ : ମୁଁ ଗୋପଠାରୁ ନେଇ ଧାଇ ଜିମା ଧରି ଦେଇଥିଲି । ତାକୁ ମଧ୍ୟ ଆପଣଙ୍କ କହିବା ଅନୁସାରେ ଦେବାର ପ୍ରଣାଳୀ ବତାଇଦେଇ ଯାଇଥିଲି ।

ବର୍ତ୍ତମାନ ସମସ୍ତଙ୍କର ଆଖି ଧାଇ ଉପରେ । ଧାଇର ମୁହଁ ଶୁଖିଯାଇଛି; କିନ୍ତୁ ଆଖି ଦି'ଟାରେ କି ଏକ ଭୀଷଣ ପ୍ରତିଜ୍ଞାର ଆଲୋକ । ସଦାନନ୍ଦବାବୁ ପଚାରିଲେ—"ସେ ଯେ ଔଷଧ ଶିଶିଟା ତୁମକୁ ଦେଇଗଲେ, ସେ କ'ଣ ହେଲା ?"

ଧାଇ : ସେ ତ ଏହି । ଏହି ଔଷଧ ସେ ଦେଇଯାଇଥିଲେ, ଆଉ ଏହି ଔଷଧ ମୁଁ ଦେଇଛି ।

ସଦାନନ୍ଦବାବୁ ଆଉ ଦ୍ୱିରୁକ୍ତି ନ କରି ପକେଟରୁ କଲମ ବାହାର କରି କ'ଣ ଲେଖିଲେ ଓ ଲେଖାଖଣ୍ଡ ଗୋପକୁ ଦେଇ କହିଲେ—"ଶୀଘ୍ର ଯାଇ ହରିକୃଷ୍ଣ ବାବୁଙ୍କୁ ଏ ପତ୍ର ଖଣ୍ଡି ଦେବ ।" ତା'ପରେ ଧାଇକୁ କହିଲେ—"ତୁମେ ମୋ ସାଙ୍ଗରେ ଆସ ।" ଧାଇ କହିଲା—"କି, ତୁମ ସାଙ୍ଗରେ ମୁଁ ଯିବି କାହିଁକି ? ମୋର ସ୍ଥାନ ରୋଗୀ ପାଖରେ ।"

ସଦା : ତୁମର ସ୍ଥାନ ଆଉ ରୋଗୀ ପାଖରେ ନୁହେଁ । ବେଶି ଗୋଳମାଳ କରିବ ତ ପୁଲିସ୍ ଡାକିବି ।

ପୁଲିସ୍‌ର ନାଁ ଶୁଣି ଧାଇର ମୁହଁଟା ଶୁଖିଯାଇ ଏକାବେଳକେ କଳାକାଠ ହୋଇଗଲା । ସେ ଆଉ ଦ୍ୱିରୁକ୍ତି ନକରି ସଦାନନ୍ଦ ବାବୁଙ୍କ ପାଙ୍ଗରେ ଗଲା । ମୁଁ ରହିଲି ଏକା ସେ ଘରେ । ରୋଗୀ ମତେ ହାତଠାରି ଡାକିଲେ । ମୁଁ ପାଖକୁ ଗଲାରୁ ସେ ମତେ ପଚାରିଲେ—"କାଲି ରାତି ଗୋଟାକଯାକ କେଉଁଆଡ଼େ ଯାଇଥିଲ ?"

ମୁଁ : ବେଶ୍ୟା ପକ୍ଷରେ ସେ କ'ଣ ଗୋଟାଏ ଅସାଧାରଣ କଥା ?

ରୋଗୀ : ଶୁଣ, ମୁଁ ପାଗଳ ନୁହେଁ କି ରୋଗୀ ନୁହେଁ । ମୁଁ ବର୍ତ୍ତମାନ ସମ୍ପୂର୍ଣ୍ଣ ପ୍ରକୃତିସ୍ଥ । ମୋ ପାଙ୍ଗରେ ଚାଲାଖି ଖେଳି ଲାଭନାହିଁ ।

ମୁଁ : ତୁମେ ପାଗଳ ନୁହଁ କି ରୋଗୀ ନୁହଁ, କିନ୍ତୁ ସଦାନନ୍ଦ ବାବୁ ଔଷଧର ମାମାତ୍ମ୍ୟ ଯାହା କହିଲେ, ଶୁଣିଲ ତ ? କିପରି ତା'ହେଲେ ତୁମେ ପାଗଳ ନୁହଁ ?

ରୋଗୀ ଆଉ କିଛି ନ କହି ମୋର ହାତଟା ନେଇ ତାଙ୍କ ଶେଯର ଦକ୍ଷିଣ ପଟରେ ମାଣ୍ଡିତଳରେ ପକାଇଦେଲେ; ଦେଖିଲି, ସେ ଅଂଶର ଶେଯଟା ଏକାବେଳକେ ଜୁବୁବୁବୁ—ଓଦା । ବୁଝିଲି, ସେ ଔଷଧ ନଖାଇ ସବୁତକ ଏଇଠି ଅଜାଡ଼ିଛନ୍ତି । ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲି । ପଚାରିଲି—"କିନ୍ତୁ ତୁମେ କିପରି ଜାଣିଲ ଯେ ଏ ଔଷଧ ବିଷାକ୍ତ ?"

ରୋଗୀ : ସଦାନନ୍ଦବାବୁ ଯେତେବେଳେ ଆସିଥିଲେ, ତୁମର ମନେଥିବ, ସେ ମୋର ଦେହ କି ନାଡ଼ି ଦେଖିନାହାନ୍ତି । କେବଳ ମୋର ପ୍ରଳାପ ଓ ଅସ୍ଥିରଭାବ ଦେଖି ଓ ଅବିନାଶର ଔଷଧ ବ୍ୟବସ୍ଥା ପଢ଼ି ଗୋଟାଏ ଅନୁମାନ କରିନେଇ ଔଷଧର ବ୍ୟବସ୍ଥା କଲେ; କିନ୍ତୁ ସେତେବେଳକୁ ମୋର ଜ୍ୱର କମିଆସିଥିଲା । ଅବିନାଶ ଆସିଲାବେଳେ ମଧ୍ୟ ମୋର ରୋଗ କମ୍ ଥିଲା । ମୁଁ କେବଳ ଜ୍ୱର ଛାଡ଼ିବାବେଳେ ଚାଟୋଳିରେ ସେପରି ବ୍ୟସ୍ତ ହେଉଥିଲି । ଅବିନାଶ ଯେତେବେଳେ ମୋର ଦେହ ଓ ନାଡ଼ି ଦେଖି ମଧ୍ୟ "ରୋଗ କମିନାହିଁ, ବରଂ ବଢ଼ିଛି, ମୁଁ ଔଷଧର ଅନ୍ୟ ବ୍ୟବସ୍ଥା କରେ" ବୋଲି କହିଲା, ସେତିକିବେଳୁ ମୋ ମନରେ ସନ୍ଦେହ ଆସିଥିଲା । ମୁଁ ଖେଳଟା ଦେଖିବା ପାଇଁ ସେତେବେଳେ କିଛି କହିଲି ନାହିଁ । ତା'ପରେ ସଦାନନ୍ଦବାବୁ ଆସିଲେ । ସେ ଯାହା କହିଗଲେ, ସେଥିରେ ମୋର ସନ୍ଦେହ ଆହୁରି ବଢ଼ିଲା । ମୁଁ ଚାରିଆଡ଼େ ଖୁବ୍ ତୀବ୍ର ଦୃଷ୍ଟି ରଖିଲି । ମୁଁ ଯେ କାର୍ଯ୍ୟରେ ଏତେଦିନ ହେଲା ଏଠାରେ ପଡ଼ିରହିଛି, ସେ କାର୍ଯ୍ୟଟା ବର୍ତ୍ତମାନ ଏ ଶତ୍ରୁକୁ ଧରିପାରିଲେ ସଫଳ ହେବ ବୋଲି ମୋର ବିଶ୍ୱାସ ହେଲା । ମୁଁ ରୋଗର ଛଳନା କରି ପଡ଼ିରହିଲି । ଔଷଧ ଆସିଲା । ଦେଖିଲି କେହି ନଥିବାବେଳେ ଏ ଧାଇଟା ସେ ଔଷଧ ଶିଶିଟାକୁ ଝରକା ବାଟେ ନର୍ଦ୍ଦମାକୁ ଫୋପାଡ଼ିଦେଲା ଓ ଠିକ୍ ତା'ରି ପରି ଆଉ ଗୋଟାଏ ଔଷଧ ଆଣି ମୋ ପାଟିରେ ଦେଉଥାଏ । ଏହିପରି କରି ମୁଁ ତାଙ୍କର ଏ ଚକ୍ରାନ୍ତ ନିଷ୍ଫଳ କରିଛି; କିନ୍ତୁ ମନୋରମା କାହିଁ ?

ମୁଁ : ମନୋରମା ସହିତ ତୁମର ଆଉ କ'ଣ ଅଛି ? ମନୋରମାକୁ ପାଇଲେ ତୁମେ ଆଉ କ'ଣ କରିବ ? ସେ ଯେ ଘର ଛାଡ଼ି ପଳାଇ ଆସିଥିଲା, ତା' କିଏ ଜାଣେ ? ତୁମେ ତାକୁ କ'ଣ ଗ୍ରହଣ କରିବ ? ତୁମର ଯେ ଉଚ୍ଚ ଆଦର୍ଶ, ତୁମର ଯେ ମହତ୍ ନୀତି, ସେଥିରେ ଏ କାମଟା ଠିକ୍ ଖାପ ଖାଇବନାହିଁ । ତା'ହେଲେ ମନୋରମାକୁ ଦେଖି ତୁମର ଲାଭ କ'ଣ ?

ରୋଗୀ : ଗୋଟାଏ କଥା କହିବି । ତୁମେ ରାକ୍ଷସୀ ପରି କେତେଥର ମୋ ହୃଦୟ ଉପରେ ଅଭିଯାନ ଆରମ୍ଭ କରି ମୋର ଆଶା-ସୌଧକୁ ଭାଙ୍ଗି ଚୁରମାର କରିଛ । ପିଶାଚୀ ପରି କେତେଥର ମୋ ହୃଦୟର ରକ୍ତ ଶୋଷଣ କରିଛ । ଆହୁରି ଯେ କେତେ କ'ଣ...

ମୁଁ : ତା' ତ ଅନେକ ଥର କହିଛି, ବର୍ତ୍ତମାନ ନୂଆ କଥା କିଛି କୁହ । ମନୋରମାକୁ ନେଇ ତମେ କ'ଣ କରିବ ? ତାକୁ କ୍ଷମା କଲ ବୋଲି କହି ନିଜର ମହତ୍ତ୍ୱ ଦେଖାଇବ, ତା'ର ଭରଣପୋଷଣର ଉପାୟ କରିଦେଇ ନିଜର ହୃଦୟବତ୍ତା ଦେଖାଇବ, ଆଉ ସେ ଯେଉଁ ଜିନିଷଟି ପ୍ରାଣ ମନ ଆତ୍ମା ଦେହ ଦେଇ ଚାହେଁ, ସେଇଟିକି କାଢ଼ିନେଇ ନିଜର ଉଚ୍ଚ ଆଦର୍ଶ ଓ ମହାନୀତିର ଡେଙ୍ଗୁରା ବଜାଇବ, ଏଇ ନା ?

ରୋଗୀ : ଆହୁରି ଅଛି, ସବାଶେଷରେ ଏଇ ପିକଦାନିଟା ଧରି ତୁମର ମୁଣ୍ଡ ଚୂନା କରିବି ।

ମୁଁ ସତରେ ଆତଙ୍କରେ ପଳାଇଗଲା ପରି ସେ ସ୍ଥାନରୁ ପଳାଇଗଲି । ମନୋରମାକୁ ଡାକି କହିଲି, "ତୋର ସ୍ୱାମୀ ଭଲ ଅଛନ୍ତି ଓ ତତେ ଦେଖିବାକୁ ଭାରି ବ୍ୟଗ୍ର—ଚାଲ ।" କିନ୍ତୁ ମନୋରମାର ପାଦ ଚଳିଲାନାହିଁ; କହିଲା—"ମୁଁ କିପରି ତାଙ୍କୁ ଆଉ ଏ ମୁହଁ ଦେଖାଇବି ?"

ମୁଁ : ନ ଦେଖାଇବୁ ତ ମୁହଁରେ ଲୁଗା ପକାଇ କଥାବାର୍ତ୍ତା କରିବୁ ।

ମନୋ : ନା ଭଉଣୀ ! ମୁଁ ତା' ପାରିବି ନାହିଁ । ମତେ ଭାରି ଡର ମାଡୁଛି । ମୁଁ ତାଙ୍କୁ କ'ଣ କହିବି ?

ମୁଁ : କହିବୁ 'ପ୍ରାଣନାଥ, ହୃଦୟେଶ୍ୱର !' ଆଉ ସେ କହିବେ 'ପ୍ରିୟତମା, ହୃଦୟେଶ୍ୱରୀ !' ଚାଲ ଖଳବି, ଉଠୁ, ସେ ପିକଦାନି ଘେନି ବସିଛନ୍ତି, ଉଛୁର ହେଲେ ମୋ ମୁଣ୍ଡରେ ପିଟିଦେବେ ବୋଲି । ଆଉ ୟାର ବାହାରୁଛି ଶଅକ !

ଏହା କହି ମୁଁ ତାକୁ ଭିଡ଼ି ଭିଡ଼ି ନେଇଗଲି; ସେ ଘର ଭିତରକୁ ଠେଲିଦେଇ ଦୁଆରଟା ଆଉଜାଇ ଆଣିଲି । ଖଟଟା ମଟ୍‌କରି ଡାକିଲା । ମୋ ଆଖିରେ ପାଣି ଆସିଲା; ମୁଁ ସେଠାରୁ ପଳାଇଆସିଲି ।

•

## ଅଠର

ଏହା ମଧ୍ୟରେ ହରିକୃଷ୍ଣ ବାବୁ ଆଉ ଗୋପ ଆସି ପହଞ୍ଚିଲେ । ମୁଁ ତାଙ୍କ ଗାଡ଼ିଶବ୍ଦ ଶୁଣି ତଳକୁ ଓହ୍ଲାଇ ଆସିଲି । ଦେଖିଲି, ବାବାଜି ଯେଉଁ ବାଟଘର ପାଖ ଘରେ ଥିଲେ, ସେହି ଘରେ ବସିଛନ୍ତି । ଦୁଆରଟା ମେଲାହୋଇଛି । ଆଗେ ଆଗେ ହରିକୃଷ୍ଣ ବାବୁ, ତା' ପଛରେ ଗୋପ, ତା' ପଛରେ ମୁଁ—ଏହିପରି ଯାଉଛୁଁ । ଏତିକିବେଳେ ଗୋପର ଆଖି ପଡ଼ିଗଲା ସେ ଘର ଭିତରକୁ । ସେ ଚମକି ପଡ଼ି ଠିଆହୋଇଯାଇ କହିଲା—"କିଏ, ଏ ହରଗୋବିନ୍ଦ ବାବୁ ?" କିନ୍ତୁ ବାବାଜି କିଛି ନ ଶୁଣି ମୁହଁ ବୁଲାଇ ବସିଗଲେ ।

ହରଗୋବିନ୍ଦବାବୁ ? ମୋର ସ୍ୱାମୀ ? ଏ କ'ଣ ମୋର ସ୍ୱାମୀ ? ମୋର ସନ୍ଦେହ ତେବେ କ'ଣ ସତ ? ମୋ ଦେହ ଥରଥର ହୋଇ କମ୍ପିଲା, ଭାରି ଡର ଲାଗିଲା । ମୁଁ ଗୋପକୁ ଆଗକୁ ଠେଲିଦେଇ ତା' ପଛେ ପଛେ ଚାଲିଲି । ସିଡ଼ି ଦେଇ ଉପରକୁ ଉଠୁ ଉଠୁ ଗୋପ ପଚାରିଲା—"ସେ କିପରି ଏଠାକୁ ଆସିଲେ ?"

ମୁଁ : ସେ କିଏ ? କା କଥା କହୁଛୁ ? ବାବାଜିଙ୍କ କଥା ?

ଗୋପ : ହଁ ମ ହଁ, ବାବାଜିଙ୍କ କଥା ! ବାବାଜି କିଏ ମ ? ସେ ଗୋଟାଏ ଭଣ୍ଡ ତପସ୍ୱୀ । କେଉଁଠୁ ପାଇଲୁ ?

ତାଙ୍କ ପାଖ ଛାଡ଼ି ମୋର ମନରେ ଟିକିଏ ଦମ୍ଭ ଆସିଯାଇଥିଲା । କହିଲି—"ଧବଳେଶ୍ୱର ଘାଟରେ ଭାସୁଥିଲେ; ମୁଁ ଖିଅରେ ଧରି ଆଣିଛି ।"

ଗୋପ : ତୁ ଧବଳେଶ୍ୱର ଯାଇଥିଲୁ କାହିଁକି ?

ମୁଁ : ସେ କଥା ପରେ କହିବି ।

ଗୋପ : ସେ ମାଇପିଟି କିଏ ?

ମୁଁ : ପଛେ କହିବି ।

ଗୋପ : ହଁ, ସବୁ କଥା ତ ପଛେ କହିବୁ, ଆଗ ତେବେ କୋଉ କଥା ? ଏ ବାବାଜିଙ୍କ କଥା ?

ମୁଁ ଅଲାଜୁକୀଙ୍କ ପରି କହିଲି—"ହଁ" ।

ଗୋପ : ତାଙ୍କୁ ଏଠାକୁ କାହିଁକି ଆଣିଲୁ ? ସେ କ'ଣ ତତେ କିଛି କହି ନାହାନ୍ତି ?

ମୁଁ : ମତେ ? ନାଁ ତ ।

ଗୋପ : ତାଙ୍କର କଟକ ଆସିବା ଆଦୌ ଉଚିତ ନୁହେଁ ।

ମୁଁ : କାହିଁକି ?

ଗୋପ : ସେ କଥା ପରେ କହିବି ।

ଠିକ୍ ପ୍ରତିଶୋଧ ନେଇଛି ବୋଲି ଭାବି ଗୋପ ମନେ ମନେ ଭାରି ଖୁସିହେଲା । ଏତେବେଳକୁ ଆମେମାନେ ଆସି ବୈଠକଖାନାରେ ପହଞ୍ଚିଯାଇଥିଲୁଁ । ହରିକୃଷ୍ଣ ବାବୁ ଓ ସଦାନନ୍ଦ ବାବୁ ଦିହେଁଯାକ ନମସ୍କାର ଦିଆନିଆ କଲେ । ତା'ପରେ ହରିକୃଷ୍ଣ ବାବୁ ପଚାରିଲେ, "ଏଥିରେ ଆପଣ କ'ଣ ଲେଖିଛନ୍ତି ? ମୁଁ ଯେ କିଛି ବୁଝିପାରୁ ନାହିଁ ।"

ସଦା : ଆପଣ କାଲି ଏ ବାବୁଙ୍କୁ ଯେ ଔଷଧ ଦେଇଥିଲେ; ତା'ର ନକଲ ରଖିଛନ୍ତି ?

ହରି : ହଁ, ଏହି ଦେଖନ୍ତୁ ।

ସଦାନନ୍ଦବାବୁ ଦେଖିଲେ ଯେ ଠିକ୍ ଅଛି । କହିଲେ—"ମୋ ବ୍ୟବସ୍ଥାର ଠିକ୍ ନକଲ । ଏହି ଶିଶିଟା ଦେଖନ୍ତୁ । ଆପଣ ଏହି ଶିଶିରେ ଔଷଧ ଦେଇଥିଲେ ? ଏ ଲେବଲ୍ ଆପଣଙ୍କର ?"

ହରି : ହଁ, ଏହି ଶିଶିରେ ବା ଏହିପରି ଗୋଟାଏ ଶିଶିରେ ମୁଁ ଔଷଧ ଦେଇଥିଲି ।

ସଦାନନ୍ଦ : 'ଏହିପରି ଗୋଟେ ଶିଶି'ର ମାନେ କ'ଣ ?

ହରି : ଶିଶି ଆଉ ଲେବଲ୍ ଠିକ୍ ଅଛି; କିନ୍ତୁ ଲେବଲ୍ ଉପର ହସ୍ତାକ୍ଷର ମୋର ନୁହେଁ ବା ମୋର କମ୍ପାଉଣ୍ଡରର ନୁହେଁ ।

ସଦା : ତା'ହେଲେ ହୋଇଛି, ଆପଣ ଆସନ୍ତୁ; କିନ୍ତୁ...

ହରି : 'କିନ୍ତୁ' କଥାଟା କ'ଣ ?

ସଦା : ପରେ ଶୁଣିବେ । ମୁଁ ଫେରିଲାବେଳେ ଆପଣଙ୍କୁ ସବୁ କହିବି; ମୁନିଏ ତା' ରଖିଥିବେ ।

ହରିକୃଷ୍ଣବାବୁ ନମସ୍କାର କରି ଚାଲିଗଲେ । ସଦାନନ୍ଦବାବୁ କହିଲେ—"କେହି ନିଜର ସ୍ୱାର୍ଥସିଦ୍ଧି ନିମନ୍ତେ ଏହି ବିଷାକ୍ତ ଔଷଧ ରୋଗୀକୁ ଦେଇଛି । ସେ ଲୋକଟା କିଏ ?" ଏତିକି କହି ସେ ଧାଇ ଆଡ଼କୁ ଚାହିଁଲେ । ଧାଇ ସେ ତୀବ୍ର ଦୃଷ୍ଟି ସମ୍ଭାଳି ନ ପାରି ମୁହଁ ତଳକୁ କରିଦେଲା, ଆଉ ଥରଥର ହୋଇ କମ୍ପିଉଠିଲା ।

ସଦାନନ୍ଦବାବୁ କହିଲେ—"ବୁଝିଛି, ତୁମେ ଏ ସବୁ ବିଷୟ ଜାଣ; କିନ୍ତୁ ଏ ଔଷଧଟା ତୁମକୁ ଆଣିଦେଲା କିଏ ?" ଧାଇ ନୀରବ ।

ସଦା : ସତ କହ, ତାହେଲେ ତୁମର ମଙ୍ଗଳ । କଥା ଛପାଇଲେ ଛପିବ ନାହିଁ । ତୁମେ ଯଦି ସତ ସତ କଥା କହିଦିଅ, ତାହେଲେ ତୁମକୁ ରକ୍ଷା କରିବାର ଉପାୟ କରାଯାଇପାରେ ।

ତଥାପି ଧାଇ ନୀରବ ।

ସଦା : ଉତ୍ତମ ! ଗୋପ ବାବୁ, ଆପଣ ଥାନାକୁ ଖବର ଦିଅନ୍ତୁ ।

ଗୋପ : କ'ଣ ଆପଣ ଏତଲା କରିବେ ?

ସଦା : ନିଶ୍ଚୟ ।

ଗୋପ : କିନ୍ତୁ ତା'ହେଲେ ଯେ ଆମ ସମସ୍ତଙ୍କୁ କଚେରି ଯିବାକୁ ପଡ଼ିବ । ମୋର ଏ ଭଉଣୀଟିର ସମସ୍ତ ଗୁପ୍ତକଥା ପ୍ରକାଶିତ ହୋଇପଡ଼ିବ । ଗୋଟାଏ ସମ୍ଭ୍ରାନ୍ତ କୁଳରେ କାଳି ଲାଗିବ ।

ସଦା : ତା' ବୋଲି ମୁଁ ଏଡ଼େ ବଡ଼ ପାପ କୌଣସି ମତେ ଲୁଚାଇ ରଖିପାରିବି ନାହିଁ । ଆପଣ ଯାହା କହନ୍ତୁ, ମୁଁ କିନ୍ତୁ ଏ ମୋକଦମା ନିଶ୍ଚୟ କରିବି ।

ଗୋପ ବହୁତ ବୁଝାଇଲା । ବହୁତ ଯୁକ୍ତିତର୍କ ଚାଲିଲା, ଶେଷରେ ଠିକ୍ ହେଲା, ଯେତେଦୂର ସମ୍ଭବ ମୋର ସାକ୍ଷ୍ୟ ଗ୍ରହଣ କରାଯିବ ନାହିଁ । ଗ୍ରହଣ କରାଗଲେ ମଧ୍ୟ ଯେପରି ଆବଶ୍ୟକ କଥା କେତୋଟି ଛଡ଼ା ଆଉ କିଛି ମତେ କହିବାକୁ ନ ପଡ଼େ, ତା'ର ଚେଷ୍ଟା କରାଯିବ ।

ପୁଲିସିକି ଖବର ଦିଆହେଲା । ଏତିକିବେଳେ ମନୋରମା ଆସି ପହଞ୍ଚିଲା । ତା'ର ଗଣ୍ଡ ଦେଶରେ ଧାର ଧାର ହୋଇ ଲୁହଦାଗ ଲାଗିରହିଛି । ଆଖି ଆଉ ମୁହଁ ହସରେ, ଆନନ୍ଦରେ, ଶାନ୍ତିରେ, ପ୍ରେମରେ ସତେ ଅବା ଫାଟିପଡୁଛି । ମୁଁ ତାକୁ ଗୋଟାଏ କୋଣକୁ ଡାକିନେଇ କହିଲି—"ମଲୁ ନାଇଲୋ ସତିଆନାଶି ! ଆସିଲାବେଳେ ମୁହଁଟା ଟିକିଏ ପୋଛି ଆସିବାକୁ ହେଲାନାହିଁ । ଏ ଲୁହଧାର ଘେନି ଆସିଛୁ ଭାଗ୍ୟ ଦେଖେଇବୁ ବୋଲି ?"

ଏହାପରେ ମୁଁ ତା' ମୁହଁକୁ ଲୁଗା କାନିରେ ପୋଛିଦେଲି । ତା'ପରେ ପଚାରିଲି— "ଏତେ ସଅଳ ସେ ଘରୁ ଆସିଲୁ କାହିଁକି, ଶୁଣେ ? ଘଡ଼ିକରେ କ'ଣ ମନ ଛାଡ଼ିଗଲା ?"

ମନୋରମା : ତୁ ଆଉ କ'ଣ ମୋ ପାଇଁ ବାକି ରଖିଛୁ ଯେ ସେ ମୋତେ ପଚାରିବେ ! ତାଙ୍କର ତ ଖାଲି କଥାକେ କଥାକେ 'କମଳା' ।

ମୁଁ : ହେଉ, ହେଉ, ସେ ଛଟାଗୁଡ଼ାକ ରଖିଦେ । ଯା, ଯୁଆଡ଼େ ଆସିଥିଲୁ, ତେଣିକି ଯା, ନଇଲେ ଛାଞ୍ଚୁଣି ମାରି ପିଠି ଗୁଣ୍ଡା କରିଦେବି ।

ମନୋରମା : ଇସ୍, ତୁ ନା ତୋ ବାବାଜି । ମୁଁ ଆସିଛି ବାବାଜିଙ୍କୁ ଧରିନେବି ।

ମୁଁ : କୁଆଡ଼େ ?

ମନୋରମା : ହଜୁରକୁ ।

ମୁଁ : କାହିଁକି ?

ମନୋରମା : ବିଚାର ହେବ ।

ମୁଁ : କି ବିଚାର ?

ମନୋରମା : ସେ ଯେ ସ୍ୱୀକାର କରିଛନ୍ତି ।

ମୁଁ : କିଏ ବିଚାର କରିବ ?

ମନୋରମା : କିଏ ଆଉ ବିଚାର କରେ ? ଦେବତା—ସ୍ୱୟଂ ପରମେଶ୍ୱର !

ମୁଁ : ଯା, ମର ମ । ମଲୁଣି ତ ଆଉ କ'ଣ ? ଯା ତୋ ବାବାଜିକି ଡାକି ଘେନି ପଳା ।

ମନୋରମା : କିଏ ବାବାଜିକୁ ଘେନି ପଳାଇବ, ଆଉ ଫେରେ ଦେଖିବା ଯେ ।

ଏତିକି କହି ସେ ଅଲାଜୁକୀ ପରି ହସି ହସି ନାଚି ନାଚି ତଳକୁ ଚାଲିଗଲା । ବାବାଜିଙ୍କି ଘେନି ପୁଣି ସେ ବାଟ ଚାଲିଗଲାବେଳେ ମୋ ପ୍ରତି ଗୋଟାଏ ବିଲୋଳ କଟାକ୍ଷ କରିଗଲା । ମୁଁ ଦେଖିଲି, ମନୋରମା କିଛି ଜାଣେ । ତା' ମନେ ମନେ ସେ ଗୋଟାଏ କ'ଣ କୁପାଞ୍ଚ ମୋ ପାଇଁ କଲାଣି । ବାବାଜି କିଏ ? ସତେ କ'ଣ ମୋର ସ୍ୱାମୀ ? ଯଦି ହୋଇଥାନ୍ତି; ତା'ହେଲେ ମୋର କର୍ତ୍ତବ୍ୟ କ'ଣ ?



## ଉଣେଇଶ

ମୁଁ ଏହିପରି ନାନା କଥା ଭାବୁଛି, ଏତିକିବେଳେ ଅବିନାଶବାବୁ ଆସି ପହଞ୍ଚିଲେ । ସେ ଏ ଅବସ୍ଥାରେ ଯେ ଏଠାକୁ ଆସିବ, ସେ ଭରସା କେହି କରିନଥିଲେ । ତା'ର ଆସିବାଟା ପ୍ରଥମେ ଆମେ ବଡ଼ ଦୁଃସାହସିକତାର କଥା ବୋଲି ମନେକଲୁଁ । କିନ୍ତୁ ତା'ର ମୁହଁ ଆଉ ଆଖିରୁ ଯେପରି ଭୟ—ମୃତ୍ୟୁଭୟ ଝଲକି ଝଲକି ଉଠୁଥିଲା; ତା'ର ଓଠ କଦଳୀ ଚୋପଡ଼ା

ପରି; ମୁହଁ ଏକାବେଳକେ ପାଉଁଶଗଦା ! ସେ ଆସି ଥରେ ଦି'ଥର ଅଧରରେ ଜିଭ ବୁଲାଇ ନେଇ କହିଲା, "ରୋଗୀ କିପରି ଅଛି ?"

ସଦାନନ୍ଦବାବୁ ତୀକ୍ଷ୍ଣ ଦୃଷ୍ଟିରେ ତା' ଆଡ଼କୁ ଚାହିଁ କହିଲେ—"ଯେପରି ରଖିଛ ସେପରି ଅଛି ।"

ଅବିନାଶ ଉତ୍ତ୍ୟକ୍ତ ହୋଇ ପଚାରିଲା—"ତା'ର ମାନେ ?"

ସଦା : ତା' ତୁମେ ବେଶ୍ ଜାଣ ।

ମୁଁ ଅବିନାଶକୁ ବସିବାପାଇଁ ଅନୁରୋଧ କଲି । ସେ ଖାଲି ଛଟପଟ ହେଉଥାଏ; ଏ ଗୋଡ଼ରେ ବୁହେ ଛିଡ଼ାହେଉଥାଏ, ପୁଣି ସେ ଗୋଡ଼ରେ ବୁହେ । କେତେବେଳେ ହାତ ମକଚୁଥାଏ, କେତେବେଳେ ଅବା ପଛକୁ ଚାହୁଁଥାଏ । ମୋର ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କରି ସେ କହିଲା— "ନାଁ, ମୋର ବଡ଼ ଜରୁରି କାମ ଅଛି । ଖାଲି ଆସିଲି, ଏ ଧାଇଟାକୁ ନେବା ପାଇଁ । ମୋର ଆଉ ଗୋଟିଏ ରୋଗୀ ପଡ଼ିଛି, ତା' ପାଖରେ ଗୋଟିଏ ଭଲ ଧାଇ ଦରକାର ।"

ସଦା : ତୁମର ସେ ରୋଗୀ କିଏ ?

ଅବି : ରୋଗୀ, ରୋଗୀ ? ହଁ, ସେଇ ମନୋହର ବାବୁ ।

ସଦା : ମନୋହର ବାବୁ ? ଓକିଲ ?

ଅବି : ହଁ, ହଁ, କେତେ ପଚାରୁଛ ହେ !

ସଦା : ତାଙ୍କର କ'ଣ ହୋଇଛି ?

ଅବି : ଏଇ ଜର; ନା—ନା, ଡାଇରିଆ ।

ସଦା : କେତେବେଳ ହେଲା ହେଲାଣି ?

ଅବି : କାଲି ରାତିରୁ, ନା ଆଜି ସକାଳୁ ।

ସଦା : ମୁଁ ଘଣ୍ଟାକତଳେ ଦେଖିଆସିଛି ସେ ରାମେଶ୍ୱର ଦୋକାନରେ ବସିଥିଲେ ।

ଅବି : ବସିଥିଲେ ବସିଥିବେ—ତୁମର କ'ଣ ଗଲା ? ଆସ ଧାଇ ଯିବା । ଧାଇ ଉଠିଲା । ସଦାନନ୍ଦ ବାବୁ କହିଲେ—"ଧାଇ ବର୍ତ୍ତମାନ ଯାଇପାରିବ ନାହିଁ ।"

ଅବି : କାହିଁକି ?

ସଦା : ଢେର୍ କାରଣ ଅଛି ।

ଅବି : ତା'ର ଇଚ୍ଛା ହେଲେ ସେ ରହିବ, ଇଚ୍ଛା ନ ହେଲେ ନ ରହିବ, ତୁମେ ତାକୁ ବନ୍ଦ କରିବାକୁ କିଏ ?

ସଦା : ମୁଁ କିଏ ତା' ଆପଣ ବେଶ୍ ଜାଣନ୍ତି । କାହିଁକି ବନ୍ଦ କରୁଛି ତା' ମଧ୍ୟ ଆପଣ ଜାଣନ୍ତି । ସୁତରାଂ ବୃଥା ଗୋଳମାଳରେ କି ଫଳ ?

ଅବି : ମୁଁ ଯଦି ତାକୁ ଘେନିଯାଏଁ ?

ସଦା : ତା'ହେଲେ ମୁଁ ଜବରଦସ୍ତ ବନ୍ଧକରିବି ।

ଅବି : ଆଚ୍ଛା ଦେଖିବି ।

ଏହା କହି ସେ ଗୋଟାଏ ପିସ୍ତଲ ନିଜ ପକେଟରୁ କାଢ଼ିଲା । ତାକୁ ସଦାନନ୍ଦ ବାବୁଙ୍କ ଆଡ଼େ ଦେଖାଇ ସେ କହିଲା—"ଯଦି ତୁମେ ଏତେ ଟିକିଏ ହଲଚଲ ହୁଅ ତାହେଲେ ମୁଁ ଗୁଳି କରିବି ।" ତା'ପରେ ଧାଇକୁ କହିଲା—"ତୁମେ ପଳାଅ, ମଟରରେ ବସ, ମୁଁ ଯାଉଛି ।" ଏହା କହି ସେ ପଛେଇ ପଛେଇ ଦୁଆର ଆଡ଼କୁ ଯିବାକୁ ଲାଗିଲା । ସଦାନନ୍ଦବାବୁ ନିଶ୍ଚେଷ୍ଟ ହୋଇ ବସିରହିଲେ । କ'ଣ କରିବେ; ପିସ୍ତଲଟା ଯେ ଠିକ୍ ତାଙ୍କ ମୁଣ୍ଡକୁ ଅାଁ କରି ଚାହିଁଛି । ମୁଁ ଏସବୁ ଦେଖି ଅବାକ୍ ! ଧାଇଟା ଏହି ସମୟରେ ଚମ୍ପଟ ଦେଲା । ଅବିନାଶ ମଧ୍ୟ ଯାଇ ଦୁଆର ପାଖରେ ହୋଇଗଲାଣି । ଏହି ସମୟରେ ତଳେ ମଚ୍‌ମଚ୍ ଶବ୍ଦ ହେଲା । ସଦାନନ୍ଦବାବୁ ହୋ ହୋ କରି ହସିଉଠିଲେ । ଅବିନାଶ ହାତରୁ ପିସ୍ତଲଟା ଖସିପଡ଼ିଲା । ସେ ପଛକୁ ଚାହିଁଲା । ଦେଖିଲା; ତିନି ଚାରି ଜଣ ସିପାହି ଆଉ ଜଣେ ମୁନ୍‌ସି, ତାଙ୍କ ମଝିରେ ସେ ଧାଇଟା । ଅବିନାଶବାବୁ କାଠପିତୁଳାଟି ପରି ଆସି ଗୋଟାଏ ଚୌକିରେ ବସିପଡ଼ିଲା । ପିସ୍ତଲଟା ସେହିଠାରେ ପଡ଼ି ରହିଲା । ମୁନ୍‌ସି ଆସୁ ଆସୁ ସେଇଟା ଗୋଟାଇ ଆଣି ପଚାରିଲେ—"ଏଇଟା କାହାର ?"

ସଦା : ଅବିନାଶ ବାବୁ ଡାକ୍ତରଙ୍କର ।

ମୁନ୍‌ସି : ଅବିନାଶବାବୁ ଦିନ ଦି'ପହରେ ଗୋଟାଏ ଗୁଳିପୂରା ପିସ୍ତଲ ଘେନି ଆସିଥିଲେ କାହିଁକି ?

ସଦା : ତାଙ୍କର ମୃଗୀ ରୋଗ ଅଛି । ସେ ବେଳେବେଳେ ଦିନରେ ବାଘଭୟ ଦେଖନ୍ତି ।

ସିପାହି ଆଉ ମୁନ୍‌ସି ହସିଉଠିଲେ । ସେତିକିବେଳେ ମନ, ତା'ର ସ୍ୱାମୀ, ଆଉ ବାବାଜି ତିନିହେଁ ଯାକ ଆସି ପହଞ୍ଚିଲେ । ମୁନ୍‌ସି ସେମାନଙ୍କ ଆଡ଼କୁ ଗୋଟାଏ କଡ଼ା ନଜର ଦେଇ ଅବିନାଶବାବୁକୁ ପଚାରିଲେ—"ଆପଣଙ୍କର ଲାଇସେନ୍‌ସ ଅଛି ?" ଅବିନାଶ ପକେଟରୁ ଖଣ୍ଡେ କାଗଜ ବାହାର କରି ଦେଲା । ମୁନ୍‌ସି ତାକୁ ପଢ଼ି ପିସ୍ତଲଟା ଓ କାଗଜ ଖଣ୍ଡିକ ତା' ହାତକୁ ବଢ଼ାଇ ଦେଉଥିଲେ, ଏପରି ସମୟରେ ମନର ସ୍ୱାମୀ ହାତ ବଢ଼ାଇ ପିସ୍ତଲଟା ଦେଖିବା ନାଁରେ ନେଇଗଲେ, ଆଉ ତାକୁ ଭାଙ୍ଗି ତା' ଦେହରୁ ଗୁଳିଗୁଡ଼ାକ ବାହାର କରି ଖାଲି ପିସ୍ତଲଟା ଅବିନାଶକୁ ଫେରାଇଦେଲେ । ଅବିନାଶ ଯନ୍ତ୍ରପିତୁଳି ପରି ତାକୁ ଧଇଲା । ସେ ଏକାବେଳକେ ଜଡ଼—ହାଣିଦେବ ତ ଟୋପାଏ ରକ୍ତ ବାହାରିବ ନାହିଁ ।

ସଦାନନ୍ଦବାବୁ ପଚାରିଲେ—"ଆପଣ କୁଆଡ଼େ ?"

ମୁନ୍‌ସି : ମତେ ଡକାଇପଠାଇଲେ ଯେ ! ମୁଁ ଆସୁଥିଲି, ମୋର ଗୋଟାଏ କାମ ଥିଲା ଏଠି । ଆଚ୍ଛା, ସେଇ କାମଟା ଆଗେ ହେଉ ।

ଏତିକିବେଳେ ଗୋପ ମଧ୍ୟ ଆସି ପହଞ୍ଚି ବସିଲା ।

ମୁନ୍‌ସି ପଚାରିଲେ, "ଏଠାରେ ଚଞ୍ଚଳା ବେଶ୍ୟା କିଏ ?" ତା'ପରେ ସେ ଧାଇ ଆଡ଼କୁ ହାତ ଦେଖାଇ କହିଲେ—"ଏଇ କି ? ଏ ପଳାଇଯାଉଥିଲା, ମୋର ସନ୍ଦେହ ହେବାରୁ ଧରିଆଣିଲି । ଭାବିଲି, ବୋଧହୁଏ ଚଞ୍ଚଳା ବେଶ୍ୟା ମୋ ଆସିବାର ଜାଣି ଏପରି ବେଶରେ ପଳାଇଯାଉଛି ।"

ମନସ୍ୱାମୀ : ଚଞ୍ଚଳା ବେଶ୍ୟା ସାଙ୍ଗରେ ଆପଣଙ୍କର କି ପ୍ରୟୋଜନ ?

ମୁନ୍‌ସି : ପ୍ରୟୋଜନ ? ତୁମେ କିଏ ?

ମନସ୍ୱାମୀ : ମୁଁ ଏ ଘରର ଭଡ଼ାଟିଆ; ସୁତରାଂ ମାଲିକ ।

ମୁନ୍‌ସି : ଓ, ତାହେଲେ ଶୁଣନ୍ତୁ । ଏ ଘରେ ଚଞ୍ଚଳା ବେଶ୍ୟା ଥାଏ, ସେ ଆଉ ଗୋଟାଏ ଲୋକକୁ, ତା'ର ନାମ ଘନଶ୍ୟାମ ଦାସ, ରଖିଥିଲା । ପୁଲିସର ସନ୍ଦେହ ହେବାରୁ ଇନ୍‌କୁଆରି ହେଲା । ଚଞ୍ଚଳା ସେଥିରେ ସେଇ ଲୋକଟାର ପରିଚୟ ସମ୍ବନ୍ଧରେ କେତେଗୁଡ଼ାଏ ସମ୍ବାଦ ଦେଇଥିଲା । ଅନୁସନ୍ଧାନରେ ଜଣାପଡ଼ିଛି, ସେଗୁଡ଼ାକ ସବୁ ମିଥ୍ୟା । ଆମେମାନେ ସମ୍ବାଦ ପାଇଛୁଁ ଯେ ସେ ଲୋକଟା ଗୋଟାଏ ଫେରାର ଦାଗି । ଆଉ ଚଞ୍ଚଳା ସହିତ ଚକ୍ରାନ୍ତ କରି ସେମାନେ କଟକରେ ଡକାଇତି କରିବାର ଉଦ୍ୟୋଗ କରୁଛନ୍ତି ।

ମନସ୍ୱାମୀ : ଏ ସମସ୍ତର ପ୍ରମାଣ ପାଇଛନ୍ତି ?

ମୁନ୍‌ସି : ସେ କଥାରେ ତୁମର ଦରକାର କ'ଣ ? ତୁମେ ଯଦି ଘରର ମାଲିକ ତା'ହେଲେ କହ ଚଞ୍ଚଳା କିଏ ?

ମନସ୍ୱାମୀ : ବଡ଼ ଦୁଃଖର କଥା; ଚଞ୍ଚଳା ବେଶ୍ୟା ଆଜକୁ ପ୍ରାୟ ମାସେ ହେଲା ମରିଯାଇଛି ।

ତାଙ୍କର ନିର୍ଭୀକ ଓ ସ୍ଥିର ଭାବର କଥାଗୁଡ଼ାକ ଶୁଣି ମୁଁ, ଗୋପ, ମନ ଆଉ ବାବାଜି, ସମସ୍ତେ ଚମକି ପଡ଼ିଲୁ । ଅବିନାଶର ଯଦି ଶକ୍ତି ଥାଆନ୍ତା ତାହେଲେ ସେ ମଧ୍ୟ କିଛି ଭାବ ଦେଖାଇଥାନ୍ତା; କିନ୍ତୁ ସେ ଏକାବେଳକେ ନିଷ୍ପନ୍ଦ । ଆମ ଭିତରେ କେବଳ ଧାଇର ମୁହଁରେ ଯାହା ଏ କଥା ଶୁଣି ଟିକିଏ ଚାଞ୍ଚଲ୍ୟ ଆସିଲା । ମୁନ୍‌ସି କଥାଟାକୁ ଅବିଶ୍ୱାସ କରି କହିଲେ— "ମରିଯାଇଛି ? ଆମେ ତ ଏ ସବୁ କିଛି ଶୁଣିନାହୁଁ ?

ମନସ୍ୱାମୀ : ସତ କହିବାକୁ ଗଲେ, ଆପଣମାନେ ଅନେକ କଥା ଶୁଣନ୍ତି ନାହିଁ । ତା' ବୋଲି କ'ଣ ସେ କଥାଗୁଡ଼ାକ ମିଛ ?

ମୁନ୍‌ସି : ଆପଣଙ୍କର ନାମ କ'ଣ ?

ମନସ୍ୱାମୀ : ଆପଣ ମୋର କେଉଁ ନାମଟା ଦରକାର କରନ୍ତି—ସୁନାମ କି ଦୁର୍ନାମ ?

ମୁନ୍‌ସି : ଆପଣ କ'ଣ ନିତାନ୍ତ ବେଜିତ୍ ନହେଲେ ସିଧା କଥା କହିବେ ନାହିଁ ?

ମନସ୍ୱାମୀ : ବେଜିତ୍ କରିବାର ଶକ୍ତି ଅଛି ତ କରନ୍ତୁ ।

ମୁନ୍‌ସି : ମୁଁ ବର୍ତ୍ତମାନ ଆପଣଙ୍କୁ ଗିରଫ କରିବି ।

ମନସ୍ୱାମୀ : କରନ୍ତୁ, ଆପତ୍ତି ନାହିଁ; କିନ୍ତୁ ଆପଣଙ୍କ ପେନାଲକୋର୍ଡର କେଉଁ ଧାରା ଅନୁସାରେ ।

ତା'ପରେ ମୁନ୍‌ସି କହିଲେ—"ଓ ସିପାଇ, ତୁମ୍ ଲୋକ ସବ୍ ଇସ୍‌ସେ ଯୋ କୋଇ ଚଞ୍ଚଳା ମାହାରୀ, ଔର ଘନଶ୍ୟାମ ଦାସ୍ ହେ, ଇନ୍‌କୋ ପକଡ଼ୋ ।" ସିପାହିମାନେ ଥରେ

ଥରେ ନିଜ ନିଜ ମୁହଁକୁ, ଥରେ ଥରେ ଆମ ସମସ୍ତଙ୍କ ମୁହଁକୁ ଚାହିଁ କାବାଙ୍କ ଭଳିଆ ହେଲେ । ଅସଲ କଥାଟା କ'ଣ ନା, ମୁନ୍‌ସି ସାହେବ ଓ ସିପାହି ସମସ୍ତେ ଆମର ଅପରିଚିତ ।

ଏଇ ସମୟରେ ସଦାନନ୍ଦବାବୁ ଅବିନାଶବାବୁଙ୍କ ବିରୁଦ୍ଧରେ ସମସ୍ତ କଥା ମୁନ୍‌ସିଙ୍କୁ କହିଲେ ।

ଅବି : ମୁନ୍‌ସିବାବୁ, କ୍ଷମା କରିବେ । ଆପଣଙ୍କର ବୋଧହୁଏ ମନେନାହିଁ; ଏତଲାଟା ଲେଖିନେଲା ପରେ ପ୍ରମାଣ ନେବାର କଥା ଆସି ପଡ଼େ ।

ଆଉ ବିଳମ୍ବ ନକରି ମୁନ୍‌ସିବାବୁ ସଦାନନ୍ଦବାବୁଙ୍କ କହିବା ଅନୁସାରେ ଏତଲାଟି ଲେଖିନେଲେ । ପ୍ରମାଣ ଚାହିଁଲେ । ପ୍ରଥମ ସାକ୍ଷୀ ମୁଁ; ତେଣୁ ମତେ ପଚରାହେଲା, ମୁଁ ଯାହା ଜାଣିଥିଲି ସବୁ କହିଲି । ହରିକୃଷ୍ଣବାବୁଙ୍କ ଔଷଧ ଶିଶିଟା କୁଆଡ଼େ ଗଲା ବୋଲି କହିଲାବେଳେ ମୋର ମନେପଡ଼ିଗଲା—କାଲି ଘରୁ ବାହାରିଗଲା ସମୟରେ ନର୍ଦ୍ଦମାରେ ଗୋଟାଏ ଶିଶି ପଡ଼ିଥିବାର ଦେଖିଥିଲି । ମୁଁ ସେକଥା କହିଲି । ଜଣେ ସିପାହି ଯାଇ ସେ ଭଙ୍ଗା ଶିଶିଟାକୁ ଘେନି ଆସିଲା । ଅଧେ ଭାଙ୍ଗି ଯାଇଛି । ବୋଧହୁଏ ପଡ଼ିଲାବେଳେ ନର୍ଦ୍ଦମା ନାଳଦାଢ଼ରେ ପେଟବାଗିଆ ବାଜି ଅଧେ ଭାଜିଗଲା, ଆଉ ଅଧକ ନର୍ଦ୍ଦମାରେ ପଡ଼ିଲା । ସଦାନନ୍ଦବାବୁ ଶିଶିଟା ନେଇ ଔଷଧ ଭିତରେ ହାତ ଲଗାଇ କହିଲେ, "ହଁ, ଏଇ ଠିକ୍ ଔଷଧ ।" ସେ ଶିଶିଟାରେ ମଧ୍ୟ ଲେବଲ୍ ଥିଲା, ତାହା ହରିକୃଷ୍ଣବାବୁଙ୍କ ଲେବଲ୍ ।

ମୁନ୍‌ସିବାବୁ ଭଙ୍ଗା ଶିଶିଟି ଔଷଧ ସହିତ ଯତ୍ନରେ ଗଣ୍ଠିଧନ ପରି ପାଖରେ ରଖିଲେ । ତା'ପରେ ସଦାନନ୍ଦ ବାବୁଙ୍କ ପାଳି । ସେ ଯାହା ମତେ କହିଥିଲେ, ସବୁ କହିଗଲେ । ତା'ପରେ ଗୋପ ଓ ଶେଷରେ ସଦାନନ୍ଦବାବୁଙ୍କର ଇଜ୍ହାର ହେଲା । ଇଜ୍ହାର ଶେଷରେ ସଦାନନ୍ଦବାବୁ ଦୁଇ ଖଣ୍ଡି ବ୍ୟବସ୍ଥା କାଗଜ ଓ ବିଷାକ୍ତ ଔଷଧ ଶିଶିଟା ମୁନ୍‌ସି ହାତକୁ ବଢ଼ାଇଦେଲେ । ମୁନ୍‌ସି ସେଗୁଡ଼ିକ ଯତ୍ନରେ ରଖି କହିଲେ—"ଏ ସବୁ ତ ହେଲା, କିନ୍ତୁ ଉଦ୍ଦେଶ୍ୟ ଅର୍ଥାତ୍ Motiveଟା ତ କିଛି ଜଣାପଡ଼ିଲା ନାହିଁ ।"

ଅବଧୂତ (ମନ ସ୍ୱାମୀ) : ମୁନ୍‌ସିବାବୁ, ମୋଟିଭ୍ ନେଇ ମୋକଦମା ବିଚାର କରାଯାଏ ନାହିଁ, ଆପଣ ବୋଧହୁଏ ଜାଣନ୍ତି । ଜାଣି ମଧ୍ୟ ବିନା ମୋଟିଭରେ ଯଦି ଆପଣ ଚାର୍ଜସିଟ୍ ନେବାକୁ ଅସ୍ୱୀକୃତ ହୁଅନ୍ତି, ତାହେଲେ ମୁଁ କହୁଛି ଯେ, ଅବିନାଶବାବୁ ଡାକ୍ତରଙ୍କ ଆଦେଶ ଅନୁସାରେ ମତେ ମୋହିନୀ ଦାସୀ ଏ ଔଷଧ ମୋ ପ୍ରତି ପ୍ରୟୋଗ କରିବାକୁ ଯାଇଥିଲେ । ଆଉ ଏ ବିନାଶ ସାଧନ ନିମନ୍ତେ ଇଚ୍ଛା କରିବାର କାରଣ ଯଥେଷ୍ଟ ଥିଲା, ଯାହାକି ମୁଁ ଆପଣଙ୍କୁ କହିବାକୁ ନାରାଜ । ବିଚାର ସମୟରେ କୋର୍ଟରେ କହିବି । ଆଉ ଯା ମଧ୍ୟରେ ବିଷାକ୍ତ ଔଷଧ ଶିଶି ଲେବଲ୍‌ଟା କା' ହାତର ଲେଖା, ତାହା ଟିକିଏ ଅନୁସନ୍ଧାନ କଲେ ଆପଣ ଅନେକ କଥା ଜାଣିପାରିବେ ।

ମୁନ୍‌ସି : କିନ୍ତୁ ଏ ଔଷଧ ଯେ ବିଷାକ୍ତ ତା'ର ପ୍ରମାଣ କ'ଣ ?

ସଦା : ମୁନ୍‌ସିବାବୁ, ଆପଣ କଟକରେ ନୂଆ ହେଲେ ମଧ୍ୟ ମତେ ଜାଣନ୍ତି । ମୁଁ ଔଷଧପତ୍ର ସମ୍ବନ୍ଧରେ କିଛି କିଛି ଜାଣେ । ମୁଁ ଶପଥ କରି କହୁଛି ଯେ ଏ ଔଷଧ ବିଷାକ୍ତ ।

ଆପଣ ମୋ କଥାରେ ବିଶ୍ୱାସ କରନ୍ତୁ । ଯଦି ଏଥିରେ କିଛି ଭଲମନ୍ଦ ଘଟେ ତା'ହେଲେ ସେ ଦାୟିତ୍ୱ ମୋର ।

ଅବି : ଆପଣ ମୋର ଡାକ୍ତରି ସମ୍ବନ୍ଧରେ ସବୁ ଶୁଣିଛନ୍ତି । ମୁଁ କହେଁ, ଏ ଔଷଧ ବିଷାକ୍ତ ନୁହେଁ ।

ସଦା : ତାହେଲେ ଆପଣ ସ୍ୱୀକାର କରନ୍ତୁ ଯେ ଏ ଔଷଧ ଆପଣ ଦେଇଥିଲେ ।

ଅବି : ନାଁ, ତା' କାହିଁକି ସ୍ୱୀକାର କରିବି ? ମୁଁ ଦେଇନାହିଁ ।

ସଦା : ତାହେଲେ ଆପଣ କିପରି ଜାଣିଲେ ଯେ ଏ ବିଷାକ୍ତ ନୁହେଁ ?

ଅବିନାଶ ଥାଥା-ମାମା ହୋଇଗଲା; କି ଉତ୍ତର ଦେବ ଠଉରେଇ ପାରିଲା ନାହିଁ । ମୁନ୍‌ସି ମଧ୍ୟ ତା'ର ନୀରବତା ଦେଖି ସନ୍ତୁଷ୍ଟ ହୋଇ କହିଲେ—"ମନମୋହିନୀ ଦାସୀ, ବିଷାକ୍ତ ଔଷଧ ପ୍ରୟୋଗ କରିବା ଅପରାଧରେ ମୁଁ ତୁମକୁ ଦଣ୍ଡବିଧି ଆଇନର ୩୦୦... ୩..."

ଅବଧୂତବାବୁ ପଢ଼ାଇଲେ "୩୦୭, ୩୨୮ ଧାରାରେ ।" ମୁନ୍‌ସିବାବୁ ପଢ଼ିଲେ "୩୦୭ ଓ ୩୨୮ ଧାରାରେ ତୁମକୁ ଗିରଫ କଲି । ତୁମେ ବର୍ତ୍ତମାନ ଯାହା କହିବ ତାହା ତୁମ ବିରୁଦ୍ଧରେ ନିଆଯାଇ ପାରିବ, ସାବଧାନ କଲି ।" ତା'ପରେ ଅବଧୂତ ବାବୁଙ୍କୁ ଚାହିଁ ସେ କହିଲେ—"କିନ୍ତୁ ଅବିନାଶବାବୁଙ୍କ ବିରୁଦ୍ଧରେ ସେପରି କିଛି ପ୍ରମାଣ ନାହିଁ ?"

ଗୋପ : ପ୍ରମାଣ ଅଛି । ବିଷାକ୍ତ ଶିଶି ଲେବଲ୍‌ରେ ଯେ ହସ୍ତାକ୍ଷର, ତାକୁ ମୁଁ ଚିହ୍ନେ । ସେ ମହେନ୍ଦ୍ର କୁମାର ଘୋଷର ।

ମୁନ୍‌ସି : ମହେନ୍ଦ୍ର କୁମାର ଘୋଷ କିଏ ?

ଗୋପ : ସେ ମେଡ଼ିକାଲ ସ୍କୁଲର ଜଣେ ଛାତ୍ର ଓ ଅବିନାଶ ବାବୁଙ୍କ ଦ୍ୱାରା ପ୍ରତିପାଳିତ ।

ମୁନ୍‌ସି : ତାହେଲେ ମଧ୍ୟ ଗିରଫ କରିବା ଭଳି ପ୍ରମାଣ ଅବିନାଶ ବାବୁଙ୍କ ବିରୁଦ୍ଧରେ ନାହିଁ ।

ମୁଁ : ତା' ଦରକାର ନାହିଁ । ମୁଁ ଆଉରି ଗୋଟାଏ ଅଭିଯୋଗ ତାଙ୍କ ବିରୁଦ୍ଧରେ କରୁଛି ।

ଏହା କହି ମୁଁ କାଲି ରାତିର ବୃତ୍ତାନ୍ତ ସବୁ ତାଙ୍କ ଆଗରେ କହିଲି । ସେ ସବୁ ଲେଖିନେଲେ । ତା'ପରେ ମନୋରମାର ଇଜ୍‌ହାର । ତା' କଥାରୁ ଜଣାପଡ଼ିଲା ଯେ, ସେ ଦିନେ ରାତି ନଅଟା ଗାଡ଼ିରେ ପୁରୀ ଗଲା । ଇଚ୍ଛା ଥିଲା ତା'ର ମଉସା ଆସି ସେଠି ନୂଆ ଓକିଲାତି କରୁଛନ୍ତି, ତାଙ୍କ ପାଖକୁ ଯିବ । ତାଙ୍କର ବସା ହେରାଗଉରୀ ସାହିରେ ବୋଲି ସେ ଆଗରୁ ଜାଣିଥିଲା; କିନ୍ତୁ ପୁରୀ ଷ୍ଟେସନରେ ଯାଇ ପହଞ୍ଚିଲାବେଳକୁ ହେଲା ନିର୍ଧୁମ ବର୍ଷା । ଓହ୍ଲାଇ ଗାଡ଼ି ଖୋଜୁ ଖୋଜୁ ଦେଖିଲେ ଯେ ଖଣ୍ଡିଏ ମାତ୍ର ମଟର ଥିଲା । ସେଥିରେ ପୁଣି ଜଣେ ଭଡ଼ାଟିଆ ଆଗରୁ ବସିଛି । ଏ ହେରାଗଉରୀ ସାହିକୁ ଗାଡ଼ି ଭଡ଼ା ଖୋଜିବାର ଦେଖି ସେ ଭଡ଼ାଟିଆ ଜଣକ ଡାକି କହିଲା—ଆସ, ଏଇଥିରେ ତୁମକୁ ନେଇ ହେରାଗଉରୀ ସାହିରେ ପହଞ୍ଚାଇ ଦେଇ ମୁଁ ମୋ ବସାକୁ ଯିବି । କ'ଣ କରିବ, ଆଉ କିଛି ଉପାୟ ନଦେଖି ସେ

ମଟରରେ ବସିଲା । ହରଚଣ୍ଡୀ ସାହି ନକଟରେ ପହଞ୍ଚି ତଲାସ କରିବାରେ ଜଣାଗଲା ଯେ, ତା' ମଉସା ପସରା ଟେକି କଟକ ଚାଲିଯାଇଛନ୍ତି । ସେହି ଭଡ଼ାଟିଆର କଥାରେ ସେ ତା' ବସାରେ ସେ ରାତି ରହିବାକୁ ବାଧ୍ୟ ହେଲା । ତା'ପରେ ଦୁହେଁଯାକ କଟକ ଆସିଲେ । ସେ ଭଡ଼ାଟିଆ ଅର୍ଥାତ୍ ଅବିନାଶବାବୁ ମନୋରମାକୁ ପ୍ରଥମେ ଆଣି ତେଲେଙ୍ଗା ବଜାର ବେଶ୍ୟା ପଲ୍ଲୀରେ ଜଣେ ବେଶ୍ୟା ଘରେ ରଖାଇଲା । ସନ୍ଧ୍ୟାବେଳେ ବୁଲିଗଲାବେଳେ ଦିନେ ହଠାତ୍ ମନୋରମା ତା'ର ସ୍ୱାମୀଙ୍କୁ କାଠଯୋଡ଼ି ବନ୍ଧରେ ଦେଖିବାକୁ ପାଇଲା । ତା'ର ସ୍ୱାମୀ ମଧ୍ୟ ତାଙ୍କୁ ଦେଖଛନ୍ତି । ସ୍ୱାମୀଙ୍କୁ ଦେଖି ସେ ତାଙ୍କ ପାଖକୁ ଯିବାପାଇଁ ଇଚ୍ଛାକଲା । ଅବିନାଶ ଅବଧୂତ ବାବୁଙ୍କୁ ଭଲକରି ଦେଖିନେଇ କହିଲା—"ବର୍ତ୍ତମାନ ଏପରି ଅବସ୍ଥାରେ ତାଙ୍କ ସଙ୍ଗେ ଦେଖାକଲେ ଗୋଟାଏ ଗଣ୍ଡଗୋଳ ହୋଇପାରେ । ମୁଁ ଆଗ ତାଙ୍କ ପାଖକୁ ଯାଇ ସବୁକଥା ଫିଟାଇ କହିବି, ତା'ପରେ ତୁମକୁ ନେଇ ଭେଟ କରାଇଦେବି ।"

ଏପରି ଭୁଲାଭୁଲି କରି ତାଙ୍କ ମଟର ସଫା କରିବା ଟୋକାକୁ ସେଠାରେ ରଖାଇଦେଇ ମନୋରମାକୁ ମଟରରେ ନେଇ ପିଟିନ୍‌ସାହୀ ଗଳି ଭିତରେ ରଖାଇଲା । ତା'ପରେ ଧବଳେଶ୍ୱର ଯିବା କଥା ସବୁ କହିଲା । ଏହିପରି ଭାବରେ ମନୋରମାର ଇଝାର ସରିଲା ପରେ ଅବଧୂତ ବାବୁଙ୍କର ଓ ସର୍ବଶେଷରେ ମୋ ସ୍ୱାମୀଙ୍କର । ହାୟ ମୋ ସ୍ୱାମୀ !

ମୁନ୍‌ସିବାବୁ ଏସବୁ ଲେଖିନେଲା ପରେ ହଠାତ୍ ଅବିନାଶ କହିଉଠିଲା—"ମୁନ୍‌ସି ବାବୁ ! ଏସବୁ ମିଛ, ଏମାନଙ୍କ କଥା ବିଶ୍ୱାସ କରନ୍ତୁ ନାହିଁ । ଏଇ କମଳା ବୋଲି ଯାହାକୁ କହୁଛନ୍ତି, ସେ ହେଉଛି ଚଞ୍ଚଳା ବେଶ୍ୟା; ଆଉ ଅବଧୂତ ବୋଲି ଯାହାକୁ କହୁଛନ୍ତି, ସେ ହେଉଛି ଘନଶ୍ୟାମ ଦାସ । ମନୋରମା କଳଙ୍କିନୀ, ଆଉ ଏ ବାବାଜି ତା'ର ପ୍ରେମ ପ୍ରତ୍ୟାଶୀ ।"

ଅବଧୂତ ବାବୁ ଗର୍ଜନ କରିଉଠି କହିଲେ—"ସାବଧାନ, ନରପିଶାଚ ! ତୁ ଯଦି ତୋର ଏ ପାପମୁଖରେ ଏ ଦେବୀମାନଙ୍କ ନାମ ଧରୁ, ତାହେଲେ ତୋର ମୁହଁ ଭାଙ୍ଗିଦେବି ।" ଏହା କହି ସେ ଏକ ମୁଥ ନେଇ ଅବିନାଶର ପାଟି ପାଖରେ ଧଇଲେ । କୁକୁରକୁ ଠେଙ୍ଗା ଉଠାଉ ଉଠାଉ ସେ ଯେପରି ଚିତ୍କାର କରିଉଠେ, ଅବିନାଶ ସେହିପରି 'ମରିଗଲି' 'ମରିଗଲି' ବୋଲି ଚିତ୍କାର କରିଉଠିଲା । ତା'ପରେ ଅବଧୂତବାବୁ ମୁନ୍‌ସିଙ୍କୁ ଚାହିଁ କହିଲେ—"ମହମ୍ମଦ ହୋସେନ, ମୋର ନାମ ତୁମର ପରିଚିତ ବୋଲି ଲାଗୁଥିଲା ପରା, ଏବେ ଶୁଣ, ମୋର ନାମ ଅବଧୂତ ଚରଣ ମହାପାତ୍ର, ଡି. ଏସ . ପି . ସି . ଆଇ . ଡ଼ି., ନାମଟା ସ୍ମରଣ ହୁଏ ?"

ମୁନ୍‌ସିଙ୍କ ମୁହଁ ଲାଲ ପଡ଼ିଗଲା । ସେ ଉଠି ସଲାମ୍ କଲେ । ସାଙ୍ଗେ ସାଙ୍ଗେ ସିପାହିଗୁଡ଼ାକ ପାଦ ଏକାଠି କରିଦେଇ ସଲାମ କରିଉଠିଲେ । ମୁନ୍‌ସି ଆଉ ଦ୍ୱିରୁକ୍ତି ନ କରି ଅବିନାଶକୁ ଗିରଫ କଲେ, ତା'ପରେ ମୁଣ୍ଡ କୁଣ୍ଡାଇ କୁଣ୍ଡାଇ ଭୀତ କମ୍ପିତ ସ୍ୱରରେ ପଚାରିଲେ—"ଚଞ୍ଚଳା ବେଶ୍ୟା ଓ ଘନଶ୍ୟାମ ଦାସଙ୍କ ସମ୍ବନ୍ଧରେ କ'ଣ କରିବି ?"

ଅବଧୂତ : ରିପୋଟ୍ କର—ଏପରି ନାମର କୌଣସି ଲୋକକୁ ଖୋଜି ପାଇଲୁ ନାହିଁ ।

ମୁନ୍‌ସି ଏ କଥା ଶୁଣି ସଲାମ କରି ଆସାମୀ ଘେନି ଚାଲିଗଲେ ।

●

# କୋଡ଼ିଏ

ଏସବୁ ଗୋଳମାଳ ତୁଟିଲାବେଳକୁ ପ୍ରାୟ ତିନିଟା ବେଳ । ଏପର୍ଯ୍ୟନ୍ତ ଆମେ ସବୁ କେହି ତୁଣ୍ଡରେ ଆହାର ଦେଇନାହୁଁ । ମନୋରମା ଆଉ ମୁଁ କାଲି ସାରା ରାତି ଅନିଦ୍ରା । ପୁଣି ତା' ଉପରେ ଯାହା ସବୁ ଭୋଗିଛି, ସେଥିରେ ଦେହଟା ଆସ୍ତେ ଆସ୍ତେ ଅବସନ୍ନ ହୋଇଆସିଲା; କିନ୍ତୁ ଅବସନ୍ନ ହୋଇ ପଡ଼ିରହିଲେ ତ କାମ ଚଳିବ ନାହିଁ । ରନ୍ଧାବଢ଼ା ପାଇଁ ବେଳ ନାହିଁ, ଜଳଖିଆ ଅଣେଇ ଖାଉଁ ଖାଉଁ ପ୍ରାୟ ସାଢ଼େ ଚାରି । ପୁରୁଷ ପଞ୍ଚାକ ଦାଣ୍ଡଆଡ଼େ ଗଲେ; ଆମେ, ଅର୍ଥାତ୍ ମନୋରମା ଓ ମୁଁ, ଟିକିଏ ଟିକିଏ ଶୋଇପଡ଼ିବାର ଉଦ୍ୟମରେ ରହିଲୁଁ । ଶେଯରେ ପଡ଼ିଲୁ ସତ, କିନ୍ତୁ ନିଦ ହୁଏ କାହାକୁ ? ମନ ତ ଆନନ୍ଦରେ ବିଭୋର ! ମନୋରମା ସୁଖର କଳ୍ପନା କରୁ କରୁ ତା'ର ବେଳ ଶେଷ । ଥରେ ଥରେ ଯାଇ ଝରକା ବାଟେ ଚାହିଁଦେଇ ଆସୁଥାଏ ବାହାରକୁ । ମୁଁ ସମ୍ଭାଳି ନପାରି କହିଲି—"ମରଣ ନାହିଁ ତତେ ଲୋ ଅଣ୍ଡିରାଚଣ୍ଡୀ ! ମାସେ କି ଦେଢ଼ମାସ ହେଲା ୟାଙ୍କୁ ଛାଡ଼ି ଏଣେତେଣେ ବୁଲିଲୁ । ଆଉ ଆଜି ଘଣ୍ଟାଟାଏ ଅନ୍ତର ହୋଇଗଲେ ପ୍ରାଣ ଛାଡ଼ିଯାଉଛି କିଆଁ ?"

ମନ : ସତଲୋ କମନାନୀ, ମୁଁ ବଡ଼ ନିଷ୍ଠୁର ପ୍ରାଣ ଘେନି ୟାଙ୍କୁ ଛାଡ଼ି ଆସିଥିଲି; କିନ୍ତୁ ଘରୁ ବାହାରି କଟକ ଆସିଲାବେଳକୁ ରାଗ ମରିଯାଇଥିଲା । ମୁଁ ୟାଙ୍କର ଯେଉଁ ନୀରସତା ଦେଖି ୟାଙ୍କ ଉପରେ ରାଗିଥିଲି, ଭଲ ଅଳଙ୍କାର, ଭଲ ଲୁଗାପଟା, ଭଲ ସାଜସଜା ହେବାରେ ୟାଙ୍କର ଯେଉଁ ମନାକୁ ମୁଁ ଅତ୍ୟାଚାର ଭାବି ଘର ଛାଡ଼ି ଚାଲିଆସିଥିଲି, ୟାଙ୍କର ଯେଉଁ ସଂଯମ ଆଉ ଚିତ୍ତଦମ୍ଭକୁ ମୁଁ ସ୍ନେହ ନ ଥିବାର ଚିହ୍ନ ବୋଲି ଭାବୁଥିଲି, ସେ ସବୁ ମୋ ଆଖିରେ ପରମ ପବିତ୍ର ପ୍ରେମର ସଙ୍କେତ ପରି ଦେଖାଗଲା । ମୁଁ କେବେ ବେଶ୍ୟା ଦେଖି ନଥିଲି । ଏ ତେଲେଙ୍ଗା ବଜାର ବେଶ୍ୟାପଲ୍ଲୀରେ କିଛିଦିନ ରହି ମୁଁ ଦେଖିଲି—ପ୍ରକୃତରେ ଏଇ ସାଜସଜା ବେଶଭୂଷା ହିଁ କେବଳ ବେଶ୍ୟାର ସମ୍ବଳ । ପୁରୁଷଗୁଡ଼ାକ ସୌନ୍ଦର୍ଯ୍ୟ ଦେଖନ୍ତି ନାହିଁ, ଯୌବନ ଦେଖନ୍ତି ନାହିଁ, ଦେଖନ୍ତି କେବଳ ରଙ୍ଗଢଙ୍ଗ, ଚକଚାକ୍ । ମୁଁ ଦେଖିଛି, ସୁନ୍ଦରୀ ଯୁବତୀଟିଏ ସାଦାଲୁଗା ଖଣ୍ଡିଏ ପିନ୍ଧି ନିରାଭରଣା ହୋଇ ଠିଆହୋଇଛି, ଆଉ ତା' ପାଖରେ ବେଶଭୂଷା ଦାଉରେ ଚକ୍‌ଚାକ୍ ପ୍ରୌଢ଼ା—ଦାଣ୍ଡରେ ଯାଉଥିବା ଲୋକମାନଙ୍କର ଦୃଷ୍ଟି ସେହି ପ୍ରୌଢ଼ା ଉପରେ । ଯୁବତୀଟି ଯେ ହୃଦୟପୂରା ଆକାଙ୍‌କ୍ଷା, ଜଗତଭରା ଯୌବନ, ଆଉ ମୁନି-ବାଗୁରା ରୂପ ଘେନି ଠିଆହୋଇଛି, ତେଣେ କାହିଁ କଦବା ଜଣେଅଧେ ପ୍ରକୃତ ମନୁଷ୍ୟ ଦୃଷ୍ଟି ଦେଉଥିବେ । ଏସବୁ ଦେଖି ଭାବିଲି, ପ୍ରକୃତରେ ବେଶଭୂଷା ବେଶ୍ୟାର ସମ୍ବଳ । କୁଳକାମିନୀର ସେଥିରେ ପ୍ରୟୋଜନ କ'ଣ ? କୁଳସ୍ତ୍ରୀ ଯଦି ଭାବେ ଯେ ସେ ବେଶଭୂଷାରେ ସ୍ୱାମୀଙ୍କୁ ମୁଗ୍ଧ କରି ରଖିବ ବୋଲି, ତାହେଲେ ସେ ସ୍ୱାମୀଙ୍କ ପ୍ରତି ଘୋର ଅପମାନ । ଅସଂଯତ ହୃଦୟର, ଦୁର୍ବଳ ଚିତ୍ତର ସେ ଉଦାହରଣ ଅବିନାଶବାବୁ ଦେଖାଇଲେ, ସେଥିରୁ ମୁଁ ବୁଝିପାରିଲି—ପ୍ରକୃତ ପ୍ରେମ କଦାପି ଅସଂଯତ ହୋଇପାରେ ନାହିଁ ।

ମୁଁ ମନୋରମାର ଏସବୁ ଅଭିଜ୍ଞତାର କଥା ଶୁଣି ତାକୁ ପ୍ରଶଂସା ନକରି ରହିପାରିଲି ନାହିଁ । ତା'ପରେ ସେ ପୁଣି କହିବାକୁ ଲାଗିଲା—"ରୂପଲାଳସା ରକ୍ତଟାକୁ ଗରମ କରିଦିଏ,

ମନଟାକୁ ଚଞ୍ଚଳ କରିଦିଏ, ସେହି ହେତୁରୁ କାମୁକ ଏତେ ବେଶି ପ୍ରେମର କଥା—ପ୍ରେମିକାର ପ୍ରଶଂସା ଗାଇପାରେ; କିନ୍ତୁ ଯେ ସ୍ଥାନରେ ପ୍ରେମ ରୂପ-ଲାଳସାର ବଶବର୍ତ୍ତୀ ନୁହେଁ, ଯେଉଁଠାରେ ପ୍ରେମ ପାଇଁ ହୃଦୟ,ହୃଦୟର ମିଳନ, ସେଠାରେ ଭାବ ଗଙ୍ଗାଯମୁନାର ସଙ୍ଗମ ପରି ଗଭୀର ଓ ସ୍ଥିର । ଦାଉରେ ପଡ଼ି ଏକଥା ମୁଁ ଶିଖିଛି । କମଳାନି, ମୋର ସ୍ୱାମୀ ସ୍ୱର୍ଗର ଦେବତା; କିନ୍ତୁ ସେ ବଡ଼ ଜିଦଖୋର, ଯାହା ବୁଝିଥିବେ ସେଥିରୁ ତିଳେହେଲେ ଟଳିବେ ନାହିଁ । ସେହି ହେତୁରୁ ତ ମୋର ଏ ଅବସ୍ଥା । ସେ ମୋତେ ମନାକରିଥିଲେ ଗୁଡ଼ାଏ ରଙ୍ଗଢଙ୍ଗରେ ବେଶ ହେବାକୁ । ମୁଁ ତାଙ୍କ ମନା ନମାନି ଦିନେ ବେଶ ହୋଇ ବସିଲି । ଏହା ଦେଖି ସେ ବିରକ୍ତ ହୋଇ କହିଲେ—"ବେଶଭୂଷା ରଙ୍ଗଢଙ୍ଗ ବେଶ୍ୟାକୁ ସାଜେ, ଭଦ୍ରଲୋକ ଘରେ ତା' ସମ୍ଭବ ନୁହେଁ । ତା' ପ୍ରତି ଯଦି ଏତେ ମନ, ତା'ହେଲେ ବଡ଼ଦାଣ୍ଡରେ ଯଥେଷ୍ଟ ଜାଗା ଅଛି ।" ଏତିକି କହି ସେ ଚାଲିଗଲେ । ମୋ ମନରେ ବଡ଼ ଆଘାତ ଲାଗିଲା । ସେ ମୋର ସ୍ୱାମୀ—ଇହକାଳ ପରକାଳର ଦେବତା । ସେ ଯଦି ମତେ ଏଇ ଲଘୁ ଦୋଷରେ ବେଶ୍ୟା ବୋଲି କହିଲେ, ବଡ଼ଦାଣ୍ଡରେ ବସିବାକୁ ଇସାରା ଦେଲେ, ତାହେଲେ ମୁଁ ଆଉ କାହାକୁ ନେଇ ଘର କରିବି ? ମୋ ଜୀବନରେ ଆଉ କି ସୁଖ ? ସେ ମୋତେ ଦି'ଟା ମାରିଥିଲେ ମୁଁ ଆନନ୍ଦରେ ସହିଥାନ୍ତି; କିନ୍ତୁ ଏତେବଡ଼ କଥା ସେ ଅକାତରରେ କହିଦେଇଗଲେ—ଏଇଆ ଭାବି ମୁଁ ଅଭିମାନରେ ସେ ଦିନ ପଳାଇ ଆସିଥିଲି; କିନ୍ତୁ ଆଜି ଦେଖୁଛି, ତାଙ୍କର ସେ ଜିଦ୍ ନାହିଁ, ନିଜ ମତ ଉପରେ ସେପରି ଜିଗର ନାହିଁ, ସମସ୍ତଙ୍କ କଥା ଶୁଣିବାକୁ ସେ ପ୍ରସ୍ତୁତ ! ତାଙ୍କ ହୃଦୟର ସେ ଆକାଶଚୁମ୍ବୀ ପର୍ବତ ଶିଖର କିଏ ଯେପରି ଭାଙ୍ଗି ସମତଳ କରିଦେଇଛି, ଯାହା ମୁଁ ଦି'ବର୍ଷ ଲାଗି କରିପାରିନଥିଲି । ତୁ କି ମନ୍ତ୍ର ପଢ଼ି ତାହା ମାସ ଗୋଟାକରେ କରିଦେଲୁ ? ସେ ଥିଲେ ନିଦାଘ ମଧ୍ୟାହ୍ନର ସୂର୍ଯ୍ୟ ପରି ପ୍ରଖର, ଅସହ୍ୟ, ଦାହକର; କିନ୍ତୁ ଆଜି ଯେ ସେ ଶାରଦୀୟ ଜ୍ୟୋତ୍ସ୍ନା ପରି ଶୀତଳ, ପ୍ରାଣତୃପ୍ତି କର ! ଏ ପରିବର୍ତ୍ତନ କି ମନ୍ତ୍ରବଳରେ ଆଣିଲୁ ମତେ କହିବୁ ନାହିଁ କମଳାନୀ ? ମୁଁ ତୋର ସାନଭଉଣୀ ନା, ତୁ ମୋର ନାନୀ ନା ? ସତରେ ତୁ ମୁଁ ଆର ଜନ୍ମରେ ଦି' ଭଉଣୀ ଥିଲେଇଁ । ତା' ନହେଲେ ତୁ ମୋ ପାଇଁ ଏତେ କରନ୍ତୁ ? ମୁଁ ବଡ଼ ଭାଗ୍ୟବତୀ—ଏପରି ସ୍ୱର୍ଗଦୁର୍ଲ୍ଲଭ ସ୍ୱାମୀ ଦେବତା ଯାହାର, ସେ ଭାଗ୍ୟବତୀ ନୁହେଁ ? ଏତେ ସୁଖ—ଏତେ ପ୍ରେମ ଯାହାର, ସେ..."

ମୁଁ ଆଉ ସମ୍ଭାଳି ପାରିଲି ନାହିଁ । ତା'ର କଥା କହିବା ଛଟା ଦେଖି ତ ମୋର ହଂସା ଉଡ଼ିଯାଇଥିଲା । 'ଶାରଦୀୟ ଜ୍ୟୋତ୍ସ୍ନା', 'ନିଦାଘ ମଧ୍ୟାହ୍ନର ସୂର୍ଯ୍ୟ'—ବାପରେ ବାପ ! ଏ ଯେ ପଣ୍ଡିତଙ୍କ ପାଖରୁ ସାହିତ୍ୟ ସୋପାନ ପଢ଼ିଲା ପରି ଲାଗୁଛି । ମାଇପିଗୁଡ଼ାଙ୍କ ତୁଣ୍ଡରେ ଏ କି କଥା ମ ! ମୁଁ ବାଧାଦେଇ କହିଲି—"ତୁ ପୋଡ଼ିଯା, ତୋ କଥା ପୋଡ଼ିଯାଉ । ସଂସାରରେ ଆଉ କାହାର ଯିମିତି କିଛି ଦୁଃଖ ନାହିଁ, ଖାଲି ବସି ତୋରି କଥା ଶୁଣୁଥିବି ।"

ମନ : ଓଃ, ତୋର ପୁଣି ଦୁଃଖ ? ବାବାଜି ମାତାଙ୍କର ଦୁଃଖ କ'ଣ ?

ମୁଁ : ଦୁଃଖ ଯେ ତୋ ମୁହଁରେ ଲୁଣ୍ଠେ ନିଆଁ ଦେଇ ପାରିଲି ନାହିଁ ।

ମନ : ଓହୋ—ହୋ, ବୁଝିଛି ! ବୁଝିଛି !

ଏହା କହି ସେ ନିର୍ଲଜ୍ଜୀଟା ବୁଢ଼େ ନାଚିଗଲା ସେ ଘରେ । ତା'ପରେ ଆସି ମତେ କହିଲା—"ମାତାଜି ! ତୁମର ଗୋଟାଏ ରୋଗ ହୋଇଛି ।"

ମୁଁ : ତୁ ମର ।

ମନ ମୋ ଓଠଟା ଧରି ପକାଇ କହିଲା—"ମୁଁ ପ୍ରତିକାର ଜଣେ ।"

ମୁଁ : ତ ସଅଳ ହୋଇ ଯମଘରକୁ ଯା ।

ମନ 'ଯାଉଛି' ବୋଲି କହି ସେହିପରି ନାଚିନାଚି ଦେଲା ଚମ୍ପଟ । ମୁଁ ତା'ର ଏ ଆନନ୍ଦ ଆଉ ଫୁର୍ତ୍ତିରୁ କିଛି ବୁଝିପାରିଲି ନାହିଁ । ମୁଁ ମୋ ଭାଗ୍ୟକଥା ବସି ଭାବୁଛି ମନରେ, ଆଉ ମୋର ଆଢି ଉପରେ ଦେଖିବାକୁ ଗଲେ ଏକ ଅବସ୍ଥା । କିନ୍ତୁ ତା' ମନରେ କି ଗଭୀର ଆନନ୍ଦ ! କି ଅବାରିତ ଫୁର୍ତ୍ତି ! ଆଉ ମୋ ଭାଗ୍ୟରେ କି ଦୁଶ୍ଚିନ୍ତା, କି ଯାତନା । ମୋର ସ୍ୱାମୀ ଆସିଛନ୍ତି । ସେ ଯଦି ମୋତେ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରନ୍ତି, ତାହେଲେ ଉପାୟ ? ମୁଁ ପରଭୁକ୍ତା—ଉଚ୍ଛିଷ୍ଟ, ମୋର ହୃଦୟ ମନ ପାପରେ ପୂର୍ଣ୍ଣ । ମୁଁ ଏ ଅପବିତ୍ର ପଦାର୍ଥ ଦେବତାର ଭୋଗ ନିମନ୍ତେ ଅର୍ପଣ କରିବି କିପରି ? କିନ୍ତୁ ମୋର କ୍ଷୁଧିତ ହୃଦୟ ଡାକପକାଇଲା—"ଯଦି ମତେ ସେ ସୁବିଧା ମିଳେ, ସେ ଭାଗ୍ୟ ଯଦି ଏତେ ଦିନ ପରେ ଘଟେ, ତାହେଲେ ଛାଡ଼ିବି କାହିଁକି ? ଦେବତା ଯଦି ଛଡ଼ା ମଉଳା ଫୁଲଟି ଗୋଟାଇ ନେବାକୁ ଇଚ୍ଛା କରନ୍ତି, ତାହେଲେ ମୁଁ ବାରଣ କରିବାକୁ କିଏ ?"

ଏହିପରି ମୋର ବିବେକ ଓ ହୃଦୟ ମଧ୍ୟରେ ଲଢ଼ାଇ ଲାଗିଥିଲାବେଳେ ମୁଁ ଦ୍ୱାର ମୁହଁରେ କାହାର ଛାୟା ଅନୁଭବ କଲି । ମୁହଁ ଟେକି ଚାହିଁଲି; ଦେଖିଲି, କ'ଣ କହିବି—ମୋର ସ୍ୱାମୀ । ମୁଁ ଉଠି ଠିଆହେଲି । ଥରଥର କରି ମୋ ଦେହ କମ୍ପିଉଠିଲା, ଘରଘର୍ କରି ମୁଣ୍ଡ ଘୂରିଗଲା, ଦୁମ୍‌ଦୁମ୍ କରି କିଏ ସେ ମୋ ଛାତିରେ ଯେମିତି ଚୂଡ଼ାପାହାର ପକାଇଲା । ମୁଁ ନିଶ୍ଚେଷ୍ଟ ନିର୍ବାକ୍ ପରି ଠିଆହୋଇ ରହିଲି । ସେ ଘର ଭିତରକୁ ଆସିଲେ; ହଠାତ୍ ଦୁମ୍ କରି ଦୁଆରଟାକୁ ଗୋଟାଏ ପୁନାହାତ ବନ୍ଦ କରିଦେଲା । କୁ' କୁ' କରି କୋକିଳ ଡାକିଦେଲା । ସେ ସ୍ୱର ଓ ଶବ୍ଦରେ ମୋର ଧ୍ୟାନ ଭାଙ୍ଗି କେଉଁ ଅଜଣା ଦେଶକୁ ଭାସିଗଲା । ମୁଁ ପ୍ରକୃତିସ୍ଥ ହୋଇ ମୋର ସ୍ୱାମୀଙ୍କୁ ଦଣ୍ଡବତ କଲି ଏବଂ ବସିବା ସକାଶେ ଅନୁରୋଧ କଲି । ସେ ମୋ ଆଡ଼କୁ ଚାଲି ଚାଲି ହୋଇ ଆସିଲେ; ମୋ ହାତଟି ଧରିବାର ଉପକ୍ରମ କଲେ । ମୁଁ ପଛକୁ ଘୁଞ୍ଚିଯାଇ କହିଲି—"ନା, କ୍ଷମା କରିବେ, ଏ ହାତ ଆପଣଙ୍କ ଦେହ ଛୁଇଁବାର ଉପଯୁକ୍ତ ନୁହେଁ ।"

ସ୍ୱାମୀ : ବିବାହିତ ସ୍ତ୍ରୀ ହାତ ବିବାହିତ ସ୍ୱାମୀ ଛୁଇଁବ ନାହିଁ ତ ଆଉ କ'ଣ କରିବ ?

ମୁଁ : ମୋର କ'ଣ ଆଉ ସେ ଅଧିକାର ଅଛି ? ମୁଁ ଯେ ବେଶ୍ୟା !

ସ୍ୱା : କିଏ କହେ ତୁମେ ବେଶ୍ୟା ? କମଳା ମୋର ବେଶ୍ୟା ହୋଇପାରେ ନାହିଁ ।

ମୁଁ : ଆପଣଙ୍କର କମଳା ? ସେ ଆଉ କି ଅଛି ? ସେ ଯେ ଅନେକ ଦିନ ହେଲା ମରିଛି !

ସ୍ୱା : ଭୁଲ ତୋର, କମଳା ମରିନାହିଁ । କମଳା ମରିପାରେ ନାହିଁ । ମରିଛି ଚଞ୍ଚଳା ବେଶ୍ୟା ।

ମୁଁ : କିନ୍ତୁ ପ୍ରଭୁ, ଦେବତା, ମୁଁ ଯେ ବେଶ୍ୟା । ମୁଁ ଯେ ସାମାନ୍ୟ ପଇସା ପାଇଁ—ଏ ପୋଡ଼ା ପେଟଟା ପାଇଁ ରାତିରାତି କରି ଅସଂଖ୍ୟ ରାତି ମୋର ଏ ଦେହ, ଯାହାର ଇଚ୍ଛା ତାକୁ ଅର୍ପଣ କରିଛି । ଏ ଉଚ୍ଛିଷ୍ଟ, ଏ ପାପରେ ଭରା ! ଏ ତ ଆପଣଙ୍କର ଉପଯୁକ୍ତ ନୁହେଁ !

ସ୍ୱା : କମ ! ତୋର ପ୍ରତି ପଦରେ ଭୁଲ୍ । ବ୍ରାହ୍ମଣ ଦୈବ-ଦୁର୍ବିପାକରୁ ଚଣ୍ଡାଳର କାର୍ଯ୍ୟ କରିବାକୁ ବାଧ୍ୟ ହେଲେ ମଧ୍ୟ ଯେପରି ଚଣ୍ଡାଳ ହୁଏନାହିଁ, ସେହିପରି କେବଳ ଦେହ ଅର୍ପଣ କଲେ କେହି ବେଶ୍ୟା ହୁଏ ନାହିଁ । ଯେ ମନେ ମନେ ହୃଦୟ ମଧ୍ୟରେ ପୁରୁଷରୁ ପୁରୁଷାନ୍ତରର ସହବାସ ଇଚ୍ଛାକରେ, ସେଇ ଏକା ବେଶ୍ୟା—ସେଇ ଏକା ବ୍ୟଭିଚାରିଣୀ ।

ମୁଁ : ମୁଁ ଯେ ଦିନେ ଇଚ୍ଛାକରି ପରପୁରୁଷଠାରେ ଆତ୍ମସମର୍ପଣ କରିଥିଲି ।

ସ୍ୱା : ସେ ତୋର ଇଚ୍ଛା ନୁହେଁ, ଦୁର୍ବଳତା ଓ ସଂସାରଜ୍ଞାନର ଅଭାବ । ତୁ ପ୍ରଲୋଭନରେ ପଡ଼ି ତୋର ଯନ୍ତ୍ରଣା-ସଢ଼ା ହୃଦୟକୁ ସମ୍ଭାଳି ପାରିନଥିଲୁ । ଭେଳିକିରେ ଭୁଲିଯାଇ ଅବିନାଶର ଯତ୍ନ ଓ ଆଦରକୁ ପ୍ରକୃତ ପ୍ରେମର ଚିହ୍ନ ବୋଲି ଭାବୁଥିଲୁ । ପ୍ରେମ କ'ଣ, ତୁ ତା' ଜାଣି ନଥିଲୁ; ସ୍ନେହ, ଆଦର, ଯତ୍ନ କ'ଣ, ପାସୋରି ପକାଇଥିଲୁ । ସୁତରାଂ ତୁ ସେ ଭେଳିକିରେ ଭୁଲିଗଲୁ ମାତ୍ର । ତା'ପରେ ଯେହେତୁ ଏତେ ଶୀଘ୍ର ଅବିନାଶର ମନ୍ତ୍ରରୁ ନିଜକୁ ଉଦ୍ଧାର କରି ପାରିଲୁ, ସେଇ ଏ ମୋ କଥାର ପ୍ରମାଣ । ତୋର ଏ ସେ ପତନ, ସେଥିଲାଗି କେବଳ ମୁଁ ଆଉ ମୋର ମା' ଭଉଣୀ ଦାୟୀ ।

ମୁଁ : ଆପଣ ସେହି ଦୋଷରୁ ନିଜକୁ ମୁକୁଳେଇବା ପାଇଁ ମତେ ଗ୍ରହଣ କରିବାକୁ ଯଦି ସ୍ୱୀକୃତ ଅଛନ୍ତି, ତାହେଲେ କହନ୍ତୁ; କିନ୍ତୁ ଆପଣଙ୍କର ଏ ସ୍ୱାର୍ଥ-ତ୍ୟାଗରେ ମୋର କିଛିମାତ୍ର ପ୍ରୟୋଜନ ନାହିଁ ।

ସ୍ୱା : ମୋର ଏ ଭାରି ଅନ୍ୟାୟ କାମ ! ମୁଁ ଏତେ ନୀଚ ନୁହେଁ ବା ଏତକ ଉଚ୍ଚ ନୁହେଁ ଯେ ତତେ ଦ୍ୱିତୀୟବାର ପ୍ରବଞ୍ଚନା କରିବି । ପ୍ରକୃତରେ ତତେ ଗ୍ରହଣ କଲେ ବିଶେଷ କିଛି ଉପକାର ହେବନାହିଁ । ତା'ର କାରଣ—ମୁଁ ନରହନ୍ତା, ଆଜି ନହେଲେ କାଲି ଫାଶିକାଠରେ ଝୁଲିବି । ସୁତରାଂ ସ୍ୱାର୍ଥ ତ୍ୟାଗ କରି ତୋର କଷ୍ଟ ଘୁଞ୍ଚାଇବାର ଇଚ୍ଛା ଥିଲେ ସେ କେବଳ ଦୁଃସ୍ୱପ୍ନ ମାତ୍ର ! ମୁଁ ବରଂ ତୋ ପାଖକୁ ଏପରି ଆସି ଭୟଙ୍କର ସ୍ୱାର୍ଥପରତାର କାର୍ଯ୍ୟ କରୁଛି । ମୁଁ ଅନେକ ଦିନ ହେଲା ପ୍ରକୃତ ସ୍ନେହ, ପ୍ରକୃତ ପ୍ରେମରୁ ବଞ୍ଚିତ ରହିଥିଲି । ଦେଶେ ଦେଶେ ବୁଲିଛି, କେତେ ପ୍ରକାର ଲୋକଙ୍କ ସାଙ୍ଗରେ ମିଶିଛି, କେତେ ନୂଆ ନୂଆ କଥା କରିଛି; କିନ୍ତୁ ଏସବୁ ମଧ୍ୟରେ 'ଆହା' ବୋଲି କହି ପିଠିରେ ହାତ ବୁଲାଇଦେବାକୁ କାହାକୁ ପାଇନାହିଁ । ନିଜର ଦୁଃଖଭାର ନିଜେ ବୋହି ବୋହି ମୁଁ ବଡ଼ ଅବସନ୍ନ, ବଡ଼ କ୍ଳାନ୍ତ । ମରିବା ପୂର୍ବରୁ ଯଦି ସ୍ନେହର ପ୍ରଲେପ ଦେଇ ମୁଁ ଦିନକ ପାଇଁ ହେଲେ ମୋର ହୃଦୟର ଏ ପୋଡ଼ାଘା'କୁ ଶୀତଳ କରିପାରନ୍ତି—ଏଇ ଆଶାରେ ତୋ ପାଖକୁ ମୁଁ ଆସିଛି କମ ! ମୁଁ ବଡ଼ ଦୁଃଖୀ, ବଡ଼ ସନ୍ତପ୍ତ !!

ଏହିପରି କହୁ କହୁ ସେ ମୋ ଆଡ଼କୁ ବଡ଼ କରୁଣ—ବଡ଼ ଦୀନଭାବରେ ଚାହିଁରହିଲେ । ତାଙ୍କର ଆଖି ଲୁହରେ ଭରିଆସିଲା । ମୋ ମୁଣ୍ଡରେ ହାତ ଦେଇ ବସିପଡ଼ିଲେ । ମୋର ସମୁଦାୟ ଦମ୍ଭ, ସବୁ ଭାବନା, ଚିନ୍ତା କେଉଁଆଡ଼େ ଭାସିଗଲା । ତା'ପରେ ଯାହା ହେଲା, ଭାଇ-ଭଉଣୀମାନେ ! କ୍ଷମା କରିବ—ମୁଁ କହିପାରିବି ନାହିଁ । ମୋ ଜୀବନର କୌଣସି କଥା ମୁଁ ତୁମମାନଙ୍କୁ ଲୁଚାଇ ନାହିଁ । ଆଜି ଯେ ଲୁଚାଉଛି, ସେଥିପାଇଁ ମାଗୁଛି କ୍ଷମା । ମୋ ଜୀବନର ଏତିକିମାତ୍ର ସମ୍ପତ୍ତି । ଯାକୁ ଦାଣ୍ଡରେ ହାଟରେ ପକାଇବାକୁ ମନ ବଳୁନାହିଁ ।

●

## ଶେଷକଥା

ଏହା ପରେ ମୁଁ ଜିଗର ଧରି ବସିଲି ଯେ ମକଦମା ଚଳାଇବା ଦରକାର ନାହିଁ; କାରଣ ତାହେଲେ ମୋ ସ୍ୱାମୀଙ୍କର ପରିଚୟ ମିଳିଯିବ । ମୁଁ ଯେ ନୂତନ ଆନନ୍ଦ, ନୂତନ ଆମୋଦ ପାଇଛି, ସେ ସୁଖ, ସେ ଆମୋଦ ଏତେ ଶୀଘ୍ର ଚୂନା କରିଦେବାକୁ ମୁଁ ପ୍ରସ୍ତୁତ ନଥିଲି; କିନ୍ତୁ ଅବଧୂତବାବୁ କହିଲେ, "ତୁମର ବୃଥା ଆଶଙ୍କା । ହରଗୋବିନ୍ଦ ବାବୁଙ୍କ କଥାଟା ଯଦି ସତ ହୁଏ, ତାହେଲେ ସେ ସ୍ତ୍ରୀଟାର ମୃତ୍ୟୁ ନିମନ୍ତେ ହରଗୋବିନ୍ଦ ବାବୁ ଦାୟୀ ହୋଇ ନପାରନ୍ତି; କାରଣ ଗୋଟାଏ ପାହାରରେ ଗୋଟାଏ ଲୋକ ମରିଯିବା ସମ୍ଭବ ନୁହେଁ । ଏହା ମଧ୍ୟରେ ଆଉ କିଛି ଗୁପ୍ତରହସ୍ୟ ଅଛି । ମତେ ସେ ବିଷୟରେ ଅନୁସନ୍ଧାନ କରିବାକୁ ହେବ । ତା'ର ଫଳରେ ଯଦି ଦେଖେ ଯେ ଦୁର୍ଭାଗ୍ୟକୁ ହରଗୋବିନ୍ଦ ବାବୁଙ୍କ ଉପରେ ସମୁଦାୟ ଦୋଷର ବୋଝ ପଡ଼ିବ, ତାହେଲେ ଯେ କୌଣସି ଉପାୟରେ ମୁଁ ହରଗୋବିନ୍ଦ ବାବୁଙ୍କୁ ଏ ମକଦମାରେ ଯେପରି ସାକ୍ଷ୍ୟ ଦେବାକୁ ନହୁଏ, ତା'ର ଚେଷ୍ଟା କରିବି; ସୁତରାଂ ମକଦମା ଯେପରି ଚାଲୁଛି ଚାଲୁ ।"

କିଲଟରିରେ ମକଦମା ପଡ଼ି ସେସନ୍ କୋର୍ଟକୁ ଆସାମୀମାନଙ୍କୁ ସପର୍ଦ କରାଗଲା, ନିମ୍ନ କୋର୍ଟରେ ଆସାମୀ ତରଫରୁ ଜେରା ହେଲା ନାହିଁ । ସୁତରାଂ ମୋ ସ୍ୱାମୀଙ୍କର ପରିଚୟ ସମ୍ବନ୍ଧରେ କିଛି ଗୋଳମାଳ ମଧ୍ୟ ହେଲା ନାହିଁ । ଅବଧୂତବାବୁ ଅନୁସନ୍ଧାନ ଆରମ୍ଭ କରିଥିଲେ । ମାନ୍ଦ୍ରାଜ ପୁଲିସିରୁ ସେସନ୍ ମୋକଦମା ବିଚାରର ପୂର୍ବଦିନ ଖବର ଆସିଲା ଯେ, ସେ ସ୍ତ୍ରୀଟାର ହତ୍ୟା ନିମନ୍ତେ ଆଉ ଜଣେ ଲୋକର ବିଚାର ହୋଇ ଆସାମୀକୁ ଦଣ୍ଡ ହୋଇଯାଇଛି । ସେ ସ୍ତ୍ରୀଟା ବିଷ ଖାଇ ମରିଥିଲା । ସେ ସ୍ତ୍ରୀଟାର ଦୁଇଜଣ ପ୍ରେମିକ ଥିଲେ । ଜଣେ ଜଣାଶୁଣା, ଆଉ ଜଣେ ଲୁଚାଚୋରା । ଲୁଚାଚୋରା କଥା ଜାଣିପାରି ଜଣାଶୁଣା ରାଗରେ ତାକୁ ବିଷ ଦେଇଥିଲା । ସେହି ବିଷରେ ସେଇ ମାଇକିନିଆଟା ମରିଯାଇଥିଲା ।

ଏ କଥା ଶୁଣି ମୁଁ ଆକାଶର ଚାନ୍ଦ ହାତରେ ପାଇଲି । ମୋ ମନର ସେ ଆନନ୍ଦ ବୁଝାଇ କହିବାର ଶକ୍ତି ମୋର ନାହିଁ । ଯାହାହେଉ ତା'ପରେ ସେସନ୍ ବିଚାର । ଆମ ଘରଠାରେ ନିଜେ ଜଜ୍ସାହେବଙ୍କ ସମ୍ମୁଖରେ ଆମ୍ଭମାନଙ୍କର ଅର୍ଥାତ ମୋର ଓ ମନୋରମାର

ଜେରା ହୋଇଗଲା । ଅପର ପକ୍ଷର ଓକିଲ ଆମର ଅତୀତ ଜୀବନ ଖୋଳିତାଡ଼ି ପଚାରିଲେ । ଆମ୍ଭେମାନେ ମଧ୍ୟ ଅକୁଣ୍ଠିତ ଭାବରେ ସବୁ କହିଗଲୁଁ; କାରଣ ଜଜ୍‌ସାହେବ ଆମକୁ ବିଶ୍ୱାସ ଦେଲେ ଯେ, ସେ ସବୁ ସାଧାରଣରେ ପ୍ରକାଶ କରାଯିବ ନାହିଁ ।"

ସମସ୍ତ ସାକ୍ଷୀଗୁହ୍ମା ପ୍ରମାଣ ନିଆହେବା ପରେ ହାକିମ ରାୟ ଦେଲେ—"ଅବିନାଶବାବୁଙ୍କୁ ୩ ବର୍ଷ ସଶ୍ରମ କାରାବାସ ଓ ହଜାରେ ଟଙ୍କା ଜୋରିମାନା, ଆଉ ସେ ଧାଇଟାକୁ ଏକବର୍ଷ ସଶ୍ରମ କାରାବାସ ।

ଏସବୁ ଗୋଳମାଳ ତୁଟିଗଲା ପରେ ଆମ୍ଭମାନଙ୍କର ଯିବାର କଥା ହେଲା । ଗୋପ ଓ ମୋର ସ୍ୱାମୀ ଧରିବସିଲେ ସମସ୍ତେ ଯାଇ ଗାଁରେ ରହିବୁଁ; କିନ୍ତୁ ଆପତ୍ତି କଲା ମନୋରମା । ସେ କହିଲା, "ତା' ଅସମ୍ଭବ । ତୁମେ ପୁରୁଷଗୁଡ଼ାକ, ତୁମର ମୁହଁଟାମାନ ଲୁହାରେ ଗଢ଼ା । ଲୋକେ ଦି'ଚାରି କଥା କହିବେ, ତୁମେ ସହିଯିବ; ଆମେ ତ ସହିପାରିବୁ ନାହିଁ । ବାରଲୋକ ପଛରେ ଫୁସ୍‌ଫାସ୍ ହେବେ, ଆମକୁ ଦେଖେଇ ଶିଖେଇ ବାର କଥା କହିବେ । ଆମେ ମରିଯିବୁଁ ପଛକେ ଗାଁକୁ ଯିବୁ ନାହିଁ ।"

ସେଇ କଥାହିଁ ହେଲା ସାର । ଆମର ଠିକ୍ ହେଲା ଭୁବନେଶ୍ୱରରେ ଘରଦ୍ୱାର କରି ରହିବୁଁ । ସେହିଦିନ ଅବଧୂତବାବୁ ଚାକିରି ଜାଗାକୁ ଚାଲିଗଲେ । ଗୋପ ଛୁଟି ପାଇଲେ ଆସି ରହେ ଆମ ପାଖରେ ଭୁବନେଶ୍ୱରରେ ।

ପାଠକ ପାଠିକା, ମୋ ଜୀବନର ଅତୀତ କାହାଣୀ ସରଳ ଭାବରେ କହିଗଲି । କିଛି ଲୁଚାଇ ନାହିଁ, କିଛି ଛପାଇ ନାହିଁ । ବିଚାରର ଭାର ସମାଜ ଉପରେ ।

॥ ସମାପ୍ତ ॥

## ଉତ୍ସର୍ଗପତ୍ର

ନିଶାକରର ସ୍ପର୍ଶରେ ଯେଉଁ ମଧୁରତା ଥାଏ, ବାସନ୍ତି ଚନ୍ଦ୍ରିକାର ମଧୁର ହସରେ ଯେ ମାଦକତା ଥାଏ......ସେହି ମଧୁରତା ଓ ମାଦକତାର ସ୍ମୃତି ନିମନ୍ତେ......ଏ ପୁସ୍ତିକାଟି ଅର୍ପିତ ହେଲା ।

# ପ୍ରଥମ ଭାଗ

"ଆରେ ବାବା, ମୁଁ ସିନା ତୁମର ଉପକାର ପାଇଁ କହୁଛି, ମୋର ନାଇଁ କ'ଣ ? ଏଇ ଦେଖ କୋଠାବାଡ଼ି, ଧାନକୋଠି, ଗାଈଗୋରୁ, ଚାକରବାକର, ଅଚଳାଚଳ ସମ୍ପତ୍ତି । ମୋର ନାଇଁ କ'ଣ ? ମୁଁ କାହାରି ଧନକୁ ଚାହିଁପାଏ ନାହିଁ; ଶାସ୍ତ୍ରରେ କହିଛି—"ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍" ମୁଁ କାହିଁକି କାହାକୁ ଭୟ କରିବି ? ଖାଲି ତୁମର କଷ୍ଟ ଦେଖି ଦିହ ସହୁ ନାଇଁ ବୋଲି କହୁଚି ।"

ବକ୍ତା ହେଲେ ମଧୁପୁର ଗ୍ରାମର ସଦାଶିବ ମିଶ୍ର । ସଭାଟା ଯୁଟିଚି ମିଶ୍ର ଆପଣଙ୍କର ଦାଣ୍ଡଦୁଆର ଚୌପାଢ଼ୀ ଉପରେ । ପ୍ରତିଦିନ ଖା'ପିଆ ସାରି ପଞ୍ଚାଏ ଲଫଙ୍ଗା ବ୍ରାହ୍ମଣ ଟୋକା, ବୁଢ଼ା ଆସି ଏ ଚୌପାଢ଼ୀରେ ଯୁଟନ୍ତି । ପଶା ଗଞ୍ଜପାର ଧୁମ୍ ଉଡ଼େ । ଛଅ ତିନି, ପୋ ବାର, ବିନା ଚନ୍ଦ୍ରରଜା ଇତ୍ୟାଦି ଖେଳୁଆଡ଼ମାନଙ୍କର ରଡ଼ିରେ ଗାଁ ଦାଣ୍ଡଟା କମ୍ପିଯାଉଥାଏ । ଶୁଣାଅଛି ଏହିପରି ଗୋଟାଏ ରଡ଼ି ଶୁଣି ଗୁନି ବାହାନପତିଙ୍କ ବୋହୂର ଗର୍ଭସ୍ରାବ ହୋଇଥିଲା । ତେବେ ସେପରି ଘଟଣା ସଦାଶିବ ମିଶ୍ର ଓରଫ ଶିବବାବୁଙ୍କ ଅମଳରେ ହୋଇ ନାହିଁ । କାରଣ ଶିବବାବୁ ପାଠୁଆ ଲୋକ, ଦଶ ପଚାଶ ଜଣଙ୍କ ମଧ୍ୟରେ ଜଣେ ବୋଲାନ୍ତି । ସମାଚ କାଗଜରେ ବେଳେ ବେଳେ ତାଙ୍କ ନାଁ' ବାହାରେ । ଆହୁରି ମଧ୍ୟ ଶିଶୁପାଳ ନନ୍ଦଙ୍କଠାରୁ ଶୁଣିଛୁ, କୌଣସି କଥା ଘେନି ଖାପଚରେ ପଡ଼ିଗଲେ, ନିଜେ ଲାଟ୍‌ସାହେବ ଶିବବାବୁଙ୍କୁ ଡାକି ତାଙ୍କର ପରାମର୍ଶ ମାନି ଚଳନ୍ତି । ଆହୁରି ମଧ୍ୟ ଶୁଣାଯାଏ ଯେ, ସେ (ଶିବବାବୁ, ଲାଟ୍‌ସାହେବ ନୁହନ୍ତି) ପାଠପଢ଼ି ପାଶ୍ କରିସାରିଲା ପରେ ସରକାର ତାଙ୍କୁ ଗୋଟାଏ କିଲଟର ଚାକିରି ଯାଚିଥିଲେ । କିନ୍ତୁ ଲାଟ୍‌ସାହେବ କାମ ନହେଲେ ନେବେ ନାହିଁ ବୋଲି ଶିବବାବୁ ଫେରସ୍ତ ଦେଲେ । ମୋଟ ଉପରେ ଶିବବାବୁଙ୍କ ପାଖ ଲୋକମାନଙ୍କ କଥା ବିଶ୍ୱାସ କଲେ, ବୁଝିବାକୁ ହେବ ଯେ, ଶିବବାବୁ ଜଣେ ସଙ୍ଗିନ୍ (ବନ୍ଧୁକର ସଙ୍ଗିନ ନୁହେଁ) ବଡ଼ଲୋକ ଓ ତାଙ୍କଭଳି ବୁଦ୍ଧିମାନ୍ ଓ ପ୍ରତିପତିବାଲା ଲୋକ ଓଡ଼ିଶାରେ ଆଉ ଏକରୁ ଦୁଇ ନାହିଁ । ଫଳରେ ଶିବବାବୁଙ୍କ ଅମଳରେ ତାଙ୍କ ଚୌପାଢ଼ୀରେ ଏପରି ଗଣ୍ଡଗୋଳ ହେବାର ସମ୍ଭାବନା ନାହିଁ । ଶିବବାବୁ ନିଜେ ତାସ, ପଶା, ଗଞ୍ଜପା ଇତ୍ୟାଦି କିଛି ଖେଳନ୍ତି ନାହିଁ । ଥରେ ତାଙ୍କୁ ଅନେକ ଲୋକ ଖୋସାମଦ କରି ତାସ ଖେଳିବାକୁ ବସାଇଥିଲେ । ଏ ପର୍ଯ୍ୟନ୍ତ କଥା ଅଛି; ସେ ଖେଳିବସି ଠିକିରି କିଏ, ନାଲିପାନ କିଏ ଚିହ୍ନିପାରିଲେ ନାହିଁ । କେତେଥର ତାସାଳିଆ ପିଲାମାନଙ୍କୁ ଓ ଗାଁ ସଭା-ସମିତିରେ ଏପରି ଅଳସୁଆ ଖେଳରେ ଦିନ ନକଟାଇବା ପାଇଁ ବକ୍ତୃତା ଦେଇଛନ୍ତି । ତାଙ୍କ ଦଳୁଆଙ୍କ ଛଡ଼ା ଆଉ କେହି ଏ ଖେଳ ଖେଳିବାର ଦେଖିଲେ ସେ ନାକ ଟେକନ୍ତି, ବେଳକାଳ ଉଣ୍ଡି ପଦେ ଦି'ପଦ ଝାଡ଼ିଦିଅନ୍ତି ମଧ୍ୟ । କିନ୍ତୁ ତାଙ୍କ ଦାଣ୍ଡଦୁଆରେ ଏ ଆମୋଦଟା ପ୍ରତିଦିନ ବସେ । ଶିବବାବୁ ଖେଳନ୍ତି ନାହିଁ ତ, ସେ ଅଲଗା ହୋଇ ଗୋଟାଏ ପଟରେ ଖଣ୍ଡେ ମସିଣା ପକାଇ ଦି'ଆଣ୍ଠୁକୁ କୁଣ୍ଢେଇ ଖୁମ୍ବକୁ ଆଉଜି ଦୋଳା-ଚୌକିରେ ବସିଲା ପରି ଝୁଲୁଥାନ୍ତି ।

ପାଖରେ ଦି'ଚାରିଜଣ ଆପ୍‌ବଡ଼ା ଖାନଦାନ୍ ଲୋକ ବସି ଖୁସି ଗପ ଚାଲିଥାଏ । ଖେଳଟା ପ୍ରାୟ ଚାରିଟା ପର୍ଯ୍ୟନ୍ତ ଚାଲେ । ତା'ପରେ ଅଧିକାଂଶ ଖେଳାଳି ନିଜ ନିଜ ଦୁଃଖ-ଧନ୍ଦାରେ ଯା'ନ୍ତି ଓ ବାକି ଶିଶୁପାଳ ନନ୍ଦେ, ଫଲଣା ତିଆଡ଼ିଏ, ଅଲଣା ଦାସେ ଇତ୍ୟାଦି ପାର୍ଶ୍ୱଚର ଆସି ଶିବ ମିଶ୍ରଙ୍କ ମଜଲିସ୍‌ରେ ଯୋଗଦିଅନ୍ତି । ଆଡ୍ଡାଟା ରାତି ଦି'ତିନି ଘଡ଼ିଯାଏ ଚାଲେ । ଆଡ୍ଡାରେ ଜଣ ଜଣ କଥା ପଡ଼େ, ତା'ର ନମୁନା ଓ ସବିଶେଷ ବିବରଣ ଆପଣମାନେ ପରେ ଯଥେଷ୍ଟ ଜାଣିପାରିବେ ।

ଏହିପରି ଏକ ମଜଲିସ୍‌ରେ ସେଦିନ ବିରାଜମାନ ସ୍ୱୟଂ ଶିବବାବୁ । ପାଖରେ ପାର୍ଶ୍ୱଦେବତା ଅଇଣା, ଫଲଣା, ଶିଶୁପାଳ, ମାରଣା; ବକ୍ତା ଶିବ ମିଶ୍ରେ, ଶ୍ରୋତା ସେହି ଗାଁର ଲଣ୍ଡା ଓରଫ୍ ଶ୍ୟାମ ରଥେ । ପାଳିଆ ଆଉମାନେ । ଭାଗବତରୁ କାଣ୍ଡିଏ ହେଲେ ଥରେ ପାଳି ଧରିବାର କଥା । ଶିବବାବୁ ଏତିକି କହି ପାଳିଆମାନଙ୍କ ସ୍ୱରକୁ ଅପେକ୍ଷା କରି ତାଙ୍କ ଆଡ଼କୁ ଚାହିଁଲେ ।

ମାରଣା : ତା' ନୁହେଁ ଆଉ କଣ ? ଶିବବାବୁ ଭାବିଲେ୍ ଏ ଗାଁ ଗୋଟାକ ଯାକ କିଣିନେଇ ଦାନ ଦେଇପାରନ୍ତି, ନା କ'ଣ କହୁଛ ଅଲଣାବାବୁ ?

ଅଲଣାବାବୁ ଓରଫ ଅଲଣା ଦାସେ ତାଙ୍କର ଦରଭଙ୍ଗା ନଖ ଚାରିଟା ପଡ଼ିଆ ବାଡ଼ିରେ ଗୋବର ମେଦା ଭଳି ଚୁଟି କେରାକ ଭିତରେ ପୁରାଇ ରାଫୁ ରାଫୁ କରୁ କରୁ କହିଲେ, "ଆହା ହା, ଯୁ କହିବା ଗ୍ରାହକ ! ବଡ଼ତି କରି କହିଲେ କ'ଣ ନା ଶିବବାବୁ ଏ ଗାଁଟାକୁ କିଣି ଦାନ ଦେଇପାରିବେ ! କିଆଁ, ଶିବାବୁଙ୍କର କ'ଣ ହେଇଚି କି ସେ ଦାନ ଦେବେ ? ତାଙ୍କଭଳି ଧାର୍ମିକ ଲୋକ, ସେ ହଲିଲା ପାଣିକୁ ଗୋଡ଼ ଦେବେ ନାହିଁ, ପିମ୍ପୁଡ଼ିଟା କଳହରେ ବି ଆଞ୍ଚ ଲଗେଇବେ ନାହିଁ ।

ଶିବବାବୁ : ଶୁଣିଲୁରେ ଲଣ୍ଡା ! ମୁଁ ଅବା ମିଛ କହୁଥିବି କି ବଡ଼ ବଢ଼ିଆଣ କରି କହୁଥିବି । ଦାସେ ତ ତୋର ପାଖପଡ଼ିଶା, ତାଙ୍କ କଥା ଶୁଣ !

ନଣ୍ଡା : ମୁଁ ଶୁଣିବି କ'ଣ, ମିଶ୍ର ଆପଣେ ! ମୁଁ କ'ଣ ଜାଣେ ନାହିଁ, ଆପଣ ହେଲେ ଗରିବମାନଙ୍କର ମା' ବାପ । ଦୁଃଖୀ-ରଙ୍କୀଙ୍କର ସାହା ଭରସା, ଏ କଥା କିଏ ନଜାଣେ !

ଶିବ : ବାଃ, ବାଃ, ପିଲାଟି ତ ବେଶ୍ ବୁଦ୍ଧିମାନ, ବେଶ୍ ଚତୁର, ନାଇଁ ହେ ତିଆଡ଼ିଏ ?

ଫଲଣା : ଗୋଟାଏ ବଂଶର ପିଲା କି ନା ! ଏବେ ସିନା ଗରିବ ହୋଇଗଲେ, ତା' ନହେଲେ ଆପଣଙ୍କ ବଂଶକୁ ଛାଡ଼ିଦେଲେ ରଥବଂଶଠୁ ବଳି ଆଉ ଏ ଗାଁରେ କିଏ ଥିଲା ?

ଶିବ : ତା' ଏକା କହିଲ ସତ ! ସେଇଥିପାଇଁ ମୋ ମନଟାରେ ବଡ଼ ଦୁଃଖ, ଏଡ଼େ ବଡ଼ ବଂଶଟାଏ ଛାରଖାର ହୋଇଗଲା । ସେ ପାରିବାର ହେଲା ସେ ଯଦି ମଣିଷ ହୋଇଥାନ୍ତା-

ଶିଶୁ : କା'କଥା କହୁଛନ୍ତି ଆପଣ ? ସେଇ ବଳିବାବୁ ଘରକଥା ଟିକି ! ଆରେ ରାମ୍, ରାମ୍, ମଣିଷ ପୁଞ୍ଜେ ଖାଇକରି ଆସି ନାହିଁ । ଆଜି ମୁଠାଏ ମିଳିବା କଷ୍ଟ, ସେ ମଣିଷ ? ଆଉ ପଶୁ କିଏ ?

ଶିବ : ହଁ, ଆପଣମାନେ ସିନା କହିବେ, ମୁଁ ତ କହିପାରୁ ନାହିଁ । ଯାହାହେଉ, ସେ ଯଦି ମଣିଷ ହୋଇଥାନ୍ତା, ତା'ହେଲେ ଏମାନଙ୍କ ଅବସ୍ଥା ଏତେଦୂର ହୋଇଥାନ୍ତା କିଆଁ ? ଆରେ ତୁ ଯେ ପାଠ ପଢ଼ିଲୁ, ମଣିଷ ହେଲୁ, ଦି'ପଇସା ରୋଜଗାର କଲୁ, ସେ କାହାଲାଗି ? ବାପ-ଅଜାଙ୍କ ଧନରେ ପାଠ ପଢ଼ି ତ ? ଆଇନ ଅନୁସାରେ ତ ତା' ସମ୍ପତ୍ତିରେ ତା' ରୋଜଗାରରେ ସବୁ ଭାୟାଡ଼ାଙ୍କର ଭାଗ ଅଛି । ସେ ଚଣ୍ଡାଳ ବୋଇଲା ନାଇଁ ଏତେ ଜମିବାଡ଼ି ତ କରିଗଲି, ଭାୟାମାନଙ୍କୁ ସେଥିରୁ ବିଲ ବାଟିଏ ଖଣ୍ଡେ କି ଟଙ୍କା ଦଶହଜାର ଦେଇଯାଏଁ । ସବୁ ନିଜ ନାଁରେ କରିନେଲା । ନେଲା ଯେ କ'ଣ ଖାଇଲା ?

ଅଲଣା : ଏପରି ଅଧର୍ମ ଯେ କରେ ତାକୁ କ'ଣ ଦଇବ ସହେ ! ଯିମିତି ଅଧର୍ମ କଲା, ସିମିତି ଅଧା ବୟସରେ ଟୋକୀ ମାଇପ କନ୍ଦେଇ ଗଲା ।

ଫଲଣା : ଆଉ ଯୁ ମାଇପ ! ବାପରେ, ସାକ୍ଷାତ୍ ଗୋଟାଏ ମା' କାଳୀ । ସେ ତ କହୁଛି ଏ ଗାଁଟା ଯାକ ମୁଁ କିମିତି ଖାଇଯାନ୍ତି ।

ଲଣ୍ଡା : ଆଜ୍ଞା, ସେ କଥା ଆଉ କ'ଣ କହୁଛନ୍ତି ? ସେ ଦିନ ତାଙ୍କ ବାଡ଼ି ଆମ ବାଡ଼ି ଦୋ-ସୀମାଳିରେ ଗୋଟିଏ ମେଘୁଆ ଗଛରୁ ମୋ ବୋଉ ଦି' ଚାରିଟା ମେଘୁଆ ତୋଳି ନେଇଥିଲା ବୋଲି ପାଟକ କଳି ଲଗେଇଲା ପରା ଆମ ସାଙ୍ଗରେ ।

ଶିବ : ଏଇ, ଏଇ ତ ଅବସ୍ଥା ! ସେ ମାଇକିନିଆର ଏ ସମ୍ପତ୍ତିରେ କ'ଣ ଅଛି ? ତା'ର ସେ ଅଛଦରା ଗବଗାଣ୍ଡୁ ଟୋକାଟା ନଥିଲେ ସମ୍ପତ୍ତିରେ ମାଲିକ ତ ହୁଅନ୍ତେ ଏଇ ଲଣ୍ଡା ବାବୁ । ସେ ତ ଖାଲି ଖୋରାକ-ପୋଷାକ ପାଇବାର ହକ୍‌ଦାର ।

ଶିଶୁ : ସେ କଥା ତ ଠିକ୍, କି ଆଇନ ବୁଦ୍ଧି ! ଓକିଲ ମୁକ୍ତାର କ'ଣ କରିବେ ହେ ?

ଅଲଣା : ଠିକ୍ କହିଲେ ଆପଣ, ଠିକ୍ କହିଲେ । ସେଇ ଟୋକାଟା ରହି ତ ସବୁ ଭଣ୍ଡୁର କରୁଛି ।

ଶିବ : ରହିଚି ବୋଲି କହିଲେ ତ ହେବନାହିଁ, ଏହାର କିଛି ଗୋଟାଏ ଉପାୟ କରିବା ଦରକାର ତ ! ଆପଣମାନେ ତ ସମସ୍ତେ ଅଛନ୍ତି, କ'ଣ କରିବା ଗୋଟାଏ ଠିକ୍ କଲ ଦେଖି ।

ଲଣ୍ଡା : ଆଜ୍ଞା ମାଲିମକଦମା କରିବାକୁ ତ ଆମର ପଇସାପତ୍ର ନାହିଁ, ସେ କଥା ଭାବି ଆଉ କ'ଣ ହେବ ! ଭଗବାନ ଆମକୁ ଯେତିକି ଦେଇଛନ୍ତି, ସେଇତକ ରହିଲେ ହେଲା ଆପଣମାନଙ୍କ ଦୟାରୁ ।

ଶିବ : ଓଃ, ତା'ହେଲେ ଆମର ଏତେ ମୁଣ୍ଡ ବଥା କାହିଁକି, ହଇହେ ତିଆଡ଼ିଏ ?

ଫଲଣା : ମୁଁ ପରା ସେଇକଥା ଆପଣଙ୍କୁ ଆଗରୁ କହୁଥିଲି—ଘୁଷୁରିକି ପାଚିଲା କଦଳୀ କୁଆଡ଼େ ସୁଆଦ ଲାଗିଲାଣି ?

ଅଲଣା : ଆରେ ରାମ୍, ରାମ୍, ସେ କଥା ଆଉ କହନା ! ଏ ଯୁ ଲୋକେ, ୟାଙ୍କ ମୁହଁରେ ଭାତଗୁଣ୍ଡା ନେଇ ଗେଞ୍ଜିଦେଲେ ମଧ୍ୟ ଗିଳିବେ ନାହିଁ । ମର—ନିଜେ ମର, କାହାର କ'ଣ ଅଛି ?

ଶିଶୁ : ସତେ ହେ, ଏ ଲୋକଗୁଡ଼ାକ କେଡ଼େ ବେଇମାନ୍ ! କି ରେ, ତୁ କ'ଣ ଭାବୁଛୁ କି ? ଶିବବାବୁଙ୍କ ପରାମର୍ଶ ପାଇଁ ନିଙ୍କେ କିଲଟର କମିସନର ଆସି ଧାରଣା ଦେଇ ବସୁଚନ୍ତି; ତତେ ଯାଚି ପରାମର୍ଶ ଦିଆହେଲା, ପିତା ଲାଗିଲା ! ତୋ ମନରେ ଯେବେ ଏତେ କଥା ଥିଲା, ତେବେ ଆଗରୁ ସେଇଆ କହିଦେଲୁ ନାହିଁ, ବାବୁଙ୍କର ଏତେ ସମୟ ଅଯଥା କାହିଁକି ନଷ୍ଟ କଲୁ !

ଇଣ୍ଡା ବିଚାରା ଏତେ ଲୋକଙ୍କ କାଉ-କାଉରେ ଅପ୍ରସ୍ତୁତ ହେଲା ଭଳି ହୋଇଯାଇ କହିଲା, "ନାଇଁ, ମୁଁ କ'ଣ ମିଶ୍ର ଆପଣଙ୍କ କଥା ଶୁଣିବାକୁ ନାହିଁ କରୁଛି ? ଯାହା କହିବେ, ସେଥିରେ ହାଜର ଅଛି ।"

ଶିବ : ନାଇଁ, ନାଇଁ, ଆମର ଆଉ ସେ କଥାରେ ଦରକାର ନାହିଁ । ଚାଲ ହେ, ନଈକୂଳକୁ ଯିବା ଚାଲ !

ଅଲଣା : ନାଇଁ, ନାଇଁ, ଆଜ୍ଞା, ସେ ପିଲାଲୋକ, ତା' ଉପରେ ରାଗ କଲେ କ'ଣ ହେବ । ସେ ବୁଝିପାରିଲା ନାହିଁ, ତା' ଦୋଷ ମାଫ କରନ୍ତୁ । ପଡ଼ରେ ବାବୁଙ୍କ ଗୋଡ଼ତଳେ ପଡ଼ !

ବିଚରା ଲଣ୍ଡାବି ଯେ ଦୋଷ କରିଚି, ବୁଝିପାରିଲା ନାହିଁ । ତଥାପି ଏମାନଙ୍କ କଟାଳରେ କାନ୍ଦକାନ୍ଦ ହୋଇ ଶିବବାବୁଙ୍କ ଗୋଡ଼ ଧରି କହିଲା, "ଆଜ୍ଞା, ମୋ ଦୋଷ ଧରନ୍ତୁ ନାହିଁ, ଯାହା କହିବେ ମୁଁ ତାହା କରିବାକୁ ପ୍ରସ୍ତୁତ ଅଛି ।"

ଶିବ : ଆରେ, ଏ ତ ଆଚ୍ଛା ବିପଦ ! ହଉ, କ'ଣ କରିବା, ଆପଣମାନେ ଯେତେବେଳେ କହୁଛନ୍ତି, କ'ଣ କରିବାକୁ ହବ ତେବେ କୁହନ୍ତୁ ?

ଶିଶୁ : କହୁଥିଲି ସେ ଟୋକାଟାକୁ କୌଣସି ମତେ ଖସେଇବାକୁ ହେବ ଏ ଗାଁରୁ ।

ଶିବ : ତା'ର ଉପାୟ ?

ଶିଶୁ : ଉପାୟ ମୁଁ ଠିକ୍ କରୁଛି । ସେ ଟୋକାଟା ଯେପରି ବୋକା ଆଉ ଗଧ, ତାକୁ ବିରକ୍ତ କଲେ ସେ ଏ ଗାଁ ଛାଡ଼ି ପଳେଇବ । ଟୋକାଟାଏ ତ; ତାକୁ ଜବତ୍ କରିବାକୁ କେତେ ବେଳ ! ଖାଲି ଇଣ୍ଡା ଆମ କଥା ଶୁଣିଲେ ହେଲା ।

ଅଲଣା : ନଶୁଣିବ ତ ସେ ଭୋଗିବ । ମଲାଯାଏ ଏହିପରି ଭିଖ ମାଗି ପେଟ ପୋଷିବ ।

ଫଲଣା : କିରେ ଲଣ୍ଡା, କ'ଣ କହୁଚୁ ? ବୁଝୁଚୁ ତ କ'ଣ ହେବ ? ଏ ଟୋକାଟା ଯଦି ପାବାଡ଼ ହୁଏ ଏସବୁ ବିଷୟ ଆଶୟ ଯାହା ଅଛି ସେ ସବୁରେ ମାଲିକ ହେବ ତୁମେ । କୋଠାବାଡ଼ି, ଦଶ କି ତିରିଶ ଏକର ସୁଦ୍ଧ ସୁବର୍ଣ୍ଣ ଜମି, ନଗଦ ପଚିଶି ହଜାରେ କି ତିରିଶ ହଜାରେ ଟଙ୍କା, ଏ ସବୁ ତ ତୁମେ ପାଇବରେ ବାବୁ ! ତୁମେ ସିନା ତାଙ୍କର ୱାରସ, ଆମେ ତ ନୋହୁ ଯେ ସେଥିରୁ ଭାଗ ନେବୁ ।

ଲଣ୍ଡା ବିଚରା ଟୋକା, ମାତ୍ର ବାଇଶ ବର୍ଷ, ଏତେ ପ୍ରଲୋଭନ ! ତା' ଆଖିଟା ଝଲସି ଉଠିଲା । ସେ କଳ୍ପନା କରିନେଲା, ଦୋତାଲା ପକ୍କା ଉପରେ ବସି ଝୁଲା ଚୌକିରେ ହାଉଆ

ଖାଇବା ସୁଖ, ମନେକରିନେଲା ଉଇତ-ବାଇତଙ୍କ ଉପରେ ହୁକୁମ ଜାରିର ମଉଜ । ଭାବିନେଲା, ଆଉ ସକାଳୁ ସନ୍ଧ୍ୟାଯାଏ ଗତର ଖାଟି ମଧ୍ୟ ଏଓଳି ସେଓଳି ମୁଠାଏ ବଗଡ଼ା ଭାତ ପେଟରେ ପକାଇବାର ଭାବନା ରହିବ ନାହିଁ । ସେ କହିଲା, "ଆଜ୍ଞା, ସତେ କ'ଣ ଏ କଥା ହବ ?"

ଶିବ : ଆରେ ହବ, ସବୁ ହବ, ମନ ଥିଲେ ଲୋକେ ଲଙ୍କା ରାମେଶ୍ୱର ଯାଉଛନ୍ତି, ଆଉ ଏ କିବା ବଡ଼ କଥାଟେ ? ଗୋଟାଏ ଟୋକାର ପ୍ରାଣ । ଶାସ୍ତ୍ରରେ କହିଛି ମଣିଷ ଜୀବନ ପାଣିଫୋଟକା ପରି, ଗୋଟାଏ ଫୁତ୍କାରରେ ଉଡ଼ିଯିବ ।

ଶିଶୁ : ତୁ ଯଦି ରାଜି, ସେ କଥା କହ, ଆମେ ସବୁ କରିଦବୁ, ତତେ କିଛି କରିବାକୁ ହେବ ନାହିଁ ।

ଲଣ୍ଡା : ସେ ବିରକ୍ତ ହୋଇ ମଧ୍ୟ ଯଦି ଗାଁ ଛାଡ଼ି ନଯାଏ ?

ଶିଶୁ : ତା'ହେଲେ ଗୋଟାଏ ପିଲାର ଜୀବନ କେତେ କଡ଼ାର !

ଲଣ୍ଡା : କିନ୍ତୁ ଜୀବନରେ...

ଶିଶୁ : ଆରେ ଧାତ୍, ସେ ଯାହା କରିବାକୁ ହେବ, ସେ ସବୁ ଆମର; ତୁ ଖାଲି ଆମ କଥା ମାନି ଚଳିବୁ ତ କହ ?

ଲଣ୍ଡା : ଆଜ୍ଞା, ଖାଲି ତା'ର ପ୍ରାଣଟା ନବା ଛଡ଼ା ଆଉ ଯାହା କହିବେ ତା' କରିବାକୁ ମୁଁ ରାଜିଅଛି ।

ଶିଶୁ : ତେବେ ଆଉ କ'ଣ ? ଏଥରକ ତ ସବୁ ଆପଣଙ୍କ ଉପରେ ବାବୁ !

ଶିବ : କିନ୍ତୁ ଭାବି ଦେଖିଛ, ଏଥିରେ ଖରଚ କେତେ ? ଏ ପଇସା ଆସିବ କୁଆଡୁ ?

ଅଲଣା : ଆଜ୍ଞା, ସେଥିରେ ଆପଣ ସାହାଯ୍ୟ ନକଲେ କ'ଣ କିଛି ହୋଇପାରିବ ?

ଶିବ : ମୁଁ ଏତେ ପଇସା କୁଆଡୁ ଆଣିବି ? ଆଣିଲେ ବା ମୁଁ ତୁଚ୍ଛାଟାରେ ପାଞ୍ଚ ହଜାର କି ଦଶ ହଜାର ଟଙ୍କା ଖର୍ଚ୍ଚ କରିବି କିଆଁ !

ଫଲଣା : ଆଜ୍ଞା, ଟଙ୍କା ପାଞ୍ଚ ଦଶ ହଜାର ଆପଣଙ୍କୁ କେତେ ? ଧାନ ମୁନ୍ଦୁରାରୁ କୁଆ ଥଣ୍ଟେ ନେଲାଭଳି । ଆପଣ ସାହାଯ୍ୟ ନହେଲେ ଆଉ ଏ ଖଣ୍ଡମଣ୍ଡଳରେ କାହାର ଧାତି ଅଛି, କିଏ କରିବ ?

ଶିବ : ନା ନା, ଆପଣମାନେ ବୁଝିପାରୁ ନାହାନ୍ତି; ଏ ବଡ଼ ଶକ୍ତ କାମ । ଏଥିରେ ଭଲ-ମନ୍ଦ ନାନାପ୍ରକାର କଥା ହୋଇପାରେ । ମୁଁ ମାଗଣା ଟଙ୍କା ଦେଇ କାମ ତୁଲାଉଥିବି; ଧର, କିଛି ଗୋଟାଏ ମନ୍ଦ ଘଟଣା ହୋଇଗଲା; ତା'ହେଲେ ଲୋକେ ଜାଣିଲେ କହିବେ, "ଆରେ, ଏଇ ତ ଟଙ୍କାପଇସା ମାଗଣା ଦେଉଥିଲେ, ଏଇ ସବୁ କରୁଛନ୍ତି," ମୋର କେତେ ଦୁର୍ନାମ ହେବ ? ମୁଁ ସିନା ଭିତରେ ଭିତରେ ରହିବି ।

ଫଲଣା : ତା' ଏକା ସତକଥା । ହଇ ହେ ନନ୍ଦେ, କ'ଣ କହୁଚ ?

ଶିଶୁ : ମୁଁ କହୁଚି, ଲଣ୍ଡା ଗୋଟାଏ ଦଶ ହଜାର ଟଙ୍କାର ହାଣ୍ଡନୋଟ କରିଦଉ, ତା'ହେଲେ ତ କାମ ତୁଟିଯିବ ।

ଲଣ୍ଡା : ଦଶ ହଜାର ଟଙ୍କାର ହାଣ୍ଡନୋଟ ! ମୁଁ ଏତେ ଟଙ୍କା ପାଇବି କେଉଁଠାରୁ ଯେ ଶୁଝିବି !

ଅଲଣା : ଆରେ ପାଗଳ, ତତେ ତ ବିକିଲେ ଦଶଟା ଟଙ୍କା ବି ହବ ନାହିଁ । ଦଶ ହଜାର ଟଙ୍କାର ଯେ ହାଣ୍ଡନୋଟ କରିଦେବୁ, ତାହା କ'ଣ ଶୁଝିବୁ ବୋଲି ? ଆମେ କ'ଣ ବୁଝୁନାହୁଁ ସେ କଥାଟା ଅସମ୍ଭବ । ଖାଲି ଶିବବାବୁଙ୍କ କଥା ରଖିବା ପାଇଁ ଏ କଥାଟା କରିବାକୁ ହେବ ମାତ୍ର ।

ଲଣ୍ଡା : ମୋ ଉପରେ ତ କିଛି ଦାୟିତ୍ୱ ଆସିବ ନାହିଁ !

ଫଲଣା : ଆରେ ଧାତ୍ ! କି ଦାୟିତ୍ୱ ଆସିବ ? ବୁଝୁନାହୁଁ, ଯେବେ ଆମ କାମ ଠିକ୍ ହୋଇଯିବ, ତୁ ଏତେ ସମ୍ପତ୍ତିରେ ମାଲିକ ହେବୁ । ଧର, ଯଦି ଶିବବାବୁ ଟଙ୍କାଟା ନବାପାଇଁ ଧରିବସିବେ, ତା'ହେଲେ ସେତେବେଳେ ଦଶ ହଜାର ଟଙ୍କା ଶୁଝିବାକୁ ତତେ କେତେ ଘଡ଼ି ଲାଗିବ ? ନାଇଁ ଯଦି ଏ କଥା କିଛି ନହେଲା ତା'ହେଲେ ଶିବବାବୁ ତୋଠାରୁ ପାଇବେ ବୋପା ଯେ ତତେ ଟଙ୍କା ମାଗିବେ ?

ଲଣ୍ଡା ଦେଖିଲା କଥାଟା ଠିକ୍ । ସେ ରାଜି ହୋଇଗଲା । ଠିକ୍ ହେଲା ତହିଁ ଆର ଦିନ ଯାଇ ପୁରୀରେ ହାଣ୍ଡନୋଟଟା ରେଜେଷ୍ଟ୍ରି ହେବ, କେହି ଯେପରି ନ ଜାଣନ୍ତି । ତା'ପରେ କାର୍ଯ୍ୟ ଆରମ୍ଭ କରାହେବ ।



## ଦୁଇ

ଉପରେ ଯେ ସବୁ କଥା କୁହାଗଲା, ତା'ର ଟିକିଏ ଟିକା-ଟିପଣୀ ଦରକାର । ବଳିବାବୁ ଓରଫ ବଳଭଦ୍ର ରଥ ଏଇ ମଧୁପୁର ଗ୍ରାମର ଜଣେ ଭଦ୍ରବ୍ୟକ୍ତି । ତାଙ୍କର ପିତା ଯେତେବେଳେ ମରିଗଲେ, ଛାଡ଼ିଯାଇଥିଲେ ସମ୍ପତ୍ତି ମଧ୍ୟରେ ଦି'ମାଣ ଧାନଜମି, ମାଣେ ନଡ଼ିଆ ବଗାଦ ଓ ପାଏ ନଇ; ଆଉ ବିପଦ ମଧ୍ୟରେ ଛାଡ଼ିଯାଇଥିଲେ ଛ'ବର୍ଷର ଗୋଟିଏ ପୁଅ 'ବଳି', ଷୋଳ ବର୍ଷର ଗୋଟିଏ କନିଆ-ମାଇପ ଓ ଏପଟେ ସେପଟେ ଦୁଇ ଘର ବିରାଦର ଲଣ୍ଡାର ବାପା ହରି ରଥେ ଓ ଚିନ୍ତାମଣି ରଥେ । ବଳିବାବୁ ମାମୁଁଘରେ ରହି ଏଣ୍ଟ୍ରାନ୍ସ ପାଶ୍ କଲେ । କୋଡ଼ିଏ ଟଙ୍କା ବୃତ୍ତି ପାଇ ବଳି କଟକ ପଢ଼ିବାକୁ ଗଲେ । ଆସ୍ତେ ଆସ୍ତେ ସେ ଏମ୍.ଏ. ପାଶ୍ କଲେ । ସବୁଥର ବୃତ୍ତି ନେଇଛନ୍ତି । ଗୋଟାଏ ଅଧେ ଟିଉସନ କରି ବାକି ଖର୍ଚ୍ଚଟା ତୁଲାଉଛନ୍ତି । ତା'ପରେ ସେ ପୁଲିସି ଡେପୁଟି ସୁପରିଣ୍ଟେଣ୍ଡେଣ୍ଟ ହେଲେ । ଭଲଭାବରେ ଓ ମନ୍ଦଭାବରେ ହରେକ ରକମ ଉପାୟରେ ସେ ଅନେକ ଟଙ୍କା ରୋଜଗାର କରିଯାଇଥିଲେ; କିନ୍ତୁ ସେ ବେଶି ଦିନ ବଞ୍ଚିପାରିଲେ ନାହିଁ । ଚାକିରି କରି ୧୨-୧୫ ବର୍ଷ ପରେ ସେ ଚମ୍ପାରନରେ ପ୍ଲେଗ ରୋଗରେ ମରିଯାଇଥିଲେ । ସେ ଚାକିରି କରି ବିବାହ ହୋଇଥିଲେ । ତାଙ୍କ ସ୍ତ୍ରୀ କୌଶଲ୍ୟା ଦେବୀ ବାଲେଶ୍ୱରର ବିଖ୍ୟାତ ଶତପଥୀ ବଂଶର ଝିଅ, ପାଠଶାଠ ବେଶ୍ ଜାଣନ୍ତି, ବଡ଼

ଚରିତ୍ରବତୀ । ସ୍ୱାମୀ ମରିଗଲାବେଳକୁ ତାଙ୍କୁ ମାତ୍ର ୩୦ ବର୍ଷ, କୋଡ଼ରେ ଗୋଟିଏ ବୋଲି ପୁଅ ଧୋଇଆ । ୧୨ ବର୍ଷ ହେବ, ତାଙ୍କର ଭାଇମାନେ ତାଙ୍କୁ ବାପଘରେ ରହିବାକୁ କହିଥିଲେ; ମାତ୍ର ସେ ସେକଥାକୁ କାନ ଦେଲେନାହିଁ । କହିଲେ, "ମୋର ସ୍ୱାମୀ ସେ ସମ୍ପତ୍ତି କରିଯାଇଛନ୍ତି, ତାକୁ ଦେଖାଶୁଣା କଲେ ମୋ ଭାତ ଆଉ କିଏ ଖାଇବ ! ମୁଁ କାହିଁକି ତୁମ ଘରେ ରହିବି ?" ଏହା କହି ଆସି ଗାଁରେ ଆସନ ମାଡ଼ି ବସିଲେ । ପାଖପଡ଼ିଶା ବିରାଦରମାନେ ଆଶା କରିଥିଲେ ଏ ମାଇପୀ ଲୋକ ତ ତା' ବାପଘରେ ରହିବ; ଆମେ ସବୁ ମାରିପିଟି ଖାଇବୁଁ । ସେ ଆସି ଆସନ ମାଡ଼ି ବସିବାରୁ ସେମାନଙ୍କ ମନ ଫିକା ପଡ଼ିଗଲା । ତଥାପି ଆଶା ଥିଲା, ଯେତେହେଲେ ମାଇପୀ ଲୋକ ତ, ଆମ୍ଭମାନଙ୍କର ସାହାଯ୍ୟ ନ ନେଇ ଚଳିବ କେତେକେ ? କିନ୍ତୁ ଦେଖିଲେ, କୌଶଲ୍ୟା ଦେବୀ ସେମାନଙ୍କ ସାହାଯ୍ୟ ନେଲେ ସତ, କିନ୍ତୁ ସେଥିରେ ସେମାନଙ୍କର ପରିଶ୍ରମହିଁ ସାର । କଅଁଳ କଥା, ଆଦର ଅଭ୍ୟର୍ଥନା, ଖୋସାମଦ ତୋଷାମଦ, ବେଳେବେଳେ ଦିବ୍ୟ ସରୁ ଅନ୍ନ ଓ ବିବିଧ ପ୍ରକାର ବ୍ୟଞ୍ଜନରେ ତ ଆଶା ମେଣ୍ଟିବାର ନୁହେଁ; କିନ୍ତୁ ତା'ଠାରୁ ବେଶି ପାଇବାର ଉପାୟ ନଥିଲା । କୌଶଲ୍ୟା ଦେବୀ ଧାନ କଳେଇଠାରୁ ନଡ଼ିଆ ପର୍ଯ୍ୟନ୍ତ ହିସାବ ରଖନ୍ତି ।

ତା'ପରେ ଗାଁର ଗୋଟାଏ ଅଧେ ମାମଲତକାରିଆଙ୍କ ବୁଦ୍ଧିରେ ପଡ଼ି ସେମାନେ ବଳିବାବୁଙ୍କର ଯେଉଁଠି ଯେଉଁଠି ଜମି ସେମାନଙ୍କ ଜମି ପାଖରେ ଅଛି, ସେହି ସେହି ଜମି ଲୁଟିବାକୁ ଆରମ୍ଭ କଲେ । କୌଶଲ୍ୟା ଦେବୀ ଭଦ୍ରଭାବରେ ସେମାନଙ୍କୁ ନିରସ୍ତ କରିବାକୁ ଚେଷ୍ଟାକରି ନିରାଶ ହୋଇ ଶେଷରେ ସେଇ ସେଇ ଜମି ଟାଣୁଆ ଟାଣୁଆ ରଇତ ଦେଖି ଲଗାଇଦେଲେ । ଚିନ୍ତାମଣି ଓ ହରି ଉଭୟେ ଗରିବ ଓ ଭୟାଳୁ; ରାଣ୍ଡ ମାଇପିକୁ ଠକି ଖାଇବାର ବଳ ସେମାନଙ୍କର ଥିଲେ ମଧ୍ୟ ରଇତମାନଙ୍କ ସହିତ ଲଢ଼େଇ କରିବାକୁ ସାହସ ସେମାନଙ୍କର ନଥିଲା । ସେଥିରେ ନପାରି ସେମାନେ ଦାଣ୍ଡଆଡ଼ ବାଡ଼ିଆଡ଼ ମେଘୁଆ, ନଡ଼ିଆ ଓ ପଣସ ଗଛ ଲୁଟି କରିବାକୁ ଆରମ୍ଭକଲେ । ସେଥିରେ ମଧ୍ୟ କୌଶଲ୍ୟା ଦେବୀ ଭଦ୍ରଭାବରେ ପ୍ରତିବାଦ କରିବାକୁ ଗଲେ ସେମାନେ ଦଳବଳ ଘେନି ତାଙ୍କ ସାଙ୍ଗରେ କଳହ ଆରମ୍ଭ କଲେ । କୌଶଲ୍ୟା ଦେବୀ ଦେଖିଲେ ସାମାନ୍ୟ କଥାରେ ତାଙ୍କ ସାଙ୍ଗରେ ଇତର ଲୋକଭଳି କଳି କରିବା ଅସମ୍ଭବ । ସେଥିପାଇଁ ସେ ଦାଣ୍ଡଆଡ଼ ବାଡ଼ିଆଡ଼ ଗଛମାନଙ୍କର ଆୟ ଆଶା ଛାଡ଼ିଦେଲେ । ଯେତେବେଳେ ପାରନ୍ତି ଓ ସେମାନଙ୍କଠାରୁ ଯାହା ବଳେ, ତାହା ଆଦାୟ କରନ୍ତି ଓ ଯାହା ନପାରନ୍ତି, ତା'ଲାଗି ମନଦୁଃଖ କରନ୍ତି ନାହିଁ । କିବା ଆୟ ? ତାଙ୍କର ସେଥିରେ କିବା କ୍ଷତି ହେବ ? ତଥାପି ମାଇପି ଲୋକ ଆଖି ସାମନାରେ ନିଜର ଜିନିଷଗୁଡ଼ାକ ଉଜୁଡ଼ିବାର ଦେଖି କେତେ ଜିଭ କାମୁଡ଼ି ରହିବେ ? ବେଳେବେଳେ ପଦେଅଧେ କହିଦେଲେ ଦି' ପଡ଼ିଶା ତାଙ୍କ ସାଙ୍ଗରେ କଳି କରିବାକୁ ଧାଇଁ ଆସନ୍ତି; ନାନା ପ୍ରକାର କାନ ନଶୁଣା କଥାରେ ଗାଳିଦିଅନ୍ତି । ସେସବୁକୁ ପିଠିକି ପକେଇ ଦେଇ ଘରେ ଚୁପ୍‌ଚାପ୍ କରି ବସିରହନ୍ତି । ଏ ସବୁ ପରେ ମଧ୍ୟ, ଲଣ୍ଡା ବୋଉ ଓ ଚିନ୍ତାମଣିଙ୍କ ସ୍ତ୍ରୀ ଅକାଳେ ସକାଳେ ଲୁଣଟା, ତେଲଟା, ତରକାରିଟା, ମାଛଟା ମାଗିଆସିଲେ ସେ ନା' ବୋଲି କହନ୍ତି ନାହିଁ ।

ଏହିପରି ଦୁଃଖରେ ସୁଖରେ ଦୁଇ ତିନି ବର୍ଷ କଟିଗଲା । କୌଶଲ୍ୟା ଦେବୀଙ୍କର ଜଣେ ଗୁମାସ୍ତା ଥାଏ । ତାଙ୍କର ସମ୍ପତ୍ତି ବଢ଼ିଚାଲିଛି । ଖାଇବାକୁ ଘରେ ଦୁଇଟା ପେଟ; ଏତେ ସମ୍ପତ୍ତି, ନବଢ଼ି ଯାଏ କୁଆଡ଼େ ? ସେ ଏକା ଏସବୁ ଆଇଦେଇବାକୁ ସକ୍ଷମ ହେଲେ ନାହିଁ ବୋଲି ଜଣେ ଗୁମାସ୍ତା ରଖିଲେ । ଗୁମାସ୍ତା ମଧ୍ୟ ସେହି ଗାଁର, ନାମ କାଳୁ ମହାପାତ୍ର । ଶେଷରେ ପଡ଼ିଶାମାନେ ଗାଁରେ ଗୋଟାଏ ରଟନା କଲେ ଯେ କୌଶଲ୍ୟା କାଳୁ ମହାପାତ୍ରଙ୍କ ସହିତ ପାପ ପ୍ରଣୟରେ ପଡ଼ି ଗର୍ଭ ହୋଇଛନ୍ତି । କୌଶଲ୍ୟା ଦେବୀଙ୍କ କାନକୁ ସେ କଥା ଗଲା । ସେ ପ୍ରଥମେ ସେକଥା ତ ହସରେ ଉଡ଼େଇ ଦେଉଥିଲେ, କିନ୍ତୁ ଯେତେବେଳେ ସେମାନେ ଦେଖିଲେ ଯେ ତାଙ୍କର ଖୁଡୁତାଶୁର ଦି'ଜଣ ଏଇ କଥା ନେଇ ଗାଁରେ ତାଙ୍କୁ ଏକଘରିକିଆ କରିବାର ଯୋଗାଡ଼ କରୁଛନ୍ତି ଓ ବିଚରା କାଳୁ ମହାପାତ୍ରକୁ ମଧ୍ୟ ବିପଦରେ ପକାଇବାର ଉପାୟ କରୁଛନ୍ତି, ସେତେବେଳେ ସେ ଆଉ ଥୟ ଧରି ରହିପାରିଲେ ନାହିଁ । ଭାଇମାନଙ୍କୁ ଡକାଇ, ମହାପାତ୍ରଙ୍କୁ ବୁଝାଇ, ଏ ଦୁଇଜଣଙ୍କ ନାଁରେ ଫୌଜଦାରି ଅଦାଲତରେ ଓ ଦେୱାନି ଅଦାଲତରେ ମାନହାନି ମକଦମା ହେଲା । ଗାଁ ବାସୀମାନେ ପଞ୍ଚାଏତ କରି କଥାଟାକୁ ମିଶାଇଦେଲେ । ଚିନ୍ତାମଣି ଓ ହରି ମିଥ୍ୟା ଅପବାଦ ଦେଇଥିବାରୁ କୌଶଲ୍ୟା ଦେବୀଙ୍କୁ ଖେସାରତ ସ୍ୱରୂପ ପଚିଶ ଟଙ୍କା ଲେଖାଏଁ ଜୋରିମାନା ଦେବାର ଠିକ୍ ହେଲା । କୌଶଲ୍ୟା ଦେବୀ ସେମାନଙ୍କଠାରୁ ପଚିଶ ପାହୁଲା ଲେଖାଏଁ ଆଦାୟ କରି ବାକି ଟଙ୍କାରୁ ସେମାନଙ୍କୁ ମାଫ୍‌ଦେଲେ ।

ଗାଁର ମଙ୍ଗଳ କାମରେ କୌଶଲ୍ୟା ଦେବୀ ବେଳେ ବେଳେ ଟଙ୍କାପଇସା ଦିଅନ୍ତି । ଗାଁ ଇସ୍କୁଲ ଘର ବି ତାଙ୍କରି ଦାନର ଫଳ । ଦୋଳରେ ନାଗାଜାତ, ଶୀତଳ ଷଷ୍ଠୀର ବାଣଭେଦା, ସାଗରସ୍ନାନ ମେଳା ଓ ସରନ୍ତି ସୋମବାର ଲୋକନାଥ ମଉଜକୁ ଗାଁରେ ସମସ୍ତେ ବଖରା ମୁଣ୍ଡକୁ ଚାରଣା କରି ଭେଦା ଦେଲାବେଳେ, କୌଶଲ୍ୟା ଦେବୀ ବଖରାକୁ ଟଙ୍କାଏ ଦେଢ଼ ଟଙ୍କା ଦେବାକୁ ନିୟମ ବାନ୍ଧି ଦେଇଥିଲେ । ଏହିସବୁ କାରଣରୁ ଗାଁର ଅଧିକାଂଶ ଲୋକ କୌଶଲ୍ୟା ଦେବୀଙ୍କ ଉପରେ ଭାରି ଖୁସିଥାନ୍ତି । ତଥାପି ତାଙ୍କ ତୁଳନାରେ ହରି ଓ ଚିନ୍ତାମଣିଙ୍କର କଷ୍ଟ ଦେଖି ବେଳେବେଳେ ଗାଁ ଲୋକମାନଙ୍କର ସହାନୁଭୂତି ଓ ଅନୁକମ୍ପା ହରି, ଚିନ୍ତାମଣିଙ୍କ ଆଡ଼କୁ ଢଳିପଡ଼େ । ଏହିପରି ମୁହୂର୍ତ୍ତରେ ଗାଁ ଭିତର ବାମ୍ଫି ଉପରେ ସନ୍ଧ୍ୟାବେଳେ କଥା ପଡ଼ିଲେ କେହି କେହି ଏମାନଙ୍କର ଉପକାର ନ କରିବାରୁ କୌଶଲ୍ୟା ଦେବୀଙ୍କୁ ଦୋଷ ମଧ୍ୟ ଦିଅନ୍ତି । ଏମାନେ ତ ଆଉ ଭିତିରି କଥା ବୁଝନ୍ତି ନାହିଁ । ବୁଝନ୍ତି ନାହିଁ ଯେ ସାଧୁଭାବରେ ଦି'ପଇସା ତାଙ୍କଠାରୁ ରୋଜଗାର କରିନେବା ପାଇଁ ଏମାନଙ୍କୁ କୌଶଲ୍ୟା ଦେବୀ ଯଥେଷ୍ଟ ସୁବିଧା ଦେଇଥିଲେ; କିନ୍ତୁ ଏମାନଙ୍କର ଇଚ୍ଛା ରୋଜଗାର କରିବା ନ ହୋଇ ଲୁଟ୍ କରିଥିବାରୁ ବାଧ୍ୟ ହୋଇ କୌଶଲ୍ୟା ଦେବୀ ସେମାନଙ୍କର ହାତ ଯେପରି ତାଙ୍କ ସମ୍ପତ୍ତିରେ ନଲାଗେ ତାହାର ବ୍ୟବସ୍ଥା କରିଥିଲେ । ବୁଝନ୍ତି ନାହିଁ ଯେ କୌଶଲ୍ୟା ଦେବୀ ଯେଉଁ ଥର ଚିନ୍ତାମଣି ରଥଙ୍କୁ ଚାନ୍ଦପଟା ଚକକୁ ଧାନ ଅମଳ କରିବାକୁ ପଠାଇଥିଲେ, ସେ ଥରକ ରଥେ କିପରି ପ୍ରତି ପୌଟିଏ ଧାନରେ ପାଞ୍ଚଗୌଣି ନିଜ ଘରକୁ ପଠାଇଦେଇଥିଲେ ।

ଯାହାହେଉ ସବୁକଥା ନ ଜାଣି ଥିବାରୁ ଲୋକମାନଙ୍କର ଯାହା ଏ ଅକାଳ-ସକାଳ ସହାନୁଭୂତି ହରି ଓ ଚିନ୍ତାମଣି ପାଉଥିଲେ, ଆଗର ସେଇ ଘଟଣା ପରେ ସେମାନେ ସେତକ ମଧ୍ୟ ହରାଇଲେ । ଏଣେ ଚିନ୍ତାମଣି ଓ ହରିଙ୍କ ଉପରୁ ଲୋକଙ୍କର ମମତା ଯେତିକି ତୁଟିଯାଉଥାଏ, ତେଣେ କୌଶଲ୍ୟା ଦେବୀଙ୍କ ଉପରେ ସାଧାରଣଙ୍କର ଶ୍ରଦ୍ଧା ଓ ଭକ୍ତି ମଧ୍ୟ ସେହି ପରିମାଣରେ ବଢ଼ିଯାଉଥାଏ । ଗାଁର ସାଧାରଣ କଥାରେ କୌଶଲ୍ୟା ଦେବୀଙ୍କର ଯେ ପଦେଅଧେ କହିବାର ଅଛି ଆଉ ସେ ପଦଅଧକ ଯେ ଶୁଣିବାର ଯୋଗ୍ୟ ତାହା ଲୋକେ ଆସ୍ତେ ଆସ୍ତେ ବୁଝିପାରିଲେ । ଥରେ ଗାଁରେ ସଭା ବସିଲା । ସେତେବେଳେ ବନ୍ଦୋବସ୍ତ ଲାଗିଥାଏ । ଗାଁର କେତେ ଜଣ କହିଲେ ଯେ ଏଇ ବନ୍ଦୋବସ୍ତରେ ଗାଁର ମହାଦେବ ବିଶ୍ୱେଶ୍ୱରଙ୍କ ଜମିଗୁଡ଼ାକ ଯେ ବନ୍ଦୋବସ୍ତରେ ସେବକମାନଙ୍କ ନାମରେ ହୋଇଯାଇଥିଲା, ତାହା ଖାରଜ କରାଯାଇ ବ୍ରାହ୍ମଣମାନଙ୍କର ନାମ ମାରଫତଦାର ସୂତ୍ରେ ଲେଖାଯାଉ । କିନ୍ତୁ ସେ ଏକ ମସ୍ତ ବ୍ୟାପାର । ସେବକମାନେ ଏତେ ବର୍ଷ ଧରି ଯେ ଜମିଗୁଡ଼ାକ ଭୋଗ-ଦଖଲ କରିଆସୁଛନ୍ତି ସେମାନେ ତାହା ଛାଡ଼ିଦେବେ କାହିଁକି ? ଫଳରେ ମାଲିମକଦମା କରିବାକୁ ହେବ । ଏ ମାଲିମକଦମା ଖୁବ୍ ସମ୍ଭବ ବନ୍ଦୋବସ୍ତରେ ତୁଟିବନାହିଁ; ଦେୱାନି କରିବାକୁ ହେବ । ଏ ସବୁରେ ଖର୍ଚ୍ଚ ଅନେକ । ଏତେ ଖର୍ଚ୍ଚ କରି ମଧ୍ୟ ହବ କି ନ ହବ, ଯଥେଷ୍ଟ ସନ୍ଦେହ ରହିଛି । ଗ୍ରାମର ମୁଖିଆ ମୁଖିଆମାନେ ଏସବୁ କଥା ବିଚାର କରି ଦୋ-ଦୋ ପାଞ୍ଚ ହଉଚନ୍ତି, ଏପରି ସମୟରେ ଫଲଣା ତିଆଡ଼ିଏ କହିଲେ—ଶିବ ବାବୁଙ୍କୁ ଏ ବିଷୟରେ ପଚାରିଲେ ହୁଅନ୍ତାନାହିଁ ? ତାଙ୍କୁ କେଉଁ ଆଇନ୍ ଅଜଣା ? ନିଜେ କିଲଟର କମିସନର ସାହେବ ଇତ୍ୟାଦି... । ମୁଖିଆମାନେ ଗୋଟାଏ ଭଲ ଉପାୟର ବାଟ ଦେଖି ଫଲଣାଙ୍କୁ ସାବାସ ସାବାସ କଲେ । ତା'ପରେ ବିଷୟଟା ଶିବବାବୁଙ୍କ ପାଖକୁ ଗଲା । ସେ କହିଲେ ଯେ ଠାକୁର ଯେତେବେଳେ ଗ୍ରାମର, ଠାକୁରଙ୍କ ଖଞ୍ଜା ଜମି ମଧ୍ୟ ଗ୍ରାମର । ତାହା ସେବକମାନଙ୍କର କୌଣସି ସମ୍ପତ୍ତି ନୁହେଁ । ସେମାନେ ସେବକ ମାତ୍ର, ମାରଫତଦାର ଗାଁ ମହାଦେବ । ଗାଁ ବସିଲାବେଳେ ସନନ୍ଦ ସବୁ ଦେଖାଇ ଏହା ପ୍ରମାଣ କରାଯାଇପାରେ । କିନ୍ତୁ ମୋର ବିଶ୍ୱାସ, କଥାଟା ସେ ଯାଏ ଯିବନାହିଁ । ସେବକମାନେ ମାତ୍ର ୨୦-୨୫ ଘର । ଆମେ ହେଲେଇଁ ୩୦୦ ଘର । ଆମ୍ଭେମାନେ ବିଚାରିଲେ ସେମାନଙ୍କର ଦାଣ୍ଡରେ ଯିବା ଆସିବା ପର୍ଯ୍ୟନ୍ତ ବନ୍ଦ ହୋଇଯିବ । ଆଉ ଟଙ୍କା ପଇସା କଥା; ଗାଁର ମଙ୍ଗଳ ପାଇଁ ଦରକାର ହେଲେ, ମୁଁ ଦଶ ହଜାର ଟଙ୍କା ଦେଇପାରେ । ଆପଣମାନେ ଚାନ୍ଦାଚୁନ୍ଦି କରି ଚଳାନ୍ତୁ, କେତେ ଦୂର ଚଳୁଛି । ତା'ପରେ ମୁଁ ଯଥା ସାହାଯ୍ୟ ଦେବି ।

ଗ୍ରାମର ମୁଖିଆ ଯେଉଁମାନେ ଆସିଥିଲେ, ସେମାନେ ଏ କଥା ଶୁଣି ଏକାବେଳକେ ବିଶ୍ୱାସ କରି ବସିଲେ ଯେ ଠାକୁରଙ୍କ ଜମିଗୁଡ଼ାକ ଗାଁ ମହାଦେବଙ୍କ ନାମରେ ହୋଇଯିବା ଅତି ସହଜ ଜିନିଷ । ସେମାନେ ଫେରିଆସି ଗାଁ ମୁକ୍ତାରଙ୍କ ଦ୍ୱାରା ସଭା ଡକାଇଲେ । ଗାଁର ସବୁଲୋକେ ଆସି ଜମିଥାନ୍ତି । କାଳୁ ମହାପାତ୍ରେ ମଧ୍ୟ ଆସିଥାନ୍ତି । ଯେତେବେଳେ ସଭାରେ କଥା ପଡ଼େ, ସେତେବେଳେ ଗାଁର କେହି କେହି ବିଶେଷତଃ ରଥସାଇଆମାନେ ମହାପାତ୍ରଙ୍କୁ ପଚାରିଲେ, "କିଏ ବାବୁଆଣୀଙ୍କି ଏକଥା ପଚାରିଥିଲ, ସେ କ'ଣ କହିଲେ ?" ମହାପାତ୍ରେ କହିଲେ, "ବାବୁଆଣୀଙ୍କର ଇଛା ଏସବୁ ଗୋଳମାଳକୁ ନ ଯିବା ଭଲ ।" ଶିଶୁପାଳ ଉଠିପଡ଼ି

କହିଲେ, "ହଁ, ମାଇକିନିଆ ଜାତି ତ, ବୁଦ୍ଧିଟା ଆଉ କେତେ ଦୂର ଯିବ ।" ଏ କଥାର ପ୍ରତିବାଦ କରି ଜଣେ କହିଲେ, ଆଉ ଜଣେ ତାଙ୍କ କଥା କାଟିଲେ, ଏହିପରି ହଉ ହଉ ଗୋଟାଏ ଗୋଳମାଳ ଆରମ୍ଭ ହେଲା । ଗୋଳମାଳ ସରିଲା ପରେ ଏ ମୁଣ୍ଡର ମୁଖିଆ ମାଧ ବାହାନପତିଏ ଚୂନପତ୍ର ମେଞ୍ଚାଏ ଦଲୁ ଦଲୁ କହିଲେ, "ବୁଝିଲ ନାହିଁ କିହେ ! ଏ ହେଲା ସାଧାରଣଙ୍କ କଥା, ସମସ୍ତେ ଏ କାର୍ଯ୍ୟରେ ଚାନ୍ଦା ଦେବେ, ଫଳରେ ସମସ୍ତଙ୍କର ଏ ବିଷୟରେ ନିଜର ମତାମତ ଦେବାର ଅଧିକାର ଅଛି । ମାଇପି ବୋଲି କହି ଉଡ଼େଇଦେଲେ ଚଳିବନାହିଁ । ଆମ୍ଭେମାନେ ଅନେକ କ୍ଷେତ୍ରରେ ଦେଖିଛୁଁ ବାବୁଆଣୀଙ୍କର ଉପଦେଶ ପରାମର୍ଶ ଏ ଗାଁର ଶତକଡ଼ା ନବେଜଣ ମର୍ଦଙ୍କଠାରୁ ମଧ୍ୟ ମିଳିବନାହିଁ । ଶାସ୍ତ୍ରରେ କହିଚି, 'ବାଳାଦପି ସୁଭାଷିତମ୍'; ସୁତରାଂ ଆପଣମାନେ ତାଙ୍କର କାରଣଟା ମନଦେଇ ଟିକିଏ ଶୁଣନ୍ତୁ, ତା'ପରେ ନହେଲେ ଆପଣମାନେ ତାଙ୍କୁ ପ୍ରତ୍ୟାଖ୍ୟାନ କରିପାରନ୍ତି ।"

ବାହାନପତିଏ ପଣ୍ଡିତ ବ୍ୟକ୍ତି, ପୁଣି ବୁଢ଼ା । ତାଙ୍କ କଥାକୁ ସମସ୍ତେ ତ ଖାତିର କରନ୍ତି ଟିକିଏ ସବୁବେଳେ । ଏ କଥାଟା ପୁଣି ସମସ୍ତଙ୍କ ମନକୁ ଆସିଲା । ସମସ୍ତେ ଚୁପ୍‌ଚାପ୍ ହେଲା ପରେ ମହାପାତ୍ରେ ଉତ୍ତରରେ କହିଲେ, "ବାବୁଆଣୀ କହନ୍ତି ଯେ, ସେବକମାନେ ଯୁ ସମ୍ପତ୍ତି ଆଜିକି ସାତପୁରୁଷଧରି ଭୋଗକରି ଆସୁଛନ୍ତି, ତାକୁ କ'ଣ ସେମାନେ ଏପରି ସହଜରେ ଛାଡ଼ିଦେବେ ? ଫଳରେ ତା' ପାଇଁ ମାଲିମକଦମା ହେବ । ଏତେ ଟଙ୍କା ଆସିବ କୁଆଡୁ ? ଗାଁରେ ଚାନ୍ଦା କଲେ ଗରିବ-ଗୁରୁବାଙ୍କ ଉପରେ ସିନା ବେଶି କଷ୍ଟ ହେବ ! ସେ କଷ୍ଟ ହୋଇ ବା କ'ଣ ହବ ? କାକର ଚୁପୁଡ଼ି ତ ଘଡ଼ା ଭର୍ତ୍ତି ହେବନାହିଁ । ଯୁଠେଇ ହଜାର ହଜାର ଦରକାର, ସେଠି ଚାରଣା' ଆଠଣା' ଚାନ୍ଦା କି ତୁଲେଇବ ? ତେଣେ ସେବକମାନେ ଯେ ଲଢ଼ିବେ, ସେ ଖର୍ଚ୍ଚ ଆଣିବେ କୁଆଡୁ ? ସେଇ ଠାକୁରଙ୍କ ଜମି ବିକିଭାଙ୍ଗି ତ ? ତା'ପରେ ଆପଣମାନେ ଦେଖନ୍ତୁ, ଶେଷ ଫଳଟା କ'ଣ ହେବ ? ଧରନ୍ତୁ ଆପଣମାନଙ୍କର ନାଁରେ ଜମି ହୋଇଗଲା; ସେଥିରେ ଆମର କିଛି ଲାଭ ଅଛି ? ଦିଅଁଙ୍କର ଜମି, ଯାହା ପାଇବେ ସେଇ ଦିଅଁଙ୍କ ପିଛା ଖର୍ଚ୍ଚ ହେବ । ଖାଲି ବଡ଼ ହେଇକରି ଏତିକି ହବ ଯେ, ଆଜିକାଲି ଯେପରି ଗୋଡ଼ ଉପରେ ଗୋଡ଼ ଦେଇ ଘରେ ବସିଛନ୍ତି, ଏଣେ ଦିଅଁଙ୍କ କାମ ସବୁ ସୁରୁଖୁରୁରେ ହୋଇଯାଉଛି, ତା' ନହେଇ ଆମେ ସବୁ ଖଟି ଖଟି ମରିବା, ଆଉ ସେବକମାନେ ସା'ନ୍ତେଇ ହୋଇ ବସିବେ ।" ଅଧିକାଂଶଙ୍କ ମନକୁ କଥାଗୁଡ଼ାକ ଏକବାରେ ବେଦର ଗାରପରି ପାଇଗଲା । ଶିବବାବୁଙ୍କର ପାର୍ଶ୍ୱଚରମାନେ ଗାଁ ଲୋକଙ୍କ ଭିତରେ ମାଲି-ମକଦମାର ଇଚ୍ଛାକୁ ଜଗେଇବା ପାଇଁ ଆଉ ଥରେ ଦି'ଥର ଚେଷ୍ଟାକଲେ; କିନ୍ତୁ ଦେଖିଲେ, ତାହା ଅସମ୍ଭବ । ଆଉ ମଧ୍ୟ ଏ ଘଟଣା ପରେ ସେମାନେ ଆସ୍ତେ ଆସ୍ତେ କମିଯାଉଛନ୍ତି ଓ କଥାରେ କଥାରେ କୌଶଲ୍ୟା ଦେବୀଙ୍କ ମତକୁ ଅପେକ୍ଷା କରିବା ଲୋକମାନଙ୍କର ଅଭ୍ୟାସ ହୋଇଆସୁଚି ।

ଅବଶ୍ୟ ଶିବବାବୁଙ୍କ ଭଳି ପଣ୍ଡିତ, ବିଖ୍ୟାତ ଓ ବୁଦ୍ଧିମାନ ଲୋକ ଯେ ଏଇ ସାମାନ୍ୟ କାରଣକୁ ନେଇ ଧୋଇଆ ସମ୍ବନ୍ଧରେ ଏତେ ପାଞ୍ଚ ଠିକ୍ କରୁଥିଲେ, ସେ କଥା ଆମେ କହୁନାହୁଁ । ହୋଇପାରେ ସେ ପ୍ରକୃତରେ ଲକ୍ଷ୍ମୀ ହେରିକାଙ୍କ ଦୁଃଖରେ ଦୁଃଖୀ । ହୋଇପାରେ ସେ ପ୍ରକୃତରେ

ବଳିବାବୁ ଓ ପରେ କୌଶଲ୍ୟା ଦେବୀଙ୍କର ତାଙ୍କ ୱାରପମାନଙ୍କ ପ୍ରତି ବ୍ୟବହାରକୁ ଅନ୍ୟାୟ ବୋଲି ଭାବୁଥିଲେ । ଆମେ କାର୍ଯ୍ୟ-କାରଣ ବତାଇବାକୁ ବସିନାହୁଁ । ଠିକ୍ ଠିକ୍ ଘଟଣା ଯାହା ଘଟିଚି, ସେଇ ଗୁଡ଼ିକ ଯଥାକ୍ରମେ ବର୍ଣ୍ଣନା କରିପାରିଲେ, ଆମର କାମ ଶେଷ ।



## ତିନି

ବାବୁଆଣୀଙ୍କ ସମ୍ବନ୍ଧରେ ଉପରେ ଯାହା ସବୁ କୁହାଗଲା, ସେଥିରୁ ଜଣେ ଲୋକ ବୁଝିବା ସ୍ୱାଭାବିକ ଯେ, ସେ ତାଙ୍କର ଏକମାତ୍ର ପୁଅଟିର ପଢ଼ାପଢ଼ି ଇତ୍ୟାଦି ବିଷୟରେ ଯଥେଷ୍ଟ ଯତ୍ନ ନେଉଥିଲେ ନିଶ୍ଚୟ; କିନ୍ତୁ ଅସଲ କଥା, ଧୋଇଆ କଥା ପଡ଼ିଲେ ଶିଖଣ୍ଡିକୁ ଦେଖି ଭୀଷ୍ମଙ୍କ ବଳ ବୀର୍ଯ୍ୟ ଲୁପ୍ତ ହୋଇଗଲା ଭଳି, ତାଙ୍କର ସବୁ ବିଦ୍ୟା ବୁଦ୍ଧି ଓ ବିବେକ ହଜିଯାଏ ।

ଧୋଇଆର ପାଞ୍ଚ ବର୍ଷ ପୂରିଯିବା ସଙ୍ଗେ ସଙ୍ଗେ ବଳିବାବୁ ଘରେ ଗୋଟିଏ ମାଷ୍ଟର ରଖି ତାକୁ ପାଠ ପଢ଼େଇବାକୁ ଆରମ୍ଭ କଲେ; କିନ୍ତୁ ଘର ଭିତରୁ କଡ଼ା ହୁକୁମ ଆସିଲା, ଧୋଇଆ ଦିହରେ ଯେପରି ମାଷ୍ଟ୍ରେ ବାବୁ ଟିପ ନ ଦିଅନ୍ତି । ମାଷ୍ଟର ବିଚରା ବଡ଼ ଫିସାଦରେ ପଡ଼ିଗଲେ । ମାଡ଼ ନଦେଇ ଧୋଇଆ ଭଳି ପିଲାକୁ ପାଠ ପଢ଼ାଇବା ଯେ କେତେ କଷ୍ଟର କଥା, ତାହା ଯେ ଅଙ୍ଗେ ନିଭାଇଛି ସେ ଏକା ଜାଣେ । କୋଉଠୁ ଶିଖିଲା ସେ କେଜାଣି, ମାଷ୍ଟରେ ଯେବେ କହନ୍ତି, କିରେ ଧୋଇଆ, କହ ଅ ଆ, ତେବେ ଧୋଇଆ କହିବ, "ବୋଉ କହିଚି ଘରେ ଯା" । ମାଷ୍ଟରେ ଯଦି କେତେବେଳେ ଟିକିଏ ଆଖି ଦେଇଖେଦେଲେ, ତା'ହେଲେ ଧୋଇଆ କାନ୍ଦିକାଟି ଘର ଉପାଇଦେବ । ଘରେ ଯାଇ କହିବ ମାଷ୍ଟରେ ମୋତେ ମାଇଲେ । ତା'ପରେ ମାଷ୍ଟର ବିଚରା କୈଫିୟତ ଦେଇ ଦେଇ ଅଥୟ । କଥା ପଡ଼ିଲେ ବାବୁଆଣୀ କହନ୍ତି, "ଉଚିଆଣି ପିଲାଟା, ସେ କ'ଣ ପାଠର କଥା ବୁଝିଲାଣି ! ତାକୁ ସିନା ବୁଝେଇ-ସୁଝେଇ ହସେଇ-ଖେଳେଇ ଯାହା ପାରନ୍ତେ ପଢ଼ାନ୍ତେ ! ମାଷ୍ଟରଟା କିଛି କାମର ନୁହେଁ ।" ମାଷ୍ଟର ବିଚରା ଶେଷକୁ ବିଷ୍ଣୁ ଶର୍ମାଙ୍କ ନୀତି ଆଶ୍ରାକରି ଧୋଇଆକୁ ପାଖରେ ବସାଇ ପାଠପଢ଼ାର ଉପକାରିତା ବିଷୟରେ ଗପ କହିବାକୁ ଆରମ୍ଭ କଲେ । ମଦୁଆର ମଦ ଖାଇବା ଆଶା ବଢ଼ିଲା ଭଳି, ଧୋଇଆ ଯେତିକି ଗପ ଶୁଣେ, ତା'ର ଗପ ଶୁଣିବାର ଇଚ୍ଛା ସେତିକି ବଢ଼େ । ପାଠପଢୁଆ ବାବୁମାନଙ୍କର କୀର୍ତ୍ତିକଳାପର ଗପ ମାଷ୍ଟରମାନଙ୍କଠାରୁ ଶୁଣି ସେ ଘରକୁ ଆସିଲେ ବୋଉ ପାଖରୁ ରଜାଘର ପୁଅ କଥା, କଲୁରିବେଣ୍ଟ କଥା, ନେଉଳ ଭାଇ କଥା ଇତ୍ୟାଦି କେତେ ଗପ ଶୁଣେ । ସେଥିରେ ସେ ବୁଝେ ଯେ ବୋଉଙ୍କ ଗପ ତୁଳନାରେ ମାଷ୍ଟରଙ୍କ ଗପଗୁଡ଼ାକ ନିତାନ୍ତ ବାଜେ । ଫଳରେ ଖେଳାବୁଲାରୁ ଯେତେବେଳେ ସମୟ ମିଳେ, ସେତେବେଳେ ସେ ଆସି ବୋଉଙ୍କ ପାଖରେ ହାଜର କଥା ଶୁଣିବାକୁ; ମାଷ୍ଟରଙ୍କ ପାଖ ମାଡ଼େନାହିଁ । ସେଥିରେ ବାବୁଆଣୀଙ୍କର ମନ୍ତବ୍ୟ ହୁଏ—ଏ ମାଷ୍ଟରଟା କିସ ମ ? କଥାଟିଏ କିଛି କହି ଛୁଆଟାର ମନ ବହଲେଇ ପାରୁନାହିଁ ? ମାଷ୍ଟର ବିଚରା ବାଧ୍ୟ ହୋଇ ଉତ୍କଳ

କାହାଣୀ, କଥା ସରିତ ସାଗର, ଗ୍ରିମ୍‌ଙ୍କ ରୂପକଥା ଇତ୍ୟାଦି ପଢ଼ି ସେଥିରୁ ଗପ କରିବାକୁ ଆରମ୍ଭ କଲେ । ସେଥିରେ ମଧ୍ୟ ତାଙ୍କର ନିସ୍ତାର ନାହିଁ । ପାଠ ପଢ଼େଇବାକୁ ଆସି, ବୁଢ଼ୀ ମାଇପିର କାମ କଲେ କ'ଣ କରିବେ ? ପଇସାଗଣ୍ଡାକ ପାଇଁ, ପେଟଚାଖଣ୍ଡକ ଲାଗି ତ ସବୁ କରିବାକୁ ହବ । ଧୋଇଆ ଅକାଳେ ସକାଳେ ଗପ ଶୁଣିବାକୁ ଆସେ । ମାଷ୍ଟରେ ଯଦି ନଥାନ୍ତି, ତାହେଲେ ତାଙ୍କ ବହିପତ୍ରଗୁଡ଼ିକ ଧରି ତା' ଦିହରେ କାଳି କଲମରେ ନାନା ପ୍ରକାର ଗାର ଚିତ୍ର-ବିଚିତ୍ର କରିପକାଏ । ତାଙ୍କ ଶେଯରେ ଦାଣ୍ଡରୁ ବୁଲା କୁକୁରଛୁଆ ଗୋଟାଏ ଆଣି ଶୁଆଇଦିଏ । ବେଳେ ବେଳେ କାଗଜ ଖଣ୍ଡିଏ ପକାଇ ତା' ଉପରେ ପଡ଼ିଆ-ବାଡ଼ିଆ କାମଟା କରି କାଗଜରେ ତାକୁ ବାନ୍ଧିବୁନ୍ଧି ମାଷ୍ଟରଙ୍କ ଭଙ୍ଗା ବାକ୍ସ ଖଣ୍ଡିକରେ ଥୋଇଦେଇଯାଏ । ସେ ଜାଣେ ଯେ ମାଷ୍ଟରଙ୍କୁ କୁକୁର ବିରାଡ଼ି ଭଲ ଲାଗେନାହିଁ । ସନ୍ଧ୍ୟାବେଳେ ମାଷ୍ଟରେ ବୁଲିଗଲେ ସେ ଛପି ଛପି ତା'ର ଗୋଟାଏ ବିରାଡ଼ିଛୁଆ, ନଇଲେ ଗୋଟାଏ କୁକୁରଛୁଆ ତାଙ୍କ ଶେଯ ଉପରେ ଶୁଆଇ ଘୋଡ଼ାଇ ଦେଇ ପଳାଏ । ମାଷ୍ଟର ବିଚରା ରାତିରେ ଫେରିଆସି ଖଟ ଉପରେ ବସିପଡ଼ିଲା ବେଳକୁ ଏଥିରୁ ଗୋଟାଏ ପୋକ ସାଲୁସାଲୁ ନା ଅଧରା ଜୀବ । ସେ ବିଚରା ବ୍ୟସ୍ତ ହୋଇ ଡିଆସିଲି କାଢ଼ି ଆଲୁଅଟା ଜାଳିବା ପାଇଁ ତାଙ୍କ ବାକ୍ସ ଭିତରେ ହାତ ପୂରାଇଲା ବେଳକୁ ବେଳେ ବେଳେ ହାତଟା ଯଦି ସେ କାଗଜପୁଡ଼ାରେ ପଡ଼ିଯାଏ, ତାହେଲେ ସାଲୁରୁବାଲୁରୁ ହେଇକି ସବୁ ପଦାର୍ଥ ତାଙ୍କ ହାତରେ ବୋଳିହୋଇଯାଏ । ମାଷ୍ଟର ବିଚରା ଏ ପାଲରେ ପଡ଼ି ଅତିଷ୍ଠ ହୋଇଉଠେ । କେତେଥର ମନେକରିଚି, ଏ ଚାକିରି ନହେଲେ ନାଇଁ, ସେ ଚାଲିଯିବ । ପୁଣି ଭାବେ, ତା' ସେ ବୁଢ଼ୀମା'ଟିର କଥା । ଆଖିପାଣି ଆଖିରେ ମାରି ରହିଯାଏ ।

ବଳିବାବୁ ମରିଗଲା ପର୍ଯ୍ୟନ୍ତ ଚାରି ପାଞ୍ଚ ବର୍ଷ ମଧ୍ୟରେ ଅତି କଷ୍ଟରେ ଧୋଇଆ ବର୍ଣ୍ଣବୋଧ ଖଣ୍ଡିକ ସାରିଥିଲା । ବଳିବାବୁ ମରିଗଲା ପରେ ମାଷ୍ଟର ବିଚରା ବିଦାୟ ହେଲେ । ତା' ସଙ୍ଗେ ସଙ୍ଗେ ମଧ୍ୟ ଧୋଇ ବାବୁଙ୍କ ଦେହରୁ ସରସ୍ୱତୀ ବିଦାୟ ନେଲେ । ପ୍ରଥମେ ବର୍ଷେ ଖଣ୍ଡେ ବାବୁଆଣୀଙ୍କ ମନରେ ତ ପାଠପଢ଼ା କଥାଟା ମୋଟେ ପଶିନାହିଁ । ତା'ପରେ ଭାଇମାନଙ୍କ ନିର୍ବନ୍ଧରେ ସେ ଧୋଇଆକୁ ଗାଁ ଚାହାଳିକୁ ଛାଡ଼ିଲେ । ଏଥିମଧ୍ୟରେ ଧୋଇଆ ଅନେକ ନୂଆ ନୂଆ ଜିନିଷ ଶିଖିଚି । ଯାହା ପୁରୁଣା ଶିଖିଥିଲା ସେଗୁଡ଼ାକ ଆଉ କ'ଣ ହବ ? ସେ ସବୁ ପାଶୋରି ଦେଇଚି । ଅବଧାନେ ଫକିର ମହାନ୍ତି, ମାଟିବଂଶ କରଣ ସାନ୍ତେ । ତାଙ୍କ ସାତପୁରୁଷ ଧରି ପିଲା ପଢ଼ାଇବା ବ୍ୟବସାୟ । ଆଉ ପାଠ ପଢ଼ାଇବାର ଉପାୟ ତାଙ୍କ ମତରେ ଏଇ କେତୋଟି—

୧ମ—ଠେଙ୍ଗୁଣି ପାହାର, ଚୋରବାଡ଼ିଆ

୨ୟ—ନାକ ବାଳ ଧରା

୩ୟ—ଏକଗୋଡ଼ିକିଆ

୪ର୍ଥ—ବାବୁରା ଝୁଲା

୫ମ—ହରଡ଼ ପେଷା

ସେ ଓ ତାଙ୍କ ପୂର୍ବରୁ ତାଙ୍କ ବାପ-ଅଜାମାନେ ଦେଖିଚନ୍ତି ଏ ପାଞ୍ଚ ମହା-ଅସ୍ତ୍ର ଅବ୍ୟର୍ଥ; କିନ୍ତୁ ଅବଧାନେ ସବୁ ସ୍ଥାନରେ ଏ ପଞ୍ଚ ମହାସ୍ତ୍ର ପ୍ରୟୋଗ କରନ୍ତି ନାହିଁ । ସେ ଜାଣନ୍ତି ଗରିବ ପ୍ରତି ଯାହା ଆଇନ୍, ଧନୀ ପ୍ରତି ସେ ଆଇନ ଖାଟେନାହିଁ । ଗରିବ ପୁଅର ପିଠି ଯାହା ସହିବ, ଧନୀ ପୁଅର ପିଠି ତା' ସହିପାରିବ ନାହିଁ । ସେହି ହେତୁରୁ ସେ ଧନୀ ଲୋକଙ୍କ ପିଲାମାନଙ୍କ ପ୍ରତି ଏ ପଞ୍ଚ ମହାସ୍ତ୍ର ବଡ଼ କ୍ୱଚିତ୍ ପ୍ରୟୋଗ କରନ୍ତି । ଧୋଇଆ ପ୍ରତି ମଧ୍ୟ ପ୍ରଥମେ ପ୍ରଥମେ ସେ ସେହି ନୀତି ପ୍ରୟୋଗ କରିଥିଲେ; କିନ୍ତୁ ଦେଖିଲେ ସେ ଯଦି ଟିକିଏ ନିଜ ରୂପ ନଧରନ୍ତି, ତାହେଲେ ସେ ଗାଁରେ ତାଙ୍କର ତିଷ୍ଠିବା ବଡ଼ ଅସମ୍ଭବ । ଧୋଇଆ ଚାହାଳିକୁ ପ୍ରଥମେ କେତେ ଦିନ ଆସି, ବେଶ୍ ସୁଧୀର ପିଲା ପରି ବ୍ୟବହାର କରୁଥିଲା । ଦିନେ ଅବଧାନେ ଚକା ପକାଇ ଆସନରେ ବସିଛନ୍ତି, ନାକରେ ଚଷମା, ହାତରେ ଲେଖନ, ଜଙ୍ଘ ଉପରେ ତାଳପତ୍ର ଖେଦାଟିଏ ଓ ଅନ୍ୟ ଜଙ୍ଘରେ ଭାଗବତ ଦଶମ ସ୍କନ୍ଧର ତାଳପତ୍ର ପୋଥି ଖଣ୍ଡିଏ । ସାମନାରେ ଶିଷ୍ୟମାନେ ବସିଛନ୍ତି, କିଏ ଖଡ଼ି ଧରି ଅ ଆ ଘୋଷୁଛି, କିଏ ସିଲଟରେ ପଣିକିଆ ଲେଖୁଛି, କିଏ ବା ବହି ଧରି ଚିତ୍କାର କରି ଗାଇଯାଉଛି । ଅବଧାନଙ୍କ ଡାହାଣ ହାତ ପାଖରେ 'ଜ୍ଞାନଦାତା' ଖଣ୍ଡିଏ ପଡ଼ିରହିଛନ୍ତି । ତାଙ୍କ କାମ ଭିତରେ ଯେତେବେଳେ ଅବଧାନଙ୍କ ମନରେ ପଶିଯାଉଚି ଯେ ଶିଷ୍ୟମାନେ ଠିକ୍ ପଢୁନାହାନ୍ତି, ସେତେବେଳେ ସେ ସେମାନଙ୍କ ଆଡ଼କୁ ନଚାହିଁ, ବେତ ଖଣ୍ଡିକ ଧରି ଥରେ ଦି'ଥର ମାଟିରେ ପିଟିଦିଅନ୍ତି । ସାଙ୍ଗେ ସାଙ୍ଗେ କମିଆସିଥିବା ପିଲାଙ୍କର ସ୍ୱର ବଣି-ବସାରେ ସାପ ପଶିଲେ ଯେପରି ହୁଏ, ସେହିପରି କିଚିରି ମିଚିରି କରି ଆରମ୍ଭ ହୋଇଯାଏ । ଥରେ ମାଷ୍ଟରେ ଦେଖିଲେ ଯେ ଜ୍ଞାନଦାତାଙ୍କର ଗର୍ଜନରେ କିଛି ଫଳ ହେଲା ଭଳି ଲାଗିଲା ନାହିଁ । ସେ ମୁଣ୍ଡ ଟେକି ଚାହିଁଲେ, ଦେଖିଲେ ଧୋଇଆ ମଝିରେ ବସିଚି, ଆଉ ତା' ଚାରିପଟେ ପିଲାଗୁଡ଼ାକ ଉବୁଡ଼ି ପଡ଼ିଛନ୍ତି । କେବଳ ଧୋଇଆ ଛଡ଼ା ଆଉ ସମସ୍ତଙ୍କ ତୁଣ୍ଡରୁ ଗୋଟାଏ ଖିଲିଖିଲି କରି ହସର ଶବ୍ଦ ସେ ଘର ମଧ୍ୟରୁ ସରସ୍ୱତୀଙ୍କୁ ଯେପରି ଉଡ଼ାଇ ଦେଉଚି । ଅବଧାନଙ୍କ ଜୀବନରେ ଏପରି କେବେ ଘଟିନଥିଲା । ସେ ପ୍ରଥମେ ତଟସ୍ଥ ହୋଇଗଲେ । ତା'ପରେ କୌତୁହଳ ସମ୍ଭାଳି ନପାରି ବେତ ଖଣ୍ଡିକ ଘେନି ସେ ଯେତେବେଳେ ଆସି ଦେଖିଲେ; ତାଙ୍କ ତାଳୁଠାରୁ ତଳିପା ପର୍ଯ୍ୟନ୍ତ ସର୍ବାଙ୍ଗରେ ପାଚିଲା ତରଳ ଲୁହାସୁଅ ବୋହିଗଲା ।

ଧୋଇଆ ସିଲଟ ଉପରେ ଅବଧାନଙ୍କର ଏକ ବିଚିତ୍ର ଛବି ଆଙ୍କିଚି । ସେ ଛବିଟା ଯେ ତା'ର ମନଗଢ଼ା ତା' କହିବା ଠିକ୍ ହେବନାହିଁ । ତେବେ ଛବିଟା ଯେ ସୁନ୍ଦର ନୁହେଁ—ଏ କଥା ନିଶ୍ଚୟ ଠିକ୍ । ଧୋଇଆ କହେ, ଅବଧାନେ ଯଦି ଅସୁନ୍ଦର ହୁଅନ୍ତି, ତାହେଲେ ତାଙ୍କ ଛବିଟା ତ ଅସୁନ୍ଦର ହବ, ତା'ର ସେଥିରେ କି ଚାରା ? କିନ୍ତୁ ଅବଧାନଙ୍କ ମତରେ ସେ ଅସୁନ୍ଦର ତ ନୁହନ୍ତି, ତାଙ୍କ ରୂପ ଦେଖି କେତେ ସ୍ତ୍ରୀଲୋକ ତାଙ୍କ ଆଡ଼କୁ ମୁରୁକିହସା ମାରିଚନ୍ତି । ଯାହାହେଉ, ମୁଁ ମୋ ମନ ଭିତରେ ବୁଝେ ଯେ ମୁଁ ଅସୁନ୍ଦର । ଯ୍ୟା ବୋଲି ମତେ ଦାଣ୍ଡର କେହି, ପୁଣି ଗୋଟାଏ ଅପଗଣ୍ଡ ଟୋକା ଅସୁନ୍ଦର ବୋଲି ଚିତ୍ର କଲେ ମୁଁ ସହିବି କାହିଁକି ? ଅବଧାନେ ସହିଲେ ନାହିଁ । ତାଙ୍କର ବେତ ଉଠିଲା, ହାତ ନାଚିଲା । ଅବଧାନେ ଆଶା କରିଥିଲେ ଯେ ବେତ ଉଠିଲା ମାତ୍ରକେ ଧୋଇଆ ତାଙ୍କ ମନ ମାଫିକେ ଭୁଆ ଗର୍ଜନ କରିଉଠିବ । କିନ୍ତୁ

ଦେଖିଲେ ଧୋଇଆ ଚିତ୍ରପିତୁଳାଟି ପରି ଠିଆହୋଇ ହସୁଚି । ଅବଧାନଙ୍କର ମୁଣ୍ଡଟା ଏକାବେଳକେ ଜଳନ୍ତା ଚୁଲି ହୋଇଉଠିଲା । ସେ ଦାନ୍ତ କଡ଼ମଡ଼ କରି ଧୋଇଆ ପିଠିକି ନିର୍ଘାତ ପାହାର ଉଞ୍ଚାଇଲେ । ପାହାରଟା ହାତ ଚାପଡ଼େ ଉଚ୍ଚରୁ ଲହ ଲହ ହୋଇ ଧୋଇଆ ପିଠି ଉପରକୁ ବିଜୁଳି ବେଗରେ ଧାଇଁଆସିଲା । ଧୋଇଆର ସାଙ୍ଗପିଲାମାନେ ଧୋଇଆ ପିଠି କିପରି ଏ ପାହାରର ଦାଉ ସମ୍ଭାଳିବ, ତାକୁ ଦେଖିବା ପାଇଁ ବେକଟାମାନ ବଗ ବେକ ପରି ଆଗକୁ ବାହାର କରି ଏକାଲୟରେ ଚାହିଁରହିଲେ । ତା'ପରେ କ'ଣ ହେଲା କେଜାଣି, ଅବଧାନେ ତଳେ ଚିତ୍‌ପଟାଙ୍ଗ । ଠିକ୍ କ'ଣ ହେଲା କେହି ଦେଖିନାହିଁ । ଅବଧାନ କହନ୍ତି ଯେ ଧୋଇଆ ବପିପଡ଼ି ତାଙ୍କ ଗୋଡ଼ ଦୁଇଟା ଭିଡ଼ିଦେଲା । ଆମ୍ଭମାନଙ୍କର ବିଶ୍ୱାସ, ଏଇଟା ଅବଧାନଙ୍କର ଅନୁମାନ । କାରଣ ତାଙ୍କ (ଅବଧାନଙ୍କ) ଦୃଷ୍ଟିଟା ଥିଲା ଧୋଇଆର ସାମନା ଉପରେ—ସେ ଗୋଡ଼ତଳ କଥା ଦେଖନ୍ତେ କିପରି ? ସେ ଯାହାହେଉ, ଫଳଟା ହେଲା ଗୋଟାଏ ଅବିଶ୍ରାନ୍ତ ହୋ-ହୋ ଶବ୍ଦ । ପିଲାଗୁଡ଼ାକ ସମସ୍ତେ ଏକସ୍ୱରରେ ହୋ-ହୋ କରି ହସିଉଠିଲେ, ପାଖପଡ଼ିଶା ଦାଣ୍ଡର ବାଟୋଇମାନେ ଧାଇଁଆସି ଦେଖନ୍ତି ତ ଅବଧାନେ ଚିତ୍‌ପଟାଙ୍ଗ, ଆଉ ତାଙ୍କ ଚାରିଆଡ଼େ ପିଲାଗୁଡ଼ାକ ତାଳି ମାରି ନାଚୁଛନ୍ତି ଆଉ ଖାଲି ହସୁଚନ୍ତି । କେବଳ ଧୋଇଆ ସେ ସବୁର ବାହାରେ ତୁନି ହୋଇ ଠିଆହୋଇଚି ଏବଂ ଡାହାଣ ହାତ କାଣି ଆଙ୍ଗୁଠିଟା ପାଟିରେ ଭର୍ତ୍ତିକରି ବାଁ ହାତରେ ତା' ସିଲଟଟା ଧରି କ'ଣ ଲେଖୁଛି ।

ମଦନବାବୁ ସେ ଗାଁର ଜଣେ ଯୁବକ । ସେ କଟକ କଲେଜରେ ଏମ.ଏ. ପଢ଼ନ୍ତି; ମଧ୍ୟ ଧୋଇଆଙ୍କ ଜ୍ଞାତି । ସେ ସେଇ ବାଟେ ଗାଧୋଇ ଯାଉଥିଲେ । ଏ ଗୋଳମାଳ ଶୁଣି ସେ ଚାହାଳି ଉପରକୁ ଉଠିଆସି ଦେଖନ୍ତି ଏ ରହସ୍ୟ । କାହାକୁ ପଚାରିବେ କ'ଣ ହେଲା ? କେବଳ ଧୋଇଆ ପାଖକୁ ଗଲେ । ତା' ହାତରେ ସେ ଶିଳଟ ଲେଖା ମୂର୍ତ୍ତି ଉପରେ ତାଙ୍କର ଆଖି ପଡ଼ିଗଲା ମାତ୍ରକେ, ସେ ମଧ୍ୟ ସେଇ ପିଲାଗୁଡ଼ାଙ୍କ ପରି ବୁହେ ହସିଗଲେ । ତା'ପରେ ଧୋଇଆକୁ ପଚାରିଲେ—କିରେ ଏ ଚିତ୍ର କିଏ କରିଚି ? ଧୋଇଆ କହିଲା ମୁଁ... । ମଦନବାବୁ ତା' ହାତରୁ ଶିଲଟଟି ମାଗିନେଇ ଚିତ୍ରଟିକୁ ଆଉ ଥରେ ଭଲକରି ଦେଖିନେଲେ । ତା'ପରେ ଧୋଇଆକୁ ପଚାରିଲେ—କିରେ, ଏସବୁ ରଙ୍ଗରହସ୍ୟ କାହିଁକି ? ଧୋଇଆ ଖାଲି ତଳ ଥୋଡ଼ିଟା ବାହାର କରିଦେଲା । ଏତିକି ବେଳକୁ ଅବଧାନେ ମାଟି ଉପରୁ ଉଠିବାର ଦେଖି ପିଲାମାନେ ଛିନଛତ୍ର ହୋଇ ପଳାଇଗଲେ । ମଦନବାବୁ ଅବଧାନଙ୍କୁ ଏସବୁର କାରଣ ପଚାରିବାରୁ, ସେ ସେ ଅବସ୍ଥାରେ ଯେତେଦୂର ଧୈର୍ଯ୍ୟ ଧରି କହିପାରିବା ସମ୍ଭବ, ସେହିପରି ଭାବରେ ଟିକା-ଟିପ୍ପଣୀ ସହିତ ସବୁକଥା ଓ ଆଉ ଅନ୍ୟାନ୍ୟ ଅନେକ କଥା କହିଲେ । ମଝିରେ ମଝିରେ ଧୋଇଆ ଆଡ଼କୁ ସୁଡୁସିଯାଉଥାନ୍ତି । କିନ୍ତୁ ଧୋଇଆ ମଦନ ବାବୁଙ୍କ ବାହୁଚ୍ଛାୟା ତଳେ ନିର୍ଭୟରେ ଠିଆହୋଇଥାଏ । ମଦନ ବାବୁ ଶେଷରେ ଧୋଇଆକୁ ତାଙ୍କ ସାଙ୍ଗରେ ନେଇ ବାବୁଆଣୀଙ୍କ ପାଖକୁ ଗଲେ । ସେଠାରେ ସବୁ କଥା କହି ଶିଲଟଟା ଦେଖାଇଲେ । ବାବୁଆଣୀ ବିରକ୍ତ ହୋଇ ଆସିଥିଲେ ମଧ୍ୟ ଶିଲଟର ସେ ଛବିଟା ଦେଖି ତାଙ୍କ ମୁହଁରୁ ମଧ୍ୟ ହସ ଟିକିଏ ଜୋର କରି ବାହାରିପଡ଼ିଲା । ସେ ଧୋଇଆକୁ କ'ଣ ଶାସନ କରିବାକୁ ଯାଉଥିଲେ, ଏତିକିବେଳେ ମଦନ ବାବୁ ବାଧା ଦେଇ କହିଲେ, "ଖୁଡ଼ୀ, ତୁମେ ଧୋଇଆ ଭଳି ପିଲାକୁ ଶାସନ କରି

ଆୟତ୍ତ କରିପାରିବ ନାହିଁ । ମୋ କଥାଟି ଶୁଣ ! ଧୋଇଆକୁ କଲିକତା ଆର୍ଟ ସ୍କୁଲକୁ ପଠାଇଦିଅ ।" ବାବୁଆଣୀ ତା' କଥାଟିକୁ ନାପସନ୍ଦ କରି ଏକାବେଳକେ ଉଡ଼େଇ ଦେଇଥିଲେ; କିନ୍ତୁ ମଦନ ବାବୁ ଜିଗର କରି କହିଲେ, "ନାଇଁ ଖୁଡ଼ୀ, ଥଟା ପରିହାସର କଥା ନୁହେଁ । ବିନା ଶିକ୍ଷାରେ ଯେ ପିଲା ଏପରି ଚିତ୍ର ଆଙ୍କିପାରେ, ସେ ଏଇ ସମୟରୁ ଉପଯୁକ୍ତ ଶିକ୍ଷା ପାଇଲେ ନିଶ୍ଚୟ ଜଣେ ବଡ଼ ରକମ ଆର୍ଟିଷ୍ଟ ହୋଇପାରିବ ।" ବାବୁଆଣୀ ଏ ଜିଗର କଥା ଶୁଣି ଆଉ ଥରେ ଶିଲଟଟା ନେଇ ଦେଖିଲେ । ତା'ପରେ କହିଲେ, "ତୁମେ ଯାହା କହିଲ ପୁଅ, ତା' ସମ୍ଭବ ହୋଇପାରେ । ଧୋଇଆ ଯେ ପାଠ ପଢ଼ି ପଣ୍ଡିତ ହବ, ତା' ଏତିକିବେଳୁ ଜଣାଗଲାଣି । ତେବେ ଶାଠରେ ଯଦି କିଛି କରିପାରେ ! କିନ୍ତୁ କିମିତିରେ ପୁଅ, ଏଡ଼େ ସାନ ପିଲାଟାକୁ କଲିକତା ପଠାଇଦେବି ? ସେ ରହିବ କୁଠି, ଚଳିବ କିପରି, ଆଉ ମୁଁ ମଧ୍ୟ କିପରି ଥୟ ଧରି ରହିବି ?"

ମଦନ—"ତୁମେ ତ ଆଉ ସବୁଦିନ ତାକୁ ତୁମ ପଣତକାନିରେ ବାନ୍ଧି ରଖିପାରିବ ନାହିଁ ? ତା'ର ତ ଡେଣା ଲାଗିଆସିଲାଣି, ସେ ନିଶ୍ଚେ ହେଲେ ଦିନେ ଉଡ଼ିଯିବ । ତା'ପାଇଁ ଭାବି ଆଉ କ'ଣ ଅଛି ? ଆଉ କଲିକତାରେ ତା'ର ମାମୁଁ ପରା କଣ୍ଟ୍ରାକ୍ଟରି କରନ୍ତି, ତାଙ୍କ ପାଖରେ ରହିବ ।" ବାବୁଣାଣୀଙ୍କର ମଝିଆଁ ଭାଇ ଗୋଲକ ବାବୁ କଲିକତାରେ କାନତରାଟି କାମ କରି ବେଶ୍ ଦି'ପଇସା କମେଇଚନ୍ତି । ସେହିଠାରେ ଘରଦ୍ୱାର କରି ସେ ଅନେକ ଦିନ ହେଲା ଅଛନ୍ତି । ବାବୁଆଣୀ ଭାବିଲେ, ଉଚିତ କଥା । ହଉ, ମୁଁ ଭାଇଙ୍କ ପାଖକୁ ଚିଠି ଲେଖେଁ ।

ଚିଠି ଲେଖାହେଲା, ଉତ୍ତର ଆସିଲା । ଦିନ, ବାର, ତିଥି ବୁଝି ଗୋଲକ ବାବୁ ନିଜେ ଆସି ଧୋଇଆକୁ ଓ ବାବୁଆଣୀଙ୍କି କଲିକତା ନେଇଗଲେ । କଲିକତାରେ ଚିତ୍ର ଶିଖିବାକୁ ହବ ଶୁଣି ଧୋଇଆ ନାଚିଉଠିଲା । କଲିକତାରେ ପହଞ୍ଚି ସେ ଏକାବେଳକେ ଅନ୍ନଜଳ ପାସୋରିଗଲା । ବାବୁଆଣୀ ତା'ର ଏ ଅଦ୍ଭୁତ ପରିବର୍ତ୍ତନ ଦେଖି ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ପନ୍ଦର ଦିନ ପରେ ଏକୁଟିଆ ଘରକୁ ଫେରିଆସିଲେ ।

ଧୋଇଆ କଲିକତା ଆର୍ଟ ସ୍କୁଲରେ ଭର୍ତ୍ତିହେଲା । ସେଥିଲାଗି ଯେପରି ସାଧାରଣ ପାଠପଢ଼ିବା ଦରକାର ତା' ମଧ୍ୟ ଖୁବ୍ ଉଦ୍ୟମ ଓ ଆଗ୍ରହରେ ପଢ଼ିଲା । ଆର୍ଟ ସ୍କୁଲରେ ତା'ର ସୁଖ୍ୟାତି ମଧ୍ୟ ହେଲା ଖୁବ୍ । ସେ ମଝିରେ ଗାଁକୁ ଆସେ, ପିଲାଦିନ ସାଙ୍ଗସାଥୀମାନଙ୍କ ସହିତ ଖୁବ୍ ଖେଳି ବୁଲି ପୁଣି ଚାଲିଯାଏ । ଏହିପରି ତା'ର ବାଇଶ ବର୍ଷ ବେଳକୁ ସେ ଖୁବ୍ ପ୍ରଶଂସାର ସହିତ ଆର୍ଟ ସ୍କୁଲରୁ ପାଶ୍ କରି ସାର୍ଟିଫିକେଟ ଘେନି ଘରକୁ ଫେରିଲା ।

ପ୍ରଥମ ଅଧ୍ୟାୟରେ ଯାହା ସବୁ କୁହାଯାଇଥିଲା ତାହା ଏହାରି ପରେ ।



## ଚାରି

ଧୋଇଆ ଘରକୁ ଫେରିଆସିବା ପରେ ଦେଖାଗଲା, ତା'ର ପିଲାଦିନର ସେ ନୁରୁଖୁରୁଆ ବୁଦ୍ଧି ସେହିପରି ଅଛି । ଯେତେବେଳେ ସେ ତା'ର ଚିତ୍ର-ଜିନିଷ ଘେନି ବସେ, ସେତେବେଳେ ତା' ପାଖରେ ହାଡ଼ି ବାଇଦ ପିଟିଲେ ମଧ୍ୟ ସେ ଢୁକିବନାହିଁ । କିନ୍ତୁ ଥରେ ସେ ନିଶା ଛାଡ଼ିଗଲେ, ସୃଷ୍ଟି ଭିତରର ଯେତେ ଚଗଲାମି, ବଗୁଲିଆମି, ସବୁ ସେ ଆରମ୍ଭ କରେ । କାହିଁ ଗଛରେ ଚଢ଼ି ବଣିପିଲା ଧରିବା କାହିଁ ସାଙ୍ଗସାଥୀ ମେଳରେ ମେଘୁଆ ଜହ୍ନପକ୍ଷ ରାତିରେ ପୋଖରୀ ହୁଡ଼ାରେ ଠିଆହୋଇ ବାଟୋଇଙ୍କୁ ଭୂତଭୟ ଦେଖାଇବା, କାହିଁ କିଏ ଶୋଇଥିଲେ ତା' ମୁହଁରେ ଚୂନ କାଳି ଚିତ୍ର କରିବା ଇତ୍ୟାଦିରେ ତା'ର ସମୟ ବିତିଯାଏ । ବାବୁଆଣୀ ଭାବିଲେ, ବୋଧହୁଏ ବିବାହ ଦେଇଦେଲେ ସେ ଟିକିଏ ଥୟ ହୋଇଯିବ । ସେ କନ୍ୟା ସନ୍ଧାନରେ ମନୁଷ୍ୟ ପଠାଇଲେ । ନାନାଆତୁ, ଜାତକ ଆସିଲା । ଧୋଇଆ କାନରେ ପଡ଼ିଲାକ୍ଷଣି ସେ ଦିନେ ଯାଇ କହିଲା, "ବୋଉ, ଦେଖ, ମୋର ବିବାହ୍ ଫିବାହ କଥା ଯଦି ତୁ ଧରିବସୁ, ତାହେଲେ ମୁଁ ଘରଦ୍ୱାର ଛାଡ଼ି ପଳାଇବି !" ବାବୁଆଣୀ ତାଟକା ହୋଇ କହିଲେ, "କାହିଁକିରେ ବାବୁ ! ଆଉ କ'ଣ ସବୁଦିନେ ବାତୁଅ ହୋଇ ରହିବୁ ?"

ଧୋଇଆ : ରହିଲେ କିଛି କ୍ଷତି ଅଛି ?

ବାବୁଆଣୀ ଦେଖିଲେ ଚଗଲା ଟୋକାଟା, ୟା ସାଙ୍ଗରେ ପୁଣି କଥା କଟାକଟି କ'ଣ କରିବି । ଆଚ୍ଛା, ହଉ ଦେଖାଯିବ—କହି ସେ ଅନ୍ୟ କାର୍ଯ୍ୟରେ ମନଦେଲେ । ଏଣେ ବିବାହ କଥା ଭିତରେ ଭିତରେ ଚାଲୁଥାଏ । ବାବୁଆଣୀଙ୍କର ଇଚ୍ଛା ଥାଏ, ସାରଦା ଆଇନ ମତରେ ଜଣେ ବୟସ୍କା କନ୍ୟା ସହିତ ପୁଅର ବିବାହ ଦିଅନ୍ତେ; କିନ୍ତୁ ବହୁ ଚେଷ୍ଟାକରି ସେପରି କନ୍ୟା ନମିଳିବାରୁ ଶେଷରେ ଦାଣ୍ଡ ମୁକୁନ୍ଦପୁର ପାର୍ବତୀବାବୁଙ୍କର ବାର ବର୍ଷର ଝିଅ ସାବିତ୍ରୀ ସାଙ୍ଗରେ ବିବାହ ହେବାର ସବୁ ଠିକ୍ ହୋଇଗଲା । ନିର୍ବନ୍ଧ କରିବା ପାଇଁ ନିଜେ ପାର୍ବତୀ ବାବୁ ଆଉ ଦି'ଚାରିଜଣ ଭଦ୍ରଲୋକ ଘେନି ଆସି ପହଞ୍ଚିଲେ । ଧୋଇଆ ଏ କଥା ଶୁଣିଲା ବେଳୁ କିପରି ଦବିଗଲା ଭଳି ଜଣାପଡ଼ିଲା । ସେ ଯାଇ ତା' ଘର ଭିତରେ କବାଟ କିଳି ଶୋଇରହିଲା । ଦୁଇ ତିନି ଘଣ୍ଟା ପରେ ସେ ଯେତେବେଳେ ବାହାରିଆସେ, ତା' ମୁହଁରେ ଗୋଟାଏ କିପରି ଉତ୍ତେଜନାର ଭାବ । ସେ ଆପେ ଯାଇ ବାବୁଆଣୀଙ୍କି କହିଲା, "ବୋଉ ! ଏତେଗୁଡ଼ାଏ ଭଦ୍ରଲୋକ ଆସିଛନ୍ତି, ଏମାନଙ୍କର ସବୁ ଖାଇବା ପିଇବାର ବ୍ୟବସ୍ଥା କ'ଣ ହବ ?"

ବାବୁଆଣୀ ଧୋଇଆର ଏ ପରିବର୍ତ୍ତନ ଓ ଆଗ୍ରହ ଦେଖି ପ୍ରଥମେ ଟିକିଏ ସନ୍ଦେହ କରିଥିଲେ । କହିଲେ, "ଖାଇବା ପିଇବାର ବନ୍ଦୋବସ୍ତ ଆଉ କ'ଣ ହବରେ ? ତୋ ଶଶୁର ଆସିଚି ବୋଲି ତ ଆଉ ମୁଁ ସରଗର ଚାନ୍ଦ ଆଣିବି ନାହିଁ ! ଯାହା ଘରେ ଥିବ, ତାହା ହବ !"

ଧୋଇଆ : କ'ଣ ଶାଗ ଭାତ ଖାଇବାକୁ ଦବୁ କିଲୋ ? ନାଇଁମ, ସତରେ, ସବୁ ବନ୍ଦୋବସ୍ତ କରିବାକୁ ହବ ତ ?

ମା' ବୁଝିଲେ ପୁଅ ମୁଣ୍ଡରେ ବୋଧହୁଏ ବୁଦ୍ଧି ପଶିଲା । ଦେଖିଲା ତ, ଆଉ ଖସିବାର ଉପାୟ ନାହିଁ, ତେବେ ଆଉ ରଷିବସିଲେ କ'ଣ ହବ ? ଚଗଲା ଟୋକା ! କହିଲେ, "ଏ ଓଳିଟା ସେହିପରି ଯିବ, ଘରେ ତ ସବୁ ଅଛି, କାନେକା ହେରିକା କରି ଖାଇବାକୁ ଦବା । ମହାପାତ୍ରେ ବାଉରି ସାହିକୁ ଯାଇଛନ୍ତି, ଗଡ଼ିଆ ବୁହାଇ ମାଛ ଆଣିବେ ବୋଲି । ବନ୍ଦୋବସ୍ତ ଯାହା ଉପରବେଳାକୁ । ମୋ ମନଥିଲା ମହାପ୍ରସାଦ ହେରିକା ପୁରୀରୁ ନେଇଆସିଥାନ୍ତେଇ; କିନ୍ତୁ ନିର୍ବନ୍ଧ ବେଳ ରାତି ୭ ଘଡ଼ିକୁ । ସେତେବେଳକୁ ଆସି ହବନାହିଁ । ଆମେ କାକରା, କ୍ଷିରୀ, କଦଳିଚକଟା, ପୁରି, ରସଗୋଲା ଇତ୍ୟାଦି କରି ଖାଇବାକୁ ଦେବା ସେତେବେଳେ ।"

ଧୋଇଆ : କାହିଁକି ଏତେ କଥା, ମୁଁ ଯାଉଚି ପୁରୀରୁ ମହାପ୍ରସାଦ ନେଇ ଆସିବି । ଭଣ୍ଡରେ ଖଟଣି ଲଗାଇ ଭଣ୍ଡ ଉଠିବା ସଙ୍ଗେ ସଙ୍ଗେ ଗୋଟାଏ ଲରିରେ ବୋଝେଇ କରି ନେଇଆସିଲେ ତ ବେଳ ଥିବ ପହଞ୍ଚିବି ।

ବାବୁଆଣୀ : ତୁ ଏତେ କଥା କରିପାରିବୁ ?

ଧୋଇଆ : ନିଶ୍ଚୟ ।

ସେଇଆ ସାର ହେଲା । ଧୋଇଆ ପଇସା-ପତ୍ର ଘେନି ପୁରୀ ବାହାରିଗଲା । ବରାଦ ହେଲା, ସେ ତେଣୁ ମହାପ୍ରସାଦ, ପିଠା ସବୁ ଓ ଅମୃତକୁଣ୍ଡ ଇତ୍ୟାଦି ସାଙ୍ଗରେ ସାତ ମୂର୍ତ୍ତି ମଗଜ ଲଡୁ ନେଇ ଆସିବ । ଧୋଇଆ ଯିବା ଆଗରୁ ତା'ର ସାଙ୍ଗ ଗଣେଶକୁ କ'ଣ ଅଧଘଣ୍ଟାଏ କାଳ ଫୁସ୍‌ଫୁସ୍ କରି ବତାଇଦେଇଗଲା । ନିଜେ ନିଜର ସବୁ ଟ୍ରଙ୍କ, ବାକ୍ସ ଭଲକରି ଚାବିଦେଇ ଓ ତା'ର ଘରଟି ବନ୍ଦକରି ଚାଲିଗଲା । ପାର୍ବତୀ ବାବୁ ହେରିକା ସକାଳବେଳା ଖାପିଅ କରି ଶୋଇଲେ । ଉପରବେଳା ପାଞ୍ଚଟାବେଳକୁ ସେମାନେ ନଈ ଆଡ଼କୁ ଗଲେ । ନଈ ଘାଟ ପାଖରେ ଲୁଗାପଟା ଛାଡ଼ି ଗାମୁଛା ପିନ୍ଧି ଯେ ଯୁଆଡ଼େ ଚାଲିଗଲେ । ମହାପାତ୍ରେ ତାଙ୍କ ସାଙ୍ଗରେ ଯାଇଥିଲେ । ସେ ମଧ୍ୟ ଚାଲିଗଲେ । ଖାଲି ଲୁଗାଗୁଡ଼ାକ ନିଃସହାୟ ଅବସ୍ଥାରେ ପଡ଼ିରହିଲା । ଏହା ମଧ୍ୟରେ ଗଣେଶ ସେ ସ୍ଥାନକୁ ଆସିଲେ, ଚାରିଆଡ଼କୁ ଚାହିଁ ଦେଖିଲେ, କୌଣସି ଆଡ଼େ କେହି ନାହାନ୍ତି । ତା'ପରେ ଲୁଗାପଟାଗୁଡ଼ିକ ସାଉଣ୍ଟି ଧରି ଚୋରଙ୍କ ଭଳି ଏଣିକି ତେଣିକି ଚାହିଁ ପାଖରେ ଥିବା କୋଚିଲା ବଣ ଭିତରକୁ ପଳାଇଗଲେ । ବଣ ଭିତରେ ଗୋଟାଏ ଗାତ଼ ଖୋଳା ହୋଇଚି । ତାରି ଭିତରେ ଲୁଗାଗୁଡ଼ିକ ରଖି ତା' ଉପରେ ମାଟି ଘୋଡ଼ାଇ ଦେଇ ସେ ଘରକୁ ଚାଲିଗଲେ ।

ଏଣେ ପାର୍ବତୀ ବାବୁ ହେରିକା ଫେରିଆସି ଦେଖନ୍ତି ଲୁଗାଗୁଡ଼ିକ ନାହିଁ । ଏଣେ ତେଣେ ଖୋଜିଲେ, କୌଣସିଠାରେ ପାଇଲେ ନାହିଁ । ବଡ଼ ଭାବନା ହେଲା; ଗାଁ ଭିତର ଦେଇ ଯାନ୍ତି କିପରି ? ପାର୍ବତୀ ବାବୁ ଜଣେ ଖାନ୍‌ଦାନ ଶିକ୍ଷିତ ଭଦ୍ରଲୋକ । ସେ ଡେପୁଟି ଚାକିରି କରୁଥିଲେ; ବର୍ତ୍ତମାନ ପେନସନ ନେଇ ଘରେ ଅଛନ୍ତି । ସେ ଗାମୁଛା ଖଣ୍ଡେ ପିନ୍ଧି ଦିନଟାରେ ଯିବେ କିପରି ? ଏ ଅପଦାର୍ଥ ନଇଟା ହେଲେ ଗାଁ ପଛରେ ହୋଇଥାନ୍ତା, ବାଡ଼ିପଟେ ଚାଲିଯାଇଥାନ୍ତେ । ମହାପାତ୍ର ମଧ୍ୟ କାବା, ଲୁଗାଗୁଡ଼ାକ ନେଲା କିଏ ! ଦିନେ ନାଇଁ, କାଳେ ନାଇଁ, ଏତେ ଲୁଗା-ପଟା ଏତେ ଦିନଧରି ପଡ଼ିରହେ, କେହିହେଲେ ଦିନେ ଛୁଇଁଯାଏନାହିଁ;

ଆଜି କିଏସେ ନେଲା ? ସେ ଭାବି ଭାବି କହିଲେ, ଆପଣମାନେ ଏଠି ଥାନ୍ତୁ, ମୁଁ ଘରକୁ ଯାଇ ଆପଣମାନଙ୍କ ପାଇଁ ଲୁଗା ନେଇଆସିବି । ଆଶାଥିଲା, ତାଙ୍କର ସକାଳବେଳାର ପାଲଟା ଲୁଗା ତ ଥିବ, ତାକୁ ଆଣିବେ, ନହେଲେ ଧୋଇଆର ଲୁଗାପଟା କିଛି ନେଇଆସିବେ । ଘରେ ଯାଇ ବୁଝନ୍ତି ଯେ ପାର୍ବତୀ ବାବୁ ଯାଙ୍କ ଘରଦିଆକ ଲୁଗା ପିନ୍ଧି ତାଙ୍କ ପାଲଟା ଲୁଗା ଭଣ୍ଡାରିକୁ ଦେଇସାରିଛନ୍ତି । ଆଉ ଏମାନଙ୍କର ଲୁଗା କିଏ କେଉଁଠି ଶୁଖାଇଥିଲେ ତା'ର ପତ୍ତା ନାହିଁ । ଆଉରି ମଧ୍ୟ ଦେଖି ହତାଶ ହେଲେ ଯେ ଧୋଇଆର ଦୁଆର ଚାବି ବନ୍ଦ । ଆଲିଗଡ଼ ତାଲା କମାର ଡାକି ଭାଙ୍ଗିବା ଛଡ଼ା ଅନ୍ୟ ଉପାୟ ନାହିଁ; କାରଣ ଧୋଇଆ ତା' ଚାବି ଅନ୍ୟ କାହାରିକୁ ଦେଇଯାଇନାହିଁ । ମହାପାତ୍ରେ ଯାଇ ବାବୁଆଣୀଙ୍କୁ କହିଲେ । ବାବୁଆଣୀ ବୁହେ ଏଣେତେଣେ ଖୋଜିଲେ । ଏଣେ ଯେ ବେଳ ଉଛୁର ହୋଇଯାଉଚି । ଠିକ୍ ରାତି ଘଡ଼ିକୁ ନିର୍ବନ୍ଧ । ସନ୍ଧ୍ୟା ହୋଇଗଲାଣି । ଏତିକିବେଳେ ଜଣେ ଲୋକ ପୁରୀରୁ ଗୋଟାଏ ସାଇକେଲରେ ବସି ଆସି କହିଲା ଯେ ଧୋଇବାବୁ ତା' ହାତରେ ମଗଜଲଡୁ ପଠାଇଦେଇଚନ୍ତି । ମହାପ୍ରସାଦ ନେଇ ଆସୁ ଆସୁ ଡେରିହବ । କାରଣ ଗୋଟାଏ ମାଘ ସ୍ନାନ ପଡ଼ିଯିବା ହେତୁରୁ ଭଣ୍ଡ ଛେକ ଉଠିବାରେ ଡେରି ହୋଇଚି । ଏଣେ ପୁରୋହିତ ଓ ନିମନ୍ତ୍ରିତ ବ୍ରାହ୍ମଣମାନେ ଆସି ପହଞ୍ଚିଲେଣି । ଏତେବେଳେ ସେ କାହା ଲୁଗା-ପଟା ମାଗିଯିବେ ? ସେ ଆଉ କିଛି ନ ପାଇ ବାବୁଆଣୀଙ୍କର ସହଣ ଲୁଗା ଖଣ୍ଡେ ଘେନି ପଳାଇଲେ । ପାର୍ବତୀ ବାବୁ ଆଉ କରନ୍ତି କ'ଣ ? ସେଇ ବାରହାତି ସହଣ ଲୁଗା ଖଣ୍ଡ କୌଣସି ମତେ ଗୁଡ଼େଇ-ପୁଡ଼େଇ ହେଇ ଘରକୁ ଆସିଲେ । ସେତେବେଳକୁ ନିର୍ବନ୍ଧ ବେଳ ହୋଇଯାଇଥିଲା । ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ଉଛନ୍ନ ହୋଇ ଉଠିଲେଣି; କିନ୍ତୁ କନ୍ୟା ପିତା ଓ ବନ୍ଧୁମାନଙ୍କର ଆସିବାରେ ଡେରି ହେଉଚି । ପାର୍ବତୀ ବାବୁ ଚଉଡ଼ା ଲୁଗାଖଣ୍ଡେ ପିନ୍ଧି ଓ ଅନ୍ୟାନ୍ୟମାନେ ସେଇ ଗାମୁଛା ଖଣ୍ଡଟିମାନ ପିନ୍ଧି କିପରି ବା ସଭା ମଧ୍ୟକୁ ଯାଉଛନ୍ତି ? ଏହି ସମୟରେ ଧୋଇବାବୁ ଆସି ପହଞ୍ଚିଲେ । ସେ ଏସବୁ ହାଲ ଶୁଣି ତରବର ହୋଇ ନିଜ ଘର ଫିଟାଇ ଏମାନଙ୍କୁ ସେଠାକୁ ଡାକିନେଲେ । ଆଲୁଅ ଆଣିବାକୁ ଫୁରସତ୍ ନାହିଁ, ସେ ତାଙ୍କୁ ତାଙ୍କର ଗାମୁଛା ଖଣ୍ଡକ ମୁହଁ ପୋଛିବାକୁ ଦେଲେ ଏବଂ ନିଜେ ବାକ୍ସ ଇତ୍ୟାଦି ଫିଟାଇ ସେଥିରୁ ଲୁଗା ବାହାର କରିବାରେ ଲାଗିଲେ । ଲୁଗା ବାହାରିଲା, ସେମାନେ ପିନ୍ଧି ଯଥାସ୍ଥାନକୁ ଗଲେ । ଦୁଇଟା ପେଟ୍ରୋମାକ୍ସ ଆଲୁଅରେ ଘରଟା ଦିନ ଭଳି ଉଜ୍ଜ୍ୱଳ ହୋଇଚି । ସମସ୍ତେ ଚାତକ ପରି କନ୍ୟାପିତା ଓ ବନ୍ଧୁମାନଙ୍କୁ ଚାହିଁ ବସିଥାନ୍ତି । ଏଇ ସମୟରେ ପାର୍ବତୀ ବାବୁ ଓ ତାଙ୍କର ସଙ୍ଗୀମାନେ ସେ ଘରକୁ ପଶିଯିବା ମାତ୍ରେ ଗୋଟାଏ ହସର ରୋଳ ଘରଖଣ୍ଡକୁ ଭାଙ୍ଗିପକାଇଲା । ପାର୍ବତୀ ବାବୁ ଦୁଆରମୁହଁରେ ଥକ୍କାମରା ହୋଇ ଠିଆହୋଇଗଲେ । ରାଗରେ ବିରକ୍ତିରେ ତାଙ୍କର ମୁହଁ ଲାଲ୍ ହୋଇଉଠିଲା, ଆଖି ଝଲସିଗଲା । ସେ ଓ ତାଙ୍କର ସଙ୍ଗୀମାନେ ସେଠାରୁ ପଛଘୁଞ୍ଚା ଦେଇ ଚାଲିଗଲେ । ମହାପାତ୍ର ବିଚରା ମଧ୍ୟ ସେଠାରେ ଥିଲେ । ସେ ପାର୍ବତୀ ବାବୁ ଇତ୍ୟାଦି ଫେରିଯିବାର ଦେଖି ତାଙ୍କ ପଛେ ପଛେ ଯାଇ ତାଙ୍କୁ ଦାଣ୍ଡଘରେ ଧଇଲେ । କହିଲେ, "ପାର୍ବତୀ ବାବୁ, ଆପଣ ଜଣେ ଭଦ୍ରବ୍ୟକ୍ତି । ଆମେମାନେ ଆଶା କରିଥିଲୁ ଆପଣ ଭଦ୍ର ବ୍ୟବହାର କରିବେ । ଏପରି ସୁଆଙ୍ଗ ସାଜି ଏ ସ୍ଥାନକୁ ଭଦ୍ରଲୋକଙ୍କ ମଝିକୁ ଆସିବା କି ସୁନ୍ଦର ହେଲା ?" ପାର୍ବତୀ ବାବୁ ଗର୍ଜନ କରି ଉଠିଲେ, କହିଲେ, "କ'ଣ,

ଆମେ ଅଭଦ୍ର ! ଆମେ ବାହାର ଗାଁରୁ ଆପଣଙ୍କ ଗାଁକୁ ସମ୍ବନ୍ଧ ପାତିବାକୁ ଆସିଛୁ. ସେଥିରେ ପ୍ରଥମେ ହେଲା ଆମର ଲୁଗା ଚୋରି. ତା'ପରେ ଆମେ ଯିବା ମାତ୍ରକେ. ସମସ୍ତେ ବିନା କାରଣରେ ହସି..."

ମହାପାତ୍ରେ—"ବିନା କାରଣରେ ? ଆସନ୍ତୁ ଦେଖିବେ. ବିନା କାରଣରେ କି କ'ଣ ?" କହି ତାଙ୍କୁ ଟାଣି ବୈଠକଖାନା ଘରକୁ ନେଲେ । ସେଠାରେ ଗୋଟାଏ ବଡ଼ ଦର୍ପଣ କାଛଦିହରେ ମରାହୋଇଚି । ପାର୍ବତୀ ବାବୁ ଦେଖିଲେ ଏକ ଅଦ୍ଭୁତ ଦୃଶ୍ୟ—ତାଙ୍କର ଗୋଟିଏ ପଟ ଗାଲରେ ଧଳା ଓ ନାଲି ରଙ୍ଗର ଦୁଇଟା ମାଙ୍କଡ଼ର ଚିତ୍ର ଓ ଆଉ ଗୋଟାଏ ଗାଲରେ ଧଳା ଓ ନେଳିରଙ୍ଗର ବାମଦେବର ଚିତ୍ର. କପାଳରେ ଏଡ଼େ ଏଡ଼େ ଅକ୍ଷରରେ ଲେଖାହୋଇଚି 'ବୋକା' । ଆଉ ତାଙ୍କ ସଙ୍ଗୀମାନଙ୍କର ମୁହଁଗୁଡ଼ାକରେ କଳା. ନେଳି. ନାଲି ଓ ଧଳାର ଅପୂର୍ବ ଚିତ୍ର ହେଇଚି; ଯେପରି ସୁଆଙ୍ଗରେ ଦ୍ୱାରି ବାହାରିଚି । ପାର୍ବତୀ ବାବୁ ପ୍ରଥମେ ତ କିଛି ବୁଝିପାରିଲେ ନାହିଁ । ଏତେ କାଣ୍ଡ-କାରଖାନା କେତେବେଳେ କିପରି ଯେ ହେଲା. ସେ ଆଦୌ ଅନୁମାନ କରିପାରିଲେ ନାହିଁ । ମହାପାତ୍ରେ ସେତିକିବେଳେ କହିଲେ. "ଏବେ ଦେଖିଲେ. ଯେଉଁମାନେ ହସିଥିଲେ ସେମାନେ ସକାରଣରେ କି ଅକାରଣରେ ଏବେ ବୁଝିଲେ ତ ? ଆପଣଙ୍କୁ ଆଉ କୁ'ଠେଇଁ ସୁଆଙ୍ଗ ଦେଖେଇବାକୁ ମିଳିଲା ନାହିଁ ।" ରାଗ କ୍ଷୋଭ ଓ ଲଜ୍ୟାରେ ମରିଗଲା ପରି ହୋଇଯାଇ ପାର୍ବତୀବାବୁ କହିଲେ. "ଆପଣ କ'ଣ ଭାବୁଛନ୍ତି ମୁଁ ଏପରି ବେଶ ଜାଣିଶୁଣି ହୋଇ ଆସିଚି ?"

ମହାପାତ୍ର—ତା' ନହେଲେ ଆପଣ ତ ଛୁଆ ପିଲା ନୁହଁନ୍ତି; ଆପଣଙ୍କୁ ଏ ବେଶ କରନ୍ତା କିଏ ?

ପାର୍ବତୀବାବୁ ଦେଖିଲେ. ଧୋଇବାବୁଙ୍କ ଦିଆ ଗାମୁଛାରେ ମୁହଁ ପୋଛିବା ଛଡ଼ା ସେ ଆଉ ତାଙ୍କ ମୁହଁରେ ହାତ ଦେଇ ନାହାନ୍ତି । ଯଦି କିଛି ଗୋଳମାଳ ହୋଇଥାଏ. ତାହେଲେ ସେଇ ମୁହଁ ପୋଛା ବେଳେ । ବୋଧହୁଏ ସେ ଖୁବ୍ ସାବଧାନରେ ମୁହଁଖାଳ ଚାପି ପୋଛିଥିଲେ ବୋଲି ତାଙ୍କ ମୁହଁରେ ଛବିଗୁଡ଼ାକ ରହିଗଲା. ଆଉ ତାଙ୍କ ସଙ୍ଗୀମାନେ ସେପରି ସାବଧାନ ନ ହୋଇ ଯେ-ଛା'-ତା କରି ପୋଛିଥିଲେ ବୋଲି ସେମାନଙ୍କ ମୁହଁରେ କେବଳ ଦାଗ ଲାଗିରହିଥିଲା । ସେ କହିଲେ. "ଦେଖନ୍ତୁ ମହାପାତ୍ରେ, ଆମେ ଯେ ଗାମୁଛାରେ ଧୋଇବାବୁଙ୍କ ଘରେ ମୁହଁ ପୋଛିଥିଲୁ. ସେ ଗାମୁଛା ଆଣିଦେଲେ ମୁଁ ବୁଝେଇ ଦେବି. ଏ କିପରି ହେଲା ।" ତାଙ୍କର ସ୍ୱରଟା ଶାଣ ଛୁରି ପରି ତୀକ୍ଷ୍ଣ. ବରଫ ପରି ଥଣ୍ଡା । ମହାପାତ୍ରେ କିଛି ବୁଝିନପାରି ଏମାନଙ୍କୁ ଧୋଇବାବୁଙ୍କ ଘରକୁ ନେଇଗଲେ । ସେଠାରେ ଦେଖିଲେ ଯେ ଚୌକି ପିଠିଉପରେ ସେମାନେ ସେ ଗାମୁଛାଟା ରଖିଥିଲେ. ସେହିଠାରେ ଠିକ୍ ସେହିଭାବରେ ଗାମୁଛାଟା ଅଛି । ମେଲାକରି ଦେଖିଲେ. ଗାମୁଛାରେ କୌଣସିଠାରେ ଟିକିଏ ଦାଗ ମାତ୍ର ନାହିଁ । ପାର୍ବତୀବାବୁ ସେଠାରୁ ଏକମୁହାଁ ଦାଣ୍ଡକୁ ଚାଲିଲେ । ଏତିକି ବେଳେ ଘର ଭିତରୁ ଆଉରି ଗୋଟାଏ ଗୋଳମାଳ ଶୁଭିଲା । ସେ କାନ ଦେଇ ଶୁଣିଲେ କିଏ କହୁଚି. "ଏ ମଦବୋତଲଟା ପରା ମୁଁ ସେଇ ଘରୁ ପାଇଲି. ଯୁ ଘରେ ସେ ବାବୁମାନେ ଥିଲେ ।" "ପାର୍ବତୀବାବୁ ଧୋଇବାବୁଙ୍କ ଲୁଗାଗୁଡ଼ାକ ଘେନି କ'ଣ ଶେଷରେ ପଳେଇବେ ? ଖାସା ଭଦ୍ରଲୋକ ଯାହା ହେଉ ।"

ଏହିପରି ଭାବରେ ନିର୍ବନ୍ଧ ଭାଙ୍ଗିଗଲା । ସେଦିନ ରାତିରେ ଧୋଇ ଖୁବ୍ ଆନନ୍ଦ ମନରେ ଶୋଇବାକୁ ଯାଇ, ତା' ଘର ଭିତରପଟୁ କିଳି, ଦିଆସିଲି ମାରି ଚିତ୍ରକରମାନେ ଯେପରି ମୋଟା କେରାପାଲ ଭଳି କନାରେ ଚିତ୍ର କରନ୍ତି ସେହିପରି ଖଣ୍ଡେ କନା ଢାକିପକାଇଥିଲେ ।



## ପାଞ୍ଚ

ଏହାର କିଛିଦିନ ପରେ ପୁରୀର ସରନ୍ତି ସୋମବାର ମେଳା । ବୈଶାଖ ମାସ ଶେଷ ସୋମବାର ଦିନ ପୁରୀ ଲୋକନାଥଙ୍କ ପାଖରେ ଗୋଟିଏ ବଡ଼ରକମ ମେଳା ହୁଏ । ପୁରୀ ପଞ୍ଚକୋଶୀ ମଧ୍ୟରୁ ପ୍ରାୟ ପ୍ରତ୍ୟେକ ପୁରୁଷ ବ୍ୟକ୍ତି ଏ ମେଳାକୁ ଆସନ୍ତି । ଚନ୍ଦନଯାତ ମଝିରେ ଏ ମେଳା ପଡ଼ିବାଦ୍ୱାରା ଲୋକମାନଙ୍କର ବଡ଼ ସୁବିଧା ହୁଏ । ଏକା କ୍ଷେପକେ ବାଳିଆ ଶେଉଳ ଦି'କଥା—ଛାଡ଼େ କିଏ ? ରବିବାର ରାତିଠାରୁ ଆରମ୍ଭ କରି ସୋମବାର ଦିନ ପହରକ ପର୍ଯ୍ୟନ୍ତ ସତ୍ୟବାଦୀ ଓ ପୁରୀ ମଝିରେ ଜଗନ୍ନାଥ-ସଡ଼କ ଲୋକାରଣ୍ୟ । ଗୋରୁଗାଡ଼ିର ଗୋଟାଏ ଅସରନ୍ତି ସୁଅ ଚାଲିଥାଏ ଏବଂ ବଳଦମାନଙ୍କ ବେକର ଘଣ୍ଟିଶବ୍ଦରେ କାନ ଅତଡ଼ା ପଡ଼ିଯାଏ । ଶଗଡ଼ିଆମାନଙ୍କ ମଧ୍ୟରେ ବାଦବିବାଦ, କଳିତକରାଳ ଅଭାବ ନଥାଏ । କାହା ଶଗଡ଼ର ଦଣ୍ଡା କାହା ଶଗଡ଼ ମୁଣ୍ଡରେ ବାଜିଲା, କିଏ ଆଗରେ କଟାଇନେବାକୁ ଚେଷ୍ଟାକଲା, ଆଉ କିଏ ବାଟ ଛାଡୁନାହିଁ ଇତ୍ୟାଦି କାରଣରୁ କଳିଗୋଳ ଓ ମରାମରି ମଧ୍ୟ ବେଳେବେଳେ ହୋଇଯାଏ । ଚଲାଖି ଲୋକମାନେ ହାତତାଳି ଦେଇ 'ଆଜି କେଳିକଉତୁକୀ ଶ୍ରୀଛାମୁରେ ମୋର ମାଗୁଣି ଏତିକି' ଗୀତ ଛାଡ଼ି ସେ କଳିଗୋଳ ଓ ମରାମରିରେ ବେଳେ ବେଳେ ଯୋଗ ଦିଅନ୍ତି । ସକାଳେ ପୁରୀରେ ପହଞ୍ଚି ଦେଉଳରେ ପଖାଳ ଅଭଡ଼ା ଓ ବାସି ଡାଲି ତରକାରିରୁ ମେଞ୍ଚେ ଲେଖାଏଁ ପକାଇ ନେଇ ଲୋକନାଥଙ୍କ ବାଲିପଡ଼ିଆରେ ଆସି ହାଜର ହୁଅନ୍ତି । ଅଧିକାଂଶ ଗଛ ଉପରେ, ପାଚିରି ଉପରେ, ଘର ଉପରେ ପାତିମାଙ୍କଡ଼ଙ୍କ ପରି ପଡ଼ିରହିଥାନ୍ତି । ଯେଉଁମାନେ ମୁଖିଆ ଓ କାମିକା, ସେମାନେ ନଡ଼ିଆ କୋରିବା, ଚୂଡ଼ା ଘଷିବା, କଦଳୀ କାଟିବା ଇତ୍ୟାଦିରେ ଲାଗିଯାନ୍ତି । ନଡ଼ିଆର ଘଷର ଘଷର, ଚୂଡ଼ାର ପସର ପସର, ପାତିମାଙ୍କଡ଼ମାନଙ୍କର କିଚିରି-କିଚିରି ଓ ମନୁଷ୍ୟମାନଙ୍କର କଟର-ମଟର ଇତ୍ୟାଦିରେ ମନେହୁଏ ଯେପରି ଭୂତନାଥଙ୍କ ଅନୁଚରମାନେ ଏତେ ଦିନ ପରେ ନର୍କର ଅନ୍ଧାରରୁ ପୃଥିବୀର ଆଲୋକକୁ ବାହାରି ଆସିଛନ୍ତି ।

ଗ୍ରାମର ମାମଲତକାରମାନେ ବେଢ଼ା ଅଗଣାରେ ବସି ଗାଁର ବାଦବିବାଦ ତୁଟାଇବା ନାମରେ ନିଜର ବାହାଦୁରି କରୁ କରୁ ଆଉ ଗୋଟାଏ ବାଦବିବାଦ ଲଗାଇ ଦିଅନ୍ତି । ବେଢ଼ା ମଧ୍ୟରେ କେବଳ ବ୍ରାହ୍ମଣ ବିଶେଷତଃ ଶାସନି ବ୍ରାହ୍ମଣମାନଙ୍କର ବସିବାର ଅଧିକାର ବୋଲି ସେମାନେ ସେଇ ବେଢ଼ା କେତେହାତ ଭିତରେ, ନଡ଼ିଆ ପାଣିରେ ଚପଚପ, ସଡ଼ସଡ଼ ହୋଇ ବସିବେ ପଛକେ, ବାହାରକୁ ଯିବେନାହିଁ । ଅଥଚ ଯେଉଁମାନେ ଇତର, ସେମାନେ ବାହାରେ ଗଛତଳମାନଙ୍କରେ ଦିବ୍ୟ ସମୁଦ୍ରପବନ ଉପଭୋଗ କରି ନିଜ ନିଜ କାମ କରିଯାନ୍ତି । ବ୍ରାହ୍ମଣ

ସାମନ୍ତମାନଙ୍କର ବୁଦ୍ଧି ତ ! ଏଇ ଖରାରେ ଦହିହୋଇ, ଜନ୍ତାଜନ୍ତିରେ ମଛିହୋଇ, ଉପାସରେ ବାଇ ହୋଇ ଦିନ ତିନିଟା ଚାରିଟାବେଳକୁ ମୁଠେ ମୁଠେ ଚୂଡ଼ାଘଷା ଖାଇବାକୁ ମିଳେ । ସେ ମଧ୍ୟ ବ୍ରାହ୍ମଣ ସାମନ୍ତମାନଙ୍କ ଅଦ୍ଭୁତ ଆବିଷ୍କାର, "ସେରେ ଚୂଡ଼ା; ସେ କୁଟାହୋଇ, ଛଣାହୋଇ ଚଳନଧୂଳି ପରି ହୋଇଥିବ । ସେଥିରେ ପାଞ୍ଚଗଣ୍ଡା ନଡ଼ିଆ; ସେ ନଡ଼ିଆ ଯେ କୋରାହେବ, ସେଥିରୁ ପୁରେ ଲେଖାଏଁ ସଢ଼େଇରେ ରହିଯିବ, ପାଞ୍ଚପା ଘିଅ ଓ ପାଞ୍ଚପା ଚିନି ବା ନବାତ । ଗୋଟାକେତେ ସଢ଼େଇ ଦିହରୁ ଭଲକରି ଆଂଶୁ ବାହାର କରାଯାଇ ତାରି ପିଠିରେ ଷଣ୍ଡା ଷଣ୍ଡା ଟୋକା ପାଞ୍ଚଟା କି ଛ'ଟା ଏସବୁକୁ ଏକାଠି ପକାଇ ଘାଣ୍ଟି ଦୁଇ ତିନି କାଳ ଘଷିବାପରେ ସେଥିରେ କର୍ପୂର, ଲବଙ୍ଗ, ଗୁଜୁରାତି ଇତ୍ୟାଦିର ଗୁଣ୍ଡ ଦିଆହୋଇ ପାଗ ଶେଷ କରାଯାଏ ।

ସେତେବେଳେ ସେ ଅବସ୍ଥାରେ ତାକୁ ଖାଇବାକୁ ଯେ ସୁଖ, ସେଥିରେ ପୁଣି ବାହାଦୁରି । ଏ ପର୍ଯ୍ୟନ୍ତ ଶ୍ରୀରାମଚନ୍ଦ୍ରପୁର ପରି ସଭ୍ୟ ଗ୍ରାମର ବ୍ରାହ୍ମଣ ସାମନ୍ତମାନେ ମଧ୍ୟ ତାଙ୍କ ସରନ୍ତି ସୋମବାର ଚୂଡ଼ାଘଷାଟା ସମସ୍ତଙ୍କଠାରୁ ବଢ଼ିଆ ହୁଏ ବୋଲି ଗର୍ବ କରନ୍ତି । ବ୍ରାହ୍ମଣ ସାମନ୍ତମାନଙ୍କର ବୁଝିବା ଉଚିତ, ପଇସା ଅଛି ବୋଲି ପଇସା ବୁଣିବାରେ ମଣିଷପଣିଆ ଜଣାପଡ଼େନାହିଁ । ନିଜର ଓ ପଞ୍ଚପରମେଶ୍ୱରଙ୍କର ସୁଖ ଓ ଭଲ ପାଇଁ ଯଥାଯଥ ବ୍ୟୟ କରିବା ହିଁ ମନୁଷ୍ୟତ୍ୱ । ସେମାନେ ଏତେ ପଇସା ଖର୍ଚ୍ଚକରି ଯେ ପଦାର୍ଥ ତିଆରି କରନ୍ତି, ସେ ତ ଅଖାଦ୍ୟ । ସେମାନେ ସ୍ୱୀକାର କରିବେ ଯେ, ସେ ଅଖାଦ୍ୟ ଆଉ 'ସେ' ନହେଲେ ଯେ ଲୋକନାଥଙ୍କୁ ଅନ୍ୟ ଜିନିଷ ରୁଚିବ ନାହିଁ, ଏପରି ମଧ୍ୟ କୌଣସି ଶାସ୍ତ୍ରରେ ନାହିଁ । ଅତଏବ ମେଳାମଉଜ କରିବାକୁ ଯାଉଛ, ଯେପରି ସୁଖ ହେବ, ଆରାମ ହେବ ସେହିପରି ପଦାର୍ଥ କରି ଲୋକନାଥଙ୍କୁ ଭୋଗ ଦିଅ ଆଉ ଗିଳ ।

ଯାହା ହଉ, ଏ ମୋର ଏକପ୍ରକାର ଅର୍ବାଚୀନତା । ବ୍ରାହ୍ମଣ ସା'ନ୍ତେ ବୋଧହୁଏ ମୋ ଉପରେ ତାଙ୍କର ତାଳଠେଙ୍ଗା ନଚାଇବାର ବ୍ୟବସ୍ଥା କରିବେଣି । ଅଦାବେପାରୀର ଜାହାଜ ଖବର କେବେ ଦରକାର ହଉନଥିଲା ବୋଲି, ଆଜି ଯେ ଦରକାର ନହେବ, ତା'ର କୌଣସି ଅର୍ଥ ନାହିଁ । ପ୍ରକୃତପକ୍ଷରେ ଅଦାବେପାରୀ ମଧ୍ୟ ଆଜିକାଲି ଜାହାଜ ଖବର ନେବାକୁ ବାଧ୍ୟ ହେଲେଣି । ମୋ ଅଦା ବେପାରକୁ ଆସେ ତେବେ ।

ଯେତେବେଳେ ଏ ଦେବଦୁର୍ଲ୍ଲଭ ପଣା ଆସି ମାଟି ଓଳିରେ ଜଣଜଣଙ୍କୁ ଯଚାଯାଏ, ସେତେବେଳେ ଧୋଇବାବୁ ପ୍ରଥମେ ମନାକରିଥିଲେ, କିନ୍ତୁ ପରେ ସାଙ୍ଗସାଥୀମାନଙ୍କର ଉପ୍ରୋଧରେ ଶିବ ବାବୁଙ୍କ ଅନୁଚରମାନଙ୍କର "ଛି-ଛି ଧୋଇବାବୁ, ମଧୁପୁର ଗାଁର ନାଁ ବୁଡ଼େଇଲ" କଥାର ପ୍ରରୋଚନାରେ ସେ ଓଳିରୁ ଅଧେ ହବ ପିଇଥିଲେ । ତା'ପରେ ମହାପ୍ରସାଦ ଭୋଜନ । ମଝିରେ କିଛି ସମୟ ବିଶ୍ରାମ । କାରଣ ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କ ମଧ୍ୟରୁ କେତେକଙ୍କର ଅଭ୍ୟାସ ଯେ ମୁହେ ଏ ଦେବଦୁର୍ଲ୍ଲଭ ପଣାରୁ ପକାଇ ଲୋକନାଥଙ୍କ ବାଲି ପଡ଼ିଆଟାକୁ ପବିତ୍ର କରି ନ ଆସିଲେ ଆଉ ପୁଣି ଜଗନ୍ନାଥଙ୍କ ମାଲଟା ପଶିପାରିବନାହିଁ । ଏଇ ବ୍ୟବଧାନ ମଧ୍ୟରେ ଧୋଇବାବୁଙ୍କ ଦଳ ଓ ଶିବ ବାବୁଙ୍କ ଦଳ ବସି ନାନା ପ୍ରକାର ଗପ ଆରମ୍ଭକଲେ । କଥାଗୁଡ଼ାକ ସ୍ୱାଭାବିକ ଗତିରେ ଭୋଜନ ଆଡ଼କୁ ଗଡ଼ିଆସିଲା । ତା'ର ଦୁଇଟି କାରଣ— ପ୍ରଥମେ ଏ ଯେ ଲୋକନାଥଙ୍କ ଅଧରପଣା, ୟେ ତ ଯେମିତି ସେମିତି ନୁହେଁ, ସ୍ୱୟଂ

ସଂହାରକର୍ତ୍ତାଙ୍କର ପୁଣି ଏକ ଭାର୍ଯ୍ୟା ଅଛନ୍ତି । ସେ ସବୁବେଳେ ଖାଇବେ ବୋଲି ଜିଭଟା ଲହଲହ କରୁଥାନ୍ତି । ସଂହାରକର୍ତ୍ତା ତ ଏ ଅଧରପଣା ପିଇଲା ବେଳେ ଏକା ପିଇନଥିବେ, ପ୍ରଥମେ ଭାର୍ଯ୍ୟାଙ୍କୁ ପିଆଇ ପରେ ସେହି ପ୍ରସାଦ ନିଜେ ପିଇଥିବେ । ଅତଏବ ଏତେଗୁଡ଼େ ଖାଇବା ପ୍ରିୟ ଦେବତାଙ୍କର ଉଚ୍ଛିଷ୍ଟ ପେଟରେ ପଡ଼ିଲେ ତ ସେ ଯାହା କିଛି ଥିବ ସବୁ ହଜମ କରିନେଇ ଆଉରି କ'ଣ ଖାଇବାକୁ ଆଶା ଭିଆଇଦେବ । ଦ୍ୱିତୀୟରେ ନିମନ୍ତ୍ରଣ ଭୋଜନଟା ଅଛି । ଅତଏବ ଫଲଣା ମିଶ୍ରେ କହିଲେ, "ଆହେ ବାବୁ, ଖାଇବ ଖାଇବ ବୋଲି ହଉଚ ଯେ କ'ଣ ଖାଇବ ? ତୁମର ତ କୁଆଟାକର ଆହାର, ଦି'ଥର ଖୁମ୍ପିଦେଲେ ପେଟ ପୂରିଯିବ । ଆମ ସାଙ୍ଗରେ ଜିଗର ପକାଇ ଖାଇପାରିବ ?"

ଶିଶୁପାଳ କହିଲେ, "ଆହେ, କାହା ସାଙ୍ଗରେ ଜିଗର ପକାଉଚ ! ଏ କାଳ ଟୋକାଗୁଡ଼ାକ ଯିମିତି ଖାନ୍ତି, ସିମିତି ଦିହରେ ବଳ ରଖଛନ୍ତି । ଦେଖୁନ, ଆମର ଏ ଧୋଇବାବୁଙ୍କୁ; ଦିଶୁଚନ୍ତି କିମିତି, ଏତେ ସଲଟଣରେ ରହିବା ଉତ୍ତାରୁ ମଧ୍ୟ ଦିଶୁଚନ୍ତି ଯିମିତି ସତେ ଅବା ପାଞ୍ଚ ଦିନର ମଲୁ । ଦି'ପାହୁଣ୍ଡ ଚାଲିକରି ଯିବାର କ୍ଷମତା ନାହିଁ ଯାହାର ତା' ସାଙ୍ଗରେ ପୁଣି ଜିଗର । ଆହା-ହା, ତୁମେ ଯିମିତି ।" ଧୋଇବାବୁ ମୁରୁକିହସା ଦେଇ କହିଲେ, "ମହାପାତ୍ରେ ଯାହା କହିଲେ ସେଗୁଡ଼ାକ ମନଗଢ଼ା ହେ ? ତୁମର ଦି'କୋଶ ପାଞ୍ଚକୋଶ ଚାଲିଯିବାଟା ?" "ପାଲଟା ଚାକ ଆସିଲା, ପାରିବ ? ଏତେ ଭଦ୍ରଲୋକ ତ ଅଛନ୍ତି, କହ ଦେଖି, ପାରିବ ?"

ଧୋଇ : ଯଦି ପାରେଁ ?

ଫଲଣା : ହଁ, ତା' ପାରିବ ନାହିଁ କାହିଁକି ? ସାଙ୍ଗରେ ଦି-ଦି'ଟା ଚାକରବାକର ଯିବେ; ଅଣ୍ଟାରେ ଚାରିଶ ପାଞ୍ଚଶ ଟଙ୍କା ରହିବ—ସେପରି ହେଲେ କୋଡ଼ଛୁଆ ବି ଚାଲିଯିବ ହେ ।

ଧୋଇ : ଶୁଣନ୍ତୁ ମୁଁ କହୁଚି । ମୁଁ ସାଙ୍ଗରେ ମାତ୍ର ଗୋଟିଏ ଟଙ୍କା ନେଇ କଲିକତା ଯିବି ଓ ଆସିବି ।

ଶିବ : କ'ଣ ମଟରରେ ?

ଧୋଇ : ନାଇଁ ଚାଲିକରି ।

ଫଲଣା : କ'ଣ ଦି'ବର୍ଷରେ ?

ଧୋଇ : ନାଇଁ କୋଡ଼ିଏ ଦିନରେ । କାହାର ଏଥିରେ ସନ୍ଦେହ ଅଛି ସେ କହୁ । ମୁଁ ପାଞ୍ଚଶ ଟଙ୍କା ଜିଗର ମାରିବାକୁ ପ୍ରସ୍ତୁତ ଅଛି ।

ଧୋଇବାବୁଙ୍କର ସାଙ୍ଗ ମଦନବାବୁ କହିଲେ, "ଆରେ ଧୋଇଆ, ତୁ ଗୋଟାଏ ମସ୍ତବଡ଼ ଗଧ । ଖାଲି ଭୋପା ବାହାଦୁରୀ ଗୁଡ଼ାଏ କରୁ କିଆଁ ?"

ଧୋଇବାବୁ ରାଗିଯାଇ କହିଲେ, "ଭୋପା ବାହାଦୁରୀ ? ମୁଁ ପ୍ରକୃତରେ ଜବାବ ଦେଇ କହୁଚି, ମୁଁ ଯଦି ଗୋଟାଏ ଟଙ୍କା ନେଇ ଆଜିଠାରୁ ୨୦ ଦିନ ମଧ୍ୟରେ କଲିକତା ଯାଇ ଫେରି ନଆସିବି ତା'ହେଲେ ମୁଁ ପାଞ୍ଚଶ' ଟଙ୍କା ଛାଡ଼ିଦେବି । ଆପଣମାନଙ୍କ ମଧ୍ୟରେ କେହି ଅଛି ଯେ ଏ ଜିଗର ଦେଇପାରିବ ?"

ଶିବ : ବାବା ଧୋଇ ! ତୁ ପିଲା, କଥା କଥାରେ ଏପରି ଜିଗର ମାରିବା ଠିକ୍ ନୁହେଁ । ନିଜର ଶକ୍ତିକୁ ଚାହିଁ, ନିଜର ସୁବିଧା-ଅସୁବିଧାକୁ ଦେଖି ସିନା ଯେତିକି ପାରିବ ସେତିକି କହିଲେ ଭଦ୍ରଲୋକ ବୋଲି ଚିହ୍ନାଯାଏ । ଏଗୁଡ଼ାକ ଖାଲି ବଢାରି କଥା ।

ଧୋଇ : ମୁଁ ବଢାରି ନୁହେଁ । ମୋର ଜିଗର ନରଖି ଯେ ମୋତେ ବଢାରି ବୋଲି କହେ ସେ ନିଜେ ଅଭଦ୍ର ।

ତା'ପରେ ସମସ୍ତେ କହିଉଠିଲେ, "ଶିବବାବୁ, ଆପଣଙ୍କୁ ଏ ଜିଗର ରଖିବାକୁ ହେବ । ଏକାବେଳକେ ପାଞ୍ଚଶ ଟଙ୍କାର ବାଜି ରଖିବା ଭଳି ଶକ୍ତି କାହାରି ନାହିଁ । ତା'ପରେ ଧୋଇର ଏ ବାଜି ପଡୁ ଆପଣଙ୍କ ସାଙ୍ଗରେ ।"

ଶିବ : ଆଚ୍ଛା, ନହେଲା, ବାଜି ରଖିଲି; କିନ୍ତୁ ଗାଁରେ ଯେ ଶୁଣିବ, ବିଶେଷତଃ ଧୋଇଆ-ବୋଉ, ମତେ ଗାଳିଦେବ ।

ଧୋଇ : ଏ ସ୍ଥାନରେ ଆମ ଗାଁର ବୋଲି ଆପଣ, ମୁଁ, ମିଶ୍ରେ, ମହାପାତ୍ରେ ଓ ମଦନ । ଆପଣ ମିଶ୍ରଙ୍କର ଓ ମହାପାତ୍ରଙ୍କର ଭାର ନିଅନ୍ତୁ, ମୁଁ ମଦନ ଭାର ନଉଚି; ମଦନ ଯାଇ ବୋଉଙ୍କୁ କହିବ ଯେ ମୁଁ କଲିକତା ମାମୁଁଙ୍କ ପାଖକୁ ଯାଉଛି । ପନ୍ଦର କୋଡ଼ିଏ ଦିନ ପରେ ଫେରିବି । ତାହେଲେ ଗାଁରେ ଏ ବାଜି କଥା ଜାଣିବା କାହାରି ସମ୍ଭବ ନୁହେଁ ।

ଶିବ : ତାହାହିଁ ହଉ ତେବେ । ତୁମେ କ'ଣ ଆଜି ବାହାରିପଡ଼ିବ ?

ଧୋଇ : ହଁ ଆଜି, ଏଇକ୍ଷଣି, ମତେ ଗୋଟାଏ ଟଙ୍କା କିଏ ଧାର ଦେଇପାରିବ ! ଆପଣମାନେ ଦେଖିପାରନ୍ତି ମୋ ପାଖରେ ପଇସାଟିଏ ମାତ୍ର ନାହିଁ, ମହାପାତ୍ରଙ୍କ ପାଖରେ ସବୁ । ତାଙ୍କୁ ଖୋଜି ବାହାର କରୁ କରୁ ଡେରି ହବ । ମଦନ, ତୋ ପାଖରେ ଅଛି ତ ମୋତେ ଗୋଟାଏ ଟଙ୍କା ଦେଲୁ !

ମଦନ : ତୁ କ'ଣ ସତରେ ଯିବୁ ? କି ପାଗଳାମି ! ସେ ନାହିଁ କରୁଥିଲା; ତାକୁ ବଳାବଳି କରି ମୁନ୍ଦେ ଭାଙ୍ଗ ପିଆଇ...

ଧୋଇ : ଥାଉ ଥାଉ, ତୋର ବିଦ୍ୟା-ବାଗୀଶଗିରି ଦେଖାଇବା ସେତିକି ଥାଉ । ଆମର ନ୍ୟାୟକାରକ ବାହାରି ପଡ଼ି କହିଲେ କ'ଣ ନା, ମୁଁ ନିଶାରେ ଏପରି କରୁଚି । ଭାରି ଭାଙ୍ଗ ଖାଇଲାବାଲା, ଦେ, ଟଙ୍କା ଦେ ତ । ତା' ନହେଲେ ତୋ ମୁଣ୍ଡ ଚୂନା କରିଦେବି । ଆଉ ଶୁଣ, ତୁ ଯଦି ଗାଁରେ କାହାରି ଆଗରେ ଏସବୁ କଥା କହିଥାଉ, ମୁଁ ଆସି ଶୁଣିବି, ତା'ହେଲେ ଜାଣିଛୁ ତ, ତୋର ବିଦ୍ୟାବାଗୀଶପଣ ଛଡ଼ାଇଦେବି ।

ତା'ପରେ କଥାହେଲା, ସେ ଯେ କଲିକତା ଯାଉଛନ୍ତି, ତାହାର ପ୍ରମାଣ କିପରି ଜଣାଯିବ । ଶିବବାବୁ କହିଲେ, "କଲିକତା ମେଛୁଆ ବଜାର ଗଳିରେ ପ୍ରମଥ ବାବୁ ତାଙ୍କର ଜଣେ ବନ୍ଧୁ । ତାଙ୍କ ସାଙ୍ଗରେ ଦେଖାକରି ଓ ତାଙ୍କଠାରୁ ଖଣ୍ଡିଏ ଚିଠି ଘେନି ଧୋଇ ଫେରିଲେ ଜଣାଯିବ ଯେ ସେ କଲିକତା ଯାଇଛନ୍ତି ।" ଧୋଇ ରାଜିହେଲେ ଓ ପ୍ରମଥ ବାବୁଙ୍କର ଠିକଣା ଖଣ୍ଡେ କାଗଜରେ ଟିପିନେଲେ । ସେଠାରେ କିଏ କିପରି ଜାଣିବ ଯେ ମେଛୁଆ ବଜାରର ପ୍ରମଥ ବାବୁ ଭଦ୍ରବ୍ୟକ୍ତି ହେଲେହେଁ କଲିକତାର ଜଣେ ଗୁଣ୍ଡା ସର୍ଦ୍ଦାର ।

●

# ଛଅ

ବାଲେଶ୍ୱର ମହମ୍ମଦପୁର । ରାଧାନାଥ ଶତପଥୀଙ୍କ ଘର । ତାଙ୍କର ବିଧବା ପତ୍ନୀ ସରୋଜିନୀ ଦେବୀ ରୁଗ୍‌ଣ ଓ ଶଯ୍ୟାଗତ । ପାଖରେ ତାଙ୍କର ୧୫ ବର୍ଷର କନ୍ୟା ପ୍ରମିଳା । ମା' କ୍ଷୀଣ, ଦୁର୍ବଳ ଓ ଶାନ୍ତକଣ୍ଠରେ କହୁଚନ୍ତି, "ମା, କାନ୍ଦନା ମା, ମୁଁ ଯାହା କହୁଚି ମନଦେଇ ଶୁଣ; ତା'ପରେ କାନ୍ଦିବାକୁ ବହୁତ ବେଳ ପାଇବୁ । ମରିଗଲେ ତ ଆଉ ଏ କଥା କେତେଟା କହିପାରିବି ନାହିଁ ।"

ପ୍ରମିଳା : ଶୁଣିଚି ମା' କିନ୍ତୁ ତୁ ମରିଯିବୁ ବୋଲି କହନା, ମା ! ମୋର ଛାତି ଭିତରଟା ଯେ କିସ ହୋଇଯାଉଚି ।

"ପାଗଳୀ, ପାଗଳୀ ! ମୁଁ କ'ଣ ସବୁଦିନ ବଞ୍ଚିଥିବି । କେହି କି ସବୁଦିନେ ବଞ୍ଚେ ? ତୋର ବାପା, ଆହା ! ସେ ଥିଲେ ଦେବତା, ଦେବତା, କେଉଁ ଅଭିଶାପରେ ଏ ସଂସାରରେ ମନୁଷ୍ୟଦେହ ଘେନି ଆସିଥିଲେ । ଅଭିଶାପ ପରେ, ହାୟ ! ଏ ଅଭାଗିନୀକୁ ଫୋପାଡ଼ି ଦେଇ ଚାଲିଗଲେ ।" ଏହା କହି ସରୋଜିନୀ ଦେବୀ ଊର୍ଦ୍ଧ୍ୱ ନୟନରେ ତନ୍ମୟ ହୋଇ ଚାହିଁରହିଲେ; କିଛି ସମୟ ପରେ କହିଲେ, "ଦେଖ ମା ! ସେ ମତେ ଡାକୁଚନ୍ତି । ତାଙ୍କର ସେ ସୁଦୃଢ଼ ବାହୁଯୋଡ଼ିକ ମେଲେଇଦେଇ ମତେ ତାଙ୍କର ଛାତିକି ଟାଣି ନେବାକୁ ଆସୁଚନ୍ତି । ଏଇ ଦେଖୁନାହୁଁ, ତାଙ୍କର ସେ ମଧୁର ଚାହାଁଣି, ସେ ଦିବ୍ୟଲୋକର ଅମର ହସ । ଆହା, ମରିଯାଏ କିନା ! କିପରି, କିପରି ଏତେଦିନ ଛାଡ଼ି ମୁଁ ରହିଚି ପାଷାଣୀ ! ଛାଡ଼ ମା, ମୁଁ ଯାଏଁ !" କହି ସରୋଜିନୀ ଶଯ୍ୟାରୁ ଉଠିପଡୁଥିଲେ । ତାଙ୍କ ଆଖିରେ ଉଦ୍‌ଭ୍ରାନ୍ତ ତେଜ, ମୁହଁ ଅସ୍ୱାଭାବିକ ଉଜ୍ଜ୍ୱଳ । ପ୍ରମିଳା ତାଙ୍କୁ ଅତି ଧୀରେ ଶୁଆଇଦେଇ ଗଦ୍‌ଗଦ୍ କଣ୍ଠରେ ଡାକିଲେ, "ମା, ମା !" ସରୋଜିନୀଙ୍କର ଧ୍ୟାନ ଭାଙ୍ଗିଗଲା; ଦେଖିଲେ ପ୍ରମିଳା ପାଖରେ । ଆଖିରୁ ଦୁଇଧାର ଲୁହ ଗଣ୍ଡଦେଶ ଦେଇ ଭାସିଯାଉଛି । ସେ ପ୍ରମିଳାକୁ ନିଜ ଆଡ଼କୁ ଟାଣିନେଇ କହିଲେ, "ମା ମୋର, ସୁନାଟି ମୋର, କାନ୍ଦନା ମା ! ତୋର ହସଟି ଠିକ୍ ତାଙ୍କରି ହସପରି । ସେହି ହେତୁରୁ ତୋର ହସଟିକ ଦେଖି ମୁଁ ସବୁ ପାସୋରି ପକାଇଥିଲି । ଟିକିଏ ହସ ମା' ! ମୋର ଏ ଦିନ କେତେଟା ଟିକିଏ ଆନନ୍ଦରେ କଟିଯାଉ । ତୁ କାନ୍ଦିଲେ ମୋର ମନରେ ବଡ଼ କଷ୍ଟ ହୁଏ । ମାଲୋ, ତୁ କିପରି ତାଙ୍କରି ସବୁ ଲକ୍ଷଣତକ ଘେନିଆସିଲୁ ? ତାଙ୍କ ମନରେ ଦୁଃଖ ହେଲାବେଳେ ତାଙ୍କର ନାକପୁଡ଼ାଯୋଡ଼ିକ ଠିକ୍ ତୋରି ପରି ନାଚିଉଠେ । ତୋରି ପରି ତାଙ୍କରି ଆଖିକଣ ମଧ୍ୟ ସଙ୍କୋଚିଯାଏ । ଦିନେ, ମୋର ମନେଅଛି, ତୁ ସେତେବେଳକୁ ଜନ୍ମ ହୋଇନଥାଉ, ସେ କଚିରିରୁ କାମ-ଦାମ ସାରି ଫେରିଲେ ସନ୍ଧ୍ୟା ୭ଟା ବେଳକୁ । ମୁଁ ଗୋଟାଏ ସାମାନ୍ୟ କଥାରେ ମା, ମୋର ଦେବତାଙ୍କ ଉପରେ ଅଭିମାନ କରି ସବୁ ଦିନ ଭଳି ସେଦିନ ଆଉ ତାଙ୍କ ପୋଷାକ ଫିଟାଇ ଦେବାକୁ ଗଲିନାହିଁ । ଚାକର ଯାଇ ପୋଷାକ ଫିଟାଇଦେଲା । ସେ ମୁହଁ ପର୍ଯ୍ୟନ୍ତ ନଧୋଇ ମୋ ପାଖକୁ ସିଧେ ଚାଲିଆସିଲେ । ମୋର ହାତ ଧରିପକାଇ କହିଲେ, "ଦିହ କ'ଣ ଖରାପ ଲାଗୁଚି କି ?" ମୁଁ ହାତଟା ଛିଞ୍ଚାଡ଼ି ଆଣି ତାଙ୍କ ଆଡ଼କୁ ପିଠିକରି

ବସିଗଲି; କିନ୍ତୁ ଅବୁଝା ହୃଦୟ ତାଙ୍କର ମୁହଁଟି, ସେ ସ୍ୱର୍ଗ-ଦୁର୍ଲ୍ଲଭ ମୁହଁଟି ନ ଦେଖି ଯେ ମୁଁ ରହିପାରେନାହିଁ ମା, କଣେଇ କରି ଟିକିଏ ଚାହିଁଦେଲି । ଦେଖିଲି ସେ ଚିତ୍ରପିତୁଳାଟି ପରି ଠିଆହୋଇଚନ୍ତି । ତାଙ୍କର ସେ ସଜ ପଦ୍ମଫୁଲ ମୁହଁଟି କାକର ପଡ଼ିଲାପରି ଶୁଖିଯାଇଚି । ତାଙ୍କର ସେ ଖଣ୍ଡାଧାର ପରି ନାକର ପୁଡ଼ା ଦୋଟି ପଡୁଚି ଉଠୁଚି । ଆଖିର କୋଣଗୁଡ଼ିକ ସଙ୍କୋଚି ହୋଇଯାଇଚି । ମା, ସେ କି ଦୃଶ୍ୟ !" କହି ବୁଢ଼ୀ ଝିଅକୁ ନିଜ ଛାତିକୁ ଟାଣିନେଇ ତା'ର ନାକପୁଡ଼ା ଆଖିକୋଣକୁ ପାଗଳଙ୍କ ପରି ଚୁମା ଦେଇବସିଲେ । ପାଞ୍ଚ ସାତ ମିନିଟ୍ ଗଲା, ପ୍ରମିଳା ମା'ଙ୍କ ଛାତିରୁ ଆସ୍ତେ ଉଠି ଆସି ପଚାରିଲେ, "ମା, ବାପା ତତେ ଭାରି ଭଲପାଉଥିଲେ, ନା ?"

ସରୋଜିନୀଙ୍କର ସେ କ୍ଷୀଣ ଶୁଷ୍କ ଅଧରରେ ଟିକିଏ ହସ ଦେଖାଗଲା । ସେ କହିଲେ, "ଭଲପାଉଥିଲେ କି ମା, ଏବେ ମଧ୍ୟ ଭଲପାଉଚନ୍ତି । ସେ ଭଲ ପାଇବା କି ମରିହଜିଯିବାର ଜିନିଷ ମା ! ସୂର୍ଯ୍ୟ ସଞ୍ଜହେଲେ ବୁଡ଼ିଯାଏ ସତ; କିନ୍ତୁ ତା'ର ତେଜ, ତା'ର ତାତି, ପୃଥିବୀ ଭିଡ଼ିରଖେ । ଆଉ ଦିନ ପୁଣି ତାଙ୍କ ସାଙ୍ଗରେ ଦେଖାହେବା ଆଶାରେ ରାତିଟା ଚୁପ୍ ହୋଇ ପଡ଼ିରହେ । ମୋର ରାତି ଯାଇଚି ମା, ଦିନ ଆସୁଚି, ପୁଣି ତାଙ୍କ ସାଙ୍ଗରେ ଦେଖାହେବ; ପୁଣି ତାଙ୍କର ସେ ବିସ୍ତୃତ ବକ୍ଷ ଉପରେ ମୁଁ ମୁଣ୍ଡ ରଖି ଏ ଅନ୍ଧାର ଅମାବାସ୍ୟା ରାତିର କଥା ଭୁଲିଯିବି । ଯାଏଁ ମା, ଡେରି ହଉଚି !" କହି କିଛି ସମୟ ତୁନି ହୋଇ ରହିଲେ । ତା'ପରେ କହିଲେ, "ଯିବା ଆଗରୁ ତତେ କେତେଟା କଥା କହିବି ବୋଲି ଇଚ୍ଛା କଲି । ତା' ଭିତରେ କେତେ ଅନ୍ୟ କଥା ପଡ଼ିଗଲା । କହୁଥିଲି ମା, ତୋର ବାପା ଚାଲିଗଲାବେଳେ ମତେ କହିଯାଇଥିଲେ, 'ପେମି ରହିଲା । ବଞ୍ଚିଥିଲେ ମୁଁ ତାକୁ ପାଠଶାଠ ପଢ଼େଇ ବଡ଼ କରି ବିବାହ ଦେଇଥାନ୍ତି । ସମାଜ ଟିକିଏ ମୁହଁ ମୋଡ଼ିଥାନ୍ତା; କିନ୍ତୁ ଆମ ଜିଲାରେ ତ ବ୍ରାହ୍ମଣ ଘରେ ବଢ଼ିଲା କନ୍ୟା ବିବାହ କିଛି ନୂଆ ନୁହେଁ, କିଛି ପଇସା-ପତ୍ର ଖର୍ଚ୍ଚ କରି ସମାଜକୁ ନିଜ ମତକୁ ଆଣିବାରେ କଷ୍ଟ ହୁଅନ୍ତା ନାହିଁ । ଯାହା ହଉ ଖୁବ୍ କରି ପାଠ-ଶାଠ ପଢ଼େଇଥାନ୍ତି । ତା'ପରେ ତା'ର ଇଚ୍ଛା ହୋଇଥିଲେ ସେ ବାହା ହୋଇଥାନ୍ତା; ନହେଲେ ଅଭିଆଡ଼ୀ ରହିଥାନ୍ତା । ଭଗବାନ ତ ତା' କରେଇଦେଲେ ନାହିଁ । ତୁମେ ମାଇପି ମଣିଷ, ତୁମେ କ'ଣ ପାରିବ ? ଦେଖ, ସେତେବେଳେ ତୁମକୁ ଯେପରି ସୁବିଧା ଦିଶିବ, କରିବ । ତେବେ ତାକୁ ଟିକିଏ ବେଶି କରି ପାଠ ପଢ଼େଇବାର ଉଦ୍ୟମଟା ଭୁଲି ନଯାଅ ଯେପରି ।' ମା, ତାଙ୍କର ଏ ଶେଷ କଥାଗୁଡ଼ାକ ମୋ ମନରେ ବେଦର ଗାର ପରି ଲାଗିରହିଲା । ମୋ ସାଧ୍ୟମତେ ତାଙ୍କର ଇଚ୍ଛା ମୁଁ ସାଧନ କରିଚି । ତୋର ମଧ୍ୟ ବୟସ ହେଇଚି, ପାଠ-ଶାଠ ପଢ଼ିଚୁ, ଭଲ ମନ୍ଦ ବୁଝିପାରିଚୁ । ଏଣିକି ତୋ କଥା ତତେ ଲାଗିଲା । ତୋର ଇଚ୍ଛା ହୁଏତ ବିବାହ କରିବୁ । ମୋର ମତ ଯଦି ପଚାରୁ ମା, ମୋ ମତରେ ସ୍ତ୍ରୀଜାତିର ବିବାହ କରି ସ୍ୱାମୀ ଓ ସନ୍ତାନମାନଙ୍କର ଲାଳନ-ପାଳନ ଏକମାତ୍ର ଧର୍ମ ।"

ପ୍ରମିଳା : କାହିଁକି ମା ବିବାହ-ବନ୍ଧନର ଦାୟିତ୍ୱଟା ଖାଲି ସ୍ତ୍ରୀଜାତି ମୁଣ୍ଡେଇବ ? ପୁରୁଷ ଇଚ୍ଛାକଲେ ଯଦି ବିବାହ ନକରି ପାରେ, ସ୍ତ୍ରୀର ସେହିପରି ରହିବାଟା ଦୋଷାବହ ହବ କାହିଁକି ? ମୁଁ ଏ ବିଷୟରେ ଅନେକ ଭାବିଚି, ଅନେକ ଲୋକଙ୍କ ସାଙ୍ଗରେ କଥାବାର୍ତ୍ତା

କରିଛି । ସେସବୁରୁ ବୁଝିଛି ଏ କେବଳ ପୁରୁଷଜାତିର ସ୍ୱାର୍ଥ ସିଦ୍ଧି ନିମନ୍ତେ ଗୋଟାଏ ଏକତରଫା ନିୟମ । ଯଦି ସ୍ତ୍ରୀଜାତିକୁ ବିବାହ ବିଷୟରେ ସ୍ୱାଧୀନତା ଦିଆଯାନ୍ତା, ତାହେଲେ ମୁଁ ନିର୍ଭର କରି କହୁଚି, ତାଙ୍କ ଭିତରୁ ବୋଧହୁଏ ଶତକଡ଼ା ପଚାଶ ଜଣ ଅଭିଆଡ଼ୀ ରହିବାକୁ ଇଚ୍ଛା କରନ୍ତେ । ନ ହେଲେ ଅନ୍ତତଃ ପନ୍ଦର ସତର ବର୍ଷ ଦିନୁଁ ପିଲାପିଲିଙ୍କ ଜଞ୍ଜାଳରେ ଘାଣ୍ଟି ହୋଇ ଜୀବନଟାକୁ କେବଳ ଜଞ୍ଜାଳମୟ କରିବାକୁ ରାଜି ହୁଅନ୍ତେ ନାହିଁ; କିନ୍ତୁ ଏଇଟା ଯେ ପୁରୁଷଜାତି ପକ୍ଷରେ ମହାନ୍ ଅସୁବିଧାର କଥା । ପୁରୁଷ ଚାହେଁ ସ୍ତ୍ରୀ ଉପରେ ନିଜର ଅଧିକାର ବିସ୍ତାର କରିବ । ସେ ଚାହେଁ ସ୍ତ୍ରୀକୁ ନିଜର ମୁଠା ଭିତରେ ରଖିବ । ସେହି ହେତୁରୁ ପୁରୁଷଜାତିର ବିଧାନ ସ୍ତ୍ରୀର ଆଖି ନ ଫିଟୁଣୁ ତାକୁ ବିବାହ ଦେବ । ତାରି ହୃଦୟରେ ଶାନ୍ତି ନ ଜାଗୁଣୁଁ ତା' ବେକରେ ଗୋଟାଏ ଦୁଇଟା ଛୁଆର ବେଡ଼ି ପକାଇଦେବ । ପୁରୁଷ ଯେତେ ଅପାରଗ ହେଉ ପଛେ, ତା'ର ଅନ୍ତତଃ ତିର୍ଲା ଚାଇ, କାଇଁକିନା, ସେ ସଂସାରରେ ପୁରୁଷ ବୋଲି ଚିହ୍ନେଇହବ କିପରି ? ମୁଁ ଶୁଣିଚି, ଜଣେ ଶିକ୍ଷିତ ଲୋକ ନପୁଂସକ, ସେ କିନ୍ତୁ ତିନିଟା ବାହା କରିଥିଲା ଏବଂ ତୃତୀୟ ସ୍ତ୍ରୀ ମରିଗଲା ପରେ ଘରେ ଦୁଇଟା ରାଣ୍ଡ ମଧ୍ୟ ରଖିଥିଲା ।

ସରୋଜିନୀ : ତା' ଏକା ସତ ପେମି, ତା' ଏକା ସତ; ତୋରି ଏ କମ୍ ବୟସରେ ଏସବୁ ଚର୍ଚ୍ଚା ତ ଠିକ୍ ନୁହେଁ ମା !

ପ୍ରମିଳା : ମୋ ବୟସର ପିଲାମାନେ ଯେ କୋଡ଼ରେ ଗୋଟାଏ ଦୁଇଟା କୁନି ଛୁଆ ଘେନି ଘର କରୁଚନ୍ତି ମା ! ସେମାନେ ଏଇ ଛୋଟ ବୟସରୁ କେଉଁ ଅଶ୍ଳୀଳ, ଅଶ୍ରାବ୍ୟ, ଅସଭ୍ୟ କଥା ନଶିଖିଚନ୍ତି, ନଜାଣୁଚନ୍ତି ?

ସରୋଜିନୀ : ତା' ଏକା ସତ ପେମି, ତା' ଏକା ସତ । ଆଜିକାଲିକାର ଟୁକୁଲି ଗୁଡ଼ା କେତେ କଥା ଶିଖିଲେଣି ମା !

ପେମି : ସେ ମଧ୍ୟ ତୋର ଗୋଟାଏ ଭୁଲ ମା ! ଏ ଟୁକୁଲିମାନେ ସବୁ ଯୁଗରେ ଏଇଆ । ବୁଢ଼ାବୁଢ଼ୀ ହେଲେ ସମସ୍ତଙ୍କୁ ନିଜର ପିଲାଦିନଟି ଭଲ ଦିଶେ; କିନ୍ତୁ ସେ ଗୋଟାଏ ଭୁଲ । ଆଉ ଟୁକୁଲିମାନେ ଯାହା ଶିଖିଲେ ସେଥିଲାଗି କି ସେମାନେ ଦାୟୀ ? ତାଙ୍କୁ ଏସବୁ ଶିଖେଇଲା କିଏ ? ତୋର ଏଇ ପୁରୁଷଜାତି ନା ? ପୁରୁଷମାନେ ଶିଷ୍ଟାଚାର, ସଭ୍ୟତା ଓ ଭଦ୍ରତା ସମ୍ବନ୍ଧରେ ଯେତେ ଉଚ୍ଚ ଉଚ୍ଚ ଚିତ୍କାର ଝଙ୍କାର କରନ୍ତୁ ନା କାହିଁକି, ଭିତରେ ସେମାନେ ନିତାନ୍ତ ଅଭଦ୍ର, ନିତାନ୍ତ ଅଶ୍ଳୀଳ—ବିଶେଷତଃ ସ୍ତ୍ରୀଜାତି ସମ୍ବନ୍ଧରେ ।

ସରୋଜିନୀ : କିନ୍ତୁ ମା ! ତୁ ତ ପୁରୁଷମାନଙ୍କ ସହିତ ସେପରି ମିଶିନାହୁଁ, ତୁ କିପରି ତାଙ୍କ ସମ୍ବନ୍ଧରେ ଏତେ କଥା ଜାଣିଲୁ । ତୋ କଥାଗୁଡ଼ିକ ଶୁଣିଲେ ମନେହୁଏ ଯେପରି ତୁ ଠକି ଶିଖିଚୁ ।

ପେମି : ଠକି ଶିଖିବାର କିଛି ଦରକାର ନାହିଁ ମା ଏ ବିଷୟରେ । ମୋର ପିଲାଦିନର ସାଙ୍ଗସାଥୀ ଚଞ୍ଚଳା, ବିମଳା, କମଳା ଇତ୍ୟାଦିଙ୍କ ସାଙ୍ଗରେ ତାଙ୍କ ସ୍ୱାମୀମାନଙ୍କ ସମ୍ବନ୍ଧରେ କଥାବାର୍ତ୍ତା ହେଲାବେଳେ ସେମାନେ ସବୁ ଯାହା କହନ୍ତି ମା, ସେ ସବୁ ଶୁଣିଲେ ଲାଜରେ ମୋ ମୁହଁ ନାଲି ପଡ଼ିଯାଏ, ଘୃଣାରେ ମୋ ମନ ପିତା ଉଠିଯାଏ ।

ସରୋଜିନୀ : କିନ୍ତୁ ସେମାନେ ତ ସେ ସବୁରେ ସନ୍ତୁଷ୍ଟ ମା !

ପ୍ରମିଳା : ସନ୍ତୁଷ୍ଟ ନହୋଇ ଆଉ କିସ କରିବେ ? ପିଲାଟିଦିନରୁ ତାଙ୍କୁ କଥାରେ କାର୍ଯ୍ୟରେ ଶିଖାହେଲା ସେଇଆ ।

ସରୋଜିନୀ : କେଜାଣି ଲୋ ମା, ତୁମେ ଟୁକୁଲି ଗୁଡ଼ାକ ଆଜିକାଲି କ'ଣ କରୁଛ ! ଆମ ବେଳେ ତ ସ୍ୱାମୀକଥା ପଡ଼ିଲାବେଳେ ଆମ ତୁଣ୍ଡରୁ କଥା ବାହାରୁ ନଥିଲା । ନା, ମା, ଥାଉ, ତୋ ସଙ୍ଗରେ ଯୁକ୍ତି କରିବାକୁ ମୋର ବଳ ନାହିଁ କି ବେଳ ନାହିଁ । କହୁଥିଲି, ମୁଁ ତ ଚାଲିଲି । ଏ ସମ୍ପତ୍ତିବାଡ଼ି, ବିଷୟ-ଆଶୟ ସବୁ ତୋର ରହିଲା । ଶ୍ୟାମଟି ଭଲପିଲାଟିଏ । ତା' ସାହାଯ୍ୟରେ ମୁଁ ତୋ ବିବାହ ବିଷୟରେ ସମାଜକୁ ସନ୍ତୁଷ୍ଟ କରିପାରିବି; ଏତେ ବିଷୟ-ଆଶୟର ଦେଖାଶୁଣା ମଧ୍ୟ କରିଚି । ମୋ ପରେ ମଧ୍ୟ ସେ ସେହିପରି ତତେ ସାହାଯ୍ୟ କରିବ ବୋଲି ମୋତେ ଜବାବ ଦେଇଚି । ତୋର କିଛି ସନ୍ଦେହ ହେଲେ କି କିଛି ଅସୁବିଧା ହେଲେ ତାକୁ ପଚାରିବୁ ।

ପ୍ରମିଳା : ମୁଁ ! ମୁଁ ତାଙ୍କୁ ପଚିରିବା ଅପେକ୍ଷା ବରଂ ଦାଣ୍ଡର ଭିଖାରିକୁ ପଚାରିବି ।

ସରୋଜିନୀ : ଏ କି ନୂଆ କଥା ତୋଠାରୁ ଶୁଣୁଚି ମା ? ଶ୍ୟାମ ପ୍ରତି ତୋର ଏ ରାଗର କାରଣ ?

ପ୍ରମିଳା : ସେ ମତେ ବିବାହ କରି ଏ ସମ୍ପତ୍ତିର ମାଲିକ ହବାକୁ ଚାହେଁ ।

ସରୋଜିନୀ : କି ପାଗଳୀ ! ତୁ କିମିତି ଜାଣିଲୁ ? ତତେ ସେ କିଛି କହିଚି ?

ପ୍ରମିଳା : କଥାରେ ନ କହିଲେ ସ୍ତ୍ରୀଜାତି କି ପୁରୁଷର ମତଲବ ବୁଝିପାରେ ନାହିଁ ମା !

ସରୋଜିନୀ : ଓ ବୁଝିଚି । ତୁ ସତରେ ଗୋଟାଏ ପାଗଳୀ । କିସ ଗୋଟାଏ କେତେବେଳେ ଦେଖି ସେଥିରୁ କି ଗୋଟାଏ ଅନୁମାନ କରି ବସିଚୁ । ସତରେ ଶ୍ୟାମର ଭାର୍ଯ୍ୟା ଅଛି, ଯୁବତୀ, ସୁନ୍ଦରୀ । ସେ ଭାର୍ଯ୍ୟାକୁ ଛାଡ଼ି ରହିପାରେ ନାହିଁ ଦିନେ । ନା, ତୋର ଏ ଗୋଟାଏ ଭୁଲ ଧାରଣା । ନା, ମା ! ଏପରି ଗୋଟାଏ ଭୁଆଁ ଧାରଣା କରି ମୋ ମନରେ କଷ୍ଟ ଦେ ନାହିଁ ମା । ଶ୍ୟାମ ଉପରେ ମୋର କେତେ ବିଶ୍ୱାସ, ଆଉ ସେ କେତେଦିନର ଦେଖାଶୁଣାର ଫଳ । ମୋର ତା' ଉପରେ ଏତେ ବିଶ୍ୱାସ ଯେ ମା ! ମୁଁ ଗୋଟାଏ ଉଇଲି କରି ତୋର ବିବାହ ଅଥବା ତୋର ସାବାଳିକା ହବା ପର୍ଯ୍ୟନ୍ତ ତାକୁ ତୋର ଅଭିଭାବକ କରିଦେଇଚି ।

ପ୍ରମିଳା : କ'ଣ କଲୁ ମା ! ଏ ବିଷୟରେ ମତେ ଟିକିଏ ପଚାରିବା ଉଚିତ ଭାବିଲୁ ନାହିଁ ? କିଆଁ, ମାମା ଅଛନ୍ତି; ତାଙ୍କ ଅପେକ୍ଷା କ'ଣ ଶ୍ୟାମ ବେଶି ଆପଣାର ?

ସରୋଜିନୀ : ମାମା ତ ତୋର ତା' ନିଜ ସମ୍ପତ୍ତି ଦେଖାଶୁଣା କରୁ କରୁ ଅଥୟ । ଆଉ ସେ ସବୁ ଧନ୍ଦା ଛାଡ଼ି ଏଠିକି ଆସି ଆମ ବିଷୟ-ଆଶୟ ଦେଖନ୍ତା କେତେବେଳେ ?

ପ୍ରମିଳା : ମାମାଙ୍କୁ ଏ ସବୁ କଥା ପଚାରିଥିଲୁ ?

ସରୋଜିନୀ : ପଚାରିଥିଲି । ସେ ମଧ୍ୟ ତୋର ଭାର ନେବାକୁ ରାଜି ହୋଇଥିଲେ; କିନ୍ତୁ...

ପ୍ରମିଳା : କିନ୍ତୁ ଶ୍ୟାମ ମନକୁ ସେ କଥା ପାଇଲା ନାହିଁ !

ସରୋଜିନୀଙ୍କର ସେ ଶେତା ମୁହଁ ଟିକିଏ ନାଲି ହୋଇଉଠିଲା । ସେ କହିଲେ, "ନା, ମା, ନା, ତା' ଠିକ୍ ନୁହେଁ । ମୋ ମନକୁ ପାଇଲାନାହିଁ । ଶ୍ୟାମକୁ ପଚାରିଲି, ତା' ମନକୁ ଯୋଗେଇଲା ନାହିଁ ।"

ପ୍ରମିଳା : ହୁଁ ତା'ପରେ ଉଇଲ୍‌ରେ ଆଉ ସବୁ କ'ଣ ଲେଖାଅଛି ?

ସରୋଜିନୀ ଦେବୀ ଆଶ୍ୱସ୍ତିର ଗୋଟିଏ ନିଃଶ୍ୱାସ ପକାଇ କହିଲେ, "ନା, ଆଉ କିଛି ନାହିଁ । ତେବେ ଏତିକି ଅଛି ଯେ, ତୁ ସାବାଳିକା ହେବା ଆଗରୁ ଯଦି ବିବାହ କରୁ, ତାହେଲେ ଶ୍ୟାମର ଅନୁମତି ନେଇ ବିବାହ ହୋଇପାରିବୁ ।"

ପ୍ରମିଳା : ତା' ମାନେ ମୁଁ କାହାରିକୁ ବାହା ହେବାକୁ ଇଚ୍ଛାକଲେ ଆଉ ସେ ଶ୍ୟାମବାବୁର ସୁବିଧା ଲୋକ ନ ହେଲେ, ମୁଁ ୨୧ ବର୍ଷ ପର୍ଯ୍ୟନ୍ତ ବାହା ହୋଇପାରିବି ନାହିଁ । ଯଦି ଏହା ନ ମାନି ମୁଁ ବାହା ହୁଏ !

ସରୋଜିନୀ : ତାହେଲେ ଉଇଲିରେ ଅଛି ଯେ ସମ୍ପତ୍ତି-ବାଡ଼ି ତୁ ପାଇବୁନାହିଁ । ସେ ସବୁ ଶ୍ୟାମବାବୁର ମନୋମତ ଧର୍ମକାର୍ଯ୍ୟରେ ବ୍ୟୟ ହବ ।

ପ୍ରମିଳା : ଏ ବୁଦ୍ଧି କିଏ ଦେଲା, ଶ୍ୟାମବାବୁ ତ ?

ସରୋଜିନୀଙ୍କ ମୁହଁ ପୁଣି ନାଲ ହୋଇଉଠିଲା । ସେ କ'ଣ ଜବାବ ଦେବେ, ଖୋଜି ପାଉନଥାନ୍ତି । ଏତିକିବେଳେ ବାହାରୁ ଜୋତାଶବ୍ଦ ଶୁଭିଲା । ମା ଓ ଝିଅ ଦୁଆରଆଡ଼କୁ ଚାହିଁରହିଲେ । ଦେଖିଲେ ଜଣେ ଯୁବକ—ପୁରୁଷ ୩୦/୩୫ ହେବ, କାଛିକୁଛି ପିନ୍ଧିଚନ୍ତି ଖଣ୍ଡିଏ ସରୁ ଲୁଗା, ତା' ଉପରେ ଖଣ୍ଡିଏ ରେଶମି ପଞ୍ଜାବି; ସାଧାରଣଭାବରେ ଉଚ୍ଚ, ବେଶ୍ ମୋଟାସୋଟା; ବୟସ ଅନୁପାତରେ ପେଟଟା ଟିକିଏ ବେଶି ବାହାରିପଡ଼ିଚି; ବର୍ଣ୍ଣ ଉଜ୍ଜ୍ୱଳ ଶ୍ୟାମ । ମୁହଁରେ ସବୁବେଳେ କିପରି ଗୋଟାଏ କରୁଣ ଭାବ, ଦେଖିଲେ ମନରେ ତାଙ୍କ ପ୍ରତି ଦୟାର ଉଦ୍ରେକ ହୁଏ; କିନ୍ତୁ ଓଠ ଦୁଇଟା ସରୁ, ଆଖିର ଚାହାଣିଟା କିପରି ଧାରୁଆ, ଧାରୁଆ । ଆଖି ଉପର ପତାଗୁଡ଼ାକ ସବୁବେଳେ ଯେପରି ଘୋଡ଼େଇ ହୋଇପଡ଼ିଚି । କଥା କହିଲାବେଳେ ସେ କାହାରିକୁ ସିଧାକରି ଚାହାନ୍ତିନାହିଁ, ଯେପରି ଲାଜ-ସରମରେ ତାଙ୍କ ମୁଣ୍ଡ ଲଇଁପଡୁଚି । ଯେତେବେଳେ ଅନ୍ୟର ଅଜଣାରେ ଟିକିଏ ଆଖି ଟେକି ଚାହାନ୍ତି, ସେତେବେଳେ ଜଣାପଡ଼େ ଯେପରି ଆଖିଗୁଡ଼ାକରୁ ଅଙ୍ଗାର ନିଆଁ ଝଲସି ପଡୁଚି ।

ସେ ସିଧେ ଘର ଭିତରକୁ ପଶିଆସି, "ଆରେ, ମା ଝିଅଙ୍କର କି ସବୁ ଦୁଃଖ-ସୁଖ ଲାଗିଚି ମ ! ଆମକୁ ଟିକିଏ କହିବ ନାଇଁନା !" କହି ଖଟ ଉପରେ ସରୋଜିନୀ ଦେବୀଙ୍କ ଗୋଡ଼ତଳେ ଗୋଟେ ମୁଣ୍ଡିଆ ମାରି, ତାଙ୍କ ଗୋଡ଼ଧୂଳି ନେଇ ଜିଭରେ ଓ ମୁଣ୍ଡରେ ମାଇଲେ । ଏ ସବୁ ଦେଖି ପ୍ରମିଳାଙ୍କ ମୁହଁରେ କିପରି ଗୋଟାଏ ବିରକ୍ତିର ଭାବ ଫୁଟିଉଠିଲା । ସେ ଦରଫୁଟ ଭାଷାରେ ଯେପରି କ'ଣ କହିଲେ । ଭଦ୍ରବ୍ୟକ୍ତି ବୁଲିପଡ଼ି କହିଲେ, "କ'ଣ ମତେ କହୁଚୁ ପେମି ?" ପ୍ରମିଳା କହିଲେ, "ଅତି ଭକ୍ତି ଚୋରର ଲକ୍ଷଣ ।" ଭଦ୍ରଲୋକ ଠୋ ଠୋ କରି ହସିଉଠିଲେ । ପ୍ରମିଳାଙ୍କ ପିଠିକି ହାତ ନେଉଥିଲେ, କିନ୍ତୁ ପ୍ରମିଳା ତରବର ହୋଇ ଟିକିଏ

ଘୁଞ୍ଚିଯିବାରୁ ପିଠିରେ ସାବାସ୍‌ର ଥାପୁଡ଼ାଟା ଦିଆହୋଇପାରିଲା ନାହିଁ । କହିଲେ, "ହୋ-ହୋ, ଠିକ୍ ଏଇ ଆସିଲାବେଳେ ମୋର ଏଇ କଥାଟା ମନେ ପଡୁ ନଥିଲା । ଆମର ଯେ ଆଗ ଗୁମାସ୍ତା ବଂଶୀ, ସେ ତ ମୋର ତହବିଲରୁ ଟଙ୍କା ଖାଇଥିଲା ବୋଲି ମୁଁ ପୁଲିସ୍‌ରେ ଖବର ଦେଇଥିଲି । ମକଦ୍ଦମା ହେଇଚି । ସେ ଜାମିନରେ ମୁକୁଳି ଆସିଚି । ବାଟରେ ଆସୁ ଆସୁ ଦେଖାହେଲା ଯେ, ସେ ଏକାବେଳକେ ମତେ ଦଣ୍ଡ-ପ୍ରଣାମ କରି ଭକ୍ତିରେ ଉଛୁଳିପଡ଼ିଲା । ସେତିକିବେଳେ ମନରେ ଦୋଦୋପାଞ୍ଚିଆ ହୋଇ ଏ କଥା ହେଲା; କିନ୍ତୁ ସ୍ମରଣ କରିନପାରି ଭାବି ଭାବି ଆସୁଥିଲି । ମୋ ମନକଥା ତୁମେ କିପରି ଜାଣିଲ ପେମି ?" କହି ସେ ପ୍ରମିଳାର ଗାଲରେ ଥାପୁଡ଼େଇବାକୁ ଯାଉଥିଲେ । ସେଥିରେ ଯେ ବିଶେଷ କିଛି ଦୋଷ ଅଛି ତା' ଆମେ କହୁନାହୁଁ । ବଡ଼ ଭାଇ ସାନ ଭଉଣୀକୁ ଏହିପରି ଗେଲ ବା ପ୍ରଶଂସା କରେ; କିନ୍ତୁ ପ୍ରମିଳା ପଛକୁ ଘୁଞ୍ଚିଯାଇ କହିଲେ, "ଓଃ, କଥା ତ କହିବ, ଉପରକୁ ହାତଟା ଆଣୁଚ କେଣେ ?" ଭଦ୍ରଲୋକର ମୁହଁଟା କିପରି ଥମଥମ ହୋଇଉଠିଲା—ଯେପରି ସେ ଏଇଲାଗେ କାନ୍ଦି ପକେଇବେ । ସେ ବୁଲିପଡ଼ି ସରୋଜିନୀଙ୍କୁ ପଚାରିଲେ, "ପେମି ମୋ ଉପରେ ରାଗିଚି କେଣେ ମା !" ସରୋଜିନୀ ଏ ସବୁ କଥା ଦେଖୁଥିଲେ । ତାଙ୍କ ଭ୍ରୂଲତା କୁଞ୍ଚି ହୋଇଯାଇଥିଲା । ସେ ଉତ୍ତରରେ କହିଲେ, "ନାଇଁ ବାପ, କଚି ଛୁଆଟା, ମୋ ଦେହ ଏପରି ବେମାର ହେବାର ଦେଖି ତା' ମନ ଠିକ୍ ନାହିଁ । ଯା' ତ ମା, ଟିକିଏ ବିଶ୍ରାମ ନେବୁ ।" ପ୍ରମିଳା ସେ ଭଦ୍ରଲୋକଙ୍କ ଆଡ଼କୁ ବିଦ୍ରୂପର ଗୋଟାଏ ତୀବ୍ର କଟାକ୍ଷ କରି ଦମଦମ ପାଦରେ ସେଠାରୁ ଚାଲିଗଲେ । ତା'ପରେ ସରୋଜିନୀ ଭଦ୍ରଲୋକଙ୍କୁ ପାଖରେ ବସିବାକୁ ଇସାରା କରି କହିଲେ, "ବାପ ଶ୍ୟାମ, ମୁଁ ତତେ ବରାବର ମୋ କୋଡ଼ଛୁଆ ପରି ଦେଖିଆସିଚି । ମୋର ଏ ଗଲା ଅଇଲା ସମୟ, ଏତେବେଳେ ମୁଁ ଯାହା ପଚାରିବି ତା'ର ଠିକ୍ ଠିକ୍ ଜବାବ ଦେବୁ ବାପ ?"

ଶ୍ୟାମ : ଏ ପୁଣି ଆଜି କି କଥା ମା ? ମୁଁ କେଉଁଦିନ ତୁମ ପାଖରେ କୌଣସି କଥା ଲୁଚାଇଥିଲି ?

ସରୋଜିନୀ : ମୁଁ ମରିଗଲା ପରେ ପ୍ରମିଳାକୁ ବାହାହବା କ'ଣ ତୋର ଇଚ୍ଛା ?

ହୋଇପାରେ ସରୋଜିନୀ ଦେବୀଙ୍କର ପ୍ରଶ୍ନଟା ବଡ଼ ଅଦ୍ଭୁତିଆ । ଆରେ ବାବୁ, କଥାଟାଏ ପଚାରିବୁ ତ, ଆଗରୁ ଟିକିଏ ମଙ୍ଗଳାଚରଣ ପଢ଼, ଗୋଟାଏ-ଅଧେ ମୁଖବନ୍ଧ, ବିଜ୍ଞାପନ, ପ୍ରାରମ୍ଭ ଭାଷଣ ଇତ୍ୟାଦି ଦିଅ । ତା' ନାଇଁତ ଅଜାଣରେ ଆତସବାଜି ଫୁଟାଇଲା ଭଳି ସାତସ୍ତର ମନ ଭିତରେ ଲୁଚିରହିବା କଥାଟାକୁ ଏପରି ଠୋ-କରି ପଚାରିଲ ? ଏପରି ହେଲେ ଗୋଟାଏ ଲୋକ ଥାଥା-ମାମା ହୋଇ ଯିବନାହିଁ । ତା' ମୁହଁ ଟିକିଏ କଳା ପଡ଼ିଯିବ ନାହିଁ ? ଗୋଟାଏ ଲୋକର ମନ ହବନାହିଁ—କିରେ, ଯେଉଁ କଥାକୁ ସାତପ୍ରସ୍ତ କରି ଘୋଡ଼ାଇ ମନ ଭିତରେ ଲୁଚାଇ ରଖିଥିଲି, ଏ ସେ କଥା ଜାଣିଲା କିପରି ? ଅବଶ୍ୟ ହବ । ଆଉ ଶ୍ୟାମବାବୁଙ୍କୁ ଦୋଷ ଦେଲେ କିପରି ଚଳିବ ? ସରୋଜିନୀ ଦେବୀଙ୍କର ଦେହ ଭଲ ଥିଲେ, କି ତାଙ୍କ ମନରେ ସନ୍ଦେହ ଟିକିଏ ଭଲ ହୋଇକରି ଜାଗିଉଠିଥିଲେ, ସେ ଦେଖିଥାନ୍ତେ । ଶ୍ୟାମବାବୁଙ୍କ ମୁହଁର ଭଙ୍ଗୀ ଓ କଥା କହିବାର ଛଇ । ଯାହାହଉ ସେ ଦେଖିଲେ ନାହିଁ । ଶ୍ୟାମବାବୁ

କହିଲେ, "ମା ! ଏପରି କଥା ତୁଣ୍ଡରେ ପୋଷିବି କିପରି ? ତୁମ ମନରେ ଏ ବିଷ ପୂରାଇଲା କିଏ ?"

ସରୋଜିନୀ ଦେବୀଙ୍କ ମୁହଁରୁ ଗୋଟାଏ ଛାଇ ଯେପରି ଅପସରିଗଲା । ସେ ପୁଣି ହସହସ ମୁହଁରେ କହିଲେ, "ମୁ ତ ସେଇଆ କହୁଥିଲି ବାପ, ଏ କି ସମ୍ଭବ ! ଯାହା ହଉ ସେ ପାଗଳୀଟା—ଯାଉ, ତା'ର ପରେ ବାପ; ଆଜି ଏ ଅସମୟରେ କେଣେ ?"

ଶ୍ୟାମ : ସମୟ ଅସମୟ ଆଉ କ'ଣ ମା ? ତୁମେ ବେମାର ପଡ଼ିଲାଦିନୁ ମୋ ମନଟା ଘରେ ମୋଟେ ରହୁନାହିଁ । ସେହିପରି ଆଜି କଲବଲ ଲାଗିଲା ବୋଲି, ଭାବିଲି ଯାଏଁ, ବେଳେ ଦେଖିଆସେ ।



## ସାତ

କଲିକତା ସହରରେ ମେଛୁଆ ବଜାର ଗଳି; ଅମାବାସ୍ୟା ରାତିର କିଟିକିଟିଆ ଅନ୍ଧାର । ରାତି ପ୍ରାୟ ବାରଟା ହବ । ଚାରିଆଡ଼ ଶୂନଶାନ । ପାଏକେ କୋଣକେ ଗୋଟେ ଗୋଟେ ବିଜୁଳି ଆଲୁଅ ମିଟିମିଟି କରି ଏ ନିବିଡ଼ ଅନ୍ଧାରରେ ଛାଇ ଦିଶିବା ଭଳି ଟିକିଏ ଆଲୁଅ ଆଣିଦଉଚି । ଗୋଟାକେତେ ବାରବୁଲା ରାସ୍ତାର ଦୁଇପାଖ ପିଣ୍ଡି ଉପରେ ଶୋଇ ଘୁଙ୍ଗୁଡ଼ି ମାରୁଚନ୍ତି । ଘଡ଼ିଏ ଦି'ଘଡ଼ି ଅନ୍ତରରେ ଥିଏଟର ବାଇସ୍କୋପ ଫେରନ୍ତି ଅଥବା ଅଭିସାର ସାରି ଫେରିଆସୁଥିବା ଜଣେଅଧେ ବଡ଼ଲୋକଙ୍କର ଗୋଟାଏ ଖଣ୍ଡେ ମଟରଗାଡ଼ି ଭଁ-ଭଁ ଶବ୍ଦରେ ରାତିର ସେ ନିସ୍ତବ୍ଧତା ଭାଙ୍ଗି ଚାଲିଯାଉଚି । ଗଳିର ବାଉନ ନମ୍ବର ଘର ପାଖଆଖ ଜଣେ ଯୁବତୀ, ଭାସିଯାଉଚି ତାଙ୍କ ଦେହରୁ ଅତର ଗନ୍ଧ । ଆଲୁଅ ଥିଲେ ଦେଖିଥାନ୍ତ, ତାଙ୍କ ମୁଣ୍ଡ ଉପର ଚଉଁରି ଛକ ଶିଥିଳ ହୋଇଯାଇଚି, କପାଳ ଉପର ବାଳରୁ ଗୋଟାକେତେ ବନ୍ଧନରୁ ଫିଟି ଫୁରଫୁର ହୋଇ ଉଡୁଚି । ଆଖି ଦୁଇଟି ଅଳସଭାରାକ୍ରାନ୍ତ, କିନ୍ତୁ ଓଠରେ ମଧୁର ଦରହାସ ଲାଗି ରହିଚି । ଛାତି ଉପରେ ସେମିଜର ଦ୍ୱିତୀୟ ବୋତାମଟା ପ୍ରଥମ ବୋତାମ ଘର ଭିତରେ ପଶିଯାଇଚି, କାନ୍ଧ ଉପରେ ବ୍ରୁଚ ଦିହର କଣ୍ଟାଟା ତା' ଘର ଭିତରେ ଲାଗିପାରି ନାହିଁ, ଅଣ୍ଟାପାଖର କୁଞ୍ଚଗୁଡ଼ାକ ମଧ୍ୟ ଲୋଦୁର-ମାଦୁର ହୋଇ ସେ ସ୍ଥାନରେ, ପଡ଼ିରହିଚି । ଲୁଗାର ଧଡ଼ିଟା ସଦର, ମଫସଲ, ମଫସଲଟାହିଁ ବାହାରକୁ ରହିଯାଇଚି—ଯେପରି ଲୁଗାଖଣ୍ଡି ଭଲକରି ପିନ୍ଧିବାକୁ ସମୟ, ସୁବିଧା ଓ ବିଶେଷରେ ଧୈର୍ଯ୍ୟ ତାଙ୍କର ନଥିଲା । କିନ୍ତୁ ତାଙ୍କ ଚାଲିରେ ଅଧୀରତାର କିଛି ଲକ୍ଷଣ ନାହିଁ; ବରଂ ଜଣାପଡୁଛି ସେ ଯେପରି କେତେ କ୍ଲାନ୍ତ । ନାକ ଉପରେ ଓ ଓଠତଳେ ବିନ୍ଦୁଏ ଦି'ବିନ୍ଦୁ ଝାଳ ଅଧରାତିରେ ଏ ଶୀତଳ ପବନର ଆଦରକୁ ନମାନି ଲାଗିରହିଚି । ଆଲୁଅର ତେଜ ଟିକିଏ ବେଶି ଥିଲେ, ଆପଣମାନେ ଦେଖିପାରିଥାନ୍ତେ ତାଙ୍କ କପାଳର ସିନ୍ଦୁର ବିନ୍ଦୁଟି ଆଲୁରୁ-ବାଲୁରୁ ହୋଇ ପୋଛି ହୋଇଯାଇଚି ଏବଂ ତାଙ୍କର ଛାତି ଉପରେ ଅର୍ଦ୍ଧଚନ୍ଦ୍ର ଆକାରର ଗୋଟିଏ ସଜ କ୍ଷତ ସେମିଜ ବାହାରେ ଲାଜ-ସରମର ମଥା ଖାଇ ଉଣ୍ଟୁଚି । ଯୁବତୀଙ୍କ ସାଙ୍ଗରେ ଜଣେ ଯୁବକ...ବୟସ ନିତାନ୍ତ ବେଶି ନୁହେଁ ।

ପଚିଶ ଛବିଶ ମାତ୍ର । ଖଣ୍ଡିଏ ଧୋବ ଧୋତି ଓ ତା' ଉପରେ ଖଣ୍ଡିଏ ସରୁ ପଞ୍ଜାବି । ବେଶ୍ ଗୋରା-ତୋରା । କାଳିଆ କାଳିଆ ଅଧାକଟା ନିଶ ଦୁଇଟା ଉପରେ ସିନ୍ଦୁର ଭଳି ଟିକିଏ ନାଲି ନାଲି କ'ଣ ଲାଗିରହିଚି । ମୁହଁରେ ପ୍ରସନ୍ନ ଭାବ । ଆଖିରେ ସଜଳ, ତରଳ, ମଧୁର ପ୍ରେମର ସୁଅ । ଯୁବକ ତାଙ୍କ ବାମ ବାହାରେ ଯୁବତୀଙ୍କର ଅଣ୍ଟାଟି ଆବୃତକରି ଚାଲିଚନ୍ତି । ଯୁବତୀଙ୍କର ଡାହାଣ ହାତଟି ଅତି ବ୍ୟସ୍ତଭାବରେ ଯୁବକଙ୍କର କାନ୍ଧ ଉପରେ ଓହଳିପଡ଼ିଚି । ଯୁବକ ଓ ଯୁବତୀ ନିର୍ଭୟରେ ଏହିପରି ଭାବରେ ଚାଲିଛନ୍ତି । କେହି କୁଆଡ଼େ ନାହିଁ, କେବଳ ଆରପଟ ରାସ୍ତା ଉପରେ ଜଣେ ଭିକାରୀ କି ବାରବୁଲା ଗୋଟାଏ ପାହାଚ୍ ଉପରେ ବସି ଏକଲୟରେ ନ୫୨ ଘର ଆଡ଼କୁ ଚାହିଁରହିଚି । ଯୁବକ ଓ ଯୁବତୀ ଯେଉଁ ପଟେ ଯାଉଚନ୍ତି, ସେହି ପଟେ ନ୫୨ ଘରଟା । ତା'ର ଗୋଟାଏ ଘର ଛାଡ଼ି ଏମାନଙ୍କ ଆଡ଼କୁ ଗୋଟାଏ ସରୁ ଗଳି ସରକୁଲାର ରୋଡ଼କୁ ଚାଲିଯାଇଚି । ଯୁବକ ଓ ଯୁବତୀ ସେ ଗଳିମୁହଁ ପାର ହୋଇ ଯାଇଚନ୍ତି; ମାତ୍ର ଏତିକିବେଳେ ଗୋଟାଏ ଲୋକ କିଏ ହଠାତ୍ ଯୁବକଙ୍କୁ ଆକ୍ରମଣ କଲା । ତା'ର ଆସିବା ଶବ୍ଦ ଶୁଣିପାରି ବୋଧହୁଏ ଯୁବକ ପଛଆଡ଼କୁ ଫେରିପଡ଼ିଥିଲେ । ଆକ୍ରମଣକାରୀର ପ୍ରଥମ ଆଘାତଟା ସେ କଡ଼ବାରକୁ ଘୁଞ୍ଚିଯାଇ ପ୍ରତିହତ କଲେ ସତ, ମାତ୍ର ସେହି ପାଖରେ ପଡ଼ିଥିବା ଗୋଟାଏ ଇଟା ଝୁଣ୍ଟିପଡ଼ି ସେ ପଡ଼ିଗଲେ । ଆକ୍ରମଣକାରୀ ଏହି ସୁବିଧା ଦେଖି ତାଙ୍କ ଉପରେ ଚଢ଼ିବସିଲା ଓ ହାତରେ ଥିବା ଗୋଟାଏ ତୀକ୍ଷ୍ଣ ଛୁରିକା ତାଙ୍କ ବେକ ଉପରେ ବସାଇବାକୁ ଉଦ୍ୟତ ହେଲା । ଛୁରୀଟା ଏତେ ଦାଢ଼ ଯେ ସେଇ ସାମାନ୍ୟ ଆଲୁଅରେ ମଧ୍ୟ ସେଉଟା ଝଲସିଉଠିଲା । ଯୁବତୀ ପ୍ରଥମେ ତ ଚିତ୍ରପିତୁଳାଟି ପରି ଏ ସବୁ ଦେଖୁଥିଲେ । ଛୁରୀର ଝଲକ ଦେଖି ସେ ଚିତ୍କାର କରିବାକୁ ଯାଉଥିଲେ; କିନ୍ତୁ ଗୋଟାଏ ଅସ୍ପଷ୍ଟ ଶବ୍ଦ ତାଙ୍କ ପାଟିରୁ ବାହାରିଲାବେଳକୁ ସେ ନିଜ ହାତରେ ନିଜ ମୁହଁଟି ଚିପି ଧଇଲେ । ଏତିକିବେଳେ ଆରପଟରେ ଠିଆହୋଇଥିବା ସେ ବାରବୁଲାଟା ତୀରବେଗରେ ସେ ସ୍ଥାନକୁ ଧାଇଁ ଆସି ଆକ୍ରମଣକାରୀର ଛୁରୀ ଉଦୁଞ୍ଚେଇ ଥିବା ହାତଟାକୁ ଧରିପକାଇଲା । ପଛଆଡୁ ଏପରି ବିଘ୍ନ ପଡ଼ିବାର ଦେଖି ଆକ୍ରମଣକାରୀ ଉଠି ଠିଆହୋଇଗଲା ଓ ଛୁରୀ ହାତଟା ମୁକୁଳେଇବା ପାଇଁ ଭିଡ଼ିଓଟାରି ହେଲା । ବୃଥା ଶ୍ରମ; ସେ ଯେ ମୁଠା ପଡ଼ିଚି ସେ ବଜ୍ର ଠାରୁ କଠିନ । ବାରବୁଲା ତଳେ ପଡ଼ିଥିବା ଯୁବକ ଉଠିବାର ଦେଖି ତାଙ୍କୁ କହିଲା, "ଡାକ ଛାଡ଼ି, ହୁରି ପକାଅ, ପୁଲିସି ପହରା-ବାଲାକୁ ଡାକ !" ଏଇ ସମୟରେ ଗୋଟାଏ ମଟର ଭେଁ-ଭେଁ କରି ତାଙ୍କ ସାମନା ଆଡୁ ଆସି ପହଞ୍ଚିଗଲା । ଯୁବକ ସନ୍ତସ୍ତ ହୋଇ ଯେପରି କହିଲେ, "ଆରେ ନା, ନା, ସେ ଲୋକଟାକୁ ଛାଡ଼ିଦିଅ, ପୁଲିସି ଡାକିବା ପ୍ରୟୋଜନ ନାହିଁ ।" ତା'ପରେ ଯୁବତୀଙ୍କ ଆଡ଼କୁ ବୁଲିପଡ଼ି ଇଂରେଜୀରେ କହିଲେ, "ପ୍ରିୟତମ, ତୁମେ ଘରକୁ ପଳାଅ ।" ଏତେବେଳକୁ ବାରବୁଲାଟା ଆକ୍ରମଣକାରୀ ହାତରୁ ଛୁରୀଟା ଛଡ଼ାଇ ନେଇଥିଲା । ସେ ଆକ୍ରମଣକାରୀକୁ ଛାଡ଼ିଦେବା ମାତ୍ରକେ ସେ ଲୋକଟା ଏକଦମ୍ ସେଇ ଗଳି ଭିତରକୁ ପଳାଇଗଲା । ବାରବୁଲା ତା'ପରେ ଯୁବକକୁ ସମ୍ବୋଧନ କରି କହିଲା, "କିଛି ବୁଝିପାରିଲି ନାହିଁ, ଲୋକଟା ତୁମକୁ ମାରିବାକୁ ଯାଉଥିଲା, ଅଥଚ ତୁମେ ତାକୁ ପୁଲିସରେ ନଦେଇ ଛାଡ଼ିଦେଲ ।" ଯୁବତୀଙ୍କର ଏତେବେଳକୁ ପାଟି ଫିଟିଲା । ବୀଣାରେ କରୁଣସ୍ୱର ନିହି ନିହି ଝଙ୍କାରି ଝଙ୍କାରି ଉଠିଲା ଭଳି ସେ କହିଲେ,

"ଆପଣଙ୍କୁ ଅଶେଷ ଧନ୍ୟବାଦ ! ଆପଣ ନ ଥିଲେ ଆଜି ୟାଙ୍କର ପ୍ରାଣ ରହି ନଥାନ୍ତା । ଏକ କାର୍ଯ୍ୟରେ ଆପଣ ଆଜି ଦୁଇଟି ନରହତ୍ୟା ରକ୍ଷା କରିଚନ୍ତି । ୟାଠାରୁ ବେଶି ଆଉ କିଛି କହିପାରିବି ନାହିଁ । ତେବେ ଯଦି ମୋ'ଦ୍ୱାରା ଆପଣଙ୍କର କୌଣସି ଉପକାର... ।" ତାଙ୍କ ତୁଣ୍ଡ କଥା ତୁଣ୍ଡରେ ଅଛି, ଏତିକିବେଳେ ନଂ୫୨ ଘରର ଉପରମହଲା ଝରକା ଖୋଲି କିଏ ଯେପରି ଡାକିଲା—"ମେନକା, ମେନକା !" ଯୁବତୀ ଭୟ ସନ୍ତ୍ରସ୍ତ ହୋଇ "ଯାଉଚି ବାବା" କହି ନଂ୫୨ ଘର ଭିତରକୁ ପଶିଗଲେ । ଦୁଆର ଖୋଲା ଥିଲା । ଆଉ ସେ ଯୁବକ ମଧ୍ୟ ପଛକୁ ନ ଚାହିଁ ଯେଉଁଆଡୁ ଆସିଥିଲେ ସେହି ଦିଗରେ ଉଭେଇଗଲେ । ବାରବୁଲା ସେହି ଜାଗାରେ କିଛି ସମୟ ଠିଆହୋଇ କହିଲା, "ଫୁଁ...ଏ ମାଇକିନିଆ ଜାତି ! କି ବାବା ସାହସ ! କି ବୁଦ୍ଧି !"



## ଆଠ

ପୂର୍ବ ଅଧ୍ୟାୟରେ ସେ ରାତିର କଥା କୁହାଯାଇଚି, ତା'ର ପରଦିନ ସକାଳ ପ୍ରାୟ ନ'ଟା ବେଳେ ସେ ବାରବୁଲା ଟୋକାଟା କେଉଁଆଡ଼େ ଯାଇଥିଲା କେଜାଣି; କିନ୍ତୁ ହାରିସନ ରୋଡ଼ ତରଫରୁ ଆସି ପ୍ରାୟ ୫୨ ନମ୍ବର ଘରର ପାଖ ହୋଇଯାଇଛି, ଦେଖିଲା ଗୋଟାଏ ଭଡ଼ା ମଟରରୁ ସଦାଶିବ ବାବୁ ଓ ତାଙ୍କର ପାର୍ଶ୍ୱଦେବତା ଫଲଣା ଡିଆଡ଼ିଏ ଓହ୍ଲାଇ ସେଇ ଘର ଭିତରକୁ ଗଲେ । ବେହେରା ବେହେରା ବୋଲି ଡାକ ଛାଡ଼ିବାରେ ଦୁଆର ଫିଟିଲା । ସେମାନେ ଘର ଭିତରକୁ ପଶିଯାଇ ଦେଖିଲେ ବାଟଘରର ବାଁ-ହାତି ଆଉ ଗୋଟିଏ ପ୍ରଶସ୍ତ ଘର । ଘର ଚଟାଣ ଉପରେ ଖଣ୍ଡିଏ ସତରଞ୍ଜି ବିଛା, ଆଠ ଖଣ୍ଡ କୁରୁଚି, ଦୁଇଟି ହାତଲଗା ବେଞ୍ଚ ଓ ଗୋଟିଏ ଟେବୁଲ ଥୁଆହୋଇଚି । ବେହେରା ଏମାନଙ୍କୁ ଏଇ ଘରେ ଅପେକ୍ଷା କରିବାକୁ କହି ଭିତରକୁ ଚାଲିଗଲା । ତା'ପରେ ଜଣେ ଭଦ୍ରଲୋକ ଘର ଭିତରୁ ବାହାରି ଆସିଲେ ସେଇ ବୈଠକଖାନାକୁ । ଶାଳ ଗଛ ପରି ଦେହ, ଲମ୍ବା ଲମ୍ବା ହାତ, ଉଆଁସ-ଅନ୍ଧାର ପରି ବର୍ଣ୍ଣ । ଆଖି ଦୁଇଟା ନାଲି ନାଲି ଓ ଢେଗା ଢେଗା, ତଳ ଓଠଟା ଟିକିଏ ମୋଟା ଓ ଆଗକୁ ବାହାରିପଡ଼ିଚି । ଦେହ ପରିମାଣ ଅନୁସାରେ ପେଟଟା ଟିକିଏ ବେଶି, ଠିକ୍ ଗୋଟାଏ ଦଶ ଗୌଣୀର ଓଳିଆ ପରି । ପିନ୍ଧିଛନ୍ତି ଗୋଟିଏ ଧୋତି । ଦେହରେ ଖଣ୍ଡିଏ ପଞ୍ଜାବି, ଗୋଡ଼ରେ ହଳିଏ ଚଟି ଜୋତା । ବୟସ ସଦାଶିବ ବାବୁଙ୍କ ସମାନ । ସେ ସଦାଶିବ ବାବୁଙ୍କୁ ଦେଖି ବଙ୍ଗଳାରେ କହିଉଠିଲେ, "ଆରେ ସଦାଶିବ ଭାଇ ଯେ, ଏ ଗରିବ ହଠାତ୍ କାହିଁକି ମନେପଡ଼ିଗଲା ।" କଥା କହିଲା ବେଳେ ତାଙ୍କ ପାଟି ଭିତରେ ବିରାଡ଼ି ଦାନ୍ତ ପରି ଦୁଇଟା କାମୁଡ଼ା ଦାନ୍ତ ସବୁ ଦାନ୍ତର ଉଚ୍ଚତାକୁ ଟପି ବାହାରିପଡ଼ିଲା ପରି ଜଣାପଡୁଥାଏ । 'କର ମର୍ଦ୍ଦନ' ଓ 'କୋଳା-କୋଳି' ପରେ ସମସ୍ତେ ଗୋଟାଏ ଗୋଟାଏ ଚୌକି ମାଡ଼ିବସିଲା ପରେ ସଦାଶିବ ବାବୁ ପଚାରିଲେ, "ମୋ ଚିଠିଟା ପାଇଥିଲ ପ୍ରମଥ ?" ପ୍ରମଥ ବାବୁଙ୍କର କପାଳ କୁଞ୍ଚି ହୋଇଗଲା । ସମ୍ବାଳୁଆ ପୋକପରି ଆଖିପତା ଦୁଇଟା ତାଙ୍କ ମନ୍ଦାର ଫୁଲ ପରି ଆଖି ଯୋଡ଼ିକୁ ଘୋଡ଼ାଇ ପକାଇଲା ଯେପରି । ସେ କହିଲେ, " ଓଃ, ସେଇ ଚିଠିଟା ନା ? ହଁ, କଥାଟା କ'ଣ କହିଲ ଦେଖି ?"

ସଦାଶିବ : କଥାଟା ଆଉ ବେଶି କିଛି ନୁହେଁ । ମୋର ଜଣେ ଆତ୍ମୀୟଙ୍କର ଗୋଟିଏ ଘୋଡ଼ାମୁହାଁ ପୁଅ ଅଛି । ସେ ତାଙ୍କର ସମ୍ପତ୍ତିବାଡ଼ି ସବୁ ଉଜାଡ଼ି ଦେବାରେ ଲାଗିଲା । ସେ ବଡ଼ ପୁଅ ଏବଂ ସାବାଳକ । ସେ ଥାଉଁ ଥାଉଁ ମୋର ଆତ୍ମୀୟ ତାଙ୍କର ଅନ୍ୟାନ୍ୟ ସନ୍ତାନ-ସନ୍ତତିମାନଙ୍କ ପାଇଁ ତା' କବଳରୁ ସମ୍ପତ୍ତି ରକ୍ଷା କରିବାର କୌଣସି ଉପାୟ ଦେଖିପାରୁ ନାହାନ୍ତି । ସେ ଟୋକାଟା ବର୍ତ୍ତମାନ କଲିକତା ଆସିଚି । ମୁଁ ତାକୁ ଗୋଟାଏ ବାଗରେ ପାଇ ତୁମ ପାଖକୁ ଆସିବାକୁ ସମ୍ମତ କରାଇଚି । ସେ ଯଦି ତୁମ ପାଖକୁ ଆସେ, ତା'ହେଲେ ତାକୁ ଏଠି କିଛି ଦିନ ରଖି, କୁହାବୋଲା କରି, ଯଦି ତା' ମୁଣ୍ଡରେ ବୁଦ୍ଧି ପୂରାଇ ପାରନ୍ତେ, ତାକୁ ଯଦି ବିଷୟ-ଆଶୟରେ ହାତ ଦେବାକୁ ନିବର୍ତ୍ତେଇ ପାରନ୍ତେ, ତା'ହେଲେ ବଡ଼ ଉପକାର ହୁଅନ୍ତା ।

ପ୍ରମଥ : କେତେ ଦିନ ତାକୁ ଏ ରକମ ରଖିବାକୁ ଆପଣ କହନ୍ତି ? ବର୍ଷେ ? ଦି'ବର୍ଷ ?

ସଦାଶିବ : ସେ ବିଷୟରେ ମୁଁ କ'ଣ କହିବି ? ଯେତେ ଦିନ ପର୍ଯ୍ୟନ୍ତ କାର୍ଯ୍ୟୋଦ୍ଧାର ନହେଇଛି, ସେତେଦିନ ପର୍ଯ୍ୟନ୍ତ ରଖିବାକୁ ହେବ ।

ପ୍ରମଥ : ହୁଁ; କିନ୍ତୁ ତା' ଲାଗି ଯେ ଖରଚ ଅନେକ, ସେ ଖରଚ ଦବ କିଏ ?

ସଦାଶିବ : ଖରଚ ଯାହା ହବ ତାହା ମୁଁ ଦବାକୁ ରାଜି ଅଛି; କେତେଯାଏ ହୋଇପାରେ ?

ପ୍ରମଥ : ଯଦି ଏକଦମ୍ ସାବାଡ଼ କରିବାର କଥା ହୁଅନ୍ତା, ତା'ହେଲେ ସାମାନ୍ୟ କିଛି, ଧର ଏ ଟଙ୍କା ପାଞ୍ଚଶ' ଖଣ୍ଡକ ମଧ୍ୟରେ କାମ ହାସଲ କରିପାରନ୍ତି । କିନ୍ତୁ ତୁମେ ଯାହା କହୁଚ ତା' କରିବାକୁ ହେଲେ ଅନେକ ପଇସା ଦରକାର । ଅନ୍ତତଃ ହଜାରରୁ କମ୍‌ରେ ଚଳିବ ନାହିଁ ।

ସଦାଶିବ : ତୁମେ କ'ଣ କହୁଚ ପ୍ରମଥ ! ସାବାଡ଼ କ'ଣ ? ମୁଁ ତ ସେ କଥା ଆଦୌ ତୁଣ୍ଡରେ ଧରି ନାହିଁ । ତୁମର ମନେ ରଖିବା ଉଚିତ ଯେ ମୁଁ କେବଳ ତା'ର ମୁଣ୍ଡରେ ସଦ୍‌ବୁଦ୍ଧି ଦେବାର ଓ ବିଷୟ-ଆଶୟକୁ ନଷ୍ଟ କରିବା ପ୍ରବୃତ୍ତିରୁ ନିବର୍ତ୍ତେଇବାର ପ୍ରସ୍ତାବ କରିଚି । ସାବାଡ଼-ଫାବାଡ଼ କରିବା ପ୍ରସ୍ତାବରେ ମୁଁ ନାହିଁ । ମୁଁ ଏହା କହି ନାହିଁ, କି ସେପରି କିଛି ହେଲେ ତା'ର ଦାୟିତ୍ୱ ମୁଁ ନେବାକୁ ରାଜି ନୁହେଁ । ତେବେ ଟଙ୍କା ହଜାରେ ଦେବାକୁ ମୁଁ ରାଜି ଅଛି । ତେବେ ଗୋଟାଏ ଲୋକକୁ ବର୍ଷେ ଦି'ବର୍ଷ କାଳ ରଖିଲେ, ମଝିରେ ମଝିରେ ତା'ର ଦେହ-ମୁଣ୍ଡ ତ ନିଶ୍ଚୟ ଖରାପ ହେବ । ମନୁଷ୍ୟ-ଜୀବନ ପାଣିଫୋଟକା ପରି, ଚିକିତ୍ସାପତ୍ର ହେଲେ ବି ଲୋକଟା ମରିଯାଇ ପାରେ । ସେପରି ଦୁର୍ଘଟଣ ଯଦି ଘଟେ, ତା'ହେଲେ ଅବଶ୍ୟ ମୁଁ ତୁମକୁ ଦୋଷ ଦେବିନାହିଁ ।

ପ୍ରମଥ : ତୁମେ ବଡ଼ ଗପୁଡ଼ି ହେ ସଦାଶିବ ! ଏ ସବୁ ଲମ୍ବା ଲମ୍ବା କଥା କାହିଁକି ବାବୁ ? ସଫା ସଫା ମତଲବଟା ତ କହିଦେଲେ କିଏ କି ତୁମକୁ କାମୁଡ଼ି ପକାଉଚି ? ସମ୍ପତ୍ତିର ପ୍ରଲୋଭନଟା ନିଶ୍ଚୟ ବଡ଼ ବେଶି, ନା କ'ଣ କହୁଚ ?

ସଦାଶିବ : କାହାର ପ୍ରଲୋଭନ ? ମୋର ? ମୋର ସେଥିରେ କିଛି ସ୍ୱାର୍ଥ ନାହିଁ ।

ପ୍ରମଥ : ନାଃ, ହରେ ରାମ, ତୁମ ଭଳି ନିଃସ୍ୱାର୍ଥପର, ପରୋପକାରୀ ଜୀବ ଏ ସଂସାରରେ ଦେଖିବାକୁ ମିଳେ ନାହିଁ । ତୁମେ ସ୍ୱୟଂ ଦଧିଚିଙ୍କର ଦୟାମୟ ଅବତାର । କିହେ, କ'ଣ କ'ଣ କହୁଚ ? ସମ୍ପତ୍ତିଟାର ଆନୁମାନିକ ମୂଲ୍ୟ କେତେ ବାବୁ ?

ସଦାଶିବ : ସେଥିରେ ତୁମର କି ଦରକାର ? ତୁମେ ହକ୍ ଟଙ୍କା ନବ, ଆଉ ଏ ସାମାନ୍ୟ କାମଟା—

ପ୍ରମଥ : ସାମାନ୍ୟ ! ସତ କହୁଚି ହେ ସଦାଶିବ, ମୋ ସାଥିରେ ଯଦି ବ୍ୟବସାୟ କରିବାକୁ ଆସିଚ, ତା'ହେଲେ ମୁଁ ଯାହା ପଚାରିବି ତା'ର ରୋକ୍‌ଠୋକ୍ ଜବାବ ଦେବାକୁ ହବ । ତା' ନକରିବ ତ ବାବୁ, ବାଟ ଦେଖ; ମୋ ଦେହି ଏ କାମ ହେବ ନାହିଁ ।

ସଦାଶିବ : ଆରେ ଭାଇ ରାଗୁଚ କାହିଁକି ? ମୁଁ କ'ଣ କହିବାକୁ ନାରାଜ ଅଛି । ସମ୍ପତ୍ତି ଆଉ କିସ, ଏଇ ଟଙ୍କା ଚାଳିଶ ହଜାର ମାତ୍ର ।

ପ୍ରମଥ : ତା' ମାନେ, ଅନ୍ତତଃ ଟଙ୍କା ଲକ୍ଷକର ସମ୍ପତ୍ତି—ନା ହେ କ' ଣ କହୁଚ ? ହୁଁ, ତେବେ ଟଙ୍କାଟା ?

ସଦାଶିବ : କାମ ହେଲେ ସିନା ଟଙ୍କା କଥା ।

ପ୍ରମଥ : ନା ବାବୁ, ସେ କଥା ପଟିବ ନାହିଁ । ଅଧେ ଟଙ୍କା ତୁମକୁ ମତେ ଆଗୁଆ ଦବାକୁ ହବ । ବାକୀ ଅଧକ କାର୍ଯ୍ୟୋଦ୍ଧାର ପରେ, ନା ହେ, କ'ଣ କହୁଚ ?

ସଦାଶିବ : ସେ କିପରି ? ତୁମେ ଯଦି ଟଙ୍କା ନେଇ କିଛି ନକର !

ପ୍ରମଥ : ତା'ହେଲେ ତୁମ ଟଙ୍କାତକ ଯିବ ।

ସଦାଶିବ : ବାଃ, ବେଶ୍ ତ, ହଜାରେ ଟଙ୍କା ! ଆଉ ତୁମେ ଦିବ୍ୟ ଧୀରେସୁସ୍ଥେ କହିଦେଲ ଯେ କାମ ନହେଲେ ସେତକ ଯିବ ।

ପ୍ରମଥ : ତୁମେ କିରକମ ଭଦ୍ରଲୋକ ହେ ବାବୁ ! ଜଣେ ଭଦ୍ରଲୋକର ଘରକୁ ମନକୁ ଆସି ତାକୁ ମିଛୁଆ ଓ ଜୁଆଚୋର ବୋଲି ମୁହାଁମୁହିଁ କହିବାକୁ ଟିକିଏ ହେଲେ ତୁମ ପାଟିରେ ଆଝ ଲାଗି ନାହିଁ ।

ସଦାଶିବ : ମୁଁ ତ ସେପରି କିଛି କହି ନାହିଁ ।

ପ୍ରମଥ : କହି ନାହଁ ତ ଆଉ କ'ଣ ? କଥା ହେଲା—ମୁଁ ତମର ଗୋଟାଏ କାମ କରିବି, ତୁମେ ମତେ କିଛି ଟଙ୍କା ଦବ । ଏକଥା ପରେ ତୁମର ଏତେ ସନ୍ଦେହ ଯେ, ମୁଁ ଟଙ୍କା ନେଇ ଖାଇଯିବି ଅଥଚ କାମ କରିବି ନାହିଁ । ଏହାର ଅର୍ଥ କ'ଣ ? ତୁମେ ତ ବଡ଼ ବେଇମାନ, ନାହେ କ'ଣ କହୁଚ ?

ସଦାଶିବ : ଆମେ ତୁମ ଘରକୁ ଆସିଲୁ ବୋଲି ତୁମେ ଆମକୁ ବେଇମାନ ବୋଲି ଗାଳି ଦବ ନା; ଆମର ଲୋଡ଼ା ନାହିଁ । ଟଙ୍କା ଦେଲେ କାର୍ଯ୍ୟୋଦ୍ଧାର କରିବା ପାଇଁ କଲିକତା ସହରରେ ତୁମଭଳି ବହୁତ ଲୋକ ମିଳିବେ ।

ଏହା କହି ସଦାଶିବ ବାବୁ ଉଠିପଡ଼ିଲେ । ସାଙ୍ଗେ ସାଙ୍ଗେ ତିଆଡ଼ିଏ ମଧ୍ୟ ଉଠିଲେ । ପ୍ରମଥ ବାବୁ ସେହିପରି ଚଉକି ଉପରେ ବସି ମୁରୁକି ମୁରୁକି ହସୁଥାନ୍ତି । ସଦାଶିବ ବାବୁ ଦୁଆର ମୁହଁକୁ ଗଲେ । ଦୁଆର ଖୋଲି ବାହାରକୁ ଯିବାର ଉଦ୍ୟମ କରୁଛନ୍ତି, ଏତିକିବେଳେ ପ୍ରମଥ ବାବୁ କହିଲେ, "ଯିବ ତ ହେ ବାବୁ, ଏତେ ତରତର କିଆଁ ! ଶୁଣ, ମୋର ଆଉ ପଦେଅଧେ କଥା କହିବାର ଅଛି ।" ସଦାଶିବ ବାବୁ ଦୁଆରର କଡ଼ାଟାକୁ ସେହିପରି ଧରି ଫେରିପଡ଼ିଲେ । ପ୍ରମଥ ବାବୁ ସେତେବେଳକୁ ଉଠି ଠିଆହେଲେଣି । ତାଙ୍କର ଆଖି ଦ'ଟାରୁ ନିଆଁ ଝଲସି ଉଠିଲା ପରି ଜଣାପଡୁଚି; କିନ୍ତୁ ମୁହଁରେ ସେହିପରି ହସ, ସେହିପରି ନିର୍ବିକାର ଭାବ । ସେ ଧୀରେ ଧୀରେ, ଯେପରି କଥାଗୁଡ଼ାକ ଗଣି ଗଣି ହିସାବ କରି କରି ତାଙ୍କ ପାଟିରୁ ବାହାରୁଚି, କହିଲେ, "ଟିକିଏ ଭାବି ଦେଖିତ, ସଦାଶିବ ବାବୁ, ତୁମେ ଆଜି ମୋ ପାଖରେ କି ପ୍ରସ୍ତାବ କରିଚ ! ଗୋଟାଏ ନିରୀହ ଅପରିଚିତ ଯୁବକକୁ ମୁଁ ବର୍ଷେ ବା ଦୁଇ ବର୍ଷ ବନ୍ଦ କରି ରଖିବି ଓ ଦରକାର ହେଲେ ତାକୁ ପ୍ରାଣରେ ମାରିବି । ତୁମର ମନେ ଅଛି, ମୁଁ ଯଦି ଏଇଲାଗେ ପୁଲିସ ଡାକି ତୁମକୁ ଧରାଇଦିଏ ?"

ତିଆଡ଼ିଏ ଚମକି ପଡ଼ିଲେ । ତାଙ୍କ ମୁହଁ କଳାକାଠ ପଡ଼ିଗଲା । ସେ ସଦାଶିବ ବାବୁଙ୍କ ଆଡ଼କୁ ଅନେଇଁ ରହିଲେ । ତାଙ୍କ ଆଖିରେ ଆଖିଏ ଲୁହ । ସଦାଶିବ ବାବୁ କିନ୍ତୁ ନିର୍ଭୀକ । ସେ ଠୋ ଠୋ କରି ହସିଉଠିଲେ । କହିଲେ, "ଏସବୁ ପ୍ରସ୍ତାବ ମୁଁ କରି ନାହିଁ । ତୁମର ପ୍ରମାଣ କ'ଣ ! ତୁମେ କହିବ, ମୁଁ ନାହିଁ କରିବି, ବେଶ୍ ।"

ପ୍ରମଥ : କିନ୍ତୁ ବାବୁ ବୁଝିଛ କି, ତୁମେ ମତେ ଯେ ଚିଠି ଦେଇଥିଲ ସେ ଠିକଣା ମୋ ପାଖରେ ଅଛି । ତୁମେ ମୋ ଘରକୁ ଆସିଚ, ମୋର ଯଦି ଭୁଲ ନହୋଇଥାଏ, ତା'ହେଲେ ତୁମର ସେ ଟୋକାଟା ତ ଏଇ ରାସ୍ତା ଉପରେ ଟହଲ ମାରୁଚି । ଖୁବ୍ ଶକ୍ତ ପ୍ରମାଣ ନାଇଁ ସତ; କିନ୍ତୁ ସବୁ-ସବୁକୁ ଯୋଡ଼ିଦେଲେ ମୋର ଅଭିଯୋଗଟା ନିତାନ୍ତ ମିଛ ହେବ ନାହିଁ ହେ ବାବୁ ! ନା' ହେ କ'ଣ କହୁଚ ? ତୁମେ ଖଲାସ ହୋଇଯାଇପାର; କିନ୍ତୁ ବିଷୟଟା କାଗଜରେ ବାହାରିଯିବ । ଭାରତବର୍ଷର ଅନେକ ଲୋକ ପଢ଼ିବେ । ତୁମ ଓଡ଼ିଶା ଅସଭ୍ୟ, ଅଶିକ୍ଷିତ, କୁଲି-ମଜୁରିଆର ଦେଶ ହେଲେ ମଧ୍ୟ ସେଠି ଏ ସମ୍ବାଦଟା ପଶିବାକୁ ବିଳମ୍ବ ହେବ ନାହିଁ । ନା' ହେ କ'ଣ କହୁଚ ! ତା'ପରେ ! ତା'ପରେ ଭାଇ ! ତୁମେ ପରା ଜଣେ ଲୋକପ୍ରତିନିଧି ! ତୁମେ ପରା ଜଣେ ସମ୍ଭ୍ରାନ୍ତ ବ୍ୟକ୍ତି !

କଥାଗୁଡ଼ାକ ମନରେ ଭେଦିଲା ମାତ୍ରକେ ତିଆଡ଼ିଙ୍କର ମୁହଁ ଯେପରି ଆସ୍ତେ ଆସ୍ତେ ଉଜ୍ଜ୍ୱଳ ହୋଇ ଉଠିଲା, ଶିବବାବୁଙ୍କର ମୁହଁ ସେହିପରି ଆସ୍ତେ ଆସ୍ତେ କଳା ପଡ଼ିବାକୁ ଲାଗିଲା । ୟାଙ୍କର କଥାଗୁଡ଼ାକ ସରିଲା ବେଳକୁ ଶିବବାବୁ ଯାଇ ନିଜ ସ୍ଥାନରେ ବସିସାରିଲେଣି । ତାଙ୍କର ସେ ଦର୍ପ, ସେ ତେଜ ଆଉ ନାହିଁ । ସେ ତଥାପି ନିଜର ବଡ଼ିମା ଟେକି ରଖିବାର ଶେଷ ଉଦ୍ୟମରେ କହିଲେ , "ତୁମ କଥା ଓ ମୋ କଥା ମଧ୍ୟରେ ଲୋକେ କାହାକୁ ବିଶ୍ୱାସ କରିବେ ? ଯାଉ, ତୁମେ ଓ ମୁଁ ଏକା ସାଙ୍ଗରେ ପାଠ ପଢ଼ିଥିଲେଁ । ଏକ ସାଙ୍ଗରେ କେତେ ମଉଜ ମଜଲିସ୍ କରିଥାଇଁ । ମୁଁ ପୁଣି ଭାବି ଦେଖୁଚି, ତୁମକୁ ଏ କାମଟା ଦବାହିଁ ଠିକ୍ । ଟଙ୍କାଟା ତେବେ କ'ଣ ଏଇଲାଗେ ?"

ପ୍ରମଥ : ଆଃ, ମନ୍ତଟା ଠିକ୍ ଧରିଚି ନା ? ବାବୁ ହେ; ତୁମର ବୁଝିବା ଉଚିତ ଯେ ଚୋରି କରିବାକୁ ବାହାରିଲେ ସାଙ୍ଗ ଭାଇ ଚୋରମାନଙ୍କ ଉପରେ ବିଶ୍ୱାସ କରିବା ନିତାନ୍ତ ଦରକାର । ପୂରା ଟଙ୍କାଟା ଦିଅ !

ସଦାଶିବ ବାବୁ ବଡ଼ କଷ୍ଟରେ ଶହେଟଙ୍କିଆ ନୋଟ ପାଞ୍ଚଖଣ୍ଡି ବାହାର କଲେ । ତାକୁ ଥରକୁ ପାଞ୍ଚଥର ଗଣୁଥାନ୍ତି—ଯେପରି ବଢ଼େଇ ଦେବାକୁ ତାଙ୍କ ହାତଟା ଯାଉନଥାଏ । ଶେଷରେ ଦେଲେ । ଜିଭରେ ଓଠ ଦୁଇଟା ଓଦା କରିନେଇ ଭଙ୍ଗା ସ୍ୱରରେ କହିଲେ, "ମୋ ପାଖରେ ଏତେଗୁଡ଼ାଏ ଟଙ୍କା ନାହିଁ ଭାଇ, ବର୍ତ୍ତମାନ । ବାକି ଟଙ୍କାଟା ପାଇଁ ମତେ କିଛି ସମୟ ଦେଇପାରିବ ନାହିଁ !"

ପ୍ରମଥ : ତା'ହେଲେ କାମଟା କରିବାକୁ ମଧ୍ୟ ମୋର ସମୟ ଦରକାର । ସେ ଟୋକାଟା ଯଦି ଆଜି ଆସି ପହଞ୍ଚିଯାଏ, ତା'ହେଲେ ଆଜି ତ ମୁଁ କିଛି କରିପାରିବି ନାହିଁ । ଦେଖିଲ ଦେଖି, ଏଇ ସେଇ ଟୋକାଟା କି ?

ଏହା କହି ସେ ବାହାରପଟ ଝରକା ଦିହର ପରଦାଟା ଟାଣିଦେଲେ । ସଦାଶିବ ବାବୁ ଦେଖିଲେ, ଗୋଟାଏ ବାରବୁଲା ଟୋକା ରାସ୍ତାର ଆର ପାଖରେ ଠିଆହୋଇ ଏଇ ଘର ଆଡ଼କୁ ଚାହିଁ ରହିଚି । ଚିହ୍ନିବାକୁ ବେଶି ସମୟ ଲାଗିଲା ନାହିଁ । ସଦାଶିବ ବାବୁ ଆସି ଚୌକିରେ ବସିପଡ଼ି କହିଲେ, "କିନ୍ତୁ ଆଜି ନକଲେ ତ ଚଳିବ ନାହିଁ । ମାଛ ଜାଲରେ ପଡ଼ିଚି, ଯଦି ଖସିଯାଏ ତା'ହେଲେ ଆଉ ତାକୁ ପାଇବା ମୁସ୍କିଲ ହବ ।"

ପ୍ରମଥ : ମୁଁ ତ ଠିକ୍ ସେଇ କଥା କହୁ ଥିଲି; କିନ୍ତୁ ଟଙ୍କାଟା ନପାଇଲେ ତ ମୁଁ କିଛି କରିପାରୁ ନାହିଁ । ତୁମ ପାଖରେ ଟଙ୍କା ନାଇଁ ଯେତେବେଳେ, ତୁମେ ବାକି ୧୦୦୦ ଟଙ୍କା ଲାଗି ଖଣ୍ଡେ ହାଣ୍ଡନୋଟ କରିଦିଅ, ନାହେ କ'ଣ କହୁଚ ।

ସଦାଶିବ : ହଜାରେ କ'ଣ ! ଆଉ ପାଞ୍ଚଶତ.... !

ପ୍ରମଥ : ନା, ଏ ଯେ ପାଞ୍ଚଶ ଟଙ୍କା ଦେଲ, ଏଉଟା ମୋର ସଲାମି । ତୁମକୁ ଯେ ପୁଲିସ୍ ପାଖରେ ଧରାପକାଇ ଦେଇ ନାହିଁ ଓ ଦେବି ନାହିଁ ତା'ର ସଲାମି । ଅସଲ କାମର ହଜାରେ ଟଙ୍କା ବାବଦକୁ ହାଣ୍ଡନୋଟ୍ ନକରିଦେଲେ ଚଳିବ ନାହିଁ ।

ଏତିକିବେଳେ ଦୁଆର ପାଖରେ ଡାକହେଲା 'ବେହେରା ବେହେରା' । ସଦାଶିବ ଓ ତିଆଡ଼ିଏ ଉଭୟେ ଚମକି ପଡ଼ିଲେ । ସଦାଶିବ କହିଲେ, "ଏଇ ସେଇ ଟୋକାଟା , କ'ଣ କରିବା ?

ପ୍ରମଥ ତାଙ୍କ ଆଡ଼କୁ କାଳି, କଲମ, କାଗଜ ଓ ଟିକଟ ବଢ଼େଇ ଦେଇ କହିଲେ, "ଦିଅ, ହାଣ୍ଡନୋଟ୍‌ଟା ଲେଖିପକାଅ ତ !" ସଦାଶିବ ବାବୁ ଲେଖିବାକୁ ଆରମ୍ଭ କଲେ, ଅଧାରେ ମୁଣ୍ଡ ଟେକି ଚାହିଁ କହିଲେ, "ପ୍ରମଥ ଭାଇ, ପାଠପଢ଼ା ଦିନ ପାସେରି ଦେଲୁ ? ଏତେ ସାଙ୍ଗସୁଖ, ହାବଭାବ, ତୁ ଶେଷରେ ମୋଠାରୁ ଏପରି.... ।" ଦୁଆରେ ପୁଣି 'ବେହେରା ବେହେରା' ଡାକ ଶୁଭିଲା । ପ୍ରମଥ ବାବୁ କହିଲେ, "ଏଇରେ ଲେଖ ଲେଖ । ବ୍ୟବସାୟ ଦିହରେ ସାଙ୍ଗସାଥୀ ହାବଭାବ ପୁରାଇଲେ ବ୍ୟବସାୟ ଚଳିବ କିପରି ? ନା ହେ କ'ଣ କହୁଚ ? ଦିଅ ଲେଖ ।"

ସଦାଶିବ ବାବୁଙ୍କ ଆଖିରେ ପାଣି ଆସିଗଲା । ସେ ଯଥାବିଧ ଏକ ହଜାର ଟଙ୍କାର ହାଣ୍ଡନୋଟ୍ ଖଣ୍ଡିଏ ଲେଖିଦେଲେ । ତା'ପରେ କହିଲେ, "ଭାଇ, ଆମେ କିପରି ଯିବୁ ?"

ପ୍ରମଥ : କାହିଁକି, ଯେପରି ଆସିଥିଲ ?

ସଦାଶିବ : ନା, ଆମର ଇଚ୍ଛା ନୁହେଁ ଯେ ସେ ଟୋକାଟା ଆମକୁ ଏଠାରେ ଦେଖିବ । ଅନ୍ୟ କିଛି ଉପାୟ ନାହିଁ ?

ପ୍ରମଥ କହିଲେ, "ଆଚ୍ଛା, ତୁମେ ଟିକିଏ ଚୁପ୍ ହୋଇ ବସ ତ, ମୁଁ ତା'ର ଉପାୟ କରୁଚି ।" କହି ସେ ଉଠିଗଲେ । ତା'ପରେ ସଦର ଦରଜା ପାଖରେ ତାଙ୍କର ପାଟି ଶୁଭିଲା, "ବାବୁ ନାହାନ୍ତି, ତୁମେ ସନ୍ଧ୍ୟାବେଳକୁ ଆସିବ, ବାବୁଙ୍କ ସାଙ୍ଗରେ ଦେଖା ହେବ ।" ତା'ପରେ କିଛି ସମୟ ଗଲା । ପୁଣି ତାଙ୍କର ସ୍ୱର ଶୁଭିଲା, "ସଦାଶିବ ବାବୁ ? ସେ କିଏ ? ମୁଁ ତାଙ୍କୁ ଚିହ୍ନେ ନାହିଁ । ସେ କାହିଁକି ଏଠିକି ଆସିବେ ? ଯାଅ, ସନ୍ଧ୍ୟାବେଳକୁ ଆସିବ ।

ତା'ପରେ ପ୍ରମଥ ବାବୁ ଫେରିଆସିଲେ ଏବଂ ସଦାଶିବ ଓ ତିଆଡ଼ିଙ୍କି ଘେନି ତାଙ୍କ ଘରର ପଛପଟେ ବିଦାୟ କରିଦେଲେ ।



## ନଅ

ଇତି ମଧ୍ୟରେ ସରୋଜିନୀ ଦେବୀ ତାଙ୍କର ଏକମାତ୍ର ସ୍ନେହର, ଆଦରର କନ୍ୟା ପ୍ରମିଳାକୁ ଏକୁଟିଆ ଛାଡ଼ି ତାଙ୍କର ପ୍ରିୟତମ ସ୍ୱାମୀ ଦେବତାଙ୍କ ପାଖକୁ ଚାଲିଯାଇଛନ୍ତି ଏ ଦୁର୍ଘଟଣା ପରେ ଗାଁ ଗଣ୍ଡାର ଯାବତୀୟ ଛୋଟ ଓ ବଡ଼ ଲୋକ, ପିଲା, ମାଇପି ଆସି ପ୍ରମିଳାଙ୍କୁ ନାନାପ୍ରକାରେ ବୋଧଦେବାକୁ ଚେଷ୍ଟାକଲେ । କେହି କହିଲା, "ଏସବୁ ଭଗବାନଙ୍କର ଲୀଳା । ସେ ଜନ୍ମ ଦେଇଚନ୍ତି, ସେ ମାରୁଛନ୍ତି ।" ଆଉ କେହି କହିଲା, "କିଏ କାହାର ଲୋ ମା, ସମସ୍ତେ ତ ଯମ-ଦଉଡ଼ିରେ ବନ୍ଧା । ଖାଲି ଅଢ଼େଇ ଦିନକୁ ବଢ଼େଇ ଘଇତା ସିନା ।" ପ୍ରଥମେ ପ୍ରଥମେ ଏସବୁ ଶୁଣିବାକୁ ପ୍ରମିଳାଙ୍କ ମନର ଅବସ୍ଥା ନଥିଲା । ସେ ନିଜର ଭାବନାରେ ନିଜେ ବୁଡ଼ିରହି ସଂସାରର ଅସ୍ତିତ୍ୱ ପର୍ଯ୍ୟନ୍ତ ପ୍ରାୟ ଭୁଲି ଯାଇଥିଲେ । ତେବେ ଏ ଦୁଃଖ କାହାରି କେବେ ରହେନାହିଁ । ଆସ୍ତେ ଆସ୍ତେ ତାଙ୍କର ମନ ଯେତେବେଳେ ସଂସାର ଆଡ଼କୁ ଫେରିଆସିଲା, ସେତେବେଳେ ଏ କଥାଗୁଡ଼ାକ ଶୁଣି ପ୍ରଥମେ ପ୍ରଥମେ ସେ ଭାବିଲେ, ପ୍ରକୃତରେ ଏ ଲୋକମାନେ ତାଙ୍କ ଦୁଃଖରେ ସମଦୁଃଖୀ ଏବଂ ସେଥିପାଇଁ ସେମାନଙ୍କ ବୁଦ୍ଧି ଓ ଶିକ୍ଷା ଅନୁସାରେ ସେମାନେ ତାଙ୍କୁ ସାନ୍ତ୍ୱନା ଦେଉଚନ୍ତି । କିନ୍ତୁ ଯେତେବେଳେ ଦେଖିଲେ ଯେ ଏ ଗୋଟାଏ ରୀତିମତ ବ୍ୟବସାୟ ପାଲଟିଗଲାଣି, ଆଉ ଅଶୀ ବର୍ଷର ବୁଢ଼ାବୁଢ଼ୀଙ୍କଠାରୁ ଆରମ୍ଭ କରି ଷୋହଳ ସତରର ତାଙ୍କ ସାଥୀମାନଙ୍କ ତୁଣ୍ଡରେ ସେଇ ଏକ କଥା ଯାହାଙ୍କ ସହିତ ତାଙ୍କର ଏପର୍ଯ୍ୟନ୍ତ ଆଳାପ ପରିଚୟ ମଧ୍ୟ ନଥିଲା, ସେମାନେ ମଧ୍ୟ ଆସି ଏହିପରି ଗୁଡ଼ାଏ ଛୋଟ ଛୋଟ କଥା କହି ତାଙ୍କୁ ଅତିଷ୍ଠ କରି ପକାଉଛନ୍ତି, ସେତେବେଳେ ତାଙ୍କ ମନରେ ଗୋଟାଏ ରାଗ ଓ ଘୃଣା

ଆସିଲା । ଶେଷରେ ଯେତେବେଳେ ଆଉ ସାହିର ପ୍ରହ୍ଲାଦ ମିଶ୍ରଙ୍କ ସ୍ତ୍ରୀ କହିଲେ, "ଆଉ କାନ୍ଦିଲେ କ'ଣ ହବ ମା ? ମୁଣ୍ଡ କଚାଡ଼ିଲେ ତ ଆଉ ମା' ଫେରିଆସିବ ନାହିଁ । ତାଙ୍କ ସୁଖରେ ସେ ତ ଗଲେ । ଏଣିକି ତୋ କଥା ତତେ କରିବାକୁ ପଡ଼ିବ । ମା' ଆମ କଥା ରଖି ତୋର ହାତକୁ ଦି'ହାତ କରିଦେଇଥିଲେ ତୋର ଆଉ ଏତେବେଳେ ଚିନ୍ତା ଥାନ୍ତା କ'ଣ ? ଯେତେ ହେଲେ ବ୍ରାହ୍ମଣ ଘର । ଗରିବ-ଗୁରୁବା କେଉଁଠି ପଇସା ଲାଗି ଝିଅମାନଙ୍କୁ ବଡ଼ ହେବାଯାଏ ଘରେ ରଖୁଚନ୍ତି ବୋଲି ସେଉଟା ତ ଆଉ ଶାସ୍ତ୍ରକଥା ନୁହେଁ । ସେଗୁଡ଼ାକ ସବୁ ଅବିଧି । ତୋରି ସାଙ୍ଗର ଝିଅମାନେ କୋଡ଼ରେ କୋଳ ଛୁଆ, ସ୍ୱାମୀ, ଶାଶୁ, ନଣନ୍ଦ ଘେନି ମହାଆନନ୍ଦରେ ଚଳୁଛନ୍ତି । ତେବେ ତୋର କିଛି ଭାବନା ନାହିଁ । ଆମେ ସବୁ ଅଛୁ ଯେତେବେଳେ, ତୁ କିସ ଆଉ ବାତୁଅ ରହିଯିବୁ ? କୌଣସି ଆଠୁ ନହେଲେ ଆମ ସୁରେନ୍ଦ୍ର..."

ପ୍ରମିଳା ଆଉ ସମ୍ଭାଳି ପାରିଲେ ନାହିଁ । କହିଲେ, "ରକ୍ଷାକର ମାଉସୀ, ତୁମର ଏ ସହାନୁଭୂତି ମୋର ଲୋଡ଼ା ନାହିଁ । ମୁଁ ବୁଝିଚି, ତୁମର ସବୁ ଏତେ ଗରଜ କେନେ ? କାହାର ପୁଅଟିଏ ଅଛି । ପାଟି ନାଳଉଚି ଯେ କିପରି ମୋ ବେକରେ ସେଥିରୁ ଗୋଟାଏ ପଥର ବାନ୍ଧିଦେଲେ, ଏ ସବୁ ସମ୍ପତ୍ତିବାଡ଼ି ପାଟିକୁ ପକାଇ ଦିଅନ୍ତା, କାହାର ବା ଇଚ୍ଛା—ଏ ତ ପିଲା, ୟାକୁ କଅଁଳେଇ ସଅଁଳେଇ ହାତକରିପାରିଲେ, ଭୁଲେଇ-ଭାଲେଇ ଦି'ଚାରି ପଇସା ଛାଟି ନେଇଯିବା । ସେ ସବୁ ମୁଁ ବୁଝୁଚି, ମାଉସୀ, ବୁଝୁଚି । ତୁମର ଏ ଯେ 'ମିଛମାୟା ସଂସାର, କେହି କାହାରି ନୁହେଁ, ଅଢ଼େଇଦିନିଆ' ସାନ୍ତ୍ୱନା କଥାଗୁଡାକ; ଏ ସବୁର ମୂଳରେ କିସ ଅଛି କହିଲ ଦେଖି ? ଏ ଦୁଃଖ ସମୟରେ ଏ ପିଲାଟାର ଗୋଟାଏ ବୈରାଗ୍ୟ ଆଣିଦେଲେ ତା' ମନ ହୁଏତ ତା'ର ସମ୍ପତ୍ତିବାଡ଼ି, ବିଷୟ-ଆଶୟରୁ ଛାଡ଼ିଯିବ । ହୁଏତ ସେ ଉଦାସୀନ ହୋଇ ରହିଲେ ଆମ ହାବୁଡ଼ରେ ପଡ଼ିଯାଇପାରେ । ତୁମେ କ'ଣ ସତରେ ଭାବୁଚ ଓ ଅନୁଭବ କରୁଚ ଏ ସଂସାରଟା ମିଛ ମାୟା ବୋଲି ? ତା'ହେଲେ ପିଲା, ଛୁଆ, ଘଇତା, ଶାଶୁ ଶଶୁର ହେବାର ହଜାର ବନ୍ଧନ ନେଇ ଜଞ୍ଜାଳିହଉଚ କେନେ ? ଗଡ଼ିଆ ପୋଖରୀରେ ଯଥେଷ୍ଟ ପାଣି ଅଛି, ବାଡ଼ିଆଡ଼ରେ ଅନେକ କନିଆରି ଗଛ, କୋଚିଲା ଗଛ ଅଛି, ଦଉଡ଼ିର ଅଭାବ ନାହିଁ । ଦଉଡ଼ି ଲଗାଇବାର ଜାଗା ମଧ୍ୟ ଅଭାବ ନାହିଁ ।"

ରାମା ମା' ଶ୍ୟାମା ମାଇପ, ହରିଆ ବୋଉ, ଗୋବିନ୍ଦା ଭଉଣୀ, ଯେ ଯେଉଁଠି ବସିଥିଲେ, ସେ ସେଇଠାରୁ ଫଡ଼କରି ଉଠିପଡ଼ିଲେ । ତାଙ୍କ ଭିତରେ ଯେ ଟିକିଏ କୁହାଳିଆ ଥିଲା, ସେ କହିଲା, "ଚାଲଲୋ ସବୁ ଚାଲ, ଏ କଳିକାଳରେ ଭଲ କହିଲେ ମନ୍ଦ । ଆମେ ୟାକୁ ବୁଝେଇବସିଲେଇଁ ଯେ ଏ ଅଛଦରୀ ଟୋକୀ ଆମକୁ ଓଲଟି ଗାଳିଦଉଚି । କେନେ ଗୋ କେନେ, ଆମେ କେନେ ଦଉଡ଼ି ଦେଇ, ବିଷ ଖାଇ ମରିବୁଁ ? ଯେ ବ୍ରାହ୍ମଣ ଘର ଝିଅ ହୋଇ ଷୋଳ ବର୍ଷ ଯାଏ ଅଭିଆଡ଼ୀ ଅଛି, ଯାହାକୁ ବର ମିଳୁନାହିଁ, ସେ ବିଷ ଖାଇ ମରୁ ।" ଏହା କହି ସେମାନେ ଚାଲିଗଲେ । ରହିଗଲା କେବଳ ବାଳବିଧବା କମଳା, ପ୍ରମିଳାଙ୍କର ସାଙ୍ଗ । ସମସ୍ତେ ଚାଲିଗଲା ପରେ ସେ ପ୍ରମିଳାଙ୍କୁ କହିଲା, "ପେମି, ଏପରି ଲୋକଗୁଡ଼ାଙ୍କୁ କହନ୍ତି ?"

ପ୍ରମିଳା : ନ କହିବି କେନେ ? ସେମାନେ କେନେ ଏପରି ମିଛ ଆପଣାର ହୋଇ ବସିଲେ କି ?

କମଳା : ସେମାନେ ଯାହା କହିଲେ ସେଗୁଡ଼ାକ କି ମିଛ ! ପ୍ରକୃତରେ କି ସଂସାରଟା ମିଛ ମାୟା ନୁହେଁ !

ପ୍ରମିଳା : ନା, କଦାପି ନୁହେଁ ! ଯାହା ମୁଁ ଆଖିରେ ଦେଖୁଚି, ଅଙ୍ଗେ ନିଭେଇଚି, ତା' ହବ ମିଛ, ମାୟା—ଆଉ ଭଗବାନ, ପର ଜୀବନ, ଯାହା ମୁଁ କେବେ ଆଖିରେ ଦେଖିନାହିଁ, ଦେହରେ ଅନୁଭବ କରିନାହିଁ ସେ ହବ ସତ ! ମୁଁ ନିଆଁକୁ ହାତରେ ଧଇଲି, ହାତ ମୋର ପୋଡ଼ିଗଲା, ଫୋଟକା ହୋଇଗଲା, ସେ ହବ ମିଛ । ଆଉ ତୁ ଯଦି କହୁ ଯେ ମୁଁ ପାଣିରେ ହାତ ବୁଡ଼େଇ ଦେଲି ଯେ ମୋ ହାତ କୋଲମାରିନେଲା, ସେ ହବ ସତ ?

କମଳା : କିନ୍ତୁ ପେମି, ସଂସାରରେ ଯୋଗୀ ଋଷିମାନେ ତ ପୁଣି ଈଶ୍ୱରଙ୍କୁ ଦେଖିଚନ୍ତି !

ପ୍ରମିଳା : ତୁ ଦେଖିଚୁ ସେମାନେ ଦେଖିଚନ୍ତି ? ନଖାଇ ନପିଇ, ଦିହ ପ୍ରାଣ ସବୁ ଶୁଖେଇ, ଆତ୍ମାର କଲବଲରେ ସେମାନେ ଯାହା ଦେଖନ୍ତି ସେ ତ ଗୋଟାଏ ଦୁଃସ୍ୱପ୍ନ ଲୋ, ଭୂତସ୍ୱପ୍ନ । ତୁଇ ନିଜେ କହନା, ଏକାଦଶୀ ନିରାଧାର ଉପବାସରେ ତୁ ଯେତେବେଳେ ଅଚେଷ୍ଟ ହୋଇ ଶୋଇରହୁ, ସେତେବେଳେ ତୁ କ'ଣ ସୁନ୍ଦର ସୁନ୍ଦର ଜିନିଷ, ଭଲ ଭଲ ଖାଦ୍ୟର ସ୍ୱପ୍ନ ଦେଖୁନାହୁଁ ? ସ୍ନେହ, ପ୍ରେମ, ଟିକିଏ ଭଲ ପାଇବାର ଆଶାରୁ ବଂଚିତ ହୋଇ ତୁ ଯେତେ ବିକଳରେ କେତେ ସୁଖର କଳ୍ପନା କରୁ କରୁ ଶୋଇଯାଉ, ସେତେବେଳେ ତୁ କ'ଣ ଜଣେ ସୁନ୍ଦର ପ୍ରେମିକର ପ୍ରେମ-ସ୍ୱପ୍ନ ଦେଖୁନାହୁଁ ? ତା' ବୋଲି କ'ଣ ସେ ସତ ? ତୋର ଏଇ ନିରାଟ, ନିର୍ମମ, ନିର୍ଦ୍ଦୟ ବିଧବା ଜୀବନ ମିଛ । ନା ବିମଳା, ଯୋଗୀଋଷିମାନେ ଈଶ୍ୱରଙ୍କର ଗୋଟାଏ ଜ୍ୟୋତିର୍ମୟ ମୂର୍ତ୍ତି କରିନେଇ ସେଇ ମୂର୍ତ୍ତିଟିକୁ ସବୁବେଳେ ଭାବନା କରନ୍ତି ବୋଲି ସେମାନେ ବେଳେ ବେଳେ ସେ ମୂର୍ତ୍ତିଟାକୁ ଦେଖି ପକାନ୍ତି । ସେ ସତ ନୁହେଁ, କେବଳ ମାୟା, କେବଳ କୁହୁକ, କେବଳ ଇନ୍ଦ୍ରଜାଲ । ସତ ହଉଚି ଏଇ ମାଟିର ଏଇ ସଂସାରଟା; ସତ ହଉଚି ଏଇ ପାଣି, ପବନ, ନିଆଁ; ସତ ହଉଚି ଏଇ ବିଚ୍ଛେଦ, ବିରହ, ଦୁଃଖ, ତାପ, ରୋଗ, ଶୋକ ।

କମଳା : ତୁ କ'ଣ ଯେ କହୁ ପେମି ! ଏ ସବୁ ତୋର ସେ ଖିରସ୍ତାନ ବହିଗୁଡ଼ାକ ପଢ଼ିବାର ଫଳ ।

ପ୍ରମିଳା : ନା ଖିରସ୍ତାନମାନଙ୍କର ମଧ୍ୟ ସେଇ ଭ୍ରମ । ସେମାନେ ମଧ୍ୟ ଯିଶୁ ଖ୍ରୀଷ୍ଟଙ୍କର ସ୍ୱପ୍ନ ଦେଖନ୍ତି, ସେମାନେ ମଧ୍ୟ ଗାବ୍ରିୟେଲ୍‌ର କଳ୍ପନା କରନ୍ତି । ସେମାନେ ମଧ୍ୟ ଅତ୍ୟାଚାରିତ, ସମସ୍ତ ସୁଖରୁ ବଞ୍ଚିତ, କାଙ୍ଗାଳର ପୁତ୍ର ଯିଶୁ ଖ୍ରୀଷ୍ଟଙ୍କର ସୁଖସ୍ୱପ୍ନର କଳ୍ପନା ମନ ଭିତରେ ପୋଷି ଗୋଟାଏ ମିଛ ଜ୍ୟୋତିର୍ମୟ କାଳ୍ପନିକ ପୁରୁଷର ଉପାସନା କରନ୍ତି । ଏ ପାଗଳାମିରୁ ହିନ୍ଦୁ, ଖ୍ରୀଷ୍ଟିୟାନ୍, ମୁସଲମାନ୍ କେହି ବଞ୍ଚିନାହିଁ । ଏ ସଂସାର ଭଗବାନଙ୍କର ଖେଳ ନୁହେଁ; ବୁଦ୍ଧିମାନ୍‌ର ଖେଳ । ବୁଦ୍ଧିମାନ୍ ବ୍ରାହ୍ମଣ, ବୁଦ୍ଧିମାନ୍ ପୁରୋହିତ ଧର୍ମଯାଜକ ବୁଝିଥିଲେ, ପ୍ରକୃତ ସୁଖ ହେଉଚି ନିର୍ଦ୍ୱନ୍ଦ୍ୱରେ ବସି କଳ୍ପନାର ସୁଅରେ ଭାସିବାକୁ ହେବ ଓ ବିନା ପରିଶ୍ରମରେ ଦେହ ରକ୍ଷାକରିବାର ଯାବତୀୟ ସୁଖ ଓ ବିଳାସ ପାଇବାକୁ ହେବ । ତା'ର ଉତ୍କୃଷ୍ଟ ପନ୍ଥା ତାଙ୍କୁ ଦିଶିଲା, ପରଠାରୁ ଛଳେ ବଳେ କୌଶଳେ ଧନ ନେଇଯିବା । ସେହି ହେତୁରୁ ହଜାର ହଜାର ବହି, ଲକ୍ଷ ଲକ୍ଷ ଯୁକ୍ତି ଦେଇ ସେ ଇତର ଲୋକମାନଙ୍କ ମନରେ ଧାରଣା କରାଇବାକୁ

ଚେଷ୍ଟାକଲେ ଯେ—ଏ ସଂସାର ମିଛ; ଏ ଧନ ସମ୍ପତ୍ତି ମାୟା; ଏ ପୁଅ, ଝିଅ, ବାପ, ମା ଖାଲି ଗୋଟାଏ ବନ୍ଧନ; ଆଉ ନିର୍ବୁଦ୍ଧି ଇତର ଜାତି...." ପ୍ରମିଳା କହିଚାଲିଛନ୍ତି, ଏହି ସମୟରେ କାହାର ପାଟି ଶୁଭିଲା "ପେମି ପେମି !" କମଳା ଉଠି ଚାଲିଗଲା । ଶ୍ୟାମବାବୁ ଆଉ ଜଣେ ଭଦ୍ରଲୋକଙ୍କୁ ଘେନି ଆସି ସେଠାରେ ପହଞ୍ଚିଲେ । ସେ ଭଦ୍ରଲୋକ ସ୍ନେହପୂର୍ଣ୍ଣ ଗୋଟାଏ କଟାକ୍ଷ ପ୍ରମିଳାଙ୍କ ଉପରେ ପକାଇ କହିଲେ, "ମା ! ସବୁ କାମତ ଏଥର ସରିଲା, ମୁଁ ଆଉ କେତେଦିନ ବସି ରହିବି ? ଘରେ ତ ଆଉ କେହି ନାହିଁ, ଚାଲ ମା, ଯିବା ଏଥର ।"

ପେମି : କୁଆଡ଼େ ମାମୁଁ ?

ଭଦ୍ରଲୋକ : କୁଆଡ଼େ ଆଉ ? ଆମ ଘରକୁ ।

ପ୍ରମିଳା : କି, ବୁଲି ?

ଶ୍ୟାମ : ନାଇଁ, ନରେନ୍ ମାମା କହୁଚନ୍ତି, ମା' ତ ଗଲେ, ତୁ ଏଠି ଏକୁଟିଆ ରହିବୁ କିପରି ? ତାଙ୍କ ଘରେ ଯାଇ ରହ । ସମ୍ପତ୍ତିବାଡ଼ି ତ ମୁଁ ଦେଖା-ଚାହିଁ କରୁଚି । ତୁ ଯେତେବେଳେ ବଡ଼ହୋଇଯିବୁ, ବାହାହୋଇ ଯିବୁ, ତୋର ସମ୍ପତ୍ତି ତ ସେତେବେଳେ ଦେଖିବୁ ।

ପ୍ରମିଳା : ନା, ମୁଁ ମୋର ବାପ-ମା'ଙ୍କ ଘର ଛାଡ଼ି ଯିବି କେନେ ? ମାମା, ତୁମ ଗୋଡ଼ତଳେ ମୋର କୋଟି ଦଣ୍ଡବତ, ମୋ ଉପରେ ରାଗ କରନାହିଁ । ମୁଁ ତୁମର ଭାଣେଜୀ, ତୁମେ ମୋର ମାମୁଁ, ଆଉ ମୋର ବୋଲି ଏକମାତ୍ର ଲୋକ । ମୋର ଆଉ କିଏ ଅଛି ?" କହୁଁ କହୁଁ ତାଙ୍କ ସ୍ୱର ଗଦ୍‌ଗଦ୍ ହୋଇଆସିଲା । ପରେ ସମ୍ଭାଳି ନେଇ କହିଲେ, "ବାପା ମରିଗଲାବେଳେ ଏ ସମ୍ପତ୍ତିବାଡ଼ି ମା'ଙ୍କ ଜିମା କରିଦେଇ ଯାଇଥିଲେ । ମା' ତାଙ୍କ କଥା ମାନି ତାକୁ ସମ୍ପୂର୍ଣ୍ଣ ଭାବରେ ସାଇତି ରଖି ମୋ ଜିମା ଛାଡ଼ିଦେଇଗଲେ । ମୁଁ କିପରି ସାତ ପୁରୁଷର ଘରଦ୍ୱାର, ଯାନ ଆସ୍ଥାନ ଛାଡ଼ି ଚାଲିଯିବି ?"

ନରେନ୍ : କିନ୍ତୁ ମା, ତୁ ତ ପିଲା, ତୁ କ'ଣ ଏ ସବୁ ଦେଖା-ଚାହାଁ କରିପାରିବୁ ! ଏ ସବୁର ଭାର ନେଇ ପାରିବୁ ?

ଶ୍ୟାମ : ସେ ତ ନେଇ ପାରିବ ନାହିଁ ଜାଣି ମା ଉଇଲ୍ କରି ମତେ ଏକ୍‌ଜିକିଉଟ୍‌ର କରି ଦେଇ ଯାଇଚନ୍ତି ।

ପ୍ରମିଳା : ବୁଝିଚି, ସେଉଟା ଆଉ ମୋ ମନରେ ପକାଇଦେବା ଦରକାର ନାହିଁ । ନାଇଁ ମାମା, ମୁଁ ଜମି-ବାଡ଼ି, ଜମିଦାରି ବୁଝାସୁଝା କରିନପାରିଲେ ମଧ୍ୟ, ଅନ୍ତତଃ ଏ ଘରଦ୍ୱାରତକ ତ ସାଇତି ରଖିପାରିଚି ।

ନରେନ୍ : ତାହେଲେ କି ଆମ ଘରକୁ ଆଉ ଯିବୁନାହିଁ ?

ପ୍ରମିଳା : ତା' କି ନଯାଇ ମୁଁ ରହିପାରେଁ, ମାମା ! ନିଶ୍ଚୟ ଯିବି, ଯେତେବେଳେ କହିବେ ସେତେବେଳେ ଯିବି କିନ୍ତୁ ସବୁଦିନେ ରହିବା ପାଇଁ ଯାଇପାରିବି ନାହିଁ ।

ନରେନ୍ : ମୁଁ ବୁଝିଚି ମା, ବୁଝିଚି । ମାଈଁ ହେତୁରୁ ତୁ ସେଠି ରହିବାକୁ ନାରାଜ । କିସ କରିବି ମା, ହାତ ଧରି ବାହାହେଇଚି । ମୋ ପିଲାଗୁଡ଼ିଙ୍କର ମା' ତ ଯେତେହେଲେ ସେ ! ଭଦ୍ରଲୋକ ଘର, ତାକୁ ନେଇ ଗଡ଼ାପଡ଼ା ହେଲେ ଦାଣ୍ଡକୁ ଅସୁନ୍ଦର ଦିଶିବ ବୋଲି ମୁଁ ସବୁ

ମୁଣ୍ଡପୋତି ସହିଯାଉଚି; କିନ୍ତୁ ଏପରି ଢବର ମାଇକିନିଆ ସେ, ମୁଁ ଏତେ କରି କହିଲି ତାଲ, ଦିଦି ତ ମରିଗଲା, ପେମିଟା ପିଲା, କେତେ ହିନସ୍ତା ହେଉଥିବ, ତୁ ଗଲେ ତା'ର ଟିକିଏ ଭରସା ହେବ । ମୋ କଥା ଶୁଣିଲା ନାହିଁ, କ'ଣ କରିବି ମା ?

ପ୍ରମିଳା : ସେ କଥା ଥାଉ ମାମୁଁ, ଯାହା ନକରି ହବ ତାକୁ ଭାବି ଆଉ ଫଳ କିସ ?

ନରେନ୍ : ତେବେ ମା, ତୁ କିସ କରିବୁ ବୋଲି ଭାବୁଚୁ ?

ପ୍ରମିଳା : କରିବି ଆଉ କିସ, କଲେଜ ଖୋଲିଲେ ମୁଁ କଟକ ଚାଲିଯିବି । ଛୁଟିରେ ଯେତେବେଳେ ଆସିବି, ସେତେବେଳେ ଥୋଡ଼ାଏ ଦିନ ଏଠି ରହିଲେ ଥୋଡ଼ାଏ ଦିନ ତୁମ ଘରେ ରହିବି । ମତେ ଟିକିଏ ଟିକିଏ କଟକରେ ଦେଖିଆସୁଥିବ ମାମା ! ଭୁଲି ଯିବନାହିଁ ।

ନରେନ୍ : କିନ୍ତୁ ମା' ! ତୁ ଏଡ଼େ ବଡ଼ ଘରେ ଏକୁଟିଆ କିପରି ରହିବୁ ?

ପ୍ରମିଳା : ମା ବୁଢ଼ୀ ହେଇ ତ ଫେରେ ଏକୁଟିଆ ଥିଲେ, ମୁଁ ତ ତାଙ୍କ ଅପେକ୍ଷା ଦୁର୍ବଳ ନୁହେଁ । ତା'ପରେ ଗଦାମା' ଅଛନ୍ତି ।

ନରେନ୍ : ହଁ, ଗଦାମା ଅଛି, ସେତିକି ଯାହା ବଳ ।

ଶ୍ୟାମ : ମୁଁ କହୁଥିଲି ପେମିର ବିବାହ.... ।

ପ୍ରମିଳା : ସେ ଭାବନା ତୁମର କାହିଁକି ଶ୍ୟାମବାବୁ ?

ଶ୍ୟାମ : ଶ୍ୟାମ ଭାଇ ବୋଲି କହ.... ମୁଁ ପରା ବଡ଼ ଭାଇ, ଆପଣାର ଲୋକ ।

କିନ୍ତୁ ପ୍ରମିଳା ତା'ର ଢବାବ ନଦେଇ ନରେନ୍ ବାବୁଙ୍କୁ ପଚାରିଲେ, "ତୁମେ ଜଳଖିଆ କଲଣି ମାମୁଁ ? ମୁଁ ତୁମ ପାଇଁ ଜଳଖିଆ ବନ୍ଦୋବସ୍ତ କରେ ।" କହି ସେ ନରେନ୍ ବାବୁଙ୍କ ହାତ ଧରି ଭିଡ଼ି ଭିଡ଼ି ଘେନି ଚାଲିଗଲେ । ଶ୍ୟାମବାବୁ ସେହି ସ୍ଥାନରେ କିଛି ସମୟ ଠିଆହୋଇ ରହିଲେ । ତାଙ୍କର ମୁହଁ ଫିକା ପଡ଼ିଗଲା । ଆଖି ନାଲ ନାଲ ହୋଇଗଲା । ଓଠ କମ୍ପିଉଠିଲା । ସେ ଡାହାଣ ହାତର ମୁଠା ପ୍ରମିଳାଙ୍କ ଆଡ଼କୁ ହଲାଇ ସେଠାରୁ ଚାଲିଗଲେ ।



# ଦ୍ୱିତୀୟ ଭାଗ

ସଦାଶିବ ବାବୁ ଓ ଫଲଣା ତିଆଡ଼ିଏ ପ୍ରମଥ ବାବୁଙ୍କ ଘରୁ ବାହାରି ଏକ ନିଃଶ୍ୱାସରେ ବାହାରି ଚାଲିଗଲେ ଯେ ହରିସନ ରୋଡ଼ ୨୮ ନମ୍ବର ଇମ୍ପିରିୟାଲ କ୍ଲବ ହୋଟେଲ ପର୍ଯ୍ୟନ୍ତ । ସେଠାରେ ତିଆଡ଼ିଙ୍କ ଅଗୋଚରରେ ସେ ନିଜକୁ ସାଆନ୍ତ ଓ ତିଆଡ଼ିଙ୍କୁ ତାଙ୍କର ରୋଷେଇଆ ବ୍ରାହ୍ମଣ ବୋଲି ପରିଚିତ କରାଇ ଚାରିମହଲା ଉପରେ ବଖରାଏ ଘର ଭଡ଼ା ନେଲେ । ଘରେ ଯାଇ ପ୍ରଥମେ ସେ ଖଟ ଉପରେ, ତିଆଡ଼ିଏ ଗୋଟାଏ କୁରୁଚିରେ ବସି ଦମ୍ ନେବାପରେ ସଦାଶିବ ବାବୁ ପଚାରିଲେ, "ତିଆଡ଼ିଏ କ'ଣ ହେଲା ?" ତିଆଡ଼ିଏ କାନନାକ ଛୁଇଁ କହିଲେ, "ଆରେ ରାମ, ରାମ; ମା' ଭଗବତୀର ବରାଦ, ପ୍ରାଣ ନେଇ ପଳାଇ ଆସିଲେଇଁ; କିନ୍ତୁ ବାବୁ ଦେଢ଼ ହଜାର ଟଙ୍କା...?" ସଦାଶିବବାବୁ ନିଶରେ ହାତ ପକେଇ ବେପରୁଆ ହସଟିଏ ହସି କହିଲେ, "ଆରେ ଗଧ, ମୀନଟିଏ ପକାଇଲେ ସିନା ଶେଉଳଟିଏ ଧରିବ । ଦେଢ଼ହଜାର ଖର୍ଚ୍ଚ ନ ହେବ ତ ଲକ୍ଷେ ଟଙ୍କାର ସମ୍ପତ୍ତି ଆୟତ୍ତ ହେବ କିପରି ?"

ତିଆଡ଼ିଏ ଟିକିଏ ଅପ୍ରସ୍ତୁତ ହୋଇଗଲା ପରି କହିଲେ, "ହଁ, ତା' ଯା କହିଲେ ତା' ଏକା ସତ । ଆମ ମୁଣ୍ଡରେ କ'ଣ ପଶୁଚି ? ତା' ହୋଇଥିଲେ ଆମେ କିଆଁ ଗୋବର ଗୋଟାନ୍ତୁ, ଆପଣ କିଆଁ ମଣିଷ ଚରାନ୍ତେ ? କିନ୍ତୁ ବାବୁ, ସେ ଯୁ ଲୋକ ! ତା'ର ଯୁ ଦାନ୍ତଗଣ୍ଡାକ, ବାଘମୁହଁ ପରି ମୁହଁରେ ସେ ଦାନ୍ତଗୁଡ଼ାକ, ପାଟି ମେଲେଇଲାବେଳକୁ ଦିଶିଲା ଯେପରି ବାଘ ପାଟି ମେଲେଇ ବସିଚି, ଟାକୋ-କିନି ଗିଳିଦେବ । ଲୋକଟା ସତରେ କେଡ଼େ ବେଇମାନ ବାବୁ !"

ଶିବ : କିନ୍ତୁ ଦେଖିଚ ମୁଁ ତାକୁ କିପରି ଜବତ କଲି ? ବେହିପୋ, ଜାଣେନାହିଁ ଆମେ କିଏ ! ଆମ ଆଗରେ ପୁଣି କଲକତିଆ ପାହୁ ଦେଖାଉଥିଲା । କଣନା ତୁମକୁ ଫୌଜଦାରିରେ ଦେବି । ଦେଖିଲ ନା, ଏକାକଥାକେ କିପରି ମ୍ୟାଉଁ ମ୍ୟାଉଁ ହୋଇଗଲା ।

ତିଆଡ଼ିଏ : ତା'ର ବୁଦ୍ଧି କେତେ ସେ ଆପଣଙ୍କ ଭଳିଆ ଲୋକ, ଯାହାକୁ କି କିଲଟର କମିସନର ମାନନ୍ତି, କଥାରେ ଆଇନ ନଜିରରେ ପାରିଯିବ ? କିନ୍ତୁ ବାବୁ ସେଇ ଟଙ୍କାଗୁଡ଼ାକ ମୋ ମନରୁ ଯାଉନାହିଁ ।

ଶିବ : ମୋ ମନରୁ ବି ଯାଉନାହିଁ ତିଆଡ଼ିଏ ! ଏପର୍ଯ୍ୟନ୍ତ ଏ ବିଷୟରେ ଯାହା ସବୁ କରିଥିଲେଇଁ ସେ ଖାଲି ପିଲାଖେଳ, ଲଣ୍ଡାଠାରୁ ସେ ରେଜିଷ୍ଟର ହାଣ୍ଡନୋଟଟା କରିନବା ଛଡ଼ା ସେ ଦିଗରେ ଆଉ କିଛି ପ୍ରକୃତ କାମ ହୋଇନାହିଁ । ମୁଁ ଭାବିଥିଲି ଆପଣମାନଙ୍କର ଉଦ୍ୟମ ଓ ଉତ୍ସାହ ବୋଧହୁଏ ଏ ଦିଗରୁ ଶୀତଳେଇଗଲାଣି । ମୋର ଥରେଅଧେ ମନେ ହୋଇଥିଲା, ତୁମକୁ ସବୁ ଟିକିଏ ସ୍ମରଣ କରାଇଦେବି ବୋଲି । ପୁଣି ଭାବିଲି ଲଣ୍ଡାର କାମ, ଏମାନଙ୍କ ହେତୁରୁ ମୁଁ ସେଥିରେ ପଶୁଥିଲି । ଲଣ୍ଡା ଚୁପ୍, ଏମାନେ ମଧ୍ୟ ଚୁପ୍; ମୋର ଏତେ ଗରଜ କିଆଁ ? ସେଦିନ କିନ୍ତୁ ବଡ଼ ମଜାରେ ଟୋକାଟାକୁ ବାଗରେ ପାଇଥିଲେଇଁ, ନା ? ସେ ଯେ ବାଜି ମାରିବ ଆଉ ସତକୁ ସତ ରଖିବ, ଆପଣମାନେ ଜାଣିଲେ କିପରି ?

ଡିଆଡ଼ିଏ : ତା' ଆଉ ଜାଣିନଥିଲୁ ନା ! ତା'ର କଥାକେ କଥାକେ ବାଜି । ଆଉ ଥରେ ବାଜି ମାଇଲେ ସେ ପଡ଼ିଆ ବାଡ଼ିରୁ ପୋକ ପର୍ଯ୍ୟନ୍ତ ଗୋଟାଇ ଖାଇଯିବ । ସତରେ, ଥରେ ପରା ଗୋଟାଏ ଛାଙ୍କୁଡ଼ା ପୋକ ବାଜି ମାରି ଖାଇଯାଇଥିଲା । ଆଉ ଥରେ ସେମିତି ବାଜି ମାରି ପାଞ୍ଚଗଣ୍ଡା ଆମ୍ବୃଡ଼ା ଖାଇଯାଇଥିଲା ।

ସଦାଶିବ : ଯାହା ହଉ, ବେଶ୍ ବାଗରେ ପାଇଥିଲେଇଁ । ସେ ଯେ ସତରେ ବାଜି ମାରି କଲିକତା ଆସିବ ମୋର ଏ ବିଶ୍ୱାସ ନଥିଲା । ସତକୁ ସତ ଆସିଚି । ଏଣେ ମୁଁ ମଧ୍ୟ ଏତେ ଟଙ୍କା ଏ କାମରେ ଆଜି ଖର୍ଚ୍ଚ କଲିଣି ଯେ, ଏହାର ଗୋଟାଏ କିଛି ଶେଷ ବ୍ୟବସ୍ଥା ନକରିବା ପର୍ଯ୍ୟନ୍ତ ଆଉ ଶାନ୍ତି ନାହିଁ । ଖାଲି ସେଇ ଗୁଣ୍ଡାଟା ଉପରେ ବିଶ୍ୱାସ ରଖି କାମ କଲେ ଚଳିବ କି ? ସେ ଲୋକଟା ବଦ୍‌ମାସ, ମୋର ତ କିମିତି ଆଶଙ୍କା ଯେ ସେ ପୁଣି ଲୁଆଚୋରି କରି ନବସେ ।

ଡିଆଡ଼ିଏ : କିନ୍ତୁ ଆଉ ଇଲାଗେ ଉପାୟ କ'ଣ ?

ସଦାଶିବ : ଉପାୟ ତ ଅନେକ ଅଛି, କଥା ହେଉଚି କେଉଁ ଉପାୟଟା ତା' ମଧ୍ୟରୁ ନେବି । ଗୋଟାଏ ଲୋକ ଉପରେ ଯେତେବେଳେ କାର୍ଯ୍ୟର ଭାର ଦେଇଚି, ଆଉ ସେଥିଲାଗି ଆଞ୍ଜୁଳା ଆଞ୍ଜୁଳା ଟଙ୍କା ମଧ୍ୟ ଖର୍ଚ୍ଚ କରି ସାରିଲିଣି, ସେ କ'ଣ କରୁଚି ନକରୁଚି ନଦେଖି ପୁଣି ଅନ୍ୟ ଲୋକକୁ ସେଇ କାମରେ ଲଗାଇ ଆଉରି ଗୁଡ଼ାଏ ଟଙ୍କା ଖରଚ କରିବା ହବ ଗୋଟାଏ ମସ୍ତବଡ଼ ବୋକାମି । ଏଣେ ସେ ଯଦି କାମ ନକରେ ବା ଖଇଚା କରେ, ତା'ହେଲେ ଖବର ପାଇ ଅନ୍ୟ ଉପାୟ କଲାବେଳକୁ ଚଢ଼େଇ ହୁଏତ ସମୁଦ୍ର ପାର । କ'ଣ କରିବା କହନ୍ତୁ ତ ?

ଡିଆଡ଼ିଏ : ସେ ଲୋକଟା କ'ଣ କରୁଚି ନକରୁଚି ତା'ର କିଛି ଖବର.... ।

ସଦାଶିବ, "ସାବାସ୍, ଡିଆଡ଼ିଏ, ସାବାସ । ଠିକ୍ କଥା ମନେ କରିଦେଲ" କହି ସଦାଶିବ ବାବୁ ଦମ୍ ଦମ୍ କରି ଶିଡ଼ି ଉପରେ ଶିଡ଼ି ଓହ୍ଲାଇ ଏକାବେଳକେ ଯାଇ ମ୍ୟାନେଜରଙ୍କ ଖାସ୍ ଅଫିସରେ ହାଜର । ସେଠାରେ ଦୁଇଅଣା ପଇସା ଦଣ୍ଡ ଦେଇ ଟେଲିଫୋନ୍ ବହିଟାରୁ ଗୋଟାଏ ଠିକଣା ବାହାର କରି ଟେଲିଫୋନ ମୁହଁଟା ତାଙ୍କ ମୁହଁ ପାଖରେ ଓ ଆରପଟଟା କାନ ପାଖରେ ଦେଇ ଡାକିଲେ, "ବ୍ରଜବାବୁ, ବ୍ରଜବାବୁ !" ଅପର ପକ୍ଷରୁ କ'ଣ ଜବାବ ଆସିଲା, ତା'ତ ଆମର ଜାଣିବାର କିଛି ଉପାୟ ନାହିଁ, ଯାହା ସଦାଶିବ ବାବୁ କହୁଥାନ୍ତି, ସେତିକି ମାତ୍ର ଆମ୍ଭେମାନେ ଶୁଣିଚୁଁ ଓ ଲେଖିଚୁଁ । ଶିବବାବୁ କିଛି ସମୟ ଗଲାପରେ ପୁଣି କହିଲେ, "ବ୍ରଜବାବୁଙ୍କୁ ଦରକାର, ବ୍ରଜମୋହନ ରାୟ ।" ପୁଣି କିଛି ସମୟ ଗଲା ପରେ, "ମୁଁ ସଦାଶିବ, ସଦାଶିବ ମିଶ୍ର, ବ୍ରଜବାବୁ ନା ?....ହଁ, ହଁ, ମୁଁ ଆଜି ସକାଳେ ଆସି ପହଞ୍ଚିଚି ତ.... "କ'ଣ କହିଲେ ?....ହଁ ଏଇ ଇମ୍ପେରିଆଲ କ୍ଲବରେ ଅଛି ।....ଆଚ୍ଛା, ବେଶ୍, ସେ ପରେ ଦେଖାଯିବ । ଆପଣ ଆସିଲେ କଥାବାର୍ତ୍ତା ହବା ।....ଆଚ୍ଛା, ହବ ସେ ସେତେବେଳେ ।....ମୁଁ କହୁଥିଲି, କେହି ବିଶ୍ୱାସୀ ଓ ଚାଲାକି ଲୋକ ଅଛି ଯେ ମୋ ପାଇଁ ଗୋଟାଏ ସନ୍ଧାନ ରଖିପାରିବ ? ବିଶ୍ୱାସୀ ଓ ଖୁବ୍ ଚାଲାକ ହବା ଦରକାର ।....ହଁ, ହେ, ପଇସା ନବ ନାହିଁ ତ କ'ଣ ମାଗଣା କରିବ !....ଅଛି ? ସେ ବର୍ତ୍ତମାନ ଆସିପାରିବ ? ଏଇ ମୁହୂର୍ତ୍ତରେ । ଖଣ୍ଡେ ଭଡ଼ା ମଟର

ନେଇପାରେ । ଆପତ୍ତି ନାହିଁ । ସେ ଲୋକଟାକୁ ପଠେଇ ଦେଉଚ ? ନା, ମୋର ବର୍ତ୍ତମାନ ଗପ କରିବାକୁ ବେଳ ନାହିଁ । ପରେ ଆସ, କଥାବାର୍ତ୍ତା ହବା ।" କହି ସେ ଖଟ୍‌କରି ଟେଲିଫୋନଟା ଟେବୁଲ୍ ଉପରେ ଥୋଇଦେଲେ । ମେନେଜରଙ୍କୁ କହିଗଲେ ଯେ ତାଙ୍କୁ ଯଦି କେହି ଖୋଜେ, ତାକୁ ତୁରନ୍ତ ଉପରକୁ ପଠାଇଦେବେ । ସଦାଶିବ ବାବୁ ଯାଇ ତାଙ୍କ ଘରେ ବସି ରହିଲେ । ପ୍ରାୟ ଅଧଘଣ୍ଟାକ ମଧ୍ୟରେ ଜଣେ ଯୁବକ ଆସି ସେଠାରେ ପହଞ୍ଚିଲେ । ପିନ୍ଧିବାରେ ସରୁ ସୂକ୍ଷ୍ମ ଫୁଲ କିନାରି ଧୋତି, ଦେହରେ ଫୁଲବାଲା ସରୁ କନାର ପଞ୍ଜାବି, ମୁଣ୍ଡଟି ଚହଟ-ଚିକଣିଆ ମାଙ୍ଗପକା । ଦେହରୁ ଅଟୋଦିଲ୍ ବାହାରର ଗନ୍ଧ ଉଛୁଳି ପଡୁଚି । ଗୋଡ଼ରେ ହଳିଏ ପାଲିସ୍ ଚମତ୍କାର କନପୁରୀ ଅଧା ଜୋତା । ଯୁବକ ଘର ଭିତରକୁ ପଶିଆସି ପଚାରିଲେ, "ଆପଣଙ୍କ ନାମ ସଦାଶିବ ବାବୁ ? ମୋର ନାମ ଶ୍ରୀମାନ ଅବନୀନ୍ଦ୍ର କୁମାର ଘୋଷ । ମତେ ବ୍ରଜବାବୁ ପଠେଇ ଦେଇଛନ୍ତି ।"

ସଦାଶିବ ୟାଙ୍କର ଛଇ ଛଟକ ଦେଖି ଦବି ଯାଇଥିଲେ । କହିଲେ, "ତୁମେ କି ଏ କାମକୁ ଭାଜନ ହେ ବାବୁ !"

ଅବନୀ : କାମଟା ଆଗେ କହନ୍ତୁ, ମୋର ମନେହୁଏ ପାରିବି । ଲୋକଙ୍କର ପିଛା ଧରି ଡାହାଳ କୁକୁର ପରି ତାକୁ ବ୍ୟତିବ୍ୟସ୍ତ କରିବାଠାରୁ ତା'ର ପିଠିରେ ଗୋଟାଏ ଅଧେ ଛୁରୀ ବସାଇବା ପର୍ଯ୍ୟନ୍ତ ସବୁ ମୁଁ ପାରେଁ । ତେବେ ଟଙ୍କା ନେଇ ସବୁ । ଯେମିତି ପାଉଣା ସେମିତି ଦେଉଣା ।

ସଦାଶିବ : ତୁମେ ତ ଆଛାଲୋକ ହେ ବାବୁ ! ତୁମକୁ ଡାହାଳ କୁକୁର ହବାପାଇଁ, କାହା ପିଠିରେ ଛୁରୀ ମାରିବା ପାଇଁ କିଏ କହିଲା ? ଆଛା ଲୋକଟାଏ ତ ବ୍ରଜ ପଠାଇଲା ।

ଅବନୀ : ଆହା, ଚିଡ଼ କାହିଁକି ମହାଶୟ, ଚିଡ଼ କାହିଁକି ? କଥାଟା ଖୋଲି କହନା, ମୁଁ ଖାଲି କହିଲି ପଇସା ପାଇଲେ ମୁଁ ସବୁ କରିପାରେଁ ।

ସଦାଶିବ : କଥା ବେଶି କିଛି ନୁହେଁ । ଆଜି ସନ୍ଧ୍ୟାବେଳେ ମେଛୁଆ ବଜାର ଷ୍ଟ୍ରୀଟ୍‌ର ନଂ ୫୨ ଘରକୁ ଜଣେ ବାରବୁଲା ଯୁବକ ଯିବ । ତୁମର କାମ ହଉଚି, ତୁମେ ଦେଖିବ ସେ ସେଠାରୁ ବାହାରି କୁଆଡ଼େ ଗଲା, କ'ଣ କଲା । ସେ ଯଦି କଲିକତା ଛାଡ଼ିବାର ଉଦ୍ୟମ କରେ ତା'ହେଲେ କ୍ଷଣେମାତ୍ର ବିଳମ୍ବ ନକରି ମତେ ଖବର ଦବ ।

ଅବନୀ : ଓଃ, ଏଇ କଥା ତ, ତା' ଖୁବ୍ ପାରିବି । ମୋର ଇନାମ୍ ?

ସଦାଶିବ : କେତେ ଆଉ ନବ ? ଏଇ ସାମାନ୍ୟ କାର୍ଯ୍ୟ ତ ? ପାଞ୍ଚ ଦଶ ଟଙ୍କା ଯାହା ହବ କାମ ସରିଲେ ନେଇଯିବ ।

ଅବନୀ : ଏ କଥାଟି ହଉ ନାହିଁ ବାପଧନ, ଆମି ସେ ଚାଲାକିରେ ଭୁଲିବ ନାହିଁ । କଥା ହଉଚି ମତେ ଦିନାଦି ଦଶୋଟି କରି ଟଙ୍କା ଦେବ ତ ମୁଁ ଏ କାମରେ ହାତ ଦେବି; ତା' ନହେଲେ ଘରର ଛୁଆ ଘରକୁ ଯାଅ ।

ଶିବ : ଏଇ କଥାକୁ ଦଶ ଟଙ୍କା ? ବଡ଼ ବେଶି ନେ....

ଅବନୀ : ତୁମକୁ ବଡ଼ ବେଶି ହେଲା ତ ମୁଁ ଆଉ କ'ଣ କରିବି ? କ'ଣ କହୁଚ, ମୁଁ ଯିବି ଯେ, ମୋର ଆଉ କାମ ଅଛି ।

ସଦାଶିବ : ତାହାହିଁ ହଉ । ତୁମେ କିନ୍ତୁ ମତେ ସକାଳେ ଓ ସନ୍ଧ୍ୟାରେ ଦୁଇଥର ସବୁ ହାଲ ଜଣାଇବ ।

ଅବନୀ : ତା' ହବ । ଆଉ ଗୋଟିଏ କଥା, ମୁଁ ଏ ଟଙ୍କା ସକାଳବେଳା ପାଞ୍ଚ ଟଙ୍କା ଓ ଉପରବେଳା ପାଞ୍ଚ ଟଙ୍କା କରି ନେବି । ମୋର ପାଞ୍ଚଟି ଟଙ୍କା ଦିଅ ।

ସଦାଶିବ ବାବୁ ବାଧ୍ୟ ହୋଇ ପାଞ୍ଚୋଟି ଟଙ୍କା କାଢ଼ିଦେଲେ । ଅବନୀ ବାବୁ ସେତକ ପକେଟରେ ପୂରାଇ ଜୋତା ମଚ୍ ମଚ୍‌ରେ ଘର କମ୍ପାଇ ଅତର ଗନ୍ଧରେ ମନ ମହକାଇ ଚାଲିଗଲେ ।



## ଏଗାର

ସେଦିନ ଚାରିଟା ବେଳେ ପ୍ରମଥ ବାବୁ ତାଙ୍କର ଶୋଇଲା ଘରେ ଆରାମ ଚୌକିରେ ପଡ଼ିଥା'ନ୍ତି । ପାଖରେ ଗୋଟାଏ ଟୁଲ୍ ଉପରେ ଚା' ବାଟି ଓ ଥାଳିଆ ଏବଂ ଆଉ ଗୋଟାଏ ଥାଳିଆରେ ଲୁଚି ସାତ ଆଠଖଣ୍ଡ ଓ ରସଗୋଲା ଗଣ୍ଡା ଚାରି ଏବଂ ଗୋଟାଏ କାଚ ଗିଲାସରେ ଗିଲାସେ ପାଣି । ପ୍ରମଥ ବାବୁଙ୍କର କିନ୍ତୁ ସେ ଦିଗକୁ ନଜର ନାହିଁ । ସେ କ'ଣ ଗୋଟାଏ ବିଷୟ ଏକ ମନରେ ଭାବୁଚନ୍ତି । ତାଙ୍କର କୁଞ୍ଚିତ ଲଲାଟରୁ ଜଣାପଡୁଚି ଯେପରି ସେ କିଛି ସ୍ଥିର କରିପାରୁ ନାହାନ୍ତି । ଏହିପରି ପ୍ରାୟ ଅଧଘଣ୍ଟାଏ ପର୍ଯ୍ୟନ୍ତ ବସିଲା ପରେ ହଠାତ୍ ତାଙ୍କର ମୁହଁ ଉଜ୍ଜ୍ୱଳ ହୋଇଗଲା । ସେ ଚଟ୍‌ପଟ୍ ବସିପଡ଼ି ଚୌକି ହାତରେ ଗୋଟାଏ ଚାପଡ଼ ମାରିଦେଲେ । ତା'ପରେ ଡାକ ପକାଇଲେ "ମେନକା !" ଆମ୍ଭମାନଙ୍କର ପରିଚିତ ପୂର୍ବ ରାତ୍ରିର ସେ ଯୁବତୀଟି ଆସି ପହଞ୍ଚିଲେ । ଯୁବତୀ ଦେଖିବାକୁ ଅସୁନ୍ଦରୀ ନୁହନ୍ତି, ତେବେ ନାୟିକାମାନଙ୍କର ପରି ସରଳ, ନିଟୋଳ, ନିର୍ମଳ ସୁନ୍ଦରୀ ନୁହନ୍ତି । ତାଙ୍କର ବର୍ଣ୍ଣ ତପ୍ତ କାଞ୍ଚନବର୍ଣ୍ଣ ନହେଲେ ମଧ୍ୟ ଅମାବାସ୍ୟା ରାତି ନୁହେଁ, କି ଅଳନ୍ଧୁ କଳା ନୁହେଁ । ତାଙ୍କର ମୁହଁ ଚନ୍ଦ୍ର ସହିତ ଉପମା ନଖାଇଲେ ମଧ୍ୟ ସେପରି କୁତ୍ସିତ କଦାକାର ନୁହେଁ । ତାଙ୍କର ଆଖିରେ ମାଦକତା ଅଛି, ଓଠରେ ସରସତା ଅଛି, ଗାଲରେ କାମନାର ଫଗୁଖେଳ ଅଛି, ଛାତିରେ ଅଭିଳାଷର ଅମୃତଭଣ୍ଡା ଅଛି । ଏସବୁ ଥାଇ ମଧ୍ୟ ତାଙ୍କ ମୁହଁଟି କିପରି ଉଦାସ । ଆଖିତଳେ ଲମ୍ବା ଲମ୍ବା ଓ ଓସାରିଆ କଳାଦାଗ....ଯେପରି କେତେ କ'ଣ ଦୁର୍ଭାବନାର ବା କେତେ ରାତିର ଅନିଦ୍ରାର ଛାପ ସେଠାରେ ରହିଯାଇଛି । ତାଙ୍କର ସମୁଦାୟ ମୁହଁରେ ଗୋଟାଏ ଭୟର ଛାଇ ତା'ର ଶାଗୁଣା ପର ମେଲି ବସିଲା ପରି ଜଣାପଡୁଚି । ସେ ଆସି ଠିଆହେଲେ । ପ୍ରମଥ ବାବୁ କହିଲେ, "ମା' ବସ ! ତତେ ମୋର ଅନେକ କଥା କହିବାର ଅଛି ।" ମେନକା ଜଳଖିଆ ସରଞ୍ଜାମ ଗୁଡ଼ାକ ପ୍ରତି ଦୃଷ୍ଟି ପକାଇ କହିଲେ, "ତୁମର ଜଳଖିଆ ହୋଇ ନାହିଁ ଯେ ।"

ପ୍ରମଥ : ସେ ହବ ଏକ୍ଷଣି, ତୁ ବସ ତ !

ମେନକା ବସିଲେ । ପ୍ରମଥ ତାଙ୍କ ମୁଣ୍ଡ ଉପରେ ହାତ ରଖି, ସ୍ୱରଟାକୁ କୋମଳ କରି କହିଲେ, "ମା' ତୋର ବୟସ ହୋଇଚି । ମୁଁ ଏ ପର୍ଯ୍ୟନ୍ତ ଗୋଟିଏ ସତ୍‌ପାତ୍ର ଖୋଜୁଥିଲି, ତା' ହାତରେ ତତେ ସମର୍ପିଦେଲେ ମୁଁ ନିଶ୍ଚିନ୍ତ ହୁଅନ୍ତି ବୋଲି । ବର୍ତ୍ତମାନ ମତେ ସେ ସୁବିଧା ମିଳିଚି । ମୋର ବିଶ୍ୱାସ, ତୁ ମୋର ଏ ଇଚ୍ଛାର ପ୍ରତିକୂଳ ହବୁ ନାହିଁ ।

ମେନକାଙ୍କ ମୁହଁ ଶୁଖି କଳାକାଠ ପଡ଼ିଗଲା । ସେ କ'ଣ ଯେପରି କହିବାକୁ ଯାଉଥିଲେ; କିନ୍ତୁ ପୁଣି କ'ଣ ଭାବି ଦାନ୍ତରେ ଓଠଟା କାମୁଡ଼ି ଧରି ଚୁପ୍‌ହୋଇ ବସିରହିଲେ । ପ୍ରମଥ ବାବୁ ତାଙ୍କର ପିଠିରେ ହାତ ବୁଲେଇ କରି ଦଉ ଦଉ କହିଲେ, "କି ମା ! ତୁନି ହୋଇ ରହିଲୁ ଯେ !"

ମେନକା : କାହିଁକି ବାବା, ଆଜି ତୁମର ଏ ଦୁଃଖିନୀ କନ୍ୟା ପ୍ରତି ଏତେ ନିର୍ଦ୍ଦୟ, ଏତେ ନିଷ୍ଠୁର ? ମୁଁ ପ୍ରାଣପଣ ଖାଟି ତୁମର ସେବା କରିବାରେ ଏ ଦେହ ମନ ଢାଳି ଦେଇଚି, ତା'ର ବଦଳି ମାତ୍ର ମାଗୁଚି ଗଣ୍ଡେ ଖାଇବାକୁ ଓ ଖଣ୍ଡେ ପିନ୍ଧିବାକୁ । ଗୋଟାଏ ଚାକରାଣୀ ରଖିଲେ ତ ତାକୁ ଏହା ଦବାକୁ ପଡ଼ନ୍ତା । ତାହାହେଲେ ମତେ ଏଇତକ ଦବା ପାଇଁ ଏତେ କୃପଣ କାହିଁକି ବାବା ? ତୁମର ଗୋଡ଼ ତଳେ ପଡୁଚି ବାବା, ମତେ ସେ କଥା କହନାହିଁ ।

କହି ମେନକା ପ୍ରମଥ ବାବୁଙ୍କର ଗୋଡ଼ ଧରି କାନ୍ଦିପକାଇଲେ । ପ୍ରମଥ ବାବୁଙ୍କ ମୁହଁରୁ ଓ ସ୍ୱରରୁ କୋମଳତା ହଠାତ୍ କୁଆଡ଼େ ଉଭେଇଗଲା । ସେ ଜୋରରେ ଗୋଡ଼ଟା ଟାଣିନେଇ ରୁକ୍ଷ ସ୍ୱରରେ କହିଲେ, "ଦେଖ, ମେନକା ! ମତେ ଏ ଶବ, ଏ ସୁଆଗଗୁଡ଼ାକ ଆଦୌ ଭଲଲାଗେନାହିଁ । ଆଜି ଏତେ ସୁଆଗ କାହିଁକି କହ ଦେଖି ? ସ୍ୱାମୀର ଚୁମ୍ବନ ଅପେକ୍ଷା ଚାବୁକ ପ୍ରହାର କ'ଣ ବେଶି ମିଠା ଲାଗେ ?"

ମେନକା : ସମୟ ସମୟରେ ମିଠା ଲାଗେ । ଯାହାକୁ ଭଲ ନ ପାଏଁ, ତା'ର ଚୁମ୍ବନ ଅପେକ୍ଷା ଜଳନ୍ତା ନିଆଁ ମଧ୍ୟ କୋମଳ ଓ ତୃପ୍ତିକର ।

ପ୍ରମଥ : ହୁଁ, ତୁ କି କାହାକୁ ଭଲପାଉ ?

ମେନକା ଏତେ ଜଲଦି 'ନା' କଥାଟା କହିପକାଇ ପରେ ତାଙ୍କର ନାଲି ଟହଟହ ମୁହଁକୁ ଏତେ ଜଲଦି ନୁଆଁଇଦେଲେ ଯେ ପ୍ରମଥ ବାବୁ ଯଦି ନିଜ ଚିନ୍ତାରେ ନିଜେ ବୁଡ଼ିରହିନଥାନ୍ତେ, ତା'ହେଲେ କଥାଟା ଯେ ମିଛ, ତାହା ସେ ଅକ୍ଳେଶରେ ଅନୁମାନ କରିନେଇପାରିଥାନ୍ତେ । ଯାହାହେଉ, ସେ ତା' ଦେଖିଲେ ନାହିଁ । କହିଲେ, "ତାହେଲେ ମୁଁ ଯାହାକୁ ଠିକ୍ କରିଚି ତାକୁ ଭଲପାଇବାରେ ତୋର ଆପତ୍ତି କ'ଣ ?"

ମେନକା : ଭଲ ପାଇବା କି କାହାରି ବରାଦରେ ବା ଇଙ୍ଗିତରେ ଆସେ ବାବା ? ସେ ଯେ ସ୍ୱୟମ୍ଭୁ ।

ପ୍ରମଥ : ଆରେ ରଖିଦେ ତୋର ଉପନ୍ୟାସର ରୂପକଥା ! ତତେ ଏ ବିବାହ କରିବାକୁ ହବ ।

ମେନକା : ତା'ହେଲେ ବିବାହ ଦିନ ରାତିରେ ମୁଁ ଆତ୍ମହତ୍ୟା କରିବି ।

ପ୍ରମଥ : ତା' କର, ସେଥିରେ ବରଂ ମୋର ଲାଭ; କିନ୍ତୁ ତତେ ବିବାହ କରିବାକୁଇ ହବ ।

ତା'ପରେ ସେ ଉଠିଯାଇ ଆଲମାରି ଫିଟାଇ ସେଥିରୁ ଦୁଇ ଖଣ୍ଡ ସିଠାମ କାଗଜ ବାହାର କଲେ ଓ ଦୁଆତ କଲମ ଘେନି ସେଥିରେ କ'ଣ ଗୁଡ଼ାଏ ଲେଖିଲେ । ତା'ପରେ କହିଲେ, "ଏ କାଗଜରେ ଦସ୍ତଖତ କର ତ ।" ଏଇଠି ମେନକା କଲମଟା ନ ଧରି କହିଲେ, "ଏଥିରେ ସବୁ କ'ଣ ଲେଖାହେଲା, ଆଉ ମୁଁ ବା ଦସ୍ତଖତ କରିବି କାହିଁକି ?"

ପ୍ରମଥ : ଏଥିରେ ଲେଖା ହେଲା ଯେ ତୋର ଯାହା କିଛି ସମ୍ପତ୍ତି ଅଛି ବା ଯାହା କିଛି ସମ୍ପତ୍ତିର ତୁ ଉତ୍ତରାଧିକାରିଣୀ ଅଛୁ ବା ହେବୁ, ସେ ସମସ୍ତର ରକ୍ଷଣାବେକ୍ଷଣ ଭାର ଓ ଦାୟିତ୍ୱ ମୋ ଉପରେ । ତୁ ବଞ୍ଚିଥିବା ପର୍ଯ୍ୟନ୍ତ ମାତ୍ର ପଚାଶ ଟଙ୍କା କରି ମାସରେ ଭତ୍ତା ପାଇବୁ ।

ମେନକା : କିନ୍ତୁ ମୋର ତ ସମ୍ପତ୍ତି କିଛି ନାହିଁ କି ତୁମ ଛଡ଼ା ଆଉ କାହାରି ଉତ୍ତରାଧିକାରୀ ହବା ତ ସମ୍ଭବ ନୁହେଁ ।

ପ୍ରମଥ : ଅତଏବ ଏ କାଗଜଟା ଦସ୍ତଖତ କରିବାରେ ତୋର କୌଣସି ଆପତ୍ତି ହେବାର ଉଚିତ ନୁହେଁ ।

ମେନକା : ନା, ଏହା ଭିତରେ କିଛି ରହସ୍ୟ ଅଛି । ତୁମେ ମତେ କ'ଣ ଗୋଟାଏ ଖାପଚରେ ପକାଇବାର ଚେଷ୍ଟା କରୁଚ । ନା, ମୁଁ ଦସ୍ତଖତ କରିବି ନାହିଁ ।

ପ୍ରମଥଙ୍କର ଓଠ ଦୁଇଟା ଲମ୍ବିଗଲା । ଦାନ୍ତଗୁଡ଼ାକ ବାହାରିପଡ଼ିଲା—ଯେପରି ବାଘ ଦାନ୍ତ ଦେଖାଏ । ସେ କହିଲେ, "ଦେଖ, ଦସ୍ତଖତ କର, କଥା ମାନ, ତା' ନହେଲେ ଭଲ ହବ ନାହିଁ କହୁଚି ।"

ମେନକାଙ୍କର ତୋଟି ଶୁଖିଆସିଲାଣି, ତଥାପି ସେ କହିଲେ, "ନା, ମୁଁ କରିବି ନାହିଁ ।"

ପ୍ରମଥ : "ଆଚ୍ଛା !" ଏହା କହି ସେ ଆଲମାରି ଉପରୁ ଗୋଟାଏ ଚାବୁକ ବାଡ଼ି ଆଣିଲେ । ଚାବୁକଟା ଧରି ମେନକାଙ୍କ ସମ୍ମୁଖରେ ଠିଆହୋଇ କହିଲେ, "କର ଦସ୍ତଖତ !" ମେନକାଙ୍କର ଦେହ ବରଡ଼ାପତ୍ର ପରି ଥରୁଚି, ଓଠ କାଠ ପରି ଥରୁଚି, ଆଖିରୁ ବାମ୍ଫ ବାହାରିଯାଉଚି, ତଥାପି ସେ କହିଲେ—"ନା, କରିବି ନାହିଁ ।"

ତା'ପରେ ସେ ନୃଶଂସ ପଟାପଟ୍ ଚାବୁକ ଲଗାଇବାକୁ ଲାଗିଲା । ମେନକା ପଳାଇଯିବାର ଚେଷ୍ଟାକଲେ; କିନ୍ତୁ ଦେଖିଲେ ଦରଜା ଓ ତାଙ୍କ ମଝିରେ ଏ ଯମ । ଚିତ୍କାର କରି କାନ୍ଦିଉଠିଲେ । କେହି ଆସିଲେ ନାହିଁ । କୋମଳ ଯୁବତୀ ଶରୀର, କେତେ ସହିବ, ପିଠି ଫାଟି ରକ୍ତ ବହିଲାଣି । ସେ ଆଉ ସମ୍ଭାଳି ପାରିଲେନାହିଁ । ଗୋଡ଼ତଳେ ପଡ଼ିଯାଇ କହିଲେ, "ମାରନା, ମାରନା, ମୁଁ ଦସ୍ତଖତ କରିବି ।" ଚାବୁକ ବନ୍ଦ ହେଲା । ମେନକା ଉଠି ଥର ଥର ହାତରେ ଯଥା ସ୍ଥାନରେ ଦୁଇଟା ଦସ୍ତଖତ କରିଦେଲେ । ନୃଶଂସ ପ୍ରମଥ ତାଙ୍କର ଦୁଇଟା ଟିପଚିହ୍ନ ମଧ୍ୟ ନେଲେ । ଏଇ ସମୟରେ ଚାକର ଆସି ଖବର ଦେଲା—"ବାବୁ, ସକାଳବେଳାର ସେ ଟୋକାଟା ଆସିଚି ।" "ଆଚ୍ଛା, ତାକୁ ବୈଠକଖାନାକୁ ନେଇ ଆସ," କହି ଚାକରକୁ ବିଦାୟ ଦେଲେ । ତା'ପରେ ମେନକାଙ୍କ ଆଡ଼କୁ ବୁଲିପଡ଼ି କହିଲେ, "ଦେଖ, ତୋର ଭବିଷ୍ୟତ ସ୍ୱାମୀ ଆସିଚି । ଯା, ଲୁଗାପଟା

ପିନ୍ଧି ବେଶ-ଭୂଷା ହୋଇ ଆସିବୁ । ସାବଧାନ କରିଦେଉଚି, କଥାରେ ବା କାର୍ଯ୍ୟରେ ମୁଁ ଯଦି ତୋର କିଛି ବେଖାପ ଦେଖେ, ତାହେଲେ ଯାର ଶତଗୁଣ କଠିନ ଦଣ୍ଡ ଦେବି । ତୋର ହାବଭାବଦ୍ୱାରା ଯେପରି ତାକୁ ବଶୀଭୂତ କରୁ !" ତା'ପରେ ସେ ଚାଲିଗଲେ ବୈଠକଖାନାକୁ । ମେନକା ସେହି ସ୍ଥାନରେ ସେହିପରି ଭାବରେ ପ୍ରାୟ ଦଶପନ୍ଦର ମିନିଟ ପର୍ଯ୍ୟନ୍ତ ବସିରହିଲେ; ତା'ପରେ ଗୋଟାଏ ଦୀର୍ଘନିଃଶ୍ୱାସ ଛାଡ଼ି ସେ ସ୍ଥାନରୁ ଉଠିଗଲେ । ତାଙ୍କ ନିଜ ଘର ଭିତରେ ଗୋଟିଏ ପେଡ଼ି ଫିଟାଇ ଖଣ୍ଡିଏ କଳା ଶାଢ଼ି କାଢ଼ିଲେ । କେଜାଣି କାହିଁକି ସେଉଟାକୁ ଧୋଇ କୋଠା ଉପରକୁ ନେଲେ; ଶୁଖେଇବାକୁ ସାଙ୍ଗରେ ଦୁଇ ଖଣ୍ଡ ବାଉଁଶ ବାଡ଼ି ମଧ୍ୟ ନେଲେ । କୋଠା ଉପରେ ଲୁଗାଟାକୁ ଶୁଖେଇବାର ଗୋଟାଏ ନୂଆ ଫନ୍ଦି ଆମ୍ଭେମାନେ ଦେଖିବାକୁ ପାଇଲୁଁ । ବାଉଁଶ ଦୁଇଟା ଛାତବାଡ଼ ଦିହରେ ବାନ୍ଧି ଲୁଗାଟାକୁ ଏପରି ଭାବରେ ତା' ଦେହରେ ଟାଣିଦେଲେ--ଦେଖାଗଲା ଯେପରି ତଙ୍ଗା ଦେହରେ ଗୋଟାଏ କଳାରଙ୍ଗର ପାଲ ଟଣାହୋଇଚି । ତା'ପରେ ସେ ତାଙ୍କ ଘରର ପୂର୍ବ-ଦକ୍ଷିଣ ମୁହଁ ହୋଇ କିଛି ସମୟ ଚାହିଁ ଠିଆହେଲେ । ମୁହଁରେ ବ୍ୟଗ୍ରତାର ଗୋଟାଏ ଚିହ୍ନ । ଦଶ ପନ୍ଦର ମିନିଟ୍ ଏହିପରି ଭାବରେ ଚାହିଁରହିବା ପରେ, କ'ଣ ସେ ଦେଖିଲେ କେଜାଣି ତାଙ୍କର ସେ ଶୁଷ୍କ ମୁଖରେ ଟିକିଏ ଆଶ୍ୱସ୍ତିର ଚିହ୍ନ ଦେଖାଗଲା । ସେ ତରବର ହୋଇ ଲୁଗାକୁ ଫିଟାଇ ପୁଣି ଘର ଭିତରକୁ ଚାଲିଗଲେ ।

ଏଣେ ପ୍ରମଥ ବାବୁ ବୈଠକଖାନାକୁ ଆସି ଦେଖନ୍ତି ଯେ ସେ ବାରବୁଲା ଟୋକାଟା ଗୋଟାଏ ଚୌକି ମାଡି ବସିଚି । ପ୍ରମଥ ବାବୁ ପଶିବାର ଦେଖି ସେ ଉଠି ଠିଆହେଲା ଏବଂ ନମସ୍କାରଟିଏ କରି କହିଲା, "ଆପଣଙ୍କର ନାମ କି ପ୍ରମଥ ବାବୁ ?" ପ୍ରମଥ ବାବୁ ତାଙ୍କ ହାତ ଧରି ବୁହେ ଝିଙ୍କାଝିଙ୍କି କରି କହିଲେ, "ବସ, ବସ ବାବୁ ! ଆପଣଙ୍କର ନାମ ?"

ଧୋଇ : ମୋର ନାମ ସଙ୍ଗରେ କିଛି ଦରକାର ନାହିଁ ବୋଧହୁଏ ଆପଣଙ୍କର । ଆପଣ ସଦାଶିବ ମିଶ୍ରଙ୍କୁ ଚିହ୍ନନ୍ତି ?

ପ୍ରମଥ : ଆରେ ତା' ଚିହ୍ନେନାଇଁ ? ଏକାସାଙ୍ଗରେ ପାଠ ପଢ଼ିଥିଲୁଁ, ଏକା ସାଙ୍ଗରେ ଥିଏଟର ବାଇସ୍କୋପ ଦେଖିଥିଲୁଁ କେତେ ଦୁଷ୍ଟାମି, ଦୁଷ୍ଟାମି, କଲେଜ-ଜୀବନରେ ଏକା ସାଙ୍ଗରେ ହୋଇଯାଇଛି । ମୁଁ ସଦାଶିବକୁ ନ ଚିହ୍ନେ ତ, ଆଉ ଚିହ୍ନେ କିଏ ? ନାହେ, କ'ଣ କହୁଚ ?

ଧୋଇ : କିନ୍ତୁ ଆଜି ସକାଳେ ଆପଣ ନାହିଁ କଲେ ଯେ ତାଙ୍କୁ ଚିହ୍ନନ୍ତି ନାହିଁ ବୋଲି ?

ପ୍ରମଥ : ହଁ, ସେଇକଥା ମୁଁ କହିବାକୁ ଯାଉଥିଲି । ନାହିଁ କଲି କାହିଁକି ଜାଣ ? ସଦାଶିବ ସେତେବେଳେ ଏଇ ବୈଠକଖାନାରେ ବସିଥିଲା । ତା' ସାଙ୍ଗରେ ଆଉ ଜଣେ ଚୂଟିଆ ମଳିମୁଣ୍ଡା ବ୍ରାହ୍ମଣ ବି ଥିଲା । ତୁମକୁ ସେମାନେ ଦେଖି କେଜାଣି କାହିଁକି ବଡ଼ ବ୍ୟତିବ୍ୟସ୍ତ ହୋଇଉଠିଲେ । ସେଇମାନଙ୍କର ଅନୁରୋଧରେ ମୁଁ 'ସେ ନାଇଁ' ବୋଲି କହିଥିଲି । ନା ହେ କ'ଣ କହୁଚ ? କାହିଁକି ବାବୁ, ସଦାଶିବ ଓ ତୁମ ଭିତରେ ଏପରି କ'ଣ ଅଛି ଯେ ସେ ତୁମକୁ ଲୁଚିବୁଲୁଚି ?

ଧୋଇ : ମତେ ଲୁଚିବସିଚନ୍ତି ସେ କାହିଁକି ! ତାଙ୍କ ମୋ ମଧ୍ୟରେ ସେଇ ବାଜି ବ୍ୟାପାର ଛଡ଼ା ତ ଆଉ କିଛି ନାହିଁ ?

ପ୍ରମଥ : ବାଜି ! କି ବାଜି ହେ ବାବୁ ?

ଧୋଇ : ସେ ବିଶେଷ କିଛି ନୁହେଁ । ସେ ବାଜି ମାରିଥିଲେ ଯେ ମୁଁ ଯଦି କୋଡ଼ିଏ ଦିନ ମଧ୍ୟରେ ମାତ୍ର ଗୋଟିଏ ଟଙ୍କା ଘେନି ପୁରୀରୁ କଲିକତା ଯିବି ଓ ଆସିବି, ତାହେଲେ ସେ ୫୦୦ ଟଙ୍କା ଛାଡ଼ିଯିବେ ।

ପ୍ରମଥ : ହୁଁ, ଚାଲାକିଟା ମନ୍ଦ ନୁହେଁ ତ, ନା ହେ କ'ଣ କହୁଚ ?

ଧୋଇ : ଚାଲାକି ? ଏଥିରେ ଚାଲାକି କ'ଣ ଅଛି ମୁଁ ତ ଦେଖିପାରୁନାହିଁ ।

ପ୍ରମଥ : ସେ ମୋ ଘରକୁ ଆଜି କାହିଁକି ଆସିଥିଲା ଜାଣନ୍ତି ?

ଧୋଇ : ମୁଁ କିପରି ଜାଣିବି ?

ପ୍ରମଥ : ସେ ବଡ଼ ସାଙ୍ଘାତିକ ବ୍ୟାପାର । ତୁମକୁ କହିବି ! ନା, କହିବି ନାହିଁ । କହିଲେ ବା କ୍ଷତି କ'ଣ ? ନା ହେ କ'ଣ କହୁଚ ?

ଧୋଇବାବୁ ତାଙ୍କ ଆଡ଼କୁ ବଲବଲ କରି ଚାହିଁରହିଲେ । ପ୍ରମଥ କହିଲାଗିଲେ, "ସେ ଆସିଥିଲା, ମତେ ଅନୁରୋଧ କରିବାକୁ ଯେ, ମୁଁ ଜଣେ ଗୁଣ୍ଡା ଠିକ୍ କରିଦେଲେ ସେ ତୁମକୁ ମାରିବ—"

ଧୋଇ : ମତେ ମାରିବ ? କାହିଁକି ? ତାଙ୍କ ମୋ ଭିତରେ ତ ସେପରି କିଛି ସମ୍ବନ୍ଧ ନାହିଁ, ସେ ମତେ ମାରିବାକୁ ଯିବେ କାହିଁକି ?

ପ୍ରମଥ : ସେ ତୁମର ବନ୍ଧୁବାନ୍ଧବ, କି ଆତ୍ମୀୟ ସ୍ୱଜନ ନୁହେଁ ? ତୁମକୁ ମାରିପାରିଲେ ସମ୍ପତ୍ତିଟା ତା' ହାତକୁ ଯିବାର କିଛି ଆଶଙ୍କା ନାହିଁ ?

ଧୋଇ : କିଛି ମାତ୍ର ନାହିଁ । ସେ ଭିନ୍ନ ଗୋତ୍ରର, ଆମେ ଭିନ୍ନ ଗୋତ୍ରର । ମୁଁ ମଲେ ସେ ତ ସମ୍ପତ୍ତି ପାଇବେ ନାହିଁ ।

ପ୍ରମଥ : ତୁମର ଭାଇଭଉଣୀ କେତୋଟି ?

ଧୋଇ : ମୁଁ ଏକା । ମୋର ଭାଇ ଭଉଣୀ କେହି ନାହିଁ ।

ପ୍ରମଥ : ହୁଁ, ଶଳା ଚୋର କେତେ ମିଛ କଥା କହିଦେଇଗଲା । ତୁମେ ସମ୍ପତ୍ତିବାଡ଼ିଗୁଡ଼ାକ ଉଡ଼େଇ ଦେଉନାହଁ ?

ଧୋଇ : ମୁଁ ଏପର୍ଯ୍ୟନ୍ତ ସମ୍ପତ୍ତିବାଡ଼ି କ'ଣ ଜାଣେ ନାହିଁ । ମା' ଦେଖାଶୁଣା କରନ୍ତି ସେଗୁଡ଼ାକର । ମୁଁ ତାଙ୍କଠାରୁ ଯେତେବେଳେ ଯାହା ଦରକାର କରେ, ନେଇ ଚଳେ ।

ପ୍ରମଥ : ଆଉରି ଚମତ୍କାର...

ଧୋଇ : କ'ଣ ସବୁ ଯେ ଆପଣ କହୁଚନ୍ତି, ମୁଁ କିଛି ବୁଝିପାରୁନାହିଁ ?

ପ୍ରମଥ : ତୁମେ ଜାଣ ସେ ମତେ କ'ଣ ସବୁ କହିଚି ? ସେ କହିଲା, ତୁମେ ତା'ର ଜଣେ ଆତ୍ମୀୟାର ବଡ଼ପୁଅ । ତୁମେ ସମ୍ପତ୍ତିବାଡ଼ିଗୁଡ଼ାକ ଉଡ଼ାଡ଼ି ଦେଉଚ ବୋଲି ତୁମ ମା' ବଡ଼ କାତର ଯେ ଅନ୍ୟ ପିଲାମାନଙ୍କ ପାଇଁ ଆଉ କିଛି ରହିବନାହିଁ । ସେଥିପାଇଁ ସେ

ଆସିଥିଲା ଯେ ତୁମକୁ ଏଠୁ ନଛାଡ଼ିଲେ ତୁମର ମା' ବିଷୟ-ଆଶୟଗୁଡ଼ାକର ଗୋଟାଏ ସୁବନ୍ଦୋବସ୍ତ କରିପାରନ୍ତେ ।

ଧୋଇ : ନା, ଆପଣ ଏଗୁଡ଼ାକ ମିଛ କହୁଚନ୍ତି । ସେ କାହିଁକି ଏସବୁ କଥା ମୋ ନାଁରେ କହନ୍ତେ...

ପ୍ରମଥ : ମୁଁ କାହିଁକି ମିଛ କହିବାକୁ ଯିବି ?

ଧୋଇ : ତା' ମଧ୍ୟ ଠିକ୍; କିନ୍ତୁ କାହିଁକି ?

ପ୍ରମଥ : ଆଚ୍ଛା, ତୁମେ ମଲେ ସମ୍ପତ୍ତିଗୁଡ଼ାକ କିଏ ପାଆନ୍ତା !

ଧୋଇ : କିଏ ଆଉ ପାଇବ ! ଆମର ୱାରସ ଇଣ୍ଡା ଭାଇନା ବୋଧହୁଏ...

ପ୍ରମଥ : ତୁମର ଏ ଲଣ୍ଡାଭାଇନା ଓ ସଦାଶିବ ମିଶ୍ରଙ୍କର କିପରି ପଡ଼େ ?

ଧୋଇ : ଏବେ କେତେଦିନ ହେଲା ମୁଁ ଦେଖିଲି ଲଣ୍ଡା ସଦାଶିବବାବୁଙ୍କ ଘରକୁ ଏଓଳି ସେଓଳି ଖୁବ୍ ଦଉଡ଼ିଧାପଡ଼ କରୁଚି ।

ପ୍ରମଥ : ଜାଣେନା, ଲଣ୍ଡାକୁ କିପରି ବାଗରେ ପାଇଚି, ବାବା, କି ବୁଦ୍ଧି, କି ସାହସ ! ଯାଉ, ତୁମେ ଭଦ୍ରଲୋକ ଘରର ପୁଅ । ଏ ପରିବେଶ କିପରି ସହି ରହିଚ ? ଆସ ତ, ତୁମେ ଆଗ ଏ ଲୁଗାପଟାଗୁଡ଼ା ଛାଡ଼ି କ୍ଷିଅର-ବାର ହୋଇପଡ଼ ।

ଧୋଇ : ନା, ମତେ ସେ ବେଳ ନାହିଁ । ମୋର ପ୍ରାୟ ଦୁଇ ଦିନ ଏଠାରେ ନଷ୍ଟ ହେଲାଣି । ମତେ ଆପଣ ଖଣ୍ଡେ ଲେଖିଦିଅନ୍ତୁ । ହଁ, ଆଚ୍ଛା କଥା ମନେପଡ଼ିଲା । ସଦାଶିବ ବାବୁ ଖଣ୍ଡେ ଚିଠି ମୋ ହାତରେ ଆପଣଙ୍କ ପାଖକୁ ଦେଇଥିଲେ ।—କହି ଚିଠିଖଣ୍ଡିଏ ବଢ଼ାଇ ଦେଲେ । ଚିଠିରେ ମାତ୍ର ଦୁଇ ଧାଡ଼ି, "ଭାଇ ପ୍ରମଥ ! ମୋର ଆର ଚିଠି ପାଇଥିବ । ଏଇ ପତ୍ରବାହକଙ୍କ କଥା ସେଥିରେ ଲେଖିଥିଲି । ଯଥାବିଧି କରିବ ।" ପ୍ରମଥ ଚିଠିଟା ପଢ଼ିସାରି କହିଲେ, "ଏଇ ଚିଠିଟା ଧରି, ତୁମେ କଲିକତା ଆସିଚ ବୋଲି ମୁଁ ଖଣ୍ଡେ ଚିଠି ତୁମ ହାତରେ ଦେଇଥାନ୍ତି, ତୁମେ ନେଇଥିଲେ ବାଜି ଜିତିଥାନ୍ତ ନା ?

ଧୋଇବାବୁ ମୁଣ୍ଡ ଟୁଙ୍ଗାରି ସମ୍ମତି ଜଣାଇଲେ । କହିଲେ, "ଚିଠିଟା ତା'ହେଲେ ଦିଅନ୍ତୁ ।"

ପ୍ରମଥ : ତୁମେ କ'ଣ ଚିଠିଟା ନେଇ ଯିବ ବୋଲି ଆଶା କରୁଚ ?

ଧୋଇ : ନିଶ୍ଚୟ, ଆଉ ମୋର କାମ କ'ଣ !

ପ୍ରମଥ : ମୁଁ ଯାହା ସବୁ କହିଲି, ସେସବୁ ପରେ ମଧ୍ୟ ତୁମେ ଯଦି ଆଶା କରିଥାଅ ଯେ ସୁରୁଖୁରୁରେ ଘରକୁ ଫେରିଯିବ ବୋଲି, ତାହେଲେ ତୁମ ଠାରୁ ବଡ଼ ବୋକା ଆଉ କେହି ନାହିଁ । ନା ହେ କ'ଣ କହୁଚ ?

ଧୋଇ : କାହିଁକି ? ଫେରି ନଯିବି କାହିଁକି ?

ପ୍ରମଥ : ବାବୁ ହେ, ସଦାଶିବ ଭାଇ ଯେ ତୁମ ପାଇଁ ଏତେ କଷ୍ଟ କରୁଚି, ସେଗୁଡ଼ାକ କ'ଣ ବୃଥା !

ଧୋଇ : କିନ୍ତୁ ଆଉ କ'ଣ ! ଆପଣ କ'ଣ ମତେ ତାଙ୍କ କଥା ଅନୁସାରେ ମାରିବେ !

ପ୍ରମଥ : ମୁଁ ନୁହଁରେ ବୋକା ! ମୁଁ ତାକୁ ଏପରି ଜବାବ ଦେଇଚି ଯେ ସେ ଆଉ ଏଠି ମୁହଁ ଦେଉନାହିଁ; କିନ୍ତୁ କଲିକତା ସହରରେ ଗୁଣ୍ଡା ଅପୂର୍ବ ନାହାନ୍ତି । ଟଙ୍କା ପଚାଶ ଷାଠିଏଟାକୁ ଗୋଟାଏ ଲୋକର ପ୍ରାଣ ନେବା ପାଇଁ ଗଣ୍ଡା ଗଣ୍ଡା ଲୋକ ଆଗୁସାର ହେବେ ।

ଧୋଇ : ତା' ସତ ହୋଇପାରେ; ମୁଁ ଶୁଣିଚି କଲିକତା ସହରରେ ସେପରି ଲୋକ ଅଛନ୍ତି । କିନ୍ତୁ ସଦାଶିବବାବୁ କାହିଁକି ମତେ ମରେଇବେ, ତା'ର କାରଣ ତ ମୁଁ ଏପର୍ଯ୍ୟନ୍ତ ଖୋଜି ପାଇଲିନାହିଁ ।

ପ୍ରମଥ : ଠିକ୍ କ'ଣ ହୋଇଚି ମୁଁ କହିପାରୁନାହିଁ । ତେବେ ଏହିପରି ଗୋଟାଏ ହୋଇଥିବ ଯେ ତୁମକୁ ମାରି ଲଣ୍ଡାକୁ ସମ୍ପତ୍ତି ଦେଇପାରିଲେ ସଦାଶିବ ଲଣ୍ଡାଠାରୁ କିଛି ଗୋଟାଏ ବଡ଼ ଲାଭ ପାଇବ । ଏପରି ଘଟଣା ବିରଳ ନୁହେଁ । ଯେଉଁମାନେ ଖବର-କାଗଜମାନଙ୍କରେ ମାଲିମକଦମା କଥାଗୁଡ଼ାକ ପଢୁଥିବେ, ସେମାନେ ଜାଣିଥିବେ ଯେ ଏପରି ଘଟଣା ଅନେକ ଘଟୁଚି ।

ଧୋଇ : ତା' ମଧ୍ୟ ସତ; କିନ୍ତୁ ସଦାଶିବବାବୁ ପଣ୍ଡିତ, ନାମଜାଦା ବିଖ୍ୟାତ ବ୍ୟକ୍ତି । ତାଙ୍କର କିଛି ପଇସାପତ୍ରର ଅଭାବ ନାହିଁ । ସେ ଏତେ ଗୋଳମାଳକୁ ପଶିବେ କାହିଁକି ?

ପ୍ରମଥ : ବାବୁ ହେ, ତୁମେ ଟୋକା, ସଂସାର ଜ୍ଞାନ ତୁମର ଢେର୍ କମ୍ । ତା' ନହେଇଥିଲେ, ଯ୍ୟା ତୁମକୁ କହିବାକୁ ପଡ଼ନ୍ତା ନାହିଁ । ପାଠ ବା ପାଣ୍ଡିତ୍ୟ ମନୁଷ୍ୟର ସ୍ୱଭାବ ବଦଳେଇ ପାରେନାହିଁ, କେବଳ ତାକୁ ଘୋଡ଼ାଇବାକୁ ଗୋଟାଏ ଆବରଣ ଯୋଗାଇ ଦିଏ । ଆଉ ସମ୍ପତ୍ତି କଥା କହିଲେ, ସେ ଗୋଟାଏ ନିଶା । ଯେତେ ପାଉଥିବ ପାଇବାର ଆଶା ସେତିକି ବଢୁଥିବ । ବିଶେଷତଃ ପାପ-ଲବ୍ଧ ଧନ । ନା ହେ, କ'ଣ କହୁଚ ? ବାବୁ, ଆଜି ରାତିଟା ଅନ୍ତତଃ ଏଠାରେ ରହିଯାଅ । କାଲି ସକାଳେ ନହେଲେ ଚାଲିଯିବ । ଜାଣିଶୁଣି ତୁମକୁ ଏ ରାତିରେ ଛାଡ଼ିଦେଲେ, ଶେଷରେ ତୁମ ହତ୍ୟାଦୋଷରେ ଆଇନ ଅନୁସାରେ ନହେଲେ ମଧ୍ୟ, ମୋ ବିବେକ ପାଖରେ ମତେ ଦାୟୀ ହେବାକୁ ପଡ଼ିବ ।

ଧୋଇବାବୁ ଦେଖିଲେ ଏତେ ଆଗ୍ରହ ଓ ଏତେ ସନ୍ଦେହକୁ ଏଡ଼ାଇ ରାତିଟାରେ ଆଶ୍ରୟ ଛାଡ଼ି ଯିବା ଉଚିତ ନୁହେଁ । ସେ ରାଜିହେଲେ । ଭଣ୍ଡାରି ଡାକରା ହେଲା । ସେ କ୍ଷିଅର-ବାଅର ହୋଇ ଗାଧୁଆପାଧୁଆ ସାରି ବୈଠକଖାନାକୁ ଆସି ଦେଖନ୍ତି ତ ଧୋବ ଲୁଗା, କମିଜ, ଗେଞ୍ଜି, ଚଟିଆ ଇତ୍ୟାଦି ସବୁ ଥୁଆହୋଇଚି । ସେ ଲୁଗା ପାଲଟି ବସିଲା ପରେ ଦେଖିଲେ ଦୁଆରଟା ମେଲା, ତାଙ୍କ ଆଡ଼କୁ ଚାହିଁଚି ଦୁଇଟି ସକଳ କୋମଳ ଷୋଡ଼ଶୀଚକ୍ଷୁ । ସେ ଉଠି ଠିଆହୋଇପଡ଼ିଲେ । ତାଙ୍କର ଭ୍ରୂଲତା କୁଞ୍ଚି ହୋଇଗଲା, ପାଲିଶିକରା ମୁଗୁନି ପଥର ଭଳି କପାଳରେ କେତେଟା ଗାର ଆଙ୍କିହୋଇ ତାଙ୍କୁ ଜଣାପଡ଼ିଲା, ଯେପରି ଏ ଆଖି ଦୁଇଟା ସେ କେଉଁଠାରେ ଦେଖିଛନ୍ତି । ଯୁବତୀ ଏହା ମଧ୍ୟରେ କବାଟଟା ମେଲାଇ ଘର ଭିତରକୁ ପଶିଆସିଛନ୍ତି । ଧୋଇବାବୁ ଦଣ୍ଡେଖଣ୍ଡେ ଅପେକ୍ଷା କରି କହିଲେ, "ଆପଣଙ୍କୁ ମୁଁ କେବେ ଆଗରୁ ଦେଖିଥିଲି କି !" ଯୁବତୀ ଚମକିପଡ଼ିଲେ । ଚକିତ ଭାବରେ ତାଙ୍କ ଆଡ଼କୁ ଚାହିଁ କହିଲେ, "ତୁମେ ! ତୁମେ ! ସେଇ କାଲି ରାତିର ବାରବୁଲା ।"

●

# ବାର

ସରନ୍ତି ସୋମବାର ମେଳାରୁ ସମସ୍ତେ ଫେରିଆସିଲେ, ଫେରିଲା ନାହିଁ କେବଳ ଧୋଇଆ । ବାବୁଆଣୀ ମହାପାତ୍ରଙ୍କୁ ଡାକି ପଚାରିଲେ, "କିଏ, ଧୋଇଆ କାହିଁ ?" ମହାପାତ୍ରେ କହିଲେ, "ମୁଁ ତ ତାକୁ ଆଉ ମେଳାରେ ଦେଖିନାହିଁ । ଭାବିଲି ତାଙ୍କ ସାଙ୍ଗସୁଖଙ୍କୁ ଘେନି ବୁଲୁଥିବ । ମୁଁ ବୁଝେ... ।" ମଦନବାବୁଙ୍କୁ ପଚାରିବାକୁ ଗଲେ । ଶୁଣିଲେ ସେ କୁଆଡ଼େ କଟକ ଗଲେଣି ବାହାରି । ଗାଁରେ ଆଉ କେତେ ଜଣଙ୍କୁ ପଚାରିଲେ; କିନ୍ତୁ କେହି କିଛି କହିପାରିଲେ ନାହିଁ । ସେ ଫେରିଆସି ଯାହା ଜାଣିଥିଲେ, କହିଲେ । ବାବୁଆଣୀ ଭାବିଲେ ବୋଧହୁଏ ପୁରୀରେ ରହିଗଲା । ଦିନପରେ ଦିନ ଯାଏ; କିନ୍ତୁ ଧୋଇର କୌଣସି ଖବର ନାହିଁ । ମା'ମନ ସମ୍ଭାଳି ହୁଏ କେତେକେ ? ସେ ଏକଥା ଯାହାକୁ କହନ୍ତି, ସେ କହେ, "ଧୋଇଆ କ'ଣ କାଖର କୋଡ଼ର ପିଲା ହେଇଚି ଯେ ତାକୁ କିଏ ନେଇ ଯିବ ? ତୁମେ କାହିଁକି ସେପରି ବାୟାଣୀଙ୍କ ପରି ହଉଚ ? ସେ କୁଆଡ଼େ ସାଙ୍ଗସାଥୀ ନେଇ ବୁଲୁଥିବ, ଫେରିଆସିବ ନାଇଁ ?" ବାବୁଆଣୀଙ୍କ ମନ ତଥାପି ବୁଝେନାଇଁ । ଧୋଇଆର ଏ ଚଗଲାମି ଅଛି ସତ, କିନ୍ତୁ ସେ ଯୁଆଡ଼େ ଗଲେ ଚିଠି-ପତ୍ର ବରାବର ଦିଏ । ଏପରି ଖବର ନଦେଇ ପାଞ୍ଚ ସାତ ଦିନ କେଉଁଆଡ଼େ ରହିବା କେବେ ହୋଇନାହିଁ । ସେହି ହେତୁରୁ ତାଙ୍କ ମନଟା ଖୁବ୍ ଖୁନ୍ତୁଖୁନ୍ତୁ ହେଉଥାଏ । ଆଉରି ତାଙ୍କର ଭାବିବାର କାରଣ ହେଲା ଲଣ୍ଡା ଘରର ହାଲ ଦେଖି । ସେ ଜାଣନ୍ତି ଏବେ ବର୍ଷେଖଣ୍ଡେ ହେଲା ଲଣ୍ଡା ସଦାଶିବବାବୁଙ୍କ ଘରକୁ ଖୁବ୍ ଯା'ଆସ କରୁଚି । ଆଉ ମଧ୍ୟ ସେ ମନେ ମନେ ବୁଝିପାରିଛନ୍ତି, ସଦାଶିବ ବାବୁ ତାଙ୍କର ଅନିଷ୍ଟ କରିବାକୁ ସୁବିଧା ପାଇଲେ ଛାଡ଼ିବେ ନାହିଁ । ଏଇ ସବୁ କଥାକୁ ମିଳେଇ ସେ ମନେ ମନେ ବଡ଼ ଡରକି ଉଠିଥିଲେ । ତାଙ୍କ ମନରେ ଏଇ ତର୍କ ଗାଢ଼ ସନ୍ଦେହରେ ପହଞ୍ଚିଲା—ସେଇ ଯେଉଁ ଦିନ ଲଣ୍ଡାବୋଉ ତାଙ୍କ ଆଗରେ ତାଙ୍କ ବାଡ଼ିଆଡ଼ ନଡ଼ିଆ ଗଛରେ ବାଉରି ଚଢ଼େଇ ଗୋଟମା ପର୍ଯ୍ୟନ୍ତ କାଟିନେଇଗଲେ । ଖାଇପିଇ ସାରି ସେ ବାରିପଟ ବାରଣ୍ଡାରେ ବସିଛନ୍ତି । ସାଇର ତିନି ଚାରିଜଣ ମାଇପେ ଆସି ଗପ ଯୋଡ଼ିଦେଇଚନ୍ତି । ଏତିକିବେଳେ ଲଣ୍ଡାବୋଉ ବାଉରି ଚଢ଼େଇ ଗଛରୁ ନଡ଼ିଆ କାଟିବାକୁ ଆରମ୍ଭ କଲେ । ବାବୁଆଣୀଙ୍କର ତ ଏଗୁଡ଼ାର ଦିହଘଷିଆ ହୋଇଯାଇଥିଲା, ସେ ଦେଖି ନ ଦେଖିଲା ପରି ମୁହଁ ବୁଲେଇ ଦେଇ ଗପରେ ଲାଗିଲେ । ସାବିବୋଉ କହିଲେ, "ତୁମେ କେମିତି ସହିଚ କେଜାଣି ? ଆଖି ଆଗୁଟାରେ ପର ମୋ ସମ୍ପତ୍ତି ଉଜାଡ଼ି ଖାଇବାର ଦେଖିଲେ ତ ମୁଁ ଦାନ୍ତକୁ ଦାନ୍ତ ଲଗେଇ ମିଶିଯାନ୍ତିଣି ଏତେବେଳକୁ ।" ବାବୁଆଣୀ ତଥାପି ନୀରବ । ଲଣ୍ଡାବୋଉ ଏତିକି ବେଳକୁ ପାଟି କରି କହିଲେ—"ତୋଳରେ ତୋଳ, କୁ' ଛତରଖାଇ, ଭାଇମୁଣ୍ଡଖାଇ, ଆଣ୍ଠୁକୁଡ଼ି, ରାଣ୍ଡ କ'ଣ କହିବ ମୁଁ ଦେଖିବି । ତୁ ତୋଳ ।" ବାବୁଆଣୀ ଆଉ ସମ୍ଭାଳି ହୋଇ ରହିପାରିଲେ ନାହିଁ । କହିଲେ, "ହଇଏ ଲଣ୍ଡାବୋଉ, ମୋ ଆଖି ଆଗରେ ମୋରି ଗଛରୁ ଦିନ ଦି'ପହରେ ନଡ଼ିଆ କଷି ଗୋଟମା ପର୍ଯ୍ୟନ୍ତ କାଟିନେଉଚି, ମୁଁ ତୁନି ହୋଇ ଦେଖୁଚି । ତା' ଉପରେ ପୁଣି କଣ୍ଟାବାଡ଼ରେ ଲୁଗା ପକାଇ ଇମିତି ଗୁଡ଼େ ଗାଳିଦେଉଚ କାହିଁକି ?" ଲଣ୍ଡାବୋଉ ତ ଏଇ ସୁବିଧାଟକ ଖୋଜୁଥିଲେ । ତାଙ୍କର ତୁଣ୍ଡରୁ ପାଣିସୁଅ ପରି କାନରେ ନଶୁଣା ଭାଷାରେ

କେତେ ପ୍ରକାର ଗାଳି ବୋହିଗଲା । ଶେଷରେ କହିଲେ, "ତୁ କିଏଲୋ ? ତୋର ସମ୍ପତ୍ତି ! କିଲୋ ! ଏ ସମ୍ପତ୍ତି ତ ମୋ ଲଣ୍ଡାର । ତୁ ତ ଖୋରାକ-ପୋଷାକ ମୁଠାଏ ଖାଇ ଗୋବର ପୋଛିବା ଲୋକ । ବାଲେଶ୍ୱରୀଆଣୀ ଛତରଖାଇ, ସେ ପୁଣି କହିବ ଏ ସମ୍ପତ୍ତି ମୋର । ଦେଖିବୁ ଦେଖିବୁ ଲୋ ରାଣ୍ଡ, ଆଉ ଦଶ ପନ୍ଦର ଦିନ ଗଲେ ମୋ ଲଣ୍ଡା ଯେବେ ତୋ ଛାତିରେ ବସି ଏ ସମ୍ପତ୍ତି ଭୋଗ ନ କରିଚି, ତାହେଲେ ମୁଁ ଅମୁକ ରଥର ମାଇପ ନୁହେଁ ।" ଏହିପରି ସେ କେତେ କ'ଣ କହିଲାଗିଲେ । ବାବୁଆଣୀ ଆଉ କିଛି ଶୁଣିବା ପର୍ଯ୍ୟନ୍ତ ଅପେକ୍ଷା ନକରି ଘର ଭିତରକୁ ଚାଲିଗଲେ । ରାମାବୋଉ, ସାବିବୋଉ ହେରିକା ସେ ସବୁ କଳିର ମଉଜ ପାଇବେ ବୋଲି ନଖକୁ ଘଷୁଥିଲେ, ସେମାନେ ହତାଶ ହୋଇ ନିଜ ଘରକୁ ବାହୁଡ଼ିଲେ ।

ବାବୁଆଣୀ ଘରକୁ ଆସି ମହାପାତ୍ରଙ୍କୁ ଡାକି ପୁରୀ ପଠାଇଲେ । କହିଲେ, ପୁରୀରେ ଯଦି କିଛି ସନ୍ଧାନ ନପାନ୍ତି ତା'ହେଲେ କଟକରେ ମଦନ ପାଖକୁ ଯାଇ ଧୋଇଆର ଖବର-ଅନ୍ତର ବୁଝିଆସିବେ । ମହାପାତ୍ରେ ସାଙ୍ଗେ ସାଙ୍ଗେ ପୁରୀ ବାହାରିପଡ଼ିଲେ । ପୁରୀରେ କିଛି ପତ୍ତା ପାଇଲେ ନାହିଁ । କଟକରେ ଯାଇ ମଦନ ବାବୁଙ୍କୁ ଧଇଲେ ଓ ତାଙ୍କୁ ସଙ୍ଗରେ ଘେନି ତା' ଆରଦିନ ସକାଳେ ଗାଁରେ ଆସି ପହଞ୍ଚିଲେ । ମଦନ ବାବୁଆଣୀଙ୍କ ପାଖକୁ ଆସି କହିଲେ, "ଧୋଇଆ ତା' ମାମୁଁଠାରୁ କ'ଣ ଖବର ପାଇ କଲିକତା ଯାଇଚି ।"

ବାବୁଆଣୀ : କ'ଣ ଚିଠି ପାଇଥିଲ ?

ମଦନ ମୁଣ୍ଡକୁ କୁଣ୍ଡେଇ କହିଲେ, "ଚିଠି ! ନା...ହଁ, କ'ଣ ଖବର ପାଇଥିଲା ।"

ବାବୁଆଣୀ : ଚିଠିଟା କ'ଣ ପୁରୀରେ ପାଇଲା ନା ଗାଁରେ ?

ମଦନବାବୁ ବିଚରା ବଡ଼ ବ୍ୟସ୍ତ ହୋଇ ଉଠିଲେଣି ସେତେବେଳକୁ । ଶିଖା କଥା ଗୋଟେ ଚଟ୍ କରି କହିଦେବା ବଡ଼ ସହଜ, କିନ୍ତୁ ଜେରା ସମ୍ଭାଳିବା ବଡ଼ ମୁସ୍କିଲ । ବିଶେଷତଃ ମଦନ ବାବୁଙ୍କ ଭଳି ଲୋକ । ସେ ଭାବିଲେ କ'ଣ କହିବେ, ଠିକ୍ କରିପାରିଲେ ନାହିଁ । ବାବୁଆଣୀ କହିଲେ, "ପୁରୀରେ ପାଇଲା ବୋଧହୁଏ, ନାଇଁ ?"

ମଦନ : ହଁ, ହଁ, ପୁରୀରେ ପାଇଲା ତ...

ବାବୁଆଣୀ : କିନ୍ତୁ ବାପ, ତା' ମାମୁଁ କିପରି ଜାଣିଲେ ଯେ ଧୋଇଆ ସେଦିନ ପୁରୀ ଯାଇଥିବ ବୋଲି । ମଦନ ବାବୁ ଚୁପ୍ ହୋଇ ରହିଲେ । ବାବୁଆଣୀ ପୁଣି ପଚାରିଲେ, "ସେ ବାଟଖର୍ଚ୍ଚ କାହୁଁ ପାଇଲା, ବାପ ? ମହାପାତ୍ରଙ୍କୁ ତ ଟଙ୍କା ମାଗିନେଇଁ !" ମଦନ ବାବୁ ତରବର ହୋଇ କହିଲେ, "ଖର୍ଚ୍ଚ ତା' ପାଖରେ ଥିଲା ।"

ବାବୁଆଣୀ : ଦେଖ ବାପ, ସେ ଗଲାବେଳେ ମୁଁ ତାକୁ ଟଙ୍କା ଯାଚିଲି । ସେ ମତେ କହିଚି, "ନା ମୋ ପାଖରେ ଟଙ୍କା ରହିଲେ ହଜିଯିବ, ମହାପାତ୍ରଙ୍କୁ ଦେ, ମୋର ଦରକାର ହେଲେ ମୁଁ ତାଙ୍କଠାରୁ ମାଗିନେବି ।" ସେ ଟଙ୍କା-ପଇସା ସାଙ୍ଗରେ ନେଇ ନାହିଁ । ତୁ କ'ଣ ତାକୁ ଟଙ୍କା ଦେଇଚୁ ?

ମଦନ : ହଁ, ହଁ, ସତରେ ତ, ମୁଁ ଟଙ୍କା ଦେଇଥିଲି । ମୁଁ ଯାଉଚି । ମୋର ବହୁତ କାମ ଅଛି ।

ବାବୁଆଣୀ : ବସ ଟିକିଏ ବାପ, ଯିବୁ ତ, ତରତର କିଆଁ ? ତୁ କେତେ ଟଙ୍କା ଦେଇଥିଲୁ ?

ମଦନ : ମୁଁ ! ଟଙ୍କା ! ଓଃ, ହଁ, ଏଇ ନ ଦଶ ଟଙ୍କା, ମୋର ମନେ ନାହିଁ ।

ବାବୁଆଣୀ : ତୁ ଏତେ ଟଙ୍କା ଘେନି ପୁରୀ ଯାଇଥିଲୁ କାହିଁକି ବାପ ?

ସେତେବେଳକୁ ମଦନବାବୁ କନ୍‌କନ୍ ହେଉଥାନ୍ତି । ତାଙ୍କର ଆଖିରେ ଆଖିଏ ଲୁହ । ବାବୁଆଣୀ ତାଙ୍କର ଏ ଅବସ୍ଥା ଲକ୍ଷ୍ୟକରି ସୁଆଗୀ ହୋଇ କହିଲେ, “ମୋ ମୁହଁକୁ ଚାହିଁ କହ ତ, ବାପ, ସତରେ ଧୋଇଆ ତା’ ମାମୁଁଠାରୁ ଖବର ପାଇ କଲିକତା ଯାଇଚି ?” ମଦନ ବାବୁ ମୁହଁ ତଳକୁ କରି ବସି ରହିଲେ । ବାବୁଆଣୀ କହିଲେ, “ବାପ ମଦନ, ମୁଁ ତତେ ଧୋଇଆଠାରୁ ଭିନ୍ନ ଭାବିନାହିଁ । ତୁ ମୋ ଆଗରେ ମିଛ କହି ସମ୍ଭାଳି ପାରିବୁ ? ଧୋଇଆ ପାରନ୍ତା, ସେ ଚଗଲା; ତୁ କିନ୍ତୁ ତା’ ନୋହୁ । ସତ ଛଡ଼ା ମିଛ ପଦେ ଯେ ଜୀବନରେ କହିନାହିଁ ସେ କ’ଣ ମୋ ଆଗରେ ମିଛ କହିପାରେ ? କହ ଦେଖି ବାପ, ସତ କଥାଟା କ’ଣ ?”

ଆସ୍ତେ ଆସ୍ତେ ଡରି ଡରି ମଦନବାବୁ ପ୍ରକୃତ କଥାତକ ସବୁ ଖୋଲି କହିଦେଲେ । ବାବୁଆଣୀ ଚିତ୍ରପିତୁଳାଟି ପରି ବସି ସବୁ ଶୁଣୁଥାନ୍ତି । ମଦନବାବୁ ସେ ଧୀର ଗମ୍ଭୀର ଭାବେ ପଚାରିଲେ, “ଠିକ୍ ମନେକରି କହ ଦେଖି ବାପ, ଏ ବାଜି କଥାଟା କିଏ ପହିଲେ ଉଠେଇଲା ?” ମଦନ ଭାବି ଚିନ୍ତି କରି କହିଲେ, “ପହିଲେ ଉଠାଇଲା ଫଲଣା ମିଶ୍ର ।”

ବାବୁଆଣୀ : ଆଉ ସେଥିରେ ଦୁଆ ଦେଲେ ଅଲଣା ତିଆଡ଼ିଏ, ଶିଶୁପାଳ ନନ୍ଦେ ଓଗେର ଶିବବାବୁଙ୍କର ନନ୍ଦି-ଭୃକୁଟି ଦଳ, ନା ? ଏଥରକ ବୁଝିପାରୁଚି ସବୁ । କ’ଣ ହବ ବାପ ?

ଏତେବେଳକୁ ତାଙ୍କର ଧୈର୍ଯ୍ୟ ଯେପରି ଭାଙ୍ଗିଆସିଲା । ସେ କାନ୍ଦ କାନ୍ଦ ହୋଇଉଠିଲେ । ମଦନ ତାଙ୍କୁ ସାନ୍ତ୍ୱନା ଦେବାପାଇଁ କହିଲେ, “କାହିଁକି ମା ! ହବ କ’ଣ ? ଧୋଇଆ ଠିକ୍ କୋଡ଼ିଏ ଦିନରେ ଫେରିଆସିବ ।”

ବାବୁଆଣୀ : ଫେରିଆସିବନି । କଲିକତା ସହର ଅନେକ ଦୂର । ବାଟ ବଡ଼ ନିକାଞ୍ଚନ । ଗୁଣ୍ଡାଗୁଡ଼ାକ ବଡ଼ ଶସ୍ତା ନା, ବାପ ! ମୁଁ କାନ୍ଦୁ ନାହିଁ, ଅଧୀର ହେଉନାହିଁ । ସର୍ବସ୍ୱ ଯେତେବେଳେ ଯିବା ଉପରେ ସେତେବେଳେ କାନ୍ଦରେ ସମୟ କଟାଇବା ବୋକାର କାମ । ପ୍ରମଥ ବାବୁ ମେଛୁଆ ବଜାର ଗଳି କହିଲୁ ନା ?

ମଦନବାବୁ କଥାଗୁଡ଼ାକରୁ କିଛି ବୁଝି ପାରୁନଥିଲେ । ତା’ ଉପରେ କଥା ଯେପରି ତେଇଁଲା, ସେଥିରେ ସେ କାର୍ଯ୍ୟକାରଣର ସମ୍ବନ୍ଧ ଦେଖି ନପାରି ଖାଲି ବୋକାଙ୍କ ଭଳି ମୁଣ୍ଡ ହଲେଇଲେ । ବାବୁଆଣୀ କିଛି ସମୟ ତୁନିଟି ହୋଇ ବସି କ’ଣ ଭାବିଲେ, ତା’ପରେ କହିଲେ, “ବାପ ମଦନ ! ତୁମେ ଟିକିଏ କଲିକତା ଯାଇପାରିବ ?” ମଦନ ବାବୁ ହଁ ଭରିଲେ । ଠିକ୍ ହେଲା ସେଇ ଦିନ ରାତିଗାଡ଼ିରେ ସେ କଲିକତା ଯିବେ ।

କିନ୍ତୁ ତଥାପି ବାବୁଆଣୀ ଧୈର୍ଯ୍ୟ ଧରି ବସି ପାରୁନଥାନ୍ତି । ସେ ଏଣିକି ତେଣିକି ବୁଲେ ହେଇ ମଦନବାବୁଙ୍କ ହାତରେ ତାଙ୍କ ଭାଇଙ୍କ ପାଖକୁ ଦେବାପାଇଁ ଖଣ୍ଡିଏ ଚିଠି ଲେଖିଲେ

ଏବଂ ଲୁଗାପଟା ପିନ୍ଧି ନିଛେ ବାଡ଼ିଆଡ଼େ ବାହାରି ପଡ଼ିଲେ ଶିବ ବାବୁଙ୍କ ଘରକୁ । ସେଠାରେ ଯାଇ ଦେଖନ୍ତି ତ ଶିବ ବାବୁଙ୍କର ସତୁରି ବର୍ଷର ବୁଢ଼ୀମା' ବାଡ଼ିଆଡ଼ ପିଣ୍ଡାରେ ବସି ସକଉଚନ୍ତି । ଧାର ଧାର ହୋଇ ଆଖିରୁ ଲୁହ ବୋହିଯାଉଚି, ବୁଢ଼ୀ ଲୁଗାକାନିରେ ତାକୁ ପୋଛିପକାଉଚନ୍ତି । ସେ କରୁଣ ଦୃଶ୍ୟ ଦେଖି ବାବୁଆଣୀ କିଛି ସମୟ ଥକ୍କା ମାରି ଠିଆହୋଇଗଲେ । ତା'ପରେ ବୁଢ଼ୀଙ୍କ ପାଖକୁ ଉଠିଯାଇ ଦି'ହାତ ତଳେ ଲଗେଇ କହିଲେ, "ମାଉସୀ ଓଳିକି ହଉଚି ।"

ବୁଢ଼ୀ : କିଲୋ ଝିଅ, ମରିଗଲି ନାହିଁ ଯାହା ! ସେ ତାଙ୍କ ସୁଖରେ ସ୍ୱର୍ଗ କି ନରକରେ ଯାଇ ବସିଲେ । ବଳ-ବୟସ ଗଲା । ଆଖିକି ଦିଶିଲା ନାହିଁ । ମୁଁ ଖାଲି ବଞ୍ଚିରହିଚି ହୀନିମାନ ହବାପାଇଁ ।

ବାବୁଆଣୀ ପଚାରିଲେ, "କ'ଣ ହେଲା କି ମାଉସୀ, କାନ୍ଦୁଚ କାହିଁକି ?"

ବୁଢ଼ୀ : ଆଲୋ ଝିଅ, ବସ, ମୁଁ ତତେ ତୁନି କରି କହିବି । ଦେଖିଲୁ ଦେଖିଲୁ, ସେ ଖଳବୀ ବୋହୂ ମୋର କୁ'ଠେଇ ନାକେଇ କରି ଶୁଣୁନାଇଁ ତ । ଇଲେ ଯାଇ ପୁଅକୁ କ'ଣ କହିଦେବ ବୋଇଲେ, ମୋ ପିଠିରେ ଚମଡ଼ା ରହିବନାହିଁ ।

ବାବୁଆଣୀ : ନାଇଁ, ମାଉସୀ, ଏଠି କେହି ନାହିଁ ।

ବୁଢ଼ୀ : ଆଲୋ ଝିଅ, ମୁଁ ତ ମଲାସରିକି ହେଲିଣି । ଏଇ ହାତରେ କେତେ ଦିଅଁ-ଦୂବ କରିଚି, କେତେ ଦୁଃଖୀରଙ୍କିଙ୍କି ଖାଇବାକୁ ଦେଇଚି । ଏବେ ଯମଦୁଆରେ ଗୋଡ଼ ଦେଇ ମୁଁ ଦୁଃଖୀରଙ୍କୀ ଭୋକୀଶୋଷୀଙ୍କ କଟାଳ ସହିପାରିବି କେମିତି ? ଆଜି ସକାଳେ ଗୋଟାଏ ଭିଖାରୁଣୀ ଆସିଥିଲା । ତା'ର କୋଡ଼ରେ ତିନି ମାସର ଛୁଆଟିଏ । ଖାଇବାକୁ ନପାଇ ତା'ର ଯୋଡ଼ିଏ ଛୁଆ ମରିଗଲେ । ଘଇତା ତାକୁ ଛାଡ଼ି ପଳେଇଲା । ସେ ଇମିତି ବୁଲି ବୁଲି ମାଗି ଖାଉଚି । କହିଲା, "ମୁଁ ଦି'ଦିନ ହେଲା ଖାଇନାହିଁ । ପିଲାଟା ଦୁଧ ଟିକିଏ ନଖାଇ ଖାଲି କଇଁ-କଇଁ ହୋଇ କାନ୍ଦୁଚି ।" ମୋ ଦିହ ସହିଲା ନାହିଁ ଲୋ ଝିଅ, ମୁଁ ହାଣ୍ଡିଶାଳକୁ ଯାଇ ବେଲେ ପଖାଳ ଆଣି ତାକୁ ଦେଲି । ଆଉ ତା' ଛୁଆଟା ପାଇଁ ଟିକିଏ ଦୁଧ ଆଣିଦେଲି । ମୋର ଯେ ସେ ଡାଙ୍କିଣୀ ବୋହୁଟା ଲୋ ଝିଅ, ତା' ଶନିଦୃଷ୍ଟିରେ କିମିତି ପଡ଼ିଗଲି । ସେଇଠୁ ତ ସେ ମୋତେ ଭିଣି ଭିଣି କରିପକାଇଲା । କହିଲା କ'ଣନା, ତୁମେ ଏ ଘରେ କିଏ ? ମୁଠେ ଖାଇବ, ଖଣ୍ଡେ ପିନ୍ଧିବ, ଗୋଟେ କୁଣରେ ପଡ଼ିରହିବ । ତୁମେ ମୋ ବିନା, ବିନା....କ'ଣ କହିଲା, ସେ କଥା କ'ଣ ମୋ ତୁଣ୍ଡରେ ଲେଉଟୁଚି କିଲୋ ଝିଅ....ପାଠ ପଢ଼ି ପଣ୍ଡିତିଆଣୀ ହେଇଚନ୍ତି ପରା ।

ବାବୁଆଣୀ : ବିନାନୁମତିରେ ?

ବୁଢ଼ୀ : ହଁ, ହଁ ଲୋ ଝିଅ, ସେଇ କଥା । କହିଲା ସେ କଥାରେ ମୁଁ କାହିଁକି ତାକୁ ଭାତ ପୁଞ୍ଜାଏ ଦେଲି । ମୁଁ ତ ସହିପାରିଲି ନାହିଁ ଲୋ ଝିଅ ! ଏଇ ଆଜି ଭଳି ମନେ ଅଛି । ରାଣ୍ଡ ମା' ତା'ର ବଡ଼ଦେଉଳ ବରଗଛ ତଳେ ବସି ପଇତାସୁତା କାଟୁଥାଏ । ଆଉ ଏ ଖଳବୀ ନଅ ବର୍ଷର ଟୋକୀଟାଏ କଉପୁନି ଖଣ୍ଡେ ମାରି ସେଠି ବାଲୁ-ବାଲୁ କରି ଚାହିଁଥାଏ । ସେ କାହୁଁ ଦବା ସୁଖ ଜାଣିବ ? ସେ କାହୁଁ ଦୁଃଖୀରଙ୍କୀଙ୍କ କଥା ଜାଣିବ ? ସେଦିନ କ'ଣ ଆଉ ଅଛି ? ଫାଟିଯିବ ବୋଲି ପିଠି ଉପରେ ଯେତେବେଳେ ୱାଉ ପଡୁଥିଲା, ସେଦିନ ତ ଗଲାଣି ।

ଇଲେ ପରା ସେ ରାଣୀ, ୱାଉ କାହୁଁ ଚିହ୍ନିବ ? ଋଷି ଏଇଥିପାଇଁ ଜଟା ଛିଣ୍ଡେଇଥିଲେ । ଖାଲି ତା'ର ରୂପଟି ଦେଖି ତାକୁ ବୋହୂ କରିପକାଇଲି । ସେଇ ରୂପଟି ଏବେ ହେଲା ମୋର କାଳ ।

ବାବୁଆଣୀ : ହଁ, ତା' ଉତାରୁ କ'ଣ ହେଲା ମାଉସୀ ! ସେ ତୁମକୁ ଏଇଆ କହିଲା ବୋଲି କାନ୍ଦୁଚ ?

ବୁଢ଼ୀ : ନାଇଁଲୋ ଝିଅ, ସେ ଖଳବୀ ତ ଘରେ ଗୋଡ଼ ଦେଲା ଦିନୁଁ ଇମିତି କେତେ ଶୁଣୁଚି, ଆଜି ଏତିକି ପାଇଁ କାନ୍ଦନ୍ତି କିଆଁ ? ସେ ଯିମିତି ମତେ ଖିଙ୍କାରି ହୋଇ ଏତିକି କହିଲା, ମୁଁ ତାକୁ କହିଲି, "କିଲୋ, ମା ଯେତେବେଳେ ସୁତା କାଟି ପଇତା ବିକି ପେଟ ପୋଷୁଥିଲା ସେଦିନ କ'ଣ ପାସୋରିଗଲାଣି କି ?" ଆଉ ଯାଏଁ କୁଆଡ଼େ ଲୋ ଝିଅ ! ଗର୍ଜିଲା, ଗର୍ଜିଲା, କେତେ କ'ଣ କହିଗଲା । ଶେଷକୁ ଯାଇ ପୁଅକୁ କ'ଣ କହିଦେଲା ଯେ ପୁଅ ତ ତେଣୁ ମାରେ କି ନମାରେ ହେଇ ମୋ ଉପରକୁ ସୁ ହୁସି ଆସିଲା । କହିଲା, "କଡ଼ାଟାକର ପ୍ରୟୋଜନ ନାହିଁ ମେଛେଡ଼ୀ ବୁଢ଼ୀଠେଇଁ, ଆଉ ଘରେ ବସି ସା'ନ୍ତେଇ ଦେଖାଇ ହଉଚି ।" କହିଲା, "ଆଉ ଦିନେ ତୁ କାହାକୁ ଖୁଦ କଣିକାଟାଏ ଦେ ତ, ତୋ ହାଡ଼ ଭାଙ୍ଗିଦେବି ।" ଝିଅ ଲୋ, ମୁଁ ପ୍ରାଣ ଭୟରେ ସେତିକିବେଳୁ ଏଠିକି ପଳାଇ ଆସିଚି । କେତେ ମହାଦେବଙ୍କ ଉପରେ ବେଲପତ୍ର ଚଢ଼େଇ, ଅଭିଷେକ କରେଇ, ଓଷା-ବ୍ରତରେ ପେଟ ଶୁଖେଇ ପାଇଥିଲି ଏ ପୁଅକୁ ଏଇଥିପାଇଁ ! ଦାଣ୍ଡରେ ୟା ତୋଟି ଚିପିବ, ତା' ଘର ଭାଙ୍ଗିବ, ଇମିତି କରି ରାଣ୍ଡ-ଛେଉଣ୍ଡଙ୍କ ସମ୍ପତ୍ତି କିଣି ବଡ଼ଲୋକି କଲା, ସେଥିରେ ପାଟି ଫିଟାଇଲି ନାହିଁ । ଭାବିଲି, କରନ୍ତୁ, ଯେଝା ଧର୍ମ ତାକୁ ଖାଇବ । ଗାଁରୁ ଏତେ ଲୋକ ହବିଷ କରିବାକୁ ପୁରୀ ଯାଉଛନ୍ତି, ମୋର କ'ଣ ନଥିଲା ? ମୋ ଘଇତା ତ ମଲାବେଳକୁ ଦଶବାଟି କି ବାରବାଟି ଶୁଦ୍ଧ-ସୁବର୍ଣ୍ଣ ଜମି ରଖିଯାଇଥିଲା । ମୁଠା ମୁଠା ଟଙ୍କା ପଇସା ମୁଁ ଦିଆ-ନିଆ କରୁଥିଲି । ମତେ ଟିକିଏ ପୁରୀ ଯାଇ ଦର୍ଶନ କରିବାକୁ ଯୋଗ ହେଲାନାହିଁ । ଏକାଦଶୀ ଉପାସରେ ତ ଦିହରେ ମୁଣ୍ଡରେ ଟିକିଏ ହାତ କେହି ବୁଲେଇ ଦେଲାନାହିଁ । ମୋର ଏ ଜୀବନ ଥାଇ ଯାହା...

ଘର ଭିତରୁ ଝୁମୁରୁ ଝୁମୁରୁ ଶବ୍ଦ ଶୁଭିଲା । ବୁଢ଼ୀ ତରବର ହୋଇ ମୁହଁ ପୋଛିପକେଇ କହିଲା, "ଆଲୋ ଝିଅ, ଏ ଡାଙ୍କୁଣୀ ଅଇଲାଣି, ମୋର ଆଉ ଗତି-ଗୋତ୍ର ରହିବ ନାହିଁ !" ବାବୁଆଣୀ ସେଠାରୁ ଉଠି ଛିଡ଼ା ହେଲେ । ଏଇ ସମୟରେ ଶିବବାବୁଙ୍କ ସହଧର୍ମିଣୀ ଶ୍ରୀମତୀ ସତ୍ୟଭାମା ଦେବୀ ସେଠାରେ ଆସି ପହଞ୍ଚିଲେ । ତାଙ୍କର ନାକରେ ଗୋଟିଏ ନୋଲକ, ଦି'ନାକପୁଡ଼ାରେ ଦୁଇଟି ନାକଫୁଲ । କାନରେ କାନଫୁଲ, ଯାଉଁଳି, ବେକରେ ପଦକମାନ ଉପରେ ଢେଗା ଢେଗା କଣ୍ଠିମାଳ । ବାଁ ହାତରେ ରୂପାର ବାଜୁ, ଡାହାଣ ହାତରେ ରୂପାର ତାଡ଼ । କଚଟି ଉପରେ ସୁନାକାଚ ଛ-ଛ' ପଟ ପାଖରେ ମାଢ଼ି ଖଡୁ ଦି-ଦି' ପଟ, ଆଙ୍ଗୁଠିରେ ପାଞ୍ଚଟା ସୁନାମୁଦି । ଗୋଡ଼ରେ ବଳା ପାହୁଡ଼ ଦି'ପଟ ଲେଖାଏଁ, ଗୋଡ଼ ଆଙ୍ଗୁଠିରେ କଂସାର ମୁଦି ଚାରି ଚାରିଟା ପିନ୍ଧିଛନ୍ତି । ଖଣ୍ଡିଏ ମିଲ୍ ନାଲି ଧଡ଼ିଆ ଶାଢ଼ି । ପାଟିରେ ପାନଖିଲଟେ । ସେଇ ପାନ ବୋଳରେ ଲାଲ ଟହଟହ । ମୁଣ୍ଡରୁ ବାସନା ତେଲର ଉତ୍କଟ ଗନ୍ଧ ବାହାରି ଚମକେଇ ଦେଉଚି ଖଣ୍ଡମଣ୍ଡଳ । ରଙ୍ଗଟା ସଜବଟା ହଳଦୀ ପରି । ମୁହଁଟି ଟିକିଏ ଲମ୍ବା ।

ଅସହଣିକମାନେ କହନ୍ତି ଟାକୁଆ-ଗାଲୀ । ଛାମୁଦାନ୍ତ ଦୁଇଟା ଟିକିଏ ବଡ଼ । ଏଇ ହେଲେ ଶିବବାବୁଙ୍କ ସହଧର୍ମିଣୀ । ନୂଆ-ପୁରୁଣା ପୂର୍ବ-ପଶ୍ଚିମର ଗୋଟାଏ ଅପୂର୍ବ ମିଳାମିଶାର ଖେଳ । ସେ ବୁଢ଼ୀଙ୍କ ଆଡ଼କୁ କଟମଟ କରି ଚାହିଁଲେ, "କିଏ, କ'ଣ ସବୁ ଭୁଟୁରୁ-ଭାଟର ଫୁଟୁରୁ-ଫାଟର ଚାଲିଥିଲା କି ? ପୁଅ ବୋହୁ କିମିତି ତୁମକୁ ଅନୁଭବ ଦେଉଚନ୍ତି ସେଇ କଥା ! ମଲ ନାଇଁ ! ଘରକଥା ନେଇ ଦାଣ୍ଡରେ ପକାଉଚ !"

ବୁଢ଼ୀ : ମଲା ମୋର ଗରଜ ପଡୁନଥିଲା । ମୋ ଭାଗ୍ୟରେ ତ ଯାହା ଅଛି ତା' ଭୋଗୁଚି, ପର ଆଗରେ କହିଲେ କ'ଣ କିଏ ମୋ ପିଠିରେ ଆସି ପଡ଼ିବ ?

ଶିବ ସ୍ତ୍ରୀ : ଆଉ ଗାଁ ବାବୁଆଣୀ କୁଆଡ଼େ ଗୋ ? ଏ ଗରିବ ଘରେ ଲକ୍ଷ୍ମୀ ବିଜେ କିଆଁ ?

କଥାଗୁଡ଼ାକ ହସି ହସି କହିଲେ ସତ; କିନ୍ତୁ ବାବୁଆଣୀ ତା' ଭିତରେ ଗୋଟାଏ ଶ୍ଳେଷର ସୁଅ ଠିକ୍ ଅନୁଭବ କରିପାରିଲେ । ସେ କହିଲେ, "ଶିବବାବୁ ଆମ ଦେଶର ଜଣେ ଦେବତା । କଲେକ୍ଟର କମିସନର ତାଙ୍କ ଦୁଆରେ ଧାରଣା ଦେଇ ପଡୁଛନ୍ତି । ଭାବିଲି, ଆଲୋ ବାପଲୋ, ଯାଇ ଟିକିଏ ଦେଖାକରି ଆସେଁ ।

ଶିବ ସ୍ତ୍ରୀ : ମଲା ମଲା, ଛଇ ଦେଖ । ବାବୁଆଣୀ ଥାଉଁ ଥାଉଁ ଶିବବାବୁ ଚେଟିପୁଅକୁ କିଏ ପଚାରେ ? ବୋଇଲି ଦିନେ ନାଇଁ କାଳେ ନାଇଁ, ଆଜି କାହିଁକି ?

ବାବୁଆଣୀ : ଆସିଚି, କହିଲି ପରା, ଶିବ ବାବୁଙ୍କ ପାଖକୁ ।

ଶିବ ସ୍ତ୍ରୀ : କାହିଁକି, ଗାଁରେ ଆଉ କେହି ଅଣ୍ଡିରା ମିଳିଲେନାହିଁ ?

ବାବୁଆଣୀ : ମିଳିବେ କାହୁଁ ? ତୁମେ କ'ଣ କାହାକୁ ରଖିଚ ଯେ ।

ଶିବ ସ୍ତ୍ରୀ : ସତରେ କଥା କ'ଣ ?

ବାବୁଆଣୀ : କଥା ଆଉ କ'ଣ, ଶିବବାବୁଙ୍କ ସାଙ୍ଗରେ ଗୋଟାଏ ପରାମର୍ଶ ଅଛି ।

ଶିବ ସ୍ତ୍ରୀ : ମଲା ମଲା, ବାବୁଆଣୀଙ୍କି ଯୁ' କଥାରେ ବୁଦ୍ଧି ଦିଶିଲା ନାହିଁ, ବାବୁ କି ଛାର ଯେ ପରାମର୍ଶ ଦେବେ ?

ବୁଢ଼ୀ : ଆଲୋ ଧୋଇବୋଉ, ଶିବ ପରା ପୁରୀ ଗଲାଣି, ସେଠୁ କୁଆଡ଼େ କଲିକତା ଯିବ ।

ଶିବ ସ୍ତ୍ରୀ : ତୁମ ମୁଣ୍ଡରେ ନିଆଁ ଦେବ । ତାଙ୍କର ମୋର ତ କଥା ପଡ଼ିଥିଲା, ତୁ ଖଳବୀ ଉପରେ ପଡ଼ି କଥା କହୁ କିଆଁ ?

ବୁଢ଼ୀ : ଶୁଣିଲୁ ଲୋ ଝିଅ, ଶୁଣିଲୁ !

ଶିବ ସ୍ତ୍ରୀ ଖଟେଇ ହୋଇ କହିଲେ, "ଶୁଣିଲୁ ଲୋ ଝିଅ, ଶୁଣିଲୁ ! ଝିଅ ଆସି ପିଠିରେ ପଡ଼ିବ, ନଇଲେ ମତେ ଏ ଗାଁରୁ ତଡ଼େଇଦେବ । ତା' ଆସନ ତ ଟଳମଳ, ବାବୁଆଣୀପଣ ଏଇଥରକ ଯିବ ଯେ, ଆଉ ସେ ମୋର...." କହି ଫଡ଼କରି ଉଠିଗଲେ ।

ବାବୁଆଣୀ ଦଣ୍ଡଟାଏ ସେଠାରେ ତୁନି ହୋଇ ଠିଆହେଲେ । ତା'ପରେ ବୁଢ଼ୀଙ୍କୁ ଓଳିକି ହୋଇ କହିଲେ, "ମାଉସୀ, ମୁଁ ଯାଉଚି ।"

ବୁଢ଼ୀ : କୁଆଡ଼େ ଆସିଥିଲୁ ଲୋ ଝିଅ, ଟିକିଏ ବସିଲୁ ନାହିଁ !

ବାବୁଆଣୀ : ଯୁ'ଥିପାଇଁ ଆସିଥିଲି, ମାଉସୀ, ସେ କାମ ମୋର ହୋଇଯାଇଚି ।



## ତେର

ସେ ଦିନ କଲିକତା ଓଡ଼ିଆ ସମାଜ ଘରେ ଗୋଟିଏ ସଭା ହବାର କଥା । ସମାଜଟି କଲିକତା ସହରର ବହୁବଜାର ନ୧୨ମ୍ବର ଘରେ । ସମାଜର ସମ୍ପାଦକ ବ୍ରଜନାଥ ବାବୁ । ମୋଟାମୋଟି ଗଢ଼ଣ, ବାଙ୍ଗର ଦିହ, ଚନ୍ଦା ମୁଣ୍ଡ, ନାକ ତଳେ ଦି'ପଟା ନିଶ । ଯେ ଟିକିଏ ସାହସ କରି ଦାଣ୍ଡକୁ ବାହାରିବ, ତା'ର ନିନ୍ଦା କରିବାର ଲୋକ ଓଡ଼ିଶାରେ ଅଭାବ ନାହିଁ । ଓଡ଼ିଆମାନଙ୍କର ଆଉ କିଛି ଗୁଣ ଥାଉ ବା ନଥାଉ, ସଜ ମାଛରେ ପୋକ ପକାଇବାର ଶକ୍ତି ଯଥେଷ୍ଟ ଅଛି । କେତେକ ହାମ୍‌ବଡ଼ା ଓଡ଼ିଆ ନେତା କହନ୍ତି, ବ୍ରଜବାବୁ ସମାଜ-ପଇସା ଖାଇ ଖାଇ ତାଙ୍କର ପେଟ ବଢ଼ିଯାଇଚି । କେହି ବିଚାରନ୍ତି—ବ୍ରଜର ନା ଅଛି ଘରଦ୍ୱାର, ନା ଅଛି ଜମିବାଡ଼ି । ସେ ଚଳେ କିପରି ? କଲିକତା ସହରରେ ଘର କିଣିଲା କେଉଁଆଡୁ ? କିନ୍ତୁ ସଦାଶିବବାବୁ ଏମାନଙ୍କ ମଧ୍ୟରୁ ଜଣେ ନୁହନ୍ତି । ସେ ବ୍ରଜବାବୁଙ୍କର ନିନ୍ଦା କରିବାର କେହି କେବେ ଶୁଣିନାହିଁ; ବରଂ ବ୍ରଜବାବୁ ଓ ସଦାଶିବ ବାବୁଙ୍କ ମଧ୍ୟରେ ଗୁରୁ ଶିଷ୍ୟ ସମ୍ବନ୍ଧ ଥିବାରୁ ଉଭୟେ ଉଭୟଙ୍କର ଗୁଣଗାନ ହିଁ କରିଥାନ୍ତି । ସଦାଶିବ ବାବୁ କଲିକତା ଆସିଥିବାର ଶୁଣି ବ୍ରଜବାବୁ ସମାଜର ଗୋଟାଏ ଅଧିବେଶନ ଡକାଇବାର ସ୍ଥିର କଲେ । ସଙ୍ଗେ ସଙ୍ଗେ ଛାପା ବିଜ୍ଞାପନ କାଗଜ ବଣ୍ଟାହୋଇଗଲା । ସାଧାରଣ ସଭା, ବକ୍ତା ହେଲେ ସଦାଶିବ ବାବୁ, ବିଷୟ ହବ ଓଡ଼ିଆ ସାହିତ୍ୟରେ ଓଡ଼ିଆ ଭାଷା । ବକ୍ତୃତା ପରେ ଏଇ ବିଷୟରେ ଯୁକ୍ତି-ତର୍କ ହେବ ଏବଂ ସଭା ଶେଷରେ କିଞ୍ଚିତ୍ ଜଳଯୋଗ । ସଭାର ସମୟ ସନ୍ଧ୍ୟା ପାଞ୍ଚଟା ।

ସଦାଶିବବାବୁ ଦୁଇ ତିନି ଦିନ ହେଲା କଲିକତାରେ ଅଛନ୍ତି । ନୋଟିସ୍‌ଟା କିନ୍ତୁ ସଭାଦିନ ସକାଳେ ବଣ୍ଟାହେଲା । ଆଗକୁ ବାଣ୍ଟିଲେ କାଳେ ଲୋକେ ଭୁଲିଯିବେ ବୋଲି ସ୍ୱୟଂ ବ୍ରଜବାବୁ ଘର ଘର ବୁଲି ବାସିନ୍ଦା ଓଡ଼ିଆମାନଙ୍କୁ ଓ ଓଡ଼ିଆପ୍ରେମୀ ବଙ୍ଗାଳୀମାନଙ୍କୁ ସଭାରେ ଉପସ୍ଥିତ ହେବାକୁ ଅନୁରୋଧ କରି ଆସିଲେ । ଆଶା କରିଥିଲେ ଯେ ସଭାରେ ଲୋକ ଭରାହେବେ । ସାଢ଼େ ଛ'ଟା ବାଜିଲା ବେଳକୁ ସଭାରେ ମାତ୍ର ୨୫ ଜଣ ଲୋକ ହୋଇଛନ୍ତି । ଯେଉଁମାନେ କଲେଜ ଇତ୍ୟାଦିରେ ପଢ଼ନ୍ତି, ସେମାନେ ଭାବି ନେଲେ, "କି ବକ୍ତୃତା ହେବ ହେ ! ଚାଲ ଖେଳା-ଖେଳି କରିବା, ଖାଇବା ବେଳକୁ ପହଞ୍ଚିଲେ ଯାଇ ହେଲା ।" ଯେଉଁମାନେ ଓଡ଼ିଆପ୍ରେମୀ ବଙ୍ଗାଳୀ, ସେମାନେ ଭାବିଲେ, "ଆଃ, ଓଡ଼ିଆର ଗୋଟାଏ ସାହିତ୍ୟ, ତା'ର ପୁଣି ଗୋଟାଏ ଭାଷା, ସେ ବିଷୟରେ ବକ୍ତୃତା ଦେବାର କି ଅଛି ? ଖାଲି ସମୟ ନଷ୍ଟ ।

ତେବେ ଲୁଚି, ରସଗୋଲାଗୁଡ଼ାକ ନଷ୍ଟ ହବ କାହିଁକି, ନହେଲା ସେତେବେଳକୁ କଷ୍ଟକରି ଯିବା ।” ଆସିଲେ କେବଳ ଅକର୍ମା ଅନାଡ଼ି ଓଡ଼ିଆ କେତେଟା, ଦୁଇ ଚାରିଜଣ ଉତ୍ସାହୀ କୁହାଳିଆ ଟୋକା....ଏମାନଙ୍କର ଧାରଣା ଯେ ଓଡ଼ିଆ ସାହିତ୍ୟ ଓ ରାଜନୀତି ସମ୍ବନ୍ଧରେ ଏମାନେ ନଜାଣନ୍ତି, ଏପରି କିଛି ନାହିଁ । ଫଳରେ ନିଜର ପାଣ୍ଡିତ୍ୟଟା ଦେଖାଇ ହବାର ସୁବିଧା ଯେଉଁଠାରେ ମିଳେ, ସେଠିକି ଯିବାକୁ ଏମାନେ ଛାଡ଼ନ୍ତି ନାହିଁ । ଆଉ ଜଣେ ଦି'ଜଣ ବଙ୍ଗାଳୀ ଭଦ୍ରଲୋକ....ଏମାନଙ୍କର ଓଡ଼ିଆ ଭାଷା ସହିତ ସମ୍ବନ୍ଧ ବଙ୍କିମବାବୁଙ୍କ କଥାକଥିତ ଓଡ଼ିଆ ବାକ୍ୟ କେତେଟା, ଅଥବା ରବିବାବୁଙ୍କର କବି-କଳ୍ପନା ଓଡ଼ିଆ ଭାଷାର ଭୂତଛାଇରୁ । କୌତୂହଳଟା ସେହି ହେତୁରୁ ଏବଂବିଧ ଯେ ଓଡ଼ିଆ ଭାଷା, ସେଥିରେ ବକ୍ତୃତା ଦିଆହୁଏ କିପରି ? ଆଉ ଆସିଛନ୍ତି ନିରକ୍ଷର କୁଲି ଓଡ଼ିଆ ପ୍ରାୟ ପଚାଶ ଷାଠିଏ । ଏମାନେ ତ ଓଡ଼ିଆ ନୁହନ୍ତି । ମୁଣ୍ଡଗଣତି ବେଳକୁ ନହେଲେ ଏମାନଙ୍କୁ ଓଡ଼ିଆ ବୋଲି ମାନିନେବାକୁ ହେଲା । ଟି-ପାର୍ଟି, ଗାର୍ଡନ-ପାର୍ଟି, ଡିନର-ପାର୍ଟି ଇତ୍ୟାଦି ପାଇଁ ଚାନ୍ଦା ସଂଗ୍ରହ ବେଳକୁ ନହେଲା ଏମାନଙ୍କୁ ଓଡ଼ିଆ ବୋଲି ଧରି ନିଆହେଲା; କିନ୍ତୁ ଓଡ଼ିଆ ବୋଲି ଚାନ୍ଦା ପାଣ୍ଠିରୁ କିଛି ପାଇବାର ଅଧିକାର ନାହିଁ, କି ଦାଣ୍ଡରେ ଘାଟରେ ଏମାନଙ୍କୁ ମୋର ଜାତିଭାଇ ଓଡ଼ିଆ ବୋଲି ସ୍ୱୀକାର କରିବାର ଦାୟିତ୍ୱ ଆମର ନାହିଁ । ଏମାନେ ହେଲେ ବଳିପାଇଁ ପୋଷା ମେଣ୍ଢା ଛେଳିଙ୍କ ଭଳି; ଠାକୁରାଣୀ ଆଗରେ ବଳିପଡ଼ିବା ପର୍ଯ୍ୟନ୍ତ, ବେଶ୍ ସେତିକି । ବଞ୍ଚିଥିବା ଭିତରେ କେତେବେଳେ ମୁଁ ଯଦି କହିଦେଇଥିବି ଯେ ଏ ଛେଳିଟିକି, କି ଏ ମେଣ୍ଢାଟିକି ମୁଁ ପୁଅପରି ସ୍ନେହ କରେଁ, ତା' ବୋଲି ବଳି ପକାଇବାକୁ ନେଲାବେଳେ ସେ କଥାଟା ଉଲୁଗୁଣା ଦେବା ତୁମର ନିତାନ୍ତ ଭୁଲ । ସେହି ହେତୁରୁ ସଭାରେ ଉପସ୍ଥିତ ଭଦ୍ରଲୋକମାନଙ୍କ ମଧ୍ୟରେ ଆମେ ଏମାନଙ୍କୁ ଗଣିନାହୁଁ । ଯାହାହଉ ଏମାନଙ୍କୁ, ସମାଜର ଚାକର-ବାକରମାନଙ୍କୁ ଓ ଉପସ୍ଥିତ ଭଦ୍ରଲୋକମାନଙ୍କୁ ପୁରାଇ ସଭାଘରଟା ପ୍ରାୟ ଭର୍ତ୍ତି ହୋଇଗଲା ଭଳି ଦେଖାଗଲା । ସଦାଶିବ ବାବୁ ତାଙ୍କର ବକ୍ତୃତା ଆରମ୍ଭ କଲେ । ସେ ବକ୍ତୃତା ବୁଝିବାର ଶକ୍ତି ତ ଆମର ନାହିଁ, ତେବେ ଆରଦିନ କାଗଜ ସବୁରେ ସେ ବିଷୟରେ ଯାହା ସବୁ ଟୀକା-ଟିପ୍ପଣୀ ବାହାରିଲା, ତା'ରି ତର୍ଜମାଟା ଦେଇଦେଲେ ଆପଣମାନେ ବୁଝିପାରିବେ କିପରି କାଗଜକଲମରେ ସଭାଟା ହୋଇଥିଲା ଓ ବକ୍ତୃତାର ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ କେତେ ।

"କାଲି କଲିକତା ଓଡ଼ିଆ ସମାଜ ଭବନରେ ଗୋଟିଏ ସଭା ହୋଇଯାଇଚି । ସଭାଘରଟି ଜନତାରେ ଲୋକାରଣ୍ୟ ହୋଇଯାଇଥିଲା । ଓଡ଼ିଶାର ବିଶିଷ୍ଟ ନେତା ସ୍ୱନାମଧନ୍ୟ ସଦାଶିବ ମିଶ୍ର ଏମ୍.ଏ., ଏମ୍.ଏସ.ସି. ଏ ସଭାର ଅତିଥି ଓ ପ୍ରଧାନ ବକ୍ତା ଥିଲେ । ବସ୍ତୁତଃ ତାଙ୍କରି ଅଭ୍ୟର୍ଥନା ନିମନ୍ତେ ଏ ସଭାଟି ଆହୂତ ହୋଇଥିଲା । କଲିକତାର ବିଶିଷ୍ଟ ଓଡ଼ିଆ କର୍ମୀ ଓ ଓଡ଼ିଆ ସମାଜର ସୁଯୋଗ୍ୟ ସମ୍ପାଦକ ବ୍ରଜମୋହନ ରାୟ ବି.ଏ., ବି.ଏଲ୍. ଅତିଥିଙ୍କୁ ପରିଚିତ କରାଇ ଦେଲା ପରେ ସଦାଶିବ ବାବୁ ତାଙ୍କର ବକ୍ତୃତା ଆରମ୍ଭ କଲେ । ବକ୍ତୃତାଟି ପ୍ରାୟ ପଇଁଚାଳିଶି ମିନିଟ୍ ଚାଲିଥିଲା । ବକ୍ତୃତାର ବିଷୟ "ଓଡ଼ିଆ ସାହିତ୍ୟରେ ଓଡ଼ିଆ ଭାଷା ।" ବକ୍ତା ପ୍ରାଞ୍ଜଳ ଓ ଚିତ୍ତାକର୍ଷକ ଭାଷାରେ ବିଷୟଟି ଏପରି ପାଣ୍ଡିତ୍ୟମୟ ଓ ସାରପୂର୍ଣ୍ଣ ଭାବରେ ବ୍ୟାଖ୍ୟା କରିଥିଲେ ଯେ ଶ୍ରୋତୃବର୍ଗ ଗଭୀର ନିଦ୍ରାଭିଭୂତ ପରି ଏକ ଲୟରେ ଶୁଣି ମୁଗ୍ଧ

ହୋଇଥିଲେ । ବକ୍ତୃତା ସରିବା ପରେ ଶ୍ରୋତୃମାନଙ୍କର କରତାଳି ଧ୍ୱନି ଉତ୍ସାହରୁ ସେମାନଙ୍କର ବକ୍ତୃତା ପ୍ରତି ସମ୍ମାନ ଓ ଆନନ୍ଦ ଜଣାପଡ଼ିଲା ।"

ବକ୍ତୃତା ପରେ ଏ ସମ୍ବନ୍ଧରେ ଯୁକ୍ତି-ତର୍କ ଆରମ୍ଭ କରିବାର କଥା । ଆମର ଯେ ସବଜାନ୍ତା ଯୁବକ କେତେଜଣ, ସେମାନେ ଅଣ୍ଟା ଭିଡ଼ି ବସିଲେ । ସେମାନଙ୍କ ମଧ୍ୟରୁ ଜଣେ....କପିଳେଶ୍ୱର ବାବୁ ପ୍ରଥମେ ଯୁଦ୍ଧକ୍ଷେତ୍ରକୁ ଡେଇଁପଡ଼ିଲେ । ପଚାରିଲେ, "ସଦାଶିବ ବାବୁ, ଆପଣ ଯେ କହିଲେ ଓଡ଼ିଆ ଭାଷାର ଗୋଟାଏ ଅଲଗା ବ୍ୟାକରଣ ଅଛି, ବ୍ୟାକରଣ ନିୟମ ଓ ପ୍ରଥା ଜାଣିବା ପାଇଁ ଆମ୍ଭମାନଙ୍କର ସଂସ୍କୃତ, ଇଂରେଜୀ, ବଙ୍ଗଳା ଭାଷାର ସାହାଯ୍ୟ ନେବା ଦରକାର ନାହିଁ ବୋଲି, ଆପଣ କ'ଣ ଭାବନ୍ତି ନାହିଁ ଯେ ଓଡ଼ିଆ ବ୍ୟାକରଣର ନିୟମ ଯାହା ଆଗେ ଥିଲା, ତାହା ଓଡ଼ିଆ ପୁରାଣ ପରି ବାସି ହୋଇଗଲାଣି ? ସେତେବେଳର ରୁଚି ଓ ଭାବ ଅନୁରୂପ ଭାଷାକୁ ବାନ୍ଧିବା ପାଇଁ ଯେ ନିୟମ ସବୁ ଦରକାର ଥିଲା, ବର୍ତ୍ତମାନ ତାହା ନାହିଁ । ବର୍ତ୍ତମାନ ନୂତନ ଭାବ, ନୂତନ ରୁଚି, ନୂତନ କଳାର ଯୁଗ । ବର୍ତ୍ତମାନ କୌଣସି ପୁରୁଣା କାଠଗଡ଼ ଏ ନୂଆ ଭାବର ଗୁଣ୍ଡିଚା ରଥ ଆଗରେ ପକାଇଲେ ସେ ତାକୁ ମାନିବ କାହିଁକି ?"

ମାଧବ ନନ୍ଦ ବୋଲି ଆଉ ଜଣେ ଯୁବକ ତା'ର ଉତ୍ତର ଦେଲେ, "ମୁଁ ଏ ପ୍ରଶ୍ନର ଜବାବ ଦେବି । ଏ ନିୟମକାନୁନକୁ ମାନିବାକୁ ହେବ । ସମୟ ପରିବର୍ତ୍ତନ ଅନୁସାରେ ଭାବ ଓ ରୁଚିର ପରିବର୍ତ୍ତନ ହୋଇପାରେ; କିନ୍ତୁ ଭାଷାର, କଥାର, Idiomର ନୁହେଁ । ଭାଷା ସନାତନ, ଚିରନ୍ତନ; ତାକୁ ତୁମେ ବଢ଼େଇପାର—କିନ୍ତୁ ସେ ବଢ଼ିବା ସେହି ଭାଷାର ବିଧିସଙ୍ଗତ ହେବା ଉଚିତ । ନୂଆ ଭାବ ଓ ନୂଆ ରୁଚି ଚଳେଇବା ପାଇଁ ଭାଷାର ବିଧି ଭାଙ୍ଗିବା ବିଷୟରେ ଲେଖକର ସ୍ୱେଚ୍ଛାଚାରିତା ଛଡ଼ା ଅନ୍ୟ କୌଣସି କାରଣ ନୁହେଁ ।

କପିଳେଶ୍ୱର : ଭାଷାର ପୁଣି ଗୋଟାଏ ବିଧି କ'ଣ ?

ମାଧବ : ଭାଷାର ବିଧି ତାହାର ବିଶେଷତ୍ୱ; ତାହାର ଗୋଚରତ୍ୱ । ସେହି ବିଧି ଲଙ୍ଘନ କଲେ, ଭାଷା ହବ ପାଗଳର ପ୍ରଳାପ, ନହେଲେ ପାଣ୍ଡିତିଅଣ । ବାକ୍ୟମାନଙ୍କର ପରସ୍ପର ସହିତ ଓ ପ୍ରତ୍ୟେକର କ୍ରିୟା ସହିତ କ୍ରିୟାର କାଳଭେଦରେ ଭିନ୍ନ ରୂପ ଓ କର୍ତ୍ତାର କର୍ମ ଭେଦରେ ଭିନ୍ନ ଆକାର—ମୋଟ ଉପରେ ସମସ୍ତ ବ୍ୟାକରଣ ନିୟମ ଏହି ବିଧିର ଅନ୍ତର୍ଭୁକ୍ତ । କିନ୍ତୁ ଏହି ବିଧି, ଏହି ବ୍ୟାକରଣ ନିୟମ ଛଡ଼ା, ଭାଷାର ସେଇ ଅନନ୍ୟ ସାଧାରଣ ସ୍ୱଭାବ ବା ପ୍ରକାର ମଧ୍ୟ ଥାଏ । ସେହି ସ୍ୱଭାବଟା କ'ଣ ତାହା ମୁଁ କଥାରେ ବୁଝାଇ ପାରିବି ନାହିଁ, ତାହା ଅନୁଭବ କରିବାର ବିଷୟ । ପ୍ରତ୍ୟେକ ଭାଷାରେ ଏଇ ଗୁଣଟା ଅଛି । ସେହି ହେତୁରୁ ପ୍ରତ୍ୟେକ ଭାଷା ଅନ୍ୟ ଭାଷାଠାରୁ ଭିନ୍ନ ।

କପିଳେଶ୍ୱର : ଭାଷାରେ କୌଣସି ନୂତନ ବିଧି ସେମାନେ ଆଣିନାହାନ୍ତି; ସେମାନେ କରିଥିଲେ ଏତିକି....ଡ୍ରାଇଡେନ୍ ଓ ପୋପ ଇତ୍ୟାଦିଙ୍କ ଲେଖାରେ ଯେ ସ୍ଥବିରତା, ଶିଥିଳତା, ସ୍ଥିରତା ଥିଲା, ତାହା ପରିବର୍ତ୍ତରେ ଭାଷାର ଗୋଟିଏ ଚାଞ୍ଚଲ୍ୟ, ପାଣିସୁଅ ପରି ଗୋଟାଏ ସରଳ ଗତି, ଗୋଟାଏ ଅସ୍ଥିରତା ମାତ୍ର ଆଣି ଦେଉଥିଲେ, ତାହା ସବୁ କରାଯାଇପାରେ

ଭାଷାର ବିଧି ମଧ୍ୟରେ । ତା' ଲାଗି ବିଧି ଭାଙ୍ଗିବା ପ୍ରୟୋଜନ ନାହିଁ କି ସେମାନେ ଭାଙ୍ଗି ନଥିଲେ । ସେକ୍ସପିଅରଙ୍କର ଯେ କୌଣସି ବହିରୁ ଯେ କୌଣସି ଛତ୍ର ନେଇ ତା' ଦେହରେ ସେକ୍ସପିଅରଙ୍କ ସମୟର କେତେଟା ବିଶେଷାର୍ଥାମୂକ ଶବ୍ଦକୁ ଉଠାଇ ଦେଇ ଓ ତା' ସ୍ଥାନରେ ସାଧାରଣ ଇଂରେଜୀ ଶବ୍ଦ ଭାଷା ବିଧି ସମ୍ବନ୍ଧରେ କିଛି ମାପ ନାହିଁ । ସେଲି, ବାଇରନ ଇଟାଲୀୟ ଫରାସି ଲେଖକମାନଙ୍କ ଦ୍ୱାରା ରୁଚି ଓ ଭାବ ବିଷୟରେ ଅନୁପ୍ରାଣିତ ହୋଇଥିଲେ ମଧ୍ୟ, ସେମାନେ ଇଂରେଜୀ ଲେଖିଥିଲେ । ଫରାସୀ, ଇଟାଲୀ ଓ ଇଂରେଜୀ ଭାଷାକୁ ପକାଇ ଘାଣ୍ଟିଅଣ କରିନଥିଲେ । ଆମ୍ଭମାନଙ୍କ ପାରିପାର୍ଶ୍ୱିକ ସାହିତ୍ୟ ଆଲୋଚନା କଲେ ମଧ୍ୟ ସେଇଆ ଦେଖିବ । ବଙ୍କିମଙ୍କ ଲେଖାଠାରୁ ରବୀନ୍ଦ୍ରଙ୍କ ଲେଖା ଭିନ୍ନ; କିନ୍ତୁ ଭିନ୍ନ ଏଇ ଭାବରେ ଯେ ରବୀନ୍ଦ୍ରଙ୍କ ଲେଖାର ବେଶି ଶବ୍ଦ ବଙ୍ଗଳା ।

କପିଳେଶ୍ୱର : କିନ୍ତୁ ରବୀନ୍ଦ୍ର ଯେ ଅନ୍ୟ ଭାଷାରୁ ଶବ୍ଦ ବ୍ୟବହାର କରିବାର ପକ୍ଷପାତୀ !

ମାଧବ : ଅନ୍ୟ ଭାଷାରୁ ଶବ୍ଦ ଆଣିବା ଏକ କଥା, ଆଉ ଭାଷାର ବିଧି ଭାଙ୍ଗିବା ସମ୍ପୂର୍ଣ୍ଣ ଆଉ ଏକ କଥା । କୌଣସି ଭାଷା ଭାବର ତୁଳନାରେ ସମ୍ପୂର୍ଣ୍ଣ ନୁହେଁ । ନୂତନ ନୂତନ ଭାବ ପ୍ରକାଶ କରିବା ପାଇଁ ବେଳେ ବେଳେ ଅନ୍ୟ ଦେଶର ସାହିତ୍ୟରୁ ଓ ଭାଷାରୁ ଶବ୍ଦ ଆଣି ଯୋଡ଼ିବା ଦରକାର କରେ ।

କପିଳେଶ୍ୱର : ତା'ହେଲେ ଅନ୍ୟ ଭାଷାରୁ ଶବ୍ଦ ଆଣି ବ୍ୟବହାର କରିବାରେ ତୁମର ଆପତ୍ତି ନାହିଁ ?

ମାଧବ : ନା, ଆପତ୍ତି ନାହିଁ, ଯଦି ମୋ ଭାଷାରେ ସେଇ ଭାବ ପ୍ରକାଶ କରିବାକୁ ଶବ୍ଦ ନଥାଏ । କିନ୍ତୁ ଆଜିକାଲି ଓଡ଼ିଆ ସାହିତ୍ୟରେ ଗୋଟାଏ ଢଙ୍ଗ ବାହାରିଚି, କଥାରେ କଥାରେ ହିନ୍ଦୀ ଓ ବଙ୍ଗଳା ଶବ୍ଦର ପ୍ରୟୋଗ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅନେକ ଶବ୍ଦ ଅଛି, ଯାହାକି ଲୁପ୍ତ ହେବା ଉପରେ; ଅଥଚ ସେହି ସେହି ଭାବଦ୍ୟୋତକ ଶବ୍ଦ ପାଇଁ ଆମ୍ଭେମାନେ ପର ଦୁଆର ଛ'ପିଣ୍ଡା ହେଉଚୁଁ ।

ହେରମ୍ବନାଥ : କିନ୍ତୁ ସେ ସବୁ ଶବ୍ଦ ତ ଆର୍ଷ, archaic; ଅନ୍ୟାନ୍ୟ ଭାଷାରେ ଆର୍ଷ ଶବ୍ଦର ବ୍ୟବହାର ତ କମ୍ ନୁହେଁ ?

ମାଧବ : ଆର୍ଷ ପ୍ରୟୋଗ କଲେ ଲେଖକବିଶେଷର ରୁଚି ଉପରେ ଆରମ୍ଭ ଏବଂ ଲେଖକବିଶେଷର ରୁଚି ଉପରେ ଶେଷ । ଆର୍ଷ ଶବ୍ଦ ବ୍ୟବହାର କରିପାରିବ ନାହିଁ ବୋଲି କୌଣସିଠାରେ ନିୟମ ନାହିଁ; ବରଂ ଅନେକ ସ୍ଥାନରେ ଯାହା ଆର୍ଷ ପ୍ରୟୋଗ ଭାବରେ ଆରମ୍ଭ ହୋଇଥିଲା, କାଳକ୍ରମେ ତାହା ଭାଷା ସହିତ ମିଶି ନିତ୍ୟ ବ୍ୟବହୃତ ଶବ୍ଦ ମଧ୍ୟରେ ଗଣ୍ୟ ହୋଇଯାଇଚି । ପର ଭାଷାଠାରୁ ନିଜ ଭାଷାର ଆର୍ଷ ପ୍ରୟୋଗ ବରଂ ଗ୍ରହଣୀୟ । ମୂଳ କଥା ହେଉଚି, ଆଜିକାଲି ଲେଖକମାନଙ୍କର ଭାଷା ଭିତରକୁ ପଶିବାର ଇଚ୍ଛା ଆଦୌ ନାହିଁ । ଲେଖିବା ପାଇଁ, ନିଜର ଭାବକୁ ପ୍ରକାଶ କରିବା ପାଇଁ, ଉପଯୁକ୍ତ ଭାଷା ବ୍ୟବହାର କରିବାକୁ ସେମାନେ ହେଳାରେ ସୁଦ୍ଧା ଟିକିଏ ଚେଷ୍ଟା କରନ୍ତି ନାହିଁ । ଯାହା ଯେଉଁପରି ଭାବରେ ମନକୁ ଆସିଲା, ତାହା ସେହିପରି ଭାବରେ ଥୋଇଦେବା ତାଙ୍କର ଧର୍ମ । ସେଇଥିଯୋଗୁଁ ଆମ ଭାଷାର ଆଜି ଏ ଅବସ୍ଥା ।

କପିଳେଶ୍ୱର : କିନ୍ତୁ ସେଥିରେ କ୍ଷତି କ'ଣ ? ଏପରି ଲେଖା ତ ବିଶେଷ ଭାବରେ ଠିକ୍, କାରଣ ଏହା ପ୍ରାକୃତିକ, ସ୍ୱାଭାବିକ । ଚେଷ୍ଟା ଚରିତ୍ର କରି ଯେ ଭାଷା ତିଆରି, ସେ ଭାଷା ସ୍ୱାଭାବିକ ହେବ କିପରି ? ତୁମେ ଅବଶ୍ୟ ସ୍ୱୀକାର କରିବ ଯେ କୃତ୍ରିମ ଭାଷା ଅପେକ୍ଷା ସ୍ୱାଭାବିକ ଭାଷା ହିଁ ବେଶି ସୁନ୍ଦର ।

ମାଧବ : ତା' ସ୍ୱୀକାର କରିବି; କିନ୍ତୁ ଆଜିକାଲିର ଲେଖକମାନେ ଯେ ଭାଷା ଲେଖୁଛନ୍ତି ତା' କ'ଣ ସ୍ୱାଭାବିକ ? ସେମାନେ ଓଡ଼ିଆ ଛାଡ଼ି ସବୁବେଳେ ବଙ୍ଗଳା ବା ଇଂରେଜୀ ପଢ଼ିଲେ; ଫଳରେ ଲେଖିଲା ବେଳକୁ ଇଂରେଜୀ ବା ବଙ୍ଗଳାଟା ତାଙ୍କ ମନରେ ସବାଆଗେ ପଡ଼ିଲା । ସେଇଟା ସେ ଚଟ୍‌କରି ଲେଖିନେଲେ । ଏ ତ ସ୍ୱାଭାବିକର ଲକ୍ଷଣ ନୁହେଁ । ମନୁଷ୍ୟ ଭାତ ଖାଇବାର କଥା । ତାକୁ ଯଦି ଟିଣଦୁଧ ଖାଇବାକୁ ଦିଆହୁଏ, ତା'ହେଲେ ଟିଣଦୁଧଟା ତ ତା'ର ସ୍ୱାଭାବିକ ଖାଦ୍ୟ ହେବ ନାହିଁ । ଓଡ଼ିଆ ଲେଖକର ଓଡ଼ିଆ ପଢ଼ିବାର କଥା । ସେ ଯଦି ବଙ୍ଗଳା ପଢ଼େ, ବଙ୍ଗଳା ଭାବେ ଓ ବଙ୍ଗଳା ଲେଖେ ତା'ହେଲେ ତା'ର ସେଉଟା ସ୍ୱାଭାବିକ ହବ ନାହିଁ ।

ହେରମ୍ବ : କିନ୍ତୁ ବଙ୍ଗଳା ଉନ୍ନତ ସାହିତ୍ୟ । ବଙ୍ଗଳା ନପଢ଼ିଲେ ନୂଆ ନୂଆ ଭାବ ଆସିବ କାହୁଁ ?

ମାଧବ : ମୁଁ ବଙ୍ଗଳା ପଢ଼ିବାକୁ ନାହିଁ କରୁ ନାହିଁ; ନାହିଁ କରୁଚି ସବୁବେଳେ ବଙ୍ଗଳା ପଢ଼ିବାକୁ—ନାହିଁ କରୁଚି ଓଡ଼ିଆ ଭାଷାରେ ଯଥେଷ୍ଟ ଅଭ୍ୟାସ ନହେବା ପର୍ଯ୍ୟନ୍ତ ବଙ୍ଗଳା ପଢ଼ିବାକୁ ।

କପିଳେଶ୍ୱର : କିନ୍ତୁ ଓଡ଼ିଆ ଭାଷାରେ ପଢ଼ିବାକୁ ଅଛି କ'ଣ ?

ମାଧବ : ପଢ଼ିବାକୁ ଅଛି ଅନେକ । ପ୍ରାୟ ହଜାର ବର୍ଷ ଧରି କବି କର୍ଣ୍ଣଙ୍କଠାରୁ ଆରମ୍ଭ କରି ଗଙ୍ଗାଧରଙ୍କ ପର୍ଯ୍ୟନ୍ତ ଅସଂଖ୍ୟ କବି ଲେଖକ, ଅସଂଖ୍ୟ ବହି ଲେଖିଯାଇଛନ୍ତି ।

କପିଳେଶ୍ୱର : କିନ୍ତୁ ସେଥିମଧ୍ୟରୁ ଅଧିକାଂଶ ତ ବୀଭତ୍ସ ଆଦିରସପୂର୍ଣ୍ଣ ।

ମାଧବ : ସାହିତ୍ୟରେ ନୈତିକତା ନାହିଁ; ସାହିତ୍ୟିକ, ଲେଖକ ବହିର ନୈତିକତା ନେଇ ଭାବେ ନାହିଁ । ସେ ଭାବିବସେ କଳା ନେଇ, ଭାଷା ନେଇ, ଭାବ ନେଇ । ବିଶ୍ୱ-ସାହିତ୍ୟରେ ସ୍ୱିଫ୍‌ଟ ଓ ଭଲତେଆରଙ୍କ ଯଦି ସ୍ଥାନ ଥାଏ, ତା'ହେଲେ ଉପେନ୍ଦ୍ର ଭଞ୍ଜଙ୍କ, ଦୀନକୃଷ୍ଣଙ୍କର ମଧ୍ୟ ଅଛି । ତା'ପରେ ସବୁ ଲେଖାରେ କିଛି ଆଦିରସ ନାହିଁ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଋତୁବର୍ଣ୍ଣନା, ଈଶ୍ୱରବର୍ଣ୍ଣନା, ଯୁଦ୍ଧବର୍ଣ୍ଣନା, କରୁଣାତ୍ମକ ବର୍ଣ୍ଣନା—କୌଣସି ରସର ଅଭାବ ନାହିଁ । ତାକୁ ତ ପଢ଼ିପାର ।

କପିଳେଶ୍ୱର : ତା'ହେଲେ ତୁମେ କ'ଣ କହିବାକୁ ଚାହଁ ଯେ ପ୍ରାଚୀନ ଓଡ଼ିଆ ସାହିତ୍ୟ ସୁନ୍ଦର; ଆଉ କେହି ନୁହେଁ ?

ମାଧବ : ମୁଁ ତା' କେବେ କହି ନାହିଁ । କୌଣସି ପ୍ରକୃତିସ୍ଥ ଲୋକ ତାହା କହି ନପାରେ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସୁନ୍ଦର ପଦାର୍ଥ ଅଛି, ଅସୁନ୍ଦର ମଧ୍ୟ ଅଛି । ବୋଧହୁଏ

କେତେକ ଗୁଣରେ ଅସୁନ୍ଦରର ମାତ୍ରା ସୁନ୍ଦର ଅପେକ୍ଷା ଅଧିକ । ଆଉରି ପୁଣି ସ୍ୱୀକାର କରୁଛି, ବିଦେଶୀ ସାହିତ୍ୟରେ ଓଡ଼ିଆ ସାହିତ୍ୟର ସୌନ୍ଦର୍ଯ୍ୟ ଅପେକ୍ଷା ଆହୁରି ଅନେକ ଗୁଣ ବେଶି ସୁନ୍ଦର ଜିନିଷ ଅଛି, ଯାହାକି କୌଣସି ସାହିତ୍ୟିକର ନଜାଣିବା ଖାଲି ଅଯୋଗ୍ୟତା ନୁହେଁ, ଗୋଟାଏ ମସ୍ତବଡ଼ ପାପ । ମୁଁ ଖାଲି କହୁଛି, ଯେ ଓଡ଼ିଆ ଭାଷାରେ ଓଡ଼ିଆ ସାହିତ୍ୟର ଶ୍ରୀକଳେବର ବୃଦ୍ଧି କରିବାକୁ ଚାହେଁ, ତା' ପକ୍ଷରେ ପ୍ରଥମେ ଓଡ଼ିଆ ଭାଷାରେ ନିଜ ଭାଷାକୁ ଅନୁପ୍ରାଣିତ କରି ତା'ପରେ ଭାବ ନିମନ୍ତେ ଅନ୍ୟ ଭାଷା ଓ ସାହିତ୍ୟରେ ପଶିପାରେ, ଏଇ ମାତ୍ର ।

କପିଳେଶ୍ୱର : କିନ୍ତୁ ରାଧାନାଥଙ୍କଠାରୁ ଆରମ୍ଭ କରି ଅ. ରାୟଙ୍କ ପର୍ଯ୍ୟନ୍ତ ଅନେକ ବଙ୍ଗାଳୀ ଲେଖକ ଓଡ଼ିଆ ସାହିତ୍ୟର ଶ୍ରୀ ବୃଦ୍ଧି କରିଛନ୍ତି ଆମ୍ଭମାନଙ୍କର ମନେ ରଖିବା ଉଚିତ ଯେ ସେମାନେ ବଙ୍ଗାଳୀ । ସେମାନଙ୍କ ଲେଖାରେ ବେଳେ ବେଳେ ବଙ୍ଗଳା ବିଧି ଓ ଶବ୍ଦ ପଶିଯାଇ ପାରେ । ତାକୁ ତ ମାନିବାକୁ ଆପଣ ରାଜି ?

ମାଧବ : ନା, ତାକୁ ମାନିବାକୁ ମୁଁ ରାଜି ନୁହେଁ ।

କପିଳେଶ୍ୱର : କି, ତା'ହେଲେ ତୁମେ କ'ଣ କହିବାକୁ ଚାହଁ ଯେ ସେମାନେ ଦୟାକରି ଓଡ଼ିଆ ସାହିତ୍ୟର ଚର୍ଚ୍ଚା କଲେ ବୋଲି ତାଙ୍କ ମାତୃଭାଷା ଛାଡ଼ିଦେବେ ? କି କୃତଘ୍ନତା !

ମାଧବ : ଏଥିରେ କୃତଘ୍ନ, ଅକୃତଘ୍ନ ହବାର କୌଣସି କାରଣ ନାହିଁ । ଯଦି କୌଣସି ବଙ୍ଗାଳୀ ବନ୍ଧୁ ପ୍ରକୃତରେ ଏ ସାହିତ୍ୟର ଉନ୍ନତି ନିମନ୍ତେ ଲେଖିବାକୁ ଯାନ୍ତି, ତା'ହେଲେ ତାଙ୍କର ବୁଝିବା ଉଚିତ ଯେ ସେ ଓଡ଼ିଆ ଲେଖିବେ; ସେ ବଙ୍ଗଳା ତା' ଭିତରେ ପୂରାଇ ପାରିବେନାହିଁ । ଉଦାହରଣ ସ୍ୱରୂପ ରାଧାନାଥ, ପ୍ୟାରିମୋହନ ଓ ରାମଶଙ୍କର । ସେମାନଙ୍କ ଭାଷାରେ ତୁମେ ଗୋଟିଏ ବଙ୍ଗଳା ଶବ୍ଦ ବା ବିଧି ପାଇବନାହିଁ । କିନ୍ତୁ ଯେଉଁମାନେ ନିଜ ଜାତି ଓ ସାହିତ୍ୟର ବଡ଼େଇ କରିବା ପାଇଁ ଓଡ଼ିଆ ସାହିତ୍ୟ ଓ ଜନସାଧାରଣଙ୍କ ପ୍ରତି ଅନୁଗ୍ରହ କରି ଓଡ଼ିଆରେ ଲେଖିବାକୁ ଇଚ୍ଛା କରନ୍ତି—ସେହିମାନଙ୍କର ଭାଷାରେ ବଙ୍ଗଳାର ପ୍ରାଦୁର୍ଭାବ ବେଶି । ଓଡ଼ିଆ ସାହିତ୍ୟ ତା'ର ଅଙ୍ଗପୁଷ୍ଟି ନିମନ୍ତେ କାହାରି ଅନୁଗ୍ରହକୁ ଅପେକ୍ଷା କରେନାହିଁ । ପ୍ରକୃତରେ ଭିକ ମାଗି ପେଟ ପୋଷେ ନାହିଁ । ଅନୁଗୃହିତ ଓଡ଼ିଆ ସାହିତ୍ୟ କେବେ ଉନ୍ନତ ହୋଇପାରିବ ନାହିଁ ।

ଏତିକିବେଳେ ପଛଆଡୁ ଜଣେ କୁଲିଙ୍କ ଭିତରୁ ଉଠିପଡ଼ି କହିଲେ, "ଆଜ୍ଞା, ଆପଣମାନେ ଯେ ସବୁ ବୋଲାବୋଲି ହଉଚନ୍ତି, ଆମେ ମୂର୍ଖଗୁଡ଼ାକ ସେଥିରୁ କିଛି ବୁଝିପାରିଲୁ ନାହିଁ । ଆମର ଯେପରି ମନେହଉଚି, ଆପଣମାନେ ନିଜ ନିଜ ଭିତରେ ଗାଳି ଦିଆଦେଇ ହଉଚନ୍ତି । କଳିଗୋଳ ଶୁଣିବାକୁ ଭଲ ଲାଗେ; କିନ୍ତୁ କଳିଗୋଳଟା ବୁଝିପାରିବା ପରି ଭାଷାରେ ହବା ଉଚିତ । ତା' ନହେଲେ ବିରାଡ଼ି-କଳି ପରି ସେଗୁଡ଼ାକ ଖାଲି ବିରକ୍ତ ଲାଗିବ । କ'ଣ ରାଧାନାଥ ଉପେନ୍ଦ୍ର ଭଞ୍ଜଙ୍କ କଥା ପଡ଼ିଥିଲା । ମୁଁ ଥରେ ରାଧାନାଥଙ୍କ ବହି ପଢ଼ିଥିଲି । ଦେଖିଲି ସେଥିରେ ସବୁ ମାଇକିନିଆଗୁଡ଼ାକ ଦୋଚାରୁଣୀ, ତା' ନାଁ କ'ଣ ? ସେଇ ମ, ଯେ ଡୁଡ଼ଙ୍ଗ ଦେବଙ୍କ ରାଣୀ ହେବାପାଇଁ ରାଜ୍ୟ-ସମ୍ପଦ ଶେଷକୁ ବାପର ଜୀବନ ପର୍ଯ୍ୟନ୍ତ ଦେଇଦେଲା—ନହିଁକା ?

ହୁଁ, ହୁଁ ନହିଁକା । ବାପ୍‌ରେ, ଏଡ଼େ ଅଲାଜୁକୀ ସେ ମାଇକିନିଆ । ତା' ଉତ୍ତାରୁ ଗୌରୀ ! ଛି ଛି, ଇଳିତାର କଥା ମନେପଡ଼ିଲେ ମୁଣ୍ଡ ନଇଁଯାଏ । ରଜାଘର ଝିଅ, ପାଠଶାଠ ପଢ଼ି, ଭିତରେ ଭିତରେ ଏଇ କଥା ! ପାର୍ବତୀ କଥା ତ ନ କହିବା ହିଁ ଭଲ, କାରଣ ସେ କଥା ତୁଣ୍ଡରେ ଧଇଲେ ବି ପାପ । କିନ୍ତୁ ବାବୁମାନେ, ସେ ତୁମକୁ ସୁନ୍ଦର ଲାଗିଲା । ଉପେନ୍ଦ୍ର ଭଞ୍ଜର ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମସୁଧାନିଧି ଏଥିରେ ସବୁ ନାୟିକାମାନେ ବାହା ନହେଲେ ନାୟକମାନଙ୍କ ପାଖକୁ ଯାନ୍ତି ନାହିଁ କି କଥାବାର୍ତ୍ତା ମଧ୍ୟ ହୁଏନାହିଁ । ବାହାହେଲା ଉତ୍ତାରୁ ସେ ତାଙ୍କ ଶୋଇଲା ଘରେ ଯାହା କଲେ, ସେଗୁଡ଼ାକ କ'ଣ ତୁମେ ସବୁ କରନାହିଁ ହେ ବାବୁ, ତୁମ ବାବୁଆଣୀମାନଙ୍କ ସାଙ୍ଗରେ ? ଅଥଚ ସେଗୁଡ଼ାକ ଅସୁନ୍ଦର; ହଉ ହଉ ବାବୁ ! ଯେଝା ରୁଚି ତାକୁ । ତେବେ ତା' ଲାଗି ବାଡ଼ିଆବାଡ଼ି କଥାରେ ହେଲେ କ'ଣ ହବ ବାବୁମାନେ, ସେତିକି ଯଦି କରେଇଦିଅନ୍ତି, ବାହାଚୂଡ଼ା ନହେଇ ଯଦି ଇମିତି ପୀରତି ଲାଗିବାର ବ୍ୟବସ୍ଥାଟା କରାଇପାରନ୍ତେ, ତାହେଲେ ଆମେ ଗରିବ-ବାପୁଡ଼ାତଙ୍କ ରକ୍ଷାପାଇଯାନ୍ତୁ । ପିଲା, ମାଇପି, ଭାଇ-ଭଉଣୀଙ୍କ କାଉକାଉରେ ଝାଣିଝାଣି ହୋଇ ଆମେ ସବୁ ଆଉ ଏ କଲିକତା ସହରରେ ଚାବୁକ ଗୋଇଠା ଖାଇ ମରିବୁଲନ୍ତୁ ନାହିଁ । ଆଶାକରି ଆସିଥିଲୁଁ, ଆମ ଗରିବବାପୁଡ଼ାଙ୍କ କଥା କିଛି ବୁଝିବ ବୋଲି । ତା' ତ ହେଲାନାହିଁ । ଆଜି ମଜୁରିରୁ ଅଣାଟିଏ ଖାଲି ତୁମ ପେଟକୁ ଗଲା ।" ବାବୁ-ଭୟାମାନେ ସମସ୍ତେ ଏକସ୍ୱରରେ "ହେ, ହେ, ଏଇଟା କିଏ ରେ ? ବାହାର କରିଦିଅ, ହାଡ଼ି-ପୋ କେଉଁଠିକାର" ତାକୁ ଦୂର-ଦୂର ମାର-ମାର କଲେ । ସେ ବିଚରା ପଳାଇଗଲା । ଗଲାବେଳେ ଭଟର ଭଟର କରି ଯାହା କହିଗଲା, ସେଗୁଡ଼ାକ ଶୁଣିଥିଲେ ବାବୁମାନଙ୍କୁ ପାଇନଥାନ୍ତାପରା ।

ତା'ପରେ ସଦାଶିବ ବାବୁ ଉଠିଲେ । କହିଲେ, "ଭାଇମାନେ, ଏ ଯୁକ୍ତି-ତର୍କ ତ ସରିଲା, ସଭାପତି ଭାବରେ ମୋର ପଦେଅଧେ କହିବାର କଥା । ମୁଁ ସେହି ହେତୁରୁ କହିଥିଲି ଯେ ଏସବୁ ବିଷୟରେ ସମାଧାନ କରି ଗୋଟାଏ ଆଦର୍ଶ ଠିକ୍ କରିବା ପାଇଁ ଗୋଟାଏ ସଭା ବସା... ।" ସେଇଠି ଠକ୍ କରି ଅଟକିଗଲେ । ତାଙ୍କ ମୁହଁ କଳା ପଡ଼ିଗଲା; ପାଟି ଖନିମାରିଗଲା, ଆଖିଗୁଡ଼ାକ ଯେପରି କୋରଡ଼ ଭିତରୁ ଛିଟିକି ବାହାରି ଆସୁଚି ସେହିପରି ହୋଇ ସେ ବାହାର ଦୁଆର ଆଡ଼କୁ ଚାହିଁରହିଲେ—ଟିକିଏ ମାତ୍ର । ଯେପରି ସେ ଭୂତ ଦେଖିଛନ୍ତି । ଦୁଆର ପାଖରେ ଆଉ କେହି ନଥିଲେ; ମାତ୍ର ଧୋଇବାବୁ । ମୁହୂର୍ତ୍ତେ ମାତ୍ର ଚାହିଁଦେଇ ଧୋଇବାବୁ ଚାଲିଗଲେ । ସଦାଶିବ ବାବୁ ଆଉ କିଛି କହିପାରିଲେ ନାହିଁ । ତାଙ୍କର ଏ ଭାବ ଦେଖି ବ୍ରଜବାବୁ ତାଙ୍କ ପାଖକୁ ଉଠିଗଲେ; କହିଲେ, କ'ଣ ହେଲା ? କ'ଣ ହେଲା ଆପଣଙ୍କର ସଦାଶିବ ବାବୁ !"

"ନାଇଁ, ମୋ ଦେହଟା କିପରି ଝିମିଝିମି ଲାଗୁଚି । ମୁଁ କିଛି କହିପାରିବି ନାହିଁ । ଖଣ୍ଡିଏ ଗାଡ଼ି ଡାକିଦିଅ, ମୁଁ ବସାକୁ ଫେରିଯିବି ।"

●

# ଚଉଦ

"ଶ୍ୟାମ, ଶ୍ୟାମ ! ଆଲୋ ଏ ବୋହୂ, ଶ୍ୟାମ ଗଲା କେଣେ ?"...

ଶ୍ୟାମବାବୁଙ୍କର ମା' । ପାଚିଲା ଆମ୍ବପରି ଗୋରୀ-ତୋରି, ଚମ ଧୂଡ଼ଧୂଡ଼ । ବୁଢ଼ୀ ତୁଳସୀ ଚୌରାମୂଳେ ବସି ମାଳି ଗଡ଼ଉ ଗଡ଼ଉ କ'ଣ ମନେପଡ଼ିଲା କେଜାଣି, ପୁଅକୁ ଡାକପକାଇଲେ । ବୋହୂ କୁମୁଦିନୀ ଦେବୀ ଅଗଣାରେ ବସିଥାନ୍ତି । ଦୁଇବର୍ଷର ପିଲାଟିଏ ଠୁକୁରୁ ଠୁକୁରୁ ହୋଇ କେତେବେଳେ ଧାଉଁଚି, କେତେବେଳେ ଚକିଭଉଁରି ବୁଲୁଚି । ବୁଢ଼ୀଙ୍କ ଡାକକୁ ଛଡ଼େଇ ନେଇ ପିଲାଟି ଖଡେଇ ହେଇ କହିଲା, "ଛାମ, ଛାମ ।" କୁମୁଦିନୀ ଶାଶୁଙ୍କ ପ୍ରଶ୍ନ ଶୁଣି କହିଲେ, "ମୁଁ କିମିତି କହିବି ମା, ସେ କେତେବେଳେ କେଣେ ଯାଉଚନ୍ତି, କି କରୁଚନ୍ତି, ମୋତେ କି ହିସାବ ଦିଅନ୍ତି ?" କୁମୁଦିନୀ ଦେବୀଙ୍କ ବୟସ ଉଣିଶି ଭିତରେ । ଆଉଟା ସୁନାର ବର୍ଣ୍ଣ, ସଦ୍ଦ ପଦ୍ମଫୁଲ ପରି ଉଜ୍ଜ୍ୱଳ, ତରଳ ଚଞ୍ଚଳ ମୁହଁଟିରେ ଥରଥର ଢଳଢଳ କଳା ଡୋଳାଯୋଡ଼ିକ ରାତିର ଶିଶିରବିନ୍ଦୁ ଦୁଇଟି ପରି ଜକଜକ କରୁଚି । କଥା କହିଲାବେଳେ କି ହସିଲାବେଳେ ତାଙ୍କ ଗଣ୍ଡଦେଶର ଦୁଇପଟେ ଦୁଇଟି ଖାଲ ହୋଇଯାଏ । ଆଉ ସେତେବେଳେ ନାଲି ଓଠ ଦୁଇଟି ଏପରି ଭାବରେ କୁଞ୍ଚି ହୋଇଯାଏ, ଯେପରିକି ସେ ଚୁମ୍ବନ ନେବା ପାଇଁ ପ୍ରସ୍ତୁତ ହେଉଛନ୍ତି । ଦାନ୍ତଗୁଡ଼ିକ ସାମାନ୍ୟ ପାନବୋଳରେ ରକ୍ତଜବାର ରଙ୍ଗ ଛଡ଼ାଇନେଉଚି । ହାତରେ ଚିତାକୁଟା । ଚିବୁକରେ କଳାଢାଇମଦାଟିଏ । ବୁଢ଼ୀ ତାଙ୍କ ଆଡ଼କୁ ସ୍ନେହର ଗୋଟିଏ ତରଳ ଚାହାଣୀ ମାରି କହିଲେ, "ଏଇଠାରେ ତ ତୋର ଦୋଷ, ତୋର ଭୁଲ । ତୁ ପିଲା, ବୁଝିପାରୁନାହୁଁ । ପୁରୁଷଜାତି ଶେଉଳ ମାଛ ପରି ବଡ଼ ଖସଡ଼ିଆ । ଟିକିଏ ହାତମୁଠା କୋହଳ ହେଲେ ସେ ମାରିବେ ଏପରି ଡିଆଁ ଯେ ହଜାରେ ଖୋଜିଲେ ପାଇବୁ ନାହିଁ । ମୋର ମନେ ଅଛି, ତୋ ଶଶୁର ଠିକ୍ ଏ ଶ୍ୟାମ ପରି ଥିଲେ । ନିଶା ଖାଇବା, ଚିର୍ଲା ଖୋଜିବା ତାଙ୍କର ସ୍ୱଭାବ; କିନ୍ତୁ ତାଙ୍କ ଜୀବନ ନାଟିକା ମୁଁ ଏପରି ଚିପି ଧରିଥିଲି ଯେ ସେ ମତେ ଡରି ଡରି ଚଳୁଥିଲେ । ମୁଁ ଉଠୁ କହିଲେ ଉଠିବେ, ବସ କହିଲେ ବସିବେ ।"

କୁମୁଦିନୀ : କିନ୍ତୁ ମା, ସେଥିରେ ଲାଭ କିସ ? ସେ ଯଦି ତାଙ୍କ ମନକୁ ମତେ ଭଲ ନ ପାଆନ୍ତି, ତାଙ୍କୁ ବାଧ୍ୟ କରି ମୁଁ ସ୍ନେହ କରାଇ ପାରିବି ? ତୁମରି କଥାରେ ହେଲା ମୁଁ କଥାରେ, ଛଟକରେ, ରୁଷାରେ ତାଙ୍କୁ ଜବତ କଲି; କିନ୍ତୁ ସେଥିରେ କିସ ହବ ? ତାଙ୍କ ମନ ଯେବେ ମତେ ଛାଡ଼ି ଆଉ କାହା ଆଡ଼କୁ ଯାଏ, ତା'ହେଲେ ତାଙ୍କୁ ଏପରି ଜବତ କରିବାରେ ତାଙ୍କ ମନ ମୋ ଆଡ଼କୁ ଫେରିଆସିବ ନାହିଁ; ବରଂ ଡରି-ମରି ରହିଲେ ମଧ୍ୟ ସେ ମନେ ମନେ କାନ୍ଦୁଥିବେ, ମତେ ବିରକ୍ତ ହେଉଥିବେ, ମତେ ଅଭିଶାପ ଦେଉଥିବେ । ସେଥିରେ ମୋର କି ସୁଖ ଆଉ ତାଙ୍କର ବା କି ସୁଖ ?

ବୁଢ଼ୀ : ପୁରୁଷଗୁଡ଼ାଙ୍କର ପୁଣି ମନ କିସ ଲୋ ମା' ! ଆମ ମନରେ ତ ତାଙ୍କ ମନ, ତୁ ଇମିତି କଲେ ଚଳିପାରିବୁ ନାଇଁ ମା ! ମୁଁ ଶ୍ୟାମକୁ ବେଶ୍ ଜାଣେ । ତୁ ଟିକିଏ ଟାଣୁଆ ନହେଲେ ସେ ତତେ ଫାଙ୍କିଦେବ । ବାର ହୀନି-ଅବସ୍ଥା ହବୁ ।" ଏତିକିବେଳେ ପିଲାଟି

ତାଳିଦେଇ କହିଉଠିଲା "ଥିକ ଥିକ" । ବୁଢ଼ୀ କହିଲେ, "ଶୁଣିଲୁ, ମୋ ପିଲା ତୁଣ୍ଡରେ ନିଜେ ଠାକୁର କହିଦେଲେ ।" କୁମୁଦିନୀ ପିଲାଟିକୁ କୋଡ଼କୁ ଟାଣିନେଇ ଗୋଟିଏ ଚୁମା ଖାଇ କହିଲେ, "ହଇରେ ଟୁନୁ ! ବାପା ଯଦି ଆମକୁ ନ ପଚାରିବେ କିସ କରିବା କହିଲୁ ?" ପିଲାଟି ବାପା କଥା ଶୁଣିଲାକ୍ଷଣି କହିଲା, "ବାପାଇବି, ମୁଁ ବାପାଇବି", କହି ଅଝଟ ହୋଇ ବସିଲା । କୁମୁଦିନୀ "ଦୂର୍ ଦୁଷ୍ଟପିଲା" କହି ତାକୁ କାଖେଇପକେଇ ଏଣୁତେଣୁ ନାନା କଥା କହି ତା' ମନ ବହଲେଇବାକୁ ଲାଗିଲେ । ଏତିକିବେଳେ ଶ୍ୟାମବାବୁ ଆସି ବାଟଘର କବାଟପାଖରେ ଠିଆହୋଇ ଚାହିଁଦେଲେ, ମା-ପିଲାଙ୍କର ଏଇ କାଣ୍ଡ ଲାଗିଚି । ତାଙ୍କର ଚକ୍ଷୁ ସ୍ନେହ ଓ ଅଭିଳାଷରେ ଉଜ୍ଜ୍ୱଳ ହୋଇଉଠିଲା । କୁମୁଦିନୀ ଦେଖିଲେ ସ୍ୱାମୀ ଦୁଆରମୁହଁରେ । ସେ ସ୍ୱାମୀଙ୍କ ଆଡ଼କୁ ବୁଲିପଡ଼ି ମୁହଁରେ ଚୁମ୍ବନର ଚିହ୍ନ ଦେଖାଇ ଜୀବନ୍ତ ବିଜୁଳି ପରି ସେ ସ୍ଥାନରୁ ପଳାଇଗଲେ । ପିଲାଟିକି ତଳେ ଥୋଇଦେଇ ଯାଇଥିଲେ । ସେ ବାପାକୁ ଦେଖି "ବାପା, ବାପା" କହି ଧାଇଁଯାଇ ଶ୍ୟାମବାବୁଙ୍କର ଦି' ଗୋଡ଼କୁ ତା'ର ଛୋଟ ଛୋଟ କୋମଳ ହାତ ଦୁଇଟିରେ କୁଣ୍ଢାଇ ପକାଇଲା । ଶ୍ୟାମବାବୁ ପୁଅକୁ କାଖେଇପକେଇ ଗୋଟିଏ ଚୁମା ଖାଇଲେ ଓ ତା'ପରେ ମା'ଙ୍କ ପାଖକୁ ଗଲେ । କହିଲେ, "ମା ! ମତେ ଖୋଜୁଥିଲୁ ?" ବୁଢ଼ୀ ମୁଣ୍ଡ ହଲାଇ ତୁଳସୀମାଳାଟି ତାଙ୍କ କୋଥଳିରେ ଥୋଇ କହିଲେ, "ହଁ, ବାପ, ମୁଁ ତ ବୁଢ଼ୀ ହେଲିଣି ଆସି । ଏ ଘରଜଞ୍ଜାଳରେ କେତେ ଦିନ ଝାଣି-ଝାଣି ହେବି । ମୋର ଇଚ୍ଛା, ଏ ଦିନ କେତୋଟି ପୁରୀରେ ମହାପ୍ରଭୁଙ୍କ ଚରଣ ତଳେ କଟାଇ ଦିଅନ୍ତି । ମତେ ପୁରୀରେ ନେଇ ଛାଡ଼ିଦେଇଆ ବାପ !" ଶ୍ୟାମବାବୁଙ୍କର ମୁହଁ ଗମ୍ଭୀର ହୋଇଗଲା । ସେ କିଛି ସମୟ ଚକିତ ପରି ବସି ରହିଲେ, କହିଲେ, "ଆଉ କିଛି ଦିନ ଯାଉ, ସେ ଦେଖାଯିବ ।"

ବୁଢ଼ୀ : ନା, ଆଉ କିଛି ଦିନ ଗଲାବେଳକୁ ହୁଏତ ମୁଁ ମରିଯାଇଥିବି । ମୁଁ ଏଇ ପନ୍ଦର ଦିନ ମଧ୍ୟରେ ଯିବି । ତୁ ସବୁ ସଜିଲ କର ।

ଶ୍ୟାମ : ମୋ ପାଖରେ ତ ପଇସାପତ୍ର ଇଲେ ନାହିଁ ।

ବୁଢ଼ୀ : କି, ତୋର ମଦ ଖାଇବାକୁ ପଇସାପତ୍ର ଅଛି; ଆଉ ମୋର ଧର୍ମକାର୍ଯ୍ୟକୁ ପଇସା ନାହିଁ ! ପନ୍ଦର ଦିନ ମଧ୍ୟରେ ତୁ ମତେ ପୁରୀରେ ରଖିଆ, ନହେଲେ ଭଲ ହେବ ନାହିଁ, କହିରଖୁଚି ।

ଶ୍ୟାମବାବୁ ଦେଖିଲେ ଏ ପଛା ଧରି କିଛି ଲାଭ ନାହିଁ । ସେ ପୁଣି କହିଲେ, "ତା' ବା ହେଲା; କିନ୍ତୁ ତୁମେ ସେଠି ଚଳିବ କିପରି ? ବୁଢ଼ୀ ମଣିଷ, ଅଜଣା ରାଜ୍ୟ ।"

ବୁଢ଼ୀ : ସେ ଚିନ୍ତା କରିବା ତୋର ଦରକାର ନାଇଁ । ମୁଁ ସାଙ୍ଗରେ ମଧୁଆକୁ ଆଉ ରମା ମା'କୁ ନେବି । ମତେ ମନ୍ଦିର ପାଖରେ ଖଣ୍ଡିଏ ଘର ଭଡ଼ା କରିଦେଲେ ଆମେ ବେଶ୍ ଚଳିଯିବୁଁ । ମୂଳକଥା; ପଇସା, ଘରଭଡ଼ା, ଆମର ଚଳିବା ଖର୍ଚ୍ଚ ଆଉ ମୋର ଦାନ-ଧର୍ମ ପାଇଁ ମାସରେ ଅନ୍ତତଃ ଟ୮୦ ଦରକାର ।

ଶ୍ୟାମ : ୮୦ ଟଙ୍କା ? ପ୍ରତି ମାସରେ ଏତେ ଟଙ୍କା ଦବା ପାଇଁ ମୋର ସଂସ୍ଥାନ ନାଇଁ ମା !

ବୁଢ଼ୀ : ସେ ସବୁ କଥା ମୁଁ ଜାଣେନାଇଁ । ତୁ ଚୋରିକର, ନାରୀକର, ମତେ ଦବାକୁ ହବ । ତୁ ଆଉ ପୁଅ ହୋଇ ମୋର କଲୁ କ'ଣ ?

ଶ୍ୟାମବାବୁ ଗମ୍ଭୀର ହୋଇ କିଛି ସମୟ ବସିରହିଲେ । କ'ଣ ଯେପରି କହିବାକୁ ମନ କରୁଚନ୍ତି; ପୁଣି ଭୟରେ କହି ପାରୁନାହାନ୍ତି । ଶେଷରେ ସାହସ ଭିଡ଼ି କହିଲେ, "ମା, ମୁଁ ଗୋଟିଏ କଥା ଭାବୁଚି । ତୁମେ ଯେବେ ସେଥିରେ ମତ ଦବ, ତାହେଲେ ଆମର ଆଉ ଅସୁବିଧା ଅଭାବ ରହିବ ନାହିଁ ।"

ବୁଢ଼ୀ : ସେ କି କଥା ?

ଶ୍ୟାମ : ତୁମେ ଜାଣ ପ୍ରମିଳାର ସମ୍ପତ୍ତି ମୁଁ ବର୍ତ୍ତମାନ ବୁଝାଶୁଝା କରୁଚି; କିନ୍ତୁ ପ୍ରମିଳା ଯେପରି ନିଆଁଗଳୀ ଟୋକୀ, ସେ ସମ୍ପତ୍ତିରେ ବେଶି କିଛି ହାତମାରିବା ସମ୍ଭବ ହଉନାଇଁ । ଯଦି ପ୍ରମିଳାକୁ ମୁଁ ବାହା...

ବୁଢ଼ୀ : ପାଗଲ ହେଲୁ ନା କିସ ? ବୋହୁମା'ର ଅବସ୍ଥା କିସ ହବ ? ଟୁନୁର ଅବସ୍ଥା କି ହବ ?

ଶ୍ୟାମ : ବୋହୁମା' ତ ଘରର ମୁରବି; ଘରର ମୁରବି ହିଁ ରହିବ ଚିରଦିନ । ମୁଁ ତ ପ୍ରମିଳାକୁ ସ୍ନେହ କରେ ବୋଲି ତାକୁ ବାହାହବାକୁ କହୁନାହିଁ; ବରଂ ମୁଁ ତାକୁ ଅନ୍ତରର ସହିତ ଘୃଣାକରେ । ଖାଲି ତା'ର ସମ୍ପତ୍ତିଟା ହେତୁରୁ ମତେ ୟା କରିବାକୁ ପଡୁଚି । ଥରେ ବିବାହଟା ହୋଇଗଲେ ସମ୍ପତ୍ତି ମୋ ହାତକୁ ଆସନ୍ତା । ତା'ପରେ ଦେଖନ୍ତି ସେ ଟୋକୀ କେଡ଼େ ଜବରୀ ?

ବୁଢ଼ୀ : କିନ୍ତୁ ଶ୍ୟାମ, ଭାବି ଦେଖିଚୁ, ତୁ କିସ କରିବାକୁ ଯାଉଚୁ ! ପ୍ରମିଳାର ମା' ମଲାବେଳେ ବିଶ୍ୱାସ କରି, ତା'ର ଝିଅ ଆଉ ସମ୍ପତ୍ତିବାଡ଼ି ତୋ ଜିମା କରିଦେଇଚି । ତୁ ଯେ ମତଲବ ଧରୁଚୁ—ଏ ବିଶ୍ୱାସରେ ବିଷ ଖୋଇବା କଥା; ମହାପାପ !

ଶ୍ୟାମ : ତୁମେ ତ ଇଲାଗେ କହିଲ ଯେ ମୁଁ ଚୋରି କରେଁ ନାରୀ କରେଁ, ତୁମକୁ ପଇସା ଯୋଗାଇବାକୁ ହବ ବୋଲି; ଆଉ ଏତେବେଳକୁ ପାପ-ପୁଣ୍ୟର କଥା ପଡ଼ିଲା କେନେ ? ତା'ପରେ ମା'—ଏହିପରି କିଛି ଗୋଟାଏ ଉପାୟ ନ କଲେ ଆଉ ବର୍ଷ ତିନି-ଚାରିଟାରେ ଯେ ମତେ ଦାଣ୍ଡରେ ବସିବାକୁ ହବ ।

ବୁଢ଼ୀ : ଦାଣ୍ଡରେ ବସିବା ହବ ? ତୁ କିସ କହୁଚୁ ଶ୍ୟାମ ? ଆରେ ଜମିଦାରୀ ଥାଉଁ ଥାଉଁ...

ଶ୍ୟାମ : ଜମିଦାରୀ ଆଉ ନାଇଁ ମା ! ସରକାରୀ ରାଜସ୍ୱ ଦୁଇ କିସ୍ତିର ଜୁଟାଇ ନ ପାରି ଜମିଦାରୀ ରାୟସାହେବ ମହାଦେବ ପରିଡ଼ାଙ୍କୁ ବନ୍ଧକ ଦେଇ ଗୁଜୁରାଣ ମେଣ୍ଟେଇଚି । ଏଣେ ପ୍ରଜାମାନେ ଖଜଣା ଦବାକୁ ନାହାନ୍ତି । ନାଲିସ୍ କରି ଖଜଣା ଆଦାୟ କରିବାକୁ ମଧ୍ୟ ମୋ ପାଖରେ ପଇସା ନାହିଁ । ତା'ପରେ ଏତେବଡ଼ ସଂସାରର ଖର୍ଚ୍ଚ ।

ବୁଢ଼ୀ : ସେଇ ଜମିଦାରୀର ଆୟରୁ ତୋର ବାପା ରାଜସ୍ୱ ଦେଇ ଘର-ସଂସାର ରଜା ଭଳି ଚଳେଇ କିଛି ମହାଜନୀ ବି କରୁଥିଲେ । ଆଉ ତୁ ତା'ର ଆୟରୁ ରାଜସ୍ୱ ମଧ୍ୟ ଦେଇପାରିଲୁ ନାହିଁ ?

ଶ୍ୟାମ : ଆୟ କାହିଁ ମା ? ଆଜିକାଲି ଯେପରି ସମୟ ପଡ଼ିଚି, ସେଥିରେ ପ୍ରଜାଙ୍କ ହାତରେ ପଇସା ନାହିଁ । ଧାନ ମହଣ ଦଶଣା ବାରଣା । ସେ ଖଜଣା ଦବାକୁ ନାହାନ୍ତି । ଧାନ ଯାହା ତାକୁ ଶାଗ ମାଛ ମୂଲ୍ୟରେ ବିକିବସିଲେ ବି ଗୁଡୁରାଣ ମେଣ୍ଟିବା ଅସମ୍ଭବ ।

ବୁଢ଼ୀ ଅନେକ ସମୟ ନୀରବ ହୋଇ ରହିଲେ । ତା'ପରେ କହିଲେ, "ତା'ହେଲେ କି ଏ କଥା ଛଡ଼ା ଆଉ କିଛି ଉପାୟ ତୋର ନାହିଁ ?"

ଶ୍ୟାମ : ଆଉ କିଛି ଥିଲେ କି ମୁଁ ଯ୍ଘ କରିବାକୁ ଯାନ୍ତି ।

ବୁଢ଼ୀ ଡାକିଲେ, "ବୋହୂ, ଆଲୋ ବୋହୂ, ଏଇଆଡ଼େ ଆସିଲୁ !" କୁମୁଦିନୀ ଧୀର ମନ୍ଥର ଗତିରେ ସ୍ୱାମୀଙ୍କ ଆଡ଼କୁ ଟିକିଏ ଚାହିଁ ଓଢ଼ଣାଟି ଟାଣି ଶାଶୁଙ୍କ ପାଖରେ ଯାଇ ବସିରହିଲେ । ତାଙ୍କର ସେ ଚାହାଣୀରେ କେତେ ଭର୍ତ୍ସନା, କେତେ ବେଦନା ଲୁଚିଥିଲା କେଜାଣି ଶ୍ୟାମବାବୁଙ୍କର ମୁହଁ ଶୁଖି କଳାକାଠ ପଡ଼ିଗଲା ।

ବୁଢ଼ୀ : ଶ୍ୟାମ କିସ କହୁଛି ଶୁଣିଚୁ ମା ?

କୁମୁଦିନୀ : ଶୁଣିଚି, କବାଟ ଉହାଡ଼ରେ ଥାଇ ସବୁ ଶୁଣିଚି ।

ବୁଢ଼ୀ : ତୋର କି କିଛି କହିବାର ନାହିଁ ?

କୁମୁଦିନୀ : ନାଇଁ ମା !

ବୁଢ଼ୀ ଆଶ୍ଚର୍ଯ୍ୟ ହୋଇଗଲେ । ବୋହୂ ମୁହଁକୁ ଚାହିଁ କହିଲେ, "ଏ କିସ ମା ? ଏପରି ତ ମୁଁ କେବେ ଶୁଣିନାହିଁ । ତୋର ମନରେ କିସ ଅଛି କହତ ମା ଖୋଲି ! ତୁ କ'ଣ ଭାବୁଚୁ ପ୍ରାଣ ହରେଇଦବୁ ବୋଲି ! ତା' ନହେଲେ ଏତେ ଉଦାସିନୀ ହେଲୁ କିପରି !"

କୁମୁଦିନୀଙ୍କ ସ୍ୱର କାନ୍ଦିଉଠିଲା । ଆଖି ଛଳଛଳ ହୋଇଗଲା । ସେ ପଣତକାନିରେ ଆଖିର ଲୁହ ପୋଛିଦେଇ କହିଲେ, "ନାଇଁ ମା, ପ୍ରାଣ ହରେଇବାର ଇଚ୍ଛା ନାହିଁ । ତା'ର କାରଣ ପ୍ରଥମ ମୋ ଟୁନୁର କିସ ହବ ! ସାବତ-ମା' ହାତରେ ପଡ଼ିଲେ ସେ କେତେ କଷ୍ଟ ପାଇବ । ଦ୍ୱିତୀୟରେ ମୁଁ ପ୍ରାଣ ହରେଇଦେଲେ ପ୍ରମିଳାର ଜିତ୍ ହବ । ମୁଁ ତା' ହବାକୁ ଦେବିନାଇଁ । ସ୍ୱାମୀ ମୋର ! ମୁଁ ଯଦି ସତୀ ହୋଇଥିବି, ଯଦି ମୁଁ ପ୍ରକୃତରେ ସ୍ୱାମୀ-ଦେବତାଙ୍କୁ ସମୁଦାୟ ମନ ପ୍ରାଣ ଦେଇ ଭଲପାଉଥିବି, ତା'ହେଲେ ପ୍ରମିଳାର କି ସାଧ୍ୟ ଯେ ମୋର ସ୍ୱାମୀଙ୍କୁ ମୋଠାରୁ ଛଡ଼ାଇନବ ! ଏ ସଂସାରରେ ତ ଗୋଟାଏ ଧର୍ମ ଅଛି ।

ବୁଢ଼ୀ ବୋହୂକୁ କୋଡ଼କୁ ଟାଣିନେଇ କହିଲେ, "ଧନ୍ୟ ମା ତୋ ଛାତିର ଦମ୍ଭ ! ତୋର ପତିଭକ୍ତି ! ଏ କଳିକାଳରେ ଏପରି କଥା ବଡ଼ ବିଚିତ୍ର, ବଡ଼ ଅଦ୍ଭୁତ । ମୁଁ ଆଶୀର୍ବାଦ କରୁଚି ମା, ତୁ ସବୁଦିନେ ସ୍ୱାମୀପୁତ୍ର ଘେନି ସୁଖରେ ରହିବୁ ।" ତା'ପରେ ଶ୍ୟାମବାବୁଙ୍କ ଆଡ଼କୁ ବୁଲିପଡ଼ି କହିଲେ, "ଶ୍ୟାମ, ଏପରି ଦେବୀ ସମାନ ସ୍ତ୍ରୀ ଛାଡ଼ି ଯେ ସମ୍ପତ୍ତିର ଆଶାରେ ମଧ୍ୟ ଅନ୍ୟ ସ୍ତ୍ରୀକୁ ନଜର ଦିଏ, ମୁଁ ତାକୁ କହେ ପଶୁ, ପାଷଣ୍ଡ । ଯା, ତୁ ମୋ ଆଗରୁ ଦୂର ହ ! ତୋର ଯାହା ଇଚ୍ଛା ତୁ କରିପାରୁ କିନ୍ତୁ ମନେରଖିଥା, ଏ ସତୀରାଣୀର ମନରେ କଷ୍ଟ ଦେଇ ତୋର କଦାପି ମଙ୍ଗଳ ହବନାହିଁ !"

●

# ପନ୍ଦର

ଯେଉଁ ଦିନ ସଦାଶିବବାବୁ ଓଡ଼ିଆ ସମାଜର ବିଶେଷ ଅଧିବେଶନରେ ବକ୍ତୃତା ଦେଇଥିଲେ ଏବଂ ଧୋଇବାବୁଙ୍କର ପ୍ରମଥବାବୁଙ୍କ ସହିତ ସାକ୍ଷାତ କରିବାର ଦିନକ ପରର କଥା, ଦିନ ଦୁଇ ପ୍ରହର ପ୍ରାୟ । ଧୋଇବାବୁ ଖା-ପିଅ ସାରି ଗୋଟିଏ ଆରାମ ଚୌକିରେ ବିଶ୍ରାମ ନେଉଛନ୍ତି । ଟିକିଏ ତନ୍ଦ୍ରା ମଧ୍ୟ ଆସିଯାଇଚି । ସେ ସ୍ୱପ୍ନ ଦେଖୁଚନ୍ତି—ଚାରିଆଡ଼େ ଅତଳ ସୁନୀଳ ଫେନିଳ ଜଳରାଶି । ମଝିରେ ଗୋଟିଏ ଦ୍ୱୀପ । ନାନା ଜାତି ପୁଷ୍ପସମ୍ଭାରରେ ମଣ୍ଡିତ ଦ୍ୱୀପଟି । ସେଥିରୁ ମଧୁଗନ୍ଧ ପବନରେ ଭାସି ଆସି ମନ ପ୍ରାଣ ପୁଲକିତ କରୁଚି । ଚାନ୍ଦିନୀ ରାତି, ଉପରେ ସୁନୀଳ ଆକାଶରେ ସୁନିର୍ମଳ ଚନ୍ଦ୍ର ତାହାର ଶୋଭାସମ୍ପଦ ବିସ୍ତାରି ରାଜତ୍ୱ କରୁଚି । ଚତୁର୍ଦ୍ଦିଗ ନିସ୍ତବ୍‌ଧ, ନୀରବ । ପାରିଜାତ-ସୌରଭମୟ ସେହି ଦ୍ୱୀପରେ ଗୋଟିଏ ରମଣୀ ମୂର୍ତ୍ତି । କି ସୁନ୍ଦର ଚେହେରା ! କି ଅନୁପମ ମାଧୁରୀ ! ଯେପରି ରମ୍ଭା କି ମେନକା ସ୍ୱର୍ଗରୁ ଓହ୍ଲାଇ ଆସି ଏଠାରେ ଯେପରି ତାଙ୍କର ଆଗମନକୁ ପ୍ରତୀକ୍ଷା କରିଚନ୍ତି । ଆଉ ଧୋଇବାବୁ, ଉପାସନାଭରା ହୃଦୟରେ, ସୌନ୍ଦର୍ଯ୍ୟ-ବିମୁଗ୍‌ଧ ମନରେ ତୂଳିକା ଧରି ସେହି ଅପରୂପ ରୂପର ଠାଣି ଚିତ୍ରପଟରେ ସଜୀବ କରିବାରେ ମଗ୍ନ । ଏହି ସମୟରେ ଗୋଟିଏ କୋମଳ ଶୀତଳ ରମଣୀ କର ତାଙ୍କ କାନ୍ଧରେ ଆସି ଅମୃତ ସିଞ୍ଚି ଦେଇଗଲା । ସେ ଭାବିଲେ ସେଇ ସ୍ୱର୍ଗ-ଅପସରୀ ଯେପରି ତାଙ୍କୁ ଆଦର ସୋହାଗ କରୁଛନ୍ତି । ସେ ଚମକି ଉଠିଲେ । ଆଖି ଖୋଲି ଦେଖିଲେ—ସତକୁ ସତ ଗୋଟିଏ ରମଣୀ ମୂର୍ତ୍ତି କିନ୍ତୁ ସେ ତାଙ୍କର ସ୍ୱପ୍ନର, ଧ୍ୟାନର 'ଚିନ୍ତାମଣି' ନୁହନ୍ତି; ସେ ପ୍ରମଥ ବାବୁଙ୍କର କନ୍ୟା ମେନକା । ମେନକାଙ୍କର ବେଶରେ ଆଜି ଟିକିଏ ବେଶି ପରିପାଟୀ । ତାଙ୍କର ଅଧରରେ ଟିକିଏ ବେଶୀ ରକମ ରଙ୍ଗ, ମୁହଁରେ ଟିକିଏ ବେଶି ରକମ ମୁହଁମଖା ଚୂନା । ତାଙ୍କ ଦେହରୁ ଚାମେଲି ଫୁଲର ଗନ୍ଧ ଭାସିଆସୁଚି । ସେ ସ୍ୱପ୍ନ ସୁନ୍ଦରୀ ନହେଲେ ମଧ୍ୟ ଖୁବ୍ ସୁନ୍ଦର ଦେଖାଯାଉଛନ୍ତି । କାଳିଦାସଙ୍କର "କିମିବହି ମଧୁରତାଂ ମଣ୍ଡନଂ କା କୃତିନାଂ" କଥାଟା ସେ ଯୁଗରେ ସତ ହୋଇପାରିଥିବ; କିନ୍ତୁ ଆଜିକାଲି ଯୁଗରେ ସୁନ୍ଦରୀକୁ ଆଉରି ସୁନ୍ଦରୀ କରିବା ପାଇଁ, ମଧୁରକୁ ଆଉରି ମଧୁର କରିବା ପାଇଁ କେତେ ସରଞ୍ଜାମ ବିଜ୍ଞାନର ଚେଷ୍ଟାରେ ବାହାରିଲାଣି ।

ଧୋଇବାବୁ ଯୁବକ । ତାଙ୍କର ସେ ଅଭୁକ୍ତ ଯୌବନରେ ସେ କଳାବିଦ୍ୟାରେ ବୁଡ଼ିରହି ରମଣୀ-ପ୍ରଣୟ-ସୁଖ ଚାଖିବାକୁ ନ ପାଇଥିଲେ ବି ଅଭିଳାଷ ନ କରିଥିଲେ ମଧ୍ୟ, ଯୁବକର ସ୍ୱାଭାବିକ ଅଭିଳାଷ ଯେ ତାଙ୍କୁ ବେଳେ ବେଳେ ମତ୍ତ ନକରିଚି ଏବଂ ସେହି ଅଭିଳାଷର ମୋହରେ କ୍ଷଣକପାଇଁ ଅନ୍ଧହୋଇ ସେ ଯେ ରମଣୀର ଅମୃତମୟ ଅଧରସୁଧା ପିଇବାକୁ ଇଚ୍ଛା ନକରିଚନ୍ତି, ତାହା କହିବା ଯେପରି ଅସମ୍ଭବ, ସେପରି ଅପ୍ରାକୃତିକ, ଅସତ୍ୟ । ଆଜି ଏଇ ମୁହୂର୍ତ୍ତରେ ତାଙ୍କର ସେଇ ଅଭିଳାଷ ସ୍ୱପ୍ନର ସେ ରମଣୀୟ ମୂର୍ତ୍ତି ଦେଖି ହୃଦୟରେ ଜାଗିଉଠିଥିଲା । ତା' ଉପରେ ମେନକାଙ୍କ ଅଙ୍ଗ-ସୌରଭ ତାଙ୍କର ମୁଣ୍ଡରେ ପଶି ମୁଣ୍ଡଟାକୁ ଗରମ କରି ଦେଇଥିଲା । ବୋଧହୁଏ, ତାଙ୍କର ଶିଳ୍ପଚକ୍ଷୁ ଦେଖିଲା ମେନକା ପ୍ରକୃତରେ ସୁନ୍ଦରୀ । ତାଙ୍କର ଚକ୍ଷୁରେ ପ୍ରକୃତ ସୁଧାରସ, ତାଙ୍କର ଦେହରେ ପ୍ରକୃତରେ ଯୌବନର ଓ ଜୀବନର

ଉଷ୍ଣ ବିଦ୍ୟୁତ୍‌ଶକ୍ତି ପ୍ରକାଶ ପାଇଯାଉଚି । ସେହି ମୁହୂର୍ତ୍ତରେ ସେଇ ଉନ୍ମାଦନାରେ ପାଗଳ ହୋଇ ଧୋଇବାବୁ ମେନକାଙ୍କର ହାତଟି ଧରି ତାଙ୍କ ଆଡ଼କୁ ଟାଣିଆଣିଲେ । ମେନକା ମଧ୍ୟ ଟିକିଏ ମୁରୁକି ହସ ଦେଖାଇ ବିନା ବାଧାରେ ତାଙ୍କ ଉପରେ ଇଇଁପଡ଼ିଲେ । ଧୋଇବାବୁ ତାଙ୍କୁ ଚୁମା ଦେବାକୁ ଉଦ୍ୟତ ହେଲେ । ମେନକାଙ୍କର ମୁହଁରେ ବି ତୃଷ୍ଣାର ଭାବ ମୁହୂର୍ତ୍ତକ ପାଇଁ ଫୁଟିଉଠିଲା; କିନ୍ତୁ ସାଙ୍ଗେ ସାଙ୍ଗେ ସେ ଦୁଆର ଆଡ଼କୁ ଚାହିଁ ଯେତେ ଦୂର ସମ୍ଭବ ମୁହଁରେ ଟିକିଏ କୋମଳ ତରଳ ଭାବ ଆଣିବାର ଚେଷ୍ଟା କଲେ । ଧୋଇବାବୁଙ୍କର ଅଧର ପ୍ରାୟ ମେନକାଙ୍କର ଅଧର ସ୍ପର୍ଶ କରୁଚି, ଏଇ ସମୟରେ ପ୍ରମଥ ବାବୁ ସେ ଘରକୁ ପଶିଆସିଲେ । ଏ ଦୃଶ୍ୟ ଦେଖି ତାଙ୍କର ମୁହଁ ଗମ୍ଭୀର ହୋଇଗଲା । ସେ କ୍ରୋଧ-କମ୍ପିତ ସ୍ୱରରେ ଗର୍ଜନ କରି କହିଲେ, "କି ଧୋଇ ବାବୁ ! ଆପଣ ବେଶ୍ ଭଦ୍ରଲୋକ ତ ! ମୁଁ ଦୟାକରି ଗୁଣ୍ଡାର ଛୁରୀରୁ ବଞ୍ଚାଇବା ପାଇଁ ତୁମକୁ ମୋ ଘରେ ଆଶ୍ରୟ ଦେଇଥିଲି । ଏଇ କି ସେ ଉପକାରର ପରିଣାମ ? ଏଇ କି ଆଶ୍ରୟଦାତା ପ୍ରତି ତୁମର କର୍ତ୍ତବ୍ୟ ? ମୋହର ସରଳା ବାଳିକା କନ୍ୟା । ତାହାର ସରଳତା, ତାହାର ଅନଭିଜ୍ଞତାର ସୁବିଧା ନେଇ ତୁମର ଏପରିଭାବରେ ତାହାର ମନରେ ଅଭିଳାଷ ଜାଗ୍ରତ କରିବା କି ଭଦ୍ର-ଜନୋଚିତ କାର୍ଯ୍ୟ ବୋଲି ଆପଣ ମନେକରନ୍ତି ? ଛି, ଛି, କି ଲଜ୍ଜାର କଥା ? ଘୋର କଳିକାଳ, ଘୋର କଳିକାଳ ! ଏ ସମୟରେ କାହାରି ଉପକାର କରିବା ନିତାନ୍ତ ଅବିଧେୟ । ଆଉ ମେନକା ! ମୁଁ ଭାବିଥିଲି, ତତେ ଯେ ଶିକ୍ଷା ଦେଇଛି ମୁଁ, ସେହି ଶିକ୍ଷାବଳରେ ଭଣ୍ଡ ଠକ ଅଭଦ୍ର ଯୁବକମାନଙ୍କର ପ୍ରତାରଣାପୂର୍ଣ୍ଣ କୁହୁକକୁ ତୁ ଏଡ଼ି ପାରିବୁ । ତୁ ମତେ ଆଜି ବଡ଼ ଆଶାରୁ ବଞ୍ଚିତ କଲୁ । ତୋର ଏ କଥା ଭାବିଲାବେଳେ ମୋର ମୁଣ୍ଡ ନଇଁଯାଉଚି । ତୁ ମୋର କୁଳରେ କାଳି ବୋଳିଦେଲୁ ଆଜି !" କହି ସତେ ଯେପରି କେତେ ଦୁଃଖ, କେତେ ବେଦନାରେ ତାଙ୍କର ହୃଦୟ ଭାଙ୍ଗିଗଲା । ସେହିପରି ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ, ଛାତିଟାକୁ ଦୁଇ ହାତରେ ଚିପିଧରି ସେ ଗୋଟାଏ ଚୌକିରେ ବସିପଡ଼ିଲେ । ଧୋଇବାବୁ ପ୍ରକୃତିସ୍ଥ ଥିଲେ ବୁଝିପାରିଥାନ୍ତେ, ଏ କଥାଗୁଡ଼ାକ ଯେପରି ଘୋଷା ପାଠ ପରି ସେ ଆବୃତ୍ତି କରିଗଲେ, ତାଙ୍କର ଏ ବେଦନା ଓ ଦୁଃଖର ଦୃଶ୍ୟରେ ଯେପରି ରଙ୍ଗମଞ୍ଚରେ ଅଭିନେତାର କୌଶଳ ପୂରିରହିଛି; କିନ୍ତୁ ଧୋଇବାବୁ ପ୍ରକୃତିସ୍ଥ ନଥିଲେ । ତାଙ୍କର ସେ ମୁହୂର୍ତ୍ତକର ପାଗଳାମି ଚାଲିଯାଇଚି । ଏପରିଭାବରେ ଧରାପଡ଼ିଯାଇ ସେ ଲଜ୍ଜାରେ ନିଜର ଦୁର୍ବଳତା ପ୍ରତି ବିରକ୍ତିରେ ବଡ଼ କ୍ଷୁର୍ଣ୍ଣ ହୋଇଯାଇଚନ୍ତି । ସେ ଅନୁତାପରେ କାନ୍ଦକାନ୍ଦ ହୋଇ ହାତ ଯୋଡ଼ି କହିଲେ, "ପ୍ରମଥ ବାବୁ, ମୁଁ ପ୍ରକୃତରେ ବଡ଼ ଦୁଃଖିତ । ବିଶ୍ୱାସ କରନ୍ତୁ, ମୁଁ ବଡ଼ ଅନୁତପ୍ତ । ମୋ ଜୀବନରେ ମୁଁ ଏପରି କେବେ ନିଜକୁ ଭୁଲି ଯାଇ ନ୍ଥିଲି । ଆଜି କ'ଣ ହେଲା କେଜାଣି, ମୁଁ ଯେ ପାଗଳାମି କରୁଚି, ଯେ ଭଦ୍ରତାର ନିୟମ ଭାଙ୍ଗିବି, ସେଥିପାଇଁ ମୁଁ ନିଜ ପାଖରେ ନିଜେ ଦୋଷୀ । ମତେ କ୍ଷମା କରିବେ ନାହିଁ ?

ପ୍ରମଥ : ଆପଣ ଯାହା କରିଚନ୍ତି ତାହାର କ୍ଷମା ଗୋଟିଏ କଥାରେ । ତା' କି କରିବାକୁ ଆପଣ ପ୍ରସ୍ତୁତ ଅଛନ୍ତି ?

ଧୋଇ : କହନ୍ତୁ, ଆପଣ ଯାହା କହିବେ ମୋର ସାଧ୍ୟାତୀତ ନହେଲେ ନିଶ୍ଚୟ କରିବି । ମତେ ଯେ ଶାସ୍ତି ଦେବେ ତାହା ମୁଁ ଆନନ୍ଦରେ ବରଣ କରିନେବି ।

ପ୍ରମଥ : ଆପଣଙ୍କର ଆଜିକାର ଏଇ ଅଶିଷ୍ଟ କାର୍ଯ୍ୟର ପ୍ରାୟଶ୍ଚିତ୍ତ, ଆପଣ ମେନକାକୁ ବିବାହ କରନ୍ତୁ ।

ଧୋଇ : ବିବାହ ! ସେ କିପରି ? ନା, ନା, ମତେ କ୍ଷମା କରନ୍ତୁ, ମୁଁ ମୁଁ ଏ କଥାଟି କରିପାରିବି ନାହିଁ । ଆଉ ଯାହା କହିବେ...

ପ୍ରମଥ : ଆଉ ମୋର କିଛି କହିବାର ନାହିଁ । ଆପଣ ଯାହା କରିଚନ୍ତି ସେ ଖାଲି ଶିଷ୍ଟାଚାର-ବିରୁଦ୍ଧ ନୁହେଁ; ଆଇନ ଅନୁସାରେ ମଧ୍ୟ ଦଣ୍ଡନୀୟ । ଆପଣ ଯଦି ବିବାହ ନ କରନ୍ତି ତା'ହେଲେ ମୁଁ ବାଧ୍ୟ ହୋଇ ଆଇନର ଆଶ୍ରୟ ନେବି ।

ଧୋଇବାବୁ ଚକିତ ହୋଇ କହିଲେ, "ଆପଣ ନିଶ୍ଚୟ ଏ କଥା ଅଦାଲତକୁ ନେବେନାହିଁ । ଦାଣ୍ଡରେ ଲୋକେ କ'ଣ କହିବେ ?"

ପ୍ରମଥ : ତା' ଛଡ଼ା ମୋର ଆଉ କି ଉପାୟ ! ଆପଣ କ'ଣ କହିବାକୁ ଚାହାନ୍ତି ମୋ ଝିଅର ଅବମାନନା ମୁଁ ଚୁପ୍‌ହୋଇ ସହିଯିବି ? ଏ କଥା ଯଦି, ତା' ହେଲେ ଆପଣ ନିଶ୍ଚୟ ଭୁଲ୍ ବୁଝିଚନ୍ତି ।

ଧୋଇ : କିନ୍ତୁ ଏହାର ଅନ୍ୟ ପ୍ରତିକାର କି ନାହିଁ ? ମୁଁ ମୋର ଏ ମୁହୂର୍ତ୍ତକର ଅପରାଧ ଲାଗି ଯଥେଷ୍ଟ କ୍ଷତିପୂରଣ...

ପ୍ରମଥ : କି ! ତୁମେ କାପୁରୁଷ, ଭଣ୍ଡ, ଭାବିଚ ଟଙ୍କାଦେଇ ମୋ ଝିଅର ଅବମାନନା କରିପାରିବ ? ଏଡ଼େ ନୀଚ ତୁମେ, ଏଡ଼େ ଅଧମ !

ଧୋଇବାବୁ ଦେଖିଲେ ଏ ଗୋଟିଏ ବଡ଼ରକମ ଗୋଲକଧନ୍ଦା । ସେ କହିଲେ, "ତେବେ କ'ଣ ବିବାହ କରିବା ଛଡ଼ା ଅନ୍ୟ ଉପାୟ ନାହିଁ ?"

ପ୍ରମଥ : ଅଛି ଫୌଜଦାରୀ ଅଦାଲତରେ ଆସାମୀ ଭାବରେ ଠିଆହୋଇ ଜେଲଦଣ୍ଡ ଭୋଗିବା ।

ଧୋଇବାବୁଙ୍କର ମୁହଁ ନିରାଶରେ କଳାକାଠ ପଡ଼ିଗଲା । ସେ କିଛି ସମୟ ଭାବି କହିଲେ, "ନହେଲା, ମୁଁ ବିବାହ ହେବାକୁ ପ୍ରସ୍ତୁତ ଅଛି । କିନ୍ତୁ ମେନକା ଦେବୀ ମତେ କାହିଁକି ବିବାହ କରିବାକୁ ରାଜି ହେବେ ? ସେ ନିଶ୍ଚୟ ମତେ ଭଲପାନ୍ତିନାହିଁ ।" କହି ସେ ମେନକାଙ୍କ ଆଡ଼କୁ କାତର ନୟନରେ ଚାହିଁରହିଲେ । ତାଙ୍କର କଥାକୁ ଉତ୍କଣ୍ଠାରେ କାନଡେରି ରହିଲେ; ଯେପରିକି ତାଙ୍କରି କଥାରେ ତାଙ୍କର ଜୀବନ ମରଣ ନିର୍ଭର କରେ । ପ୍ରମଥ ବାବୁ ମେନକାକୁ ସମ୍ବୋଧନ କରି କହିଲେ, "କି ମା ! ତୋର କି ଇଚ୍ଛା ? ତୁ କ'ଣ ଏ ବାବୁଙ୍କୁ ବିବାହ କରିବାକୁ ଅସମ୍ମତ ?"

ମେନକା ଯେପରି ଲାଜରେ ସଢ଼ିଗଲେ । ସେ ମୁହଁକୁ ତଳକୁ ପୋତି ଅତି ଧୀର ଭାବରେ କହିଲେ, "ନା" । ଧୋଇବାବୁଙ୍କର କୋଟି ଟଙ୍କାର ବୋଇତ ଯେପରି ଅତଳ ସମୁଦ୍ରରେ ବୁଡ଼ିଗଲା । ସେ କହିଲେ, "କିନ୍ତୁ ମୁଁ ଭାବିଥିଲି ଯେ ଆପଣ—।" ତାଙ୍କ ତୁଣ୍ଡ କଥା ତୁଣ୍ଡରେ ରହିଗଲା । ମେନକା ହଠାତ୍ ମୁଣ୍ଡ ଟେକି ଓଠ ଉପରେ ଆଙ୍ଗୁଠି ରଖି ପୁଣି ମୁଣ୍ଡ ନୁଆଇଁ

ଦେଲେ । ଧୋଇବାବୁ ବୁଝିଲେ ଯେ ସେ ଗୋଟିଏ ଅନ୍ୟାୟ ଉପାୟରେ ଆଉ ଗୋଟିଏ ଅନ୍ୟାୟ କରିବାକୁ ଯାଉଛନ୍ତି; କିନ୍ତୁ ଉପାୟ କ'ଣ ? ସେ କିଛି ଭାବି ସ୍ଥିର କରିପାରିଲେ ନାହିଁ । ପ୍ରଥମ ବାବୁ ପଚାରିଲେ—"କି କ'ଣ ଭାବୁଚନ୍ତି ? ବିବାହ କରିବେ, ନା ଫୌଜଦାରୀ ଅଦାଲତକୁ ଯିବେ ?" ଧୋଇବାବୁ ଗୋଟିଏ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ, "ଯେତେବେଳେ ଅନ୍ୟାୟ କରିଚି, ଅନ୍ୟାୟର ଶାସ୍ତି ସ୍ୱରୂପ ବିବାହ କରିବା ଛଡ଼ା ତ ଅନ୍ୟ ଉପାୟ ଦେଖିପାରୁ ନାହିଁ । ଅତଏବ ମୁଁ ରାଜି ।"

ପ୍ରଥମ ବାବୁଙ୍କର ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ସେ ଉଠିଆସି ଧୋଇବାବୁଙ୍କ ପିଠିରେ ଚାପୁଡ଼େଇ ଚାପୁଡ଼େଇ କହିଲେ, "ଏଇ ତ ବାବା ଭଦ୍ରଲୋକ ପିଲାର ଉପଯୁକ୍ତ ବ୍ୟବହାର । କିଛି ଚିନ୍ତା ନାହିଁ ବାବା ! ତୁମେ ଏ ବିବାହରେ ଅସୁଖୀ ହେବ ନାହିଁ । ମୋର ଗୋଟିଏ ବୋଲି କନ୍ୟା । ଏ ସମସ୍ତ ସମ୍ପତ୍ତିର ମାଲିକ ସେ । ତୁମେ ବିବାହ କଲେ ତୁମର ସେ ଦିଗରେ କିଛି କ୍ଷତି ହେବ ନାହିଁ । ଆଉ ମେନକା ବଡ଼ ସୁଧୀର କନ୍ୟା । ତୁମେ ଦେଖିପାରୁ ଥିବ, ଉପୁତଙ୍କର ହୋଇ ତା'ର ଟିକିଏ ନାହିଁ । ମୋର ଆଶା, ତୁମ୍ଭେମାନେ ସୁଖୀ ହେବ । ହଁ, ଆଚ୍ଛା କଥାଟାଏ ମନେ ପଡ଼ିଲା । ଆମେ ତ ବ୍ରାହ୍ମ, ଆଉ ବାପା, ତୁମେ ତ ହିନ୍ଦୁ ବ୍ରାହ୍ମଣ । ବିବାହଟା ଆର୍ଯ୍ୟସମାଜ ମତରେ ହେଲେ ତୁମର କିଛି ଆପତ୍ତି ଅଛି ?" "ମୋର ଆଉ ଆପତ୍ତି କରିବାର କିଛି ନାହିଁ, ଯାହା ଆପଣଙ୍କ ଖୁସି ।" ଏତିକି କହି ଧୋଇବାବୁ ପୁଣି ମୌନବ୍ରତ ଧାରଣ କଲେ । ପ୍ରମଥ ବାବୁ କହିଲେ, "ତା' ହେଲେ ବିଳମ୍ବ କାହିଁକି ? ଶୁଭସ୍ୟ ଶୀଘ୍ରଂ । ନାହେ, କ'ଣ କହୁଚ ?"

ଧୋଇ : ଯାହା ଆପଣଙ୍କର ଇଚ୍ଛା ।

ପ୍ରମଥ : ତୁମର ଆତ୍ମୀୟ-ସ୍ୱଜନ କାହାରିକୁ....

ଧୋଇ : ନା, କ୍ଷମା କରନ୍ତୁ, ଦୋଷୀ ମୁଁ । ମୋର ଆତ୍ମୀୟ-ସ୍ୱଜନ ନୁହନ୍ତି । ସେମାନଙ୍କୁ ଆଉ କଷ୍ଟ ଦେବେ କାହିଁକି ?

ପ୍ରମଥ : ବେଶ୍, ବେଶ୍, ତୁମର କଥା ଏବେ ହେଲା । ଖାଲି ପୁରୋହିତ ଜଣେ ଯୋଗାଡ଼ କଲେ ହେଲା, ନା ହେ କ'ଣ କହୁଚ ?

ଏଇ ସମୟରେ ବାହାରୁ "ପ୍ରମଥ ଦାଦା, ପ୍ରମଥ ଦାଦା" କହି ଜଣେ ଯୁବକ ସେଠାରେ ଉପସ୍ଥିତ ହେଲେ । ସେ ଆଉ କେହି ନୁହନ୍ତି; ଆମ୍ଭମାନଙ୍କର ପୂର୍ବ-ପରିଚିତ ମେନକାଙ୍କର ପ୍ରଣୟୀ ଶଶଧର ବାବୁ । ସେ ଆସି ପହଞ୍ଚିଗଲା ମାତ୍ରେ ତାଙ୍କର ଦୃଷ୍ଟି ପ୍ରଥମେ ପ୍ରଥମେ ପଡ଼ିଗଲା ମେନକାଙ୍କ ଉପରେ । ମେନକା ମଧ୍ୟ ସ୍ନେହପୂର୍ଣ୍ଣ ଗୋଟାଏ କଟାକ୍ଷ ତାଙ୍କ ଆଡ଼କୁ ମାରି ଟିକିଏ ମୁରୁକିହସା ଦେଇ ମୁହଁ ତଳକୁ ପୋତିଲେ । ଏସବୁ ମୁହୂର୍ତ୍ତକରେ ହୋଇଗଲା । ତା'ପରେ ଶଶଧର ବାବୁ କହିଲେ, "ପ୍ରମଥଦା ! ତୁମ ସାଙ୍ଗରେ ଗୋଟିଏ ଜରୁରି କଥା ଥିଲା ।"

ପ୍ରମଥ : ଆଚ୍ଛା ସେ ଦେଖାଯିବ ପରେ । ବର୍ତ୍ତମାନ ବେଶି ଜରୁରି କଥା ହଉଚି ଯେ ଧୋଇବାବୁ ଓ ମେନକା ଉଭୟେ ପରସ୍ପରଙ୍କୁ ବିବାହ କରିବାକୁ ରାଜି । ଆଉ ଧୋଇବାବୁଙ୍କର ଇଚ୍ଛା ବିବାହଟା ଯଥାସମ୍ଭବ ଶୀଘ୍ର ହୋଇଯିବା ଦରକାର । ନାହେ କ'ଣ କହୁଚ ? ତୁମେ ବାପା ଶଶଧର, ଗୋଟିଏ କାମ କରିପାରିବ ?

ଶଶଧର : ଆଦେଶ କରନ୍ତୁ ।

ପ୍ରମଥ : ଜଣେ ଆର୍ଯ୍ୟସମାଜ ପୁରୋହିତ ଯୋଗାଡ଼ କରିପାରିବ ଆଜି ?

ଶଶଧର : ଆର୍ଯ୍ୟସମାଜ ପୁରୋହିତ ? ହଁ, ଦେଖି, ବେନିଆଟୋଲା ଷ୍ଟ୍ରିଟରେ ମୋର ଜଣେ ବନ୍ଧୁ ଅଛନ୍ତି । ତାଙ୍କର ବାପା ପ୍ରିୟ ଗୋପାଳ ବାବୁ ଆର୍ଯ୍ୟସମାଜର ପୌରୋହିତ୍ୟ ଅନେକ ସ୍ଥାନରେ କରିବାର ମୁଁ ଶୁଣିଚି । ଏଇ ତ ସେଦିନ....

ପ୍ରମଥ : ଆଉ କହିବା ଦରକାର ନାହିଁ ବାପା ! ଯାଅ, ତାଙ୍କୁ ଡାକିଆଣ । ଆଜି ରାତିରେ ଶୁଭ-ବିବାହଟା ହୋଇଯାଉ ।

ଶଶଧର : ମୁଁ ତା'ହେଲେ ଚାଲିଲି । ମିଷ୍ଟାନ୍ନ-ଭୋଜନଟା ମିଳିବ ତ ?.

ପ୍ରମଥ : ତା' ଆଉ ମିଳିବ ନାଇଁ ନା ? ମୁଁ ଯାଉଚି, କେତେଜଣ ଭଦ୍ରଲୋକଙ୍କୁ ନିମନ୍ତ୍ରଣ କରି ଆସିବି । ମେନକା ତା'ର ସାଙ୍ଗ-ସାଥୀମାନଙ୍କୁ ଡାକିଆଣିବ ।

ଏହା କହି ପ୍ରମଥବାବୁ ସେ ସ୍ଥାନ ଛାଡ଼ି ଚାଲିଗଲେ । ତାଙ୍କ ପଛେ ପଛେ ଶଶଧର ବାବୁ ମଧ୍ୟ ଗଲେ । ଯିବା ଆଗରୁ ସେ ଧୋଇବାବୁଙ୍କ ଆଡ଼କୁ ଚାହିଁ କ'ଣ ଟିକିଏ ଇସରା କରିଗଲେ, ଧୋଇବାବୁ କିଛି ବୁଝିପାରିଲେ ନାହିଁ—ବୁଝିପାରିଲେ ନାହିଁ ବିଶେଷତଃ ତାଙ୍କର ହସଭରା ମୁହଁ । ଯ୍ୟ ମଧ୍ୟରେ ମେନକା ଉଠିଯାଇ ଦୁଆର ପାଖରେ ଚାହିଁଲେ କେହି କୁଆଡ଼େ ନାହିଁ । ସେ ଘର ଭିତରକୁ ପୁଣି ଆସି ଗୋଟାଏ ଚୌକିରେ ବସିପଡ଼ି ଖିଁ ଖିଁ କରି ଖୁବ୍ ବୁହେ ହସିବାକୁ ଲାଗିଲେ । ଧୋଇବାବୁ ଚକିତ ହୋଇ କହିଲେ, "ଏଥିରେ ହସିବାର ଯେ କ'ଣ ଅଛି ମୁଁ ତ ଦେଖିପାରୁ ନାହିଁ ।"

ମେନକା ଅତି କଷ୍ଟରେ ହସ ବନ୍ଦକରି କହିଲେ, "କି ? ଆଜି ମୋର ବିବାହ, ମୁଁ ହସିବି ନାହିଁ ତ ଆଉ କ'ଣ କାନ୍ଦିବି ?"

ଧୋଇ : କିନ୍ତୁ ମୁଁ ଭାବିଥିଲି ତୁମେ ଶଶଧର ବାବୁଙ୍କୁ ଭଲପାଅ ବୋଲି ।

ମେନକା : ମୁଁ ତାଙ୍କୁ ଭଲ ନପାଏ ବୋଲି କିଏ କହିଲା ?

ଧୋଇ : କିନ୍ତୁ ତାଙ୍କୁ ଭଲପାଇ ମତେ ବିବାହ କରିବାରେ ଏତେ ଆନନ୍ଦ କିପରି ଆସିପାରେ ତୁମର ?

ମେନକା : ମଜାଟା ତ ସେହିଠାରେ । ଅନ୍ୟ ଜଣକୁ ଭଲ ପାଇବି, ଆଉ ତୁମକୁ ବିବାହ କରିବି—ଏ କ'ଣ କମ୍ ଆମୋଦର କଥା ?

ଧୋଇ : କେଜାଣି ବାବୁ, ଏହା ମଧ୍ୟରେ କି ଆମୋଦ ତୁମେ ପାଉଚ ତା' ତୁମେହିଁ ଜାଣ । ମତେ ତ କିନ୍ତୁ କାନ୍ଦ ମାଡୁଚି ।

ମେନକା : କି, ମୁଁ କ'ଣ ଏତେ ଅସୁନ୍ଦରୀ ଯେ ତୁମେ ମତେ ବିବାହ କରିବାକୁ କଷ୍ଟକର ଭାବୁଚ ?

ଧୋଇ : ତୁମେ ଅସୁନ୍ଦରୀ ନୁହଁ, ଖୁବ୍ ସୁନ୍ଦରୀ; କିନ୍ତୁ କେବଳ ସୌନ୍ଦର୍ଯ୍ୟ ତ ବିବାହର ଉପଯୁକ୍ତ ପରୀକ୍ଷା ନୁହେଁ । ମୁଁ ତୁମକୁ ଭଲପାଏ ନାହିଁ ।

ମେନକା : ଯାହା ହଉ ! ତୁମର ଆଉ ଯେ ଦୋଷ ଥାଉ ବା ନଥାଉ, ତୁମେ ଯେ ବଡ଼ ସ୍ପଷ୍ଟବାଦୀ ସେ ବିଷୟରେ କିଛି ସନ୍ଦେହ ନାହିଁ । କିନ୍ତୁ ତୁମେ ବଡ଼ ବୋକା ।

ଧୋଇ : ବୋକା ନହୋଇଥିଲେ କି ଆଜି ଏ ବିପଦରେ ପଡ଼ିଥାନ୍ତି ?

ମେନକା : ତୁମେ ବୋକା ଯେ ରହସ୍ୟଟା ବୁଝିପାରୁ ନାହଁ । ସ୍ତ୍ରୀଜାତିର ହୃଦୟ ସମ୍ବନ୍ଧରେ ତୁମର ଏକବାରେ କିଛିମାତ୍ର ଜ୍ଞାନ ନାହିଁ । ତୁମେ କେଣେ ଦେଖିଚ ସ୍ତ୍ରୀ ଜଣକୁ ଭଲପାଇ ଆଉ ଜଣକୁ ବିନା ବାଧାରେ ବିବାହ କରିପାରେ ?

ଧୋଇ : ତା' ତ ଦେଖି ନାହିଁ । ସେହି ହେତୁରୁ ମୋତେ ବେଶି ଅକଡ଼ିଆ ଲାଗୁଚି ।

ମେନକା : ଆଉ ଯ୍ୟା ବି ତୁମେ କଳ୍ପନା କରିପାର ପ୍ରଣୟୀ ପ୍ରଣୟିନୀର ଅନ୍ୟ ପୁରୁଷ ସହିତ ବିବାହ କରିବାରେ ସାହାଯ୍ୟ କରେ ।

ଧୋଇ : ସେ ତ ଏ ସୁଆଙ୍ଗର ଆଉ ଗୋଟିଏ ରହସ୍ୟ ।

ମେନକା : ଠିକ୍ କହିଚ, ଏ ଗୋଟାଏ ସୁଆଙ୍ଗ । ତୁମେ ମତେ ବିଶ୍ୱାସ କର, ତୁମର କିଛି ହାନି ହବ ନାହିଁ ।

ଏହା କହି ସେ ସେଠାରୁ ଚାଲିଗଲେ ।



## ଷୋହଳ

ସେଦିନ ଚାରିଟା ବେଳ ପ୍ରାୟ । ଧୋଇବାବୁ ପ୍ରମଥବାବୁଙ୍କର ବୈଠକିଖାନାରେ ବସି ଆକାଶ ପାତାଳ ଭାବୁଚନ୍ତି । ବିବାହ ଯେ ହବ, ସେ ବିଷୟରେ ତାଙ୍କର କୌଣସି ସନ୍ଦେହ ନାହିଁ । ସେ ବିଷୟରେ ମଧ୍ୟ ବର୍ତ୍ତମାନ ସେ ଏକପ୍ରକାର ଉଦାସୀନ ହୋଇଗଲେଣି । କେତେବେଳେ ଭାବୁଚନ୍ତି, ବର୍ତ୍ତମାନ ତ ସମୟ ଅଛି, କୌଶଳ କରି ଖସି ପାରାଯାଏ । ପୁଣି ମନେ ପଡ଼ିଯାଉଚି, ମେନକାଙ୍କର ଯିବାବେଳର କଥାଗୁଡ଼ାକ; ଆଉ ଶଶଧରଙ୍କର ହସ ଛନ ଛନ ମୁଖଟି । ମନରେ ହେଉଚି ଯେପରି କିଛି ଗଭୀର ରହସ୍ୟ ଏହା ମଧ୍ୟରେ ଅଛି । ଆଉ ସେ ରହସ୍ୟଟାର ମଉଜ ଅନୁଭବ ନକରି ଚାଲିଯିବାକୁ ମନ ବି ହେଉ ନାହିଁ । ତାଙ୍କର ମନ ଏପରି ଦୋଳି ଖେଳିଲା ବେଳେ କିଏ ଦାଣ୍ଡରେ ଡାକିଲେ, "ବେହେରା, ବେହେରା !" ପ୍ରଥମ ଡାକଟାରେ ଧୋଇବାବୁଙ୍କର ଧ୍ୟାନ ଭାଙ୍ଗିଗଲା । ଦ୍ୱିତୀୟ ଡାକରେ ସେ ଚମକି ପଡ଼ିଲେ । ବାହାର ପଟ ଝରକାରେ ଉଣ୍ଡି ଦେଖିଲେ ପ୍ରଫୁଲ୍ଲବାବୁ ପ୍ରମଥବାବୁଙ୍କ ଦରଜା ଉପରେ । ଆଉରି ମଧ୍ୟ ଦେଖିଲେ ଦୁଇଜଣ ଷଣ୍ଢା ଷଣ୍ଢା ଲୋକ ଓ ଜଣେ ଭଦ୍ରଲୋକ ଘରର କାଛକୁ ଆଉଜି ରାସ୍ତା ଉପରେ ଠିଆ ହୋଇଚନ୍ତି । ତାଙ୍କର ଜାଣିବାକୁ ବାକି ନଥିଲା ପ୍ରମଥବାବୁ ଜଣେ ଗୁଣ୍ଡା ସର୍ଦ୍ଦାର । ତା' ନହେଲେ ସଦାଶିବବାବୁ ତାଙ୍କୁ ମାରିବାକୁ ଯ୍ୟଙ୍କ ପାଖକୁ ଆସିଥା'ନ୍ତେ କିଆଁ ? ସୁତରାଂ ବୁଝିନେଲେ ଯେ, ଏଇ ଯେ ଷଣ୍ଢା ଷଣ୍ଢା ଲୋକ ଦୁଇଟା ସେ ତାଙ୍କର ତରଫ

କାଳେ ଧୋଇବାବୁ ପଳେଇଯିବେ ସେଥିପାଇଁ ସେମାନେ ପହରା ଦେଉଛନ୍ତି । କିନ୍ତୁ ସେ ବିସିନି ଭଦ୍ରଲୋକଟିକୁ ଠଉରେଇ ପାରିଲେ ନାହିଁ । ଯାହା ହେଉ, ଏଣେ ପ୍ରଫୁଲ୍ଲବାବୁ ଢୁରି ଛାଡ଼ିଚନ୍ତି । ସେ ଭାବିଲେ ଦୁଆର ଖୋଲି ତାଙ୍କୁ ଦେଖା ଦେବେ କି ନାହିଁ । ପୁଣି ଭାବିଲେ, ମା' ନିତାନ୍ତ ଅଧୈର୍ଯ୍ୟ ନହୋଇଥିଲେ ପ୍ରଫୁଲ୍ଲକୁ କଲିକତା ପଠାଇ ନଥାନ୍ତେ । ହିଁ ରେ ହିଁ ଜିତ୍ ହେଲା । ସେ ଦୁଆର ଖୋଲି କହିଲେ, "କିରେ ପଣ୍ଡିତ, ତୁ କୁଆଡ଼େ ?"

ପ୍ରଫୁଲ୍ଲବାବୁଙ୍କ ମନ କୁଣ୍ଢେ ମୋଟ ହୋଇଗଲା । ସେ ଆଶ୍ୱସ୍ତିର ଗୋଟିଏ ନିଃଶ୍ୱାସ ପକାଇ କହିଲେ, "ଯାହା ହଉ, ଏଥର ମୋ ପିଣ୍ଡରେ ପ୍ରାଣ ପଶିଲା । ମୁଁ ତ ଭାବିଥିଲି, ତୁ କଲିକତିଆ ଗୁଣ୍ଡାଙ୍କ ହାତରେ ସାବାଡ଼ ହୋଇ ସାରିଲୁଣି ।"

ଧୋଇବାବୁ : ତୁ ଯାହା ଭାବୁ, ସେଗୁଡ଼ାକ କାଗଜ-କଲମରେ ଲେଖିଲେ ଫୌଜଦାରୀ ଅଦାଲତରେ ମାନହାନି ମକଦ୍ଦମାରେ ପଡ଼ିବୁ । ଯାହାହଉ, ଘର ଭିତରକୁ ଆ ତ !

ପ୍ରଫୁଲ୍ଲବାବୁ, ଧୋଇବାବୁ ଦିହେଁଯାକ ବୈଠକିଖାନାକୁ ଗଲେ । ଧୋଇବାବୁ ପଚାରିଲେ, "ପ୍ରଥମ କଥା, ମୁଁ ଏଠାରେ ଅଛି ବୋଲି ତୁ ଜାଣିଲୁ କିପରି ?"

ପ୍ରଫୁଲ୍ଲ : ମା' ତୋ'ଲାଗି ବଡ଼ ବ୍ୟସ୍ତ । ସେ ତୋର ଏ ବାଜିମରା କଥାଟା ଜାଣିପାରି....

ଧୋଇ : ତା'ମାନେ ତୁ ତାଙ୍କୁ ଏକଥା କହିଚୁ । ହଉ, ସେ କଥାର ହିସାବ ମୁଁ ପରେ ବୁଝିବି ! ତା'ପରେ ?

ପ୍ରଫୁଲ୍ଲ : ମୁଁ ଭାଇ ତୋ କଥା ଲୁଚାଇବାକୁ ଖୁବ୍ ଚେଷ୍ଟା କରିଚି । କାଳେ କଥାଟା ମୋ ପାଟିରୁ ବାହାରି ପଡ଼ିବ ସେଥିପାଇଁ ମୁଁ କଟକ ପଳେଇଥିଲି । ମହାପାତ୍ରେ ଯାଇ ମତେ ଗାଁକୁ ଟାଣିଆଣିଲେ ।

ଧୋଇ : ବୁଝିଚି, ତୋର ବୀରତ୍ୱ ଖୁବ୍ । ଆଉ ସେଗୁଡ଼ାକ ବଖାଣି ମୋ ମନରେ ଈର୍ଷା ଆଣେ ନାହିଁ । ତା'ପରେ ମା'ଙ୍କ ଜେରାରେ ତୁ ସବୁ କହିଲୁ—ଏଇ ନା ?

ପ୍ରଫୁଲ୍ଲ : ମୁଁ ତୋ ପାଇଁ ଭାଇ ତାଙ୍କ ଆଗରେ ପ୍ରଥମେ ଅନେକ ମିଛ କହିଚି । ସେ ସବୁ କଥା ଭାବିଲା ବାଳକୁ....

ଧୋଇ : ମୁଁ ଜାଣେ ତୁ ନରକକୁ ଯିବୁ । ତା'ପରେ ମା' ତତେ ଏଠିକି ପଠେଇଦେଲେ । ତୁ କେମିତି ଜାଣିଲୁ ଯେ ମୁଁ ଏଠାରେ ଅଛି ବୋଲି ?

ପ୍ରଫୁଲ୍ଲ : ମୁଁ ପ୍ରଥମେ ହାବଡ଼ା ଷ୍ଟେସନରେ ଓହ୍ଲାଇ ତୋର ମାମୁଁ ଘରକୁ ଗଲି । ସେ କ'ଣ ବ୍ୟବସାୟରେ ଦିଲ୍ଲୀ ଯାଇଚନ୍ତି । ସେଠାରୁ ପୁଣି.....

ଧୋଇ : ତୋର ଗସ୍ତ ଇତିହାସ ଶୁଣିବାକୁ ମୋର ବେଳ ନାହିଁ । ତୁ କିପରି ଜାଣିଲୁ ?

ପ୍ରଫୁଲ୍ଲ : ସଦାଶିବବାବୁଙ୍କ ସାଙ୍ଗରେ ଦେଖାହେଲା । ସେ ତୋ ଲାଗି ଭାରି ବ୍ୟସ୍ତ ।

ଧୋଇ : ହବାର ତ କଥା—ମୋର ଦ୍ୱିତୀୟା ଓଷା ମାଉସୀ କିନା ସେ? ତେବେ ସେଇ ତତେ କହିଲେ ଯେ ମୁଁ ଏଠାରେ ଅଛି । କିନ୍ତୁ ସେ ଜାଣିଲେ କିପରି ଯେ ମୁଁ ଏଠାରେ ଏ ତିନିଦିନ ହେଲା ଅଛି ବୋଲି । ଓଃ, ହଁ, ଠିକ୍ କଥା । ସେଇ ବିସିନି ଭଦ୍ରଲୋକ....

ପ୍ରଫୁଲ୍ଲ : ତୁ ଯେ କ'ଣ କହୁଚୁ ମୁଁ ସେଥିରୁ କିଛି ବୁଝିପାରୁ ନାହିଁ ।

ଧୋଇ : ତୁ ଯେତେ କଥା ବୁଝିପାରୁ ତା'ର ହିସାବ ଲେଖିଲେ ଗୋଟାଏ ମହାଭାରତ ହବ । ଏଥରକ ତ ମତେ ଦେଖିଲୁ; ତା'ପରେ ?

ପ୍ରଫୁଲ୍ଲ : ତା'ପରେ ତ ତୋ ହାତରେ । ଚାଲ, ଘରକୁ ଯିବା !

ଧୋଇ : କ'ଣ କହୁଚୁ ତୁ, ଘରକୁ ଯିବା ? ଆଜି ଯେ ମୋର ବିବାହ ।

ପରିଷ୍କାର ଆକାଶରେ ଘଡ଼ଘଡ଼ି ଶବ୍ଦ ଶୁଣିଥିଲେ ପ୍ରଫୁଲ୍ଲବାବୁ ବୋଧହୁଏ ଏତେ ଆଶ୍ଚର୍ଯ୍ୟ ହୋଇ ନଥାନ୍ତେ । ସେ ବୋକାଙ୍କ ପରି ବାଲୁ ବାଲୁ କରି ଧୋଇବାବୁଙ୍କ ମୁହଁକୁ ଚାହିଁଲେ । କହିଲେ, "ତୋର ବିବାହ ! ତୋର ବିବାହ ! ସେ କିପରି ?"

ଧୋଇ : କିପରି ଆଉ କ'ଣ ? ମୁଁ ବରବେଶ ପିନ୍ଧିବି । ମୋ ପାଖରେ ଗୋଟିଏ ସୁନାନାକୀ ବୋହୁ ବସିବ । ପୁରୋହିତ ମନ୍ତ୍ର ପଢ଼ିବ ୀ ବନ୍ଧୁ-ବାନ୍ଧବମାନେ ମିଷ୍ଟାନ୍ନ ଖାଇବେ । ତୋତେ ଆଜି ମୋ ପକ୍ଷରୁ ନିମନ୍ତ୍ରଣ ।

ପ୍ରଫୁଲ୍ଲ : ରହ, ରହ, ମୁଁ ଟିକିଏ ନିଃଶ୍ୱାସ ମାରି ଆଶ୍ୱସ୍ତ ହୁଏ । ତୁ କ'ଣ କହିବାକୁ ଚାହୁଁ ଯେ, ତୁ ଧୋଇ ଆଜି କଲିକତା ସହରରେ ବିବାହ ହବୁ ?

ଧୋଇ : କଥାଟା ପ୍ରାଞ୍ଜଳ କରି ବୁଝାଇ ଦେବାରେ ସ୍ୱୟଂ ମଲ୍ଲିନାଥ ମଧ୍ୟ ତୋର ସମକକ୍ଷ ହେବ ନାହିଁ !

ପ୍ରଫୁଲ୍ଲ : ମା' ହେରିକା କେହି ଜାଣିବେ ନାହିଁ । ଭାଇ ବନ୍ଧୁ କୁଟୁମ୍ବ କେହି ଆସିବେ ନାହିଁ ? ବାଜା ବାଜିବ ନାହିଁ ? ବିଭାଘର କିପରି ?

ଧୋଇ : ତୋର ଆଜିକି ଦୁଇଶ ବର୍ଷ ତଳେ ଜନ୍ମ ହେବା ଉଚିତ ଥିଲା । ଆଜିକାଲି ସଭ୍ୟ ସମାଜରୁ ସେ ସବୁ ଉଠିଗଲାଣି ।

ପ୍ରଫୁଲ୍ଲ : ତୁ ବାହା ହଉଚୁ ତେବେ କୁ'ଠି ?

ଧୋଇ : ଏଇଠି !

ପ୍ରଫୁଲ୍ଲ : ତା'ମାନେ ତୁ ପ୍ରମଥବାବୁଙ୍କ ଘରେ ବାହା ହଉଚୁ । କାହାକୁ ? ପାତ୍ରୀ କିଏ ?

ଧୋଇ : ପାତ୍ରୀ ପ୍ରମଥବାବୁଙ୍କର ଝିଅ ଶ୍ରୀମତୀ ମେନକା ଦେବୀ । ସେ ଶଶଧରବାବୁଙ୍କୁ ଭଲ ପା'ନ୍ତି; କିନ୍ତୁ ମତେ ବାହା ହଉଚନ୍ତି ।

ପ୍ରଫୁଲ୍ଲ : ନା, ବାବୁ, ଏ ଗୋଲକଧନ୍ଦାରେ ପଶିବାକୁ ମୋର ଶକ୍ତି ନାହିଁ ।

ଧୋଇବାବୁ କ'ଣ କହିବାକୁ ଯାଉଥିଲେ, ଏହି ସମୟରେ ମେନକା ଦେବୀ ସେଠାରେ ଆସି ପହଞ୍ଚିଲେ । ସେ ପ୍ରଫୁଲ୍ଲବାବୁଙ୍କୁ ସେଠାରେ ଦେଖି ପଛଘୁଞ୍ଚା ଦବା ଉପରେ ଏତିକିବେଳେ ଧୋଇବାବୁ ଡାକି କହିଲେ, "ଶୁଣ, ଶୁଣ, ମୁଁ ତୁମକୁ ସାହେବାନି କାଇଦାରେ ଟିକିଏ ମୋ ବନ୍ଧୁଙ୍କ ସାଙ୍ଗରେ ପରିଚୟ କରାଇ ଦିଏ । ମୋର ଭବିଷ୍ୟତ ପତ୍ନୀ ଶ୍ରୀମତୀ ମେନକାବାଳା

ଦାସୀ । ମୋର ପ୍ରିୟ ବନ୍ଧୁ କାବ୍ୟବିଶାରଦ ତର୍କଚୂଡ଼ାମଣି ଶ୍ରୀଯୁକ୍ତ ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ ବି.ଏ. । ବାସ୍, ଏଥରକ ତ ଜଣାଶୁଣା ହୋଇଗଲା । ଗପ ଯୋଡ଼ିଦିଅ । କିନ୍ତୁ ମୁଁ ତୁମକୁ ସାବଧାନ କରିଦଉଚି ମେନକା, ପ୍ରଫୁଲ୍ଲ ଟିକିଏ ମାଇପି ବାୟା । ସେ ସୁନ୍ଦରୀ ଟୋକୀଟିଏ ଦେଖିଲେ କୁଣ୍ଢେଇ ପକାଇବାକୁ ଧାଇଁଯାଏ ।"

ପ୍ରଫୁଲ୍ଲ ବାବୁଙ୍କ ମୁହଁ ଲାଜରେ ଓ ରାଗରେ ରଙ୍ଗ ପଡ଼ିଗଲା । ସେ କହିଲେ, "ତୁ କ'ଣ ଯେ କହୁ ଧୋଇ, ତୋର ଠିକ୍ ଠିକଣା ନାଇଁ ।"

ଧୋଇ : କଥାରେ କିବା ପରିପାଟୀ

ଗୀତେ ଭଣିଲେ ପ୍ରଫୁଲ୍ଲ ତ୍ରିପାଠୀ ।

ଦେଖିଲ ତ, ତୁମକୁ ଦେଖୁ ଦେଖୁ ତା'ର କବିତା ଉସ୍ର ବୋହିଗଲାଣି ।

ମେନକା ଦେବୀ ସେତେବେଳକୁ ହସରେ କୁରୁ କୁରୁ ହଉଚନ୍ତି । ସେ ହସ ସମ୍ଭାଳି ନେଇ ଗୋଟାଏ ଚୌକିରେ ବସିପଡ଼ି କହିଲେ, "ତା'ହେଲେ ଆପଣ ୟାଙ୍କର ବନ୍ଧୁ ପ୍ରଫୁଲ୍ଲ ବାବୁ ?"

ପ୍ରଫୁଲ୍ଲ ବାବୁ ତାଙ୍କ ଆଡ଼କୁ ନଚାହିଁ କହିଲେ, "ଏଁ, ହଁ ।"

ଧୋଇ : ତୁମେ ଜାଣ ନାହିଁ ବୋଧହୁଏ, ପ୍ରଫୁଲ୍ଲ ଆମର ଭଲ ଗାଡ଼ି ଚଳେଇବାବାଲା । ସେ ଶଗଡ଼ ଉପରେ ବସି ଯେତେବେଳେ "ଏଁ, ହ, ତି ତି" କରୁଥିବ ଦେଖିଲେ ତୁମ ମନପ୍ରାଣ ଶୀତଳ ହୋଇଯିବ ।

ମେନକା : ଆପଣ ତାଙ୍କ କଥା ଶୁଣନ୍ତୁ ନାହିଁ । ସେ ବଡ଼ ଦୁଷ୍ଟ । ୟେ ଏଠାରେ ଅଛନ୍ତି ବୋଲି ଆପଣ ଜାଣିଲେ କିପରି ?

ଧୋଇ : ଆହା, ଏତିକି ବୁଝିପାରିଲେ ନାହିଁ । ପ୍ରଫୁଲ୍ଲ ଯେ ଆମର ପରମ ଯୋଗୀ । ଧ୍ୟାନରେ ବସି ଜାଣିପାରିଲେ ସବୁ ।

ମେନକା : ତୁମେ ଏଠୁ ଯିବଟି । ତୁମେ ଭଦ୍ରଲୋକଙ୍କୁ କଥାପଦେ କୁହାଇଦେଉ ନାହଁ ।

ଏହା କହି ସେ ଧୋଇବାବୁଙ୍କ ହାତ ଧରି ସେ ଘରୁ ଟାଣିନେଇ ଦରଜା ବନ୍ଦ କରିଦେଲେ । ଧୋଇବାବୁ ବାହାରୁ କହିଲେ, "ବାବା, ପ୍ରଥମେ ଶଶଧର ବାବୁ, ତା'ପରେ ମୁଁ, ତା'ପରେ ପ୍ରଫୁଲ୍ଲ । ଏ ଯେ ଦ୍ରୌପଦୀଙ୍କ ଟପିଯିବା ଉପରେ ।" ଏହା କହି ସେ ଉପର ମହଲାକୁ ତାଙ୍କ ଶୋଇବା ଘରକୁ ଚାଲିଗଲେ ।

ମେନକା ଓ ପ୍ରଫୁଲ୍ଲ ବାବୁ ଘର ଭିତରେ ରହି କ'ଣ ଚୁପ୍‌ଚାପ୍ ହୋଇ କେତେବେଳଯାଏ କଥାବାର୍ତ୍ତା ହେଲେ । ତା'ପରେ ଯେତେବେଳେ ମେନକା ସେ ଘରୁ ବାହାରି ଯା'ନ୍ତି, ପ୍ରଫୁଲ୍ଲ ବାବୁ ସେତେବେଳେ "ହେଁ, ହେଁ" କରି ହସି ଘରଟା ଭାଙ୍ଗି ପକାଉଥା'ନ୍ତି ।



# ସତର

ପ୍ରାୟ ସନ୍ଧ୍ୟା ଛ'ଟା ବେଳକୁ ଗୋଟି ଗୋଟି ହୋଇ ବନ୍ଧୁବାନ୍ଧବ, ସାଙ୍ଗସାଥୀ ସବୁ ଆସି ପ୍ରମଥ ବାବୁଙ୍କ ଘରେ ଜୁଟିଲେ । ବିଜୁଳି ଆଲୁଅର ଚହଟରେ ସମୁଦାୟ ଘରଟା ଝଲମଲ କରି ଉଠିଲା । ଦାଣ୍ଡରେ ହଠାତ୍ ନହବତ ବାଜିଲା । ଘରୁ ଶଙ୍ଖଧ୍ୱନି ହେଲା । ଧୋଇବାବୁ ନୂଆ ସରୁ ଝିଲିମିଲି ଲୁଗାଟିଏ ପିନ୍ଧି, ତା' ଉପରେ ଖଣ୍ଡିଏ ରେଶମି ପଞ୍ଜାବି ଲଗାଇ, ବେକରେ ଗୋଟିଏ ରେଶମି ପାଛୋଡ଼ା କୁଞ୍ଚ ଲମ୍ବାଇ, ଚନ୍ଦନପାଟି ଘେନି, ଫୁଲମାଳ ନାଇ ବରବେଶରେ ବିବାହ ମନ୍ଦିରରେ ବସି ରହିଲେ । ତେଣେ ମେନକାଙ୍କୁ ତାଙ୍କର ସାଙ୍ଗସାଥୀମାନେ ନାନା ଥଟ୍ଟା ପରିହାସ ମଧ୍ୟରେ ବେଶ କରୁଥା'ନ୍ତି । ଏତିକିବେଳେ ପୁରୋହିତ ଆସି ସେଠାରେ ପହୁଞ୍ଚିଲେ । କଳା ମଶ୍ ମଶ୍ ଥାକୁଲି ଥାକୁଲି ଦିହଟି । ମୁଣ୍ଡରେ, ତାଳୁ ଉପରେ ଗୋଟିଏ ବୋଲି ବାଳ ନାହିଁ; କେତେଟି ଅଧା ଧଳା, ଅଧା କଳା ଖପୁରି ପଛପଟକୁ ଦେଖାଯାଉଚି । ଭଦ୍ରଲୋକଙ୍କ ସାଙ୍ଗରେ ଜଣେ ଯୁବକ । ବୟସ ଅନ୍ଦାଜ ଧୋଇବାବୁଙ୍କ ସାଙ୍ଗର ହବ । ବର୍ଣ୍ଣ ସଫା ଗୋରା । ମୁହଁରେ ଦି'ପଟି ନିଶ । ଆଖିରେ ଗୋଟାଏ ଜ୍ୟୋତି । ଯେପରି ସେ କୌଣସି ରହସ୍ୟର ଆଶାରେ ଉଦ୍‌ଗ୍ରୀବ ହୋଇ ରହିଚନ୍ତି । ଏ ଦୁହିଁଙ୍କ ସାଙ୍ଗରେ ଶଶଧର ବାବୁ । ଯୁବକଙ୍କୁ ଦେଖିଲାକ୍ଷଣି ଧୋଇବାବୁ ଧଡ଼ପଡ଼ ହୋଇ ଉଠି ତାଙ୍କୁ ଆଲିଙ୍ଗନ କରି ପକାଇଲେ । କହିଲେ, "ଆରେ, ମନମୋହନ ଯେ ! ତୁ ଏଠି କିପରି ?"

ମନମୋହନ ବାବୁ ଧୋଇ ବାବୁଙ୍କୁ ବରବେଶରେ ଦେଖି ପ୍ରଥମେ ଠଉରେଇ ପାରି ନଥିଲେ । ସେ ପରେ ଜାଣିପାରି କହିଲେ, "ଧରମାନନ୍ଦ, ତୁ ଏ ବେଶରେ, ତୁଇ ବରପାତ୍ର.... । ହା, ହା, ହା, କ୍ୟା ମଜା, କ୍ୟା ବାତ୍ !" ପୁରୋହିତ ଭଦ୍ରଲୋକ୍ ଏ ଦୁହିଁଙ୍କର ଏ ଭାବ ଦେଖି ପ୍ରଥମେ କିଛି ଭାବିପାରିଲେ ନାହିଁ । ମନମୋହନ ବାବୁଙ୍କର ହସ ସରିଲା । ସେ ପଚାରିଲେ, "ମନୁ, ଏ ବାବୁ କିଏ ?"

ମନ : ଚିହ୍ନିପାରୁ ନାହାନ୍ତି, ବାବା, ଏପରା ଧରମାନନ୍ଦ, ମୋ ସଙ୍ଗରେ ଆର୍ଟସ୍କୁଲରେ ପଢୁଥିଲା । ଆମ ଘରଠାକୁ କେତେଥର ଆସିଚି । ସେଦିନ ଏପ୍ରିଲ ପହିଲା ତାରିଖରେ ଆପଣ ଯାହାରି ସାହାଯ୍ୟରେ ରାମଜୀବନ ବାବୁଙ୍କୁ.... ।" ପୁରୋହିତ ବାବୁ ଠୋ-ଠୋ କରି ହସି ଉଠିଲେ । ଖୁବ୍ ତୁହେ ହସିନେଇ କହିଲେ, "ହଇହେ, ସତେ ? ଧରମାନନ୍ଦ ତା'ହେଲେ ବରପାତ୍ର ।"

ଧୋଇ : ଆପଣ କି ତା'ହେଲେ ପୁରୋହିତ ? ଆପଣଙ୍କ କାଖରେ ମାରୁଆଡ଼ି ଖାତାଟା କ'ଣ ?

ପୁରୋହିତ ଗମ୍ଭୀର ହୋଇ କହିଲେ, "ଏ ହଉଚି ଆମ କଲିକତା ଆର୍ଯ୍ୟସମାଜର ବିବାହ ରେଜିଷ୍ଟ୍ରି ବହି । ଏଥିରେ ବିବାହ ପରେ ବର ଓ କନ୍ୟା ସଇ କରନ୍ତି ।"

ଧୋଇ : କିନ୍ତୁ ଆପଣ ଆର୍ଯ୍ୟସମାଜୀ ହେଲେ କେଉଁଦିନ ? ମୋର ଯେପରି ମନେ ହଉଚି, ଆପଣ ଯେ ଥିଲେ ଖାଣ୍ଟି ହିନ୍ଦୁ ।

ପୁରୋହିତ : ସେଇ ତ ହେଲା ଏ ସୁଆଙ୍ଗର ଅସଲ କାଣ୍ଡିକ ।

ଏତିକିବେଳେ ପ୍ରମଥ ବାବୁ ଆସି ପହଞ୍ଚିଲେ । ଧୋଇବାବୁ କହିବାକୁ କ'ଣ ଯାଉଥିଲେ; କିନ୍ତୁ ଶଶଧର ବାବୁଙ୍କ ନୀରବ ଇଙ୍ଗିତରେ ସେ ତୁନି ହୋଇଗଲେ । ପ୍ରମଥ ବାବୁ କହିଲେ, "କି, ଶଶଧର, ତୋର ସେ ପୁରୋହିତ—"

ଶଶଧର : ଏଇ ପରା ପ୍ରିୟଗୋପାଳ ବାବୁ । ପ୍ରିୟଗୋପାଳ ବାବୁ, ଏଇ ହେଲେ ମୋର ପିଉସା, ପ୍ରମଥ ବାବୁ—କନ୍ୟାକର୍ତ୍ତା ।

ପ୍ରମଥ ବାବୁ ପ୍ରିୟଗୋପାଳ ବାବୁଙ୍କୁ ନମସ୍କାର କଲେ । ପ୍ରିୟଗୋପାଳ ବାବୁ ପ୍ରତିନମସ୍କାର କରି ବ୍ୟସ୍ତ ହୋଇ କହିଲେ, "ତା'ହେଲେ ଆଉ ଡେରି କାହିଁକି ? ଶୁଭ କାର୍ଯ୍ୟଟା ସାରିଦେଲେ ମୁଁ ବାହାରିଯିବି । ମୋର ପୁଣି ବଡ଼ବଜାରରେ ଆଉରି ଗୋଟିଏ ପୌରୋହିତ୍ୟ କରିବାର କଥା । ଏଁ, ତୁମର ସବୁ ଠିକ୍ ତ ?"

ପ୍ରମଥ ବାବୁ କନ୍ୟା ଆଣିବା ପାଇଁ ଭିତରକୁ ଗଲେ । ଶଙ୍ଖଧ୍ୱନି ହେଲା । କନ୍ୟା ନିଜର ସୌନ୍ଦର୍ଯ୍ୟରେ ଘରଟାକୁ ଆଲୋକିତ କରି ସାଙ୍ଗସାଥୀ କେତେଜଣଙ୍କ ସହ ଆସି ପହଞ୍ଚିଲେ । ଆଉ ଆଉ ଭଦ୍ରଲୋକମାନେ ମଧ୍ୟ ଆସି ବସିଲେ । ଘରର ଗୋଟାଏ ତରଫରେ ପଟା ଭାଡ଼ି କରି ଗୋଟାଏ ବେଦି । ତା'ଉପରେ ଗାଲିଚା ବିଛା ହୋଇଛି । ସାମନାରେ ଗୋଟାଏ ଟେବୁଲ ଉପରେ ଫୁଲତୋଡ଼ା, ଅତରଦାନି ପ୍ରଭୃତି ସଜା ହୋଇଛି । ବରକନ୍ୟା ବସିଲେ । ପୁରୋହିତ ମହାଶୟ ବରର ବାଁ ତରଫରେ ବସି ଗୁଡ଼ାଏ ଫୁଲ, ଦୁବ, ଚନ୍ଦନ କରି ସେମାନଙ୍କ ଉପରକୁ ଫିଙ୍ଗିଲେ । ଭଦ୍ରଲୋକମାନଙ୍କୁ ପାନ ଅତର ଦିଆଗଲା । ପୁରୋହିତ ମନ୍ତ୍ର ଉଚ୍ଚାରଣ କଲେ । ପ୍ରଫୁଲ୍ଲ ବାବୁଙ୍କ କାନକୁ ସେ ମନ୍ତ୍ର ଯେପରି ଶୁଭିଲା ଦଶରୂଠ ମନ୍ତ୍ର ପରି । ତା'ପରେ ପୁରୋହିତ ଫୁଲମାଳରେ କନ୍ୟାର ଡାହାଣ ହାତ ସଙ୍ଗରେ ବରର ବାଁ ହାତ ବାନ୍ଧିଦେଲେ । ପୁଣି ଶଙ୍ଖଧ୍ୱନି ହେଲା । ପୁରୋହିତ, ବର ଓ କନ୍ୟା ଠିଆହୋଇ ପୁରୋହିତଙ୍କ କହିବା ଅନୁସାରେ ଗୋଟାଏ ବେଦମନ୍ତ୍ର ଉଚ୍ଚାରଣ କଲେ । ପୁରୋହିତ ବେଦ ମନ୍ତ୍ରଟାକୁ ହ୍ର, ସ୍ୱ, ଦୀର୍ଘ ଇତ୍ୟାଦି ମାତ୍ରାମାନ ଦେଇ ଏପରି ଭାବରେ ବୋଇଲେ ଯେ ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କ କାନକୁ ଶୁଣାଗଲା ଯେପରି ରାତି ଅଧରେ ବିଲୁଆ 'ହୋ-ହୋ' କରି ଉଠୁଛନ୍ତି । ଆଉ ପ୍ରଫୁଲ୍ଲ ବାବୁ ବୁଝିଲେ ଯେ ସେଗୁଡ଼ାକ ବେଦର ପାଞ୍ଚକୋଶ ମଧ୍ୟରେ ନଥିଲା । ଏହିପରି ଭାବରେ ବେଦମନ୍ତ୍ର ପଢ଼ାସରିଲା । ପୁରୋହିତ ବରଙ୍କୁ ପଚାରିଲେ, "ତୁମେ ଶ୍ରୀମାନ୍ ଧରମାନନ୍ଦ ମହାପାତ୍ର ଆଜି ଶ୍ରୀମାନ୍ ପ୍ରମଥ ବନ୍ଦୋପାଧ୍ୟାୟଙ୍କର କନ୍ୟା ଶ୍ରୀମତୀ ମେନକା ଦେଈଙ୍କି ବିବାହ କରିବାକୁ ରାଜି ଅଛ ।" ଦର୍ଶକମାନେ ଦେଖିଲେ ଧୋଇବାବୁଙ୍କ ଥୋଡ଼ି ଦି'ଟା ହଲୁଚି; କିନ୍ତୁ ସେ କ'ଣ କହିଲେ, କେହି ଶୁଣିପାରିଲେ ନାହିଁ । ତା'ପରେ ପୁରୋହିତ କନ୍ୟାକୁ ସମ୍ବୋଧନ କରି କହିଲେ, "ତୁମେ ଏକା ଶ୍ରୀମାନ୍ ଧରମାନନ୍ଦ ମହାପାତ୍ରଙ୍କୁ ସ୍ୱାମୀ ରୂପେ ବରଣ କରିବାକୁ ରାଜି ଅଛ ।" ମେନକା ମଧ୍ୟ କ'ଣ କହିଲେ, ତାହା କେହି ଶୁଣିଲେ ନାହିଁ । ଆପାତତଃ ପୁରୋହିତ ତାଙ୍କ କଥା ଶୁଣି ସନ୍ତୁଷ୍ଟ ହେଲେ । ତା'ପରେ ତାଙ୍କର ସେ ଖାତାଟା ମେଲେଇ କହିଲେ, "ତୁମେ ଦୁହେଁ ଏଥିରେ ଦସ୍ତଖତ କର ତ ।" ସେମାନେ ଦସ୍ତଖତ କଲେ । ତା'ପରେ ସାକ୍ଷୀ ପଡ଼ିବା ପାଇଁ ଦୁଇଜଣ ଦରକାର । ପ୍ରଫୁଲ୍ଲ ବାବୁ, ମନମୋହନ ବାବୁ ଓ ଶଶଧର ବାବୁ ଖାତାରେ

ସାକ୍ଷୀ ପଡ଼ିଲେ । ଲବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ପୁରୋହିତ ବରକନ୍ୟାଙ୍କୁ ଆଶୀର୍ବାଦ କରି ତାଙ୍କର ପାଉଣା ବାବତ୍‌କୁ ଦଶୋଟି ଟଙ୍କା ନେଇ ପୁଣି ଗାଦି ମାଡ଼ିବସିଲେ ଓ ପାନ ଚୋବାଇବାକୁ ଲାଗିଲେ । ବଡ଼ବଜାରରେ ଯେ ତାଙ୍କୁ ପୁଣି ପୌରୋହିତ୍ୟ କରିବାକୁ ହେବ, ସେ କଥା ଭୁଲିଗଲେ ବୋଧହୁଏ । ବରକନ୍ୟା ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କୁ ନମସ୍କାର କରି ବାସର ଘରକୁ ଗଲେ । ଯିବା ଆଗରୁ କନ୍ୟାର ସାଙ୍ଗସୁଖ ଓ କନ୍ୟା ପିତାଙ୍କର ବନ୍ଧୁବାନ୍ଧବମାନେ କନ୍ୟାକୁ ଉପହାର ଦେଇଗଲେ । ସମୟ ଅଭାବରୁ କେହି ଜିନିଷପାତି ତ ଆଣିପାରି ନଥିଲେ, ଟଙ୍କା କିଏ ଦଶ, କିଏ ପନ୍ଦର, କିଏ ପାଞ୍ଚ ଏହିପରି ଯାହା ଶକ୍ତିକୁ ଚାହିଁ ସେ ଦେଲେ । ମୋଟରେ ସେଦିନ ମେନକା ଦେଇ ପ୍ରାୟ ଦେଢ଼ଶହ ଟଙ୍କା ଉପହାର ପାଇଥିଲେ ବୋଲି ଶୁଣାଯାଏ ।

ବନ୍ଧୁବାନ୍ଧବ ଓ ଉପସ୍ଥିତ ଭଦ୍ରବ୍ୟକ୍ତିମାନେ ମିଷ୍ଟାନ୍ନ ଭୋଜନରେ ବସିଲେ । ବରକନ୍ୟା ବାସର ଘରେ ଯାଇ ପହଞ୍ଚିଲେ । ସେତେବେଳକୁ ବାସର ଘରେ ମେନକାଙ୍କର ସାଙ୍ଗସାଥୀ ପ୍ରାୟ ପନ୍ଦର ଜଣ ପର୍ଯ୍ୟନ୍ତ ସୁବେଶା ଯୁବତୀ ରୁଣ୍ଡ ହୋଇଛନ୍ତି । ଏଣେ ବରକନ୍ୟା ସାଙ୍ଗରେ ଯାଇଛନ୍ତି ପ୍ରଫୁଲ୍ଲ ବାବୁ, ଶଶଧର ବାବୁ ଓ ମନମୋହନ ବାବୁ । ବରକନ୍ୟା ବାସର ଘରେ ପଶିବା ମାତ୍ରକେ ଯୁବତୀମାନେ ଫିଁ ଫିଁ କରି ହସିଉଠିଲେ । କିଏ ଆସି ଧରିଲା ବରର ହାତ, କିଏ ଆସି ଧରିଲା ତାଙ୍କର କାନ, କିଏ ଧରିଲା ତାଙ୍କର ବେକ । ଏହିପରି ସଲଟଣରେ ନେଇ ବରକନ୍ୟାଙ୍କୁ ତାଙ୍କ ସ୍ଥାନରେ ବସାଇଲେ ଏବଂ ଯୁବତୀମାନେ ତାଙ୍କୁ ଘେରି ବସିଲେ । ତା'ପରେ ଚାଲିଲା ନାନା ପ୍ରକାର ଥଟ୍ଟା ପରିହାସ, କୌତୁକ । ବିଚାରା ଧୋଇବାବୁ କାହାଠାରୁ ଚାପୁଡ଼ାଏ, କାହାଠାରୁ ବିଧାଟାଏ, କାହାଠାରୁ ଖୁନ୍ଦାଟାଏ ଏହିପରି ନାନା ପ୍ରକାର ଚର୍ବ୍ୟ ଚୋଷ୍ୟ ଲେହ୍ୟ ପେୟ ଖାଇ ଉଜନ୍ତୁରି ହୋଇ ସାରିଲେଣି ।

ଏତିକି ବେଳକୁ ପୁରୋହିତ ମହାଶୟ ଆସି ସେଠାରେ ହାଜର । ସେ ଏସବୁ ଦେଖି ଶୁଣି କହିଲେ, "ହେଲା ନାହିଁ, ହେଲା ନାହିଁ । ଆଲୁଅରେ କି ମଉଜ ହୁଏ !" ଏହା କହି ସେ ବିଜୁଳିବତିର ସ୍ୱିଚ୍‌ଟା ଟାଣିଦେଲେ । ସାଙ୍ଗେ ସାଙ୍ଗେ ଘର ଅନ୍ଧାର ହୋଇଗଲା । କେବଳ ଶୁଣାଗଲା ଯୁବତୀମାନଙ୍କର କୁରୁ କରୁ ହସ । ସେ ଅନ୍ଧାରରେ ମନମୋହନ ଓ ପ୍ରଫୁଲ୍ଲ ଯୋଗଦେଲେ । ତା'ପରେ କ'ଣ ହେଲା କେହି କିଛି ସ୍ଥିର କରିପାରିଲେ ନାହିଁ । ଧୋଇବାବୁଙ୍କର ପଛଆଡ଼େ ଯେ କେତେଜଣ ଯୁବତୀ ବସିଥିଲେ, ସେମାନେ କହନ୍ତି ଯେ ଏ ଟୋକାମାନଙ୍କ ମଧ୍ୟରୁ ଦୁଇଜଣ କିଏ ତାଙ୍କୁ ଠେଲାଠେଲି କଲେ । ଧୋଇବାବୁଙ୍କ ପଛପଟ କାଛରେ ଥିବା ଦୁଆରଟା ମେଲା ହୋଇ ପୁଣି ବନ୍ଦ ହେଲା; କିନ୍ତୁ ଯୁବତୀମାନେ ଅନୁଭବ କଲେ ବରକନ୍ୟା ଯଥାସ୍ଥାନରେ ବସିଛନ୍ତି । ସେମାନେ ପାତ୍ରପାତ୍ରୀ-ନିର୍ବିଶେଷରେ ଅନ୍ଧାରୁଆ କରିବାକୁ ଆରମ୍ଭ କଲେ । ପାତ୍ର ମଧ୍ୟ ମଝି ମଝିରେ ହାତ ବଢ଼ାଇ ତା'ର ମଉଜଟା କରିନେଉଚି । କେହି ଯୁବତୀ କହୁଚି, "ଆଃ, ମଲା ଏ କି ବର ମ !" କେହି କହୁଚି, "ରହ ରହ, ତୁମ ରସିକପଣିଆ ଛଡ଼େଇ ଦଉଚି ।" ଏହିପରି ଗୋଳମାଳ ଚାଲିଥାଏ । ଭଦ୍ରଲୋକମାନେ ଛାତ ଉପରେ ମିଷ୍ଟାନ୍ନ ଖାଇବାରେ ବ୍ୟସ୍ତ । ଚାକରବାକରମାନେ ଯେ ପରଷା-ପରଷିରେ ଅଛନ୍ତି, ସେମାନେ ତ ଉପରେ, ଯେଉଁମାନେ ତଳେ ଥିଲେ ସେମାନେ କିଏ ବିଡ଼ି ଖାଇବାରେ, କିଏ ଲୁଚେଇ ଲୁଚେଇ ସିଗାରେଟ୍ ଟାଣିବାରେ ଲାଗିଯାଇଚି । ଏହି ସମୟରେ ଦେଖାଗଲେ, ଜଣେ କିଏ ଯୁବତୀ

ଓଢ଼ଣାଟି ଟାଣି ସଦର ଦରଜା ଆଡ଼େ ବାସରଘର ପାଖ ଘରୁ ବାହାରି ଚାଲିଗଲେ । ଡାକରବାକର ଭାବିଲେ ମେନକାଙ୍କର ସାଙ୍ଗସାଥୀ କେହି ହୋଇଥିବେ । ଯୁବତୀ ଦାଣ୍ଡ ଦୁଆରକୁ ଆସି ଦେଖିଲେ ଗୋଟିଏ ଭଡ଼ା ମଟର ଥୁଆହୋଇଚି । ସେ ଦରଜାଟା ଖୋଲି ସେଥିରେ ବସିପଡ଼ିଲେ । ଦୁଆରମୁହଁରୁ ପୁରୋହିତ ମହାଶୟ ଡାକିଲେ, "ଓ ଗୋ, ଓ ମା', ଏ ବୁଢ଼ା ମଣିଷକୁ ତୁମ ମଟରରେ ଟିକିଏ ବସେଇ ନେବ ନାହିଁ । ତୁମର ବହୁତ ଧର୍ମ ହେବ ।" ଏହା କହି ସେ ମଧ୍ୟ ଯାଇ ଯୁବତୀଙ୍କ ପାଖରେ ବସିଲେ । କହିଲେ, "ବାବା ଡ୍ରାଇଭର, ବଦୁର ବାଗାନ ୨୮ ନମ୍ବର ଘରକୁ ନେଇ ଚାଲ ତ ।" ମଟର ଛାଡ଼ିଦେଲା । ଡ୍ରାଇଭର ବିଚାରା ତା'ପରେ ମଟର ଶବ୍ଦ ମଧ୍ୟରେ ଶୁଣିପାରିଲା, ହୋ ହୋ, ଠୋ ଠୋ ଗୋଟାଏ ହସର ରୋଳ । ମଟର ଯାଇ ବଦୁର ବାଗାନ ୨୮ ନମ୍ବର ଘରେ ପହଞ୍ଚିଲା । ପୁରୋହିତ କହିଲେ, "ଆସ ମା', ମୋର ଝିଅ ସାଙ୍ଗରେ ତୁମର ଆଳାପ କରାଇଦେବି । ଡ୍ରାଇଭର ଭାୟା, ତୁମେ ଟିକିଏ ଅପେକ୍ଷା କର । ମୋର ଜଣେ ବନ୍ଧୁ ଷ୍ଟେସନକୁ ଯିବେ ।" ପୁରୋହିତ ଓ ଯୁବତୀ ଘର ଭିତରକୁ ଚାଲିଗଲେ । ପ୍ରାୟ ପନ୍ଦର କୋଡ଼ିଏ ମିନିଟ ପରେ ଘରୁ ବାହାରି ଆସିଲେ ଜଣେ ଯୁବକ; ସେ ଆମର ଧୋଇବାବୁ । ଧୋଇବାବୁ ମଟରରେ ବସି ପ୍ରଥମେ ଗଲେ ୨୮ ନମ୍ବର ହରିସନ ରୋଡ଼ । ସେଠାରେ ବୁଝିଲେ ସଦାଶିବ ବାବୁ ଓଡ଼ିଆ ସମାଜ ଭବନରେ । ସେ ମଧ୍ୟ ମଟର ଛୁଟାଇ ଗଲେ ସେଠାକୁ । ସେତେବେଳେ ସଦାଶିବ ବାବୁ ଶେଷ ବକ୍ତୃତା ଦେଉଥା'ନ୍ତି । ସେଠାରେ ମାତ୍ର ଦଣ୍ଡଟାଏ ରହି ସେ ପୁଣି ମଟରରେ ବସି ଡ୍ରାଇଭରକୁ କହିଲେ, "ତୁମେ ଯଦି ମତେ ଖଡ୍ଗପୁରରେ ପହଞ୍ଚାଇ ଦେଇ ପାରିବ, ତା'ହେଲେ ମୁଁ ତୁମକୁ ଆଶାତୀତ ବକ୍‌ସିସ୍ ଦେବି ।" ଏହା କହି ସେ ପଞ୍ଚାଶ ଟଙ୍କାର ପାଞ୍ଚଖଣ୍ଡି ନୋଟ୍ ଡ୍ରାଇଭରକୁ ବଢ଼ାଇ ଦେଲେ । ଡ୍ରାଇଭର ମଟର ଚଳାଇଦେଲା । ବାଟରେ ମାତ୍ର ଗୋଟିଏ ଦୋକାନରେ ପନ୍ଦର ମିନିଟ୍ ଖଣ୍ଡେ ଗାଡ଼ି ଅଟକେଇ ଦି'ତିନି ଟିଣି ତେଲ ନେଲା । ତା'ପରେ ମଟରଟା ଗର୍ଜନ ତର୍ଜନ କରି ଛୁଟିଲା ଜଗନ୍ନାଥ ସଡ଼କ ଉପରକୁ ।



## ଅଠର

ସଦାଶିବ ବାବୁ ସଭାରୁ ଫେରି ହୋଟେଲରେ ଆସି ପହଞ୍ଚି ଦେଖନ୍ତି ତ ତାଙ୍କର ନିଯୁକ୍ତ ଚର ମଧ୍ୟ ଆସି ହାଜର । ସଦାଶିବ ବାବୁ ତାଙ୍କୁ ଦେଖି ରାଗରେ ଅସ୍ଥିର । ଗର୍ଜନ କରି କହିଲେ, "ତୁମେ ବେଶ୍ ଲୋକ ତ ହେ ! ମୋଠାରୁ ଦିନକୁ ଦଶଟଙ୍କା ନେଇ ଏଇ ତୁମର କାମ୍ ପରା । ମୁଁ ଭାବିଥିଲି ତୁମେ ଭଦ୍ରଲୋକ ହୋଇଥିବ ବୋଲି । ଦେଖୁଚି ତୁମେ ନିତାନ୍ତ ଅପଦାର୍ଥ । ମୋର ମୁଠା ମୁଠା ଟଙ୍କା ଅକାରଣ ଗଲା ।"

ଚର : ଆପଣ ଯଦି ପ୍ରଥମରୁ ଏହିପରି ଭାବରେ କଥାବାର୍ତ୍ତା ଆରମ୍ଭ କରନ୍ତି, ତା'ହେଲେ ମୋର ଆଉ କହିବାର କିଛି ନାହିଁ । ଆପଣ ଆପଣଙ୍କ ରାସ୍ତା ଦେଖନ୍ତୁ । ମୁଁ ଚାଲିଲି ।

ସଦାଶିବ : ଆରେ ରହ, ରହ, ଯାଉଛ କାହିଁ । ଏପରି ରାଗିଲେ କି ହବ ? କ'ଣ କଥା ହେଲା, କହିବଟି ।

ଚର : କଥା ଆଉ କ'ଣ, ଚଢ଼େଇ ପିଞ୍ଜରା ଭାଙ୍ଗି ଚମ୍ପଟ୍ ।

ସଦାଶିବ : ଆଉ ତୁମେ କରୁଥିଲ କ'ଣ ?

ଚର : ଆରେ ମୋ କଥା ତ ମୋ କଥା । ନିଜେ ପ୍ରଥମ ବାବୁ ଦୁଇ ଦୁଇଟା ଗୁଣ୍ଡା ଦୁଆର ମୁହଁରେ ଜଗାଇଥିଲା । ସମସ୍ତଙ୍କ ଆଖିରେ ଧୂଳି ଦେଇ ସେ ଯେପରି ଭାବରେ ଗଲା, ସେ ଏକ ଆଶ୍ଚର୍ଯ୍ୟ ବ୍ୟାପାର ।

ସଦାଶିବ : କ'ଣ ହେଲା ଘଟଣାଟା କହ ଦେଖି ।

ଚର : ହେଲା କ'ଣ କି ପ୍ରମଥ ବାବୁ କୁଆଡ଼େ ତା'ର ରକ୍ଷିତା ଝିଅକୁ ତା' ସାଙ୍ଗରେ ବାହା କରାଇବାର ଯୋଗାଡ଼ କଲା । ବାହାଘର ମଧ୍ୟ ହୋଇଗଲା ।

ସଦାଶିବ : ତୁମେ କହୁଚ କ'ଣ ବାହାଘର ? ପ୍ରମଥ ଝିଅ ସାଙ୍ଗରେ ?

ଚର : ଆରେ ଚମକି ପଡୁଛ କାହିଁକି ? କଥା ଶୁଣ, ତା'ପରେ ଚମକିବାକୁ ଯଥେଷ୍ଟ ସମୟ ପାଇବ । ବାହାଘର ତ ହୋଇଗଲା । ବନ୍ଧୁବାନ୍ଧବମାନେ ମିଷ୍ଟାନ୍ନ ଭୋଜନରେ ବ୍ୟସ୍ତ । ଶଳାଗୁଡ଼ାକ ମତେ ଦେଖି ଟିକିଏ ନିମନ୍ତ୍ରଣ କଲେ ନାହିଁ । ବରକନ୍ୟା ବାସରଘରକୁ ଗଲେ । ତା'ପରେ କ'ଣ ହେଲା, କେହି କହିପାରୁ ନାହାନ୍ତି । ବନ୍ଧୁବାନ୍ଧବମାନେ ମିଷ୍ଟାନ୍ନ ସାରି ବିଦାୟ ହେଲାବେଳକୁ ଯେତେବେଳେ ବରକନ୍ୟାଙ୍କର ଖୋଜାପଡ଼େ, ସେତେବେଳେ ଦେଖ, ଦେଖ, ନା ଅଛି ବର, ନା ଅଛି କନ୍ୟା ।

ସଦାଶିବ : ବଡ଼ ଆଶ୍ଚର୍ଯ୍ୟ ! ବଡ଼ ଅଦ୍ଭୁତ ତ, ଆଉ ଡେଣା ଥିଲା ଯେ ଉଡ଼ିଗଲେ !

ଚର : ଆମେ ଜଗୁଆଳିମାନେ ବସି ପହରା ଦେଉଛୁ । ଜଣେ ସ୍ତ୍ରୀଲୋକ ଗୋଟିଏ ମଟରରେ ଆସି ବସି ଚାଲିଗଲେ । ସେ କିଏ; ବର କି କନ୍ୟା କିଏ ଜାଣେ ?

ସଦାଶିବ : ତାର ପରେ ପ୍ରମଥ କ'ଣ କଲା ?

ଚର : ସେ କଥା କି ମୁଁ ଜାଣିଚି ? ଖାଲି ଦେଖିଚି ପ୍ରମଥ ଘଉଡ଼ା ବାଘ ପରି କାନ୍ଦୁଥିଲା । ମୁଁ ତ ପଳାଇଆସିଲି ଆପଣଙ୍କୁ ଖବର ଦେବା ପାଇଁ ।

ସଦାଶିବ : ପ୍ରଫୁଲ୍ଲ ବୋଲି ଧୋଇଆର ଜଣେ ସାଙ୍ଗ ତା' ସାଙ୍ଗରେ ଦେଖାକରିଥିଲା ?

ଚର : ପ୍ରଫୁଲ୍ଲ କି ସେ କିଏ ଜଣେ ଟୋକା ଧୋଇ ସାଙ୍ଗରେ କଥାବାର୍ତ୍ତା କରୁଥିଲା—ମୁଁ ଜାଣେ ।

ସଦାଶିବ : କୁଆଡ଼େ ଗଲା ?

ଚର : ତା' ମୁଁ ଜାଣିବି କିପରି ?

ସଦାଶିବ ବାବୁ ପ୍ରାୟ ଦଶ ମିନିଟ୍ ପର୍ଯ୍ୟନ୍ତ ନୀରବ ହୋଇ ବସିଲେ । ତା'ପରେ କହିଲେ, "ଦେଖ, ତୁମେ ଚାରିଜଣ ଲୋକ ବର୍ତ୍ତମାନ ଆଣିପାରିବ, ଯେଉଁମାନେ କି ଦେଖିଲା ମାତ୍ରକେ ବିଳମ୍ବ ନକରି ଗୋଟାଏ ଲୋକକୁ ଛୁରା ବସାଇ ପାରିବେ ?"

ଚର : ତା' ଖୁବ୍ ପାରିବି ।

ସଦାଶିବ : ତା'ହେଲେ ତୁମେ ଯାଅ, ତୁମେ ଦୁଇ ଜଣ ଘେନି ଜଗନ୍ନାଥ ସଡ଼କ ଛକ ଉପରେ ରହିଥିବ । ଖଣ୍ଡେ ମଟର ମଧ୍ୟ ନେଇଯାଅ । ଯାହା ଖର୍ଚ୍ଚ ପଡ଼ିବ ପଡୁ—ସେ ଭାବନା କର ନାହିଁ । ଯଦି ଦେଖିବ ଧୋଇଆ ସେ ରାସ୍ତାରେ ଯାଏ, ତା'ହେଲେ ତାକୁ ପାବାଡ଼ କରିବ । ବୁଝିଲ, କରିପାରିଲେ ଖର୍ଚ୍ଚ ପରେ ଟ୫୦୦ ବକ୍‌ସିସ । ଆଉ ବାକି ଜଣେ ମୋ ସାଙ୍ଗରେ ହାଓଡ଼ା ଷ୍ଟେସନରେ ଓ ଆଉ ଜଣେ ମୋର ସାଥୀ ସହିତ ସିଆଲଦା ଷ୍ଟେସନରେ ଜଗି ରହିବେ । ମୋର ବିଶ୍ୱାସ, ଧୋଇ ଓ ପ୍ରଫୁଲ୍ଲ ଗାଁକୁ ପଳାଇବାର ଉଦ୍ୟମ କରିବେ । ତୁମେ ଏସବୁ ପାରିବ ତ ?

ଚର : ଖୁବ୍ ପାରିବି । ତୁମେ ମତେ ଏଥିଲାଗି କେତେ ସମୟ ଦେବ ?

ସଦାଶିବ : ଖୁବ୍ ଜୋର ଅଧଘଣ୍ଟାଏ । ବର୍ତ୍ତମାନ ବାଜିଲାଣି ନ' । ଅଧଘଣ୍ଟାକ ମଧ୍ୟରେ ଗୋଟାଏ ଗାଡ଼ି ହାବଡ଼ାରୁ ଛାଡ଼ିବ । ଯାଅ, ଆଉ ଡେରି କର ନାହିଁ ।

ଧୋଇବାବୁ ମଟରରେ ବସି କଲିକତା ସହର ପାର ହୋଇ ଜଗନ୍ନାଥ ସଡ଼କରେ ଆସି ପଡ଼ିଲେ । ରାତି ବେଳ, ଚାରିଆଡ଼ ନିଶୂନ । ସେ ଦେଖିଲେ ପଛରୁ ଗୋଟାଏ ମଟର ଆସୁଛି । ପରେ ଦେଖିଲେ ଗୋଟାଏ ନୁହେଁ ଦୁଇଟା ଆଗପଛ ହୋଇ ଧାଇଁଛନ୍ତି । ଧୋଇ ବାବୁ ଡ୍ରାଇଭରକୁ କହିଲେ, "ଦେଖ, ପଛରେ ଦୁଇଟା ମଟର ଆସୁଛି । ସେ ହୁଏତ କୌଣସି ବାଟୋଇ ହୋଇଥିବେ, ଅପର ପକ୍ଷରେ ହୁଏତ ମୋର ଶତ୍ରୁମାନେ ହୋଇଥିବେ । ତୁମେ ଏ ସଡ଼କରେ ଭାଙ୍ଗିଯାଅ ତ ।" ଡ୍ରାଇଭର ସେଇଆ କଲା । ସେମାନେ ଦେଖିଲେ ମଟର ଦୁଇଟା ମଧ୍ୟ ସେଇ ରାସ୍ତା ଧରିଲା । ଧୋଇବାବୁ କହିଲେ, "ଆଉ ବେଶି ବାଟ ଯିବା ଦରକାର ନାହିଁ । ମଟରଟା ବୁଲେଇ ନିଅ । ଛିଡ଼ାକରି ରଖ । ସେମାନେ ପାଖରେ ପହଞ୍ଚି ଗଲାକ୍ଷଣି ତୁମେ ମଟରଟା ଚଳାଇନିଅ ଆଗକୁ । ମଟର ବୁଲି ଠିଆହେଲା । ଗୋଟାଏ ପରେ ଗୋଟାଏ ସେ ଦୁଇଟା ମଟର ଆସି ପ୍ରାୟ ପାଖ ହୋଇଗଲା ବେଳକୁ ଧୋଇବାବୁଙ୍କ ମଟରଟା ସଟାଙ୍ଗ୍ କରି ସେଠାରୁ ଆଗକୁ ଡେଇଁପଡ଼ିଲା । ସେମାନେ ଅଳ୍ପ ମାତ୍ର ବାଟ ଯାଇଛନ୍ତି, ଶୁଣିଲେ ପଛରୁ ଗୁଳିର ଶବ୍ଦ । ଗୋଟାଏ ଗୁଳି ତାଙ୍କ ପାଖ ଦେଇ ସାଁ କରି ଚାଲିଗଲା । ଧୋଇବାବୁ କହିଲେ, ଏଥରକ ବୁଝି ଲ ତ ? ତାଙ୍କୁ ଟପି ଯାଇପାରିବ ?"

ଡ୍ରାଇଭର ବିଚାରା ସେତେବେଳକୁ ଉଗ୍ରମୂର୍ତ୍ତି ଧରିଲାଣି । ସେ ଦାନ୍ତ ଚିପି କିଛି ନକହି ଆକ୍‌ସିଲରେଟର୍‌ଟା ଗୋଡ଼ରେ ମାରିଦେଇ ଛାଡ଼ିଦେଲା । ପଛ ମଟର ଦୁଇଟା ବୁଲି ୟାଙ୍କ ଅନୁସରଣ କଲାବେଳକୁ କିଛି ଡେରି ହେଲା । ସେଇତକ ସମୟ ଭିତରେ ଧୋଇ ବାବୁଙ୍କ ମଟର ପ୍ରାୟ ମାଇଲିଏ ବାଟ ଆଗୁ ସାର ହୋଇଗଲାଣି । ତା'ପରେ ଲାଗିଲା ଦୌଡ଼ । ଧୋଇ ବାବୁଙ୍କ ମଟର ଆଗରେ । ପଛରେ ବାକି ଦୁଇଟା ମଟର ପରସ୍ପରକୁ ଟପିବା ପାଇଁ ଚେଷ୍ଟା କରୁଚନ୍ତି । ଧୋଇବାବୁ ଆରମ୍ଭରୁ ଯେ ମାଇଲିକ ଆଗୁସାର ହୋଇଥିଲେ ସେ ମାଇଲିର ବ୍ୟବଧାନ ଆସ୍ତେ ଆସ୍ତେ କମିବାକୁ ଲାଗିଲାଣି । ଆପାତତଃ ପଛ ମଟରଗୁଡ଼ାକ ତାଙ୍କ ମଟର ଅପେକ୍ଷା ବେଶି ପାୱାରବାଲା । ସେମାନେ ଖଡ୍ଗପୁରରେ ଆସି ପହଞ୍ଚିଲେ ରାତି ଦୁଇଟା

ବେଳକୁ । ଧୋଇବାବୁ ଦେଖିଲେ ଆଉ ବେଶି ସମୟ ଏପରି ଦୌଡ଼ି ହେବ ନାହିଁ । ସେ ଚାହିଁ ଦେଖିଲେ ଆଗରେ ସଦର ରାସ୍ତା ଉପରେ ଗୋଟାଏ ଗଳି । ଡ୍ରାଇଭରକୁ କହିଲେ, "ମଟରଟା ଆସ୍ତେ ଚଳାଅ । ଏଇ ଗଳିମୁଣ୍ଡ ହେଲେ ମୁଁ ଓହ୍ଲାଇ ଯିବି । ଆଉ ତୁମେ ପୁଣି ପୂର୍ଣ୍ଣ ବେଗରେ ଚଳାଇ ନେବ ଆଗକୁ । ତୁମର ଭଡ଼ା ବାବଦକୁ ଆଉ ଟ୫୦ଙ୍କା ଓ ବକ୍ସିସ୍ ୨୦ ଟଙ୍କା ଧରିନିଅ ।" ଡ୍ରାଇଭର କହିଲା, "ବାବୁ, ମୁଁ ମୋର ଯଥାସାଧ୍ୟ କରିଛି ।"

"ମୁଁ ତୁମକୁ ଦୋଷ ଦେଉନାହିଁ । ବେଶ୍, ମୁଁ ଏଇଲାଗେ ଗଲି ।" କହି ଧୋଇବାବୁ ମଟରର ଫୁଟ୍‌ବୋର୍ଡ ଉପରକୁ ଡେଇଁ ପଡ଼ିଲେ । ମଟରଟା ସଟ୍ କରି ଆଗକୁ ଚାଲିଗଲା । ପଛ ମଟରଟା ସେତେବେଳକୁ ପ୍ରାୟ ଶହେ ଦେଢ଼ଶ ହାତ ପଛରେ । ଧୋଇବାବୁ ରାସ୍ତାରୁ ଆସି ଗଳି ଭିତରେ ପଶିଗଲେ । ଗୋଟାଏ ଘରର ଦୁଆର ଉପରକୁ ଆଉଜି ପଡ଼ି ଚାହିଁଲେ; ଦେଖିଲେ ପଛ ମଟର ଦୁଇଟା ଗଳି ପାଖରେ ଟିକିଏ ରହି ପୁଣି ଆଗ ମଟର ପଛରେ ଦୌଡ଼ିଲେ । ସେ ସେଠାରୁ ବାହାରି ଚାଲିଲେ ସିଧେ ଖଡ଼୍‌ଗପୁର ଷ୍ଟେସନକୁ । ହାବଡ଼ା-ପୁରୀ ପାସେଞ୍ଜର ପ୍ରାୟ ରାତି ଦୁଇଟା ବେଳକୁ ଖଡ଼୍‌ଗପୁର ଷ୍ଟେସନ ଛାଡ଼େ । ସେ ଷ୍ଟେସନରେ ଆସି ପହଞ୍ଚିଲାବେଳକୁ ଗାଡ଼ି ଛାଡ଼ିବାକୁ ଆଉ ପ୍ରାୟ ପନ୍ଦର ମିନିଟ୍ ସମୟ ଅଛି । ତରବର ହୋଇ ଟିକଟ ଖଣ୍ଡେ କିଣି ସେ ଯାଇ ଗାଡ଼ିରେ ବସି ପଡ଼ିଲେ । ପ୍ଲାଟ୍‌ଫର୍ମ ଉପରକୁ ଚାହିଁଥାନ୍ତି । ଗାଡ଼ିର ତୃତୀୟ ଘଣ୍ଟା ପଡ଼ିଲା । ଗାର୍ଡ ସାହେବ ସିଟି ବଜାଇ ପତାକା ହଲାଇଲା । ଏତିକିବେଳେ ଚାରିଜଣ ଲୋକ ଗାଡ଼ିପାଖକୁ ଦଉଡ଼ି ଦଉଡ଼ି ଆସିଲେ । ସେମାନଙ୍କ ହାତରେ ଗୋଟାଏ ଟର୍ଚ୍ଚ ଥିଲା । ଧୋଇବାବୁ ଝରକା ମଧ୍ୟରୁ ମୁହଁ ଭିତରକୁ ନେଇ ଆସିବା ପୂର୍ବରୁ ଟର୍ଚ୍ଚର ଆଲୁଅ ଆସି ତାଙ୍କ ମୁହଁରେ ପଡ଼ିଲା । ଗାଡ଼ି ଠିକ୍ ଚାଲିଲାବେଳକୁ ଚାରିଜଣ ମଣିଷ ତାଙ୍କ ଡବା ଦୁଆର ଖୋଲି ପଶିବାକୁ ଚେଷ୍ଟା କଲେ । ଧୋଇବାବୁ ଉଠିଯାଇ ଦୁଆରମୁହଁରେ ଛିଡ଼ାହୋଇ ସବା ଆଗରେ ଯେ ଥିଲା ତା' ପେଟକୁ କରି ଗୋଟାଏ ନିର୍ଘାତ ଗୋଇଠା ମାଇଲେ । ଏ ଚାରିଜଣଯାକ ଯେପରି ଠେଲା ଠେଲି ହୋଇ ପଶିବାକୁ ଚେଷ୍ଟା କରୁଥିଲେ, ପ୍ରଥମ ଲୋକ ଉପରେ ମାଡ଼ ବସି ସେ ଖସି ପଡ଼ିଲା ସଙ୍ଗେ ସଙ୍ଗେ ବାକି ତିନିଜଣ ମଧ୍ୟ ତାଙ୍କ ସଙ୍ଗରେ ପ୍ଲାଟ୍‌ଫର୍ମ ଉପରେ ଚିତ୍‌ପଟାଙ୍ଗ । ସେମାନେ ଉଠିଲା ବେଳକୁ ଗାଡ଼ି ଛାଡ଼ିଦେଲାଣି । ଧୋଇବାବୁ ଦେଖିଲେ ସେମାନଙ୍କର ଆଉ ଗାଡ଼ି ଧରିବା ଅସମ୍ଭବ । ସେ ଆସନ ମାଡ଼ିବସି ଗୋଟାଏ ଦୀର୍ଘନିଃଶ୍ୱାସ ଛାଡ଼ିଲେ ।



# ତୃତୀୟ ଭାଗ

## ଉଣେଇଶି

"ଏ ଗୋରାବୋଉ ମାଉସୀ ! ଚାକରବାକରଗୁଡ଼ାକ ସବୁ ସୂକ୍ଷ୍ମ ଲୁଗା ପିନ୍ଧି ଲହର-ସଫର ହେଉଛନ୍ତି; ଆଉ ତୁମେ ଏପରି ଛିଣ୍ଡା କନା ଖଣ୍ଡେ ଗୁଡ଼େଇ ହେଇଚ କେନେ ମ ?" ପ୍ରମିଳା ଦେବୀ ଗୋରାବୋଉଙ୍କୁ ଡାକି ଏକଥା କହିଲେ । ଗୋରାବୋଉ ପ୍ରମିଳାଙ୍କର ଜଣେ ଗରିବ ଆତ୍ମୀୟା । ବାଳବିଧବା ସେ । ପ୍ରମିଳାଙ୍କର ପିତା ଦୟା ପାଇ ତାଙ୍କୁ ଘରେ ଆଣି ରଖିଥିଲେ । ସେଇଦିନୁ ସେ ଏଠାରେ ଅଛନ୍ତି । ସରୋଜିନୀ ଦେବୀ ବଞ୍ଚିଥିଲାବେଳେ ମଧ୍ୟ ଘରର ପ୍ରକୃତ ମାଲିକ ଥିଲେ ଏଇ ଗୋରାବୋଉ । ସେ ବାଳବିଧବା, ଅଥଚ ତାଙ୍କୁ ଗୋରାବୋଉ ବୋଲି ଡାକିବା ଟିକିଏ ବିଚିତ୍ର ଶୁଣାଯାଉଥିବ କାହାକୁ ନିଶ୍ଚୟ । ଅସଲ କଥା କ'ଣ କି ସେ ଗୋଟିଏ ମା'ଛେଉଣ୍ଡ ପିଲା ପାଳିଥିଲେ । 'ତାର ନାଁ, ଗୋରା ।' ତାଙ୍କର ଶୁଷ୍କ ହୃଦୟର ସମସ୍ତ ସ୍ନେହ ସେ ଅଜାଡ଼ି ଦେଇଥିଲେ ଏଇ ପିଲାଟି ଉପରେ । ସେ ପ୍ରମିଳା ଜନ୍ମ ହେବାର ଆଗ କଥା । ପ୍ରମିଳା ଜନ୍ମ ହେବାକୁ ମାସ ଦୁଇ ଥାଏ, ସେ ପିଲାଟି ମଧ୍ୟ ତାଙ୍କୁ ଫାଙ୍କିଦେଇ ପାଞ୍ଚ ବର୍ଷ ବୟସରେ ଚାଲିଗଲା । ତା'ପରେ ପ୍ରମିଳାର ଜନ୍ମ । ଗୋରାବୋଉଙ୍କର ଶୁଖିଆସିଥିବା ପ୍ରାୟ ହୃଦୟ ପ୍ରମିଳା ମୁହଁକୁ ଚାହିଁ ପୁଣି ସରସ ହୋଇଉଠିଲା । ସେ ଗୋରାକୁ ଯେପରି ଭଲ ପାଉଥିଲେ, ତା'ର ଦୁଇଗୁଣ ଉତ୍ସାହରେ ପ୍ରମିଳାକୁ ଭଲପାଇବସିଲେ । ପିଲାଦିନେ ପ୍ରମିଳା ଥିଲେ ଟିକିଏ ଦୁଷ୍ଟ । ମା' ଯଦି କିଛି ରାଗିକରି କହନ୍ତି ତାଙ୍କୁ, ତା'ହେଲେ ଗୋରାବୋଉ ତାଙ୍କ ସଙ୍ଗରେ ଦାନ୍ତକୁ ଦାନ୍ତ ଲଗାଇ ମିଶିଯାନ୍ତି । ଶେଷରେ ଏମିତି ହେଲା ଯେ ତାଙ୍କ ଆଗରେ ପ୍ରମିଳାକୁ କେହି କେବେ ଆକଟ ସୁଦ୍ଧା କରନ୍ତି ନାହିଁ । ପ୍ରମିଳା ମଧ୍ୟ ତାଙ୍କୁ ସେହିପରି ଆଦରି ଯାଇଥିଲେ । ଖୁବ୍ ଅଝଟ ହୋଇ କାନ୍ଦିଲାବେଳେ ଏକମାତ୍ର ଗୋରାବୋଉ ତାଙ୍କୁ ବୁଝେଇ ତୁନି କରିପାରୁଥିଲେ । ଏସବୁ ଦେଖି ସରୋଜିନୀ ଦେବୀଙ୍କର ପ୍ରଥମେ ଟିକିଏ ଈର୍ଷା ଓ ରାଗ ମଧ୍ୟ ହୋଇଥିଲା; କିନ୍ତୁ ପରେ ଯେତେବେଳେ ସେ ଗୋରାବୋଉଙ୍କର ନିଃସ୍ୱାର୍ଥ ସ୍ନେହ ବୁଝିଲେ, ତାଙ୍କ ମନରେ ଆଉ ଦୁଃଖ ରହିଲାନାହିଁ । ଗୋରାବୋଉ ତ ଆଗରୁ ଘର-ସଂସାରର ବୋଝ ନିଜ ମୁଣ୍ଡରେ ବୋହିନେଇଥିଲେ, ବର୍ତ୍ତମାନ ପ୍ରମିଳାର ପ୍ରାୟ ସମସ୍ତ ଭାର ତାଙ୍କରି ଉପରେ ପଡ଼ିଲା । ଏପିରିକି ସ୍ୱାମୀ ଗସ୍ତରେ ଗଲାବେଳେ ପ୍ରମିଳାକୁ ଗୋରାବୋଉ ଜିମାଦେଇ ସେ ତାଙ୍କ ସଙ୍ଗରେ ଯାଇ ଚାରିଦିନ ପର୍ଯ୍ୟନ୍ତ ମଫସଲ ଡାକବଙ୍ଗଳାରେ କଟାଇ ଆସୁଥିଲେ । ପ୍ରମିଳା ମଧ୍ୟ ଦିନେ ଓଳିଏ ମା'ଙ୍କୁ ଖୋଜନ୍ତି, ତା'ପରେ ଗୋରାବୋଉଙ୍କ ସ୍ନେହରେ ସବୁ ଭୁଲିଯାଇ ଖେଳରେ ମାତିଯାଆନ୍ତି । ଏହିପରି ଭାବରେ ଗୋରାବୋଉଙ୍କର ଦିନକାଳ ସୁରୁଖୁରୁରେ କଟିଯାଉଥାଏ । ତାଙ୍କ ମନରେ ଗୋଟିଏ ମାତ୍ର ଦୁଃଖ ଯେ ପ୍ରମିଳା ବିବାହ କରିଥାନ୍ତା, ସେ ଟିକିଏ ଜୋଇଁମୁହଁ ଦେଖିଥାନ୍ତେ । କିନ୍ତୁ ତାଙ୍କର ଏ ଇଚ୍ଛା ମୂଳରେ ପ୍ରମିଳାଙ୍କୁ ପାଖଛଡ଼ା କରିବାର ଅଭିଳାଷ ଟିକିଏ ମାତ୍ର ନଥିଲା । ସେ ଖାଲି କହୁଥିଲେ, "କେନେ ଗୋ, ଆମର କିସ ନାହିଁ ଯେ ପ୍ରମିଳାଙ୍କୁ ଗୋଟିଏ ବଡ଼ଲୋକ ଘରେ ଦେଇ ପାଖଛଡ଼ା କରିଦେବ ? ଗୋଟିଏ

ସୁନ୍ଦର ଗରିବ ପିଲା ଦେଖି ତାକୁ ବାହା କରିଦିଅ । ଜୋଇଁ ଝିଅ ଘରେ ରହିବେ । ମୋ ଆଖି କୃତାର୍ଥ ହୋଇଯିବ ।" ସରୋଜିନୀ ଦେବୀଙ୍କ ମନରେ ଏ ପ୍ରଲୋଭନଟା ଯେ ଗୋଳମାଳ ଆଣୁନଥିଲା ତାହା କହିବା ଅସଙ୍ଗତ ହେବ । ତେବେ ସେ ସ୍ୱାମୀଙ୍କର ଶେଷ ବେଳର ଇଚ୍ଛା ସ୍ମରଣ କରି ନିଜ ହୃଦୟର ଅଭିଳାଷକୁ ଦବେଇ ରଖୁଥିଲେ । ଏଇ ଗୋଟିଏ ବିଷୟ ନେଇ ସରୋଜିନୀ ଦେବୀ ଓ ଗୋରାବୋଉଙ୍କ ସଙ୍ଗରେ କେତେଥର କଳିଗୋଳ ହୋଇଯାଇଛି । କେତେଥର ଗୋରାବୋଉ "ବ୍ରାହ୍ମଣଘରେ ବଢ଼ିଲା କନ୍ୟା ବିବାହ ହେବା ଶୁଣିଥିଲ ? ଶାସ୍ତ୍ରରେ ଅଛି ଅଭିଆଡ଼ୀ ଝିଅ ବାପଘରେ ବଢ଼ିଲେ ପିତୃପୁରୁଷ ପିଣ୍ଡ ପା'ନ୍ତି ନାହିଁ । ଏ ମହାପାପ । ମୁଁ ବାବୁ ଏ ପାପରେ ଭାଗୀ ହେବିନାହିଁ । ଏଡ଼େ ବଡ଼ ଝିଅଟା ଅଭିଆଡ଼ୀ ରହି ଯେ ନିଃଶ୍ୱାସ ପକେଇବ; ତା'ର ଫଳ ମୁଁ ମୁଣ୍ଡେଇ ପାରିବି ନାହିଁ । ମୁଁ ଏଥର ନିଶ୍ଚୟ ଚାଲିଲି ପୁରୀ । ତୁମ ପାପ ନେଇ ତୁମେ ଥାଅ" କହି ପେଡ଼ିପେଟରା ବାନ୍ଧିଚନ୍ତି; କିନ୍ତୁ ଘରୁ ଗୋଡ଼ କାଢ଼ି କୌଣସି ଆଡ଼େ ଟିପୁଟିଏ ମାତ୍ର ଯାଇନାହାନ୍ତି । ସେଇ ଅଭିଆଡ଼ୀ ପ୍ରମିଳା, ସେଇ ପାପ, ସେଇ ନିଃଶ୍ୱାସକୁ ମୁଣ୍ଡରେ ଲଦି ସେଇ ଘରେ ମୁଣ୍ଡଗୁଞ୍ଜି ପୁଣି ପଡ଼ିରହନ୍ତି । ସରୋଜିନୀ ଦେବୀ ଯଦି ତାଙ୍କୁ ଥଟ୍ଟା କରି ଏ କଥା କହନ୍ତି, ତାହାହେଲେ ଜବାବ ଆସେ, "ବୁଝିଚି ମୁଁ ବୁଝିଚି, ମୁଁ ତ ହେଇଚି କଣ୍ଟକ । ମୁଁ ଏ ଘରୁ ଗଲେ ତୁମେ ଆଉକି ଗୋଟାଏ ବାହା ହୋଇପଡ଼ନ୍ତ । ମୁଁ ତୁମକୁ ହାଡ଼େ ହାଡ଼େ ଚିହ୍ନେ । ତୁମେମାନେ ବଡେଇବ କ'ଣ ?" ତା'ପରେ ସରୋଜିନୀ ଦେବୀ ତାଙ୍କୁ ଚାମ୍ପୁଣିମୁଠା ଧରି ଗୋଡ଼ାନ୍ତି; ଆଉ ସେ କିରିକିରି ହସି ପଳାଇଯାନ୍ତି ବାଡ଼ିଆଡ଼କୁ । ଏହିପରି ଭାବରେ ସୁଗୁଖୁରୁରେ ଦିନ କଟିଯାଉଥିଲା । ତା'ପରେ ସରୋଜିନୀ ଦେବୀ ଏଇ ଇହସଂସାରର ଦୁଃଖକଷ୍ଟ ଫୋପାଡ଼ି ଦେଇ ତାଙ୍କର ପ୍ରିୟତମ ସ୍ୱାମୀଙ୍କ ପାଖକୁ ଚାଲିଗଲେ । ସେତେବେଳେ ଗୋରାବୋଉ ଏଣେ କାନିରେ ଲୁହ ପୋଛୁଥାନ୍ତି, ତେଣେ ଘରସଂସାର, ଶୁଦ୍ଧ-ଶ୍ରାଦ୍ଧର ସମସ୍ତ ଯୋଗାଡ଼ କରୁଥାନ୍ତି । ସେ ତାଙ୍କ ପକ୍ଷରେ କିଛି ବଡ଼ କଥା ନଥିଲା, କାରଣ ଚାକରବାକରମାନେ ତାଙ୍କୁ ହିଁ ସା'ନ୍ତାଣୀ ବୋଲି ଜାଣିଥାନ୍ତି । ଏପିରିକି ଦାଣ୍ଡର ଗୁମାସ୍ତା ମୋହରିରମାନେ ଘର ବିଷୟରେ ତାଙ୍କୁ ହିଁ ପଚାରନ୍ତି ସିନା, ସରୋଜିନୀ ଦେବୀଙ୍କୁ ବଡ଼ ବେଶି କଥା କହି ସେ ସବୁ ବିଷୟରେ ବିରକ୍ତ କରନ୍ତିନାହିଁ । କାହିଁ କଦବା ଯେବେ କେହି ଘର ବିଷୟରେ ତାଙ୍କୁ ପଚାରେ ତା'ହେଲେ ସେ କହିଦିଅନ୍ତି, "ଗୋରାବୋଉଙ୍କୁ ପଚାର, ମୁଁ ସେ ସବୁର କି ଜାଣେ ?"

ଗୋରାବୋଉର ବର୍ତ୍ତମାନ ବୟସ ପ୍ରାୟ ଚଉତ୍ରିଶ କି ପଞ୍ଚତ୍ରିଶ ହେବ । ବଳି ଦେଲା ପରି କଇଁଫୁଲ ରଙ୍ଗ ଦେହଟିରେ ଓ ଲମ୍ବା ଲମ୍ବା ଓସାରିଆ ଆଖି ଦୁଇଟିରେ ଅକ୍ଷୁର୍ଣ୍ଣ ଓ ଅଭୁକ୍ତ ଯୌବନର ତରଳ ଚଞ୍ଚଳ ଲାବଣ୍ୟପ୍ରଭା ଏ ପର୍ଯ୍ୟନ୍ତ ମଧ୍ୟ ଟିକିଏ ଟିକିଏ ଲାଖିରହିଛି । ନାନା ବାର ବ୍ରତ ଓଷା ନିୟମରେ ସେ ଦେହଟାକୁ ଶୁଖାଇବା ପାଇଁ ଯେତେ ଚେଷ୍ଟା କଲେ ମଧ୍ୟ ଯୌବନର ଉଷ୍ଣ ରକ୍ତ ଏକାବେଳକେ ଶୀତଳ ହୋଇପାରିନାହିଁ । ସେ ନିଜେ ଏକଥା ଅନୁଭବ କରିପାରନ୍ତି ବେଳେ ବେଳେ । ସେତେବେଳେ ତାଙ୍କ ମୁହଁ ଲାଜ-ସିନ୍ଦୁର ହୋଇଯାଏ । ଆଉ ସେ ଏହାକୁ ଦବାଇବାପାଇଁ ଯେତେ ଦୂର ପାରନ୍ତି ବିଳାସ-ବ୍ୟସନ ଛାଡ଼ିଦେଇଚନ୍ତି । ଏପିରିକି ସଫା ଲୁଗା ଖଣ୍ଡେ ପିନ୍ଧିବାର ତାଙ୍କୁ କେହି କେବେ ଦେଖିନାହାନ୍ତି । ମୁଣ୍ଡରେ ମାସେ ଦି'ମାସରେ ଥରେ ତେଲ ହାତ ବାଜେ କି ନାହିଁ । ସେ ଘରର ମାଲିକ ହେଲେ ମଧ୍ୟ ସା'ନ୍ତାଣୀ ଖଦାରେ

କେବେ ଖାଆନ୍ତି ନାହିଁ । ଚାକର-ବାକରଙ୍କ ପାଇଁ ଯେ ମୋଟା ଭାତ, ମୋଟା ଡାଲି ତରକାରି ହୁଏ ସେଇ ତାଙ୍କର ଯଥେଷ୍ଟ । କହିଲେ ଜବାବ ଦିଅନ୍ତି, "ମୋ ବାପ ଗୋସେଇଁବାପ ତ ଦିନେହେଲେ ସରୁ ଚାଉଳ ଖାଇବାକୁ ପାଇନାହାନ୍ତି, ଆଉ ମୁଁ ଇଲେ ଖାଇବି । ବେଙ୍ଗ ପେଟରେ ଘିଅ କି ପାର ହୁଏଲୋ ମା !" ସରୋଜିନୀ ଦେବୀ ପ୍ରକୃତ କଥାଟା ବୁଝୁଥିଲେ । ସେଥିପାଇଁ ସେ ୟାଙ୍କୁ ଏ ସବୁ ବିଷୟରେ ବାଧ୍ୟ କରୁନଥିଲେ । ପ୍ରମିଳା ତ ଟୋକୀ, ସେ ଏତେକଥା ବୁଝିବେ କାହୁଁ ? ସେ ବେଳେବେଳେ ବଡ଼ ଖପା ହୁଅନ୍ତି, ବଡ଼ ଅଭିମାନ କରନ୍ତି । ସେତେବେଳେ ଦିନେ ଦି'ଦିନ ପାଇଁ ଗୋରାବୋଉ ଖାସ୍ ଖଦାରେ ଖାନ୍ତି, ତା'ପରେ ଯେଉଁ କଥାକୁ ସେଇକଥା ।

ଗୋରାବୋଉ ସୁନ୍ଦରୀ; କିନ୍ତୁ କେବେ ସୁନ୍ଦରୀ ବୋଲି କହିନାହାନ୍ତି । ପାଇପଡ଼ିଶା ଗାଁଗଣ୍ଡା, ଚାକରବାକର ସମସ୍ତଙ୍କ ପାଖରେ ସେ ଗୋରାବୋଉ । ଚିରଦିନ ଏହିପରି ଅଛନ୍ତି; ଚିରଦିନ ଏହିପରି ରହିଥିବେ । ସେ ଯେ କେବେ ଉଦ୍ଦାମ ଯୌବନର ଉଦ୍ୟତ ଶକ୍ତି ଅନୁଭବ କରିଛନ୍ତି କି କେବେ ଯେ ଚମ ଧୂଡୁ ଧୂଡୁ ପାକଲାବାଳି ପାକୁଆ ପାଟି ବୁଢ଼ୀ ହୋଇଯିବେ— ଏକଥା କାହାରି ମନରେ କେବେ ଆସିନାହିଁ ।

ପ୍ରମିଳାଙ୍କର କଥା ଶୁଣି ଗୋରାବୋଉ ହସିଦେଇ କହିଲେ, "ମଲା ଯା ! ବାଳରୁ ସାଁବାଳ ତ ଆସି ହେଲା, ମୋର ଏହିପରି ଚଳିଯାଇଛି । ଆଜି ଆଉ ଏ ମରିବା ବଅସରେ ଚହଟ ଚିକ୍‌କଣ ଲୁଗା ପିନ୍ଧି କୁ' ନାଗରର ମନ ଭୁଲେଇବି ଲୋ ?" ପ୍ରମିଳା କେତେଥର ଏପରି ଆପତ୍ତି କରିଛନ୍ତି; ସବୁ ଥରକ ଏହି ଜବାବଟା ଶୁଣିଛନ୍ତି । ସେ ଆଉ କିଛି ନ କହି ତାଙ୍କର ସିଲେଇ କାମରେ ଲାଗିଗଲେ । ଗୋରାବୋଉ ଟିକିଏ ଦୂରରେ ବସି ନଖବଳିତା କାଟୁଥାନ୍ତି ।

ଏପରି ସମୟରେ ହଠାତ୍ ଶ୍ୟାମବାବୁ ଆସି ଦୁଆର ମୁହଁରେ ହାଜର ହୋଇଗଲେ । ପ୍ରମିଳା ତାଙ୍କୁ ଦେଖି ଖାଲି ଛାତି ଉପର ଲୁଗାଟାକୁ ଟିକିଏ ଟାଣିଦେଇ ପୁଣି ସିଲେଇ କାମରେ ଲାଗିଗଲେ, ଯେପରିକି ଶ୍ୟାମବାବୁଙ୍କର ଛାଇ ମଧ୍ୟ ସେଠାରେ ପଡ଼ିନାହିଁ । କିନ୍ତୁ ଗୋରାବୋଉ ଉଠିପଡ଼ି ଅଣ୍ଟାରେ ଦି'ହାତ ରଖି ଗର୍ଜନ କରି ଉଠି କହିଲେ, "ତୁ କିଏରେ ? କୁହାବୋଲା ନାହିଁ, ମାଇପି ମହଲରେ ପଶିବାକୁ ତୁ କିଏରେ ? ଘରେ ସମର୍ଥ ଟୋକୀଟା, ସଜରେ ବସିଥିବ କି ଅସଜରେ ବସିଥିବ, ନିଆଁଲଗାଙ୍କ ମନରେ କି ସେତକ ପଶୁଚି ?"

ଶ୍ୟାମବାବୁ ଯଦି ଏ ଘରେ କାହାରିକୁ ପ୍ରକୃତରେ ଡରନ୍ତି, ତାହେଲେ ସେଇ ଗୋରାବୋଉକୁ; କିନ୍ତୁ ସେ ତାଙ୍କ ମୁଖରୁ ଏପରି ଭର୍ତ୍ସନା କେବେ ଶୁଣିନଥିଲେ, କାରଣ ଏପରି ଅଜଣା ଅଶୁଣା ସେ କେବେ ଅନ୍ଦର ମହଲକୁ ଆସିନଥିଲେ । ଆଜି ହଠାତ୍ ଏପରି ଗାଳି ଶୁଣି ତାଙ୍କ ଦିହ ରାଗିଉଠିଲା । ସେ କହିଲେ, "ଛୋଟ ମୁହଁରେ ବଡ଼କଥା ! ଇଚ୍ଛା କଲେ ଏଇଲେ ଜୋତା ମାରି ବାହାର କରିଦେବି ।"

ପ୍ରମିଳା ଏ ପର୍ଯ୍ୟନ୍ତ ଚୁପ୍ ହୋଇ ଶୁଣୁଥିଲେ ସବୁ । ସେ ସହି ନପାରି କହିଲେ, "ମୁହଁ ସମ୍ଭାଳି କଥା କୁହନ୍ତୁ ଶ୍ୟାମବାବୁ ! ଦେଖନ୍ତୁ ଯେ ଜୋତାର ଭୟ ଦେଖାଉଛନ୍ତି, ସେ ଜୋତା ଆପଣଙ୍କ ପିଠିରେ ଯେପରି ନପଡ଼େ ।"

ହୋମ ନିଆଁରେ ଘୃତ ଆହୁତି ଦେଲା ଏତକ । ଶ୍ୟାମବାବୁ ନାଲି ନାଲେ ଆଖି କରି କହିଲେ, "ଏତେ ତୋର ଆସ୍ପର୍ଦ୍ଧା ! ମୋତେ ଢୋତାମାଡ଼ର ଭୟ ! ଗୋଟାଏ ଚାପଡ଼ାରେ ଦି'ପାଟି ଦାନ୍ତ ଝାଡ଼ିଦେବି । ସେ ଫେରେ କହେ ମୋତେ ଢୋତା ମାଡ଼ ଦବ ।" ଏହା କହି ସେ ପ୍ରମିଳାଙ୍କ ଆଡ଼କୁ ସୁହୁସିଗଲେ । ରାଗର ଦାଉରେ ସେତେବେଳେ ସେ ଭୁଲିଗଲେ ଯେ ଏଇ ପ୍ରମିଳାଙ୍କୁ ବିବାହ କରିବାରେ ଯେ ତାଙ୍କର ମୁକ୍ତି, ସୁତରାଂ ପ୍ରମିଳାକୁ ଖୋସାମଦରେ ବଶୀଭୂତ କରିବାକୁ ହବ । ସେତେବେଳେ କେବଳ ପ୍ରମିଳାଙ୍କ ପ୍ରତି ଅନ୍ତରତମ ପ୍ରଦେଶର ରୁଦ୍ଧ ଘୃଣା ଓ ଈର୍ଷା ତାଙ୍କ ମନ ଆତ୍ମା ସବୁକୁ ବୁଡ଼େଇଦେଇଥିଲା । ସେ ପ୍ରମିଳାଙ୍କ ପାଖ ହେଲାବେଳକୁ ପ୍ରମିଳା ଚୌକି ଉପରୁ ଉଠି ଛିଡ଼ାହେଲେ ଓ ଶ୍ୟାମବାବୁ କିଛି କରିବା ପୂର୍ବରୁ ସପାଟ୍ କରି ଗୋଟାଏ ଚାପୁଡ଼ା ତାଙ୍କ ଗାଲକୁ କଷିଦେଲେ । ଶ୍ୟାମବାବୁ ଏ ପାଇଁ ପ୍ରସ୍ତୁତ ନଥିଲେ । ସେ ଭାବିଥିଲେ ତାଙ୍କ ଆଡ଼କୁ ମିଶିଗଲେ ପ୍ରମିଳା ଭୟରେ ଢାକିଢୁକି ହୋଇ ପଳେଇଯିବ । ହଠାତ୍ ଏ ପ୍ରକାର ପ୍ରତିଶୋଧ ପାଇ ସେ ଟିକିଏ ଦମକିଗଲେ । ସେତିକିବେଳକୁ ଗୋରାବୋଉ ଗୋଟାଏ ଛାଞ୍ଚୁଣି ଉଠାଇ ତାଙ୍କ ପିଠିକି ପାହାରେ ଦେଲେ । ସେ ଏହିପରି ଉଭୟ ଆଡୁ ଆକ୍ରାନ୍ତ ହୋଇ ଯୁଦ୍ଧରୁ ପୃଷ୍ଠଭଙ୍ଗ ଦେବାହିଁ ବିବେକୀ ଲୋକର କର୍ତ୍ତବ୍ୟ ଭାବି ପଳାଇଗଲେ ।

●

## କୋଡ଼ିଏ

ଧୋଇବାବୁଙ୍କ ଗାଡ଼ି କଣ୍ଟେଇ ରୋଡ଼ ଷ୍ଟେସନରେ ଆସି ପହଞ୍ଚିଲା ପ୍ରାୟ ଭୋରବେଳକୁ । ଧୋଇବାବୁ ଚାହିଁ ଦେଖିଲେ ଦୁଇଟା ମଟର ପ୍ଲାଟଫର୍ମ ଆରପଟେ ଥୁଆ ହୋଇଛି । ସେ ଜାଣନ୍ତି କଣ୍ଟେଇ ରୋଡ଼ଠାରୁ ଏଣେ କାଛି ତେଣେ ଖଡ଼ଗ୍‌ପୁରକୁ ଅନେକ ମଟର ଲଗି ଯା'ଆସ କରେ, କିନ୍ତୁ ଟାକ୍‌ସି କେବେ ଯିବାର ସେ ଶୁଣିନାହାନ୍ତି । ତା'ପରେ ପୁଣି ଏ ଗାଡ଼ିବେଳକୁ ମଟର ପ୍ରାୟ ଷ୍ଟେସନରେ ନଥାଏ । ଏ ମଟର ଦୁଇଟା ଦେଖି ତାଙ୍କ ମନରେ ସନ୍ଦେହ ହେଲା । ତାଙ୍କୁ ଦେଖାଗଲା ଯେମିତି ସେଇ ମଟର ଦୁଇଟା ସେଇ । ସେ ଆଉ ମଧ୍ୟ ଦେଖିଲେ ଚାରିଜଣ ମଣିଷ ବିଜୁଳି ମଶାଲ ମାରି ପ୍ରତ୍ୟେକ କୋଠରିକୁ ଚାହିଁ ତାଙ୍କ ଆଡ଼କୁ ଆସୁଛନ୍ତି । ସେ ଆଉ କାଳ ବିଳମ୍ବ ନକରି ପ୍ଲାଟଫର୍ମ ବିପରୀତ ଦିଗ ଦରଜା ଦେଇ ଓହ୍ଲାଇ ପଡ଼ିଲେ । ରେଳ ଲାଇନ୍‌ରେ ଚାଲି ଚାଲି ପ୍ଲାଟଫର୍ମ ବାହାରକୁ ଆସିବାମାତ୍ରେ ମଟର ଷ୍ଟାଣ୍ଡ୍ ତରଫକୁ ଚାଲିଆସିଲେ । ମଟର ଜାଗାରେ ପହଞ୍ଚି ଦେଖିଲେ ଡ୍ରାଇଭର ଦି'ଜଣ କେହି ନାହାନ୍ତି । ବୋଧହୁଏ ସେମାନେ ମଧ୍ୟ ପ୍ଲାଟଫର୍ମ ଉପରକୁ ଯାଇଛନ୍ତି । ଧୋଇବାବୁ କାଳ ବିଳମ୍ବ ନକରି ଗୋଟିଏ ମଟର ହାତଚକି ମଝିରେ ହାତଦେଇ ଦେଖିଲେ ସେଲଫ୍ ଷ୍ଟାର୍ଟରଟା କାମକରୁ ନାହିଁ । ଆଉ ମଟରଟାର ସେହିପରି ପରୀକ୍ଷା କରି ଦେଖିଲାବେଳକୁ ଜଣାପଡ଼ିଲା ତାଙ୍କୁ ଯେ ସେଲଫ୍ ଷ୍ଟାର୍ଟର କାମ କରୁଛି । ସେ ଆଉ କାଳ ବିଳମ୍ବ ନକରି ମଟରରେ ଚଢ଼ି ବସିଲେ । ସେଲଫ୍ ଷ୍ଟାର୍ଟରଟା ଦେଇ ଗାଡ଼ିଟିକୁ ଚଳାଇନେଲେ । ଗାଡ଼ି ବୁଲିଲାବେଳେ ଆୱାଜରେ

ହେଉ ବା ଅନ୍ୟ କୌଣସି କାରଣରୁ ହେଉ ପ୍ଲାଟଫର୍ମରେ ଡ୍ରାଇଭରମାନେ ଜାଣିପାରିଲେ । ସେମାନେ ଧାଇଁ ଆସି ଦେଖିଲା ବେଳକୁ ଗାଡ଼ି ଡାକବଙ୍ଗଳା ପାର ହୋଇ ଜଗନ୍ନାଥ ସଡ଼କରେ ଉଠିଲାଣି । ଡ୍ରାଇଭରମାନେ କ'ଣ କରିବେ ଭାବୁଚନ୍ତି, ଏପରି ସମୟରେ ସେ ଚାରିଜଣ ମଧ୍ୟ ଆସି ପହଞ୍ଚିଲେ । ସେମାନେ ଏକଥା ଶୁଣିବାମାତ୍ରକେ ଆର ମଟରଟାରେ ଦୁଇଜଣଯାକ ଯାଇ ଉଠିଲେ । ବାକି ଦୁଇଜଣ କହିଲେ, "ଭାଇ ଆମକୁ ମଧ୍ୟ ସାଙ୍ଗରେ ନିଅ ।" ସେ ଦୁଇଜଣ କହିଲେ, "ତୁମ ପଛା ତୁମେ ଦେଖ, ଆମ କାମ ଆମେ ଦେଖିବୁ ।" କହି ସେମାନେ ମଟର ଛୁଟାଇ ଆଗ ମଟର ପଛରେ ଧାଇଁଲେ । ସେତେବେଳକୁ କିନ୍ତୁ ଧୋଇବାବୁଙ୍କ ମଟର ଅନେକ ଦୂର ଚାଲିଯାଇଛି । ଏମାନେ ଆସି କଣ୍ଟାଇ ରୋଡ଼ ବଜାରରେ ପହଞ୍ଚି ଦେଖିଲେ, ଏହି ସ୍ଥାନରୁ ଦୁଇଟା ରାସ୍ତା ଦୁଇଆଡ଼େ ଯାଇଛି—ଗୋଟାଏ କାନ୍ଥିକୁ ଓ ଆଉ ଗୋଟାଏ ଖଡ଼ଗପୁରକୁ । ମଟରଟା ଯେ କେଉଁ ରାସ୍ତା ନେଲା, ତାହା ଜାଣିବା ସମ୍ଭବ ନ ହେଲାରୁ ଏମାନେ ପ୍ରଥମେ କାନ୍ଥି ରାସ୍ତାରେ କିଛି ଦୂର ଗଲେ । ବଜାର ପାରହୋଇ ଗଲେ କାନ୍ଥି ରାସ୍ତା ପ୍ରାୟ ଅନେକ ଦୂର—ପ୍ରାୟ ସିଧା ଚାଲିଯାଇଚି । ଏମାନେ ଦେଖିଲେ ଏ ରାସ୍ତାରେ ମଟରର ପତ୍ତା ନାହିଁ । ପୁଣି ଫେରିଲେ । ଏମାନେ ଫେରି ଛକି ଉପରକୁ ଆସିଲାବେଳକୁ ଦେଖିଲେ ଗୋଟାଏ ମଟର କଣ୍ଟାଇରୋଡ଼ ଷ୍ଟେସନ୍ ଆଡ଼କୁ ଯାଉଚି । ଏଇ ମଟରଟାରେ ଯେ ଧୋଇବାବୁ ଯାଉଛନ୍ତି ତା' ସେମାନେ ଜାଣନ୍ତେ କିପରି ଏମାନେ ଜଗନ୍ନାଥ ରାସ୍ତାରେ ଖଡ଼ଗପୁର ଆଡ଼କୁ ଗଲେ । ଅଳ୍ପଦୂର ଗଲାପରେ ଦେଖିଲେ ଆଖି ଯେତେଦୂର ପାଏ—ଆଉ ଅନେକ ଦୂର—କୌଣସି ମଟର ଚିହ୍ନ ନାହିଁ । ସେତେବେଳେ ସେମାନେ ଭାବିଲେ ଯେ ମଟରଟା କଣ୍ଟାଇ ରୋଡ଼ଆଡ଼େ ଗଲା, ସେଇଟା ବୋଧହୁଏ ସେ । ସେମାନେ ପୁଣି ଫେରି ଡାକବଙ୍ଗଳା ପାଖ ହେଲାବେଳକୁ ଦେଖିଲେ ଗୋଟାଏ ମଟରର ପଛଆଲୁଅ ପ୍ରାୟ ଚାଉଳ କଳ ପାଖଆଖରେ ଦେଖାଯାଉଚି । ଏମାନେ ତାକୁ ଅନୁସରଣ କରି ଧାଇଁଲେ । ପ୍ରକୃତରେ ଧୋଇବାବୁ ମଟରଟା ନେଇ ବଜାର ଛକ ପାଖରେ ହେଲାପରେ ଭାବିଲେ କେଉଁଆଡ଼େ ଯିବେ । ଏକ ଦିଗରେ ସାତମାଇଲ ଦେଇ ଭୋଗୋରାଇ ଯାଇପାରନ୍ତି; କିନ୍ତୁ ସେ ଅଜଣା ରାଜ୍ୟ, ଶୁଣିଛନ୍ତି ଖାଲ ଖମାଣିରେ ସେ ରାଜ୍ୟ ପରିପୂର୍ଣ୍ଣ । ଏ ଦିଗରେ ଏମାନେ ଅନ୍ୱେଷଣ କଲେ ତାଙ୍କୁ ପାଇପାରିବା କଷ୍ଟକର ହେବନାହିଁ । ଏଣେ ଖଡ଼ଗପୁର । ସେ ଅନେକ ରାସ୍ତା, ପୁଣି ଖଡ଼ଗପୁରରେ ଯେ ୟାଙ୍କ ସାଙ୍ଗ ଲୋକ କେହି ଜଗି ନ ରହିଚି, ତା'ର ବା ଠିକ୍ କ'ଣ୍ ! ସବୁଠାରୁ ବେଶି ଯେ ସେ ଏହା କରିବାଦ୍ୱାରା ସେ ଘରଠାରୁ ବେଶି ଦୂରକୁ ଘୁଞ୍ଚିଯିବେ । ସେ ବୁଝିଥିଲେ ଘରେ ନ ପହଞ୍ଚିବା ପର୍ଯ୍ୟନ୍ତ ତାଙ୍କର ବିପଦର ଶେଷ ନାହିଁ । ବିଶେଷତଃ ସେ ପ୍ରଫୁଲ୍ଲ ବାବୁଙ୍କଠାରୁ ଯାହା ଶୁଣିଥିଲେ, ସେଥିରୁ ମା'ଙ୍କ ଲାଗି ତାଙ୍କ ପ୍ରାଣ କାନ୍ଦୁଥିଲା । ସେ ଏହିପରି ସାତପାଞ୍ଚ ଭାବୁଛନ୍ତି, ଦେଖିଲେ ପଛଆଡୁ ମଟରଟାଏ ଜଗନ୍ନାଥ ସଡ଼କ ଉପରକୁ ଉଠିଲା । ସେ ଚଟପଟ ଗାଡ଼ିଟାକୁ ଖଡ଼ଗପୁର ରାସ୍ତାରେ ସାମାନ୍ୟ ବାଟ ଚଳେଇନେଇ ଦେଖିଲେ ଡାହାଣ କଡ଼ରେ ଗୋଟାଏ ଗଳି । ଏହି ଗଳିମୁଣ୍ଡରେ ମଟରଟା ରଖି ଏବଂ ସବୁ ଆଲୁଅ ଲିଭାଇଦେଇ ବସି ଅପେକ୍ଷା କଲେ । ଅଳ୍ପ ସମୟରେ ଗୋଟାଏ ମଟର ଛକ ପାଖରେ ଅଟକିବାର ଶୁଭିଲା । ତା'ପରେ ସେ ଶୁଣିପାରିଲେ ମଟରଟା ଅନ୍ୟଦିଗରେ ଗଲା । କିଛି ସମୟ ଅପେକ୍ଷା କରି ତା'ପରେ ନିଜ ମଟରଟା ସେ ବୁଲେଇ

ନେଇ ଷ୍ଟେସନଆଡ଼େ ଛୁଟିଲେ । ଚାଉଳକଳ ପାଖେ ସେ ଜାଣିପାରିଲେ ଯେ ଆଉ ମଟରଟା ତାଙ୍କ ଆଡ଼କୁ ଫେରିଆସୁଚି । ସେ ପୂରା ଦମ୍‌ରେ ମଟର ଚଳେଇଲେ । ପୁଣି ଲାଗିଲା ଏକ ଦୌଡ଼ । ମାଇଲ ଉପରେ ମାଇଲ ରାସ୍ତା କଟିଯାଉଚି । ଚାହୁଁ ଚାହୁଁ ଦିନ ଆଠଟା ସୁଦ୍ଧା ସେ ଜଳେଶ୍ୱରରେ ପହଞ୍ଚିଲେ । ସେତେବେଳକୁ ପଛ ମଟରଟା ପ୍ରାୟ ଏକ ମାଇଲ ଦୂର ପଛରେ ପଡ଼ିଚି । ଏଣେ ତାଙ୍କ ମଟରରୁ ତେଲ ସରିଆସିଲାଣି । ସେ ବାକି ତେଲ ଟିକକରେ ଯେକୌଣସି ମତେ ମିଲିଟାରି ବଜାର ପାଖେ ପହଞ୍ଚିଲେ । ଏହିଠାରେ ମଟରରୁ ଓହ୍ଲାଇ ପାଦର ଆଶ୍ରୟ ନେବା ଠିକ୍‌କରି, ସେ ମଟରଟା ରାସ୍ତାକଡ଼କୁ ଗଡ଼େଇ ଗଡ଼େଇ ଚାଲିଯିବାକୁ ବାହାରିଛନ୍ତି, ତାଙ୍କ ପଛ ବସିବାସ୍ଥାନକୁ ଦୃଷ୍ଟି ପଡ଼ିଗଲା । ଦେଖିଲେ ଗଦି ଉପରେ ଗୋଟାଏ ପିସ୍ତଲ ପଡ଼ିଚି । ସେ ସେଇଟା ଉଠାଇନେଇ ପରୀକ୍ଷା କଲେ ପିସ୍ତଲରେ ଗୁଳି ଅଛି । ସେ ସେଇଟା ପକେଟରେ ପୂରାଇ ଊର୍ଦ୍ଧ୍ୱଶ୍ୱାସରେ ରାଜଘାଟ ଆଡ଼କୁ ଧାଇଁଲେ । ଖରାଦିନ, ନଈର ବାରପଣ ଶୁଖିଲା ପଡ଼ିଛି । ଅପନ୍ତରା ବାଲି, ଗୋଡ଼ ପୋତିହୋଇ ପଡୁଚି । ଏଣେ ସାରା ରାତି ଅନିଦ୍ରା ଅଖିଆ । ବଡ଼ କଷ୍ଟରେ ସେ ବାଲିତକ ପାର ହୋଇ ସେଇ ନଈ ଧାରରେ ପହଞ୍ଚିଛନ୍ତି, ଦେଖିଲେ ଦୁଇଜଣ ଲୋକ ନଈ ବାଲିରେ ତାଙ୍କ ଆଡ଼କୁ ଧାଉଁଚନ୍ତି । ଜଣେ ଆଗରେ ଓ ଆଉ ଜଣେ ପ୍ରାୟ ପନ୍ଦର କୋଡ଼ିଏ ହାତ ପଛରେ । ଭୋକ ଶୋଷ କ୍ଳାନ୍ତି ସେ ଭୁଲିଯାଇ ପାଣି ଭିତରକୁ ଡେଇଁ ପଡ଼ିଲେ । ସେ ଆର କୂଳରେ ଉଠି ପୁରୁଣା ରାଜଘାଟ ଥାନା ପାଖରେ ହେଲା ବେଳକୁ ଦେଖିଲେ ଜଣେ ଆସି ପାଣି କୂଳରେ ଓ ଆଉଜଣେ ପ୍ରାୟ ପଚାଶ ହାତ ପଛରେ ବାଲି ଉପରେ । ସେ ଜଗନ୍ନାଥ ସଡ଼କ ଉପରକୁ ଉଠିଲା ବେଳକୁ ତାଙ୍କର ଅନ୍ୱେଷଣକାରୀମାନଙ୍କ ମଧ୍ୟରୁ ଆଉ ଜଣକ ରାଜଘାଟ ଫାଣ୍ଡିଉପରେ । ତା'ପରେ ଉଭୟେ ଦୌଡ଼ିଚନ୍ତି । କିନ୍ତୁ ଧୋଇବାବୁ ଅନୁଭବ କରିଚନ୍ତି, ତାଙ୍କର ଜୋର ଆସ୍ତେ ଆସ୍ତେ କମି ଆସୁଚି । ନିଃଶ୍ୱାସଟା ଆସ୍ତେ ଆସ୍ତେ ବେଶି ବେଶି ଜୋରରେ ଚାଲୁଚି । ଛାତି ଭିତରଟା କିପରି ଚପି ହେଲାପରି ଜଣାପଡୁଚି । ତେଣେ ତାଙ୍କ ଅନ୍ୱେଷଣକାରୀଟା ଆସ୍ତେ ଆସ୍ତେ ତାଙ୍କ ପାଖ ହୋଇଗଲାଣି । ସେ ଉପାୟନ୍ତର ନଦେଖି ହଠାତ୍ ବୁଲିପଡ଼ି ପିସ୍ତଲ ଆୱାଜ କଲେ । ଜୀବନରେ କେବେ ପିସ୍ତଲ ବା ବନ୍ଧୁକ ସେ ଧରିନାହାନ୍ତି । ଫଳରେ ଲକ୍ଷ୍ୟଟା ଯେ ବେଠିକ୍ ହେବ ସେ ତ ଧରାବନ୍ଧା କଥା । ତଥାପି ତାଙ୍କର ଉଦ୍ଦେଶ୍ୟଟା ସଫଳ ହେଲା । ତାଙ୍କର ଅନ୍ୱେଷଣକାରୀ ହଠାତ୍ ପିସ୍ତଲ ଆୱାଜ ଶୁଣି ଚମକିଉଠିଥିଲା । ତା'ପରେ ସେ ପଛଘୁଞ୍ଚା ଦେବାକୁ ଆରମ୍ଭ କଲା । ପିସ୍ତଲର ସାତଟା ଯାକ ଗୁଳି ସରିଲା ବେଳକୁ ସେ ଲୋକଟା ପ୍ରାୟ ଅଧମାଇଲିଏ ପଛକୁ ଦୌଡ଼ି ଯାଇସାରିଲାଣି । ଧୋଇବାବୁ ଆଉ ଅପେକ୍ଷା ନକରି ଆଗକୁ ଦୌଡ଼ିଚାଲିଲେ । ଅଳ୍ପ ଦୂର ଯାଇ ଦେଖିଲେ ଅମର୍ଦା ଷ୍ଟେସନ୍, ପାଖରେ ଗୋଟିଏ ଗାଁ । ଗାଁ ଆରମ୍ଭରେ ଗୋଟିଏ ଆମ୍ବ ବଗିଚା । ସେ ପଛକୁ ଟିକିଏ ଚାହିଁ ସେହି ଆମ୍ବ ବଗିଚା ଭିତରକୁ ପଶିଗଲେ । ବଗିଚା ଭିତରେ ଗୋଟିଏ ପୋଖରୀ, ପୋଖରୀ ଉପରେ ଗୋଟିଏ ଚାନ୍ଦିନୀ । ସେଇ ଚାନ୍ଦିନୀ ଉପରେ ବସିଛନ୍ତି ଗୋଟିଏ ଯୋଗୀ । ଛିଣ୍ଡା ଗାମୁଛାଟିଏ ବେକରେ, ମୁଣ୍ଡରେ ଗୋଟିଏ ଛିଣ୍ଡା ଗାମୁଛା ପଗଡ଼ି ବନ୍ଧାହୋଇଛି । ଡାହାଣ ତରଫରେ ଗୋଟିଏ କୋଥଲି ଓ ବାଁ ପାଖରେ ଗୋଟିଏ କେନ୍ଦେରା । ଯୋଗୀ ବସି ଚିଲମରେ 'ଦୋକା' ପୂରାଉଚନ୍ତି । ଧୋଇବାବୁ ଯୋଗୀକୁ ଦେଖି ଏ ମତଲବ ଉଠେଇଲେ । କହିଲେ, "କି ଯୋଗୀଭାଇ, କେତେଦୂର ଯିବ ?"

ଯୋଗୀ ବିଚାରା ଧୋବଧାଉଳିଆ ବାବୁଟିଏ ଦେଖି କିଛି ପଟି ମାରିବା ଆଶାରେ କହିଲେ, "କେତେଦୂର ଆଉ କ'ଣ, ଭିଖ ମାଗି ମାଗି ବୁଲିବା କଥା ।"

ଧୋଇ : ଆଚ୍ଛା, ତୁମେ କିଛି ପଇସା ରୋଜଗାର କରିବାକୁ ଇଚ୍ଛା କର ?

ଯୋଗୀ : ଗତର ଖଟେଇ ରୋଜଗାର କରିବା ତ ବାବୁ ଆମ ଚଉଦପୁରୁଷରେ ନାହିଁ । ତେବେ ମାଗଣା ଯଦି ମିଳିବ, ତାହେଲେ ନବାକୁ ନିତାନ୍ତ ଅରାଜି ନାହିଁ । କେହି ଯେବେ ତାଙ୍କ ନିଜ ପଇସାର ବୋଝ ସମ୍ଭାଳି ନପାରି, ବୋଝରୁ କିଛି ପର ମୁଣ୍ଡରେ ଲଦି ଦେବାକୁ ଇଚ୍ଛା କରନ୍ତି ତାହେଲେ କ'ଣ କରିବା, ପରର ଉପକାର କରିବା ପାଇଁ ଆମେ ସେ ବୋଝ ମୁଣ୍ଡେଇବାକୁ ରାଜି । କିନ୍ତୁ ରୋଜଗାର କଥାଟା କହିଲେ... ସେ କଥା ପଟେନାହିଁ ।

ଧୋଇ : ଏ ଏକ ପ୍ରକାର ମାଗଣା ପଇସା ହେ, ବେଶି କିଛି ଗତର ଖଟେଇବା ପ୍ରୟୋଜନ ନାହିଁ ।

ଯୋଗୀ : ଆପଣଙ୍କର ଯେତେବେଳେ ଏତେ ଆଗ୍ରହ ହେଲାଣି, କୁହନ୍ତୁ କଥାଟା ନହେଲା ଶୁଣିବା ।

ଧୋଇ : ଶୁଣ, ତୁମେ ତୁମର ଏ ଲୁଗାପଟାତକ ପାଲଟି ମତେ ଦିଅ । ଆଉ ମୋ ଲୁଗାପଟାତକ ତୁମେ ପିନ୍ଧ । ଏଇଲେ ଯାଇ ସଡ଼କ ଉପରେ ଆମ୍ବ ଗଛମୂଳେ ବସିବ । ମୁଁ ତାଳି ମାରିବା ମାତ୍ରକେ ସଡ଼କେ ସଡ଼କେ ଦଉଡ଼ି ପଳେଇବ ଯେତେଦୂର ଯାଇପାରିବ । ମୁଁ ତମ ପଛେ ପଛେ ଧାଇଁଥିବି । ତୁମେ ପଛକୁ ଫେରି ଚାହିଁବ ତ, ଦେଖୁଚ ଏ ପିସ୍ତଲ, ୟାର କୁନ୍ଦାରେ ତୁମ ମୁଣ୍ଡ ଚୂନା କରିଦେବି ।

ଯୋଗୀ : କିନ୍ତୁ ବାବୁ, ଯୁଠେଇ ଆଉ ଦଉଡ଼ି ନପାରିବି ?

ଧୋଇ : ସେଠି ବସିପଡ଼ିବ । କେହି ଯଦି ପଚାରିବ, ତାହାଲେ ତୁମର ଠିକ୍ ଠିକ୍ ପରିଚୟ ଦେଇଦବ । ମୋ କଥା ଯଦି କେହି ପଚାରେ ତାହେଲେ କିଛି କହିବ ନାହିଁ ।

ଯୋଗୀ : ଆଚ୍ଛା ବାବୁ ମତଲବଟା କ'ଣ କହିଲ ?

ଧୋଇ : ମତଲବ ଆଉ କ'ଣ, ଏଇ ଗୋଟାଏ ଖିଆଲ ।

ଯୋଗୀ : ମୁଁ ଯେ ଏତେ ବାଟ, ଧାଇଁବି, କ'ଣ ପାଇବି ?

ଧୋଇ : ଏଇ ଦେଖ, ତୁମେ ଯଦି ମୋ କଥାରେ ରାଜିହୁଅ, ତାହେଲେ ମୁଁ ତୁମକୁ ଯେ କୋଡ଼ିଏଟି ଟଙ୍କା ଦେବି ।

ଯୋଗୀ : ଏଁ, କୋଡ଼ିଏ ଟଙ୍କା ? ସତ କହୁଛ ? ମତେ ଠକିଦେବ ନାହିଁ ତ ?

ଧୋଇ : ତୁମେ ରାଜି ହୋଇ ଲୁଗାପଟା ଖୋଲିଲେ ତ ମୁଁ ତୁମକୁ ଟଙ୍କା ବଢ଼ାଇଦେବି ।

ଯୋଗୀ : ବାବୁ, ମତେ ଡର ଲାଗୁଚି । ୟା ଭିତରେ କ'ଣ ପେଞ୍ଚ ଅଛି ନା କ'ଣ ।

ଧୋଇ : ଆରେ ଏ ତ ସାଦାସିଧା କଥା, ୟା ଭିତରେ ପୁଣି ପେଞ୍ଚ କ'ଣ ?

ଯୋଗୀ : ବାବୁ ମୁଁ ରାଜି ହଉଚି, ତୁମେ ଦବଟି ?

ଯୋଗୀ ତା'ର ଚିଗା କନାତକ ମୁଣ୍ଡରୁ କାଢ଼ିଲେ । ଧୋଇବାବୁ ତାଙ୍କୁ ତାଙ୍କ ଦୋସଡ଼ାଟା ଦେଲେ । ସେ ଦୋସଡ଼ାଟି ପାଲଟି ପିନ୍ଧିଥିବା ଛିଣ୍ଡା ଲୁଗା ଖଣ୍ଡକ ମଧ୍ୟ ଦେଲେ । ଧୋଇବାବୁ ତାକୁ ରେଶମ ପଞ୍ଜାବିଟା ପିନ୍ଧାଇଦେଲେ । ମୁଣ୍ଡରୁ ଫୁରୁଫୁରୁ ବାଳରେ ଟିକିଏ ପାଣିହାତ ମାରି ସାଉଁନେଇ ଦେଲେ । ସେ ରଖିବା ଭିତରେ ତାଙ୍କ ଲୁଗାତକ ଢ଼ଙ୍ଗିଆଟି ଓ ଗେଞ୍ଜିଟି ରଖିଲେ । ତା' ଉପରେ ନାକ ଟେକି ଟେକି କୌଣସି ମତେ ଛିଣ୍ଡା କନାଟା ଅଣ୍ଟାରେ ଗୁଡ଼ାଇ ଓ ଛିଣ୍ଡା କୁରୁତାଟା ପିନ୍ଧି ମୁଣ୍ଡରେ ପଗଡ଼ିଟି ବାନ୍ଧି କୋଥଲି ଓ କେଦେରା ଉଠାଇବାକୁ ଗଲେ । ଯୋଗୀ କହିଲା, "ହାଁ, ହାଁ, ବାବୁ କର କ'ଣ ? ସେ ସବୁ କେଣେ ଉଠଉଛ ?"

ଧୋଇ : କି, ଏଗୁଡ଼ାକ ଯେ ମୁଁ ନେବି ବୋଲି କଥା ହେଲା ।

ଯୋଗୀ : ନାଇଁ ସେ କଥା ତ କିଛି ହୋଇନାହିଁ । ବାରେ, ବା—ମୋର ସାତପୁରୁଷି କେଦେରା, କୋଥଲି ତୁମକୁ ଦେଇଦେବି ? ନହେଲେ ନାଇଁ ପଛକେ ଏ ଟଙ୍କା ।

ଧୋଇ : ଆଚ୍ଛା ଆଉ ପାଞ୍ଚ ଟଙ୍କା ତୁମକୁ ଦେବି ।

ଯୋଗୀ : ନାଇଁ ନାଇଁ ବାବୁ ସେ କଥା ହବନାହିଁ ।

ଧୋଇ : ଆଚ୍ଛା, ଦଶ ?

ଯୋଗୀ : ଆଉରି ଦଶଟଙ୍କା ? ହଉ ତେବେ । ନାଇଁ ନାଇଁ ମୋର ସାତପୁରୁଷ—

ଧୋଇ : ତେବେ ଦେ ମୋର କୋଡ଼ିଏ ଟଙ୍କା, ମୋ ଲୁଗାପଟା ଫେରେଇଦେ ।

ଯୋଗୀ ରାଗିଗଲକି ବାବୁ ? ହଉ ତୁମେ ଯେତେବେଳେ କହିଲଣି । ଆଉ କ'ଣ ଏଡ଼ିଦେବି । ହଉ ହଉ, ଦିଅ ତେବେ ଆଉ ଦଶଟଙ୍କା ।

ଧୋଇବାବୁ ତାକୁ ଆଉ ଦଶଟି ଟଙ୍କା ବଢ଼େଇଦେଲେ । ଗଣି ଦେଖିଲେ ତାଙ୍କ ପାଖରେ ଆଉରି ପ୍ରାୟ ତିରିଶ ଟଙ୍କାର ନୋଟ୍ ଅଛି । ସେଗୁଡ଼ିକ ଓ ପିସ୍ତଲଟି କୋଥଲି ଭିତରେ ରଖି କୋଥଲଟି କାନ୍ଧରେ ପକାଇ ଓ କେଦେରାଟି ହାତରେ ଧରି ସେ ବାହାରିଲେ ସଡ଼କ ଆଡ଼କୁ । ଯୋଗୀ ମଧ୍ୟ ତାଙ୍କ ପଛେ ପଛେ ଗଲେ । ସଡ଼କ ପାଖ ଆମ୍ବଗଛ ମୂଳେ ପନ୍ଦର ମିନିଟ୍ ଛିଡ଼ା ହୋଇଛନ୍ତି କି ନାହିଁ, ପଛଆଡୁ ଜଣେ ମଣିଷ ସଡ଼କରେ ଆସିବାର ଦେଖାଗଲା । ଧୋଇବାବୁ ତାଳିଦେଲେ । ଯୋଗୀ ଆଉ ପଛକୁ ନ ଚାହିଁ ଦୌଡ଼ିବାକୁ ଲାଗିଲେ । ଯେ ଲୋକଟା ପଛରୁ ଆସୁଥିଲା, ସେ ମଧ୍ୟ ଯୋଗୀ ପଛେ ପଛେ ଦୌଡ଼ିବାକୁ ଲାଗିଲା । ଧୋଇବାବୁ ଆମ୍ବ ଗଛ ଉହାଡ଼ରେ ରହି ଏ ସବୁ ଦେଖୁଥିଲେ । ଯୋଗୀ ଓ ତାଙ୍କ ପଛ ଜଣକ ଆଖିର ଅଦୃଶ୍ୟ ହୋଇଗଲେ । ସେ ପୁଣି ପୋଖରୀ କୂଳକୁ ଫେରିଗଲେ । କିଛି ମାଟି ଆଣି ମୁଣ୍ଡରେ ବୋଳିଲେ । ମୁନ୍ଦିଏ ପାଣି ପିଇ ସାଷ୍ଟମ ହେଲେ । ତା'ପରେ ବଗିଚା ଭିତରୁ ବାହାରି ଗାଁ ଭିତରକୁ ଗଲେ । ଗାଁଟିର ନାମ ରାଧାନାଥପୁର ଶାସନ ।



# ଏକୋଇଶି

ଯୋଗବାବୁ ପ୍ରମଥବାବୁଙ୍କ ଘର ଛାଡ଼ି ପଳାଇ ଯିବାର ପ୍ରାୟ ତିନିମାସ ପରେ "ହାବଡ଼ା ଷ୍ଟେସନ୍" । ସନ୍ଧ୍ୟା ପ୍ରାୟ ସାତଟା ହେବ, ବିଜୁଳି ଆଲୁଅର ଝଲସରେ ମୁସାଫିର ଖାନାଟା ଦିନଭଳି ଉଜ୍ଜ୍ୱଳ ହୋଇ ଉଠିଛି । ପ୍ରଥମ ଓ ଦ୍ୱିତୀୟ ମୁସାଫିରଖାନା ବାହାରେ ଯେ ବେଞ୍ଚଟା ପଡ଼ିଛି, ତା' ଉପରେ ଜଣେ ଗୋରା ଯୁବତୀ ଓ ଦୁଇଜଣ ଗୋରା ଯୁବକ ବସିଛନ୍ତି । ଜଣେ ଯୁବକ ଯୁବତୀଙ୍କର ଗଣ୍ଡଦେଶକୁ ଚିମୁଟି ଦେଲେ । ଆଉ ଜଣେ ତାଙ୍କ ବକ୍ଷଦେଶରେ ଆଙ୍ଗୁଠି ଟିପ ଲଗାଇ ଦେଉଛନ୍ତି, ଆଉ ଯୁବତୀ ହା-ହା ହସରେ ମୁସାଫିର ଖାନାଟାକୁ ଚମକାଇ ଦେଉଚନ୍ତି । କେଉଁଠାରେ ଜଣେ ସାହେବ ଓ ତାଙ୍କ ମେମ୍ ଖୁସିଗପ ଯୋଡ଼ିଦେଇ ବୁଲାବୁଲି କରୁଚନ୍ତି । କେତେ ଦେଶୀ ଯୁବକ ଯୁବତୀ ମୁସାଫିରଖାନାରେ ବୁଲି ବୁଲି ଆମୋଦ ଅନୁଭବ କରିବାରେ ବୁଡ଼ିରହିଚନ୍ତି । ସେମାନଙ୍କ ଆଖିରେ ଯେପରି ଏ ଇହସଂସାରରେ ସେଇମାନଙ୍କ ଛଡ଼ା ଆଉ କେହି ନାହିଁ । ମୁସାଫିରଖାନାର ପ୍ରତ୍ୟେକ ଖୁମ୍ବକୁ ଲାଗି ଚତୁର୍ମୁଖ ବ୍ରହ୍ମାଙ୍କପରି ଚାରି ଚାରିଟା ଇଟା-ଚୂନର ବସିବା ଜାଗା । ଏଗୁଡ଼ାକରେ ତୃତୀୟ ଶ୍ରେଣୀ ଓ ମଧ୍ୟମ ଶ୍ରେଣୀର ଯାତ୍ରୀମାନେ ବସି କେହି ମୁଢ଼ି ଚୋବାଉଚି, କେହି ବିଡ଼ି ଟାଣୁଚି, କେହିବା ପାଖବାଲା ସାଙ୍ଗରେ ଗପ ଯୋଡ଼ିଦେଇଚି । ଟିକଟ କିଣା ଜାଗାମାନଙ୍କରେ ବଡ଼ ଭିଡ଼ । ବାହାରେ ହୁଡ଼ାହୁଡ଼ି, ବକାବକି, ଠେଲାଠେଲି, ପେଲାପେଲି ଚାଲିଛି । ଭିତରେ ଟିକଟଦାତ୍ରୀ ମେମ୍ ସାହେବ ନିର୍ବିକାର ଭାବରେ ତାଙ୍କ ସମୟ ଓ ସୁବିଧା ଅନୁସାରେ ଟିକଟ ଖଣ୍ଡେ ଖଣ୍ଡେ ବେଳେ ବେଳେ ଝରକା ଆଡ଼କୁ ଫୋପାଡ଼ି ଦେଉଛନ୍ତି । ମଟର ଫେଁ-ଫେଁ, ମନୁଷ୍ୟମାନଙ୍କ ହେଁ-ହେଁ ଓ ରେଳଗାଡ଼ିର ଭେଁ-ଭେଁ—ଜଣାପଡୁଛି ଯେପରି ଏହା ଗୋଟାଏ ପାଗଲ ଗାରଦ । ଏହି ପାଗଲ ଗାରଦ ଭିତରେ ସଦାଶିବ ବାବୁ ଓ ପ୍ରମଥ ବାବୁଙ୍କର ହଠାତ୍ ଭେଟ ହୁଏ । ଉଭୟେ ବି.ଏନ୍.ଆର. କମ୍ପାନୀର ମଧ୍ୟମ ଶ୍ରେଣୀ ଟିକଟ ଘର ପାଖରେ । ଟିକଟ କିଣିବାକୁ ଲସରପସର ହୋଇ ଧାଇଁଚନ୍ତି । ହଠାତ୍ ଭେଟ ହୋଇଗଲା । ଉଭୟେ ଉଭୟଙ୍କ ଆଡ଼କୁ ପ୍ରଥମେ କଟମଟ କରି ଚାହିଁଲେ । ତା'ପରେ ପ୍ରମଥ ବାବୁଙ୍କ ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ଯେପରି କେତେଦିନର ଅଦେଖା ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କୁ ସେ ଦେଖିବାକୁ ପାଇଚନ୍ତି । ସେ ହାତଟା ବଢ଼ାଇଦେଇ କହିଲେ, "ଆରେ ସଦାଶିବ ଭାଇ ଯେ ! ଆଜି ମୋର ବଡ଼ ସୌଭାଗ୍ୟ । ତୁମକୁ ଏତେ ଦିନ ପରେ ଦେଖିଲି । ତା'ପରେ ଭାଇ, ଆଉ ଖବର କ'ଣ ?"

ସଦାଶିବ ବାବୁ ପ୍ରମଥ ବାବୁଙ୍କର ଏ ସାଦର ସମ୍ଭାଷଣଟିକୁ ନଯେନିଲା ହୋଇ କହିଲେ, "ପ୍ରମଥ, ତୋ ସାଙ୍ଗରେ ମୋର ଗୋଟାଏ ଜରୁରୀ କଥା ଥିଲା । ଟିକିଏ ଏଆଡ଼େ ଆସେ ତ !"

ପ୍ରମଥ : କି ଦୁଃଖର କଥା ! ଏତେଦିନ ପରେ ତମକୁ ଦେଖିଲି । ତୁମେ ପୁଣି ମତେ ନିମନ୍ତ୍ରଣ କରୁଚ, କ'ଣ କରିବି, ସେ ମୋର ଦୁର୍ଭାଗ୍ୟ । ନାହେଁ, କ'ଣ କହୁଚ ? ମୁଁ ଭାଇ, ଗୋଟାଏ ବଡ଼ ଜରୁରୀ କାମରେ ରାଞ୍ଚି ଯାଉଚି । ତୁମେ କଲିକତାରେ ଅଛ ତ ଏ ତିନି

ଚାରିଦିନ । ଫେରିଆସିଲେ ଅବଶ୍ୟ କଥାବାର୍ତ୍ତା ହେବ । ଗାଡ଼ିବେଳଟା ହୋଇଗଲା ପ୍ରାୟ । ଉଠ, ମୁଁ ଟିକଟଟା କିଣିନିଏଁ ।

ସଦାଶିବ : ମୋ କଥା ନ ଶୁଣିବୁ ତ, ନଶୁଣୁ; କିନ୍ତୁ ମନେ ରଖିଥିବୁ, ଏହାଦ୍ୱାରା ଭଲ ହେବନାହିଁ ତୋର । ତୁ ଯେ ଉଦ୍ଦେଶ୍ୟରେ କଲିକତା ଛାଡୁଛୁ ସେ ବିଷୟରେ ମୁଁ ତତେ ଅନେକ ଖବର ଦେଇପାରନ୍ତି ।

ପ୍ରମଥ : ମୁଁ ତ କୌଣସି ବିଶେଷ ଉଦ୍ଦେଶ୍ୟରେ କଲିକତା ଛାଡ଼ି ଯାଉନାହିଁ । ଖାଲି ଏ ସମୟରେ କଲିକତା ସହରଟା ବଡ଼ ଗରମ ବୋଲି ମୁଁ ହାଓ୍ୱା ବଦଳେଇବା ପାଇଁ ପୁରୀ ଯାଉଛି । ନା ହେ, କ'ଣ କହୁଛ ?

ସଦାଶିବ : ଇଲେ କହୁଥିଲ ଯେ ରାଞ୍ଚି ଯାଉଛ ବୋଲି ?

ପ୍ରମଥ : ଆଚ୍ଛା, ଆଚ୍ଛା, ମୁଁ ଟିକଟ କିଣିସାରେ; ତା'ପରେ ପ୍ଲାଟଫର୍ମରେ ଠିଆ ହୋଇ କଥାବାର୍ତ୍ତା ହେବା । ତୁମପାଇଁ ଖଣ୍ଡେ ପ୍ଲାଟଫର୍ମ ଟିକଟ କିଣେ ?

ସଦାଶିବ : ନାଁ, ସେ ଦରକାର ହେବ ନାହିଁ । ମୁଁ ମଧ୍ୟ ଏ ଗାଡ଼ିରେ ଯାଉଛି ।

ପ୍ରମଥ : ଆହା, ଚୁ, ଚୁ, ମୁଁ ଭାବିଥିଲି ରାଞ୍ଚି ବା ପୁରୀରୁ ଫେରିଆସିଲେ, ତୁମକୁ ମୋ ଘରକୁ ନିମନ୍ତ୍ରଣ କରିଥାନ୍ତି । ଇମିତି ଆସି ଇମିତି ଯାଉଚ ଭାରି କୁଆଡ଼େ ?

ସଦାଶିବ : ଯିବି ଆଉ କୁଆଡ଼େ ? ଏଇ ଆମ ଗାଁକୁ ।

ପ୍ରମଥବାବୁ 'ଓ' ବୋଲି କହି ଜଳେଶ୍ୱର ଷ୍ଟେସନକୁ ଖଣ୍ଡିଏ ଟିକଟ କାଟିଲେ । ସଦାଶିବ ବାବୁ ମଧ୍ୟ । "ବଡ଼ଲୋକମାନେ ଏକ ପନ୍ଥା ଆଶ୍ରୟ କରନ୍ତି" କହି ସେ ମଧ୍ୟ ଜଳେଶ୍ୱର ଷ୍ଟେସନକୁ ଖଣ୍ଡିଏ ଟିକଟ କିଣିଲେ । ଉଭୟେ ଯାଇ ଗୋଟିଏ ମଧ୍ୟମ ଶ୍ରେଣୀ ଡବାରେ ବସିଲାପରେ ପ୍ରମଥବାବୁ କହିଲେ, "କ'ଣ କହିବ ବୋଲି କହୁଥିଲ, କହ ତ ଦେଖି ।"

ସଦାଶିବ : ତୁ ଆଗେ ଜଳେଶ୍ୱର ଯାଉଚୁ କିଆଁ କହ ?

ପ୍ରମଥ : ସେ ଖବରରେ ତୋର ଦରକାର କିସ ? ମୁଁ ଜଳେଶ୍ୱର ଯାଉଛି, ବ୍ୟବସାୟରେ—

ସଦାଶିବ : ସେ ବ୍ୟବସାୟଟା ଧୋଇଆର ଖବର ନବା ?

ପ୍ରମଥ : ଧୋଇଆ କିଏ ? ମୁଁ ତ ସେ ନାମର କାହାରିକୁ ଜାଣେନାହିଁ, ନା ହେ କ'ଣ କହୁଛ ?

ସଦାଶିବ : ଦେଖ, ପ୍ରମଥ ! ମୋ ଆଗରେ ଏ ସବୁ ଚାଲାକି ଖେଳି କିଛି ଲାଭ ନାହିଁ । ମୁଁ ଜାଣେ ତୁ ଯାହା । କିନ୍ତୁ ମୁଁ ଭାବିନଥିଲି ଯେ ତୁ ମୋ ଭଳି ପିଲାଦିନର ସାଙ୍ଗ ସହିତ ଏପରି ଜୁଆଚୋରି ଖେଳିବୁ ବୋଲି ।

ପ୍ରମଥ : ଜୁଆଚୋରି ? ବଡ଼ ଲମ୍ବା ଲମ୍ବା କଥାଟାମାନ କହୁଚୁ ତ ?

ସଦାଶିବ ବାବୁଙ୍କ ମନରେ ସେ ଟଙ୍କାଗୁଡ଼ାକର କଥା ପଡ଼ିଗଲା । ରାଗହୋଇ ସେ ଗରଗର ହୋଇ କହିଲେ, "ଜୁଆଚୋର କିପରି ? ଧୋଇଆ କଥା ତୁମକୁ ପ୍ରଥମେ କହିଲା

କିଏ ? ତାକୁ ତୁମ ପାଖକୁ ପଠାଇଲା କିଏ ? ତାକୁ ଏଠାରୁ ନଛାଡ଼ିବା ପାଇଁ ତୁମକୁ ଏକହଜାର ଟଙ୍କା ଗଣିଦେଲା କିଏ ? ଏସବୁ ପରେ ମୋ ଠାରୁ ଟଙ୍କା ନେଇ ମୋତେ ଜବାବ ଦେଇ ଶେଷରେ ତୁମେ ଯେ ମୋରି ଗଳାରେ ଛୁରି ଦେବାକୁ ବାହାରିଲ, ଏଇଟା ଖାଲି ଜୁଆଚୋରି ନୁହେଁ; ନିମକହରାମି ।"

ପ୍ରମଥବାବୁ ଅସମ୍ଭବ ରକମ ଧୀର, ସ୍ଥିର, ଗମ୍ଭୀର; କହିଲେ, "ହୁଁ, ଜୁଆଚୋର । ତା'ପରେ ନିମକହରାମ । ଆଚ୍ଛା, ତୁମେ ଯାହା ସବୁ କହିଲ, ଧରିନିଅ, ସେଗୁଡ଼ାକ ସତ । ମନେରଖ କିନ୍ତୁ ଯେ ମୁଁ ଏଥିରୁ କିଛି ମାତ୍ର ସ୍ୱୀକାର କରୁନାହିଁ, ତଥାପି ଯୁକ୍ତିତର୍କ ଉଦ୍ଦେଶ୍ୟରେ ମାନିନେଲି ସେ ସବୁ ସତ । ଏଥିରେ ମୁଁ ଜୁଆଚୋର ଓ ନିମକହରାମ ହେଲି କିପରି ?"

ସଦାଶିବ : ନିମକହରାମି ନୁହଁ ! ତୁମେ ଜବାବ କରିଥିଲ ଯେ ସେ ଟୋକାଟାକୁ ଏଠାରୁ ଛାଡ଼ିଦେବ ନାହିଁ ବୋଲି ?

ପ୍ରମଥ : ମୁଁ ଯେ ଛାଡ଼ିଦେଇଚି ତା' ତୁମେ କିପରି ପ୍ରମାଣ କରୁଚ ?

ସଦାଶିବ : କିନ୍ତୁ ତୁ ଯେ ତାକୁ ତୋ ଝିଅ ସହିତ ବିବାହ ଦେଇଚୁ ଏଇଟା କ'ଣ ନିମକହରାମି ନୁହେଁ ?

ପ୍ରମଥ : କିପରି ? ତୁମ ସାଙ୍ଗରେ ମୋର ଯେ ଜବାବ ହୋଇଥିଲା ବୋଲି ତୁମେ କହୁଚ, ସେଥିରେ ମୁଁ ତାକୁ ମୋ ଝିଅ ସାଙ୍ଗରେ ବିବାହ ନଦେବି ଏପରି କିଛି ଜବାବ ହୋଇଥିଲା କି ?

ସଦାଶିବ : କିନ୍ତୁ ତୁମେ ଜାଣ ମୁଁ ତୁମକୁ ଏ କାର୍ଯ୍ୟରେ ନିଯୁକ୍ତି କରିଥିଲି କି ଉଦ୍ଦେଶ୍ୟରେ । ତୁମେ ତୁମର ଝିଅକୁ ବାହା ଦେବା ଦ୍ୱାରା ସେ ଉଦ୍ଦେଶ୍ୟ ମୋର ମାଟି କରିନାହଁ କି ?

ପ୍ରମଥ : ତୁମର କି ଯେ ଉଦ୍ଦେଶ୍ୟ ଏହା ମୂଳରେ ଥିଲା, ତା' ମୁଁ ଏପର୍ଯ୍ୟନ୍ତ ଜାଣେ ନାହିଁ । ହଁ, ମୋର ବର୍ତ୍ତମାନ ମନେହଉଚି, ତୁମେ ଗୋଟାଏ ଟୋକା ସମ୍ବନ୍ଧରେ ମତେ କ'ଣ ସବୁ କହିଥିଲ । ସେଥିରେ ତୁମେ କହିଥିଲ ସେ ଟୋକାଟାର ମା' ତା'ର ଅପବ୍ୟବହାରରେ ବଡ଼ ବିରକ୍ତ ଏବଂ ତାକୁ ଏଠାରେ ବର୍ଷେ ଦୁଇ ବର୍ଷ ରଖିପାରିଲେ, ସେ ସମ୍ପତ୍ତିର ଗୋଟାଏ ବ୍ୟବସ୍ଥା କରିପାରନ୍ତେ । ତାଇନା ! ମୁଁ ଟୋକାଟାକୁ ମୋ ଝିଅ ସହିତ ବିବାହ କରିଦେଲେ ତିନୋଟି କାମ ଏକାବେଳକେ ହୋଇଯିବ । ପ୍ରଥମ, ସେ ମୋ ସୁନ୍ଦରୀ କନ୍ୟାର ପ୍ରେମରେ ପଡ଼ି ଆଉ କଲିକତା ଛାଡ଼ି କୁଆଡ଼େ ଯିବାକୁ ଇଚ୍ଛା କରିବନାହିଁ । ଦ୍ୱିତୀୟ, ସେ ବ୍ରାହ୍ମଣ ଘରେ ବିବାହ କଲେ ତାଙ୍କର ହିନ୍ଦୁ ମା' ତ୍ୟଜ୍ୟପୁତ୍ର କରି ତାଙ୍କୁ ସମ୍ପତ୍ତିରୁ ବଞ୍ଚିତ କରିପାରିବେ । ତୃତୀୟରେ ମୁଁ ମୋ ଝିଅ ପାଇଁ ଗୋଟିଏ ଉପଯୁକ୍ତ ପରପାତ୍ର ଖୋଜୁଥିଲି । ଦେଖିଲି ସେ ଟୋକାଟା ଯେପରି ରୂପବାନ୍, ସେହିପରି ମଧ୍ୟ ବିଦ୍ୱାନ୍ ଓ ଗୁଣବାନ୍ । ଅତଏବ ମୋର ମନୋନୀତ ପାତ୍ର ପାଇଁ ମୋ ମୁଣ୍ଡରୁ ମଧ୍ୟ ଗୋଟିଏ ବୋଝ କାଢ଼ିନେଲି । ଏଥିରେ ତ ମୁଁ ଦେଖିପାରୁନାହିଁ ମୁଁ କିପରି ଜବାବ୍ ବାହାରେ ଯାଉଚି । ବରଂ ସଦାଶିବ, ତୁ ଗୋଟାଏ ଭଣ୍ଡ, ତୁ ଗୋଟାଏ 'ଆସ୍ତ' ଗଧ । ତୁ ମତେ ଗୋଟାଏ କାମରେ ନିଯୁକ୍ତ କଲୁ; କଥାହେଲା ଦୁଇହଜାର

ଟଙ୍କା ମୁଁ ସେ କାମ ନିମନ୍ତେ ପାରିଶ୍ରମିକ ପାଇବି । ତୁ ମତେ ହଜାରେ ଟଙ୍କା ଦେଲୁ । ମୁଁ ତୋର କାମ କରିଦେଲି । ମୋର ବାକି ହଜାରକ ଟଙ୍କା ନଦେଇ ତୁ ମୋତେ ବର୍ତ୍ତମାନ ଗାଳି ଦେଉଛୁ ! ଏ କ'ଣ ଭଦ୍ରତା ? ଏ କ'ଣ ନିମକସଚ୍ଚା କାମ ?

ସଦାଶିବ : କିନ୍ତୁ ମୋର କାମ ହେଲା କିପରି ? ସେ କଲିକତା ଛାଡ଼ି ପଳାଇଯାଇଛି ।

ପ୍ରମଥ : କିନ୍ତୁ ସେ ତ ବଡ଼ ସାମାନ୍ୟ କଥା । ତାକୁ ଧରି ପିଞ୍ଜରା ଭିତରକୁ ଆଣିବା କେତେ ଘଡ଼ି ? କିନ୍ତୁ ମୁଁ ଦେଖୁଛି କ'ଣ ? ମୁଁ ତାକୁ ଧରିବା ପାଇଁ ଚେଷ୍ଟାକଲାବେଳକୁ ତୁ ପଦେ ପଦେ ବାଧା ଦେଉଚୁ ।

ସଦାଶିବ : ମୁଁ ବାଧା ଦଉଚି । ଏ ତ ଗୋଟାଏ ଆଶ୍ଚର୍ଯ୍ୟ କଥା ।

ପ୍ରମଥ : ତୁ ବାଧାଦେଉନାହୁଁ ତ ଆଉ କ'ଣ ! ମୋର ଲୋକମାନଙ୍କ ପାଖରେ ଦୁଇଜଣ ବଜାରୀ ଗୁଣ୍ଡା କିଏ ନିଯୁକ୍ତ କଲା ? ମୋ ମଟରର ଗତିକି କିଏ ଅବରୋଧ କଲା ! କଣ୍ଟେଇ ରୋଡ଼ ଷ୍ଟେସନରେ ମୋର ଲୋକମାନେ ତାକୁ ଧରିଲାବେଳକୁ କିଏ ତାକୁ ମଟର ଯୋଗାଇ ପଳାଇବାରେ ସାହାଯ୍ୟ କଲା !

ସଦାଶିବ : କିନ୍ତୁ ମୁଁ ତ ତାକୁ ଧରିବା ଉଦ୍ଦେଶ୍ୟରେ ହିଁ ଏସବୁ କରିଥିଲି ।

ପ୍ରମଥ : ଜଣକ ଉପରେ ଗୋଟାଏ କାର୍ଯ୍ୟର ଭାର ଦେଇ ସେଥିରେ ତୁମେ ହସ୍ତକ୍ଷେପ କଲେ କାମ ହୋଇପାରିବ କିପରି ?

ସଦାଶିବ : କିନ୍ତୁ ବର୍ତ୍ତମାନ ତ ସମୟ ଅଛି । ବର୍ତ୍ତମାନ ମଧ୍ୟ ଇଚ୍ଛାକଲେ ଆମେ ଦୁହେଁଯାକ ସେଇ ଏକ ଉଦ୍ଦେଶ୍ୟରେ ମିଳିମିଶି କାର୍ଯ୍ୟ କରିପାରିବା ।

ପ୍ରମଥ : ସେଥିରେ ମୋର କିଛିମାତ୍ର ଆପତ୍ତି ନାହିଁ । ତୁମେ ତା'ର ଗତିବିଧି କ'ଣ ଜାଣ ?

ସଦାଶିବ : ବିଶେଷ କିଛି ନୁହେଁ । ତେବେ ମୋ ଚରମାନଙ୍କଠାରୁ ଶୁଣିଚି ସେ କୁଆଡ଼େ କଣ୍ଟେଇ ରୋଡ଼ ଷ୍ଟେସନରେ ମୋ ମଟରଟାରେ ବସି ଜଳେଶ୍ୱର ପଳାଇଲା । ସେ ମଟରଟାରେ ଗୋଟାଏ ପିସ୍ତଲ ଥିଲା । ତା' ବୋଧହୁଏ ତା' ହାତରେ ପଡ଼ିଚି ।

ପ୍ରମଥ : ତାଇ କହ, ମୁଁ ଆଶ୍ଚର୍ଯ୍ୟ ହେଉଥିଲି ଯେ ସେ ପିସ୍ତଲ ପାଇଲା କାହୁଁ ?

ସଦାଶିବ : ତା' ପାଖେ ପିସ୍ତଲ ଥିବା ତୁମେ ଜାଣିଲ କିପରି ?

ପ୍ରମଥ : ଶୁଣ, ମୋର ଲୋକମାନେ ମଟର କରି ଜଳେଶ୍ୱର ପର୍ଯ୍ୟନ୍ତ ତା' ପଛରେ ଗୋଡ଼ାଇଥିଲେ । ସେହିଠାରେ ସେ ମଟର ଛାଡ଼ି ଦୌଡ଼ି ଦୌଡ଼ି ପଳେଇଲା । ମୋର ଜଣେ ଲୋକ ତା' ପିଛା ଧରିଲା । ତାକୁ ପ୍ରାୟ ଧରିବା ଉପରେ, ଏପରି ସମୟରେ ସେ ପିସ୍ତଲ କାଢ଼ି ତା' ଆଡ଼କୁ ଆୱାଜ କଲା । ତା'ର କିଛି କ୍ଷତି ହୋଇନାହିଁ; କିନ୍ତୁ ସେ ପଛକୁ ଯିବାରୁ ଯୋଇଆ ପୁଣି ଦୌଡ଼ି ପଳେଇଲା ।

ସଦାଶିବ : ସେ ତେବେ ବର୍ତ୍ତମାନ କେଉଁଠି ?

ପ୍ରମଥ : ତା' ମୁଁ ଜାଣେନାହିଁ । ସେ ଅନ୍ୟ ଗୋଟାଏ ଲୋକକୁ ତାରି ପରି ବେଶ କରାଇ ମୋ ଲୋକଟାକୁ ବୁହେ ଭୁଆଁ ଦଉଡ଼େଇଲା ଓ ଇତି ମଧ୍ୟରେ ସେ ଅମର୍ଦା ରୋଡ଼ ଷ୍ଟେସନ ପାଖରେ କୁଆଡ଼େ 'ଗାଏବ' ହୋଇଗଲା । ତା'ର ଚିହ୍ନ ମାତ୍ର ନାହିଁ ।

ସଦାଶିବ : ପିସ୍ତଲଟା ?

ପ୍ରମଥ : ଖୁବ୍ ସମ୍ଭବ ତା' ପାଖରେ ଅଛି ।

ସଦାଶିବ ବାବୁ ପ୍ରାୟ ପନ୍ଦର ମିନିଟ୍ ପର୍ଯ୍ୟନ୍ତ ଗମ୍ଭୀର ହୋଇ ଭାବିଲେ. ତା'ପରେ କହିଲେ. "ତୁ ଜାଣୁ ପ୍ରମଥ. ମୁଁ କ'ଣ ଭାବୁଛି ? ସେ ଯଦି ଏହିପରି ମଫସଲରେ ଲୁଚି ଲୁଚି ବୁଲେ. ତା'ହେଲେ ତାକୁ ଖୋଜି ବାହାର କରିବା; କୁଟାଗଦାରୁ ଛୁଞ୍ଚି ବାହାର କଲାଭଳି କଷ୍ଟକର ହେବ । ମୁଁ ଭାବୁଚି ପୁଲିସିଙ୍କି ତା' ପିଛା ଦେଲେ ହୁଅନ୍ତା ନାହିଁ ?"

ପ୍ରମଥ : ପୁଲିସି ବାବୁ ? ତୁ କ'ଣ ପାଗଳ ହେଲୁ ? ପୁଲିସିକୁ ଏପରି କାମ ଭିତରକୁ ଆଣିବା ଅର୍ଥ ସବୁ ମାଟି କରିବା । ସେଗୁଡ଼ାକ କରିବେ କ'ଣ ? ନିତାନ୍ତ ଅନାଡ଼ି ଅପଦାର୍ଥ ଜାତି ।

ସଦାଶିବ : ସେଗୁଡ଼ାକ ପ୍ରକୃତରେ ଅନାଡ଼ି ଓ ଅପଦାର୍ଥ । ତେବେ ତାଙ୍କ ହାତରେ ଚୌକିଦାର, ଦଫାଦାର, ଗୁପ୍ତଚର ଇତ୍ୟାଦି ଅନେକ ଅଛନ୍ତି । ସେମାନେ ଆଉ କିଛି କରିପାରନ୍ତୁ ବା ନପାରନ୍ତୁ. ଧୋଇଆକୁ ଯଦି ଖୋଜି ପଦାକୁ ଆଣନ୍ତି. ତାହେଲେ ଆମ ଉଦ୍ଦେଶ୍ୟ ସଫଳ ହୁଅନ୍ତା ।

ପ୍ରମଥ : କେଜାଣି ବାବୁ. ଏ ପୁଲିସିଗୁଡ଼ାଙ୍କୁ ମୋର ବଡ଼ ଭୟ । ତୁ କିପରି ତାଙ୍କୁ ଧୋଇକୁ ଖୋଜିବାରେ ମତେଇବୁ ?

ସଦାଶିବ : ତା' ପାଖରେ ଗୋଟାଏ ବିନା ଲାଇସେନ୍‌ସର ପିସ୍ତଲ ଅଛି ନା ? ମୁଁ ଯଦି ଯାଇ ବାଲେଶ୍ୱର ଜିଲ୍ଲା ପୁଲିସିଙ୍କୁ କହେ ଯେ ଜଣେ ଲୋକ ପିସ୍ତଲ ନେଇ ଅମର୍ଦା ରୋଡ଼ ଷ୍ଟେସନ ପାଖରୁ ମଫସଲ ଗ୍ରାମରେ ବୁଲୁଚି ବୋଲି. ତାହେଲେ ସେମାନେ ସାଙ୍ଗେ ସାଙ୍ଗେ ଅରାଜକ ଦଳଙ୍କ ଗନ୍ଧ ପାଇଁ ମାତିଉଠିବେ ।

ପ୍ରମଥ : ଉପାୟଟା ନିତାନ୍ତ ମନ୍ଦ ନୁହେଁ । କିନ୍ତୁ ସେମାନେ ତୋ କଥା ବିଶ୍ୱାସ କରିବେ କାହିଁକି ?

ସଦାଶିବ : ଆରେ ତୁ କ'ଣ ଜାଣୁ, ଏ ଓଡ଼ିଶାରେ କମିଶନର ପର୍ଯ୍ୟନ୍ତ ମୋର ଖାତିର କରନ୍ତି । ଆଉ ଜିଲ୍ଲା ମେଜେଷ୍ଟର କିବା ଲୋକ ।

ପ୍ରମଥ : ମନ୍ଦ ନୁହେଁ. କିନ୍ତୁ ବାବୁ ସାବଧାନ ମୋ ନାଁ ଯେପରି ନପଡ଼େ ।



# ବାଇଶି

ରାଧାନାଥପୁର ଗ୍ରାମଟି ବାଲେଶ୍ୱର ଜିଲ୍ଲାର ଗୋଟାଏ ମାମୁଲି ଧରଣର ଗ୍ରାମ । ପୁରୀ କଟକ ବାସୀଙ୍କର ଏପରି ଗ୍ରାମସବୁର କଳ୍ପନା କରିବା ବଡ଼ କଷ୍ଟ । ପ୍ରତ୍ୟେକ ଘର ଅନ୍ୟଘରଠାରୁ ପ୍ରାୟ ୫୦ ହାତ ଛଡ଼ା । ପ୍ରତ୍ୟେକ ଘରର ଚାରିଆଡ଼େ ବାଉଁଶ ଓ ବଣୁଆ ଗଛର ବେଢ଼ା । ଘର ଓ ବେଢ଼ା ମଧ୍ୟରେ ଶତକଡ଼ା ନବେ ଘରେ ଆଣ୍ଠୁଏ ଆଣ୍ଠୁଏ ଉଚ୍ଚର ଘାସ, ଡାକୁଣ୍ଡାବଣ ଓ ଲଟିବଣ । କେହି କେହି ଅବଶ୍ୟ ଏଥିରୁ ଖଣ୍ଡେ ଖଣ୍ଡେ ସଫାକରି ଛଣି, କର୍ପୂର ଇତ୍ୟାଦି ଗଛ ଲଗାଇଥାନ୍ତି । ବଡ଼ କ୍ୱଚିତ କେହି କେହି ବାଡ଼ିରେ ବାଇଗଣ, କଖାରୁ ଇତ୍ୟାଦି ପନିପରିବା ଲଗାଇବାର ଦେଖାଯାଏ । ଏହି ବାଡ଼ି ମଧ୍ୟରେ ଗୋଟିଏ ପୋଖରୀ ବା ଗଡ଼ିଆ । ଗଡ଼ିଆଗୁଡ଼ିକ ହୁଏତ ବିଲାତିଦଳ, ଚିଙ୍ଗୁଡ଼ିଆଦଳ, ସିଙ୍ଘଡ଼ାଲଟି, ପଦ୍ମ ଓ କଇଁ ବୁଦା ଇତ୍ୟାଦିରେ ପୂର୍ଣ୍ଣ; ନହେଲେ ସେଥିରେ ବାଉଁଶ, ସଜନା, ବାଇଗବ ଇତ୍ୟାଦିର ପତ୍ର ପଡ଼ି ପାଣିଗୁଡ଼ାକ କଳା କିଟିକିଟି ଓ ପଚା ।

ସାଧାରଣ ଘରଗୁଡ଼ାକ ଦୁଇ ଭାଗରେ ବିଭକ୍ତ । ବଙ୍ଗଳା, ଖଞ୍ଜା ବଙ୍ଗଳା ଅର୍ଥାତ୍ ଗୋଟିଏ ଖୋଲିଘର । ଏଉଟା ବୈଠକଖାନା, ଅତିଥି ନିବାସ ଇତ୍ୟାଦିର କାର୍ଯ୍ୟ କରେ । ସେଇ ବଙ୍ଗଳା ଡିହକୁ ଲାଗି ଭିତରମୁହାଁ ଘରଗୁଡ଼ିକ ଖଞ୍ଜା । କାହାରି କାହାରି ଦୁଇ ଦୁଇଟା ଖଞ୍ଜା ଥାଏ । କେହି ବା ମାଟି ଓ ଚାଳର ଦୋତାଲା ବନାଇଥାଏ; କିନ୍ତୁ ଘରର ଗଢ଼ଣ ଛୋଟ ବଡ଼ ସବୁଘର ପ୍ରାୟ ଏକାପରି ।

ସେମାନଙ୍କ ଘର ତିଆରି ପ୍ରଣାଳୀରୁ ସେମାନଙ୍କର ଯଥେଷ୍ଟ ଶିଖିବାର ଅଛି । ସେମାନଙ୍କ ଘରେ ଖମ୍ବ, ଦଲାନ ପ୍ରଭୃତି ଲାଗେନାହିଁ । କେବଳ ମାଢ଼ର ଚାରିପଟେ କାଛ ଉଠାଇ ଦେଇ ପାଡ଼ିଆ କାଛ ଉପରେ ଉପରେ ଏପଟେ ସେପଟେ ଖଣ୍ଡେ ବାଉଁଶ ଦୋକାନା କରି ରଖିଦିଅନ୍ତି । ତା'ରି ଉପରେ ବାଉଁଶର ଚୂଳି ଶେଣି ପକାହୁଏ । ଏହି ଶେଣି ଦିହରୁ ରୁଅସବୁ ଲମ୍ବିଆସି କାଛ ଉପରେ ତେରି ହୋଇରହେ । ତା'ପରେ କାଛକୁ ମାଟିଦେଇ ଆଉ ଟିକିଏ ବଢ଼େଇଦେଲେ ଚାଳ ଯଥେଷ୍ଟ ଦମ୍ଭ ହୋଇଯାଏ । ସେମାନେ ନଡ଼ାରେ ଛାଉଣି କରନ୍ତି ସତ; କିନ୍ତୁ ସେ ପୁରୀ କଟକର ନଡ଼ାପରି ନୁହେଁ । ସେମାନେ ନଡ଼ାକୁ ଧାନ ଥିବା ସମୟରେ ବେଙ୍ଗଳା ପକାନ୍ତି । ସେ କୁଟା ପାଲିଟିଗଲେ, ତାକୁ ଉଞ୍ଚି ତା' ଦେହରୁ ଅଗିଲା ଗୁଡ଼ାକ କାଢ଼ିଦିଅନ୍ତି । କେବଳ ଧାନ ଗଛର ମୂଳ ଅଂଶଟାରେ ହିଁ ସେମାନଙ୍କର ଛପରବନ୍ଦି ହୁଏ । ଫଳରେ ପୁରୀ ଓ କଟକରେ ଘରର ଚାଳଗୁଡ଼ିକ ଯେପରି ଜଲଦି ପଚିଯାଏ, ଏ ସବୁ ସେପରି ହୁଏନାହିଁ । ଏମାନେ ପ୍ରାୟ ତିନି ଚାରି ବର୍ଷରେ ଥରେ ଘର ଛପର କରନ୍ତି । କେହି କେହି ମଧ୍ୟ ତାଳବାହୁଙ୍ଗାକୁ କାଢ଼ି ରୁଅ ଉପରେ ପକାଇ ତା' ଉପରେ କୁଟାର ଛାଉଣି ପକାଇଥାନ୍ତି । ଏ ଛାଆଣି ବଡ଼ ମଜଭୁତ ।

ଘରଗୁଡ଼ାକ ଏହିପରି ଛାଡ଼ି ଛାଡ଼ି ହୋଇ ରହିବାରୁ ଦାଣ୍ଡରେ ରାସ୍ତା ମଧ୍ୟ ବାର ବାଙ୍କରେ ବୁଲିଯାଏ ଏବଂ ଗ୍ରାମ ମଧ୍ୟରେ ପ୍ରାୟ ତିନି ଚାରି ବା ଛଅଟା ରାସ୍ତା ବା ଗୋହିରି ଥାଏ । ଘର ଛଡ଼ା ଛଡ଼ା ହୋଇ ରହିଲେ ମଧ୍ୟ ଏକାସଳଖ ସିଧା ଦାଣ୍ଡିରେ ତିଆରି ହୋଇପାରେ

କିନ୍ତୁ ସିଧାସଳଖ କଥାଟା ଏ ରାଜ୍ୟରେ ଥିଲାଭଳି ମନେ ହୁଏନାହିଁ । ଯେ ଯେଉଁଠି ପାଇଲେ ସେ ସେଠି ଗୋଟେ ଛପର ବାଡ଼େଇଦେଲା । ଖାଲି ଦେଖିବା କଥା ଯେ ପଡ଼ିଶାଘରଠାରୁ ତା'ର ଘରଟା ଯେପରି ଯଥେଷ୍ଟ ଦୂରରେ ରହେ । ଗ୍ରାମମାନଙ୍କରେ କୂଅ ଦେଖିବାକୁ ସ୍ୱପ୍ନ । ପୋଖରୀ ବା ଗଡ଼ିଆର ପାଣି ଏକମାତ୍ର ଆଶ୍ରୟ ଏମାନଙ୍କର ।

ଏ ପ୍ରକାର ଗ୍ରାମସଂଗଠନ ବୋଧହୁଏ ବାଲେଶ୍ୱରବାସୀ ବଙ୍ଗଳାରୁ ଶିଖିଛନ୍ତି । ବଙ୍ଗଳା ପାଖରେ ରହି ଏମାନଙ୍କର ଭାଷା, ବ୍ୟବହାର, ସାମାଜିକ ଆଚାର-ପଦ୍ଧତି ଯେପରି ବଙ୍ଗାଳୀମାନଙ୍କ ଦ୍ୱାରା ପ୍ରଭାବିତ, ସେମାନଙ୍କ ଗ୍ରାମସଂଗଠନ ମଧ୍ୟ ସେହିପରି । ତେବେ ଏପରି ଗ୍ରାମମାନଙ୍କରେ ଗୋଟାଏ ସୁବିଧା ଯେ ଚୋର ଡକାୟତମାନେ ପୁଲିସି ଓ ଆଇନର ଅତ୍ୟାଚାରରୁ ଅନେକ ପରିମାଣରେ ରକ୍ଷାପାନ୍ତି । କାରଣ ନିର୍ବିବାଦରେ ଚୋରି ଡକାଇତି କରିବା ଏଣେ ଯେପରି ସୁବିଧା; ଧରାପଡ଼ିଲେ ଖସିପଳେଇବା ମଧ୍ୟ ସେହିପରି ସହଜ ।

ରାଧାନାଥପୁର ଗ୍ରାମଟି ଏହି ଧରଣର । ଗ୍ରାମ ମଧ୍ୟରୁ ବିଭିନ୍ନ ଦିଗରେ ତିନି-ଚାରୋଟି ରାସ୍ତା । ଏହି ପ୍ରଧାନ ରାସ୍ତା ବା ଗୋହିରି ମଧ୍ୟରୁ କେତେ କନ୍ଦି-ବିକନ୍ଦି ଯେ ମେଲେଇ ଚାଲିଯାଇଛି, ତା'ର କଳନା କରିବା ବଡ଼ ସହଜ ନୁହେଁ । ଗ୍ରାମଟି ମଧ୍ୟମ ଶ୍ରେଣୀର । ପ୍ରାୟ ଦୁଇଶହକାନ୍ତର ଘର ହବ । ଏମାନଙ୍କ ମଧ୍ୟରେ ପ୍ରମିଳା ଓ ଶ୍ୟାମବାବୁଙ୍କ ଘର ବିଶିଷ୍ଟ ଧନୀ ଓ ଖାନ୍‌ଦାନ । ପ୍ରମିଳାଙ୍କର ଘର ପ୍ରାୟ ଗ୍ରାମ ମଝିରେ । ଦୋତାଲା, କୋଠା, ଠାକୁରବାଡ଼ି ଓ କଚିରି ଘର ଗୋଟାଏ ତରଫରେ । ରାସ୍ତାର ଆରପାଖରେ ଗୁହାଳ ଘର, ଧାନ 'କଢ଼େଇ' ଓ ଅମାର ପ୍ରଭୃତି ।

ରହିବାଘରର ଆଗ ସାହାଲଟା ବଙ୍ଗଳା । ସେ ଗୋଟାଏ ସରୁଆ ଖୋଲା ହଲ୍ । ଦୋତାଲା ଓ ବଙ୍ଗଳା ମଝିରେ ଗୋଟାଏ ପକ୍‌କା ଅଗଣା । ଅଗଣାର ଅପର ଦୁଇପାଖରେ କଚିରି ଘର, ବୈଠକଖାନା ଓ ଅତିଥି-ନିବାସ । ତା'ପରେ ଦୋତାଲା । ଦୋତାଲାର ଏକମହଲା ଘର ଦୁଆରଗୁଡ଼ାକ ପଛ ତରଫକୁ । ଅତିଥିଶାଳା ଓ ବୈଠକଖାନାର ଶେଷମୁଣ୍ଡ ଓ ଦୋତାଲାର ଶେଷମୁଣ୍ଡ ମଝିରେ ଗୋଟିଏ ଛୋଟ ପାଚେରି । ଏହି ପାଚେରି ଦିହରେ ଗୋଟିଏ ଦୁଆର । ଏହି ଦୁଆର ମଧ୍ୟଦେଇ ଏକମହଲାର ଦୁଆରଗୁଡ଼ିକୁ ଯିବାର ରାସ୍ତା । ବାହାର ପଟ କାନ୍ଥ ଦିହରେ ବଡ଼ ବଡ଼ ଝରକା ଅନେକଗୁଡ଼ିଏ । କଚେରି-ଘର ତରଫକୁ ଲାଗି ଦୋତାଲା ଉପରକୁ ଯିବାର ଗୋଟିଏ ସିଡ଼ି । ଏହି ସିଡ଼ିରେ ଉଠିଲେ ପ୍ରଥମେ ପଡ଼ିବ ଗୋଟିଏ ବଖରା । ଏ ଘରଟି ନାନା ପ୍ରକାର ଚିତ୍ରମାନଙ୍କଦ୍ୱାରା ସୁସଜ୍ଜିତ । ମଝିରେ ଗୋଟିଏ ପିଆଶାଳ କାଠର ଚିତ୍ରକରା ଟେବୁଲ । ଟେବୁଲ ଉପରେ ନାନାପ୍ରକାର ଫୁଲଲତା ଆଙ୍କି ଖଣ୍ଡିଏ ସଫା ଲୁଗା । ଟେବୁଲର ଚାରିଧାରରେ ଚାରୋଟି ଗଦିବାଲା ଚୌକି । କାନ୍ଥକୁ ଲାଗି ଗୋଟିଏ ଗଦିବାଲା ତକ୍ତପୋଷ । ଏ ଘରଟି ଗୃହାଧିକାରୀଙ୍କ ଖାସ୍ କମରା ।

ତା'ପରେ ଦୋତାଲାର ବାରଣ୍ଡା ଉପରେ ଗୋଟିଏ କାନ୍ଥ । ଏ କାନ୍ଥ ଦିହରେ ଥିବା ଦୁଆର ଦେଇ ଗଲେ ପ୍ରକୃତ ରହିବା ଘରଗୁଡ଼ିକ ପଡ଼ିବ । ଏ ଘରକୁ ଲାଗି ପ୍ରମିଳାଙ୍କର ପଢ଼ିବା ଓ କାମ କରିବା ଘର । ତିନି ଚାରିଟା ଆଲମାରି ଦିହରେ ଧାଡ଼ି ଧାଡ଼ି ହୋଇ ଅନେକ

ବହି ସଜାହେଇଚି । ବାହାର ପାଖ ଝରକାକୁ ଲାଗି ପଡ଼ିଚି ଖଣ୍ଡେ ଟେବୁଲ ଓ ସେ ଟେବୁଲକୁ ଲାଗି ଖଣ୍ଡେ ସିଧା ପିଠି ଚୌକି । ଚୌକିର ଡାହାଣ ପାଖରେ ଗୋଟିଏ ପୂରା ଆଲମାରି ଦେହରେ ଥାକ ଥାକ ହୋଇ କେତେ ବହି, ତଳ ଥାକରେ କେତେଖଣ୍ଡ ବନ୍ଧାଇ ଖାତା, ଟେବୁଲ ଉପରେ ଗୋଟିଏ ଶଙ୍ଖ-ମଲମଲ ପଥର ଦୁଆତ ଓ କଲମଦାନି । ଏହି ଝରକାର ସାମନା ଝରକା ପାଖରେ କାନ୍ଥ ଆଡ଼କୁ ମୁହଁ କରି ପଡ଼ିଚି ଆଉ ଖଣ୍ଡିଏ ଚୌକି ଓ ଚୌକିର ସାମନାରେ କନା ଘୋଡ଼ଣି ଭିତରେ ଥୁଆହୋଇଚି ଗୋଟିଏ ଟେବୁଲ ହାରମୋନିୟମ । କୋଠରିର ଅନ୍ୟ ତରଫ କାନ୍ଥ ଦିହରେ ଲଟକାଯାଇଚି କନାମୁଣି ଭିତରେ ଖଣ୍ଡିଏ ସିତାର ଓ ଖଣ୍ଡିଏ ଏସ୍ରାଜ । ଏହି ତରଫର ବାହାର ଝରକାକୁ ଲାଗି ଗୋଟିଏ ଚୌକି ପାଖରେ ଗୋଟିଏ ଛୋଟ ଟେବୁଲ ଥୁଆହୋଇଚି । ପ୍ରମିଳାଙ୍କର ସିଲେଇବାକସ, ଯେ ଯେଉଁଠି ରହିବାର ସେଠାରେ ରହିଛି । ଘରଟି ପରିଷ୍କାର, ପରିଚ୍ଛନ୍ନ । ଏପରିକି ଟେବୁଲ ଦିହରେ କିମ୍ବା ଘରର ଚଟାଣରେ ବୁନ୍ଦାଏ କାଳି ପଡ଼ିବା ଦେଖାଯିବ ନାହିଁ । ସେପଟ ବଖରାର ପରେ ଥିଲା ସରୋଜିନୀ ଦେବୀଙ୍କର ଶୋଇବାଘର । ତାଙ୍କର ମୃତ୍ୟୁପରେ ଏ ଘରଟା ଖାଲି ପଡ଼ିଚି । ତା'ପାଖରେ ପ୍ରମିଳାଙ୍କର ଶୋଇବାଘର ଓ ଆର ପାଖରେ ଗୋରାବୋଉଙ୍କର ଶୋଇବାଘର ।

ସେ ଘର ପାଖରୁ ଭିତର ବାରଣ୍ଡାକୁ ଯିବାକୁ ଗୋଟିଏ ସିଡ଼ି । ତଳମହଲାରେ ଗୋଟିଏ ବୈଠକଖାନା; ସେ ସ୍ୱାମୀମାନଙ୍କର । ଏହାର ସାଜସଜ୍ଜା ଅନ୍ୟ ବୈଠକଖାନା ଅପେକ୍ଷା ବେଶି ଚମତ୍କାର, ବେଶି ସୁନ୍ଦର, ବେଶି ମନୋହର । ତେବେ ଏଥିରେ ଗଦିବାଲା ଚୌକି, କୁରୁଚି ବା ଖଟ ନାହିଁ । ଘର ମଝିରେ ହାତେ ଉଚ୍ଚ କେତୋଟି କାଠର ତକ୍ତପୋଷ । ତା' ଉପରେ ଭେଲଭେଟ କନାର ଗଦି ଓ ସେ ଗଦି ଉପରେ ରେଶମୀ ଚାଦର । ସ୍ଥାନେ ସ୍ଥାନେ ଝିଲିମିଲି କାମକରା ଗୋଲ, ଲମ୍ବା ଓ ଚୌଖୁଣ୍ଟି ବାଲସି । ଏ ମହଲାର ବାକି ଘରମାନଙ୍କରେ ଭଣ୍ଡାର ଘର, ଚାକରବାକରମାନଙ୍କର ରହିବା ଘର ଇତ୍ୟାଦି । ତା'ପରେ ଆଉ ଗୋଟିଏ ଅଗଣା । ଏ ଅଗଣା ମଝିରେ ଗୋଟିଏ ନଳଲଗା କୂଅ । କୂଅ ପାଖରେ ଗାଧୋଇବା ଘର ଓ ଗାଧୋଇବା ଘରର ଅନ୍ୟ ତରଫରେ ପାଇଖାନା । ଏ ଦୁଇ ମଧ୍ୟରେ ଖିଡ଼ିକି ବା ବାଡ଼ିଦୁଆର । ଏ ପ୍ରସ୍ତଟି ପାଚିରିଘେରା । ଖିଡ଼ିକି ଦୁଆର ଭିତର ଦେଇ ବାଡ଼ି ଆଡ଼କୁ ବାହାରିପଡ଼ିଲେ ଦେଖିବ ଦେଶୀ ବିଦେଶୀ, ନାନା ରକମ, ନାନା ବର୍ଣ୍ଣ ଓ ନାନା ସୁବାସର ଫୁଲଗଛ ଧାଡ଼ି ଧାଡ଼ି ହୋଇ ଲଗାହୋଇଚି । ଏହି ଧାଡ଼ିମାନଙ୍କ ମଧ୍ୟରେ ପକ୍କାର ଗୋଟେ ରାସ୍ତା ଖିଡ଼ିକି ପୋଖରୀ ପର୍ଯ୍ୟନ୍ତ ଲମ୍ବିଯାଇଚି । ପୋଖରୀଟି ମଝିଲା ରକମର । ଦୁଇଟିଏ ପକ୍କା ପାହାଚ ଓ ପାହାଚ ଉପରେ ଲମ୍ବା ଲମ୍ବା ଦୁଇଟି ପକ୍କା ବେଞ୍ଚ । ପାଣିଟି କାଚକେନ୍ଦୁପରି ନିର୍ମଳ । ପାଣିକୂଳରେ ଗୋଟିଏ ଗଛପତ୍ର ରଖାଯାଇନାହିଁ ।

ସେଦିନ ବେଳା ପ୍ରାୟ ଚାରିଟା ବାଜେ । ପ୍ରମିଳା ଦେବୀ ତାଙ୍କ ପଢ଼ିଲା ଘରେ ବସି ଖଣ୍ଡିଏ ଓଡ଼ିଆ ଉପନ୍ୟାସ ପଢୁଛନ୍ତି; ଅର୍ଥାତ୍ ଉପନ୍ୟାସ ଖଣ୍ଡି ମେଲାହୋଇ ଆଗରେ ପଡ଼ିଚି । ମୁହଁଟି ତାଙ୍କର ସେଇ ଆଡ଼କୁ; କିନ୍ତୁ ଆଖିରେ ସ୍ୱର୍ଗ-ସ୍ୱପ୍ନର ଆଭା ଲାଗିରହିଚି । ସେ କ'ଣ ଭାବୁଚନ୍ତି ? ଦେବଦୁର୍ଲଭ ରୂପମୟୀ, ଉଚ୍ଛ୍ୱସିତହୃଦୟା ପ୍ରେମାଭିଳାଷୀ ଷୋଡ଼ଶୀ କ'ଣ ଆଉ

ଭାବେ ? ଆମ୍ଭେମାନେ ଜାଣୁ ସେ କ'ଣ ଭାବୁଥିଲେ; କିନ୍ତୁ ସେ ଷୋଡ଼ଶୀ ରୂପସୀଙ୍କ ପବିତ୍ର କଳ୍ପନା, ତାକୁ ପ୍ରକାଶ କରି ଅପବିତ୍ର କରିବାରେ ଦାୟୀ ହେବାପାଇଁ ଆମ୍ଭେମାନେ ନିଶ୍ଚୟ ରାଜି ହେବୁନାହିଁ ।

ସେ ହଠାତ୍ ଚମକି ପଡ଼ିଲେ । ବାହାରକୁ ଅନାଇଁ ଦେଖିଲେ ସଦର ଦରଜା ପାଖରେ ଗୋଟିଏ ଯୋଗୀ । ଶାଳଗଛପରି ସଳଖ ସୁନ୍ଦର ଦେହ । ଆଖି ଦୁଇଟି ସ୍ନିଗ୍ଧ, ଉଜ୍ଜ୍ୱଳ, ମୁହଁରେ ମାଟି ଓ ପାଉଁଶ ବୋଳାହୋଇଥିଲେ ମଧ୍ୟ ତାହାର ସରସତା ଓ ସୁକୁମାରତା ଏକାବେଳକେ ଲୁଚିଯାଇନାହିଁ । ବାହୁ ଦୁଇଟା ଲୁହାଧାରଣା ପରି ଠିଆହୋଇଚି । କେନ୍ଦେରା ଧରି ବଜାଇଲାବେଳେ ସେ ପ୍ରଶସ୍ତ ଛାତିର ମାଂସପେଶୀଗୁଡ଼ାକ ନାଚି ଉଠୁଚି । ଯୋଗୀ ଗାଉଚି—

କିବା କଥାକୁ ଗୋ ତୋର ଏତେ ରୁଷଣା
କି ବେଦନା ମନେ ମନେ ରଖୁ ଅଜଣା,
ଜାଣନ୍ତରେ କିଛି ତୋତେ, କହି ମୁଁ ନାହିଁ କିଛିତେ
ଅଜାଣନ୍ତ ଦୋଷେ ସିନା କହି ତ କ୍ଷମା ।
ତୋର ଚାଲିଗଲା ଧୂଳି ହୁଇଅ ମୁଁ ଦେହେ ବୋଳି
ତୋ ଛଡ଼ା-କୁସୁମେ ଶେଯ କରେ ରଚନା,
ତୋର ରୂପ ହୃଦେ ଭଜି ଆନଠାରେ ଥିଲେ ମଜି
ତୋ ବିହୁନେ ଚିତ୍ର ପୂଜା ପରି ସେ ସିନା ।
ଅନନ୍ତେ କରି ମୁଁ ଭକ୍ତି, ପିତୁଳାରେ କରେ ନତି
ତା' ଲାଗି କି ହେବ ମୋର ଭାଗ୍ୟେ ଯାତନା,
ତୋତେ ଭଜିବାଟି ଦୋଷ, ହେଲା ଯେବେ ମୁଁ ଅବଶ୍ୟ
ଚନ୍ଦନ ପରି ଲେପିବି ଅଙ୍ଗେ ଗଞ୍ଜଣା ।

ଗୀତଟାର ଅଧା ପର୍ଯ୍ୟନ୍ତ ଶୁଣି ପ୍ରମିଳାଙ୍କର ଭ୍ରୂଲତା କୁଞ୍ଚିହୋଇଗଲା । ଏ ଗୀତ ତ ଯୋଗୀ-ଗୀତ ନୁହେଁ । ଏ ଭାବ ତ ଯୋଗୀ-ଗୀତର ଭାବ ନୁହେଁ । ସେ ବୁଝିଲେ, ଗୀତଟି କୌଣସି ଅକବି ହାତର ଲେଖା । ତଥାପି ତା'ର ଭାବ ତା' ରାଗିଣୀ ତା'ର ପଦବିନ୍ୟାସ ଯୋଗୀ-ଗୀତଠାରୁ ଢେର୍ ଭିନ୍ନ । ଯୋଗୀ-ଗୀତର ସରଳତା, ସୁବୋଧତା ଓ ସହଜ କରୁଣ ଭାବ ଏଥିରେ ନାହିଁ । ଏ ଗୀତଟି ନିରକ୍ଷର ଯୋଗୀର ଗୀତ ? ଏ ରୂପ କି ଭୋଖିଲା ଯୋଗୀର ରୂପ । ତା'ପରେ ସେ ସ୍ୱର, କି ଚମତ୍କାର ! କି କୋମଳତା ! କି କଳ୍ପନା ! କି ମୂର୍ଚ୍ଛନା ! ନା, ଏ ଯୋଗୀ ହୋଇପାରେ ନାହିଁ । ହୁଏତ କେହି ଛଦ୍ମବେଶୀ, ନହେଲେ କେହି ଭଦ୍ର ସନ୍ତାନ ଦୈବ-ଦୁର୍ବିପାକରୁ ଏ ଅବସ୍ଥାରେ ଆସି ପହଞ୍ଚିଛନ୍ତି । ଉଠିଯାଇ ବାରଣ୍ଡାର ବାଡ଼ା ଧରି ଡାକିଲେ, "ହରିଆ, ହରିଆ, ଯୋଗୀଙ୍କୁ ଏପଟକୁ ଡାକିଦେ ତ ।" ଯୋଗୀ କେନ୍ଦେରାରୁ ମୁହଁ ଟେକି

ଚାହିଁଲେ । କ୍ଷଣକ ପାଇଁ ସେ ଦେଖିଲେ ଜୀବନ୍ତ ତାଙ୍କର ସେହି ସ୍ୱପ୍ନର ରାଣୀ । ସେ ତଟସ୍ଥ ହୋଇଗଲେ । ଏ ସାମଞ୍ଜସ୍ୟ କି ସମ୍ଭବ ? କଳ୍ପନା କି ମନ ଭିତରୁ ବାହାରି ପ୍ରକୃତରେ ରକ୍ତ-ମାଂସର ଶରୀର ଧରିପାରେ ? ସେ ଚକିତ ହୋଇ ଚାହିଁରହିଲେ । ବିଜୁଳିପରି ସେ ମୂର୍ତ୍ତି ତାଙ୍କର ଆଖିର ଅନ୍ତରାଳରୁ ଚାଲିଗଲା । ତାଙ୍କର ଚେତନା ହେଲା । ସେ ଭାବିଲେ, "ନା, ଏ ମୋ କଳ୍ପନାର ଖେଳ ।" ଅନେକ ଦିନ ହେଲା ଖାଇବା, ପିଇବା, ଶୋଇବା ଆଦି ନହୋଇଥିବାରୁ ବୋଧହୁଏ ତାଙ୍କ ମୁଣ୍ଡ ଗରମ ହୋଇଗଲାଣି । ହରିଆ କହିଲା, "ଏ ଯୋଗୀଭାଇ, ସାଂନ୍ତାଣୀ ଡାକୁଚନ୍ତି, ଭିତରକୁ ଆ' । ତୁ ଏମାନଙ୍କ ସାଙ୍ଗରେ ଯା । ମୁଁ ତବକା ସଜାଡ଼ି ନଉଚି ।" ଯୋଗୀ ଭାବିଲେ ତାହେଲେ କ'ଣ ସେ ଯାହା ଶୁଣିଲେ, ଯାହା ଦେଖିଲେ ସେ ସତ ? ତାଙ୍କର ଛାତିଟା ଯେପରି ତାଙ୍କ ପାଟି ଭିତରକୁ ଚାଲିଆସିଲା । କି ଏକ ଉତ୍ତେଜନାରେ ତାଙ୍କର ସମୁଦାୟ ଦେହ ଥରଥର କରି କମ୍ପିବାକୁ ଲାଗିଲା । ସେ ଚାକରମାନଙ୍କର ପଛେ ପଛେ ଭିତର ପଟକୁ ଗଲେ । ଦେଖିଲେ ତିନି ଚାରିଟା ଚାକରାଣୀ ଓ ଗୋରାବୋଉଙ୍କ ମଝିରେ ତାଙ୍କର ସେହି ସ୍ୱପ୍ନର ରାଣୀ । ସେ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ଥରେ ଦି'ହାତରେ ଦୁଇ ଆଖିକୁ ଭଲକରି ମଳିନେଲେ । ଦେଖିଲେ ସେହି ସଜୀବ ସ୍ୱପ୍ନର ଅପ୍‌ସରାମୂର୍ତ୍ତି । ତା'ପରେ ତାଙ୍କର ଯାହା ହେଲା, ସେ ଗୋଟିଏ ବଡ଼ କୌତୁହଳର କଥା । ସେ ଉତ୍ତେଜନା, ସେ ଚାଞ୍ଚଲ୍ୟ, ସେ ଅସ୍ଥିରତା ତାଙ୍କର ନିମିଷକ ମଧ୍ୟରେ କୁଆଡ଼େ ଉଭେଇଗଲା । ତା' ସ୍ଥାନରେ, ଆସିଲା ଗୋଟାଏ ଅପୂର୍ବ ଶାନ୍ତି, ଅଦମ୍ୟ ବିଶ୍ୱାସ ଓ ଅସୀମ ଉତ୍ସାହ । ସେ ନମସ୍କାର କରି କହିଲେ, "ମା, ମୋତେ ଡାକୁଥିଲ ?"

ଗୋରାବୋଉ : ଗା'ତ ବାପ, ଆଉ ଗୋଟିଏ ଗୀତ । ତୁ ବେଶ୍ ଗାଉ । ତୋ ଘର କେଉଁଠି ବାପ ?"

ଯୋଗୀ : ମୋ ଘର, ମା ଅନେକ ଦୂର । ସେ ଦରିଆର୍ ସେପାରିରେ । ଯେଉଁଠି ଅଛି ଖାଲି ବସନ୍ତର ମଧୁର ଉନ୍ମାଦନା, କୋକିଳର ପ୍ରାଣମତାଣିଆ କୁହୁରବ, ମଳୟର ମନ୍ଦ ମନ୍ଦ ସୁଗନ୍ଧ ପ୍ରବାହ ।

ପ୍ରମିଳାଙ୍କ ମନରୁ ସନ୍ଦେହ ଦୂର ହୋଇଗଲା । ଏ ଭାଷା ନିରକ୍ଷର ଯୋଗୀର ତ ନୁହେଁ; ବରଂ ଅତି ଉଚ୍ଚଶିକ୍ଷିତ ଭାବପ୍ରବଣ ଯୁବକର; କିନ୍ତୁ ଏ କିପରି ? ଅତି ଉଚ୍ଚଶିକ୍ଷିତ ଭାବପ୍ରବଣ ଯୁବକ ଏ ମଇଳା ଛିଣ୍ଡାକନା ପିନ୍ଧି କେନ୍ଦେରା ବଜାଇ ଗାଁ-ଗାଁ ହୋଇ ବୁଲେ ?

ଜଣେ ଚାକରାଣୀ କହିଲା, "ଏ ମା' ! ଏ ଲୋକଟା କ'ଣ ଗୁଡ଼ାଏ ଗପୁଚି ମ ? ବାୟା କିଲୋ ଏଉଟା ?"

ଗୋରାବୋଉ : ତୁ କ'ଣ ଯେ କହିଲୁ ବାପ, କିଛି ବୁଝିହେଲା ନାହିଁ ।

ପ୍ରମିଳା : ବୁଝି ଆଉ କ'ଣ ହେବ ? ଆଚ୍ଛା ଯୋଗୀ, ଗାଅ ତ ଗୋଟିଏ ଭଲ ଗୀତ ।

ଯୋଗୀ ଆଉ ବାକ୍ୟ-ବ୍ୟୟ ନକରି କେନ୍ଦେରାରେ ଦୁଇ ଚାରିଥର ଆଘାତ କରି ଗାଇଲେ—

ପାରିଜାତ ଫୁଲ କିମ୍ବା ତଳେ ପଡ଼ି ଲୁଟେ ଗୋ
ସରଗର ଚାନ୍ଦ କିମ୍ବା ରସାତଳେ ଫୁଟେ ଗୋ
ସଂସାର ଯାତନା ଭାରି ସହିବ କି ଏ କିଶୋରି
ନବନୀତ ଅଙ୍ଗ ସିନା ଯିବ ଝାଉଁଳି
ମାନବର ଶୁଷ୍କ କର କରିଦେବ ଛାରଖାର
ପାରିଜାତ ଫୁଲ ସିନା ଯିବ ମଉଳି ।
ଛୁଅଁନା ଛୁଅଁନା ତାରେ ଭାସିଯିବ ମଳୟରେ
କୋକିଳର ତାନେ ତାନେ ଯିବ ସେ ଉଡ଼ି
ଶୀତଳ ଏ ଶୀତକର ଛୁଇଁ ଉଷ୍ମାଙ୍କ ତୋହର
ଅତଳ ଜଳଧି ଜଳେ ଯିବୁଟି ବୁଡ଼ି ।

ଯୋଗୀ ଗୀତଟି ଗାଉଥାଏ; ଆଉ ପ୍ରମିଳା ସ୍ୱପ୍ନ ଦେଖୁଥାନ୍ତି—ଗୋଟିଏ ଫୁଲସାଜରେ ସଜ୍ଜିତ, ଅତର ଗନ୍ଧରେ ଆମୋଦିତ ବୈଠକଖାନା । ଗୋଟିଏ ଟେବୁଲ ହାରମୋନିୟମଠାରେ ଜଣେ ପ୍ରଶାନ୍ତ ମନୋହର ଯୁବକ, ବୟସ ଅନ୍ଦାଜ ୨୦/୨୧ । ଯୁବକ ହାରମୋନିୟମରେ ସୁର ଦେଇ ଗୀତ ଗାଇଚାଲିଛନ୍ତି । ଆଉ ସେ, ତେରବର୍ଷର ବାଳିକା ମାତ୍ର । ତାଙ୍କର ମନପ୍ରାଣ ସବୁ ଦେଇ ସେ ସ୍ୱରଟି ଶୁଣୁଚନ୍ତି, ସେ ରୂପଟି ଦେଖୁଚନ୍ତି । ତାଙ୍କର ସଖୀ—ସେ କିଏ ? ହଁ, ସୁଶୀଳା ତାଙ୍କ ପାଖରେ ବସି କେତେ କ'ଣ ଯେ ଗପୁଚି । କି ମୂର୍ଖ ଏଉଟା, ଏ ରୂପ, ଏ ସ୍ୱର ଛାଡ଼ି ତା'ର ସୁଶୀଳା ଗପ ଶୁଣେ କିଏ ? ସେ ଗାଉଥିଲେ ସେ ଦିନ ଏଇ ଗୀତଟିକି । ଏହିପରି ଭାବରେ, ଏହିପରି ଛନ୍ଦରେ, ୟେ କ'ଣ ସେଇ ? କି ବୋକାମି ! ସେ ଜଣେ ଉଚ୍ଚଶିକ୍ଷିତ ଆର୍ଟିଷ୍ଟ । ତାଙ୍କର ହାତଅଙ୍କା ଚିତ୍ରପାଇଁ ଶୁଣିଛନ୍ତି ସେ, ରାଜା ମହାରାଜାମାନେ ହଜାର ହଜାର ଟଙ୍କା ଦବାକୁ ରାଜି । ସେ ନିଜେ ଧନୀଘରର ସନ୍ତାନ । ତାଙ୍କର ଅଚଳାଚଳ ସମ୍ପତ୍ତି । ସେ କି ସୁଖରେ ଯୋଗୀ ହୋଇ ବୁଲିବେ ? ସେ ତାଙ୍କୁ ଦେଖିଥିଲେ ସେଇ ଦିନକ; କିନ୍ତୁ ସେ ଦିନକର ଦେଖାରେ ତାଙ୍କର ଫୁଟିଆସୁଥିବା ହୃଦୟଟି କେବଳ ତାଙ୍କରିମୟ ହୋଇଯାଇଥିଲା । ବାଳିକାର ସୁଖସ୍ୱପ୍ନ ସେ ଏତେବେଳଯାଏଁ ତାଙ୍କ ହୃଦୟର ନିଭୃତତମ ଦେଶରେ ସେ ଲୁଚାଇ ରଖିଚନ୍ତି । ତାଙ୍କର ଅତି ପବିତ୍ର ମୁହୂର୍ତ୍ତଗୁଡ଼ିକରେ ସେ ସମସ୍ତଙ୍କ ଅଜଣାରେ ସେହି ପୋତା ଧନଟିକୁ କାଢ଼ି ବେଳେବେଳେ ଦେଖନ୍ତି । ପରେ ଯେତେବେଳେ ସେ ବାତୁଳାମି ଛାଡ଼ିଯାଏ, ବୁଦ୍ଧି ତା'ର ଆସନ ମାଡ଼ିବସେ । ସେ ଦେଖନ୍ତି ଏ ତାଙ୍କର ଗୋଟାଏ ମସ୍ତବଡ଼ ବାତୁଳାମି—ସେ ଆଉ ୟେ । ସେ କାହିଁକି ୟାଙ୍କୁ ପଚାରିବାକୁ ଯିବେ ? ୟାଙ୍କଠାରୁ ବଳି କେତେ କେତେ ସୁନ୍ଦରୀ ବାଳିକା ତାଙ୍କ ପାଦଧୂଳି ନେବାଲାଗି କେତେ କଷ୍ଟ କରୁଥିବେ । ସେ ହୁଏତ ଏବେ ବିବାହ କରି...ତାଙ୍କର ମନ ଆପଣା ଉପରେ ବିରକ୍ତ ହୋଇଉଠେ । ସେ ନିଜକୁ ବୋକା, ଗଧ, ପାଗଳ ଇତ୍ୟାଦି କେତେ ପ୍ରକାର ଗାଳିଦିଅନ୍ତି ।

ଆଜି ୟେ ଗୀତଟି ଶୁଣି ଶୁଣି ସେ ଅଭିନୟଟା ତାଙ୍କ ହୃଦୟରେ ହୋଇଯାଉଥିଲା । ଗୀତ ସରିଲା । ଯୋଗୀ କେନ୍ଦରାଟି ତଳେ ରଖିଦେଇ ଲୁଗାକାନିରେ ମୁହଁରୁ ଝାଳ ପୋଛିଦେଲେ ।

ହରିଆ ତବଲା ଆଣି କହିଲା, "ଯୋଗୀଭାଇ; ହେଇଟି ତୁମପାଇଁ ତବଲା ଆଣିଚି ।" ପ୍ରମିଳାଙ୍କର ଅଭିନୟ ମଧ୍ୟ ସରିଲା । ସେ କହିଲେ, "ଯୋଗୀ, ଏ ଗୀତ ତ ଯୋଗୀଗୀତ ନୁହେଁ । ତୁମେ କ'ଣ ପାଠଶାଠ ପଢ଼ିଥିଲ ?"

ଯୋଗୀ : ପାଠ ତ ପଢ଼ିଚି ଅନେକ, କିନ୍ତୁ ଶାଠଟା...

ପ୍ରମିଳା : ପାଠଶାଠ ପଢ଼ି ତାହେଲେ ଯୋଗୀ କାହିଁକି ?

ଯୋଗୀ : ଶାଠ ପଢ଼ିଥିଲେ ବୋଧହୁଏ ଯୋଗୀ ହୋଇନଥାନ୍ତି । କିନ୍ତୁ ପାଠ—ସେ ମଣିଷକୁ ପାଗଳ କରିଦିଏ, ଜୀଅନ୍ତା ମଣିଷକୁ ଭୂତ ବନେଇଦିଏ ! ତୁମେ କେବେ ପାଠ ପଢ଼ିବ ନାହିଁଟି ।

ପ୍ରମିଳା : ତୁମେ କ'ଣ ସତରେ ପାଗଳ ? ଆଚ୍ଛା ଯୋଗୀ, ପାଠ ତ ପଢ଼ିଲ । ଚାକିରି-ବାକିରି କରି ପେଟ ପୋଷିଲ ନାହିଁ, କାହିଁକି ? ଏ ଯୋଗୀବୃତ୍ତି ତୁମ ଭଳି ଶିକ୍ଷିତ ଲୋକକୁ କି ସାଜେ ?

ଯୋଗୀ : ନ ସାଜିବ କାହିଁକି ? ଯୋଗୀ ହେବାରେ କିଛି ମାନହାନି ତ ନାହିଁ । ସ୍ୱୟଂ ଦେବାଧିଦେବ ଭୂତନାଥ ଯୋଗୀ । ଦିନେ ସୃଷ୍ଟିକର୍ତ୍ତା ରାଧାଙ୍କ ପ୍ରେମରେ ବିହ୍ୱଳ ହୋଇ ଯୋଗୀ ସାଜିଥିଲେ ।

ପ୍ରମିଳା : ତାହେଲେ କ'ଣ ତୁମର ପ୍ରେମ ହେତୁରୁ...

ଆଉ ଶେଷ କରିପାରିଲେ ନାହିଁ । ତାଙ୍କର ମୁହଁଟି ଲାଲ ପଡ଼ିଗଲା ।

ଯୋଗୀ : ପ୍ରେମ ? ସେ କ'ଣ ଜାଣ ? ସେ ବୁଦ୍ଧି ବିବେକର ଚିତାନଳ । ସବୁ ପୋଡ଼ିପକେଇ ରଖିବ ଖାଲି ନିଜକୁ । ନା, ବାବୁ, ପ୍ରେମର ଧାର ମୁଁ ଧାରେନାହିଁ ।

ଗୋରାବୋଉ : ତୁମେ ବାହା କରିଚ ଯୋଗୀପୁଅ ?

ଯୋଗୀ : ମୁଁ ? ବାହା ? ହୁଁ ।

ଗୋରାବୋଉ : ତୁମର ପିଲା ଛୁଆ କେତୋଟି ?

ଯୋଗୀ : ଚାରି ପୁଅ, ପାଞ୍ଚ ଝିଅ, ତିନି ମାଇପ ମୋର ।

ପ୍ରମିଳା : କି ନିଆଁଗିଳା ମିଛକଥାଗୁଡ଼େ କହୁଚ ତୁମେ ? ଆଚ୍ଛା, ତୁମକୁ ଯଦି କେହି ଚାକିରିଟିଏ ଦିଏ, ତୁମେ କରିବ ?

ଯୋଗୀ : କିନ୍ତୁ ସେ ଲୋକଟି କିଏ, ନଜାଣିଲେ ମୁଁ କିଛି କହିପାରୁନାହିଁ ।

ପ୍ରମିଳା : ଆଚ୍ଛା, ତୁମେ ଗୀତ ଗାଇବା ଛଡ଼ା ଆଉ କ'ଣ କରିପାର ?

ଯୋଗୀ : ସବୁ କରିପାରେ । ପାଣି ବୋହିବା, କୋଡ଼ି ହାଣିବା, ଗୁହାଳ ପୋଛିବା—ଏସବୁ ପାରେ ।

ପ୍ରମିଳା : ଆରେ, ତୁମକୁ ଏସବୁ କରିବାକୁ କିଏ କହୁଚି ? ତୁମେ ଲେଖାପଢ଼ା ଜାଣ ? ହିସାବପତ୍ର ରଖିପାରିବ ?

ଯୋଗୀ : ତା' ଖୁବ୍ ରଖିପାରିବି । ପାଞ୍ଚ ଦିଗୁଣେ ବାର, ଛ' ଦିଗୁଣେ ଦଶ । ମୁଁ ହିସାବ-ପତ୍ର ରଖିପାରିବି ନାହିଁ ?

ପ୍ରମିଳା : ଆଛା ବେଶ୍, ତୁମେ ଆଜିଠାରୁ ଆମ ଘରଖର୍ଚ୍ଚର ହିସାବପାତି ରଖିବ, ବଜାର ସଉଦା କରିବ । ରାଜି ଅଛ ?

ଯୋଗୀ : ରାଜି ତ ଅଛି, କିନ୍ତୁ ମୋର ଗୀତ ଦୁଇ ଚାରିଟା ନ ଗାଇଲେ ଭାତ ଜୀର୍ଣ୍ଣ ହୁଏନାହିଁ ।

ପ୍ରମିଳା : ତା' ବେଶ୍ । ଯେତେ ଇଛା ସେତେ ଗୀତ ଗାଇପାର ତୁମେ ।

ଗୋରାବୋଉ : ତୁ କ'ଣ ପାଗଳ ହେଲୁ ପେମି ? ଏ ଲୋକଟା ଚୋର କି ଡକେଇତ, ଖଣ୍ଡ କି ପାଜି କିଛି ଜଣାଶୁଣା ନାହିଁ । ତାକୁ ତୁ ଘରେ ରଖିବୁ କିପରି ?

ପ୍ରମିଳା : ମିଛଟାରେ ଗୁଡ଼େ ବକ କେନେ ଗୋ ? ଦେଖୁନାହୁଁ ଏ ଭଦ୍ରଲୋକ ଘରର ପିଲା । ତା'ହେଲେ ତୁମେ ଆଜିଠାରୁ ଆମ କାମରେ ବାହେଲ ହେଲ । ହଁ, ତୁମ ଦରମାଟା ?

ଯୋଗୀ : ସେ ଯାହା ତୁମର ଖୁସି । ଦରମା ଯାହା ଦେବ ସେ ତୁମ ପାଖରେ ଥାଉ; ମୁଁ ଗଲାବେଳେ ଏକାବେଳକେ ନେବି ।

ଗୋରାବୋଉ : ମା ଲୋ ମା, ଏ କାଳ ହେଲା କିସ ?



## ତେଇଶି

"ମା,

ଆଜି ଅନେକ ଦିନପରେ ଏ ଚିଠିଖଣ୍ଡି ଲେଖିବାକୁ ସାହସ କରୁଚି । ମୁଁ ବିଝିଚି, ତୁମକୁ ନକହି ନବୋଲି ଏପରି ଚାଲିଆସିବାଦ୍ୱାରା ମୁଁ ତୁମ ମନରେ ଭୀଷଣ କଷ୍ଟ ଦେବାରେ ଅପରାଧୀ; କିନ୍ତୁ ତା'ଲାଗି ମୋର ଚିନ୍ତା ନାହିଁ । କାରଣ ମୁଁ ଅପରାଧ ନକରିଚି କେବେ, ଆଉ ଅଯାଚିତ ଭାବରେ କ୍ଷମା ନପାଇଚି କେଉଁ ଥର ? ଦୟାମୟୀ ମା' ମୋର, ଏ ମର୍ତ୍ତ୍ୟଯୁଗରେ ନିଜେ ପରମେଶ୍ୱରଙ୍କ କୃପାର ଅବତାର । ମା' ! ମୁଁ ତୁମକୁ ଏତେ ଭଲପାଏଁ, ତୁମର କଥା ମନେ ପଡ଼ିଗଲାବେଳେ ମୋର ହୃଦୟ ଏଡ଼େ ସ୍ନେହ ଓ ଭକ୍ତିରେ ଉଛୁଳିଉଠେ । ମୁଁ ଯଦି ପିଲା ହୋଇଥାନ୍ତି, ତା'ହେଲେ ତୁମକୁ କୁଣ୍ଢେଇ ଧରି ବୁହେ କାନ୍ଦିନିଅନ୍ତି ।

ଯାଉ, କହୁଥିଲି ମୋର ବର୍ତ୍ତମାନ କଥା । ମା, ତୁମେ ଜୀଅନ୍ତା ବ୍ରହ୍ମରାକ୍ଷସ ଦେଖିଛ ? ମୁଁ ଦେଖିଚି । ଦୁଇ ଦୁଇଟା ମା, ରକ୍ତ ମାଂସ ଅଛି ମଣ୍ଡାର ଦୁଇ ଦୁଇଟା ବ୍ରହ୍ମରାକ୍ଷସ ମୂର୍ତ୍ତି । ବାବା, ସଂସାରରେ ପୁଣି ଏପରି ଲୋକ ଅଛନ୍ତି । ତୁମର ଆଶୀର୍ବାଦ ଓ ସ୍ନେହର ବଳରୁ ମୁଁ ସେମାନଙ୍କ ହାତରୁ ପଳାଇ ଆସି ଏଠାରେ କୌଣସିମତେ ମୁଣ୍ଡ ଗୁଞ୍ଜି ରହିଚି । କେତେଦିନ ଯେ ଏହିପରି ସେମାନଙ୍କ ଆଖିରେ ଧୂଳି ଦେଇ ଲୁଚି ରହିପାରିବି, ତା' ମୁଁ ଜାଣେନାହିଁ,

ତେବେ ସହଜରେ ଧରାଦେଉନାହିଁ । କାଲିଠାରୁ ଏ ଗାଁ ଚଉକିଆଟା କିଆଁ ଏଠି ଲଙ୍ଗରପଙ୍ଗର ହେଉଥିଲା । ଆଜି ତା' ସଙ୍ଗରେ ଭାବଦୋସ୍ତି କରି ତାକୁ କିଛି ଟଙ୍କା ଦେଇ ଛାଡ଼ିଚି । ଶୁଣୁଚି, କିଏ ପୁଲିସ୍‌ରେ ଖବର ଦେଇଚି, ସଦାଶିବ ବାବୁ ବୋଧହୁଏ, ଯେ ମୁଁ ଅରାଜକ ଦଳର ଜଣେ ଲୋକ । ଚୌକିଆ ତ ପ୍ରଥମେ ଖୁବ୍ ତେରିମେରି ଦେଖେଇଥିଲା; କିନ୍ତୁ ପରେ ଟଙ୍କା ଦଶଟି ପାଇ ଓ ଆଉରି ଭବିଷ୍ୟତରେ ପାଇବାର ଆଶା ନେଇ ସେ ପରେ ଏପରି ଲହୁଣୀ କୋମଳ ହୋଇଗଲା, ଆଉ କ'ଣ କହିବି ?

ମୁଁ ଯାହାଙ୍କ ଘରେ ଅଛି, ସେ ବେଶ୍ ଲୋକ । ମୋର କୌଣସି ଅସୁବିଧା ନାହିଁ । କାମ ଭିତରେ ବଜାର ସଉଦା ଓ ଘର ହିସାବ ରଖିବା । ମୋର ରହିବାପାଇଁ ଗୋଟାଏ ଅଲଗା ଘର । ମୋର କାମଦାମ କରିବା ପାଇଁ ଘରର ଅଧେ ଚାକର । ଖାଲି ଗୋରାବୋଉ ମାଉସୀ ଟିକିଏ ବିଗିଡ଼ିଚି । ସେ ଭାବୁଚି ମୁଁ ଗୋଟାଏ ଚୋର କି ଡକେଇତ । ଦିନେ କେଉଁଦିନ ତା' ଗଳା କାଟି ଏ ଧନରତ୍ନ ସବୁ ବୋହିନେଇ ଖସାଇବି । ଏବେ ତାକୁ ମଧ୍ୟ ବାଗକୁ ପାଇଚି । ସେଆଡୁ ଆଉ କିଛି ଭୟ ନରହିପାରେ । ଶୁଣ ମା, ଗୋରାବୋଉ ମାଉସୀ ବାଳବିଧବା । ବୟସ ସିମିତି କିଛି ବେଶି ହୋଇନାହିଁ । ଏଇ ମୋଟେ ଚଉତିରିଶି କି ପଇଁତିରିଶି ହବ । ଦେଖିବାକୁ ମଧ୍ୟ ବେଶ୍ ସୁନ୍ଦରୀ । ତାଙ୍କପାଇଁ ଗୋଟିଏ ପାତ୍ର ଠିକ୍ କରିଦେବୁ ? ସେ ବାହା ହୁଅନ୍ତେ, ବାଳ-ବିଧବା, ସେଥିରେ କ'ଣ ଅଛି । ଆଜିକାଲି ତ ଚାରିଆଡ଼େ ବିଧବା-ବିବାହ ହୋଇଗଲାଣି । କ'ଣ କହୁଚୁ ମା ? ସଦାନନ୍ଦ ମିଶ୍ରଙ୍କ ପାଇଁ ଏ ପାତ୍ରୀଟି ଠିକ୍ ହୁଅନ୍ତା ନାହିଁ ?"

ଏହିଠାରେ ବାବୁଆଣୀ ଚିଠିଟା ରଖିନେଇ ଖୁବ୍ ବୁହେ ମନପୂରେଇ ହସିଦେଲେ । ଏ କେତେଦିନ ତାଙ୍କର ବିଷର୍ଣ୍ଣ ହସହୀନ ମୁଖ ଯେଉଁମାନେ ଦେଖିଚନ୍ତି, ସେମାନେ ଆଜି ତାଙ୍କର ଏ ଭାବ ଦେଖିଲେ ଆଶ୍ଚର୍ଯ୍ୟ ହୁଅନ୍ତେ । ତା'ପରେ ସେ ପୁଣି ଚିଠି ଖଣ୍ଡି ଉଠେଇ ନେଇ ପଢ଼ିଲେ—"ମୋର ଏପଟେ ସବୁ ଠିକ୍; ଖାଲି ତୁମେ ମିଶ୍ରଙ୍କୁ ମଙ୍ଗାଇ ପାରିଲେ ହେଲା ।

ଆଉ ବେଳ ନାହିଁ । ଲୁଚେଇ କରି ଏ ଚିଠି ଖଣ୍ଡ ଲେଖୁଚି । କିଏ ଆସୁଚି ପରା । ରହିଲି ମା ! କେଉଁଦିନ ଯାଇଁ ତୁମ ପାଦଧୂଳି ନେବି, ତା' ଯେ ମୋତେ ଏ ଅବସ୍ଥାକୁ ଆଣିଚନ୍ତି, ତାଙ୍କୁହିଁ ଜଣା । ତେବେ ମୋତେ ଖୋଜିବାର ବୃଥା ଶ୍ରମ କରିବନାହିଁ; କାରଣ ଖୋଜିଲେ ପାଇବନାହିଁ । ଯେଉଁ ଡାକଘରର ମୋହର ଏ ଚିଠି ଉପରେ ଦେଖିବ, ସେ ଡାକଘର ପ୍ରାୟ କୋଡ଼ିଏ ମାଇଲ୍ ମଧ୍ୟରେ ନାହିଁ ।

ତୁମର
ଅପରାଧୀ ପୁତ୍ର
ଧୋଇ ।"

ବାବୁଆଣୀ ଚିଠି ଖଣ୍ଡି ଥରେ ପଢ଼ିଲେ । ପୁଣି ଓଲଟପାଲଟ କରି ଆଉ ଥରେ ପଢ଼ିଲେ । ତା'ପରେ ସେ ଚିଠିକୁ ଗୋଟିଏ ଚୁମ ଦେଇ ଆଶ୍ୱସ୍ତିର ନିଃଶ୍ୱାସ ପକାଇ ଚିଠିଖଣ୍ଡି ସଜାଡ଼ି ବାକ୍ସ ମଧ୍ୟରେ ରଖିଦେଲେ ।

"ଜଗୁଆ, ଜଗୁଆ, ମିଶ୍ରଙ୍କୁ ଟିକିଏ ଏଣିକି ଡାକିଦେ ତ ?"

ମିଶ୍ରେ ଆସି ପହଞ୍ଚିଲେ । ବାବୁଆଣୀ ତାଙ୍କ ଆଡ଼କୁ ଟିକିଏ ଚାହିଁ କିରିକିରି କରି ହସିଉଠିଲେ । ମିଶ୍ର ବିଚାରା ଅଧାବୁଢ଼ା ହେଲେ ମଧ୍ୟ ଲୋକେ କହନ୍ତି ମିଶ୍ରାଣୀ ମରିଗଲା ଦିନୁଁ ସେ ଝୁରିଝୁରି ଏକାବେଳକେ ଧୂଡୁଧୂଡୁ ବୁଢ଼ା ହୋଇଯାଇଚନ୍ତି । ଶୁଣାଯାଏ ଯେ ମିଶ୍ରେ ପ୍ରତିଦିନ ମିଶ୍ରାଣୀଙ୍କର ସଉକିନି କୁମ୍ଭପକା ଶାଢ଼ୀ ଖଣ୍ଡିକ ରାତିରେ କବାଟ କିଳି ଏପଟ ସେପଟ କରି ଦେଖିନିଅନ୍ତି । ସତ କି ମିଛ କହିବାର ଉପାୟ ନାହିଁ । ତେବେ ଆମ୍ଭେମାନେ ଶୁଣିଚୁଁ, କେତେଥର ମିଶ୍ରେ କହିଚନ୍ତି, "କି ? ମୋର କ'ଣ ଗୋଟାଏ ବୟସ ହୋଇଯାଇଚି ? ମୋ ସାଙ୍ଗ ଲୋକ ତ ଦି'ଦିଟା ଭିଆ ହେଉଚନ୍ତି ।" ମିଶ୍ରଙ୍କର ପାଚିଲା ବାଳ, ଟାଙ୍ଗେରା ଖପୁରି, ପାକୁଆ ପାଟି, କୋରଡ଼ ଆଖି ସଙ୍ଗରେ ବରବେଶର କଳ୍ପନା କରିବା ଗୋଟାଏ ବଡ଼ରକମ ବାହାଦୂରୀ । ବାବୁଆଣୀ ହସିବାର ଦେଖି ମିଶ୍ରେ କିଛି ତ ବୁଝିପାରିଲେ ନାହିଁ, ଖାଲି ଥକ୍‌କା ହୋଇ ଚାହିଁରହିଲେ । ବାବୁଆଣୀ ହସ ସମ୍ଭାଳି କହିଲେ, "ମିଶ୍ରେ, ଟିକିଏ ପ୍ରଫୁଲ୍ଲକୁ ଡାକିଆଣନ୍ତ ? ଆଉ ହେଇଟି, ଟଙ୍କା ଶହେ ଦଶ ବର୍ତ୍ତମାନ ଆଣିପାରିବ ?" ମିଶ୍ରେ 'ହଉ' କହି ସେ ସ୍ଥାନରୁ ଚାଲିଗଲେ । ପ୍ରଫୁଲ୍ଲବାବୁ ତା'ର କିଛି ସମୟ ପରେ ଆସିଲେ । ନମସ୍କାର କରି ବସିଲା ପରେ ବାବୁଆଣୀ କହିଲେ, "ବାପା ପ୍ରଫୁଲ୍ଲ, ତୁ ଟିକିଏ ବାଲେଶ୍ୱର ଯାଇ ପାରିବୁ ?"

ପ୍ରଫୁଲ୍ଲ : କହିଲେ ନିଶ୍ଚୟ ଯିବି । ତେବେ କାହିଁକି ?

ବାବୁଆଣୀ : ଧୋଇ ବାଲେଶ୍ୱର ପାଖେ କେଉଁଠି ଅଛି, ତାକୁ ଖୋଜି ବାହାର କରିବୁ ।

ପ୍ରଫୁଲ୍ଲବାବୁ ଉତ୍ସାହିତ ହୋଇ କହିଲେ, "ସେ ବାଲେଶ୍ୱର ପାଖରେ ଅଛି ? ଭଲ ଅଛି ତ ? ତୁମେ କିପରି ଜାଣିଲ ?

ବାବୁଆଣୀ : ମତେ କୁଆ କହିଲା । ସେ ବାଲେଶ୍ୱର ପାଖରେ ପ୍ରାୟ କୋଡ଼ିଏ ମାଇଲ୍ ଭିତରେ ଅଛି । ଭଲ ମଧ୍ୟ ଅଛି । ତୁମେ ଚେଷ୍ଟାକଲେ ତାକୁ ଖୋଜି ବାହାର କରିପାରନ୍ତ ।

ପ୍ରଫୁଲ୍ଲ : କିନ୍ତୁ ମା, କୋଡ଼ିଏ ମାଇଲ ଭିତରେ ମୁଁ କେଉଁଠି ଖୋଜିବି ?

ବାବୁଆଣୀ : କଲିକତାରୁ ଆସିବା ରାସ୍ତା ହୋଇଥିବ, ଆଉ ବାଲେଶ୍ୱରଠାରୁ କୋଡ଼ିଏ ମାଇଲ ଦୂର ହୋଇଥିବ । ଏପରି ଜାଗା ତ ଖୁବ୍ ବେଶି ନୁହେଁ ।

ପ୍ରଫୁଲ୍ଲ : ଆଚ୍ଛା ଦେଖାଯିବ । ତେବେ କ'ଣ ମୁଁ ଆଜି ଯିବି ?

ବାବୁଆଣୀ : ହଁ, ଏଇ ମିଶ୍ରେ ଟଙ୍କା ପାଇଁ ଯାଇଚନ୍ତି, ସେ ଆସିଲେ ଯାହା ଆଣିଥିବେ ତାକୁ ନିଅ । ଯାଅ ! ଦରକାର ହେଲେ ଆଉ ଟଙ୍କା ପାଇଁ ଲେଖିବ । ହଁ, ଆଉ ଗୋଟିଏ କଥା, ତୁମେ ଯେ ଧୋଇଆକୁ ଖୋଜି ବାଲେଶ୍ୱର ଯାଉଚ, ଏକଥା ଯେପରି ଦି'କାନରୁ ତିନିକାନ ନହୁଏ । ଆଉ ଧୋଇଆକୁ ଯଦି ଖୋଜି ବାହାର କରିପାର, ତା'ହେଲେ ମଧ୍ୟ କାହାକୁ କହିବ ନାହିଁ, ଧୋଇଆ ମୋର କେଉଁଠି ଅଛି । ଖାଲି ସେ କିପରି ଅଛି, କିପରି ଚଳୁଛି ଏସବୁ କଥା ଲେଖି ଚିଠି ଦେବ । ଗୋରାବୋଉ ମାଉସୀକୁ ଟିକିଏ ଦେଖି ଆସିବ, "ସେ କନ୍ୟାଦେଖା ପରା !" ଖୁବ୍ ସାବଧାନ ।



# ଚବିଶି

"ଶୁଣ, ପ୍ରମିଳା ! ଆଉ ଏମିତି ଲୁଚକାଳି ଖେଳି ବେଶି ଦିନ କଟାଇବା ମୋ ପକ୍ଷରେ ଅସମ୍ଭବ । ମୁଁ ଆଜି ତତେ ସଫା କହୁଚି, ମୁଁ ତତେ ବିବାହ ହେବି, ହେବି । ସଂସାରରେ ଏପରି କେହି ନାହିଁ, ଯେ କି ମୋର ଏ ସଂକଳ୍ପ ଟଳେଇପାରିବ । ସୁତରାଂ ଯେତେ ଶୀଘ୍ର ପାର ତୁମେ ମଧ୍ୟ ମନେ ମନେ-କଥାଟା ଠିକ୍ କରିନେଲେ ସମସ୍ତଙ୍କ ପକ୍ଷରେ ମଙ୍ଗଳ ।" ପ୍ରମିଳା ତାଙ୍କ ପଢ଼ାଘରର ଟେବୁଲ ପାଖରେ ବସି ଟେବୁଲ ଉପରେ ଥୁଆ ହୋଇଥିବା ଖଣ୍ଡିଏ ଉପନ୍ୟାସର ପୃଷ୍ଠା ଲେଉଟାଉଚନ୍ତି, ଯେମିତି ତାଙ୍କ ମନ ସେ ଘରେ ବା ଶ୍ୟାମ ବାବୁଙ୍କ କଥାରେ ନାହିଁ । ଶ୍ୟାମବାବୁ ସାମାନ୍ୟ ଟିକିଏ ଦୂରରେ ଠିଆହୋଇ ସେ କଥାଗୁଡ଼ାକ କହିଯାଉଚନ୍ତି । ତାଙ୍କର ବେଶଭୂଷାରେ ବଡ଼ ବେଶି ପରିପାଟୀ ଆଜି; କିନ୍ତୁ ଦେହରୁ ଅତରର ଗନ୍ଧ ଭେଦି ଗୋଟାଏ ଆମ୍ବିଳିଆ ଗନ୍ଧ ବାହାରି ଆସୁଚି । ଆଖି ଦୁଇଟା ଜବାଫୁଲ ପରି ନାଲ । ସେ କଥାଗୁଡ଼ାକ କହି ଉତ୍ସୁକ ଭାବରେ ପ୍ରମିଳାଙ୍କ ଆଡ଼କୁ ଚାହିଁରହିଲେ । ପ୍ରମିଳା ପ୍ରାୟ ପନ୍ଦର ମିନିଟ୍ ପର୍ଯ୍ୟନ୍ତ ତୁନି ହୋଇ କହିଲେ, "ଦେଖନ୍ତୁ, ଶ୍ୟାମବାବୁ, ମୁଁ ଆପଣଙ୍କୁ ବହୁତ ସ୍ନେହ ଓ ବିଶ୍ୱାସ କରୁଥିଲି । ମୋ ମନର ଭାବ ଯାହା ହେଉ, ଅନ୍ତତଃ ମା'ଙ୍କର ଏ ସ୍ନେହର ଖାତିରିରେ ମୁଁ ତୁମ ମନରେ କଷ୍ଟ ନଦେବା ପାଇଁ ଯେତେ ଚେଷ୍ଟା କଲେ ମଧ୍ୟ ତୁମେ ତୁମ ନିଜ ବ୍ୟବହାରରେ ତାହା କରାଇଦେଉନାହଁ । ତୁମେ ଯେତେବେଳେ ଏତେଦିନ ପରେ ମନଖୋଲି ତୁମ ଭିତିରି କଥାଟା କହିପକାଇଚ—ସେ ବୋଧହୁଏ ମଦନିଶା ଜୋରରେ— ମୋର ମଧ୍ୟ ସେମିତି ମନଖୋଲି କଥାଗୁଡ଼ାକ କହିବା ଉଚିତ । ମୁଁ ତୁମକୁ ଖାଲି ଯେ ଭଲ ପାଏନାହିଁ, ଏତିକି କହିଲେ ତୁମ ପ୍ରତି ମୋ ମନର ଚାରିପଣ ସୁଦ୍ଧା ପ୍ରକାଶ ପାଇବନାହିଁ । ମୁଁ ତୁମକୁ ଅନ୍ତରର ସହିତ ଘୃଣାକରେ । ଏଥିରେ ତୁମର ମୋର ବିବାହ କିପରି ସମ୍ଭବ ହୋଇପାରେ !

ଶ୍ୟାମ : ସେ ସବୁ କୌଣସି ପ୍ରକାର ଯୁକ୍ତି ମୁଁ ଶୁଣିବି ନାହିଁ । ମୁଁ ଠିକ୍ ତୁମକୁ ବିବାହ କରିବି ।

ପ୍ରମିଳା : ମୁଁ ଯଦି କହେ ମୁଁ ଠିକ୍ ତୁମକୁ ବିବାହ କରିବିନାହିଁ, ତା'ହେଲେ ତୁମେ କ'ଣ କରିବ ?

ଶ୍ୟାମ : ତୁମେ କାହିଁକି ମୋତେ ବିବାହ ନକରିବ ? ମୋର ବୟସ ସେପରି କିଛି ହୋଇନାହିଁ । ଏଇ ମାତ୍ର ୩୫ ବର୍ଷ । ମୋର ଚେହେରା ମଧ୍ୟ ମନ୍ଦ ନୁହେଁ । ତୁମ ଅପେକ୍ଷା ଅଧିକ ସୁନ୍ଦରୀ, ଅଧିକ ଯୋଗ୍ୟ ସ୍ତ୍ରୀ ମୋ ପ୍ରତି ପ୍ରେମରେ ଆତ୍ମ-ବିସ୍ମୃତ ହୋଇ ଅଛନ୍ତି । ମୋର ସମ୍ପତ୍ତି ଏ ଗ୍ରାମ ମଧ୍ୟରେ କେବଳ ମାତ୍ର ତୁମର ସମ୍ପତ୍ତିଠାରୁ ଟିକିଏ କମ୍ । ମୁଁ ମଧ୍ୟ ଶିକ୍ଷିତ ଓ ତୁମର ସମାନ ବଂଶଜ । ତା'ହେଲେ ତୁମର ସ୍ୱାମୀ ହେବାପାଇଁ ମୁଁ କେଉଁ ଭାବରେ ଅଯୋଗ୍ୟ ?

ପ୍ରମିଳା : ତା' ସତ, ସ୍ୱୀକାର କରୁଚି । ବରପାତ୍ର ଭାବରେ ଏ ସଂସାରରେ ତୁମ ଅପେକ୍ଷା ଆଉରି ଅନେକ ଅଯୋଗ୍ୟ ଲୋକ ଅଛନ୍ତି । କିନ୍ତୁ ସଂସାରରେ ତୁମେ ହିଁ ଯଦି ଶେଷ

ଏବଂ ଏକମାତ୍ର ବିବାହଯୋଗ୍ୟ ବରପାତ୍ର ହୁଅ ତା'ହେଲେ ମଧ୍ୟ ମୁଁ ବରଂ ଅବିଆଡ଼ୀ ରହିବି, କିନ୍ତୁ ତୁମକୁ ବିବାହ କରିବିନାହିଁ ।

ଶ୍ୟାମ : ତୁମେ ବୋଧେ ଭାବିଛ ଯେ ମୋର ଗୋଟିଏ ସ୍ତ୍ରୀ ଥାଉଁ ଥାଉଁ ସଉତୁଣୀ ବର ବିବାହ କରିବା ନିତାନ୍ତ ଅସ୍ପୃହଣୀୟ । ତୁମର ସେ ଭ୍ରାନ୍ତ ଧାରଣା । ତୁମେ ମୋତେ ବିବାହ କଲେ ମୋର ପ୍ରଥମ ସ୍ତ୍ରୀ ସହିତ ତୁମର କୌଣସି ରକମ ସମ୍ବନ୍ଧ ରହିବନାହିଁ । ମୁଁ ତା'ର ବ୍ୟବସ୍ଥା କରିଛି ।

ପ୍ରମିଳା : ତୁମେ ଗୋଟେ ମସ୍ତବଡ଼ ଗଧ ଓ ପାଷଣ୍ଡ । ଏଡ଼େ ସୁନ୍ଦରୀ ଓ ଗୁଣବତୀ ଯୁବତୀ ସ୍ତ୍ରୀ ଓ ଏପରି ସ୍ୱର୍ଣ୍ଣ-ଦୁର୍ଲଭ ଛୋଟ ପୁଅଟିଏ ପାଇ ଯେ ପୁଣି ଅନ୍ୟ ଆଶ୍ରିତା ଯୁବତୀ ପ୍ରତି ଦୃଷ୍ଟି ଦିଏ, ତା'ଠାରୁ ବଳି ପାପୀ, ନାରକୀ ଆଉ କିଏ ଅଛି ? ନା, ତୁମ ସହିତ ବିବାହ ଏ ଜନ୍ମରେ ତ ନୁହେଁ, ମୋର ଯଦି ଶତସହସ୍ର ଜୀବନ ହୁଏ, ତାହେଲେ ମଧ୍ୟ ଥରକ ପାଇଁ ସମ୍ଭବ ହେବନାହିଁ ।

ଶ୍ୟାମ : ଜାଣ, ଏ ପ୍ରଗଲ୍‌ଭତାର ଶାସ୍ତି କ'ଣ ? ମୁଁ ବିଚାରିଲେ ତୁମର ଖାଇବା ମୁଠାକ ବନ୍ଦ କରିପାରେ ।

ପ୍ରମିଳା : ତା' ତୁମେ କରିପାରିବ ନାହିଁ । ମା'ଙ୍କର ଉଇଲ୍ ଅନୁଯାୟୀ ତୁମେ ମୋତେ ମୋର ବିବାହ ପର୍ଯ୍ୟନ୍ତ ଏ କୁଟୁମ୍ବର ଭରଣ-ପୋଷଣ ଓ ମୋର ପାଠପଢ଼ା ଖର୍ଚ୍ଚ ନିମନ୍ତେ ମାସକୁ ୩୦୦ ଟଙ୍କା ଦେବାକୁ ବାଧ୍ୟ ।

ଶ୍ୟାମ : ତା' ହୋଇପାରେ; କିନ୍ତୁ ଜମିଦାରୀରୁ ଆୟ ଯଦି ନହୁଏ, ରାଜସ୍ୱ ଯଦି ଦିଆ ନହୁଏ, ତା'ହେଲେ ଜମିଦାରୀସହ ଘରବାଡ଼ି ମଧ୍ୟ ନିଲାମ ହୋଇଯିବ । ଆଉ ତୁମେ ମୋତେ ବିବାହ ନକଲେ ମୁଁ ତାହା କରାଇବି ନିଶ୍ଚୟ ।

ପ୍ରମିଳାଙ୍କ ମୁଣ୍ଡରେ ଏ ଚକ୍ରାନ୍ତଟା ପଶିନଥିଲା । ସେ ଦେଖିଲେ ଲୋକଟା ଯେପରି ମଦୁଆ, ସେ ଯେ କେତେବେଳେ ଖିଆଲରେ ପ୍ରକୃତରେ ଏହା ନକରିବ ତା'ର ବି କି ଠିକ୍ ଅଛି । ତା'ହେଲେ ତାଙ୍କର ଉପାୟ ? ତାଙ୍କ ମୁହଁ ଲାଜରେ ନାଲ ପଡ଼ିଗଲା—ଏ ଯୋଗୀଙ୍କୁ ଛାଡ଼ିବାକୁ ହେବ । ଜୀବନର ପ୍ରଧାନ କଳ୍ପନା ଓ ଆଶ୍ୱାସନା ତାଙ୍କର ଏହି ପାଠ, ବହିପତ୍ର, କଲେଜ ସବୁ ବିଦାୟ ଦେବାକୁ ହେବ । ତାଙ୍କର ଆଖି ଛଳଛଳ ହୋଇଉଠିଲା । ସେ ପଣତକାନିରେ ଆଖି ପୋଛି କ'ଣ କହିବାକୁ ଯାଉଥିଲେ । ଏତିକିବେଳେ ଯୋଗୀଭାଇ ସେଠାରେ ଆସି ହାଜର । ସେ ଥରେ ଶ୍ୟାମବାବୁଙ୍କୁ ଓ ଥରେ ପ୍ରମିଳାଙ୍କୁ ଲକ୍ଷ୍ୟକରି ପଚାରିଲେ, "ଏ ଲୋକଟା କିଏ ?"

ପ୍ରଶ୍ନଟା ନିତାନ୍ତ ଭଦ୍ରାମିର ବାହାରେ ହେଲେ ମଧ୍ୟ ପ୍ରମିଳା ତାଙ୍କର ସେତେବେଳର ମନଦୁଃଖରେ ତାହାର ଅଭଦ୍ରାମିତକ ଧରିପାରିନଥିଲେ । ପାଞ୍ଚ ଛ' ମିନିଟ୍ ପରେ କଥାଟାର ଭିତିରି ମର୍ମ ଯେତେବେଳେ ତାଙ୍କ ମନକୁ ଗଲା, ସେ ରାଗରେ ପାଚିଗଲେ । ଚାକର ହୋଇ ତା'ର ପୁଣି ଏଡ଼େ ଆସ୍ପର୍ଦ୍ଧା ! ସେ ତାଙ୍କର ସ୍ୱର ଯଥାସମ୍ଭବ ହିମାଳୟର ହିମକାକର କରି କହିଲେ, "ପହଁରାଟା ଆଣି ଘରଟା ଝାଟେଇ ଦିଅ ତ ?"

ଯୋଗୀ : ଓ, ବୁଝିଲି ! ଚାକରଟା, ତା'ର ପୁଣି ଏତେ ଆସ୍ପର୍ଦ୍ଧା ଯେ ମୁଁ କାହା ସାଙ୍ଗରେ କଥାବାର୍ତ୍ତା କଲେ ତା'ର କୈଫିୟତ୍ ନେବ, ଏଇ ନା ? ଠିକ୍ ଚାପୁଡ଼ା । ତଥାପି ପଚାରେଁ ଏ ଲୋକଟା କିଏ ?

ଶ୍ୟାମବାବୁ ଏଥିରୁ ଗୋଟିଏ ଅଦ୍ଭୁତ ଜୀବ ଦେଖି ପ୍ରଥମେ ବିମୁଗ୍ଧ ହୋଇଯାଇଥିଲେ । ସେ ଶୁଣିଥିଲେ ଯେ ଏହିପରି ଗୋଟାଏ କିଛି ହୋଇଛି; କିନ୍ତୁ ସେ ଏହିପରିଟା ଯେ ଏତେଦୂର ଯିବ, ସେ କଳ୍ପନା କରିପାରିନଥିଲେ । ସେ ଟିକିଏ ବିଦ୍ରୂପକରି କହିଲେ, "ବେଶ୍ ସା'ନ୍ତାଣୀ, ଆଉ ଚାକର । ତୁମେ ଗୋଟାଏ କଥା କରନା । ପ୍ରତିଦିନ ତୁମେ କି କି କରୁଚ, କାହା କାହା ସଙ୍ଗେ କଥା ହଉଚ, ଏସବୁ ଲେଖି ଗୋଟାଏ ଡାଏରୀ ପ୍ରତିଦିନ ସଞ୍ଜବେଳେ ୟାଙ୍କ ପାଖରେ ପେଶ୍ କର, ତା'ହେଲେ ସବୁ ଗୋଳମାଳ ଘୁଞ୍ଚିଯିବ ।"

ଯୋଗୀଙ୍କର ହଠାତ୍ ଏକ ଅଦ୍ଭୁତ ପରିବର୍ତ୍ତନ ହୋଇଗଲା । ଯେପରି କେତେଦିନର ହାରାନିଧି ସିଏ ପାଇଲେ । ସେହିପରି ଆଗ୍ରହ ଓ ଆନନ୍ଦରେ ଅଧୀର ହୋଇ "ଆରେ ଶ୍ୟାମ ଭାଇନା ! ବା-ବା, ଆଜି କାହା ମୁହଁ ଚାହିଁ ଉଠିଥିଲି କେଜାଣି, ତୁମ ସଙ୍ଗରେ ଦେଖାହେଲା । ଆସ ଆସ" କହି ଶ୍ୟାମବାବୁ କଥାଟାର ଅର୍ଥ ବୁଝିବା ଆଗରୁ ଯାଇ ତାଙ୍କୁ କୁଣ୍ଢାଇ ପକାଇଲେ ଓ ଆସ୍ତେ ଆସ୍ତେ ସେହି ଅବସ୍ଥାରେ ତାଙ୍କୁ ଦୁଆରଆଡ଼କୁ ଠେଲି ଠେଲି ନେଲେ । ଏପରି ଆକାଶଛିଣ୍ଡା କଥାରେ ଶ୍ୟାମବାବୁ ଚମକିଯାଇଥିଲେ । ବାଧା ଦେବାର ଶକ୍ତି ତାଙ୍କର ନଥିଲା । ଦୁଆରମୁହଁରେ ପହଞ୍ଚି "ଆସ ଭାଇ, ତୁମ ସଙ୍ଗରେ ମୋର ବହୁତ କଥା ଅଛି", କହି ତାଙ୍କୁ ସିଡ଼ି ଆଡ଼କୁ ଟାଣି ଟାଣି ନେଲେ । ସିଡ଼ି ମୁହଁରେ ପହଞ୍ଚିଲାବେଳକୁ ଶ୍ୟାମବାବୁଙ୍କର ଟିକିଏ ଜ୍ଞାନ ଆସିଯାଇଥିଲା । ସେ ଛଡ଼ାଛଡ଼ି କରିବାକୁ ଆରମ୍ଭ କଲେ । ସେ ଧୂପଧାପ ଘଷର-ଘଷ ଶବ୍ଦରେ ଗୋରାବୋଉ ମାଉସୀ କେଉଁଠାରେ ଥିଲେ ସେ ମଧ୍ୟ ଆସି ପହଞ୍ଚିଗଲେ । ସେ ଆସି ଦେଖନ୍ତି ଯେ ଯୋଗୀ ଶ୍ୟାମବାବୁଙ୍କୁ ଧରି ସିଡ଼ି ତଳକୁ ଠେଲି ଦେଉଛି । ସେ ଲୋଭ ସମ୍ଭାଳି ପାରିଲେନାହିଁ । ପଛଆଡୁ ଯାଇ ତାଙ୍କର ଶ୍ରୀଚରଣକମଳରୁ ଗୋଟିଏ ଶ୍ୟାମବାବୁଙ୍କ ପିଠି ଉପରେ ରଖିଦେଲେ । ଆଉ ଶ୍ୟାମବାବୁ ମେଲଗତିରେ ସେ ସିଡ଼ିତକ ପାରହୋଇ ତଳ ସିଡ଼ିରେ ଧପାଙ୍କ କରି କଚାଡ଼ି ହୋଇ ପଡ଼ିଲେ ।

ଯୋଗୀ ସିଡ଼ି ଉପରେ ଠିଆହୋଇ ଅଣ୍ଟାରେ ହାତଦେଇ ଦେଖନ୍ତି ତ ପ୍ରମିଳା ନିଜେ ତାଙ୍କ ପାଖେ ଠିଆହୋଇ ଏଣେ ହସୁଚନ୍ତି, ଆଉ ତେଣେ କାନିରେ ଲୁହ ପୋଛୁଛନ୍ତି । ଯୋଗୀଙ୍କର ମୁହଁ ଗମ୍ଭୀର ହୋଇଗଲା । ଗୋଧୂଳି ବେଳର ପଶ୍ଚିମ ଆକାଶରେ ତାହି ସୁନାର ଚହଟ ପରି ତାଙ୍କ ମୁହଁରୁ ସେ ଆନନ୍ଦର ଜଳ ହଠାତ୍ ଉଭେଇଗଲା । ସେ ଯଥାସମ୍ଭବ କଅଁଳ ହୋଇ କହିଲେ, "ସତରେ, ମୋର ଦୋଷ ହୋଇଚି, ମତେ କ୍ଷମା କରିବ ନାହିଁ ? କିନ୍ତୁ ମୁଁ ମୋ ସାଙ୍ଗ ଚାକର-ବାକରମାନଙ୍କଠାରୁ ଶ୍ୟାମ ସମ୍ବନ୍ଧରେ ଯାହା ଶୁଣିଚି ସେଥିରେ ତା' ସାଙ୍ଗରେ ଏହିପରି ପଟେ ଖେଳିବାର ଲୋଭ ସମ୍ଭାଳି ପାରିଲିନାହିଁ ।"

ପ୍ରମିଳା : କିନ୍ତୁ ମୁଁ ଗୋଟାଏ ଭଦ୍ରଲୋକ ସାଙ୍ଗରେ କଥା ହେଲାବେଳେ ତୁମର ଏପରି ଓପରେ ପଡ଼ି ଗୋଳମାଳ ଲଗାଇବାଟା ବଡ଼ ଅଭଦ୍ରାମି ।

ଯୋଗୀ : ତା' ସତ, କିନ୍ତୁ ଭଦ୍ରଲୋକ ହୋଇଥିଲେ ତ ? ଶ୍ୟାମ କ'ଣ ଭଦ୍ରଲୋକ ?

ପ୍ରମିଳା : ନିଶ୍ଚୟ ସେ ଏ ସ୍ଥାନର ଜଣେ ପ୍ରସିଦ୍ଧ ଜମିଦାର, ଏଫ୍.ଏ. ପାଶ୍ କରିଚି । ପୁରୁଣା ବଂଶର ପିଲା ।

ଯୋଗୀ : ସେ ମଦ ଖାଏ, ବିଶ୍ୱାସରେ ଚୋଟି କଟେ । ଅସହାୟା ଯୁବତୀ ଉପରେ ଅତ୍ୟାଚାର କରେ, ସ୍ତ୍ରୀ ପାଖରୁ ଗୋଇଠା ଖାଇ ମୁହଁ ତଳକୁ ପୋତି ଚାଲିଯାଏ । ହଁ କହିଯାଅ, କହିଯାଅ । ଭଦ୍ରାମିର କି ଗୁଣଗୁଡ଼ାକ ?

ପ୍ରମିଳା : ସେ ଯାହାହେଉ ତୁମେ ଏପରି ଓପରେ ପଡ଼ି ଯାହା ଇଚ୍ଛା ତା' ସାଙ୍ଗରେ ଲାଗିଲେ ଶେଷରେ ମୋର ଦୁର୍ନାମ ହେବ ।

ଯୋଗୀ : ଦୁର୍ନାମକୁ ଯଦି ଡର ଥିଲା ମୋ ଭଳି ଅଜଣା ଅଶୁଣା, ଅଚିହ୍ନା ଲୋକକୁ ରଖିବାକୁ ଗଲ କାହିଁକି ? ମୁଁ ଚୋର କି ଡକେଇତ ।

ଗୋରାବୋଉ : ମା' କ'ଣ ଗୁଡ଼େ ପାଗଳାଙ୍କ ଭଳି ଗପୁଚି ମ, ଏ ଟୋକାଟା ଚୋର ଡକେଇତ ? ତୁ ତ ଚୋର ଡକେଇତ, ଆଉ ଭଲ ଲୋକ କିଏ ?

ପ୍ରମିଳା ଆଶ୍ଚର୍ଯ୍ୟ ହୋଇ ଗୋରାବୋଉଙ୍କ ଆଡ଼କୁ ଚାହିଁଲେ । ଏଇ ଗୋରାବୋଉ ସେଦିନ ପ୍ରଥମେ ଯୋଗୀଙ୍କୁ ଏହି ସବୁ ଆଖ୍ୟା ଦେଇ ତାଙ୍କୁ ନ ରଖିବାକୁ ମତେଇଥିଲେ । ଆଉ ଆଜି ଏ କି କଥା ? ଏଇଥରକ ଚାହିଁ ସେ ଦେଖିଲେ ଏକ ଅପୂର୍ବ କଥା । ଗୋରାବୋଉ ମାଉସୀ ତେଲ ଲଗେଇ ସୁନ୍ଦର କରି ମାଙ୍ଗ ଭାଙ୍ଗି ମୁଣ୍ଡ କୁଣ୍ଡେଇଚନ୍ତି । ପଛଆଡ଼େ ଖୋସାଟିଏ ଯେ ଅଛି ସେ କଥାଟା ତାଙ୍କ ଓଢ଼ଣା ଭେଦି ତାଳୁ ଉପରେ ଯେଉଁ ଢିପଟି ଦେଖାଯାଉଚି, ସେଥିରୁ ଅନୁମାନ କରି ନିଆଯାଇପାରେ । ତାଙ୍କ ମୁହଁରେ ସେ ଶୁଖିଲା ଭାବ ଆଉ ନାହିଁ । ତେଲ ଚିକ୍କଣରେ ଚକ୍‌ଚକ୍ କରୁଚି । ଆଖିରେ ଟିକିଏ ଲାଜ ସାଙ୍ଗରେ ଟିକିଏ ଟିକିଏ ସାହସ ମିଶିଯାଇଚି । ପିନ୍ଧିବା ତ ପୁନିଅଜହ୍ନ ଧୋବ ଲୁଗା ଖଣ୍ଡିଏ; ତା' ତଳେ ଖଣ୍ଡିଏ ସେମିଜ । ପ୍ରମିଳା ଏ ସବୁ ଦେଖି ଥକ୍କା ମାରି ବସିଗଲେ । ଗୋରାବୋଉ ମାଉସୀ ଆଉ ଏ ବେଶଭୂଷା ? ଏ ଅସମ୍ଭବ କଥା ସମ୍ଭବ ହେଲା କିପରି ? ଯାହା ସେ ଓ ତାଙ୍କର ମା' ଏତେ ଚେଷ୍ଟା କରି କରିପାରି ନଥିଲେ, ତାହା କେଉଁ କୁହୁକରେ ସମ୍ଭବ ହେଲା ? ସେ କୁହୁକୀ କିଏ ? ତାଙ୍କର ଆଖି ଯୋଗୀଙ୍କ ଉପରେ ପଡ଼ିଲା । ସେ ଦେଖିଲେ ଯୋଗୀ ତାଙ୍କ ଆଡ଼କୁ ଆଡ଼ଆଖିରେ ଗୋରାବୋଉଙ୍କୁ କ'ଣ ଠାରୁଛନ୍ତି । ଏହା ସାଙ୍ଗରେ ଗୋରାବୋଉ ମାଉସୀଙ୍କର ଯୋଗୀଙ୍କ ସମ୍ବନ୍ଧରେ ହଠାତ୍ ମତ ପରିବର୍ତ୍ତନକୁ ମିଳାଇ ସେ ଦେଖିଲେ ଠିକ୍ କାର୍ଯ୍ୟ-କାରଣ ଲାଗି ଯାଉଚି । କିନ୍ତୁ କିପରି ? ଯାହାହେଉ, ଏ ଗୋଟାଏ ଆଚ୍ଛା ପାଲା ତ । କ'ଣ କରାଯିବ ତେବେ ? ଉପାୟ ବତାଇଦେଲେ ଯୋଗୀ ନିଜେ । ଯୋଗୀ ନିଜେ ଗୋରାବୋଉକୁ ଡାକି କହିଲେ, "ମାଉସୀ, ତୁମକୁ ଏ ସେମିଜଟି ବେଶ୍ ମାନୁଚି ମାଉସୀ ? ଗୋରାବୋଉକୁ ବାକର-ବାକର ସମସ୍ତେ ସା'ନ୍ତାଣୀ ଡାକନ୍ତି । ମାଉସୀ ବୋଲି ଡାକିବାର ତ ସେ କେବେ ଶୁଣିନାହାନ୍ତି । ତାଙ୍କ ମନ ଚିଡ଼ିଉଠିଲା । ଗୋରାବୋଉଙ୍କ ସହିତ ଯୋଗୀର ଏ ମାଉସୀ ପୁତୁରା ସମ୍ବନ୍ଧଟା

ତାଙ୍କୁ ଭଲ ଲାଗିଲାନାହିଁ । ସେ କହିଲେ, "ମାଉସୀ କିସ ହେ । ସେ ତ ତୁମର ସାଂନ୍ତାଣୀ । ତାଙ୍କୁ ମାଉସୀ ବୋଲି ଡାକୁଚ କେନେ ମ ।"

ଗୋରାବୋଉ : ଆହା ପିଲାଟା ଡାକୁ, ମାଉସୀ ବୋଲି ଡାକିଲେ ମୋ ଦିହ ଛିଣ୍ଡି ଯାଉନାହିଁ । ଏହାର ଗୋଟିଏ କିଛି ଶେଷ ନିଷ୍ପତ୍ତି କରିବାକୁ ହବ ।

ପ୍ରମିଳା କହିଲେ, "ମାଉସୀ, ତୁମେ ଟିକିଏ ଗଲ । ମୋର ଏ ଯୋଗୀଙ୍କ ସାଙ୍ଗରେ ଟିକିଏ କଥା ଅଛି ।" ଗୋରାବୋଉ ନିତାନ୍ତ ଅନିଚ୍ଛାରେ ସେଠାରୁ ଚାଲିଗଲେ । ଗଲାବେଳେ କହିଗଲେ, "ଆହା ବିଚାରା ଭଲଲୋକ ଘରର ପୁଅ, ତାଙ୍କୁ କିଛି ଗାଳି-ଫଜିତ୍ କରିବୁନାହିଁଟି ।

ପ୍ରମିଳା ତା'ପରେ ଯୋଗୀଙ୍କ ଆଡ଼କୁ ବୁଲି ଖୁବ୍ ଗମ୍ଭୀର ହୋଇ ପଚାରିଲେ, "ଯାର ମାନେ !"

ଯୋଗୀ : କାହାର ମାନେ ?

ପ୍ରମିଳା : ଏଇ ଯେ ତୁମେ ତାକୁ ମାଉସୀ ବୋଲି ଡାକୁଚ ଆଉ ସେ ତୁମପାଇଁ ଏପରି ଲଢୁଚନ୍ତି ।

ଯୋଗୀ : ତା' ସେଥିରେ ହୋଇଗଲା କ'ଣ ? ତାଙ୍କର ଆମର ରାଜି, କ୍ୟା କରେଗା କାଜି ?

ପ୍ରମିଳା : ଫେରେ ସେପରି ଗୁଡ଼ାଏ ଫାଜିଲାମି କରିବ ତ, ମୁଁ ପ୍ରକୃତରେ ରାଗିବି ।

ଯୋଗୀ : ରାଗିବାଟା ସାଂନ୍ତାଣୀମାନଙ୍କର ଅଧିକାର ଆଉ ସହିବାଟା ଚାକରମାନଙ୍କର ଭାଗ୍ୟ ।

ପ୍ରମିଳା : ଆଚ୍ଛା କୌଣସି ଗୋଟାଏ କଥା ବି ତୁମେ ଗୁରୁ କରି ନବନାହିଁ । କି ମୁସ୍କିଲ । ଆଚ୍ଛା, ସେ ଯାଉ । ଗୋରାବୋଉ ମାଉସୀର ଆଜି ଏ ଯେଉଁ ବେଶଭୂଷା, ତା'ର ଅର୍ଥ କ'ଣ ?

ଯୋଗୀ : କାଇଁ, ତାଙ୍କ ବେଶଭୂଷା ନ ବୁଝିପାରିଲା ଭଳି ତ ମୁଁ କିଛି ଦେଖୁନାହିଁ ।

ପ୍ରମିଳା : ଶୁଣ, ମୋର ହେତୁ ହେଲା ଦିନଠାରୁ ଆଜି ପର୍ଯ୍ୟନ୍ତ ଗୋରାବୋଉ ମାଉସୀ କେବେ ଖଣ୍ଡେ ଧୋବ ଲୁଗା ପିନ୍ଧିବା କି ଟିକିଏ ତେଲ ଲଗାଇବା ମୁଁ ଦେଖିନାହିଁ । ସେଥିଲାଗି ମା' ଓ ମୁଁ କେତେ ତାଙ୍କ ସାଙ୍ଗରେ କଳି ଅଳି କରିଛୁଁ । ସେ ସବୁ ପିଠିକି ପକେଇ ଦେଇଚନ୍ତି । ଆଜି ହଠାତ୍ ଏପରି କାହିଁକି ?

ଯୋଗୀ : ତା' ମୁଁ କହିବି କିପରି ? ତେବେ ମୁଁ ତାଙ୍କର ଗୋଟାଏ ଛବି ଆଙ୍କି ତାଙ୍କୁ ଦେଖେଇଥିଲି । ସେ ଦେଖି ମୋତେ ପଚାରିଲେ ମୁଁ କ'ଣ ଏତେ ସୁନ୍ଦରୀ ।

ପ୍ରମିଳା : ତୁମେ କ'ଣ କରି ତାଙ୍କୁ ଦେଖେଇଥିଲ ।

ଯୋଗୀ : ଛବି ଆଙ୍କି ।

ପ୍ରମିଳା : ଛବି ଆଙ୍କି ? ତୁମର ଗୀତ ଗାଇବା କେନ୍ଦେରା ବଜାଇବା, ହିସାବପତ୍ର ରଖିବା ବାଦେ ଛବି ଆଙ୍କିବା ଗୁଣଟା ଅଛି ନା କ'ଣ ?

ଯୋଗୀ : ତା' ଏଇ ଟିକିଏ ଟିକିଏ ।

ପ୍ରମିଳା : ଆଚ୍ଛା ସେ ଛବିଟା ମତେ ଟିକିଏ ଦେଖେଇବ; କିନ୍ତୁ ତୁମେ ତୁମର ଚଗଲାମିରେ ତାଙ୍କ ମନରେ ଯେ ଭାବ ଆଣିଦେଇଛ, ଭାବିଚ ତା'ର ପରିଣାମ କିପରି ଭୟାନକ ହୋଇପାରେ ?

ଯୋଗୀ : ଭୟାନକ ନା ପାଉଁଶ ? କୌଣସି ସ୍ତ୍ରୀକୁ ସେ ସୁନ୍ଦରୀ ବୋଲି କହିଲେ, ତା'ର କିଛିମାତ୍ର ଅନିଷ୍ଟ ହେବନାହିଁ; ବରଂ ଉପକାର ହବ, ଆୟୁଷ ବଢ଼ିବ ।

ପ୍ରମିଳା : କିନ୍ତୁ ତାଙ୍କ ମନରେ ଏପରି ଭାବ ଆଣିବାରେ ତୁମର ଉଦ୍ଦେଶ୍ୟ କ'ଣ ? ତୁମେ କ'ଣ ତାକୁ ବାହା ହବ ?

ଯୋଗୀ : ମୁଁ ତାଙ୍କୁ ବାହା ହବାରେ ତୁମର କିଛି ଆପତ୍ତି ନାହିଁ ?

ପ୍ରମିଳା : ମଲା, ମଲା, ତୁମେ ହାଡ଼ିଆଣୀ କି ପାଲୁଣୀ ବାହାହେଲେ ମୋର କ'ଣ ଅଛି ? କହି ଫଡ଼କରି ବୁଲି ସେ ସ୍ଥାନରୁ ଚାଲିଗଲେ ।



# ପଚିଶି

ସେଦିନ ଜଳେଶ୍ୱର ହାଟ । ଶ୍ୟାମବାବୁ ତାଙ୍କର ଦଳବଳ ଘେନି ଆସି ସେଠାରେ ପହଞ୍ଚିଛନ୍ତି । ଭିତିରି ଉଦ୍ଦେଶ୍ୟ ପୂର୍ତ୍ତି କରିବା; ବାହାର ଉଦ୍ଦେଶ୍ୟ ଜିନିଷପାତି ଖରିଦ । ସେମାନେ ସମସ୍ତେ ଷ୍ଟେସନରୁ ସିଧେ ସିଧେ ଗଲେ ଡାକବଙ୍ଗଳାକୁ । ଦେଖିଲେ ଡାକବଙ୍ଗଳାର ଗୋଟାଏ ବଖରାରେ ଜଣେ ବାବୁ ଅଛନ୍ତି । ସେମାନେ ଆଉ ଗୋଟିଏ ବଖରା ଦଖଲ କରି ବସିଲେ । ଜଳେଶ୍ୱର ସ୍ୱାଧୀନ ଉତ୍କଳର ଥିଲା ଗୋଟାଏ ବିଶିଷ୍ଟ ସହର । କହିବାକୁ ଗଲେ ସେ ହଉଚି ଉତ୍ତର-କଳିଙ୍ଗର ରାଜଧାନୀ । କାଳକ୍ରମେ ତାହାର ସେ ଗୌରବ ଲୁଚିଯାଇଛି; ତା' ସ୍ଥାନରେ ବାଲେଶ୍ୱର ବର୍ତ୍ତମାନ ରାଜଧାନୀ । ତଥାପି ଜଳେଶ୍ୱର ଆଧିପତ୍ୟର ଗନ୍ଧ ଏ ପର୍ଯ୍ୟନ୍ତ ସେଥିରେ ଲାଗିରହିଚି । ଏଠାରେ ଗୋଟିଏ ମାଇନର ସ୍କୁଲ, ଗୋଟିଏ ସବ୍‌ରେଜିଷ୍ଟ୍ରାର ଅଫିସ୍, ଗୋଟିଏ ଡାକଘର, ଗୋଟିଏ ଡାକ୍ତରଖାନା ଓ ଗୋଟିଏ ଇଙ୍ଗ-ଗୁଜୁରାଟୀ ବିଦ୍ୟାଳୟ ଅଛି । ବାଲେଶ୍ୱରକୁ ଛାଡ଼ିଦେଲେ ସଦର ସବ୍‌ଡିଭିଜନରେ ଆଉ ଏତେ ବଡ଼ ବଜାର ମଧ୍ୟ ଦେଖିବାକୁ ମିଳେନାହିଁ । ଜଳେଶ୍ୱରରୁ କର୍ପୂର ଉଡ଼ିଯାଇଥିଲେ ମଧ୍ୟ, ଅନେକ ମାରୁଆଡ଼ୀ ବ୍ୟବସାୟୀ ତାହାର କନା ଖଣ୍ଡିକୁ ଘେନି ବସିଛନ୍ତି । ଗୋଟିଏ ଚାଉଳ କଳ ମଧ୍ୟ ଏଠାରେ ଅଛି । ସରକାରୀ ଘରର ଅଭାବ ଓ କମ୍ । ପୁଲିସ୍ ଦାରୋଗା, ଇସ୍କୁଲ ଦାରୋଗା, ଅବକାରୀ ଦାରୋଗା, ସବ୍‌ରେଜିଷ୍ଟ୍ରୀ ଇତ୍ୟାଦିଙ୍କର ପକ୍କା ବସାଘରଗୁଡ଼ିକ ଷ୍ଟେସନ ବଜାର ଓ ପୁରୁଣା ବଜାର ମଝିରେ । ଏହିପରି ନାମଜାଦା ଜାଗାହେଲେ ମଧ୍ୟ ଜଳେଶ୍ୱର ପ୍ରତି କାହାରି ସହାନୁଭୂତି ଥିଲାପରି ଜଣାଯାଏନାହିଁ । ଜାଗାଟା ବଡ଼ ନୀଚା । ସୁବର୍ଣ୍ଣରେଖା ସହରଠାରୁ ପ୍ରାୟ ଚାରି ମାଇଲ୍ ଦୂରରେ ବହିଯାଉଚି । ମଟରରେ ଜଗନ୍ନାଥ ସଡ଼କ ଉପରେ ସାଧାରଣ ବନ୍ୟା ସମୟରେ ଆସିଲେ ଅନ୍ତତଃ ଅଣ୍ଟାଏ

ବା ଛାଡିଏ ପାଣିରେ ସୁଅ କାଟି ଯିବାକୁ ପଡ଼େ । ଉତ୍କଳର ଏହି ଅତି ପ୍ରାଚୀନ ସ୍ଥାନଟି ପ୍ରତି କାହାରି ଦୃଷ୍ଟି ପଡୁନାହିଁ । ଦେଶବାସୀ ତ ହେଲେ ଅନ୍ଧ, ଆଉ ଦୋଷ ଦବ କାହାକୁ ?

ଜଳେଶ୍ୱର ହାଟ ଏ ଅଞ୍ଚଳରେ ଗୋଟିଏ ପ୍ରଧାନ ହାଟ । ଉତ୍ତରରେ କଲିକତାଠାରୁ ଆରମ୍ଭ କରି ଦକ୍ଷିଣରେ କଟକ ପର୍ଯ୍ୟନ୍ତ ପ୍ରତ୍ୟେକ ବ୍ୟବସାୟ କେନ୍ଦ୍ର ଓ ବଡ଼ ସହରରୁ ବ୍ୟବସାୟୀମାନେ ହାଟପାଳି ଦିନ ଏଠାକୁ ନିଜର ନିଜର ପସରା ନେଇ ଆସନ୍ତି । ସପ୍ତାହରେ ଦୁଇଥର ଏତେ ବେଶି ଲୋକ ସମାଗମ ହୁଏ ଏହିଠାରେ, ତା'ପରେ ମଧ୍ୟ ଭୋଗୋରେଇ, ଜଳେଶ୍ୱର ଓ ବସ୍ତା—ଏ ତିନି ଥାନା ଭିତର ଗ୍ରାମମାନଙ୍କୁ ଯିବାପାଇଁ ଅନେକ ଲୋକ ମଧ୍ୟ ଏ ଷ୍ଟେସନରେ ଚଢ଼ନ୍ତି ଓ ଓହ୍ଲାନ୍ତି । ଏପରି ଅବସ୍ଥାରେ ମଧ୍ୟ ଏଠାରେ ରହିବା ଭଳି ଖଣ୍ଡେ ଭଲ ଘର ନାହିଁ । ଷ୍ଟେସନ ଓ ପୁରୁଣା ବଜାରରେ ଗୋଟାକେତେ ଗୁହାଳ ଘରପରି କୁଡ଼ିଆଘର ଅଛି ଓ ଗୋଟାଏ ଗୋଟାଏ ହୋଟେଲ ଅଛି । ଏ ହୋଟେଲ ଗୁଡ଼ାକର ଖାଇବା ପଦାର୍ଥ ନାମରେ ରୋଗର ଜୀବାଣୁଗୁଡ଼ିଏ ତିଆରି ହୁଏ । ହୋଟେଲବାଲାର ପରିଷ୍କାର ପରିଚ୍ଛନ୍ନତା ସମ୍ବନ୍ଧରେ କୌଣସି ଧାରଣା ହିଁ ନାହିଁ । ଆଉ ଏପରି ହୋଟେଲରେ ଯେଉଁମାନେ ଖାନ୍ତି ସେମାନଙ୍କର ମଧ୍ୟ ସେ ବିଷୟରେ ଜ୍ଞାନ ଶୂନ୍ୟ । ସୁତରାଂ ସୁରୁଖୁରୁରେ ଚଳିଯାଉଚି ।

ଶ୍ୟାମବାବୁ ବ୍ୟବସାୟ ସୂତ୍ରରେ ଅନେକ ଥର ଏ ସ୍ଥାନକୁ ଆସିଚନ୍ତି । ଯେତେ ଥର ଆସନ୍ତି ରହିବାର ଅନ୍ୟ କୌଣସି ଜାଗା ପାଆନ୍ତି ନାହିଁ । ଫଳରେ ଟଙ୍କାଟିଏ ଲେଖାଏଁ ଘରଭଡ଼ା ଦେଇ ଯାଇ ଡାକବଙ୍ଗଳାରେ ରହନ୍ତି । ତେବେ ଯେଉଁ ଯେଉଁ ଦିନ ବଙ୍ଗଳାରେ ହାକିମହୁକୁମା କେହି ଆଶ୍ରୟ ନେଇଥାନ୍ତି, ସେଦିନ ଗଛମୂଳରେ ଘେର ପକାଇ ରୋଷେଇବାସର ବନ୍ଦୋବସ୍ତ କରିନେବାକୁ ପଡ଼େ । ସେଦିନ ସେ ଗାଡ଼ିରୁ ଓହ୍ଲାଇଲା ମାତ୍ରକେ ଟିକଟ କଲେକଟରବାବୁ ତାଙ୍କୁ ନମସ୍କାର କଲେ । ବହୁଥର ଯା-ଆସ କରିବାରୁ ଷ୍ଟେସନବାଲାମାନଙ୍କ ସାଙ୍ଗରେ ଏହାଙ୍କର ପରିଚୟ ହୋଇଯାଇଛି । ସେ ଟିକଟ କଲେକଟରବାବୁଙ୍କୁ ପଚାରିଲେ, "କି ହୋ ସନ୍ତୋଷବାବୁ, ଆଜି ଡାକବଙ୍ଗଳାରେ କେହି ଅଛନ୍ତି କି ?" ଶୁଣିଲେ ଯେ ହାକିମହୁକୁମା କେହି ନାହାନ୍ତି; କିନ୍ତୁ ଆଉ ଜଣେଅଧେ ବାହାର ଲୋକ କିଏ ଥାଇପାରନ୍ତି ବୋଧହୁଏ । ଗୋଟାଏ ଦୁର୍ଭାବନା ଗଲା । ଶ୍ୟାମବାବୁ ଡାକବଙ୍ଗଳାରେ ପହଞ୍ଚି ଦେଖନ୍ତି ଯେ ଜଣେ ବଙ୍ଗାଳୀବାବୁ ସେଠାରେ ଅଛନ୍ତି । ସେ ଆମ୍ଭମାନଙ୍କର ପୂର୍ବପରିଚିତ ପ୍ରମଥବାବୁ । ପ୍ରମଥବାବୁ ଗୋଟିଏ ବଖରାରେ ଜମେଇ ବସିଲେ । ସେଦିନ ସନ୍ଧ୍ୟାବେଳକୁ ହାଟରୁ ଫେରି ଶ୍ୟାମବାବୁ ସାଙ୍ଗସୁଖଙ୍କୁ ନେଇ ନାଲିପାଣି ପୂଜା କରିବାର ଉଦ୍ୟମ କରୁଚନ୍ତି । ମାଂସ ଭଜା ହେଉଚି । କେହି ସୋଡ଼ାପାଣି ଆଣିବାକୁ ଯାଇଚନ୍ତି । ଶ୍ୟାମବାବୁ ବଙ୍ଗଳାର ବାରଣ୍ଡାରେ ଖଣ୍ଡିଏ ଆରାମ ଚୌକିରେ ବସି ଆଗତ ମଉଜର ସ୍ୱପ୍ନ ଦେଖୁଚନ୍ତି । ଏହିପରି ସମୟରେ ପ୍ରମଥବାବୁ ଆସି ସେଠାରେ ପହଞ୍ଚିଲେ । ଆପଣଙ୍କର ଘର କେଉଁଠାରେ, ମହାଶୟଠାରୁ ଆରମ୍ଭକରି ଆସ୍ତେ ଆସ୍ତେ ଆଳାପ-ପରିଚୟ ଜମାଟ ବାନ୍ଧି ବସିଲା । ସୋଡ଼ାପାଣି ଓ ମାଉଁସଭଜା ତିଆରି ହେଲାବେଳକୁ ଏତେଦୂର ଭାବଦୋସ୍ତି ହୋଇଗଲା ଯେ ଅର୍ଥାତ୍ ପ୍ରମଥବାବୁ ଶ୍ୟାମବାବୁଙ୍କୁ ନିଜର ଅକ୍ତିଆରରେ ଏତେଦୂର ଆଣିପାରିଥିଲେ ଯେ ଶ୍ୟାମବାବୁ ତାଙ୍କୁ ମଉଜରେ ଯୋଗଦେବାପାଇଁ ନିମନ୍ତ୍ରଣ କରିପକାଇଲେ ।

ପ୍ରମଥବାବୁ କହିଲେ, "ଦେଖନ୍ତୁ, ମୋର ସେ ସବୁ ଆମୋଦ ବଡ଼ ବେଶି ସହେ ନାହିଁ । ମୁଁ ପ୍ରତିଜ୍ଞା କରିଥିଲି ଆଉ ଦିନେ ମଦ ଛୁଇଁବି ନାହିଁ ବୋଲି । ତେବେ ଆଜି ଆପଣଙ୍କ ସହିତ ମୋର ଏ ଯେ ନୂତନ ବନ୍ଧୁତା ହେଲା, ତାରି ଖାତିରିରେ ବନ୍ଧୁତା ନଭାଙ୍ଗିଲେ, କାଳେ ଆପଣଙ୍କ ମନରେ କଷ୍ଟ ହବ, କ'ଣ କରାଯାଏ ? ବନ୍ଧୁପାଇଁ ବନ୍ଧୁ ପ୍ରାଣ ଦେଇଦେଉଚି । ମୁଁ ଏତିକି ଆଉ କରିପାରିବି ନାହିଁ । ନା ହେ କ'ଣ କହୁଚ ? କିନ୍ତୁ ଶ୍ୟାମ ଭାଇ, ତୁମକୁ ଦେଖି ମୋର ଠିକ୍ ମନେହେଉଚି, ତୁମେ ଯେପରି ମୋର କେତେ ଦିନର ଚିହ୍ନା ! ୟାକୁ ତ କହନ୍ତି ପ୍ରାଣର ଡାକ । ନା ହେ କ'ଣ କହୁଚ ?"

ସବୁ ତିଆର । ଗୋଟାଏ ଟେବୁଲ୍‌ର ଚାରିପଟେ ଚାରିଟା ଚୌକି ପଡ଼ିଲା । ଦୁଇଟା ପାଖାପାଖି ଚୌକିରେ ଶ୍ୟାମବାବୁ ଓ ପ୍ରମଥବାବୁ । ଆଉ ଦୁଇଟାରେ ଶ୍ୟାମବାବୁଙ୍କର ବନ୍ଧୁ ଦୁଇଜଣ । ଟେବୁଲ ଉପରେ ମଦର ବୋତଲ ଦୁଇଟି । ଚିନା ଥାଳିରେ ଦି'ଥାଳି ମାଂସ, ଚାରୋଟି ସୋଡ଼ା ବୋତଲ । ବୋତଲ ଖୋଲିଲା । କାଚଗ୍ଲାସରେ ଢଳାହେଲା । ସୋଡ଼ା ମିଶିଲା । ତା'ପରେ ତାତିଲା ପାଣି ଫୁଟିଲାପରି ସେଇ ଫୁଟନ୍ତା ନାଲିପାଣିର ଶ୍ରାଦ୍ଧ ଆରମ୍ଭ ହେଲା । ଶ୍ୟାମବାବୁଙ୍କ ଗିଲାସରେ ନିଜ ଗିଲାସକୁ ଟିକିଏ ଠୋରେଇ ଦେଇ ପ୍ରମଥବାବୁ ଏହି ନୂତନ ବନ୍ଧୁତାର ଖାତିରିରେ ପାନ କରିବାକୁ ଆରମ୍ଭକଲେ । ବୋତଲଟି ଶେଷ ହେଲାବେଳକୁ ଦେଖାଗଲା ପ୍ରମଥବାବୁ ସେଥିରୁ ବାରପଣ ପକେଇଚନ୍ତି । ତାରି ଅନୁପାତରେ ନାଲଭାଜି ମଧ୍ୟ; କିନ୍ତୁ ତାଙ୍କର ଆଖିରେ ବା ମୁହଁରେ କୌଣସି ରକମ ବିଭଙ୍ଗ ଲକ୍ଷ୍ୟ କରାଯାଇପାରୁନାହିଁ । ଅଥଚ ଶ୍ୟାମବାବୁ ବୋତଲର ମାତ୍ରା ଚାରିପଣ ଖାଇଥିଲେ ମଧ୍ୟ ତାଙ୍କର ଆଖି ନାଲ, ମୁହଁ ଉଜ୍ଜ୍ୱଳ । ସେ ଅନର୍ଗଳ ବକିଯାଉଛନ୍ତି । ପ୍ରମଥବାବୁ ବାଁ ହାତଟା ବଢ଼ାଇ ନ ଜାଣିଲା ପରି ଶ୍ୟାମବାବୁଙ୍କ ସାଙ୍ଗମାନଙ୍କ ଭାଗ ବୋତଲଟି ନିଜଆଡ଼କୁ ଟାଣି ଆଣୁ ଆଣୁ ଏଣେ ନିବିଷ୍ଟମନରେ ତାଙ୍କର କଥାଗୁଡ଼ାକ ଶୁଣିଯାଉଛନ୍ତି । ଶ୍ୟାମବାବୁଙ୍କ ହୃଦୟର ଗୁପ୍ତଚର ଆଜି ଉନ୍ମୁକ୍ତ । ସେ କହିପକାଉଛନ୍ତି, "ଦେଖ ଭାଇ, ସେ ଶଳା ଯୋଗୀଟାଏ, ଭିଖ ମାଗି ପେଟ ପୋଷୁଥିଲା ।"

ପ୍ରମଥବାବୁ 'ଯୋଗୀ' ଶବ୍ଦ ଶୁଣିଲାକ୍ଷଣି ମୂଷା-ଶବ୍ଦ ଶୁଣି ବିରାଡ଼ି କାନ ଠିଆକଲାପରି କାନ ପତେଇ କହିଲେ, "ଯୋଗୀ ? କେଉଁ ଯୋଗୀ କି ?" ଶ୍ୟାମଙ୍କ ମୁହଁରେ ଆଶ୍ଚର୍ଯ୍ୟର ଚିହ୍ନ ଫୁଟିଉଠିଲା । ସେ କହିଲେ, "ଆରେ ତୁମେ ଏତିକି ଜାଣିନାହଁ ଆଜିଯାଏ । ଦାଣ୍ଡରେ ସମସ୍ତେ ଜାଣିପାରିଲେଣି । ସେ ଟୋକୀଟା ପରା ସେ ଯୋଗୀକି ନେଇ ରହୁଚି । ଆରେ, ସେଇ ଯୋଗୀ ମ ? ଯେ ସେଦିନ, ଏଇ ଦିନ ଦଶ ପନ୍ଦର ହବ ଆସି ଆମ ଗାଁରେ ପହଞ୍ଚିଚି ।"

ପ୍ରମଥ : କାହା ଘରେ ଅଛି ସେ ?

ଶ୍ୟାମ : ଆରେ ଧାତ୍, ତୁମେ ତ ନିହାତି ଗାଇ ହେ । ଏଇତକ ଆଜିଯାଏ ଜାଣିନାହଁ ? ସେ ଅଛି ପ୍ରମିଳା ଘରେ । ପ୍ରମିଳା ତାକୁ ରଖିଛି । ତା' ପ୍ରେମରେ ପଡ଼ି ରଖିଛି ଗୋଟାଏ ଯୋଗୀକୁ । ଆଉ ମୋ ପରି ଲୋକ ତା' ଗୋଡ଼ତଳକୁ ଗଲେ ମତେ ମାରଧର କରି ଘଉଡ଼ାଇଦଉଚି ।

ପ୍ରମଥ : ସତେ, ବଡ଼ ବଦ୍‌ମାସ ଟୋକୀ ତ ? ତମଭଳି ସୁପୁରୁଷ ବୀର ପୁରୁଷକୁ ମାଡ଼ମାରି ଘଉଡ଼େଇଦଉଚି, ଏତେ ସାହସ ତା'ର ? ଏତେ ଦିମାକ୍ ? ସେ ଜାଣେନାହିଁ ତୁମର ବନ୍ଧୁ ମୁଁ, ସବୁ ଠିକ୍ କରିଦେବି ।

ଶ୍ୟାମବାବୁଙ୍କ ମିଜାସ ସେତେବେଳେ ପଞ୍ଚମରେ । ତାଙ୍କ ଆଗରେ ସବୁ ଲାଲ, ସବୁ ଖାଲି ଦୁରିଖେଳ । ଏ ସଂସାରରେ ତାଙ୍କ ଛଡ଼ା ଯେ ଆଉ କେହି ମଣିଷ ଅଛି, ଆଉ କେହି ଯେ କୌଣସି ରକମ ସୁଖ ବା ଆନନ୍ଦ ପାଇବାର ହକ୍‌ଦାର, ଏସବୁ କଥା ମୋଟେ ତାଙ୍କ ମନରେ ଧରୁନାହିଁ । ଏପରି ଅବସ୍ଥାରେ ଏ ସଂସାର ପ୍ରତି ଓ ଏ ସଂସାରର ଯାବତୀୟ ଜିନିଷ ପ୍ରତି ତାଙ୍କ ହୃଦୟର ସମସ୍ତ ସ୍ନେହଭଣ୍ଡାର ଉଛୁଳି ପଡୁଚି । ସେ ଉଠିପଡ଼ି ପ୍ରମଥବାବୁଙ୍କୁ କୁଣ୍ଢେଇ ପକାଇବାକୁ ଯାଇ କହିଲେ, "ସତେ ସଙ୍ଗାତ, ସତେ ? ତୁମେ ସବୁ ଠିକ୍ କରିଦବ ?" ପ୍ରମଥବାବୁ କୌଶଳରେ ତାଙ୍କର ସ୍ନେହାଲିଙ୍ଗନରୁ ନିଜକୁ ବଞ୍ଚାଇ କହିଲେ, "ନିଷ୍ଚୟ ।"

ଶ୍ୟାମ : ତୁମେ ପ୍ରମିଳାକୁ ମଙ୍ଗେଇ ମୋ ସାଙ୍ଗରେ ବାହା କରାଇଦବ ?

ପ୍ରମଥ : ଅଲବତ୍ ।

ଶ୍ୟାମ : ତୁମେ ସେ ପାଜି ଯୋଗୀଟାକୁ ବାନ୍ଧି ମୋ ଆଗରେ ଆଣି ପକେଇ ଦବ ?

ପ୍ରମଥ : ଜରୁର୍ ।

ଶ୍ୟାମ : ତୁମେ ସେ ସଇତାନି ଗୁରାବୋଉକୁ ଗାଲକେ ଚୂନ, ଗାଲକେ କାଳି ଦେଇ ଗଧ ଉପରେ ବସାଇ ଦାଣ୍ଡରେ ବୁଲେଇ ଆଣିବ ?

ପ୍ରମଥ : ଆରେ ସେ ତ ଖୁବ୍ ପାରିବି ।

ଶ୍ୟାମବାବୁ ଗୋଡ଼ ହାତ ଛାଡ଼ି ଚୌକି ଉପରେ ବସିପଡ଼ିଲେ । ହାତଟା ତାଙ୍କ ନିଶ ଆଡ଼କୁ, ଅର୍ଥାତ୍ ନିଶ ଯେଉଁଠାରେ ଥାନ୍ତା ସେହିଠାକୁ ଉଠିଗଲା, ଏବଂ ସେ ମୁତୁକି ମୁତୁକି ହସି ନିଶ ମୋଡ଼ିଲେ; ଅର୍ଥାତ୍ ନିଶ ଥିଲେ ମୋଡିଥାନ୍ତେ । ତାଙ୍କର ସମୁଦାୟ ମୁହଁରେ ଗୋଟିଏ ଅତି ମଧୁର ଶାନ୍ତିର ଛାୟା । ସେ ଯେପରି ଏ ସଂସାର ଚାଖଣ୍ଡକର ନବାବ ।

ତାଙ୍କର ଏହି ନବାବିପଣ ଭାଙ୍ଗି ପ୍ରମଥବାବୁ କହିଲେ, "କିନ୍ତୁ, ଭାଇ, ମୋର ଗୋଟିଏ କଥା ମନେହଉଚି ।"

ଶ୍ୟାମବାବୁ : ଆଉ ଗୋଟାଏ କଥା ପୁଣ କ'ଣ ? ଜବାବ ହୋଇଗଲା ପରେ ତୁମେ ପୁଣି ଖସିଖୁସା ଯିବନାଇଁ ତ ?

ପ୍ରମଥ : ଆରେ ଧାତ୍, ସେ କଥା କି ହୁଏ । ତେବେ କହୁଥିଲି କ'ଣ କି, ସେ ପ୍ରମିଳା ଟୋକୀଟାକୁ ବାହା ହେଇ କିଂ ଲାଭ ? ସେ ଯେ ଦୁଷ୍ଟାମି କରିଚି, ତାକୁ ଗୋଟାଏ ହାଡ଼ି କି ପାଣ ସାଙ୍ଗରେ ବାହା କରାଇଦେଲେ...

ଶ୍ୟାମ୍ ; ଆରେ ନା, ନା । ତା'ହେଲେ ତା' ସମ୍ପତ୍ତିବାଡ଼ି, ଟଙ୍କା-କଉଡ଼ି ସବୁ ସେଇ ହାଡ଼ି କି ପାଣ ପାଇଯିବ ଯେ । ଯାଃ, ତୁମେ ତ ଭାରି ଖରାପ ମଣିଷ ମୋର ପାଇବାର ସମ୍ପତ୍ତିକୁ ତୁମେ ହାଡ଼ି କି ପାଣକୁ ଦେଇଦବ ?

ପ୍ରମଥ : ନାଇଁ, ନାଇଁ ଭାଇ, ମୁଁ ଜାଣିନଥିଲି ବୋଲି କହିଲି ସିନା । ଆଚ୍ଛା, ଟିକିଏ ରହ ତ, ମୁଁ କଥାଗୁଡ଼ାକ ଲେଖିପକାଏଁ । ମୁଁ ଭାଇ, ବଡ଼ ମୋଟାବୁଦ୍ଧିଆ । କୌଣସି କଥାକୁ

ପରିଷ୍କାର କରି ଲେଖି ଦି' ଚାରିଥର ନ ପଢ଼ିଲେ ମୋର ମୋଟେ ବୁଝିହୁଏ ନାହିଁ । ତୁମେ କିପରି ଏସବୁ କଥା ମନେ ରଖିଛ ଭାଇ ? ସାବାସ୍ ତୁମ ବୁଦ୍ଧି କି ।

ସେ ଏହିପରି ଗପୁଥାନ୍ତି; ଆଉ ଏଣେ ଲେଖୁଥାନ୍ତି । ଲେଖା ମଝିରେ ସେ ଟିକିଏ ମୁଣ୍ଡ ଟେକି ଚାହିଁଲେ । କହିଲେ, "ଆରେ ତୁମେ ସବୁ ଖାଲି ବସିଚ ଯେ । ଚଲାଅନା । ମଲା, ମଲା, ସବୁ ତ ଶେଷ । ଆରେ ଖେନ୍ଦା, ଖେନ୍ଦା !" ତାଙ୍କର ଚାକର ଖେନ୍ଦା ପହଞ୍ଚିଗଲା । ସେ ତାକୁ କହିଲେ, "ଆରେ ବୋତଲଟା ବାକ୍ସରୁ ନେଇଆ ତ ।" ଖେନ୍ଦା ବୋତଲ ଘେନି ଆସିଲା । ସେ ନିଜ ହାତରେ ପ୍ରାୟ ଅଧଗିଲାସେ ହବ ଢାଳି ଶ୍ୟାମବାବୁଙ୍କ ହାତକୁ ବଢ଼ାଇଦେଲା । ଶ୍ୟାମବାବୁ ଆନନ୍ଦରେ ଅଧୀର ହୋଇ ସେତକ ପକାଇବା ମଧ୍ୟରେ ପ୍ରମଥବାବୁଙ୍କର ଲେଖା ଶେଷ । ପ୍ରମଥବାବୁ କହିଲେ, "ଭାଇ, ତୁମଠାରୁ ଯାହା ସବୁ ଶୁଣିଲି, ମୁଁ ଯଥାସାଧ୍ୟ ଲେଖିଚି । ଖାଲି ତୁମ ନାଁଟା ମନେ ରହିଲା ନାହିଁ । କ'ଣ କହିଥିଲଟି ?"

ଶ୍ୟାମ : ଶ୍ୟାମ ଚଲନ୍ କାନୁନ୍‌ଗୋ ।

ପ୍ରମଥ : କ'ଣ କହୁଚ ଭାଇ, କିଛି ଶୁଣିପାରୁନାହିଁ । ତୁମ ଏ ଜିନିଷଗୁଡ଼ାକ ଭାରି ନିଶା ।

ଶ୍ୟାମ : ହଁ, ହଁ, ଭାଆଆରି ନ୍ନିଶା ।

"ତୁମ ନାଁ'ଟା ଲେଖିଦିଅନ୍ତ ବୋଇଲେ ମୁଁ ପଢ଼ିଯାନ୍ତି ।" କହି ପ୍ରମଥବାବୁ ଝରଣା କଲମଟି ଶ୍ୟାମବାବୁଙ୍କ ଆଡ଼କୁ ବଢ଼ାଇଦେଲେ । ଶ୍ୟାମବାବୁ କଲମଟା ଧରିନେଲେ କୌଣସିମତେ । ପ୍ରମଥବାବୁ ତାଙ୍କ ଲେଖିଥିବା କାଗଜଟାର ଗୋଟାଏ ଅଂଶ ଦେଖେଇ ଦେଲେ । ଶ୍ୟାମବାବୁଙ୍କୁ ଦିଶିଲା ଯେପରି କାଗଜର ସେହି ଜାଗାଟାରେ କ'ଣ ଗୁଡ଼ାଏ ଚିତ୍ର କଟାହୋଇଛି ।

କିନ୍ତୁ ଚିତ୍ରଗୁଡ଼ାକ ତାଙ୍କ ଆଖି ଆଗରେ ଏପରି ନାଚୁଥିଲା ଯେ ସେ ଠଉରେଇ ପାରିଲେନାହିଁ । ତାଙ୍କ ମୁଣ୍ଡ ଠିକ୍ ଥିଲେ ସେ ଦେଖିଥାନ୍ତେ ସେ ଚିତ୍ରଗୁଡ଼ାକ । ଆଉ କିଛି ନୁହେଁ, ଦୁଇଖଣ୍ଡ ଅଣିକିଆ ଡାକଟିକଟ । ଶ୍ୟାମବାବୁ ପଚାରିଲେ, "ଭାଇ, ଏ ଚିତ୍ରଗୁଡ଼ାକ କ'ଣ ?" ପ୍ରମଥବାବୁ କାଗଜ ଉପରେ ଲଇଁପଡ଼ି କହିଲେ, "କାଇଁ ମ, ଚିତ୍ର, ନାଇଁ ତ, ସବୁ ଧଳା, ଖାଳି ଧଳା ।" ଶ୍ୟାମବାବୁ "ହଁ, ହଁ, ସବୁ ଧଳା, ଏଃ ଖାଲି ଧଳା, ହୋ, ହୋ, ହୋ, ଭାରି ଏକ ମଜ୍ଜାର କଥା ଏକା । ଦେ, ଶଳା; ମାର ଶ୍ରୀ ଶ୍ୟାମାଚରଣ ଏଃ କାନୁନ୍‌ଗୋ ।" ଏଁ ସ୍ୱରଟା ଯେପରି ଲମ୍ୱିଯାଉଥିଲା, ହାତଟା ମଧ୍ୟ ସେହିପରି ଲମ୍ୱିଗଲାପରି ହୋଇଗଲାବେଳକୁ ପ୍ରମଥବାବୁ ତାଙ୍କ ହାତଟା ଧରି କଲମଟା ଛଡ଼ାଇନେଲେ । ଶ୍ୟାମବାବୁ ସେହି ସ୍ଥାନରେ ଚୌକି ଉପରେ ଆଉଜିପଡ଼ି ନିଦେଇଗଲେ ।



# ଛବିଶି

ରାଧାନାଥପୁର

୧୦-୫

ପ୍ରିୟତମେ, ତୁମେ ଚିଠି ଦେବାରେ ଏତେ ଡେରି କର କାହିଁକି ସୁଶୀଳା ? ବୋଧହୁଏ ଜୀବନର ନୂଆ ସଙ୍ଗୀଟିଏ ପାଇ ତୁମେ ମତେ—ତୁମର ପୁରୁଣା ସାଙ୍ଗମାନଙ୍କୁ ଭୁଲିଗଲଣି । ଛି, ଛି ସୁଶୀଳା, ଭୁଲିଗଲୁ ସେ ଦିନର ଏତେ କଥା ? ପାସୋରିଦେଲୁ ସେଦିନ କଲେଜ ବୋଡ଼ିଂରେ ତୋର ପ୍ରତିଜ୍ଞା ? ତୁ ଭୁଲିଯାଇପାରୁ; ମାତ୍ର ଜୀବନରେ ମୁଁ ପାରିବି ନାହିଁ । ସାମାନ୍ୟ ଗୋଟାଏ ପୁରୁଷର ମୋହରେ ମୁଁ ମୋର ବାଲ୍ୟ ସଖୀ, ପ୍ରାଣର ସହଚରୀ ସୁଶୀଳାକୁ ଭୁଲିପାରିବି ନାହିଁ । ଯଦି ମୋର ସେ ଶକ୍ତି ଥାଆନ୍ତା, ତା'ହେଲେ ମୁଁ ମୋର ହୃଦୟ ଚିରି ଦେଖାଇଦିଅନ୍ତି । ତାହାର ପ୍ରତ୍ୟେକ ଗ୍ରନ୍ଥି ମଧ୍ୟରେ ଲେଖାଅଛି ମୋର ପ୍ରାଣପ୍ରତିମା ସୁଶୀଳାର ନାମ । ଯଦି ମୋ ରକ୍ତର ସିଞ୍ଜିନୀ ଶବ୍ଦ ଶୁଣାଇପାରନ୍ତି, ତା'ହେଲେ ବୁଝାଇଦିଅନ୍ତି, ହୃଦୟର ପ୍ରତ୍ୟେକ ସ୍ପନ୍ଦନରେ ମୋର ରକ୍ତପ୍ରବାହ ଗାଉଚି ସେଇ ସୁଶୀଳାର ନାମ । ଏ କି ମାୟା ଲଗାଇଦେଇଚୁ, ଏ କେଉଁ ଗାରଡ଼ି ମନ୍ତ୍ରରେ ମତେ ଏପରି ଅବଶ କରି ରଖିଚୁ, କହ ଦେଖି ପ୍ରିୟତମେ ? ମନୁଷ୍ୟ ପୁଣି ମନୁଷ୍ୟକୁ ଏପରି ଭଲପାଏ ? ଜଣେ ଲୋକର ଅଦର୍ଶନରେ ପୁଣି ଆଉ ଜଣଙ୍କର ମନ ଏପରି ଉଦ୍‌ବେଳିତ ହୁଏ ? ଆଉ ନିଷ୍ଠୁରା, ରାକ୍ଷସୀ ତୁ, ତୋର ସେଦିନର ସମସ୍ତ ପ୍ରତିଜ୍ଞା ଭୁଲି ଗୋଟାଏ ଅଜଣା ପୁରୁଷର ମୋହରେ ତୋର ପ୍ରେମାନୁରାଗିଣୀ ଏ ଦାସୀକୁ ଏପରି ହତାଦର କରିପାରୁ । ହଉ, ତୋର ଇଚ୍ଛା, ତୋର ଧର୍ମ ତୁ ମତେ ଫୋପାଡ଼ିଦେଲେ, ମୁଁ ତତେ ବାରଣ କରିପାରିବି ନାହିଁ । ସେ ତ ତୋର ଦୟା, ତୋର ଧର୍ମ; କିନ୍ତୁ ମୁଁ କ'ଣ କରିବି ଜାଣୁ । ବୃକ୍ଷର ଚେର ଯେପରି ମୃତ୍ତିକାକୁ ଆଶ୍ଳେଷି ଧରିରଖେ, ମୁଁ ସେହିପରି ତତେ ଧରିରଖିବି; ତୁ ଗୋଡ଼ଘେନି ଫିଙ୍ଗିଦେଲେ ମଧ୍ୟ, ମୁଁ ପୁଣି ତୋର ସେହି ଚରଣକମଳ ଯୋଡ଼ିକୁ ଭିଡ଼ିଧରିବି ମୋର ଏହି ସନ୍ତାପିତ, ପ୍ରେମ-ପିପାସିତ ହୃଦୟରେ ।

ମୁଁ ଜାଣେ ତତେ ଏ କଥାଗୁଡ଼ିକ ଭଲ ଲାଗୁନଥିବ । ତୁ ହୁଏତ ମନେ ମନେ ବେଜାର ହୋଇ ଭାବୁଥିବୁ ଏଗୁଡ଼ାକ ଖାଲି ପାଗଳାର ପ୍ରଳାପ । ତୁ ହୁଏତ ଅନ୍ୟ କାହାର ପ୍ରେମ ସମ୍ଭାଷଣ ଶୁଣିବା ପାଇଁ ମୋର ଏ ଚିଠିଟା ନ ପଢ଼ି ଚିରିପକାଇବୁ; କିନ୍ତୁ କ'ଣ କରିବି ପ୍ରିୟତମେ, ହୃଦୟର ଏ କଥାଗୁଡ଼ିକ ଖୋଲି ନକହି ସ୍ଥିର ହୋଇପାରିଲି ନାହିଁ ।

ଆଜି ଗୋଟାଏ ଭାରି ମଜା ହୋଇଯାଇଚି । ଏଇ ଦି'ପହରେ ଗୋଟାଏ ଯୋଗୀ ଆସି ଦାଣ୍ଡରେ ଗୀତ ଗାଉଥିଲା । ଦେଖିଲି ସେ ଯୋଗୀଗୀତ ନୁହେଁ, ଶିକ୍ଷିତ ଲୋକ ତୁଣ୍ଡରେ ମାର୍ଜିତ ଭାଷାର ସଙ୍ଗୀତ । ମୋର କୌତୁହଳ ହେଲା । ମୁଁ ଯୋଗୀକୁ ଡାକିଲି । ତାକୁ ଗୀତ ଗାଇବାକୁ କହିଲି । ସେ ଗାଇଲା କ'ଣ ଜାଣୁ ? ସେଦିନ ତୁମ ବୈଠକଖାନାରେ ଧୋଇବାବୁ ସେ ଗୀତଟି ଗାଇଥିଲେ, ସେଇ ଗୀତଟି ସେହିପରି ଢଙ୍ଗ, ରଙ୍ଗ, ତାନ, ମୂର୍ଚ୍ଛନା ଦେଇ ଗାଇଲା । ଲୋକଟା ଯେ ଶିକ୍ଷିତ ସେ ବିଷୟରେ ମୋର ସନ୍ଦେହ ରହିଲା ନାହିଁ । ଭାବିଲି

ବୋଧହୁଏ ଦୁର୍ଭାଗ୍ୟବଶରୁ ଏପରି ଅବସ୍ଥାକୁ ଆସିଚି । ଦୟାହେଲା, ମୁଁ ତାକୁ ମୋର ଗୁମାସ୍ତା ପଦରେ ବାହେଲ କଲି । ଗୋରାବୋଉ ମାଉସୀ ମୋ ଉପରେ ଭାରି ଖପା । କହେ "ତୋର କି ଖଣ୍ଡ ଜଣାନାହିଁ, ତାକୁ ଘରେ ରଖିଲୁ କାହିଁକି ?" ମୁଁ କ'ଣ ଭୁଲ କରିଚି ସୁଶୀଳା ? ପ୍ରକୃତରେ ବର୍ତ୍ତମାନ ଭାବୁଚି, କାମଟା ବୋଧହୁଏ ଠିକ୍ ହୋଇନାହିଁ । ଯାହା ହଉ, କରି ତ ସାରିଲିଣି, ଆଉ ପଛଘୁଞ୍ଚା ଦିଏଁ କିପରି ? ଦେଖାଯାଉ, ଯଦି ସେପରି କିଛି ଆଚରଣ ତା'ର ଦେଖିବି, ତା'ହେଲେ ବାହାର କରିଦେବାକୁ କେତେ କ୍ଷଣ ? ରହିଲି, ମନେ କରୁଥିବୁ, ଗାଳି ଦଉଥିବୁ, ମୋର ଶତ ଚୁମ୍ବନ ଗ୍ରହଣ କରିବୁ ।

ତୋର
ପ୍ରମିଳା ।

କଟକ
ତା ୧-୪

ସ୍ନେହର ପେମି,

ତୁ ଯେ ମତେ ଭଲପାଉ ସେ କଥା କ'ଣ ମୁଁ ଜାଣେ ନାହିଁ ? ଆଉ ମୁଁ ଯେ ତତେ ଭଲ ପାଏନାହିଁ, ଆଉ ଜଣେ ପୁରୁଷର ପ୍ରେମରେ ପଡ଼ି ତତେ ଭୁଲିଗଲିଣି ଇତ୍ୟାଦି ତୁ ଲେଖିଚୁ, ସେ ସବୁ ତୋର ମସ୍ତବଡ଼ ପାଗଳାମି । ମୁଁ ନିଶ୍ଚୟ ତତେ ପାସୋରି ଦେଇନାହିଁ । ମୁଁ ଅବଶ୍ୟ ତତେ ଭଲପାଏଁ । ଭଲପାଇବା ମାପିବା ପାଇଁ ଯଦି ସେର ତରାଜୁ ଥାନ୍ତା, ତା'ହେଲେ ଲୋକଠୋକ ହିସାବ କରି କହିଦିଅନ୍ତି, ମୁଁ ତତେ କେତେ ସେର ବା କେତେ ମାଣ ଭଲପାଏ । ତେବେ ଏତିକି କହିଲେ ଯଥେଷ୍ଟ ହେବ ବୋଧହୁଏ ଯେ ମୋର ଭାଇ ନରି ବା ଭଉଣୀ ସ୍ୱାମୀକୁ ମୁଁ ଯେତେ ଭଲପାଏଁ, ତତେ ସେହି ପରିମାଣରେ ସ୍ନେହକରେ । ଆଉ ସ୍ନେହ ଅନେକ ପେମି; ସେ ଭରା ସମୁଦ୍ରର ଉଭାନ ଜୁଆର ! ବେଳେବେଳେ ମୁଁ ଭାବେ, ଏଇ ଛୋଟ ହୃଦୟଟିରେ ଏତେ ସ୍ନେହ ଧରେ କିପରି ? ତେବେ ୟା ମତେ ସ୍ୱୀକାର କରିବାକୁ ହବ ଯେ ତୁମ ସମସ୍ତଙ୍କ ଅପେକ୍ଷା ଖୁବ୍ ବେଶି ମୁଁ ଆଉ ଜଣଙ୍କୁ ସ୍ନେହ କରେ—ସେ ମୋର ସ୍ୱାମୀ, ମୋର ଦେବତା, ମୋର ଇହକାଳ, ପରକାଳର ଏକମାତ୍ର ଆଧାର । ମୋର ଦେହ, ମନ, ପ୍ରାଣ ସବୁ ତାଙ୍କର । ମୁଁ ଯଦି ତୁମକୁ ସବୁ ଅବାଧରେ ସ୍ନେହ କରୁଥାଏ, ତା'ହେଲେ ସେ ସବୁ ତାଙ୍କରି ଅନୁମତି ନେଇ ତାଙ୍କରି ଦୟାବଶରୁ । ତୁ ବୋଧହୁଏ ରାଗ କରିବୁ ଏହା ଶୁଣି । ତୁ ତ ରାଗ କରିସାରିଚୁ । ତାଙ୍କ ପ୍ରତି ମୋର ସ୍ନେହ ଦେଖି ତୁ କେତେ ନାକ ଟେକିବୁ, ଏବେ ମଧ୍ୟ ପିଲାଦିନର ସେ ପ୍ରତିଜ୍ଞା ମନେ କରାଇଦେଇଚୁ; କିନ୍ତୁ ଭାବ, ସେ ତ ପାଠପଢୁଆ ପିଲାର ଗୋଟାଏ ଧୂଳିଖେଳ । ସେ କି ସବୁଦିନ ସହିପାରେ । ପିଲାଦିନର ଧୂଳିଖେଳ ଛଡ଼ା ଏ ସଂସାରରେ ମନୁଷ୍ୟର ଏ ଜୀବନର ଅନେକ ଭଲ ସୁଖ ଓ ଆମୋଦ ଅଛି । ପିଲାଦିନର ସେ ଧୂଳିଖେଳ ସୁଖକୁ ଧରି ଜୀବନର ଏହି ବଡ଼ ବଡ଼ କଥା, ବେଶି ବେଶି ଆମୋଦଗୁଡ଼ିକୁ ଛାଡ଼ିବା ବଡ଼ରକମ ବୋକାମି । ମୁଁ ବର୍ତ୍ତମାନ ସେ କଥା ଅନୁଭବ କରୁଚି । ତୋର ତ ଦିନ ଆସିବ, ତୁ ମଧ୍ୟ ଦିନେ ତାହା ଅନୁଭବ କରିବୁ । ମୋର ତ ଯେପରି ମନେହଉଚି, ତୋର ଦିନ ଆସିଗଲାଣି ।

ସେ ଯୋଗୀଟି କିଏ ଗୋ ? ଦେଖ, ଦେଖ ଏପରି ମମତା ଲାଗିଗଲା କିପରି ମ ? ଏ କ'ଣ, ଆଖି ଆଖି ଲାଖିରହିଲା ଯେ ଦିନ୍ନ ? ଦେଖି ପେମି, ଖାଲି ଗୋରାବୋଉ ମାଉସୀ ନୁହନ୍ତି, ମୁଁ ମଧ୍ୟ କହୁଚି ସେ ଚୋର କି ଖଣ୍ଡ ଶେଷରେ ଯେପରି ତୋର ସର୍ବସ୍ୱ ଚୋରି ନ କରେ । ସତରେ, ମୁଁ ବଡ଼ ଆଶ୍ଚର୍ଯ୍ୟ ହେଲି ଶୁଣି । ଧୋଇବାବୁଙ୍କର ସେ ଗୀତଟି ତାଙ୍କର ନିଜର ଲୋକଟା ନିତାନ୍ତ ହାମ୍‌ବଡ଼ା ବିନା, ସେ ତା' ନିଜ ତିଆରି ଗୀତ ଛଡ଼ା ଆଉ କିଛି ଗାଏନାହିଁ । ଯେମିତିକି ଏ ବିଶ୍ୱ-ସଂସାରରେ ସେ ଏକା କବି, ତା'ର ତ କୌଣସି ଗୀତ ଛପା ହୋଇନାହିଁ କି ତା' ଗୀତରେ ଏପରି କିଛି ବିଶେଷ ମାଧୁରୀ ନାହିଁ ଯେ ଶୁଣି କେହି ମନେରଖିବାକୁ କି ଆଉ ଥରେ ଶୁଣିବାକୁ ଇଚ୍ଛା କରିବ । ସେ ଗୀତ ଏ ଯୋଗୀଟା ଜାଣିଲା କାହୁଁ ? ମୋ ମନରେ ଗୋଟାଏ ସନ୍ଦେହ ହେଉଛି । ସେ କଥା ଏଇଲାଗେ କହିବି ନାହିଁ । ତୋ ଯୋଗୀ କଥା ଶୁଣିବାକୁ ଭାରି ଉତ୍କଣ୍ଠା ଆସିଲାଣି । ଆର ଚିଠିରେ ସବୁ ଖୋଲି ଲେଖିବୁ ।

ଯାଏ ଲୋ ଭଉଣୀ ! ସେ କଚେରିରୁ ଫେରିଆସିଲେଣି । ଆଜି କ'ଣ ହୋଇଚି କେଜାଣି ମୁହଁଟି କାହିଁକି ଶୁଖିଲା ଦିଶୁଛି । ଯାଏଁ ଦେଖେ କ'ଣ ହେଲା ।

ତୋର
ସୁଶୀ

ରାଧାନାଥପୁର
୨୨-୫

ମା',

ଏ ପେଷ ତ ମନ୍ଦ ନୁହେଁ; ଠିକ୍ ଗୋଟିଏ ଗୋଲକଧନ୍ଦା । ରାମ ରାମ, ଗୋଡ଼ିମାଟିର ତିଆରି ଏଇ ପଇସା ପୁଣି ମନୁଷ୍ୟକୁ ଏପରି ପଶୁ କରାଏ ନା ? ନା, ମା ! ଏ ଯୋଗୀର ଜୀବନ ବରଂ ଭଲ; କିନ୍ତୁ ସମ୍ପତ୍ତିବାଡ଼ି, ବିଷୟ-ଆଶୟ ଖାଲି ଅନର୍ଥ ମା' ! ଖାଲି ପାପ । ଶାନ୍ତି ନାହିଁ, ସୁଖ ନାହିଁ, ଆରାମ ନାହିଁ; ଖାଲି ହା ଟଙ୍କା, ହା ଟଙ୍କା—ଜୀବନଟା ଗୋଟାଏ ମସ୍ତବଡ଼ ହାହାକାର । ଆମର ଏ ଜମିବାଡ଼ି ବିଷୟ-ଆଶୟଗୁଡ଼ାକୁ ବିକି ଗରିବଙ୍କୁ ବାଣ୍ଟି ଦେଲେ ? ନା, ନା, ତା' ନୁହେଁ । ବିଚାରା ନିରୀହ ଲୋକଗୁଡ଼ିକ, ତାଙ୍କ ମୁଣ୍ଡରେ ଏ ପାପ ଅଜାଡ଼ି ଦେବ କାହିଁକି ? ନାଁ, ଆଚ୍ଛା ସମୁଦ୍ରଭିତରେ ନେଇ ଫିଙ୍ଗିଦେଇ ଆସିଲେ କି ହୁଏନାହିଁ ମା ! ବେଶ୍ ତ୍ରାହି ମିଳନ୍ତା । ତୁ ଅଛୁ ମୁଁ ଅଛି, ଏଠି ଗୋରାବୋଉ ମାଉସୀ ଅଛନ୍ତି ଓ ମୋର ସାଂନ୍ତାଣୀ ଅଛନ୍ତି; ଆଉ ଦରକାର କ'ଣ । ଆମେ କେତେଜଣ କ'ଣ ପରସ୍ପର ପ୍ରତି ଯଥେଷ୍ଟ ନୋହୁ ।

ଦେଖ୍ ଦେଖି, ଏ ଲୋକଟାର ଗୋଟିଏ ସ୍ତ୍ରୀ ଅଛି, ମୁଁ ତା'ର ସ୍ତ୍ରୀକୁ ଦେଖିଛି । କେତେ ସୁନ୍ଦର ପିଲାଟିଏ, ଗୋଟିଏ ଚାଉଳରେ ଗଢ଼ା । ପୁଣି ଗୋଟିଏ ସ୍ୱର୍ଗ-ଅପ୍‌ସରୀ ପରି ପିଟାସୁନାର ଲବଣି ପ୍ରତିମା ପୁଅ ଅଛି । ତଥାପି ଏ ଚଣ୍ଡାଳଟା ଖାଲି ସମ୍ପତ୍ତିଲୋଭରେ ଆଉ ଗୋଟିଏ ଯୁବତୀକୁ ବିବାହ କରିବାକୁ କୂଟ କରୁଚି । ଆଉ ସେ ବି ଏ ମର୍ତ୍ତ୍ୟପୁରୀର ଯୁବତୀ ମା' ! ସେ ଦେବୀ, ସେ ଦେବୀ । ତାଙ୍କର ମନରେ କେତେ କଷ୍ଟ ହେଉଛି । ସେ କେତେ କାନ୍ଦୁଛନ୍ତି; କିନ୍ତୁ

ସେ ରାକ୍ଷସ ବି ଟିକିଏ ଫେରିଚାହୁଁନି ସେସବୁ ପ୍ରତି । ତାଙ୍କର ମା' ପୁଣି ଏ ରାକ୍ଷସଟାକୁ ତାଙ୍କର ଅଭିଭାବକ କରିଯାଇଛନ୍ତି । ବିଶ୍ୱାସରେ ବିଷ ଖୋଇବାକୁ ବି ଟିକିଏ ସଙ୍କୋଚ ନାହିଁ । ବେଳେବେଳେ ମନେହୁଏ ଏ ହାତୁଡ଼ିଟା ଧରି ତା' ମୁଣ୍ଡ ଫଟେଇଦେବି । ଦିଅନ୍ତି ମଧ୍ୟ; କିନ୍ତୁ ଜିନିଷଟା ବଡ଼ ଅସୁନ୍ଦର । ତା'ର ମୁଣ୍ଡଟା ଫାଟି ରକ୍ତବୋଳା ମୁହଁରେ ଆଁକରି ରହିଥିବ, ଇସ୍ କି କଦର୍ଯ୍ୟ । ନା, ସେ ହେବ ନାହିଁ ।

ଯାଏ ମା, ଗୋରାବୋଉ ମାଉସୀଟା ଆସୁଚି । ଚିଠି ଲେଖିବାର ଦେଖିଲେ କ'ଣ ଭାବିବ ।

ତୋର
ଧୋଇ

କଟକ
୨୮-୬

ସ୍ନେହର ପେମି,

ଖାଲି ମନେ କରେଇଦେଉଚି ମୋ ଚିଠିର ଜବାବ ପ୍ରାୟ ମାସେହେଲା ପାଇନାହିଁ । ମୁଁ ନ ହେଲା, ମୋର ବାହାକଲା ସ୍ୱାମୀକୁ ନେଇ ଭୋଳ ହୋଇଗଲି । ତୁ କେଉଁ ଅଛଦରାକୁ ଘେନି ଭୋଳ ଲୋ, ଖଳବୀ ?

ତୋର
ସୁଶୀ

ରାଧାନାଥପୁର
୧-୭

ସ୍ନେହର ସୁଶୀ,

ଚିଠି ତ ପାଇଥିଲି; କିନ୍ତୁ ଉତ୍ତର ଦେବାକୁ ମନ ହେଉ ନଥିଲା । ତୁ ଯେ ଗୋଟାଏ ପୁରୁଷକୁ ପାଇଚୁ ବୋଲି ଏ ଜଗତର ଆଉ ସମସ୍ତେ ଖରାପ ହୋଇଯିବେ; ସେ କ'ଣ କମ୍ ବଡ଼େଇ ! ବିଶେଷତଃ ଧୋଇବାବୁ, ମହାପୁରୁଷ; ଓଡ଼ିଆମାନଙ୍କ ମଧ୍ୟରେ ଅସାଧାରଣ କୃତି ଓ ଧୀ-ସମ୍ପନ୍ନ । ତାଙ୍କୁ ଏପରି ଭାବରେ ତାଚ୍ଛଲ୍ୟ କରିବା ଖାଲି ପାପ ନୁହେଁ; ସେ ତାଚ୍ଛଲ୍ୟ ଯେ ଶୁଣିବ ତା'ର ମଧ୍ୟ ପାପ । ତାଙ୍କର କବିତାରେ ମାଧୁରୀ ନାହିଁ, ତୁ କହୁ ? ଓଡ଼ିଶାରେ ଅତି କମ୍ ସଙ୍ଗୀତକାର ଅଛନ୍ତି, ଯେ ତାଙ୍କ ସମାନ କବିତା ଲେଖିପାରିବେ । ତୁ ପାପୀ, ଆଉ ମତେ ମଧ୍ୟ ସେହି ପାପରେ ଜଡ଼େଇବାକୁ ଚେଷ୍ଟା କରୁଚୁ । ଆଉ ଦିନେ ଯଦି ସେପରି କିଛି ଲେଖୁ, ତାହେଲେ ମୁଁ ପ୍ରକୃତରେ ଆଉ ତୋର ଚିଠିପତ୍ର ପଢ଼ିବି ନାହିଁ । ସତରେ, ମୁଁ ଏ କେତେଦିନ ହେଲା ବଡ଼ ବ୍ୟସ୍ତ ଥିଲି; ଏ ଯୋଗୀଟା ମତେ ବଡ଼ କନ୍ଦେଇଲାଣି । ଏ କିଏ ଗୋ ? ଖାଲି ଭଲ ଗୀତ ଗାଇଜାଣେ, ତା' ନୁହେଁ; ଭଲ ଚିତ୍ରକରି ଜାଣେ । ସେଦିନ ଗୋରାବୋଉ ମାଉସୀଙ୍କର ଗୋଟାଏ ଚିତ୍ର ଆଙ୍କିଥିଲା, ଯେ ଠିକ୍ ଅବିକଳ ଜୀବନ୍ତ ଛବି । ଇଂରେଜୀ ଜାଣେ

ଗୋ ସେ; କିନ୍ତୁ ବଡ଼ ଦୁଷ୍ଟ । କଥାରେ କଥାରେ ମୋତେ ବଡ଼ ବିରକ୍ତ କରୁଚି । ମୁଁ ଠିକ୍ କରିନେଇସାରିଲିଣି, ଏ ଯୋଗୀ ନୁହେଁ । ମାୟା ବେଶ । କୌଣସି ଭଲଲୋକ ବଡ଼ଲୋକ ଘରର ପୁଅ । ସେ ମୋତେ ଏପରି ଜଳେଇବାକୁ ଏଠିକି କେନେ ଆସିଲା ଗୋ ? ଆଉ ଆଉ ଲେଖିବାକୁ ମନ ହଉନାହିଁ । ସେଇଟା ଆଜି ସକାଳୁ ହେଇଟି ଆସୁଚି ବୋଲି କହି ଗଲାଣି ଯେ ଏତେବେଳଯାଏଁ ଫେରିବାକୁ ନାହିଁ ।

ତୋର
ପେମି

ମା' !

ବଡ଼ ଜରୁରୀ ଦରକାର । ପାଞ୍ଚ ହଜାର ଟଙ୍କା ପ୍ରଫୁଲ୍ଲ ହାତରେ ପଠାଇବ । ମୁଁ ୨୫ ତାରିଖ ଦିନ ବାଲେଶ୍ୱର ଷ୍ଟେସନକୁ ଯାଇଥିବି । ସେହିଠାରେ ତା'ଠାରୁ ନେବି । ମୁଁ ଏ ଟଙ୍କା ଦିନେ ଶୁଝିବି; କିନ୍ତୁ ଆଜି ବଡ଼ ଦରକାର ।

ତୁମର ସଦାଧୀନ
ଯୋଇ

●

## ସତେଇଶି

"ଅଳପେଇଷେ, ରାଣ୍ଡୁଏ, ଭାଡୁଏ, ଏତେ ଗର୍ବ ! ଛୋଟ ମୁହଁରେ ବଡ଼କଥା ! ଝାଡୁ ପାହାରରେ ପିଠିରୁ ଛାଲ ଉତାରିଦେବି । ଅଛଦରେ, ଅଳପେଇଷେ, ମୋ ଆଗରେ କହନ୍ତେ କି, ତାଙ୍କ ଛାତିରେ ବସି ଜଭଟାମାନ ଯଦି ଓପାଡ଼ି ନ ଆଣନ୍ତି..."ଇତି ।

ଗୋରାବୋଉ ମାଉସୀ ସେ ବାହାରପଟ ଅଗଣାରେ ଯାଉଚନ୍ତି, ଆସୁଚନ୍ତି, ଗରଗର ହଉଚନ୍ତି, ଭାଡୁରୁଭାଡୁରୁ ହଉଚନ୍ତି, ଯେପରି ପଞ୍ଜରାରେ ବାଘୁଣୀ ଧରାପଡ଼ିଚି । ସାମାନ୍ୟ ଦୂରରେ ଯୋଗୀ ଠିଆହୋଇ ମୁରୁକି ମୁରୁକି ହସୁଚନ୍ତି । ଏହିପରି ପାଞ୍ଚ-ସାତ ମିନିଟ୍ ଗଲାପରେ ଯୋଗୀ ଡାକି କହିଲେ, "କି ଗୋରାବୋଉ ମାଉସୀ, କଥା କ'ଣ ? ଆଜି କାହା ଉପରେ ଘୋଷା କରି ଠାକୁରାଣୀ ଉଭା ହୋଇଚନ୍ତି ।" ଗୋରାବୋଉ ଚାବୁକ ପାହାର ଖାଇ ବାଘୁଣୀ ବୁଲିପଡ଼ିଲା ପରି ବୁଲିପଡ଼ିଲେ । କହିଲେ, "ତୁଇ କାଠେଇଖିଆ ତ ସବୁ ଅନିଷ୍ଟର ମୂଳ ।" ମୋର ସୁନାର ଘର ତ ତୁଇ ଭାଙ୍ଗିବା ଉପରେ ବସିଲୁଣି ।"

ଯୋଗୀଙ୍କର ମୁହଁ କଳାକାଠ ପଡ଼ିଗଲା । ସେ ଚକିତ ହୋଇ କହିଲେ, "ମୋର ଦୋଷ କ'ଣ ମାଉସୀ !"

ଗୋରାବୋଉ : ତୋର ନୁହେଁ ତ ଆଉ କାହାର ? ଲୋକେ, ଏ ଗାଁର ଭାଡୁଆଗୁଡ଼ାକ କ'ଣ କହୁଚନ୍ତି ଶୁଣିଲୁ । କିମିତି ୟାଙ୍କ ପେଟରେ ଭାତ ହଜମ ହେଉଚି ଲୋ, ମା ! ପାଟିରେ

ମାଛକଣ୍ଟା ଲାଗି ମରୁନାହାନ୍ତି । ସତୀ ଟୋକୀଟା ମୋର, କିଛି ଜାଣେନାହିଁ ସେ, ତା' ନାମରେ ପୁଣି ଏଡ଼େ ବଡ଼ କଥା ।

ଯୋଗୀଙ୍କର ଆଖି ଝଲସି ଉଠିଲା । ମୁହଁ ନାଲି ହୋଇଗଲା । ସେ କହିଲେ, "କ'ଣ କ'ଣ, କହ ଦେଖି ?"

ଗୋରାବୋଉ : କହିବି ଆଉ କ'ଣ ? ତୋ ମୁଣ୍ଡ ଆଉ ମୋ ଗଣ୍ଡି । ତୁ ନ ଆସିଥିଲେ ମୋ ଝିଅଟା କାହିଁକି ଏତେ କଥା ଶୁଣନ୍ତା ? ଯିମିତି ଛୋଟଲୋକ, ସିମିତି ଛୋଟ କଥା । ତାଙ୍କ ମାଇପମାନେ ତ ହାଡ଼ି ନାହିଁ, ପାଣ ନାହିଁ, ଦିନ ଦି'ପହରେ ଗୋଟା ଗୋଟା ଗୋଟେଇ ପକଉଚନ୍ତି; ସେ କାହିଁକି ଯୋଗୀଟା କଥା ନଭାବିବ ମ ।

ଯୋଗୀ ଏତେବେଳକୁ ପ୍ରକୃତିସ୍ଥ ହେଲେଣି । ତାଙ୍କ ଆଖିରୁ ନିଆଁବାଣ ବାହାରୁଚି ସତ, ମୁହଁଟା ଶୁଖିଯାଇଚି ସତ; କିନ୍ତୁ ସ୍ୱରଟା ଧୀର, ସ୍ଥିର । ସେ କହିଲେ, "ଶୁଣ ମାଉସୀ, ଏ ପାଟିତୁଣ୍ଡ କରିବା ବେଳ ନୁହେଁ । ତାଙ୍କ କାନରେ ପଡ଼ିବ ତ, ତାଙ୍କ ମନରେ କେତେ କଷ୍ଟ ହେବ୍ । ମତେ ଟିକିଏ ଫିଟାଇ କହ ତ, ତୁମକୁ ଏକଥା କିଏ କହିଲା ?" ଯୋଗୀର ନିଷ୍କଳ ଭାବ ଦେଖି ମାଉସୀ ମଧ୍ୟ ଆସ୍ତେ ଆସ୍ତେ ସ୍ଥିର ହୋଇ ଆସୁଥିଲେ । ସେ କହିଲେ, "ମୁଁ ଆର ସାହିକୁ ଯାଇଥିଲି ଯେ, ବିନଦିଆ–ମା', ଶ୍ୟାମାବୋହୁ, ହରିଆ ଭାଉଜ ଏମାନେ ସବୁ ବସି କଥା ହେଉଥିଲେ । ମୋ କାନରେ ପଡ଼ିଗଲା । ସେମାନେ କହୁଥିଲେ, ଶ୍ୟାମବାବୁ କୁଠି ତା' ଆଖିରେ ଦେଖିକରି ଯାଇଚି, ତୁ ଆଉ ପେମି ଗୋଟାଏ ଘରେ..."

"ଥାଉ, ଥାଉ ।" କହି ଯୋଗୀ ଭୁଷ୍ ଭୁଷ୍ ମାଡ଼ିଗଲେ ଗୁହାଳଘର ଆଡ଼କୁ । ସେଠାରେ ଗୋଟାଏ ଗୋରୁବାଡ଼ିଆ ପାଞ୍ଚଣ ପଡ଼ିଥିଲା; ସେଉଟାକୁ ହାତରେ ଧରି ସେ ଏକମୁହାଁ ଚାଲିଲେ ଶ୍ୟାମବାବୁଙ୍କ ଘରକୁ । ଶ୍ୟାମବାବୁ ସେତେବେଳେ ଖାଇପିଇ ସାରି ତାଙ୍କ ଦାଣ୍ଡଘରେ ଖଟିଆ ଉପରେ ଗଡ଼ପଡ଼ ହଉଚନ୍ତି । ଯୋଗୀ ଅଦିନିଆ ବତାସ ପରି ଦୁଆରଟାକୁ ଭୁଷି କରି ମେଲେଇ ଘର ଭିତରକୁ ପଶିଗଲେ ଓ ଉଭୟ ତରଫର ଦୁଆର ବନ୍ଦ କରିଦେଲେ । ଶ୍ୟାମବାବୁ ଯୋଗୀକୁ ଏପରିଭାବରେ ଆସିବାର ଦେଖି ଚମକି ଖଟିଆ ଉପରେ ବସିପଡ଼ିଥିଲେ । ଦୁଆର ସବୁ ବନ୍ଦ ହେବାର ଓ ବାଆଢି ହାତରେ ସେ ପାଞ୍ଚଣଟା ଦେଖି କି ଗୋଟାଏ ଅଜଣା ବିପଦର ଆଶଙ୍କାରେ ତାଙ୍କର ଓଠ ଶୁଖିଗଲା । ସେ ଜିଭରେ ଓଠ ଦୁଇଟା ଓଦା କରିଦେଇ କହିଲେ, "ତୁ କିଏରେ ? ମୋର ବିନା ଅନୁମତିରେ..."

ଯୋଗୀ : ଚୁପ୍‌କର । ପାଟି କରିବୁ ତ, ତୋ ତୋଟି ଚିପି ଏଇ ଶେଣିରୁ ଝୁଲାଇ ଦେବି । ସେଥିକି ଯଦି ଡିଆର, ତା'ହେଲେ ତୋର ଯେତେ ଯେତେ ଖୁସି, ପାଟିକରିପାରୁ ।

ଶ୍ୟାମବାବୁଙ୍କର ଆଖି ଦୁଇଟି ଜଡ଼ିଖିଆ ସାପ ପରି ଯୋଗୀ ହାତର ପାଞ୍ଚଣ ଆଡ଼କୁ ରହିଚି । ଯୋଗୀର କଥା ତାଙ୍କ ମନକୁ ବେଶ୍ ପାଇଲା । ସେ ଆଉ ପାଟିତୁଣ୍ଡ ନକରି ସୁନାପିଲାଟି ପରି ଖଟ ଉପରେ ବସିରହିଲେ । ଯୋଗୀ ତାଙ୍କ ଆଡ଼କୁ ଚାଲ–ଚାଲ ହୋଇ ଯାଇ ତାଙ୍କର କାନୁଟା ଧରି କହିଲେ, "ଦେଖ, ତୁ ଗାଁରେ କହିଚୁ ଯେ ପ୍ରମିଳା ଦେବୀ ଓ ମୁଁ ଗୋଟାଏ ଘରେ

ଥିବାର ତୁ ଦେଖିଚୁ ?" କହୁ କହୁ କାନ ଉପରେ ତାଙ୍କ ହାତର ଜୋର ଟିକିଏ ବେଶି ପଡ଼ିଗଲା ବୋଧହୁଏ । ଶ୍ୟାମବାବୁ ଡାକ ଛାଡ଼ିଲେ, "ଆରେ ଛାଡ଼, ଛାଡ଼, ବଡ଼ କାଟୁଚି ଯେ । ହାତ ଓ କାନ ଛାଡ଼ ।" ଯୋଇବାବୁ ଛାଡ଼ିଦେଲେ । ପୁଣି ପଚାରିଲେ, "କହିଥିଲୁ ?"

ଶ୍ୟାମବାବୁ : "ଏ, ମୁଁ, ନା, ମୁଁ ତ—ନା, ନା, ମୋର ନାହିଁ, ଭାଇ, ଜୁହାର ହଉଚି, ହଁ, ମୁଁ ମାନୁଚି, ମୁଁ କହିଚି, ମୋର ଦୋଷ, ମୋର କସୁର, କାନ ମୋଡ଼ି ହଉଚି, ମୁଁ ଆଉ ଏପରି କହିବିନାହିଁ ।"

ଯୋଗୀ ଖଡେଇ ହୋଇ କହିଲେ, "କ-ହି-ବି-ନା-ହିଁ । ଗାଁଯାକ ହାଟ ବସିସାରିଲାଣି । ଆଉ ତୁ ନ କହିଲେ କିସ ହବ ? ଯାହା କରିଚୁ ତା'ର କି ପ୍ରତିକାର କରିବୁ ବୋଲି ଭାବିଚୁ ?"

ଶ୍ୟାମ : ଯାହା କହିବୁ ଭାଇ, ମୁଁ ତା' କରିବି ।

ଯୋଗୀ : ଶୁଣ, ମୋ ସା'ନ୍ତାଣୀଙ୍କର ମା' ତତେ ତାଙ୍କର ଟ୍ରଷ୍ଟି କରାଯାଇଥିଲେ ଯେ ତୁ ତାଙ୍କର ସମ୍ପତ୍ତି ଦେଖାଶୁଣା କରିବୁ ବୋଲି; କିନ୍ତୁ ତୁ ଯେପରି ପାଷଣ୍ଡ, ତାଙ୍କ ବିଶ୍ୱାସର ଅପବ୍ୟବହାର କରି ତୁ ମୋ ସା'ନ୍ତାଣୀଙ୍କ ସମ୍ପତ୍ତି ସବୁ ନିଜ ତୁଣ୍ଡକୁ ପକେଇଦବୁ ବୋଲି ଭାବିଚୁ ।

ଶ୍ୟାମ : ନା, ନା, ତୁମକୁ ଏସବୁ କିଏ କହିଲା ? ମୁଁ ତ ଯାର ବିନ୍ଦୁ ବିସର୍ଗ କିଛି ଜାଣେନାହିଁ ।

ଯୋଗୀ : ତୁ ଜାଣୁ । ଫେରେ ମିଛ କହନାହିଁ । ବର୍ତ୍ତମାନ ଯାହା କରିଛୁ ତା'ର ପ୍ରତିକାର ତୋର ଏ ଟ୍ରଷ୍ଟି ଛାଡ଼ିଦେବା । ତୁ ରାଜିଅଛୁ ?

ଶ୍ୟାମ : ମୁଁ କାହିଁକି ଏଥିରେ ରାଜିହେବି ?

ଯୋଗୀ : କାହିଁକି ? କେବଳ ପ୍ରାଣଭୟରେ । ରାଜି ନ ହେଲେ ଯେ ତୋର ସାତପୁରୁଷି ପ୍ରାଣଟା ମୁଁ ଚିପି ବାହାର କରିଦେବି ।

ଶ୍ୟାମ : ମତେ ମାଇଲେ ତୁ ଯେ ଫାଶିଯିବୁ ।

ଯୋଗୀ : ସେ ଭାବନା ତୋର କାହିଁକି ? କହ, ତୁ ରାଜି କି ନା ?

ଶ୍ୟାମ : ହଁ, ମୁଁ ରାଜିଅଛି ।

ଯୋଗୀ : ତେବେ କେଉଁଦିନ ଯାଇ ଟ୍ରଷ୍ଟିସିପ୍ ଛାଡ଼ ଲେଖିଦେଇ ଆସିବୁ ?

ଶ୍ୟାମ : ଏଇ ଛ' ସାତ ଦିନ ମଧ୍ୟରେ ।

ଯୋଗୀ : ବେଶ୍, ଆଜି ହେଲା ଗୁରୁବାର । ଆର ଗୁରୁବାର ସୁଦ୍ଧା ଯଦି ମୁଁ ତୋର ସେ ଲେଖା ନପାଏଁ ତା'ହେଲେ... ।



# ଅଠେଇଶି

ସେ ଦିନ ସେ ଗୋଟାଏ ଅଦ୍‌ଭୁତିଆ ଦେଖା । ବେଳ ରତରତ ହଉଚି । ବାହୁଡ଼ା ଏକାଦଶୀ ସେଦିନ । ରାମଚନ୍ଦ୍ରପୁରର ଅନେକ ଲୋକ ପୁରୀକୁ ଦର୍ଶନ ଉଦେଶ୍ୟରେ ଯାଇଚନ୍ତି । ବାବୁଆଣୀ ମଧ୍ୟ ଯାଇଛନ୍ତି । ଶିବବାବୁ ମଧ୍ୟ ଯାଇଛନ୍ତି । ରଥ ଉପରେ ଠାକୁର ସିଂହଦ୍ୱାର ମୁହଁରେ । ସନ୍ଧ୍ୟା ଆଳତି ସରିଯାଇଛି । ସେତେବେଳର ଭିଡ଼ ମଧ୍ୟ ଭାଜିଯାଇଚି । ବାବୁଆଣୀ, ମହାପାତ୍ରେ ଓ ଜଣେ ଚାକରାଣୀ ରଥ ଉପରୁ ଦର୍ଶନ ସାରି ଓହ୍ଲାଇ ଆସୁଚନ୍ତି, ଆଉ ଶିବବାବୁ ତାଙ୍କ ପାର୍ଶ୍ୱଦେବତାମାନଙ୍କୁ ଘେନି ସିଡ଼ିରେ ଉପରକୁ ଉଠିଯାଉଚନ୍ତି । ମଝିରେ ଭେଟ । ଶିବବାବୁ କିଛି ନଜାଣିଲାର ହୋଇ ବାଟ କାଟି ଉଠିଯାଉଥିଲେ; ମାତ୍ର ବାବୁଆଣୀ ତାଙ୍କ ସାମନାରେ ଯାଇ ଠିଆ ହୋଇଗଲେ । କହିଲେ, "ଶିବବାବୁ ! ଆପଣଙ୍କ ସାଙ୍ଗରେ ମୋର ଗୋଟାଏ କଥା ଅଛି ।" ଶିବବାବୁ ସତେ ଆଶ୍ଚର୍ଯ୍ୟ ହେଲାପରି କହିଲେ, "ମୋ ସାଙ୍ଗରେ ? ଆପଣଙ୍କର ? କିନ୍ତୁ ମୁଁ ତ ଆପଣଙ୍କୁ ଚିହ୍ନେନାହିଁ ।"

ବାବୁଆଣୀ : ଦେଖନ୍ତୁ, ଆଗରେ ନିଜେ ଭଗବାନ୍ । ଆରମ୍ଭରୁ ଗୋଟାଏ ନିଆଁଗିଳା ମିଛ କହନ୍ତୁ ନାହିଁ । ଆପଣ ଅବଶ୍ୟ ଜାଣନ୍ତି, ମୁଁ କିଏ । ତଥାପି ଜଣାଇଦବାରେ କିଛି ଆପତ୍ତି ନାହିଁ ବୋଲି ମୁଁ କହୁଚି ଯେ ମୁଁ ଆପଣଙ୍କ ଗାଁର ଧୋଇବୋଉ । ଗାଁରେ ମତେ ସମସ୍ତେ ବାବୁଆଣୀ ବୋଲି ଡାକନ୍ତି । ଏଥରକ ଚିହ୍ନିଲେ ତ ?

ଶିବବାବୁଙ୍କ ମୁହଁରେ ଆଗ୍ରହର ଗୋଟାଏ ଆଲୁଅ ଭାସିଗଲା । ସେ କହିଲେ, "ଆରେ ଆପଣ ! ତା' ଆପଣଙ୍କର କି କଥା ଅଛି ଯେ ମୁଁ ଶୁଣିବାକୁ ନାରାଜ ହେବି । ମୁଁ ଯେତେବେଳେ ଅଜଣା ଅଚିହ୍ନା ପର ଲୋକମାନଙ୍କର ଏତେ ଉପକାର କରୁଛି—ଅବଶ୍ୟ ଏ କଥାଟା ମୁଁ ତୁଣ୍ଡରେ କହିବା ନିତାନ୍ତ ଅସୁନ୍ଦର ହୋଇପାରେ, ତେବେ ସତ କହିବାରେ ଦୋଷ କ'ଣ ? ଆଉ ଆପଣ, ମୋ ଗାଁର, ଲେଖାଯୋଖାରେ ମୋର ବନ୍ଧୁ, ବିଶେଷତଃ ବାବୁ ଥିଲେ ମୋର ପିଲାଦିନର ସାଥୀ । ମୋ ଦ୍ୱାରା ଯଦି ଆପଣଙ୍କର... ।"

ବାବୁଆଣୀ : ବୁଝିଚ । ମୁଁ ପଚାରେଁ, ମୋ ଧୋଇ କାହିଁ ?

ଶିବବାବୁ ଆଶ୍ଚର୍ଯ୍ୟ ହୋଇଗଲେ । ସତେ ଯେପରି ଆକାଶରୁ ପଡୁଛନ୍ତି । କହିଲେ, "ଧୋଇ ? ଧୋଇ କେଉଁଠି ମୁଁ କିପରି କହିବି ? ସେ କ'ଣ ଗାଁରେ ନାହିଁ ?"

ବାବୁଆଣୀ : ଆପଣ ବେଶ୍ କରି ଜାଣନ୍ତି ଯେ ସେ ଆଜକୁ ପ୍ରାୟ ଦୁଇମାସ ହେଲା ଏଇ ପୁରୀରୁ ଆପଣଙ୍କ ସହିତ ଜିଗର ମାରି ଚାଲିଯାଇଚି । ଆଉ ଆପଣ ମଧ୍ୟ ବେଶ୍ ଜାଣନ୍ତି ଯେ ସେ କାହିଁକି ଆଜିଯାଏ ଫେରିନାହିଁ ।

ଶିବ : ଆପଣ କ'ଣ କହୁଛନ୍ତି, ଏ ସବୁ ତ ମୁଁ କିଛି ଜାଣେନାହିଁ ।

ବାବୁଆଣୀ : ଜାଣନ୍ତି ନାହିଁ ? ମନେରଖନ୍ତୁ ଯଦି ମୋ ଧୋଇର କିଛି ଅନିଷ୍ଟ ହୁଏ, ତା'ହେଲେ ମୁଁ ବିଚ୍ ଅଦାଲତରେ ଏପରି ଭାବରେ ଜଣାଇଦେବି ଯେ ତୁମର ନେତାପଣ ଏକାବେଳକେ ବାହାରିପଡ଼ିବ ।

ଶିବ : କି ମୁସ୍କିଲ । ଆପଣଙ୍କ ପୁଅ କିଛି କୋଡ଼ର କାଖର ପିଲା ନୁହେଁ ଯେ ମୁଁ ତାକୁ ଭୁଲେଇ ନେଇ ତା'ର ତୋଟି ଚିପି ମାରିଦେବି । ଏଇ ଦେଖନ୍ତୁ ନା, ସେ ଯେ ଗୋଟାଏ ବ୍ରାହ୍ମ ଟୋକୀ ବାହାକରି ଜାତିରୁ କୁଳରୁ ଗଲା, ସେଥିରେ ମୋର କିଛି କରିବାର ଅଛି କି ?

ବାବୁଆଣୀ : ବ୍ରାହ୍ମ ଟୋକୀ ବାହାକରି ବସିଲା ? କିଏ ଧୋଇ ? ଏ ପୁଣି କି ମିଛ ସୁଆଙ୍ଗ ଆରମ୍ଭ କରୁଚନ୍ତି ?

ଶିବ : ମିଛ ହବ ତ ? ସେ ଯେତେବେଳେ ଆପଣଙ୍କର ସଂସାର-ବାହାର ଗୁଣବନ୍ତ ପୁଅ ! କିନ୍ତୁ ଖବରକାଗଜରେ ବାହାରିଗଲାଣି । ଦେଶର ହଜାର ହଜାର ଲୋକ ଜାଣିଗଲେଣି । ଆଉ ତୁମେ ମିଛ ବୋଲି କହିଦେଲେ ଧଳାଟା କଳା ହୋଇଯିବନା ?

ବାବୁଆଣୀ କିଛି ସମୟ ତୁନି ହୋଇ ରହିଲେ । କ'ଣ ଭାବିଲେ ସେ ଜାଣନ୍ତି । ଶେଷରେ କହିଲେ, "କଥାଟା ନିଶ୍ଚୟ ମିଛ ! ଯଦି କାଗଜରେ ବାହାରିଥାଏ, ତାହେଲେ ସେ ତୁମର କାମ, କି ଉଦ୍ଦେଶ୍ୟରେ ତୁମେ ଯେ... ଓ, ବୁଝିଚି, ସେ ଜାତିଚ୍ୟୁତ ହେଲା ବୋଲି କହି ତାକୁ ସମ୍ପତ୍ତିରୁ ବଞ୍ଚିତ କରିବ—ଏଇ ତୁମର ଉଦ୍ଦେଶ୍ୟ । କିନ୍ତୁ ମନେରଖ, ମୁଁ ଏ ପର୍ଯ୍ୟନ୍ତ ବଞ୍ଚିଛି ।" କହି ବାବୁଆଣୀ ଆଉ ପଛକୁ ନ ଚାହିଁ ଚାଲିଗଲେ ।

ରଥତଳେ ପ୍ରଫୁଲ୍ଲ ତାଙ୍କୁ ଅପେକ୍ଷା କରି ଠିଆହୋଇଥାନ୍ତି । ତାଙ୍କ ପାଖରେ ପହଞ୍ଚିଲାବେଳକୁ ବାବୁଆଣୀଙ୍କର ସେ ଦମ୍ଭ ନାହିଁ; ସେ ବିଶ୍ୱାସ ମଧ୍ୟ ନାହିଁ । ସେ ପ୍ରଫୁଲ୍ଲବାବୁଙ୍କ ଆଡ଼କୁ ଛଳଛଳ ଆଖିରେ ଚାହିଁ ପଚାରିଲେ, "ବାବା ପ୍ରଫୁଲ୍ଲ, ଏ କ'ଣ ସତ ? ଧୋଇ କ'ଣ ସତରେ ଲୁଚାଇ ଏତେ କାଣ୍ଡ କରିଗଲା ?

ପ୍ରଫୁଲ୍ଲ : କ'ଣ ମା' ?

ବାବୁଆଣୀ : ଧୋଇ ଗୋଟାଏ ବ୍ରାହ୍ମ ଟୋକୀ ବାହା ହୋଇଚି ?

ପ୍ରଫୁଲ୍ଲ : ଏ ଅସମ୍ଭବ କଥା ତୁମକୁ କିଏ କହିଲା ମା' ?

ବାବୁଆଣୀ : ତୁ ଆଜିର ଓଡ଼ିଆ କାଗଜ ପଢ଼ିଚୁ !

ପ୍ରଫୁଲ୍ଲ : ନାଇଁ ମା' ! କାହିଁକି ସେଥିରେ କ'ଣ ଅଛି କି ?

ବାବୁଆଣୀ : ଧୋଇର ବିବାହ କଥା । ଆଣିପାରିବୁ ଖଣ୍ଡେ କାଗଜ ?

ପ୍ରଫୁଲ୍ଲ : ତୁମେ ବସାକୁ ଚାଲ ମା' ! ମୁଁ କାଗଜ ନେଇ ପଛରେ ଯାଉଛି ।



## ଅଣତିରିଶି

"ଏ ସୁଶୀଳା କିଏ ? ତୁମ ପାଖକୁ ଚିଠି ଲେଖିଚି ?" କହି ଯୋଗୀ ପ୍ରମିଳା ଦେବୀଙ୍କୁ ଚିଠିଖଣ୍ଡିଏ ବଢ଼ାଇଦେଲେ । ପ୍ରମିଳା ଦେବୀ ତାଙ୍କ ହାତରୁ ଚିଠି ଖଣ୍ଡିକ ନେଇ କହିଲେ, "ତୁମର ଏତେ ଦରକାର ? ସେ ଯେ ହେଲେ । ମୁଁ ତୁମକୁ କେତେଥର କହିଲିଣି ଯେ ମୋର

ସାଙ୍ଗସୁଖଙ୍କ ସମ୍ବନ୍ଧରେ ତୁମର କିଛି କହିବା ବା ବୁଝିବା ନିତାନ୍ତ ଅନ୍ୟାୟ । ଅଦା ବେପାରୀର... ।"

ଯୋଗୀ : କଥାଟା କିଛି ନୂଆ ନୁହେଁ; ଅନେକ ଦିନରୁ ଅଛି । କଥା ଥାଇ ମଧ୍ୟ ଅଦା ବେପାରୀ ସବୁବେଳେ ଜାହାଜର ଖବର ନେଇ ଆସିଚି । ଥାଉ, ମୁଁ ମଧ୍ୟ ଅଦା ବେପାରୀ ନୁହେଁ; ତୁମର ମେନେଜର । ସୁଶୀଳା ମଧ୍ୟ ଜାହାଜ ନୁହେଁ; ତୁମର ସାଙ୍ଗ ।

ପ୍ରମିଳା : ତୁମେ ମୋର ମେନେଜର ହେଲ କେଉଁଦିନଠାରୁ ? ତୁମେ ଯେ ମୋର ଦରମାଖିଆ ଗୁମାସ୍ତା ।

ଯୋଗୀ : ଦରମା ? କେତେଟଙ୍କା ଦରମା ଦେଇଚ ? ଭାରି ଦରମା ଦେଲାବାଲା ।

ପ୍ରମିଳା : କି, ମତେ ଏ ଜବାବ ? ତୁମର ଦରମା ତୁମେ ଆଜି ଏଇକ୍ଷଣି ନେଇଯାଅ । ତୁମେ କହିଥିଲ ଯେ ତୁମର ଦରମା ତୁମେ ଏକାବେଳକେ ନବ; ସେଥିପାଇଁ ମୁଁ ଦରମା ଦେଇନଥିଲି । ତୁମେ ଏଇ ଦରମା କେଇଟା ଟଙ୍କା ହେତୁରୁ ଯେ ମୋ ଉପରେ ଏତେ ଅଧିକାର କରିବସିଚ, ଏକଥା ଜାଣିଥିଲେ ମୁଁ ତୁମର ଗୋଟିଏ ପଇସା ବା ଟଙ୍କା ରଖି ନଥାନ୍ତି । ବର୍ତ୍ତମାନ ତୁମେ ତୁମର ଦରମା ନେଇ ବିଦାୟ ହୁଅ ।

ଯୋଗୀ : ଓଃ, ଭାରି ବିଦାୟ ଦେଲାବାଲା । ତୁମେ ମତେ ଡାକି ଆଣି ନଥିଲ, କି ଖୋଜି ଆଣି ନଥିଲ ଯେ ମତେ ବାହାର କରିଦେବ । ମୋ ମନକୁ ମୁଁ ଆସିଛି । ମୋ ମନ ହେଲେ ମୁଁ ଯିବି । ଆଉ ଦରମା କାହିଁ, ଦିଅ ତ ?

ପ୍ରମିଳା ଦେବୀଙ୍କର ମନେପଡ଼ିଲା ଯେ ତାଙ୍କ ହାତରେ ଗୋଟିଏ ବୋଲି ପଇସା ନାହିଁ । ତାଙ୍କର ଯାହା କିଛି ଆୟ ସବୁ ଯୋଗୀ ନିଅନ୍ତି । ସେଇ ଖର୍ଚ୍ଚ କରନ୍ତି । କିପରି କ'ଣ ହୋଇଚି ଯେ ସେ ଯୋଗୀ ପାଖରେ ଏପରି ବନ୍ଧାପଡ଼ିଚନ୍ତି, ସେ ଠିକ୍ କରିପାରିଲେ ନାହିଁ । କ'ଣ ଆଉ କହିବେ । କହିଲେ, "ଯାଅ, ଆଉ ବିରକ୍ତ କରନାହିଁ ।" ତାଙ୍କ ଆଖିରେ ଲୁହ ଆସିଗଲା । ସେ ମୁହଁ ବୁଲାଇଦେଲେ । ଯୋଗୀ ଏ ସମସ୍ତ ଦେଖି କହିଲେ, "ଦେଖ ତୁମେ ଯଦି କଥାରେ କଥାରେ ମୋ ସାଙ୍ଗରେ କଳି କରି ଏପରି କାନ୍ଦ, ତା'ହେଲେ ସତରେ ମୁଁ ବାହାରିଯିବି । ତୁମେ ଅନୁଗ୍ରହ କରି 'ମତେ ସ୍ଥାନ ଦେଇଚ । ଭିଖ ମାଗି ପେଟ ପୂରୁନଥିଲା; ଇଲେ ମୁଁ ସାନ୍ତେଇ କରୁଛି । ସେ ତୁମର ଦୟାରୁ । ତୁମ ଆଖିରେ ଲୁହ ଦେଖିଲେ ପୁଣି ମୋରି କଥାରେ, ମୁଁ ସମ୍ଭାଳି ପାରିବି ? ମୁଁ ତେବେ ଯାଉଚି । ତୁମର ହିସାବପତ୍ର ପଇସା ବୁଝିନିଅ ।" ପ୍ରମିଳା ଦେବୀ ବୁଲିପଡ଼ିଲେ । ରାଗରେ ତାଙ୍କ ମୁହଁ ଲାଲ ପଡ଼ିଯାଇଚି । କହିଲେ, "କେତେ ଭଡ଼ର ଭଡ଼ର ହେଉଚ ହେ ? ଭାରି ଲୋକ ତ ? ମୁଁ ପୁଣି ୟାଙ୍କ କଥାରେ କାନ୍ଦିବି ? ଯାଅ, ଆଉ ବିରକ୍ତ କରନାହିଁ । ମୁଁ ଚିଠିଟା ପଢ଼ିନିଏଁ ।" ଆଉ ଯୋଗୀଙ୍କ ଆଡ଼କୁ ନଚାହିଁ ସେ ଖାମ୍‌ଟା ଖୋଲି ଚିଠିଟା ବାହାର କଲେ । ଦେଖିଲେ ତା' ଭିତରେ ସାମାନ୍ୟ ଦୁଇଧାଡ଼ି ଲେଖା ଖଣ୍ଡେ ଚିଠି ଓ ତା' ସାଙ୍ଗରେ ଗୁନ୍ଥା ହୋଇଚି 'ସ୍ପଷ୍ଟବାଦୀ' କାଗଜରୁ ଖଣ୍ଡେ । ଚିଠିଖଣ୍ଡ ପଢ଼ିଲେ । କାଗଜଖଣ୍ଡ ପଢ଼ିଲେ । ତାଙ୍କର ହାତ ଥରିଗଲା, ଓଠ କମ୍ପିଉଠିଲା । ସେ ସେହି ସ୍ଥାନରେ ଥକ୍‌କାମରା ହୋଇ ବସିପଡ଼ିଲେ । ଚିଠିଟା ତାଙ୍କ ହାତରୁ ଖସି ତଳେ ପଡ଼ିଗଲା । ଯୋଗୀ

ତାଙ୍କର ଏ ଭାବ ସବୁ ଦେଖି କିଛି ବୁଝିପାରିଲେ ନାହିଁ । ଟିକିଏ ମାତ୍ର ଦ୍ୱିଧା ନକରି ସେ ଚିଠିଟା ତଳୁ ଗୋଟାଇ ନେଲେ । ପଢ଼ିଲେ—

"ସ୍ନେହର ପେମି,

ଧୋଇବାବୁଙ୍କ କଥାରେ ତୋର ମନଥାଏ ବୋଲି ଲେଖିଲି । ଆଜି 'ସ୍ପଷ୍ଟବାଦୀ' କାଗଜରେ ଯାହାଙ୍କ ନାଁରେ ବାହାରିଚି, ତାହା ମୁଁ ଆଉ ଲେଖନ୍ତି କ'ଣ, କାଗଜଖଣ୍ଡେ ପଠେଇଲି, ପଢ଼ି ଦେଖିବୁ । ସ୍ପଷ୍ଟବାଦୀ କାଗଜଖଣ୍ଡ କାଢ଼ି ପଢ଼ିଲେ ମୋଟା ମୋଟା ଅକ୍ଷରରେ ଲେଖାଅଛି-–"ଆନ୍ତର୍ଜାତିକ ବିବାହ ।" ତଳେ ଅପେକ୍ଷାକୃତ ଛୋଟ ଅକ୍ଷରରେ "ଉତ୍କଳପ୍ରସିଦ୍ଧ ଆର୍ଟିଷ୍ଟ ପରମାନନ୍ଦ ଓରଫ ଧୋଇବାବୁଙ୍କର ବଙ୍ଗାଳୁଣୀ ବିବାହ ।" ଶେଷରେ ଛୋଟ ଅକ୍ଷରରେ ଲେଖା "ଆମ୍ଭେମାନେ ବିଶ୍ୱସ୍ତ ସୂତ୍ରରୁ ଅବଗତ ହେଲୁଁ ଯେ ଆମ୍ଭମାନଙ୍କର ସୁପରିଚିତ ଉତ୍କଳର ସୁପ୍ରସିଦ୍ଧ ଚିତ୍ରକର ଶ୍ରୀଯୁକ୍ତ ବାବୁ ପରମାନନ୍ଦ ମହାପାତ୍ର ଓରଫ ଧୋଇବାବୁ କଲିକତା ମେଛୁଆ ବଜାର ଗଳିର ଶ୍ରୀଯୁକ୍ତ ବାବୁ ପ୍ରମଥନାଥ ଗାଙ୍ଗୁଲି ବି.ଏ.ଙ୍କର ଏକମାତ୍ର କନ୍ୟା ଶ୍ରୀମତୀ ମେନକାଙ୍କୁ ବିବାହ କରିଅଛନ୍ତି । ବିବାହ ପରେ ନବଦମ୍ପତି କୌଣସି ଏ ଅଜଣା ସ୍ଥାନରେ 'ମଧୁଚନ୍ଦ୍ର' କରିବାକୁ ଯାଇଚନ୍ତି ।

ସାହେବମାନଙ୍କ ଦେଶରେ ବିବାହ ପରେ ନବବିବାହିତ ଦମ୍ପତି କିଛିଦିନ ପାଇଁ Honey moon କରିବା ଉଦ୍ଦେଶ୍ୟରେ ବିଦେଶକୁ ଚାଲିଯାଆନ୍ତି । ପରମାନନ୍ଦବାବୁ ସେହିପରି ଭାବରେ କରିଥିବାର ଜଣାଯାଏ । ପ୍ରମଥବାବୁ ବ୍ରାହ୍ମ ଓ ଧୋଇବାବୁ ହିନ୍ଦୁ । ଶୁଣାଯାଏ, ଏ ବିବାହ ଆର୍ଯ୍ୟସମାଜ ମତରେ ହୋଇଛି । ଏହିପରି ଆନ୍ତର୍ଜାତୀୟ ବିବାହ ଦ୍ୱାରା ଭାରତବର୍ଷରେ ଏହି ଯେ ଜାତି, ସମାଜ, ପ୍ରଦେଶ ଇତ୍ୟାଦି ନେଇ ବିଦ୍ୱେଷ ଭାବ ରହିଚି, ତାହା ଦୂର ହେବା ଖୁବ୍ ସମ୍ଭବ । ଖୁବ୍ ସମ୍ଭବ କାହିଁକି, ବିଦେଶୀ ରାଜତ୍ୱର ଆନୁଷଙ୍ଗିକ ଫଳରୂପେ ଭାରତବର୍ଷ ଯେ ଖଣ୍ଡ ଖଣ୍ଡ ହୋଇ ରହିଚି, ତାହାକୁ ପୁଣି ଏକକରି ମିଶାଇବାର ଏହା ଏକମାତ୍ର ଉପାୟ । ଅବଶ୍ୟ ଦେଶରେ ଏପରି ଏକ ଶ୍ରେଣୀର ଲୋକ ବର୍ତ୍ତମାନ ଅଛନ୍ତି, ଯେଉଁମାନେ ଏହି ପ୍ରକାର ଅସଧର୍ମ ଓ ଅଜାତି ବିବାହକୁ ନାପସନ୍ଦ କରୁଛନ୍ତି ଏବଂ ଏହି ହେତୁରୁ ଯେଉଁ ଦେଶପ୍ରାଣ ଯୁବକମାନେ ସାହସ କରି ବିଦେଶିନୀ ବିବାହ କରୁଚନ୍ତି, ସେମାନଙ୍କୁ ହୁଏତ ପୈତୃକ ସମ୍ପତ୍ତିରୁ ବଞ୍ଚିତ ହେବାକୁ ପଡ଼ିପାରେ; ହୁଏତ ନିଜର ଯେଉଁମାନେ ଆତ୍ମୀୟ, ବନ୍ଧୁବାନ୍ଧବମାନଙ୍କଠାରୁ ଦୂରରେ ରହିବାକୁ ପଡ଼ିପାରେ । ତଥାପି ସମୟ ଆସିବ—ଯେତେବେଳେ ସେହିମାନଙ୍କର ହିଁ ଜୟ ହେବ । ଶ୍ରୀମାନ୍ ପରମାନନ୍ଦ ଯେ ଏ ସମସ୍ତ ଅସୁବିଧାକୁ ଖାତିର ନକରି ଏପରି ଏକ ମହାନ୍ ଉଦାର ନୀତି ଗ୍ରହଣ କରି ଅଛନ୍ତି, ସେଥିନିମନ୍ତେ ଆମ୍ଭେମାନେ ତାଙ୍କୁ ଅନ୍ତରର ଧନ୍ୟବାଦ ଜଣାଉଅଛୁଁ ଓ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଁ ଯେ ସେ ନବଦମ୍ପତିଙ୍କୁ ସୁଦୀର୍ଘ ଜୀବନ ଦାନ କରନ୍ତୁ ।"

ଯୋଗୀ ଚିଠିଟା ପଢ଼ିଲେ । କିଛି ବୁଝିପାରିଲେ ନାହିଁ । ଏହା ମଧ୍ୟରେ ଏପରି କ'ଣ୍ ଅଛି ଯେ ଯାହା ଲାଗି ପ୍ରମିଳା ଦେବୀ ଏତେଦୂର ଅଧୀର ହୋଇପଡ଼ିବେ ? କିଛି ସମୟ ଭାବିଲେ । ଅଜ୍ଞାନର, ସନ୍ଦେହର ବିଶ୍ୱାସର ଭାବ ଗୋଟିକ ପରେ ଗୋଟିଏ ତାଙ୍କର ମୁହଁରେ

ଖେଳିଗଲା । ତା'ପରେ ତାଙ୍କର ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ସେତେବେଳକୁ ପ୍ରମିଳା ଦେବୀଙ୍କର ଚୈତନ୍ୟ ଆସିଥିଲା । ସେ ଚିଠିଟା ଯୋଗୀ ହାତରେ ଦେଖି କହିଲେ, "ତୁମର ସାହସ ତ କମ୍ ନୁହେଁ ? ମୋର ଚିଠି ପଢ଼ିବାକୁ ତୁମେ କିଏ ?"

ଯୋଗୀ : ତୁମର ସାହସ ତ କମ୍ ନୁହେଁ; ମୋର ସାଙ୍ଗକୁ ନେଇ ଏ ଥଟ୍ଟା ପରିହାସ କରିବାକୁ ତୁମେ କିଏ ?

ପ୍ରମିଳା : ତୁମର ସାଙ୍ଗ ।

ଯୋଗୀ : ହଁ, ମୋର ସାଙ୍ଗ 'ଧୋଇବାବୁ' ।

ପ୍ରମିଳା : ଧୋଇବାବୁ ତୁମର ସାଙ୍ଗ ? ତୁମେ ଯୋଗୀ ଆଉ ସେ...

ଯୋଗୀ : ଯୋଗୀ ହବା କିଛି ଅପମାନର ଜିନିଷ ନୁହେଁ । ସ୍ୱୟଂ ଭଗବାନ କୃଷ୍ଣ ଦିନେ ଯୋଗୀ ହୋଇଥିଲେ; ନିଜେ ସଦାଶିବ ପରମ ଯୋଗୀ ।

ପ୍ରମିଳା : ତେବେ ଧୋଇବାବୁ ତୁମର ପରମ ସାଙ୍ଗ ? ତାଙ୍କ ସମ୍ବନ୍ଧରେ ଏ ଯାହା ଲେଖାଅଛି, ସେ କ'ଣ ଠିକ୍ ?

ଯୋଗୀ : ମୁଁ କିପରି କହିବି ବାବୁ ! ଏ ଯୁ' କାଳ, ଆଉ ଏ କାଳରେ ଏ ଯୁ' ଟୋକାଗୁଡ଼ାକ । ୟାଙ୍କର ନା ଅଛି ବିବେକ, ନା ଅଛି ଧର୍ମଜ୍ଞାନ ।

ପ୍ରମିଳା : ତୁମେ କ'ଣ ଅସିଆ କାଳର ମସିଆ ବୁଢ଼ା ? ଏ ସବୁ କଥା ଶୁଣିଲେ ମୋର ଦିହ କଡ଼କି ଉଠେ । ତୁମେ ନ ଜାଣ ତ ନାହିଁ କରିଦେବ । ଏପରି ଗୁଡ଼ାଏ ବୃଥା ଗପ କେନେ ?

ଯୋଗୀ : ଆଚ୍ଛା, ନହେଲା ନାହିଁ । ମୁଁ ଆଜି ଟିକିଏ ଯାଉଚି ।

ପ୍ରମିଳା : କୁଆଡେ ?

ଯୋଗୀ : ଯୁଆଡ଼େ ହେଲେ ତୁମର କ'ଣ ଅଛି ? ମୁଁ ଯାଉଚି, କାଲି ରାତିରେ ଫେରିବି ।

ପ୍ରମିଳା : ଫେରିଲେ ଫେର, ନ ଫେରିଲେ ନାହିଁ । ମୋର ଯାଏ କେତେ, ଆସେ କେତେ, ପୋଡ଼ାମୁହାଁ "....." ଏହିପରି କେତେ କ'ଣ ଭଟର ଭଟର ହୋଇ ସେ ସେଠାରୁ ଚାଲିଗଲେ ।



## ତିରିଶି

ଧୋଇବାବୁ ତହିଁ ଆରଦିନ ଭୋରରୁ ଗାଡ଼ିରୁ ଓହ୍ଲାଇ କଟକ ଷ୍ଟେସନ ପ୍ଲାଟଫର୍ମରେ ଲସରପସର ହୋଇ ଟିକଟଦିଆ ଜାଗା ଆଡ଼କୁ ଯାଉଥିଲାବେଳେ କିଏ ଜଣେ ଆସି ତାଙ୍କ ପଛଆଡୁ କମିଜରୁ ପୁଳାଏ ଆକଟ କରି ଭିଡ଼ିଧଇଲା । ସେ ବୁଲିପଡ଼ି ଦେଖିଲେ ଯେ ପ୍ରଫୁଲ୍ଲ

ବାବୁ । ଉଭୟଙ୍କ ପାଟିରୁ ଏକସମୟରେ ବାହାରିପଡ଼ିଲା–"କିରେ ତୁ କୁଆଡ଼େ, ଏଣିକି ଆ ।" କିନ୍ତୁ ପ୍ରଫୁଲ୍ଲବାବୁ ଆଗ ଉତ୍ତର ଦେଲେ—"ମୁଁ ଯାଇଥିଲି ବାଲେଶ୍ୱର, ତୁ କୁଆଡ଼େ ମା'ଙ୍କ ପାଖକୁ ଲେଖିଥିଲୁ ଯେ ତୋର ପାଞ୍ଚ ହଜାର ଟଙ୍କା ଜରୁର ଦରକାର; ଆଉ ସେଥିପାଇଁ ତୁ ଆଉରି ମଧ୍ୟ ଲେଖିଥିଲୁ ଯେ ସେ ଟଙ୍କା ମୁଁ ନେଇ ବାଲେଶ୍ୱର ଷ୍ଟେସନକୁ ଗଲେ ତୁ ଆସି ସେଠାରୁ ନେଇଯିବୁ । ମୁଁ କାଲିଠାରୁ ବାଲେଶ୍ୱର ଯାଇଥିଲି ।" ଧୋଇବାବୁ ଟିକିଏ ଅନ୍ୟମନା ପରି ରହିଲେ । ତା'ପରେ କହିଲେ, "ତୁ ଜାଣୁ ପ୍ରଫୁଲ୍ଲ ! ମୁଁ ଆଜାକାଲି ଭୁଲମନା ହୋଇଗଲିଣି ।"

ପ୍ରଫୁଲ୍ଲ : ତୁ କୁ'ଦିନ...

ଧୋଇ : ତୁନିହ, ପୁଣି କଥା ଉପରେ କଥା କହିବୁ ତ ମୁଁ ତୋର ଦାନ୍ତ ଝାଡ଼ିଦେବି । କିପରି ଅସଭ୍ୟ ଲୋକରେ ତୁ । ଖାଲି ଗୁଡ଼ାଏ ସଂସ୍କୃତ ପଢ଼ିବାରେ ଏହି ଫଳ । ତୁ ଆଉ ଭଦ୍ରାମି ଶିଖିବୁ କେଉଁଆଡୁ ?

ପ୍ରଫୁଲ୍ଲ : କିନ୍ତୁ ମୁଁ ତ ଅଭଦ୍ରାମି କିଛି...

ଧୋଇ : କରିନାହୁଁ । ଏଇ ତ ? ତୁ ଅବଶ୍ୟ ଅଭଦ୍ରାମି କରିଚୁ । ମୁଁ କହୁଚି, ତୁ କରିଚୁ । ତା' ଉପରେ ତୋର ନାହିଁ କରିବା କିଛି ଅଛି ?

ପ୍ରଫୁଲ୍ଲବାବୁ ତରତର ହୋଇ କହିଲେ, "ନାଇଁ, ନାଇଁ, ମୋର ଆଉ ତା'ପରେ କିଛି କହିବାର ନାହିଁ । ତୁ ଯେତେବେଳେ କହୁଚୁ ।"

ଧୋଇ : କେତେ ବକୁରେ ତୁ । ଶୁଣ, ମୁଁ କହୁଥିଲି ମୋର ଏଇ ଗୋଟାଏ ରୋଗ ଆରମ୍ଭ ହୋଇଚି । ମୁଁ ଆଜି କଥା କାଲିକୁ ମନେରଖି ପାରୁନାହିଁ । ଏ ରୋଗର ଔଷଧ କ'ଣ କହ ତ ?

ପ୍ରଫୁଲ୍ଲ : ସତରେ ଏ ବଡ଼ ସଙ୍ଗିନ ରୋଗ । ବୋଧହୁଏ ମସ୍ତିଷ୍କ ଏକାଙ୍ଗୀବାତ, ନହେଲେ...

ଧୋଇ : ନହେଲେ ତୋର ଶୁଦ୍ଧଘର । ଭାରି ଭୁଷ୍‌ପଣ୍ଡିତ । ରୋଗର ପୁଣି ନିଦାନ କହିବାକୁ ବାହାରିପଡ଼ିଲେ । ଶୁଣ, ଏ ରୋଗର ଔଷଧ କ'ଣ ଜାଣୁ ?

ପ୍ରଫୁଲ୍ଲ : ହଁ ଜାଣେ । କହିବି ?

ଧୋଇ : ତୁ ଜାଣୁ ? ତୁ କହିବୁ ? ବଡ଼ ସାହସ ତ । କହ ଦେଖି, ହେ ନବଯୁଗର ଚରକ ମହର୍ଷି !

ପ୍ରଫୁଲ୍ଲ : ଏ ରୋଗ ହୁଏ ତାହାରି, ଯେ ନିଜ ଦେଶର ସୁନ୍ଦରୀକୁଳକୁ ଅବମାନନା କରି ଗୋଟାଏ ବିଦେଶିନୀ ଟୋକୀ ବାହାକରେ, ଆଉ ଔଷଧଟା ତା'ର ହେଉଚି ଯେ ସେ ବିଦେଶିନୀକୁ ଛାଡ଼ି ଛାଡ଼ପତ୍ର ଦେଇ ଅଥବା ବିଲାତ ମତରେ ଡାଇଭୋର୍ସ କରି ପୁଣି ନିଜ ଦେଶର କୌଣସି ଅନିନ୍ଦ୍ୟସୁନ୍ଦରୀ, ଚମ୍ପକବରଣୀ, ବିମ୍ବଦନ୍ତୀ, ଚନ୍ଦ୍ରନିଭାନନୀ...

ପ୍ରଫୁଲ୍ଲବାବୁଙ୍କର ବୁଝିବା ଉଚିତ ଥିଲା ଯେ ଧୋଇବାବୁଙ୍କ ପାଖରେ ତାଙ୍କର କାମ କେବଳ ଶୁଣିବା । ସେ ଯଦି ଭାବିଥାନ୍ତି ଯେ ସେ ଅବାଧ୍ୟରେ ଯାହା ଇଚ୍ଛା ତାହା ଗଡ଼ଗଡ଼

କରି କହିଯିବେ, ଆଉ ଧୋଇବାବୁ ତୁନିଟି ହୋଇ ସେ କଥା ଶୁଣିବେ, ତା'ହେଲେ ସେ ତାଙ୍କର ଗୋଟାଏ ମସ୍ତବଡ଼ ଭୁଲ୍ । ବିଶେଷତଃ ଧୋଇବାବୁ ଯେ ତୁନିହୋଇ ତାଙ୍କର ପଦେ କଥା ଶୁଣିଲେ, ସେଇଥିରୁ ତାଙ୍କର ବୁଝିନେବା ଉଚିତ ଥିଲା ଯେ ତାଙ୍କ ମୁଣ୍ଡରେ ଶାଗୁଣା ଉଡ଼ିବାକୁ ଆସୁଚି । ତାଙ୍କ ଗାଲରେ ଯେ ଗୋଟାଏ ଷୋଳପଣିଆ ଖୁନ୍ଦା ବସି ଦାନ୍ତପାଟି ଦୋହଲେଇ ଦେଲା, ସେ ତାଙ୍କର ଦୋଷ । ତାଙ୍କ ଗାଲରେ ଯେ ଗୋଟାଏ ବତିଶିପଳିଆ ଖୁନ୍ଦା ବସି ତାଙ୍କର ଦି'ଧାଡ଼ି ଦାନ୍ତ ଝାଡ଼ି ନ ଦେଲା, ସେ ତାଙ୍କ ପୂର୍ବପୁରୁଷଙ୍କର ତପସ୍ୟାର ଫଳ ।

ଯାହାହେଉ ଉପଯୁକ୍ତ ରୋଗର ଔଷଧ । ପ୍ରଫୁଲ୍ଲବାବୁଙ୍କର ଜିଭ ଗଲୁ ମରିଗଲା ବୋଧହୁଏ । ସେ ଆଉ ଦ୍ୱିରୁକ୍ତି ନକରି ଖାଲି ବାଁ ହାତୁଟାରେ ବାଁ ଗାଲଟାକୁ ଆଉଁସିବାରେ ଲାଗିଲେ । କଲେଜର ଜଣେଅଧେ ଛାତ୍ର ନବଯୌବନର ଉତ୍ତେଜନାରେ ମନର ଆଶା ଗାଡ଼ିରେ ଯାଉଥିବା ନବ ରମଣୀମାନଙ୍କ ସୌନ୍ଦର୍ଯ୍ୟସମ୍ଭାର ଦେଖି ଆଖିର ତୃପ୍ତିରେ ମେଣ୍ଟାଇବା ପାଇଁ ପ୍ଲାଟଫର୍ମରେ ବୁଲୁଥିଲେ । ସେମାନେ ଏ ରହସ୍ୟ ମଧ୍ୟରେ ଗୋଟାଏ ବଡ଼ରକମ ଫୌଜଦାରି ମାମଲାର ଗନ୍ଧ ପାଇ ଏମାନଙ୍କ ପାଖକୁ ମାଡ଼ି ମାଡ଼ି ଆସୁଥିଲେ; କିନ୍ତୁ ଧୋଇବାବୁ ସେମାନଙ୍କୁ ସେତକ ସୁବିଧା ନ ଦେଇ ପ୍ରଫୁଲ୍ଲବାବୁଙ୍କର ହାତ ଧରି ତାଙ୍କୁ ଗାଡ଼ିଖାନା ଆଡ଼କୁ ଘୋଷାରି ନେଲେ । ଦି'ଜଣ ଗାଡ଼ିବାଲା ଦୁଇଆଡୁ ଆସି ଜଣେ ଧୋଇବାବୁଙ୍କର ଓ ଆଉ ଜଣେ ପ୍ରଫୁଲ୍ଲବାବୁଙ୍କର ହାତ ଧରି ଟାଣିବାକୁ ଲାଗିଲେ । ଆଉ ଦି' ଚାରିଜଣ ତାଙ୍କ ପଛରେ ଚାଲୁଥାନ୍ତି । ସମସ୍ତଙ୍କ ତୁଣ୍ଡରେ ଏକ କଥା—"ବାବୁ ମୋ ଗାଡ଼ିକୁ ଆସନ୍ତୁ । ରବରଚକ ଗାଡ଼ି । ସେକେଣ୍ଡ କ୍ଲାସ ଗାଡ଼ି । ଆସନ୍ତୁ ।" ଯେପରିକି ଧୋଇ ଓ ପ୍ରଫୁଲ୍ଲ ସେମାନଙ୍କର କେତେଦିନର ଚିହ୍ନା ଓ କେତେ ଜନ୍ମର ଆତ୍ମୀୟ ! ଆଉ ତାଙ୍କୁ ପାଇଲେ ତାଙ୍କ ଗାଡ଼ି ଯେପରି ସୁନା ପାଲଟିଯିବ ! ଆଗେ ପୁରୀରେ ଗାଡ଼ିରୁ ଓହ୍ଲେଇଲେ ପଣ୍ଡାମାନଙ୍କ ଏହିପରି ଦୌରାତ୍ମ୍ୟ ଦିନେ ଲୋକେ ଦେଖିଥିଲେ । ଆସ୍ତେ ଆସ୍ତେ ପୁରୀର ହଇଜା ରୋଗ ଯେପରି କଟକକୁ ଆସି ସେଠାରେ ଆଠକାଳି ବାରମାସୀ ଆସନ ଜମେଇ ବସିଲା, ସେହିପରି ପଣ୍ଡାମାନଙ୍କର ଦୌରାତ୍ମ୍ୟ ପୁରୀରୁ ଆସି କଟକର ଗାଡ଼ିବାଲା ଓ ମଟର ଦଲାଲଙ୍କ ମଧ୍ୟରେ ବସା ବାନ୍ଧିଲାଣି । ଏଠାରେ ମଧ୍ୟ ପୁରୀର ଜୟ ! ହାୟ, ହାୟ, ଓଡ଼ିଶାର ନେତୃବର୍ଗ । ତୁମେ ଆଉ କଲ କ'ଣ ? "ନନାଙ୍କ ଅପରେସନ" ଦିନୁଁ ତୁମେ ସବୁ ଯେ ଓଡ଼ିଶାର ଦୁଇ ତିନିଟା ଜିଲ୍ଲା ମଧ୍ୟରେ ଗୋଟାଏ ମହାଭାରତ ଯୁଦ୍ଧ ଲଗାଇଥିଲ ଓ ଗୋଟାଏ ଜିଲ୍ଲାର ସର୍ବନାଶ ନହେଲେ ଆଉ ଜିଲ୍ଲାମାନଙ୍କର ତ୍ରାହି ନାହିଁ ବୋଲି ଚିତ୍କାର କରି ଦେଶ ମଧ୍ୟରେ ଗୋଟାଏ ଜାତି ଯୁଦ୍ଧର ସୂତ୍ରପାତ କରିଚ, ତା'ର ଉଦ୍ୟମ ସବୁ କ'ଣ ହେଲା ? ଥରେ ଅଣ୍ଟାବାନ୍ଧି ବାହାରିପଡ଼ । ଚାରିଟା ଜିଲ୍ଲାରୁ ଗୋଟାଏ ଜିଲ୍ଲାକୁ, ଅଶି ଲକ୍ଷ ଲୋକରୁ ପନ୍ଦର ଲକ୍ଷ ଲୋକଙ୍କୁ ମାରି ଏକ ଏକ ଦେଶର ସମୃଦ୍ଧ ଉନ୍ନତି ସାଧନ କର । ଦେଶର କୃତି ସନ୍ତାନ, ସୁଯୋଗ୍ୟ ସନ୍ତାନ ତୁମ୍ଭେମାନେ । ଏତିକି ବୁଝିପାରୁନାହିଁ, ମାତୃଭୂମିର ଲକ୍ଷ ଲକ୍ଷ ସନ୍ତତିର ବିକାଶ ନହେଲେ ତୁମ କେତେ ଜଣଙ୍କର ଉନ୍ନତି ହେବ କିପରି ! ଲୋକ କି ସବୁବେଳେ ନିଜ ଗୁଣରେ ବଡ଼ ହୁଏ ? ମୁଁ ରାଜା ନୁହେଁ, ରାଜପୁତ୍ର ନୁହେଁ, ରାଜାର ସାହସ ଓ ବିଦ୍ୟା ମୋଠାରେ ନାହିଁ । ତଥାପି ମେସିଆ ଭେଳିଙ୍କ

କୂଟନୀତିରେ ରାଜାକୁ ମାରି, ରାଜପୁତ୍ରକୁ, ଦେଶର ସୈନ୍ୟସାମନ୍ତଙ୍କୁ ମାରି ତାଙ୍କର ପାଉଁଶଗଦା ଉପରେ ସିଂହାସନ ଜମାଇ ବସିପାରିଲେ ମୁଁ କ'ଣ ରାଜା ହେବିନାହିଁ ! ଆଉ କଥାରେ ଯେ କହନ୍ତି, ଦି'ଜଣଙ୍କର କଳିରେ ତିନି ଜଣର, ସେଥିରେ କି ଅଛି ? ତୃତୀୟ ଜଣକ ଲାଭ କରୁ, ଭାଇ ତ ମଲା । ସାବାସ୍, ଭାଇ ସାବାସ୍ !

ଧୋଇବାବୁ ଓ ପ୍ରଫୁଲ୍ଲବାବୁ ଯାଇ ଗୋଟାଏ ଗାଡ଼ିରେ ବସିଲେ । ଭଡ଼ା ଛିଣ୍ଡିଲାବେଳକୁ ପୁଣି ଏକ "ହୁଁ, ହୁଁ, ନା, ନା" ଯୁଦ୍ଧ । ଯାହାହେଉ ଶେଷରେ ଖଣ୍ଡେ ଗାଡ଼ିରେ ବସିଲେ । ମେଘ ଘଡ଼ଘଡ଼ି ପରି ଶବ୍ଦରେ କାନ ଅତଡ଼ା ପକାଇ, ନାଲି ଧୂଳିରେ ଅବିରସ୍ତର ମେଲେଇ ଗାଡ଼ି ଚାଲିଲା । ସେହି ଶବ୍ଦ ମଧ୍ୟରେ ଧୋଇବାବୁ ପ୍ରଫୁଲ୍ଲବାବୁଙ୍କ କାନ ପାଖରେ ମୁହଁ ରଖି ଚିତ୍କାର କଲେ, "ଟଙ୍କାଗୁଡ଼ାକ କାହିଁ ?" ପ୍ରଫୁଲ୍ଲବାବୁ ଚମକିପଡ଼ିଲେ, କହିଲେ, "ଏତେ ବଡ଼ ଚିତ୍କାର କରିବାର ଦରକାର କ'ଣ ଥିଲା ?"

ଧୋଇ : ଶୁଣୁନାହୁଁ ଏ ଯୁ ଆବାଜ ହଉଚି ଗାଡ଼ିର, ଏଥିରେ ତୁନି କରି କହିଲେ କି କିଛି ଶୁଝିବ !

ପ୍ରଫୁଲ୍ଲବାବୁ ତାଙ୍କ ସୁଟକେଶଟା ଫିଟାଇ ତୋଡ଼ାଏ ନୋଟ ଧୋଇବାବୁଙ୍କ ଆଡ଼କୁ ବଢ଼ାଇଦେଲେ । ଧୋଇ ତାକୁ ସେହିପରି ନିଜ ଦି' ପକେଟରେ ମୁଠା ମୁଠା କରି ପୂରାଇନେଲେ । କହିଲେ, "ଏତିକି ?"

ପ୍ରଫୁଲ୍ଲ : ଶହେ ଟଙ୍କିଆ ଓ ହଜାର ଟଙ୍କିଆ ନୋଟ୍ ହୋଇ ପାଞ୍ଚହଜାର, ଆଉ କ'ଣ ? ଗଣି ଦେଖନା ! ଟଙ୍କାଗୁଡ଼ାକ ନଗଣି ଏପରି ମାଟିପରି...

ଧୋଇ : ଚୁପ୍ ! ସେ ବିଦ୍ୟାବାଗୀଶପଣିଆ ମୋ ପାଖରେ ଦେଖାଇବାକୁ ହବନାହିଁ । ତା'ପରେ ବାଲେଶ୍ୱରରେ ମତେ ନ ପାଇ ଘରକୁ ତ ସିଧେ ଯାଇଥାନ୍ତୁ, କଟକରେ ଓହ୍ଲାଇଲୁ କିଆଁ ?

ପ୍ରଫୁଲ୍ଲ : ତୁ କ'ଣ ମତେ ବସେଇ ଉଠେଇ ଦେଲୁ ! ତୋ ଲାଗି...

ଧୋଇ : ବୁଝିଚି, ତୁ ସମୁଦ୍ର ଡେଇଁ ଲଙ୍କା ଦହିବୁ । ପଚାରେ, କଟକରୁ କିଆଁ ? ସିଧା କଥାରେ କି ଗୋଟାଏ ସିଧା ଜବାବ ଦେଇପାରିବୁ ନାହିଁ ?

ପ୍ରଫୁଲ୍ଲ : ଆସୁଥିଲି 'ସ୍ପଷ୍ଟବାଦୀ' କାଗଜର ସମ୍ପାଦକଙ୍କ ସହିତ ଦେଖାକରିବାପାଇଁ ।

ଧୋଇ : ତୋର କି ଦରକାର ତାଙ୍କ ସଙ୍ଗରେ ?

ପ୍ରଫୁଲ୍ଲ : ଦରକାର ତ ତୁଇ । ତୁ କୁଆଡ଼େ ଗୋଟାଏ ବଙ୍ଗାଳୁଣୀ ବାହାକରିଚୁ ବୋଲି ସେ ତାଙ୍କ କାଗଜରେ ଲେଖିଥିଲେ ।

ଧୋଇ : ତୁ ଯାଇ କରିବୁ କ'ଣ, ତାଙ୍କୁ ଫାଶି ଦବୁ !

ପ୍ରଫୁଲ୍ଲ : ନା, ମା' କାଗଜରେ ସେ କଥା ପଢ଼ି ବଡ଼ ବ୍ୟସ୍ତ ହୋଇଛନ୍ତି । ମୁଁ କୁହାବୋଲା କରି ଯଦି କଥାଟା ମିଛ ବୋଲି ପୁଣି ଲେଖାଇ ଦେଇପାରେ ।

ଧୋଇ : କିପରି ? ସେ ଯାହାକୁ ସତ ବୋଲି ଲେଖିଚନ୍ତି, ତାକୁ ପୁଣି ମିଛ ବୋଲି ଲେଖିବେ କାହିଁକି ? ତୋର ଏ ବାନ୍ଦର ମୁହଁ ଦେଖି ?

ପ୍ରଫୁଲ୍ଲ : ମିଛ ବୋଲି ଲେଖିବେ; କାରଣ କଥାଟା ପ୍ରକୃତରେ ମିଛ ।

ଧୋଇ : ତା' ମାନେ, ତୁ ତାଙ୍କୁ ସତ କଥାଟା କହିବୁ । ମା'ଙ୍କୁ ମଧ୍ୟ ସବୁ କହିସାରିଚୁ ବୋଧହୁଏ । ତୁ ଯଦି ଏ ସଂସାରରେ ନଥାନ୍ତୁ, ତା'ହେଲେ ଅନେକ ଲୋକଙ୍କର ଦୁଃଖ, କଷ୍ଟ ଓ ଦୁଶ୍ଚିନ୍ତା ବହୁତ କମିଯାନ୍ତା । ଶୁଣୁ, ଏସବୁ କଥା ତୋ ଦିହାଡି ହବାର ନୁହେଁ । ମୁଁ ମଧ୍ୟ ଆସିଚି ସେ ଉଦ୍ଦେଶ୍ୟରେ ।

ପ୍ରଫୁଲ୍ଲ : ତୁ ସେଇଥିପାଇଁ ଆସିଛୁ ତେବେ...ସ, ବାଃ, ବାଃ, ଯାହାହେଉ ମୋ ମୁଣ୍ଡରୁ ଗୋଟାଏ ବୋଝ ଗଲା ।

ଧୋଇ : ତୋ ମୁଣ୍ଡରେ ଯେ ଗୋବରବୋଝ ଅଛି, ସେ ତୁ ନ ମରିବା ପର୍ଯ୍ୟନ୍ତ ଯିବାର ନୁହେଁ । ତୁ ରହିବୁ କେଉଁଠି ?

ପ୍ରଫୁଲ୍ଲ : କିଆଁ ? ଆମ ମେସ୍‌ରେ ?

ଧୋଇ : ମେସ୍ ତୋର ପୋଡ଼ିଯାଉ । ତୁ ରହିବୁ ମୋ ସାଙ୍ଗରେ ଡାକବଙ୍ଗଳାରେ !

ପ୍ରଫୁଲ୍ଲ : ଡାକବଙ୍ଗଳାରେ ! ଖାଇବି କ'ଣ !

ଧୋଇ : କଟକ ଡାକବଙ୍ଗଳାରେ ଖାନସମା ବେଶ୍ ରୋଷେଇ କରିଜାଣେ । ସେଇଠି ଖାଇବୁ ।

ପ୍ରଫୁଲ୍ଲ : ନା ବାବା, ସେ ହବନାହିଁ । ସେଉଟା ଯେ ମୁସଲମାନ ।

ଧୋଇ : ନା, ହିନ୍ଦୁ ଖାନସମା ମଧ୍ୟ ଅଛି ।

ପ୍ରଫୁଲ୍ଲ : ନାହଁ, ନାହିଁ ଖାନସମା ଫାନସମା କଥା ମୋତେ ସହିବ ନାହିଁ । ଆଉ ତୁ ମତେ ଥଟ୍ଟା କରୁଚୁ । ଡାକବଙ୍ଗଳା ତ ପଛରେ ରହିଲାଣି ।

ଧୋଇବାବୁ ଚାହିଁ ଦେଖିଲେ ଗାଡ଼ି ସେତେବେଳକୁ ଆସି ମଙ୍ଗଳାବାଗ ଛକ ଉପରେ ହେଲାଣି । ଧଡ଼କରି ଉଠିପଡ଼ି ବାହାରକୁ ମୁହଁ କାଢ଼ି ଡାକିଲେ, "ଏ ଗାଡ଼ିବାଲା, ଗାଡ଼ି ଫେରାଅ ।"

ଗାଡ଼ି : କାହାଁ ଯାଏଗା ବାବୁ ?

ଧୋଇ : ଆରେ ଯାଏଗା-ଝାଏଗା ରଖିଦେ । ଚାଲ ଡାକବଙ୍ଗଳାକୁ ।

ଗାଡ଼ି ଫେରି ଚାଲିଲା । ପ୍ରଫୁଲ୍ଲବାବୁ ଦେଖିଲେ ସତରେ ଡାକବଙ୍ଗଳାରେ ରହିବା ଯୋଗ ହେଲାଣି । କ'ଣ କେତେ ସମୟ ଭାବିଲେ । ତା'ପରେ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇଲେ । ଧୋଇବାବୁ ତାଙ୍କୁ ଚାହିଁ ମୁରୁକି ମୁରୁକି ହସୁଥାନ୍ତି । ଗାଡ଼ି ଡାକବଙ୍ଗଳାରେ ରହିଲା; ଧୋଇବାବୁ ଗାଡ଼ିବାଲାକୁ ଚୁକ୍ତି ପଇସାତକ ଦେଇ ବିଦାୟକଲେ । ତା'ପରେ ଧୋଇବାବୁ କହିଲେ, "ଏହି ପାଖରେ କଲେଜ ବୋର୍ଡିଂ ତ । ମରିଯାଉଥିଲୁ କିଆଁ ? ଯା, ତୁ ବୋର୍ଡିଂରେ କାମ ସାରି ଆ ! ମୁଁ ଏଠି ମୋର କାମ ତୁଟାଉଚି । ତା'ପରେ ସମ୍ପାଦକଙ୍କ ପାଖକୁ... ।"

ଏମାନେ ବାହାରିଲାବେଳକୁ ପ୍ରାୟ ଦିନ ଦଶଟା । ଖଣ୍ଡେ ଗାଡ଼ି କରି ଓ ଗାଡ଼ିର ଦୁଆର ବନ୍ଦକରି ଦୁହେଁ ବସିଲେ । କିଛି ସମୟ ପରେ ଗାଡ଼ି ଯାଇ ପହଞ୍ଚିଲା ଧୂଳି ବଜାର ଛକ ଉପରେ ଗୋଟାଏ ଦୋତାଲା ପାଖରେ । ପ୍ରଥମେ ଧୋଇବାବୁ ଗାଡ଼ିରୁ ଓହ୍ଲାଇ ତରବର ହୋଇ ଘର ଭିତରକୁ ପଶିଗଲେ । ତାଙ୍କ ପଛରେ ଧୀରେ ସୁସ୍ଥେ ଗଲେ ପ୍ରଫୁଲ୍ଲ ବାବୁ ।

'ସ୍ପଷ୍ଟବାଦୀ' କାଗଜ ଓଡ଼ିଶାର ଗୋଟାଏ ମୁଖ୍ୟ କାଗଜ । ଗାନ୍ଧିଦଳିଆ ହେଲେ କ'ଣ ହବ, କାଗଜର ଲେଖା ଢଙ୍ଗ ଓ ପୂର୍ବପୁରୁଷର ସୁନାମ ହେତୁରୁ ତାହାର କାଟତି ଓଡ଼ିଶାରେ ଅନ୍ୟ କାଗଜମାନଙ୍କଠାରୁ ବେଶ୍ । ସ୍ପଷ୍ଟବାଦୀ ଛାପାଖାନାରୁ ବାହାରେ । ତଳ ମହଲାରେ ଛାପାକଳ, କମ୍ପୋଜିଟରମାନଙ୍କର ବସିବାର ସ୍ଥାନ ଇତ୍ୟାଦି । ଏହି ମହଲାର ଗୋଟାଏ ବଖରା ମଧ୍ୟ ଅଫିସ୍ ଘର । ମେନେଜର କୃଷ୍ଣବାବୁ ଏଠାରେ ବସି ତାଙ୍କର ହୁକୁମ ଜାରି କରନ୍ତି । ସମ୍ପାଦକ ମହାଶୟ ଉପରେ ଥାନ୍ତି । ପାଖରେ ଗୋଟାଏ ମେସ୍‌ରେ ମୁଠେ ମୁଠେ ଖାନ୍ତି ଓ ଏଇ ଉପର ମହଲାରେ ପଡ଼ିଥାନ୍ତି । ଛାପାଖାନାର କର୍ମୀମାନେ ସମ୍ପାଦକଙ୍କୁ ପଚାରନ୍ତି ନାହିଁ କି ବୁଝନ୍ତି ନାହିଁ । ମେନେଜର ସର୍ବେସର୍ବା । ତେବେ ମେନେଜରଙ୍କ କଡ଼ା ଶାସନରେ କର୍ମୀମାନେ ବେଶି ରାଗିଗଲେ, ସମ୍ପାଦକ ବିଚାରାଙ୍କୁ ତାତିଲା ନିଆଁରେ ପାଣି ପକାଇବାକୁ ଡାକ ପଡ଼େ । କର୍ମୀମାନଙ୍କଠାରୁ ବକା କଢ଼ା ଶୁଣିବାର ଓ ସେମାନଙ୍କୁ ଖୋସାମଦ, ତୋଷାମଦ କରିବାର ଭାର ସମ୍ପାଦକଙ୍କର; କିନ୍ତୁ କର୍ମୀମାନଙ୍କୁ ବକା କଢ଼ା କରିବା ଓ ମାଡ଼ ମାରିବାର ଭାର ମେନେଜରଙ୍କର । ସମ୍ପାଦକ ମହାଶୟ ଓଡ଼ିଶାର ଜଣେ ପାଠୁଆ । ନାମ ଗୋରାଚାନ୍ଦ ବାବୁ । ନାମ ଅନୁସାରେ ବର୍ଣ୍ଣଟା ମଧ୍ୟ ପାଇଚନ୍ତି ତୋଫା ଗୋରା । ପୃଥିବୀରେ ନାହିଁ ନଥିବ ସେ ତୋଫା ଗୋରା, ସେ ବର୍ଣ୍ଣ । ଗୋଲଗାଲ, ମୋଟାମୋଟି, ଥାକୁଲା ଥାକୁଲା ଦିହଟି କିନ୍ତୁ ଦେଖିବାକୁ ବେଶ୍ ବଳିଦେଲାପରି । ପିଟିଦେଲା ପରି ବେଶ୍ ତ ଡେଙ୍ଗା, ପ୍ରାୟ ଫୁ୫-୪"ରୁ କମ୍ ଉଚ୍ଚ ନୁହଁନ୍ତି । ଦେହରେ ଜୋର ମଧ୍ୟ ଅଛି ବେଶ୍ । ବୟସ ଅନ୍ଦାଜ ୪୦ରୁ ସେପାଖ । ମୁଣ୍ଡର ଗୋଟିଏ ଗୋଟିଏ ବାଳ ଧଳା ହୋଇଆସୁଚି । ଉପରମହଲା ବାରଣ୍ଡାରେ ଖଣ୍ଡେ ସଉପ ମସିଣା ପକାଇ ଓ ଛାତିଟା ତଳେ ଗୋଟାଏ ତକିଆ ଉପରେ ଭରା ଦେଇ ଯେ ଲମ୍ବହୋଇ ପଡ଼ିଚନ୍ତି ଏବଂ ଗୋଟାଏ ଅଜାଙ୍କ ଅମଳର ଝରଣା କଲମରେ କ'ଣ ଗୁଡ଼ାଏ ଲେଖିଚନ୍ତି । ପଣ୍ଡିତ ଲୋକ । କଲମ ଧରି ବସିଲେ କଲମମୁନରୁ କାଳି ଶୁଖିବାକୁ ଦେବେନାହିଁ; କିନ୍ତୁ କଲମଟି ଧରିବା ମୁସ୍କିଲ । ଏପରି ଅଳସୁଆ ବୋଧହୁଏ ଆଉ କେହି ନାହିଁ । ଲୋକେ କହନ୍ତି, ଗୋରାବାବୁ ଇଚ୍ଛାକଲେ ଓଡ଼ିଆ ଗାନ୍ଧିଦଳଙ୍କ ଭିତରେ ଜଣେ ବିଶିଷ୍ଟ ନେତା ହୋଇପାରନ୍ତି । ଟିକିଏ ଚେଷ୍ଟା କଲେ ଓଡ଼ିଆ ସାହିତ୍ୟରେ ଗୋଟାଏ ନାମଜାଦା ଆସନ ପାଇପାରନ୍ତି; କିନ୍ତୁ ସେଇ ଇଚ୍ଛାଟିକକ, ସେଇ ଚେଷ୍ଟାଟିକକ ତାଙ୍କଠାରୁ ବାହାର ହବା ବଡ଼ କଷ୍ଟ । ନ ବୁଝି, ଅବୁଝା ହବ ଯେ, ଜାଣି ଅଜାଣୁଆ ହବ, ତାକୁ ବୁଝାଇବା ଜଣାଇବା ବଡ଼ କଷ୍ଟ । ତେବେ ବିଦ୍ୟାରେ ଯେଉଁମାନେ ତାଙ୍କର ଗୋଡ଼ ଧୋଇବାକୁ ସରିହେବେ ନାହିଁ, ସେମାନେ ସାହିତ୍ୟ କ୍ଷେତ୍ରରେ ଆସ୍ଫାଳନ କଲାବେଳେ, ସଭା-ସମିତିରେ ଗର୍ଜନ-ତର୍ଜନ କଲାବେଳେ, ୟାଙ୍କ କଥା ଭାବି କେତେକଙ୍କର ମନରେ କଷ୍ଟ ହୁଏ । ସେ ନୀରବରେ ଦେଶପାଇଁ ଅନେକ କାମ କରିଛନ୍ତି; କିନ୍ତୁ ତାଙ୍କ ପକ୍ଷରେ ନୀରବ ରହିବା ଦ୍ରୋହିତା ।

ଧୋଇବାବୁ ସିଧେ ସିଧେ ଗୋରାଚାନ୍ଦଙ୍କ ପାଖକୁ ଉଠିଗଲେ । ସିଡ଼ି ଉପରେ ତାଙ୍କର ଦୁମ ଦୁମ ପାଦଶବ୍ଦ ଶୁଣି ଗୋରାଚାନ୍ଦ ମହାଶୟ ଏଣ୍ଡୁଅ ଭଳି ମୁଣ୍ଡ ଟେକି ଚାହିଁଲେ । ଧୋଇବାବୁଙ୍କର ମୁଣ୍ଡଟା ମାତ୍ର ଦେଖାଯାଉଥିଲା । ବିଶ୍ୱାସ କରିପାରିଲେ ନାହିଁ ନିଜ ଆଖିକି । ଧୋଇବାବୁ ସିଡ଼ି ପାର ହୋଇ ତାଙ୍କ ପାଖକୁ ଆସିଲେ । ସେ ଉଠି ବସିଲେ । କହିଲେ, "ଆରେ ଧୋଇବାବୁ ଯେ ! ନମସ୍କାର, ନମସ୍କାର ଭାଇ ! ବସ ବସ, ବେଶ୍ ଆନନ୍ଦର କଥା; କିନ୍ତୁ ଏପରି ଲୁଚେଇ ଚୋରେଇ କରିବାରେ କି ଦରକାର ଥିଲା ?"

ଧୋଇ : ଲୁଚେଇ ଚୋରେଇ ? ଲୁଚେଇ ଚୋରେଇ କରିବାର ଅଭ୍ୟାସ ସମ୍ବାଦ-କାଗଜ ସମ୍ପାଦକମାନଙ୍କର; ମୋର ନୁହେଁ । କାମଦାମ କିଛି ନାହିଁ । ହାତରେ ମଲା କଙ୍କଡ଼ା ଲେଉଟିବ ନାହିଁ । ଯେତେକ ଅକର୍ମା, ଅକାମୁକା, କୋଡ଼ି ସମସ୍ତେ ଏକାଠି ହୋଇ ଖଣ୍ଡେ କାଗଜରେ ଦି' ଧାଡ଼ି ମିଛ ଲେଖିଦେଇ ବୋଲନ୍ତି କ'ଣ ନା, ଆମେ ସମ୍ପାଦକ । ଆମେ ଦେଶସେବକ ।

ସମ୍ପାଦକ ମହାଶୟ କିଛି ବୁଝିପାରିଲେ ନାହିଁ । ବକା ଖାଇବା ତାଙ୍କର ଅଭ୍ୟାସ । ଦିନରେ ଥରେ ଅଧେ କାହାରିଠାରୁ ବକା ନଶୁଣିଲେ ତାଙ୍କ ମନଟା କିପରି ସୁନ୍ଦୁରୁ-ପୁନ୍ଦୁରୁ ହୁଏ; କିନ୍ତୁ ଖାଲି ପେଟ୍‌ଟାରେ ଅଗାଧୁଆଟାରେ ବକା ଶୁଣିବା ବଡ଼ କଷ୍ଟ । ସେ କହିଲେ, "ମୋର କି ଦୋଷ ? ତୁଇ, ଯେ ମୋ ଉପରେ ଏ ଗାଳିଗୁଡ଼ାକ ।"

ଧୋଇବାବୁ ପକେଟରୁ କାଢ଼ି ସେ ଦିନର 'ସ୍ପଷ୍ଟବାଦୀ' କାଗଜ ଖଣ୍ଡେ ବଢ଼ାଇଦେଲେ । ଗୋରାବାବୁଙ୍କ ଆଖି ଧୋଇବାବୁଙ୍କ ବିବାହ ପ୍ରସଙ୍ଗ ଉପରେ ପଡ଼ିଲା । ସେ କିଛି ବୁଝିପାରିଲେ ନାହିଁ । ତା'ପରେ କ'ଣ ଭାବି କହିଲେ, "କିନ୍ତୁ ଭାଇ, ତୁମେ ହେଲ ଓଡ଼ିଶାର ଜଣେ କୃତୀ ସନ୍ତାନ, ଆଉ କରିବସିଚ ଗୋଟାଏ ଭଲ କାମ । ସାମ୍ବାଦିକ ଭାବରେ ତୁମର ଏପରି ମଙ୍ଗଳ କଥା...."

ଧୋଇ : ମଣିଷର ମନ ଠିକ୍ ଥିଲେ ସେ ସିନା କଥା ବୁଝେ, ଭଲମନ୍ଦ ବାରେ । ସବୁବେଳେ ଟେଳେ ଟେଳେ ଭାଙ୍ଗ ଖାଇ ଯେ ହେବ ଭୋଳା ମହାଦେବ, ସେ ଭଲମନ୍ଦ, ସତମିଛ ବୁଝିବ କିପରି ।

ଗୋରା : ଯାଃ, କ'ଣ ଗୁଡ଼ାଏ ଯେ ତୁମେ କହ ଧୋଇବାବୁ ! ହୋଇପାରେ ଯେ ତୁମକୁ ନପଚାରି କଥାଗୁଡ଼ାକ ପ୍ରକାଶ କରିଦେଇ ତୁମକୁ ଟିକିଏ ଅସୁବିଧାରେ ପକାଇଥିବି । ବୋଧହୁଏ କଥାଟା ଲୁଚାଇବାରେ ତୁମର କୌଣସି ଉଦ୍ଦେଶ୍ୟ ଥାଇପାରେ । କିନ୍ତୁ ଭାଇ, ଏତେ ବଡ଼ ଖବରର ସନ୍ଧାନ ପାଇ ତାକୁ ପ୍ରକାଶ ନକରିଥିଲେ ଆମ୍ଭେମାନେ ନିଜଠାରେ ଓ ନିଜ ବ୍ୟବସାୟଠାରେ ଦୋଷୀ ହୋଇଥା'ନ୍ତୁ ।

"ତୁମେ ପୋଡ଼ିଯାଅ, ତୁମର ବ୍ୟବସାୟ ପୋଡ଼ିଯାଉ । ମୋର ତ ମନେହୁଏ, ଖଣ୍ଡେ ଡିଆସିଲ ମାରି ତୁମର ଏ କାଗଜଗଦା ଉପରେ ପକାଇ ଦିଅନ୍ତି । ଆଉ ଦେବି ମଧ୍ୟ, ତୁମେ ଯଦି ମତେ ନିତାନ୍ତ ବିରକ୍ତ କର ।" କହି ଧୋଇ ପକେଟରୁ ଗୋଟାଏ ଡିଆସିଲ ପେଡ଼ି

କାଢ଼ିଲେ । ସେଥିରୁ ଖଣ୍ଡେ କାଠି ବାହାର କରି ଧଇଲେ । ଗୋରାବାବୁ ବ୍ୟସ୍ତହୋଇ ଉଠିପଡ଼ି କହିଲେ, "ଆରେ କରୁଚ କ'ଣ ? କରୁଚ କ'ଣ ? ଡିଆସିଲଟା ରଖ ! ପକେଟରେ ରଖ !"

ଧୋଇ : ତା'ହେଲେ ତୁମେ ସ୍ୱୀକାର କରୁଚ ଯେ କଥାଟା ମିଛ !

ଗୋରା : କଥାଟା ମିଛ ? କୋଉ କଥା ?

ଧୋଇ : ଯୁ ମିଛ କଥା ତୁମେ କାଗଜରେ ଛାପିଚ ।

ଗୋରା : ମିଛ, ତୁମର ବିବାହ କଥା ମିଛ ?

ଧୋଇ : ବରାବର, ଆଗରୁ ଶେଷଯାଏ ସବୁ ମିଛ । ବିଶ୍ୱାସ ନହୁଏ ତ ପ୍ରଫୁଲ୍ଲକୁ ପଚାରିପାର !

ଗୋରା : କିନ୍ତୁ ଆମ୍ଭେମାନେ ଯେ ଖୁବ୍ ବିଶ୍ୱସ୍ତ ସୂତ୍ରରୁ ବୁଝିଚୁଁ ଏ କଥା ଠିକ୍ !

ଧୋଇ : ତୁମର ବିଶ୍ୱସ୍ତ ସୂତ୍ରଟା କିଏ ?

ଗୋରା : ତା' ମୁଁ କହିପାରିବି ନାହିଁ ।

ଧୋଇ : ମୁଁ କହିବି ? ସଦାଶିବ ବାବୁ ।

ଗୋରା : ତୁମେ କିପରି ଜାଣିଲ ? ଆରେ ନା, ନା, ସଦାଶିବ ବାବୁ କି ଆଉ କିଏ ସେ କଥା ମୁଁ କହିବାକୁ ମୋଟେ ରାଜି ନୁହେଁ ।

ଧୋଇ : ତୁମ ରାଜି ଅରାଜିରେ କିଛିମାତ୍ର ଯାଏ-ଆସେ ନାହିଁ । ଏ ତୁମ ବିବାହଘର କଥା ନୁହେଁ ଯେ ତୁମ ରାଜି ଅରାଜି ଖୋଜାହେବ । ଆଉ କଥାଟା ମାନିଯାଇ ତା'ପରେ ତାକୁ ଘୋଡ଼ାଇବାରେ କିଛିମାତ୍ର ଫଳ ନାହିଁ । ସଦାଶିବ ବାବୁ କହିଲେ ସତ, କିନ୍ତୁ ଯେ ତ ତାଙ୍କ ବାହାଘର କଥା ନୁହେଁ; ମୋର । ମୁଁ କହୁଛି ମିଛ ।

ଗୋରା : କିନ୍ତୁ ସଦାଶିବ ବାବୁ ତୁମ ନାଁରେ ଏପରି ମିଥ୍ୟା କଥା କାହିଁକି ଯେ କହିବେ, ତା' ତ ମୁଁ ବୁଝିପାରୁ ନାହିଁ ।

"ତୁମ ବୁଝିବାର କିଛିମାତ୍ର ଦରକାର ନାହିଁ । ପ୍ରକୃତରେ କହିବାକୁ ଗଲେ ମୁଁ ମଧ୍ୟ କଥାଟା ଏପର୍ଯ୍ୟନ୍ତ ଠିକ୍ ଧରିପାରି ନାହିଁ । ଦେଖି...." ଏହା କହି ସେ କାଗଜଖଣ୍ଡ ଉଠାଇ ନେଲେ । ସେହି ଅଂଶଟା ପୁଣି ଥରେ ପଢ଼ିଲେ । 'ସେମାନଙ୍କୁ ହୁଏତ ପୈତୃକ ସମ୍ପତ୍ତିରୁ ବଞ୍ଚିତ ହେବାକୁ ପଡ଼ିପାରେ ।'—ଏଇ ଧାଡ଼ି ଉପରେ ତାଙ୍କର ଆଖି ଲାଖି ରହିଲା । ଥରେ ପଢ଼ିଲେ, ଦୁଇଥର ପଢ଼ିଲେ । ଚଟ୍‌କରି ବୁଲିପଡ଼ି ପ୍ରଫୁଲ୍ଲ ବାବୁଙ୍କୁ ପଚାରିଲେ, "ତୁ ଏହାର କ'ଣ ଜାଣୁ ?"

ପ୍ରଫୁଲ୍ଲ ବାବୁ ଚମକି ପଡ଼ିଲେ । ତାଙ୍କ ଜିଭଟା କାମୁଡ଼ି ହୋଇଗଲା । ସେ କହିଲେ, "ଆରେ ରାମ, ରାମ, ତୁ ମଣିଷକୁ ଏପରି ଚମକାଉ କିଆଁରେ ?" ଧୋଇବାବୁ ଆଉ ତାଙ୍କୁ କିଛି ନପଚାରି କହିଲେ, "ବୁଝିଲେ ଗୋରାବାବୁ ! ଏହା ମଧ୍ୟରେ ଅନେକ ରହସ୍ୟ ଅଛି । ମୁଁ ପରେ ସେସବୁ ତୁମକୁ ଲେଖିକରି ଦେବି । ବାଗେଇ ଜାଣିଲେ ଭଲ ଉପନ୍ୟାସ ହବ । ବର୍ତ୍ତମାନ

ଏତିକି ଜାଣିରଖ, ତୁମେ ଏ କାଗଜରେ ଯାହାସବୁ ଲେଖିଚ, ସେ ସବୁ ଏକାବେଳକେ ମିଛ । ଏହାର କି ପ୍ରତିକାର ତୁମେ କରିବାକୁ ଯାଉଚ ?"

ଗୋରା : ପ୍ରତିକାର ଆଉ କ'ଣ ? ତୁମେ ଯେତେବେଳେ କହୁଚ କଥା ମିଛ, ଆମେ କାଗଜରେ ଲେଖିଦେବୁଁ ଯେ ଏ ସମ୍ବାଦଟା ମିଛ, ଆଉ ସେଥିପାଇଁ ତୁମ ପାଖରେ କ୍ଷମା ପ୍ରାର୍ଥନା କରିବୁଁ ।

ଧୋଇ : ତୁମ କ୍ଷମା ପ୍ରାର୍ଥନାରେ ମୋ ଘଡ଼ା ଭର୍ତ୍ତିହବ ନାହିଁ; କିନ୍ତୁ ମିଛ ବୋଲି ଖବରଟା କାଲି କାଗଜରେ ବାହାରିବା ଦରକାର ।

ଗୋରା : କାଲି କାଗଜରେ ? ସେ ତ ହୋଇପାରୁ ନାହିଁ । କାଲି କାଗଜ ପାଇଁ ଯାହାସବୁ ଲେଖାହେବ, ସେ ତ ପ୍ରେସକୁ ଚାଲିଗଲାଣି । ଇଲେ ତ ଆଉ ବଦଳି ନପାରେ ।

ଧୋଇ : ବଦଳେଇବାକୁ ହବ । ତା' ନହେଲେ ମୁଁ ତୁମର ପ୍ରେସ-ଫ୍ରେସ ସବୁ ଚୂନା କରିଦେବି ।

, ଗୋରା : ଆଚ୍ଛା, ମୁଁ କୃଷ୍ଣକୁ ଡାକେ । ତା'ପରେ ହୁରି କଲେ, "କୃଷ୍ଣ, କୃଷ୍ଣ !" କୃଷ୍ଣବାବୁ ଉପର ମହଲାର ଆର ଘରଟାରେ ବସିଥିଲେ । ସେ ଉଠିଆସି କହିଲେ, "କିଆଁ ଗୋଟାଏ ମାଡ଼ ମାଇଲା ଭଳି ଡାକ ପକାଇଚ କିଓ ?" ଗୋରାବାବୁ ତାଙ୍କୁ ସବୁ କଥା ଖୋଲି କହିଲେ । କୃଷ୍ଣବାବୁ ମୁଣ୍ଡ ହଲେଇ ଜବାବ ଦେଲେ, "ସେ ତ ହଉ ନାହିଁ । ତୁମେ ବୁଝିପାରୁ ନାହଁ ! ଯେ ଆମକୁ ବିବାହ ଖବର ଦେଲେ, ସେ କହନ୍ତି ଏ କଥା ସତ । ତାଙ୍କୁ ମୁଁ ପଚାରିଥିଲି । ସେ କହିଥିଲେ ଦରକାର ପଡ଼ିଲେ ମୁଁ ଏକଥା ପ୍ରମାଣ କରିପାରେ । ଧୋଇବାବୁ କହୁଛନ୍ତି, ଏକଥା ମିଛ । ଆମେ କାହା କଥା ସତ କରିବୁଁ ?"

ଗୋରା : କିନ୍ତୁ ଧୋଇବାବୁଙ୍କ ବାହାଘର । ସେ ଯଦି କହନ୍ତି ମିଛ ବୋଲି....

କୃଷ୍ଣ : ବିବାହରେ ଧୋଇବାବୁ ତ ସବୁ ନୁହନ୍ତି । ଆଉ ଗୋଟାଏ ପକ୍ଷ ଯେ ଅଛି— କନ୍ୟାପକ୍ଷ । ଏପରି ହୋଇପାରେ ଯେ ଧୋଇବାବୁ କୌଣସି କାରଣରୁ ଏଇ ବଙ୍ଗାଳୁଣୀକୁ ବାହା କରିଚନ୍ତି; କିନ୍ତୁ ପରେ ତାଙ୍କ ମନରେ ଏ ବିବାହ ପ୍ରତି ବିରକ୍ତି ଆସିଚି । ସେ ଫାଙ୍କିଦେବେ ବୋଲି ବର୍ତ୍ତମାନ କହିପାରୁଥା'ନ୍ତି ଯେ ବିବାହଟା ମିଛ । ତା'ହେଲେ କ'ଣ ହବ ବୁଝିଚନ୍ତି ତ ? ଆମେ ଯଦି କଥାଟା ମିଛ ବୋଲି ଲେଖିଦେଉଁ, ତା'ହେଲେ କନ୍ୟାପିତା ଆମ ନାଁରେ ନାଲିସ୍ କରିପାରେ ।

କୃଷ୍ଣ : ଏମିତି ନାଲିସ୍ ହବ, ସେମିତି ନାଲିସ୍ ହବ । ଆମେ ତା'ହେଲେ ଗୋଟାଏ କଥା କାଟି, ଆଉ ଗୋଟାଏ କଥା ଲେଖିବାକୁ ଯିବୁ କିଆଁ ?

ଧୋଇ : ଯିବ କିଆଁ ? ଏଇ କଥାଟିକକ ପାଇଁ ଯେ, ତମେ ଯଦି କାଲି କାଗଜରେ ମିଛ ବୋଲି ନଲେଖ, ତା'ହେଲେ ମୁଁ ତୁମର ଛାପାଖାନାସହ ତୁମ ଦୁହିଁଙ୍କୁ ବିକ୍ରି କରିବି ବିଚ୍ ଅଦାଲତରେ ।

ଗୋରା : ଆହା, ଆହା, ରାଗୁଚ କାହିଁକି ଧୋଇବାବୁ ! ଆଚ୍ଛା କୃଷ୍ଣବାବୁ, ସାପ ମରିବ ନାହିଁ, ବାଡ଼ି ଭାଙ୍ଗିବ ନାହିଁ ଏପରି ଉପାୟରେ କିଛି ଲେଖାଯାଇ ପାରେ ନାହିଁ !

ଯହିଁରେ ଧୋଇବାବୁଙ୍କ ଜିଗର ବି ରକ୍ଷା ହବ, ଆଉ ଅପର ପକ୍ଷ ମଧ୍ୟ କିଛି କରିପାରିବ ନାହିଁ ଆମର ।

କୃଷ୍ଣ : ସେ କିପରି ? ଲେଖ ତ ଦେଖି ?

ଗୋରାବାବୁ ଟିକିଏ ବସି ଭାବିଲେ । ତା'ପରେ ଲେଖିଲେ, "ଆମ୍ଭେମାନେ.... ତାରିଖର କାଗଜରେ ଓଡ଼ିଶାର କୃତୀ ଶିଳ୍ପୀ ପରମାନନ୍ଦ ଓରଫ୍ ଧୋଇବାବୁଙ୍କ ବିବାହ ସମ୍ବନ୍ଧରେ ଯାହା ଲେଖିଥିଲୁଁ, ବର୍ତ୍ତମାନ ବୁଝୁଁଟୁଁ ଯେ ସେ କଥା ଜୁଆଡ଼େ ସତ ନୁହେଁ । ଖୁବ୍ ବିଶ୍ୱସ୍ତ ସୂତ୍ରରୁ ଖବର ମିଳେ ଯେ ଧୋଇବାବୁ କୌଣସି ବିଦେଶିନୀ ଯୁବତୀ ଅଥବା ପ୍ରମଥ ବାବୁଙ୍କ କନ୍ୟାଙ୍କୁ ବିବାହ କରି ନାହାନ୍ତି । ଏ ଦୁଇ ଖବର ମଧ୍ୟରୁ କେଉଁଟି ସତ୍ୟ, ତାହା ଆମ୍ଭେମାନେ କହିବାକୁ ଅକ୍ଷମ । ଯେପରି ଜଣାଯାଏ, ଏହା ମଧ୍ୟରେ କିଛି ରହସ୍ୟ ଅଛି । ଆମ୍ଭେମାନେ ପୁଣି ଅନୁସନ୍ଧାନ ଲଗେଇବୁ । ସବିଶେଷ ବିବରଣ ପରେ ଦିଆଯିବ ।" ଲେଖି କାଗଜଖଣ୍ଡ କୃଷ୍ଣବାବୁଙ୍କୁ ବଢ଼ାଇଦେଲେ । କୃଷ୍ଣବାବୁ ପଢ଼ି କହିଲେ, "ଧୋଇବାବୁ ଯଦି ଏଥିରେ ସନ୍ତୁଷ୍ଟ ହୁଅନ୍ତି, ତା'ହେଲେ ଆମର କୌଣସି ଆପତ୍ତି ନାହିଁ ।" ଧୋଇବାବୁ ମଧ୍ୟ କାଗଜଖଣ୍ଡ ନେଇ ପଢ଼ିଲେ । କହିଲେ, "ହୁଁ, ଏଇତକ ବର୍ତ୍ତମାନ ପାଇଁ ଯଥେଷ୍ଟ; କିନ୍ତୁ ଛାପାଟା କାଲି କାଗଜରେ ବାହାରିବା ଦରକାର ।" ଗୋରାବାବୁ କୃଷ୍ଣବାବୁଙ୍କ ଆଡ଼କୁ ଚାହିଁଲେ । କୃଷ୍ଣବାବୁ କହିଲେ, "କରାଯାଇପାରେ । କାଲି କାଗଜରେ ବାହାରିବ ।"

ଧୋଇ : ମୁଁ ଏହାର ଗୋଟିଏ କାଗଜ ଆଜି ସନ୍ଧ୍ୟାବେଳକୁ ପାଇପାରେ ?

କୃଷ୍ଣ : ଆଜି ସନ୍ଧ୍ୟାବେଳକୁ ? ତା'ହେଲେ କମ୍ପୋଜିଟର ଇତ୍ୟାଦିଙ୍କୁ ବେଶି ସମୟ ଖଟାଇବାକୁ ପଡ଼ିବ । ତା'ର ପଇସା ଦବ କିଏ ?

ଧୋଇ : କେତେ ?

କୃଷ୍ଣବାବୁ ଟିକିଏ ବିଚାରି କହିଲେ, "ହାରାହାରି ଦଶଟଙ୍କା ।" ଧୋଇବାବୁ 'ତଥାସ୍ତୁ' କହି ଦଶୋଟି ଟଙ୍କା ତାଙ୍କୁ ଦେଇ ବିଦାୟ ହେଲେ ।



# ଏକତିରିଶି

ବାଲେଶ୍ୱର

୨୦ । ୭

ପ୍ରିୟ ଶ୍ୟାମବାବୁ !

ଆପଣ ଯଦି ମୋ କଥା ମାନି ଗୋଟାଏ ଦିନ ପାଇଁ ବାଲେଶ୍ୱର ଆସିପାରିଥା'ନ୍ତେ, ତା'ହେଲେ ଏ ଚିଠିଟା ଲେଖିବା ଦରକାର ପଡ଼ି ନଥା'ନ୍ତା । ଏପରି ସବୁ ବିଷୟ ଚିଠି-ପତ୍ରରେ ହବା ଉଚିତ୍ ନୁହେଁ । ତେବେ ଆପଣ ଯେତେବେଳେ ଆସିବାର ସୁବିଧା କରି ନପାରିଲେ,

ସେତେବେଳେ ଅଗତ୍ୟା ବାଧ୍ୟ ହୋଇ ମତେ ଲେଖିବାକୁ ପଡ଼ିଲା । ଆପଣ ଯଦି ଏ ଚିଠିରେ ଯେ ସବୁ କଥା ଲେଖା ଅଛି, ସେହି ଅନୁସାରେ କାର୍ଯ୍ୟ କରନ୍ତି, ତା'ହେଲେ ସେ ମାଇଝିଟା ତ ଆପଣଙ୍କର ନିଶ୍ଚୟ ହବ, ତା'ପରେ ତା'ର ସମୁଦାୟ ସମ୍ପତ୍ତି ମଧ୍ୟ ଆପଣ ଅକ୍ଳେଶରେ ପାଇପାରିବେ । ଆଉ ସବୁଠାରୁ ବଡ଼କଥା, ଅପମାନର ପ୍ରତିଶୋଧ । ମନେରଖନ୍ତୁ ଆପଣ କେତେ ବଡ଼ ବଂଶର ବଂଶଧର, ମନେରଖନ୍ତୁ ଆପଣଙ୍କର ସୁନାମ ଏ ଦେଶରେ କେତେ । ଗୋଟାଏ ସାମାନ୍ୟ ପଥର ଭିକାରି ଆସି ଆପଣଙ୍କ ନିଜ ଘରେ ଆପଣଙ୍କୁ ଏପରି ଅପମାନ କରିଯିବ, ଆପଣ କ'ଣ ତାହା ନୀରବରେ ସହିଯିବେ । ସିଂହ ଆପଣ, ଆପଣଙ୍କ ନିଜ ଘରେ ସାମାନ୍ୟ ମୂଷିକ ପଶି ଆପଣଙ୍କ ଚୁଟି କାଟିନେବ; ଆପଣ କ'ଣ ତାହା ବିନା ବାଧାରେ ପିଠିକି ପକାଇନେବେ ! କଦାପି ନୁହେଁ । ମୁଁ ଜାଣେ ଆପଣ ଯେପରି ବୀର୍ଯ୍ୟବାନ, ଶକ୍ତିବାନ ତେଜସ୍ୱର ପୁରୁଷ. ସେଦିନ ଆପଣଙ୍କୁ ସେପରି ଅସୁବିଧାରେ ନପାଇଥିଲେ, ତା'ର ବାପର କି ସାଧ୍ୟ, ସେ ଏପରି ଅପମାନ କରି ଜୀବନ ଘେନି ଫେରିଯାଇଥା'ନ୍ତା ! ଯାହାହଉ, ଆପଣ ସେ ଲାଗି ମନରେ କିଛି କଷ୍ଟ କରିବେ ନାହିଁ । ଆପଣ ଯେତେବେଳେ ମତେ ବନ୍ଧୁ ବୋଲି ଗ୍ରହଣ କରିଛନ୍ତି, ମୁଁ ବନ୍ଧୁ ଅପମାନର ତୀବ୍ର ପ୍ରତିଶୋଧ ନେବି । ସେ ଭାର ମୋର । ଆପଣ ଖାଲି ମୋର କଥା କେତେଟା ମାନି ଚଳିଲେ ହେଲା ।

ସେ ଲୋକଟା ନାହିଁ, ବେଶ୍ ହେଇଚି । ଆଜି ରାତିରେ ତା'ହେଲେ କାର୍ଯ୍ୟ ସିଦ୍ଧ ହୋଇପାରିବ । ମୋର କେହି ଲୋକ ଅମର୍ଦା ଷ୍ଟେସନ ଜଗିଥିବେ । ସେ ଲୋକଟା ଯଦି ଆଜି ରାତିରେ ଗାଡ଼ିରୁ ଓହ୍ଲାଇ ଘରଆଡ଼େ ଆସେ, ତା'ହେଲେ ତାକୁ ବାଟରେ ସାବାଡ଼ କରି ତା'ର ଲାଶଟା ଉଡ଼େଇଦବୁଁ । ସେ ସମ୍ବନ୍ଧରେ ଆପଣଙ୍କର ଭାବନା କରିବାର କୌଣସି ଜିନିଷ ନାହିଁ । ସେ ଦୋଷ ମଧ୍ୟ ଆପଣଙ୍କୁ ଛୁଇଁବ ନାହିଁ । ତା'ପରେ ମୋର ଚାରିଜଣ ଲୋକ ଆପଣଙ୍କ ସାହାଯ୍ୟକୁ ଯିବେ । ଆପଣ ଖାଲି ବନ୍ଦୋବସ୍ତ କରିଥିବେ ଯେ ବାହାର ଓ ଭିତର କବାଟ ଦୁଇଟା ଯେପରି ଖୋଲା ଥାଏ । ତା'ହେଲେ ଏମାନେ ଯାଇ ସେ ମାଇଝିଟା ପାଟିତୁଣ୍ଡ କରିବା ଆଗରୁ ତାକୁ ନେଇ ଚାଲିଯିବେ । ଥରେ ଆପଣଙ୍କ ହାତରେ ସେ ପଡ଼ିଲେ ତା'ର ଆଉ ତ୍ରାହି ନାହିଁ ।

ମୁଁ କଲିକତା ଫେରିଯିବାକୁ ବଡ଼ ବ୍ୟାକୁଳ । ମୋର ଅନେକ କାମ ନଷ୍ଟ ହେଲାଣି । ମୁଁ ଆଉ ଅପେକ୍ଷା କରିପାରିବି ନାହିଁ । ଖାଲି ଆପଣଙ୍କ କାମ ନ ହେଇଥିଲେ ମୁଁ କେତେଦିନୁଁ ଯାଇସାରନ୍ତିଣି । ସେ ଦିନ ବାଲେଶ୍ୱର ଡାକବଙ୍ଗଳାରେ ଆପଣ ଏ ଅପିରିଚିତ ପ୍ରତି ଯେପରି ଦୟା ଓ ଅନୁଗ୍ରହ ଦେଖାଇଥିଲେ ଓ ସେହି ହେତୁରୁ ଆପଣଙ୍କର ଯେ କରୁଣ କାହାଣୀ ସେ ଦିନ ଶୁଣିଲି, ସେଥିରେ ବିଚଳିତ ହୋଇ ମୁଁ ଏ କାମରେ ହାତ ଦେଇଚି । ତେବେ ଗୋଟାଏ କଥା । କିଛି ମନେ କରିବେ ନାହିଁ, ମୋ ପାଇଁ ମୁଁ କହୁନାହିଁ । କିନ୍ତୁ ମୋର ଯେଉଁମାନେ ସହକାରୀ ରୂପେ ଏ କାମ ହାସଲ କରିବେ ସେମାନଙ୍କର ତ କିଛି ବକ୍‌ସିସ ପାଇବା ଦରକାର । ମୋର ଅବସ୍ଥା ଆପଣଙ୍କ ପରି ସ୍ୱଚ୍ଛଳ ହୋଇଥିଲେ, ମୁଁ ଆପଣଙ୍କୁ ଏ ସାମାନ୍ୟ କଥା ଲାଗି ବିରକ୍ତ କରନ୍ତି ନାହିଁ । ସେମାନେ ଜଣକେ ଟ୫୦୦ ଲେଖାଏଁ ନ ପାଇଲେ ଏ କାର୍ଯ୍ୟରେ ହାତ ଦେବେନାହିଁ ବୋଲି କହୁଚନ୍ତି । ମୁଁ ସେମାନଙ୍କୁ ବୁଝେଇ ଶୁଝେଇ ଟ୩୦୦କୁ ଆଣିଚି । ଏ

ପାଞ୍ଚ ଜଣଙ୍କର ପ୍ରାପ୍ୟ ଟ୧୫୦୦ । ସେମାନଙ୍କୁ ଧରାଇ ନଦେଲେ କାମ ଉଠିପାରିବ ନାହିଁ । ଆପଣ ଯେ କହିପଠାଇଛନ୍ତି ହ୍ୟାଣ୍ଡନୋଟ ଦେବେ ବୋଲି ସେ କଥା ମୁଁ ବୁଝିଚି; କିନ୍ତୁ ଏ ନିରକ୍ଷର ଗଣ୍ଡମୂର୍ଖ ଗୁଡ଼ାକ କି ବୁଝିବେ । ଆପଣ ଟଙ୍କା ଯୋଗାଡ଼ କରି ଏମାନଙ୍କୁ ଦେବେ । ଆଜି ରାତିରେ କାମ ହାସଲ ହବା ଚାହିଁ । ମୁଁ ଅପେକ୍ଷା କରିପାରିବି ନାହିଁ ।

ତା'ପରେ ରାଜଘାଟ ପାଖରେ ଆପଣଙ୍କର ସେ ଘରଟା ମଧ୍ୟ ଆଜି ରାତିରେ ସେ ଡିର୍ଲାକୁ ରଖିବା ପାଇଁ ପରିଷ୍କାର ପରିଚ୍ଛନ୍ନ ହବା ନିତାନ୍ତ ଦରକାର ।

ଶେଷରେ ମୋର ବିଶେଷ ଅନୁରୋଧ, ଆପଣ ଏ ଚିଠିଟା ପାଇଲା ସାଙ୍ଗେ ସାଙ୍ଗେ ପୋଡ଼ିଦେବେ । କାରଣ ଚିଠିଟା ଯଦି ଆଉ କାହା ହାତରେ ପଡ଼େ, ତାହେଲେ ଆପଣଙ୍କର ସମୂହ ବିପଦ । ମୋର କ'ଣ ଅଛି । ମୁଁ କାଲି କଲିକତା ଚାଲିଯିବି ।

ଆପଣଙ୍କର
ଜଳେଶ୍ୱର ବନ୍ଧୁ

"ଏ ଚିଠିରୁ କିସ ବୁଝିଲୁ ମା' ?"

ଶ୍ୟାମବାବୁଙ୍କର ମା' ବୋହୂଙ୍କୁ ପଚାରୁଛନ୍ତି । ପାଖରେ ନାତି କଟିଛୁଆଟି ଗୁଡ଼ାଏ ଗୋଡ଼ି, ପଥର, ଖଣ୍ଡେ ତାଟିଆରେ ରଖି ଗୋଟାଏ ଚାମୁଚା ଦେଇ ତାକୁ ଖଡ଼ଖଡ଼ କରୁଚି, ବୋହୂ ଚିଠି ଖଣ୍ଡ ପଢୁଥିଲେ । ପଢ଼ିସାରିଲେ; ତାଙ୍କ ହାତରୁ ଚିଠିଟା ତଳେ ଖସିପଡ଼ିଲା । ସେ ଚିତ୍ରପିତୁଳାଟି ପରି ବସିରହିଲେ । ଆଖିରେ ଓ ମୁହଁରେ ବ୍ୟାକୁଳତାର ଗୋଟାଏ ଭାବ । ବୁଢ଼ୀ କିଛି ସମୟ ବୋହୂଙ୍କ ଆଡ଼କୁ ଚାହିଁରହିଲେ । ତା'ପରେ ପଚାରିଲେ, "ଏ ଚିଠିରୁ କିସ ବୁଝିଲୁ ମା' ?"

ବୋହୂ ସେହି ସ୍ଥିରଭାବରେ ଚାଙ୍କର ବ୍ୟାକୁଳ ଚାହାଣୀ ଶାଶୁଙ୍କ ମୁହଁ ଉପରେ ରଖି କହିଲେ, "କ'ଣ ଆଉ କହିବି ମା' ! ସ୍ୱାମୀ ମୋର, ଦେବତା ମୋର ଆଜି ପଇସା ଲାଗି ଗୋଟାଏ ନରହତ୍ୟା କରିବାକୁ ଓ ଗୋଟାଏ ସରଳା ବାଳିକାର ସର୍ବସ୍ୱ ଖାଇବାକୁ ଯାଉଚନ୍ତି । ଆଉ ଅଭାଗିନୀ ଦୁର୍ବଳା ତାଙ୍କର ସହଧର୍ମିଣୀ ମତେ ତାଙ୍କ ଇଚ୍ଛା ବିରୁଦ୍ଧରେ ମଧ୍ୟ ରକ୍ଷା କରିବାକୁ ହବ ।

ବୁଢ଼ୀ : କି ଲାଭ ମା, ସେଥିରେ ? ପୁରୁଷ କରିବ । ଆମେ ସେଥିରେ ହାତଦେବୁ କେନେ ? ପୁରୁଷର କର୍ତ୍ତବ୍ୟ ଆମକୁ ପୋଷିବ, ଆମର ସମସ୍ତ ଅଭାବ-ଅସୁବିଧା ତୁଲେଇବ । ସେଥିଲାଗି ଯଦି ସେ ପାପ କରେ, ସେ ପାପ ତା'ର ।

ବୋହୂ : କିନ୍ତୁ ମା, ସେ ଓ ମୁଁ ତ ଭିନ୍ନ ନୋହୁଁ । ମୁଁ ତାଙ୍କର ଅର୍ଦ୍ଧାଙ୍ଗିନୀ, ସହଧର୍ମିଣୀ । ମୋ ପାପରେ ସେ ଯେପରି ଭାଗୀ, ମୁଁ ମଧ୍ୟ ତାଙ୍କର ପାପରେ ସେହିପରି ଦାୟୀ ।

ବୁଢ଼ୀ : କିନ୍ତୁ ମା' ! ଶାସ୍ତ୍ର ତ ଆମର କହେ ଯେ ସ୍ୱାମୀ ସ୍ତ୍ରୀ ପାପରୁ ଅଧେ ନବ; କିନ୍ତୁ ସ୍ତ୍ରୀ ସ୍ୱାମୀର ପାପ ନବ ନାହିଁ ।

ବୋହୂ : ଶାସ୍ତ୍ର ଯଦି ଏକଥା କୌଣସିଠାରେ କହିଥାଏ, ତାହେଲେ ସେ ଭୁଲ୍ ମା' ! ସ୍ତ୍ରୀ ସ୍ୱାମୀକୁ ସବୁ ଦବ; ଅଥଚ ସ୍ୱାମୀ ତାକୁ କିଛି ଦବନାହିଁ । ଏପରି ନିୟମ କେବଳ

ସ୍ୱାର୍ଥପର ପୁରୁଷଜାତି କରିପାରେ । ସ୍ତ୍ରୀ-ଧର୍ମ ସମ୍ବନ୍ଧରେ ପୁରୁଷର କିଛି କରିବାର ନାହିଁ । ସ୍ତ୍ରୀ ଜାଣେ ତା'ର କର୍ତ୍ତବ୍ୟ କିସ । ତାପରେ ମା, ଧର୍ମକଥା ଯଦି କହିଲେ, ବାପ ଯେ ପାପ କରିବ ସେ ପାପର ପ୍ରାୟଶ୍ଚିତ୍ତ କି ପୁଅକୁ ଦେଇତେ ହବନାହିଁ ? ୟେ ଯୁ ଅଧର୍ମ କରିତେ ଯାଉଚନ୍ତି, ତା'ର ଫଳ ମୋର ଏ ବାବୁ କି ଭୋଗିବ ନାହିଁ ? ବାପ ଯଦି ଅନ୍ଧ ହୋଇ ନିଜର ଦୁର୍ବଳ ନିଃସହାୟ ଅବୋଧ କଟିଛୁଆ ବେକରେ ଗୋଟାଏ ଅଚଳ ପଥର ବାନ୍ଧିଦିଏ, ତା'ହେଲେ ମା ହୋଇ ମୋର କ'ଣ ମୋର ପୁଅକୁ ସେ ବିପଦରୁ ଉଦ୍ଧାର କରିବା ପାଇଁ କିଛି କରିବାର ନାହିଁ ?

ବୁଢ଼ୀ : ତୁ ଘରକୁଣର ବୋହୂ, ତୁ କିସ କରିବୁ ମା ? କିପରି ତାକୁ ଏ କାମରୁ ଉଦ୍ଧାର କରିବୁ ମା ? କାନ୍ଦି-କାଟି ? ବୁଝେଇ-ଶୁଝେଇ ?

ବୋହୂ : ଅନେକ ଦିନରୁ ବୁଝିସାରିଚି ମା, ମୋର ସବୁ ଚେଷ୍ଟା ବ୍ୟର୍ଥ ହବ । ସେ ମୋ ମୁହଁରେ ହଁ-ହାଁ ମାରିଦେଇ ମୋ ପଛରେ ତାଙ୍କ ମନ ଇଛା କାମ କରିଯିବେ ।

ବୁଢ଼ୀ : ତା'ହେଲେ ?

ବୋହୂ : ବାଘ ଶିକାର ଛାଡ଼ିବନାହିଁ ସମସ୍ତେ ଜାଣନ୍ତି । ସେଥିପାଇଁ ଲୋକେ କ'ଣ କରନ୍ତି ? ଶିକାରକୁ ସାବଧାନ କରିଦେଇ ବାଘ ପାଖକୁ ଯିବାକୁ ଦିଅନ୍ତିନାହିଁ । ମୁଁ ସେହିପରି କରିବି ମା ! ସେ ପ୍ରମିଳାକୁ ଖାଇବେ; କିନ୍ତୁ ମୁଁ ପ୍ରମିଳାକୁ ସାବଧାନ କରିଦେବି, ସେ ଯେପରି ତାଙ୍କୁ ସେ ସୁବିଧା ନଦିଏ ।

ବୁଢ଼ୀ : ସେ କିପରି ? ତାକୁ କ'ଣ ଏସବୁ କଥା କହିବୁ ?

ବୋହୂ : ମତେ କ'ଣ ଏତେ ବୋକାକରି ପାଇଚ ମା, ମୁଁ ଜାଣିଶୁଣି ମୋ ସ୍ୱାମୀ ହାତରେ ହାତକଡ଼ି ଲଗେଇଦେବି । ଅନ୍ୟ ଉପାୟ ନିଶ୍ଚୟ ଅଛି ।

ବୁଢ଼ୀ : ତୁ କିପରି ଏସବୁ କାମ ପାରିବୁ ମା ? ତା'ପରେ ସେ ଲୋକଟାର ପ୍ରାଣ ତ ରଖିବାକୁ ହବ; ତା' କି ପାରିବୁ ?

ବୋହୂ : ପାରିବି ମା, ନିଶ୍ଚୟ ପାରିବି । ସତୀର ସହାୟ ସତୀନାଥ ନିଶ୍ଚୟ ମତେ ବାଟ ଦେଖାଇବେ । ଅନାଥର ସହାୟ ଜଗନ୍ନାଥ ନିଶ୍ଚୟ ମୋର ଏ ମାଖନ-ପିତୁଳି ଜୀବନ-ଧନର ଉଦ୍ଧାର ଉପାୟ କରିଦେବେ । ଦେଖୁନାହଁ ମା, ସେହି ମହାପ୍ରଭୁଙ୍କର ଅନୁଗ୍ରହ କେତେ ? ତାଙ୍କ ଭଳି ଚଲାକ ଚତୁର ଲୋକ ଯେ ଏପରି ଜରୁରୀ ଓ ଗୁପ୍ତ ଚିଠି ଏପରି ଅଯତ୍ନରେ ତକିଆ ତଳେ ରଖିଦେଇ ଯିବେ, ଆଉ ବାବୁ ଯେ ତାକୁ ଗୋଟାଇ ନେଇ ଚିରିଦେବ, ମୁଁ ଯେ ପୁଣି ତାକୁ ଦରକାରି କି ଅଦରକାରି ବୋଲି ପଢ଼ିବସିବି—ଏସବୁ ଭିତରେ ତୁମେ କ'ଣ ସେଇ ଦେବତାଙ୍କର ହାତ ଦେଖିପାରୁନାହଁ ମା ?

ବୁଢ଼ୀ : କେଜାଣି ମୁଁ ଏତେକଥା ବୁଝିପାରୁନାହିଁ ଲୋ, ମା ! ଆମ କାଳରେ ଥିଲା, ସ୍ୱାମୀ ଯାହା କରୁଥିଲେ ଆମର ସେଥିରେ ରାଜି । ଆମେ ଖାଲି ଜଗୁଥିଲୁଁ ସ୍ୱାମୀ ଯେପରି ଆମକୁ ଛାଡ଼ି ଆଉ କାହାରି ଆଡ଼େ ନଜର ନ ଦିଅନ୍ତି । ତା' ନହେଲେ ସ୍ୱାମୀ ଦେବତା, ତାଙ୍କ କାମରେ ବାଧା ଦବାକୁ ଆମେ ସାହସ କରୁନଥିଲୁଁ । ଶିଖିଥିଲୁଁ ସ୍ୱାମୀ ଦେବତା, ସେ ଯାହା କରିବେ ତା' ଠିକ୍ ।

ବୋହୂ : କିନ୍ତୁ ମା, ସ୍ୱାମୀ ରୋଗରେ ଯଦି ଓଷୁଅ ଖାଇବାକୁ ଅରାଜି ହୁଅନ୍ତି, ତାହେଲେ ତାଙ୍କୁ କ'ଣ ଜୋର କରି ଓଷୁଅ ଖୁଆଇବାକୁ ହବନାହିଁ !

ବୁଢ଼ୀ : ହବ, କିନ୍ତୁ ଜୋର କରି ନୁହେଁ ମା ! ବୁଝେଇ, ଶୁଝେଇ, କାନ୍ଦିକାଟି, ରାଗି-ରୁଷି ।

ବୋହୂ : ସେଥିରେ ଯଦି ନ ହୁଏ ?

ବୁଢ଼ୀ : ତା'ହେଲେ କର୍ମ ଆଦରି ରହିବୁଁ ।

ବୋହୂ : କର୍ମ ! ସେ କି ଜିନିଷ ମା, ମୁଁ ଜାଣେନାହିଁ । ଭଗବାନ ମତେ ଜନ୍ମ ଦେଇଚନ୍ତି । କ'ଣ କରିବା ଉଚିତ, କ'ଣ କରିବା ଉଚିତ ନୁହେଁ, ତାହା ବିଚାର କରିବା ଲାଗି ଟିକିଏ ବୁଦ୍ଧି ଦେଇଚନ୍ତି । ଯାହା ଉଚିତ ଭାବିବି, ସେହି ଅନୁସାରେ କାମ କରିବାକୁ ହାତଗୋଡ଼ ଦେଇଚନ୍ତି । ମୁଁ କର୍ମ ଉପରେ ଆଦରି ରହିଲେ ଭଗବାନଙ୍କ ପାଖରେ ଦ୍ରୋହୀ ହେବି ମା !

ବୁଢ଼ୀ : କେଜାଣି ଲୋ ମା, ମୁଁ ତ ଏତେସେତେ ବୁଝେନାହିଁ । ତେବେ ଏତିକି ବୁଝିଚି, ମା, ତୁ ମୋର ସତୀ ଲକ୍ଷ୍ମୀ । ତୋ ପୁଣ୍ୟବଳରୁ ମୋର ବାୟା-ବାତୁଳ ପିଲାଟିର କିଛି ଅନିଷ୍ଟ ହବନାହିଁ ।



## ବତିଶି

"ଗୋରାବୋଉ ମାଉସୀ, ଏ ଗୋରାବୋଉ ମାଉସୀ ! ଶୁଣିଲଣି ଶ୍ୟାମବାବୁ ବୋହୂ କ'ଣ ଲେଖିଚନ୍ତି ?" ପ୍ରମିଳା ଡାକି କହୁଚନ୍ତି । ଗୋରାବୋଉ ମାଉସୀ ଖଣ୍ଡେ ପନିକି ପକେଇ ତା' ଉପରେ ଗଜରାଦିଆ ହୋଇ ବସି ପରିବା କାଟୁଚନ୍ତି । ପ୍ରମିଳାଙ୍କ ଡାକ ଶୁଣି ମୁହଁ ଟେକି ଚାହିଁଲେ । କହିଲେ, "କିସ ଲେଖିଚି ଲୋ ସେ ? ଯେମିତି ଘଇତା, ସେମିତି ମାଇପ ।"

ପ୍ରମିଳା : ଆଗୋ ଶୁଣ, ତା'ପରେ ବକ୍ତୃତା ଦବ । କହି ପଢ଼ିଲେ ।

ଭଉଣୀ ପେମି,

ମା'ଙ୍କର କାଳ ହେଲାପରେ ଆଉ ତୁମ ସାଙ୍ଗରେ ଟିକିଏ ଦେଖାହେଲା ନାହିଁ । ତୁମେ କ'ଣ ତୁମ ବୋହୂ ଦିଦିଙ୍କି ଭୁଲିଗଲ ଏକାବେଳକେ ? ଶୁଣୁଚି ତୁମେ ଏହା ମଧ୍ୟରେ କେବେ କଟକ ବାହାରିଯିବ ପଢ଼ିତେ । ଟିକିଏ ଦୟାକରି ଆମ ଘରକୁ ଆସନ୍ତ ନାହିଁ ? ସେ ତ ନାହାନ୍ତି, ବାଲେଶ୍ୱର ବା କୁଆଡ଼େ ଯାଇଚନ୍ତି । କାଲି ଅବା ଆସିବେ । ଘରେ ଏକୁଟିଆଟି ରହି ମନଟା ବଡ଼ ଛଟେଇ ପଟେଇ ହଉଚି । ସଞ୍ଜବେଳେକୁ ଆସନ୍ତ ବୋଇଲେ ଟିକିଏ ଗଫ-ଟପ, ଖେଳାଖେଳି କରନ୍ତେଇଁ । ଆସିବ ନାହିଁ ? ମୋ ରାଣଟି ।

ତୁମର

ନୂଆବୋହୂ

ଗୋରାବୋଉ : ଏ ଚିଠିଟା ଆଣିଥିଲା କିଏ ?

ପ୍ରମିଳା : ସେ କଥାଟା କି ନିତାନ୍ତ ଦରକାର ? ତାଙ୍କ ଘରର ଗୋଟାଏ ଚାକର ।

ଗୋରାବୋଉ : ମତେ ଟିକେ କହିଲୁନାହିଁ, ମୁଁ ତା' ପିଠି ପହଁରା ପାହାରରେ ଭାଙ୍ଗି ଦେଇଥାନ୍ତି । ଶ୍ୟାମବାବୁ ଯିମିତି, ତା' ମାଇପ ରାଣ୍ଡ ସିମିତି, ତା' ଚାକରବାକରଗୁଡ଼ାକ ମଧ୍ୟ ସେହିପରି ।

ପ୍ରମିଳା : ତାଙ୍କ ମାଇପ ବିଚାରି କରନ୍ତା ଆଉ କିସ ?

ଗୋରା : ଯେ ଡିର୍ଲ୍ଲା ତା' ଘଇତାକୁ କାନିରେ ବାନ୍ଧି ସମ୍ଭାଳି ନପାରେ ତା'ର ରସି ଲଗାଇ ମରିଯିବା ଭଲ ।

ପ୍ରମିଳା : ଘଇତାକୁ କିସ ଚାବୁକ ମାରି ବାନ୍ଧିରଖିବ ଗୋ ? ତୁମର ମନଟା ନିତାନ୍ତ କଦର୍ଯ୍ୟ । ଯାଉ, କିସ କରିବା କହନି ?

ଗୋରା : କରିବ ଆଉ କିସ ଗୋ ? ଘରର ଝୁଅ, ଘରେ ଖାଇପିଇ ଶୋଇ ରହ ।

ପ୍ରମିଳା : ନା, ଯିବା । କିସ କହୁଚ ?

ଗୋରା : ଯିବା ? କୁଆଡ଼େ ଗୋ ? ସେ ଅଳପେଇଷା ଘରକୁ ! ତୁ ଘରୁ ଗୋଡ଼ କାଢ଼ି ବାହାରିଲୁ, ତୋ ଗୋଡ଼ ଯଦି ପିଟି ନ ଦେଇଚି !

ପ୍ରମିଳା : ଖାଲି ମୁଁ ଯେ ଏକା ଯିବି, ତା' ନୁହେଁ, ତୁମର ଯିବାକୁ ମଧ୍ୟ ପଡ଼ିବ ।

ଗୋରା : ମୁଁ ତା' ଘରକୁ ! ମୋତେ ସୁନାମୁଣ୍ଡେ କୁଢ଼େଇଦେଲେ ବି ମୁଁ ତା' ଘରର ଛାଇ ମାଡ଼ିବି ନାହିଁ ।

ଗୋରାବୋଉ ମାଉସୀଙ୍କ ଏସବୁ ଝଙ୍କାର ଟଙ୍କାର ପରେ ମଧ୍ୟ ଯେତେବେଳେ ପ୍ରମିଳା ଦେବୀ ସଜବାଜ ହୋଇ ବାହାରିଲେ, ଗୋରାବୋଉ ମାଉସୀ ମଧ୍ୟ ଛୁଆ ପଛରେ ଗାଈ ପରି ଚାଲିଲେ । ତାଙ୍କ ତୋଟି ଭିତରୁ ଗୋଟାଏ ଗଁ-ଗଁ ଶବ୍ଦ ଅବଶ୍ୟ ବାହାରୁଥାଏ; କିନ୍ତୁ ଗୋଡ଼ଟା ଚାଲିଥାଏ ଆଗକୁ ଠିକ୍ । ଶ୍ୟାମବାବୁଙ୍କ ଘରେ ସେମାନେ ପହଞ୍ଚିଲାବେଳକୁ ବେଳ ରତରତ ହେଉଥାଏ । ବୁଢ଼ୀ ଏମାନଙ୍କୁ ଆସିବାର ଦେଖି ପ୍ରଥମେ ଆଷ୍ଚର୍ଯ୍ୟ ହୋଇଗଲେ । ତା'ପରେ ବୋହୂକୁ ଡାକି ପଚାରିଲେ, "କିଲୋ ମା, ଏ କିସ, ଏ ଆମ ଘରେ କେନେ ?"

ବୋହୂ : ମୁଁ ଡକେଇପଠେଇଥିଲି ମା !

ବୁଢ଼ୀ : ତୁ ଡକେଇପଠେଇଥିଲୁ ? କେନେ ?

ବୋହୂ : ମନେ ନାହିଁ ମା, ସେ ଚିଠିର କଥାଟା ? ମତେ ଯେ ମୋର ସ୍ୱାମୀଙ୍କୁ ପାପରୁ ରକ୍ଷା କରିବାକୁ ହବ ।

ବୁଢ଼ୀ : କିନ୍ତୁ ମୁଁ ତ କିଛି ବୁଝିପାରୁନାହିଁ, ତୁ ତାକୁ ଏଠାକୁ ଆଣି କିପରି ରକ୍ଷା କରିବୁ ।

ଏତିକି ବେଳକୁ ପ୍ରମିଳା ଦେବୀ ଓ ଗୋରାବୋଉ ସେଠାରେ ଆସି ପହଞ୍ଚିଗଲେ । ଶାଶୁ ବୋହୂ କଥା ବନ୍ଦକରି ତାଙ୍କୁ ଆଦର ଅଭ୍ୟର୍ଥନା କଲେ । ବୋହୂ ଗୋଟାଏ ଥୁକାରେ ଗୁଡ଼ାଖୁ ସଜାଡ଼ି ଆଣି ଗୋରାବୋଉଙ୍କୁ ଦେଇ କହିଲେ, "ମାଉସୀ, ତୁମେ ତ ତବକା ଖାଅ, ଏଇ ନିଅ !" ଗୋରାବୋଉ କହିଲେ, "ନାଇଁ ଗୋ ତୁମ ତବକା ତୁମେ ରଖ, ମୁଁ ସେ ସବୁ ଖାଏ ନାହିଁ ।" କିଛି ସମୟ କଥାବାର୍ତ୍ତା ହଉ ହଉ ଆସ୍ତେ ଆସ୍ତେ ବୁଢ଼ୀ ଓ ଗୋରାବୋଉ ଏକାଠି ରହିଗଲେ । ପ୍ରମିଳା ଓ କୁମୁଦିନୀ ଏକାଠି ଅନ୍ୟ ଘରକୁ ଚାଲିଗଲେ । ନିକାଞ୍ଚନ ଦେଖି ଦିହେଁ ଗପ ଯୋଡ଼ିଦେଲେ । ଵାର-ସଂସାର ଗପ ପଡ଼ିଲା, ସାଇପଡ଼ିଶା, ସାଙ୍ଗସାଥୀ, ଶତ୍ରୁ ବଇରି ସମସ୍ତଙ୍କ କଥା । କଥା ତ ଚାଲିଥାଏ; କିନ୍ତୁ ଭିତରେ ଭିତରେ ଉଭୟେ ଅନୁଭବ କରୁଥାନ୍ତି ଯେ ଗୋଟାଏ ବାଧା, ଗୋଟାଏ କିଛି ଅଭାବ ଯେପରି ରହିଛି । ଶେଷରେ ପ୍ରମିଳା ନିଜ ମନର ଭାବ ଲୁଚାଇ ନପାରି କହିପକାଇଲେ, "କହ ଦେଖି ବୌଦିଦି, ଆଜି ହଠାତ୍ ମୋତେ ଡାକରା କେନେ ?"

କୁମୁ : କେନେ, ତୁମର ମୋର ଏତେ ସାଙ୍ଗସାଥୀ, ତୁମକୁ ଡକେଇ ପଠାଇବାରେ ତୁମ ସାଙ୍ଗରେ ଦି'ପଦ କଥା ହବାକୁ ଇଚ୍ଛା କରିବାରେ ଏପରି କି ଅସମ୍ଭବ ଅଛି !

ପ୍ରମିଳା : ଦେଖ, ବୌଦି' ! ମୋ ପାଖରୁ କଥାଟା ଲୁଚାଇବାରେ କିଛି ଫଳ ନାହିଁ । ମୁଁ ଜାଣେ । ତୁମେ ଜାଣ ଯେ ତୁମର ସ୍ୱାମୀ ମତେ ବାହାହେବା ପାଇଁ ଲାଗିପଡ଼ିଚନ୍ତି, ସେଥିଲାଗି ତୁମେ ମୋ ଉପରେ ବଡ଼ ରାଗ କରିଚ । ସେହି ହେତୁରୁ ତୁମେ ଦିନେ ହେଲେ ଆମ ଦୁଆର ମାଡ଼ି ନାହଁ, କି ମତେ ଡକାଇପଠାଇ ନାହଁ । ଏବେ କହ ତ ମତଲବଟା କ'ଣ ?

କୁମୁଦିନୀ ଦେବୀ କିଛି ସମୟ ସ୍ଥିର ହୋଇ ବସିରହିଲେ । ପ୍ରମିଳା ଯେ ଭିତର କଥାଗୁଡ଼ାକ ଏପରି ଠୋ-ଠୋ କରି କହିଦେବ ଓ ସେହିପରି ରୋକଠୋକ ଜବାବ ମାଗିବସିବ, ସେ ଆଶଙ୍କା ତାଙ୍କର ନଥିଲା । ସେଇ ଭରସାରେ ସେ ଆଜି ଏପରି ଏକ ଫନ୍ଦି ପାଞ୍ଚି ପ୍ରମିଳାଙ୍କୁ ଡାକିଆଣିଥିଲେ; କିନ୍ତୁ ପ୍ରମିଳା ଯେପରି ପ୍ରକାର ଆରମ୍ଭ କଲେଣି, ସେଥିରେ ବାହା ନ ଧରି ଯେ ସେ ତାଙ୍କ ଉଦ୍ଦେଶ୍ୟ ଫଳେଇପାରିବେ, ତା'ର ଆଶା ବଡ଼ କମ୍ । ତଥାପି ସେ ରୁକ୍ଷଭାବରେ କହିଲେ, "ମୋର ସ୍ୱାମୀ ଯେବେ ତୁମକୁ ବିବାହ କରିବାକୁ ଇଚ୍ଛା କରିଥାନ୍ତି, ସେ ନିଶ୍ଚୟ ତୁମର ଦୋଷ । ତୁମେ ଯେବେ କଥାରେ, ବାର୍ତ୍ତାରେ, ହାବରେ ଭାବରେ ତାଙ୍କର ମନ ବଦଳେଇ ନ ଥାନ୍ତ, ମୁଁ ଥାଉଁ ଥାଉଁ ସେ ତୁମକୁ ଚାହାନ୍ତେ କେନେ ? ବନ୍ଧ ଗାଡ଼ିଆରେ କି ପାଣି ନାଇଁ ଯେ ସଉତୁଣୀ ବର ଖୋଜିବାକୁ ମନ ହେଲା ?

ପ୍ରମିଳା : ମୁଁ ତାଙ୍କୁ ବହଲେଇଚି ! ମୁଁ ତାଙ୍କୁ ଅନ୍ତରର ସହିତ ଘୃଣା କରେ । ତାଙ୍କୁ ଦେଖିଲେ ମୋର ହାଡ଼ ଜଳିଯାଏ । ଆଉ ସେ ଯେବେ ମୋତେ ଭଲପାଆନ୍ତି ବୋଲି ବାହା ହବାକୁ ଚାହାନ୍ତି, ଏହା ତୁମେ ଭାବିଥାଅ, ସେ ତୁମର ମସ୍ତବଡ଼ ଭୁଲ । ସେ ମତେ ଚାହାନ୍ତି ନାହିଁ, ଚାହାନ୍ତି ମୋର ସମ୍ପତ୍ତିକି । ମୁଁ ଯେବେ ଆଜି ମୋର ସମ୍ପତ୍ତିତକ ତାଙ୍କୁ ଦେଇଦେବାକୁ ରାଜି ହୁଏ, ତା'ହେଲେ ସେ ଆଉ କାଲିଠାରୁ ମୋ ଦୁଆର ମାଡ଼ିବେ ନାହିଁ ।

କୁମୁଦିନୀ : ତୁମେ ତା'ହେଲେ ତାଙ୍କୁ ଭଲପାଅନାହିଁ । ତାଙ୍କ ହାତରୁ ରକ୍ଷା ପାଇବାପାଇଁ ବହୁତ କିଛି କରିପାର ?

ପ୍ରମିଳା : ତାଙ୍କ ହାତରୁ ରକ୍ଷା ? ସେ ମତେ ଏପର୍ଯ୍ୟନ୍ତ ପାଇନାହାନ୍ତି ଯେ ମୁଁ ତାଙ୍କ ହାତରୁ ରକ୍ଷାପାଇବାକୁ ଇଚ୍ଛା କରିବି । ମୁଁ ଏବେ ମଧ୍ୟ ମୋର ମାଲିକ । ତାଙ୍କ ଭଳି ସାତଗଣ୍ଡା ହେଲେ ବି ମୋର ଛାଇ ମାଡ଼ିପାରିବେ ନାହିଁ । ମୁଁ କାହିଁକି କରିବାକୁ ଯିବି ?

କୁମୁଦିନୀ : ନା, ପେମି ! ସେ ତୁମର ବଡ଼ ଭୁଲ୍ । ସେ ପୁରୁଷ ଲୋକ; ଗୋଟିଏ ନିଃସହାୟା ବାଳିକାକୁ ନିଜ ଆୟତ୍ତକୁ ଆଣିବା ପାଇଁ ତାଙ୍କର ଅନେକ ଉପାୟ ଅଛି ।

"ମୁଁ ବାଳିକା ହୋଇପାରେ, ମାତ୍ର ନିଃସହାୟା ନୁହେଁ । ମୁଁ ବର୍ତ୍ତମାନ ବି କହୁଚି, ସେ ବା ଅନ୍ୟ କେହି ମୋ ଇଚ୍ଛା ବିରୁଦ୍ଧରେ ମୋ ସାଙ୍ଗରେ କିଛି ବଦମାସି କରିବାକୁ ଆସିଲେ, ମୁଁ ଆଗେ ତାଙ୍କର ରକ୍ତ ନ ନେଇ ଛାଡ଼ିବି ନାହିଁ ।" ଏହା କହି ପ୍ରମିଳା ତାଙ୍କ ଅଣ୍ଟା ଭିତରୁ ଗୋଟିଏ ଶାଣଦିଆ ଛୁରୀ ବାହାର କରି ଆଣିଲେ, "ଏଇ ଦେଖୁଛ, ଏ ବ୍ରହ୍ମାସ୍ତ୍ର । ମୋ ଦିହରେ ହାତ ଦେବା ଆଗରୁ ଏ ଛୁରୀଟା ତାଙ୍କର ଛାତିରେ ଭୁଷିଦେବା ପାଇଁ ମୁଁ ତିଳେହେଲେ କୁଣ୍ଠିତ ହେବି ନାହିଁ । ତା'ପରେ ଗୋରାବୋଉ ମାଉସୀ ମୋର ସେ ଯୋ.....ମାନେ, ଚାକରବାକରମାନେ ଅଛନ୍ତି, ସେମାନେ ମଧ୍ୟ ମୋର ରକ୍ଷାପାଇଁ ପ୍ରାଣ ଦେବେ, ମୁଁ ଜାଣେ ।"

କୁମୁଦିନୀ ଦେବୀ ଅନେକ ସମୟ ପର୍ଯ୍ୟନ୍ତ ତଟସ୍ଥ ହୋଇ ଭାବିଲେ; ତା'ପରେ କହିଲେ, "ତେବେ ମୋର କ'ଣ ହେବ ଭଉଣୀ ! ମୁଁ ଜାଣେ ସେ ତୁମର ସମ୍ପତ୍ତି ଲାଗି ତୁମକୁ ଟାକିବସିଚନ୍ତି । ଦିନେ ଯେ ସେ ତୁମ ଉପରେ ବଳାତ୍କାର କରିବେ, ସେଥିରେ ସନ୍ଦେହ ନାହିଁ । ସେ ବଳାତ୍କାରରେ ତୁମର ଜୟ ହେଉ ବା ତାଙ୍କର ଜୟ ହେଉ, ଉଭୟରେ ମୋର ବିପଦ, ମୋ ପିଲାଟିର ସର୍ବନାଶ । କ'ଣ ହବ ଭଉଣୀ ! ମୁଁ କ'ଣ କରିବି ?" କହି ସେ କାନ୍ଦିପକାଇଲେ । ତାଙ୍କର କାନ୍ଦ ଦେଖି ପ୍ରମିଳା ତାଙ୍କୁ କୋଡ଼କୁ ନେଇ ତାଙ୍କର ଆଖି ପୋଛି ଦଉ ଦଉ କହିଲେ, "ମୁଁ ଜାଣେ ଦିଦି ! ତୁମେ ତାଙ୍କୁ କେତେ ଭଲପାଅ । ତୁମ ଭଳି ସ୍ତ୍ରୀର ପ୍ରେମ ଓ ଖୋକା ଭଳି ପୁଅ ପାଇ ଯେ ଖାଲି ପଇସା ଲୋଭରେ ଅନ୍ୟ ତିର୍ଲୀ ପଛରେ ଗୋଡ଼ାଏ ସେ ପଶୁଠାରୁ ଅଧମ । ତୁମେ କ'ଣ କହି ବୋଲି ତାଙ୍କୁ ବାଟକୁ ଆଣିପାରିବ ନାହିଁ ? ତୁମେ ଟିକିଏ ଟାଣ ହୁଅନ୍ତ ବୋଇଲେ...."

କୁମୁଦିନୀ : ମୁଁ ଯେ ତାଙ୍କ ପାଖରେ ଟାଣ ହୋଇପାରେ ନାହିଁ ପେମି ! ତାଙ୍କର ପଦେ ସୁହାଗ କଥାରେ କି ଗୋଟିଏ ଦୀର୍ଘ ନିଃଶ୍ୱାସରେ ମୋର ସବୁ ଟାଣପଣ ଯେ କୁଆଡ଼େ ଉଡ଼ିଯାଏ । ମୋର ପ୍ରାଣ, ମୋର ସର୍ବସ୍ୱ, ମୋର ସତୀତ୍ୱର ବଳିଦେଇ ଯେବେ ମୁଁ ତାଙ୍କୁ ବାଟକୁ ଆଣିପାରନ୍ତି, ତା'ହେଲେ ମୁଁ ସ୍ୱର୍ଗ-ସୁଖ ପାଆନ୍ତି । କିନ୍ତୁ ତା' ଯେ ହବାର ନୁହେଁ । ସେ ସବୁଦିନେ ତ ଏପରି ନଥିଲେ । ସେ ତ ଦେବତା; କି କଳି ତାଙ୍କ ଦେହରେ ପଶିଲା, ତାଙ୍କୁ ଏପରି ପାଗଳ କରିଦେଲା, ମୁଁ ବୁଝିପାରୁନାହିଁ । ତୁମ ସମ୍ପତ୍ତିରୁ ଯେବେ କିଛି ତାଙ୍କୁ ଦେଇପାରନ୍ତ, ତା'ହେଲେ ଏ ପଇସାର ଅଭାବ ମେଣ୍ଟିଗଲେ ତାଙ୍କର ସେ କଳି-କଳା ଲିଭିଯାନ୍ତା । ଦେବ ନାହିଁ ପେମି ! ମୁଁ ତୁମ ଗୋଡ଼ ଧରୁଚି, ମୁଁ ତୁମ ପାଖରେ ନେହୁରା ହେଉଚି, ଏଇ ମୋର ଏ କଟିଛୁଆଟିକି

ତୁମ ପାଦତଳେ ସମର୍ପିଦଉଚି, ମତେ ଏଇ ଭିକ୍ଷା ଦିଅ ପେମି ! ମୋତେ ବଞ୍ଚାଅ । ମୋର ଏଇ ନିରୀହ ନିଃସହାୟ ଦୁର୍ବଳ ଖୋକାର ଜୀବନ ରକ୍ଷାକର ।" ଏହା କହି କୁମୁଦିନୀ ପୁଅକୁ ଘିନି ପ୍ରମିଳାଙ୍କ ଗୋଡ଼ତଳରେ ଲୋଟିପଡ଼ିଲେ । ତାଙ୍କ ଆଖିର ତାତିଲା ପାଣିରେ ପ୍ରମିଳାଙ୍କର ଗୋଡ଼ ଧୋଇହୋଇଗଲା । ପ୍ରମିଳା ମଧ୍ୟ କୋହ ସମ୍ଭାଳି ପାରିଲେନାହିଁ; କଇଁକଇଁ ହୋଇ କାନ୍ଦିଉଠିଲେ । ଛୋଟ ଛୁଆଟି ମା'ର ଓ ପ୍ରମିଳାଙ୍କର କାନ୍ଦ ଦେଖି କ'ଣ ଭାବିଲା କେଜାଣି, "ଦିଦି ଦିଦି" ବୋଲି ପ୍ରମିଳାଙ୍କ କୋଡ଼କୁ ଉଠିଯାଇ ତାଙ୍କ ଗାଲରେ ନିଜର ସଜଫୁଲ ଓଠ ଦିଓଟି ଲଗାଇଦେଲା । ପ୍ରମିଳା ତାକୁ ଛାତି ଉପରକୁ ସାଉଁଟି ନେଇ ତାକୁ ଚୁମ ଦେଲେ ଓ କୁମୁଦିନୀଙ୍କୁ ଉଠାଇ ବସାଇଲେ । ଦୁହେଁଯାକ ଟିକିଏ ଆଶ୍ୱସ୍ତ ହେଲେ । ପ୍ରମିଳା କହିଲେ, "ଦିଦି, ତୁମ ଲାଗି ଆଉ ତୁମର ଖୋକା ଲାଗି ମୋ ସମ୍ପତ୍ତିରୁ କିଛି କାହିଁକି ସବୁ ଦବା ପାଇଁ ମୁଁ ଟିକିଏ ହେଲେ ଦୁଃଖ କରିବି ନାହିଁ; କିନ୍ତୁ ତୁମେ ଭାବି ଦେଖିଚ ସେଥିରେ କି ଫଳ ହବ ? ତୁମର ବା ନଥିଲା କ'ଣ ? ସେ ସବୁ ତ ଯେ ମଦନିଶା କରି କରି ଉଡ଼ାଇଦେଲେ ଏ ବର୍ଷେ କେତୁଟାରେ । ଆଉ ବେଶି ସମ୍ପତ୍ତି ପାଇଲେ ତାଙ୍କର ସେ ଖଳ ପ୍ରକୃତି ବଢ଼ିଚାଲିବ ସିନା, ଆଉ ସେଥିରେ ଏ ସମ୍ପତ୍ତି ବା କେତେ ଦିନ ରହିବ ? ପ୍ରଥମ କଥା ହଉଚି ତାଙ୍କୁ ଏ ଖଳଦିଗରୁ ଫେରାଇବା । ତୁମେ ଯେବେ ଟାଣ ହୋଇପାରିଥାନ୍ତ ! ତା' ତ ହବନାହିଁ । ସେ ମୋ କଥା ଶୁଣିବେ ନାହିଁ । ତେବେ କି ଉପାୟ ? ମୁଁ ଭାବୁଚି ମୋର ସେ ଗୁମାସ୍ତାଟାକୁ ଯେବେ ପଚରାଯାନ୍ତା, ସେ କିଛି ଉପାୟ କରିପାରନ୍ତା ହୁଏତ ।"

କୁମୁ : ସେ ଗୁମାସ୍ତାଟା ତୁମର କିଏ ଗୋ ? ତା' ଉପରେ ତ ତୁମର ଭାରି ଟାଣ ।

ପ୍ରମିଳା : ଟାଣ-ଫାଣ କିଛି ନାହିଁ । ସେଉଟା କାହୁଁ ଅଇଲା ଚାକର ଗୋଲାମଟାଏ, ତା' ଉପରେ ଟାଣ ହବ କେନେ ଗୋ ? ତେବେ କ'ଣ କି, ଲୋକଟା ଭାରି ଚାଲାକ, ଚତୁର । ଅନେକ କିଛି ଜାଣେ । ତୁମେ ଅନୁମତି ଦିଅନ୍ତ ବୋଇଲେ ମୁଁ ତାକୁ.... ।" ଏତିକିବେଳେ ଶ୍ୟାମବାବୁଙ୍କ ଘର ଚାକରାଣୀ ଆସି କହିଲା, "ମା ଠାକୁରାଣୀ, ଦିଦିଙ୍କ ପାଇଁ ଚିଠି ଧରି ବାଲେଶ୍ୱରରୁ ଜଣେ କିଏ ଆସିଚି ।"

ପ୍ରମିଳା : ମୋ ଲାଗି ବାଲେଶ୍ୱରରୁ ଚିଠି ? କିଏ ପଠେଇଲା ଚିଠିଟା ନେଇ ଆସ ତ ।

ଚାକରାଣୀ : ସେ ଲୋକଟା କହୁଚି, ତୁମ ଛଡ଼ା ଆଉ କାହାରି ହାତରେ ଦେବନାହିଁ । କୁଆଡ଼େ ଭାରି ଜରୁରି ।

"ଦିଦି, ତୁମେ ଟିକିଏ ବସ, ମୁଁ ଆସୁଚି" କହି ପ୍ରମିଳା ଚାଲିଗଲେ ଓ ଦଶ ମିନିଟ୍ ପରେ ଚିଠି ଖଣ୍ଡେ ଘେନି ଫେରିଆସିଲେ । କହିଲେ, "ମୋର ପାଠପଢ଼ା ସାଥୀ ସୁଶୀ ବାଲେଶ୍ୱରର ଜଣେ ମୁନସଫ ବାବୁଙ୍କ ଝିଅ । ସେଇ ଲେଖିଚି । ତା'ର ସାନଭାଇ ତାଙ୍କରି ମଟରରେ ଆସିଚନ୍ତି ଚିଠିଟା ଘେନି । ଦେଖେଁ, କଥା କ'ଣ ।" କହି ଚିଠିଟା ଫିଟାଇ ପଢ଼ିଲେ ।

ପ୍ରାଣର ପେମି,

ମୁଁ ଏଇ ଦଶ ବାର ଦିନ ହେଲା ଏଠିକି ଆସିଚି । ଆଜି ସକାଳେ ବାପା ଓ ଆଉ କେତେଜଣ ଓକିଲ ବସି କଥାବାର୍ତ୍ତା ହେଉଥିଲେ ବୈଠକଖାନାରେ । ମୁଁ ପାଖ ଘରେ ବସି

ସେମାନଙ୍କ ପାଇଁ ପାନ ଭାଙ୍ଗୁଥାଏ । ସେମାନଙ୍କର କଥାବାର୍ତ୍ତା ଭିତରେ ଶୁଣିଲି ତୋର ଜମିଦାରୀ ଖଣ୍ଡି କୁଆଡ଼େ ରାଜସ୍ୱ ଦେଣାରେ ନିଲାମରେ ଉଠିଚି, ଆଉ ନିଲାମ ତାରିଖ କାଲି । ମୁଁ ଆଚମ୍ବିତ ହେଇଗଲି । ତୋର ଜମିଦାରୀ, ତୋର ଏତେ ସମ୍ପତ୍ତି ଥାଉଁ ଥାଉଁ ନିଲାମରେ ଉଠିଲା କିପରି ? ତୁ ଏକଥା ଜାଣୁନାହିଁ ବୋଧହୁଏ; ଜାଣିଥିଲେ ଏତେ ବଡ଼ କଥାଟା ମୋ ପାଖକୁ ନିଶ୍ଚୟ ଲେଖିଥାନ୍ତୁ । ବୋଧହୁଏ ତୋର ଅଜାଣତରେ ତୋର ଟ୍ରଷ୍ଟି କିଛି ଗୋଳମାଳ କରିଚି, ଏଇ ଆଶଙ୍କା କରି ମୁଁ ବୁଢ଼ା ହାତରେ ଏ ଚିଠି ଖଣ୍ଡି ପଠାଇଲି । ତୁ ତ ବୁଢ଼ାକୁ ଜାଣୁ । ମୋର ସନ୍ଦେହ ଯେବେ ସତ ହୋଇଥାଏ, ତା'ହେଲେ ତୁ ବୁଢ଼ା ସାଙ୍ଗରେ ତୁରନ୍ତ ଆମରି ଗାଡ଼ିରେ ଚାଲିଆସିଲେ, ଏଠାରେ ଗୋଟାଏ କିଛି ବ୍ୟବସ୍ଥା କରାଯାନ୍ତା । ଆସିଲେ ଆଉ ସବୁ କଥା ।

ଚିଠିଟା ପଢ୍ଣୁ ପଢ୍ଣୁ ପ୍ରମିଳା ଦେବୀ କାନ୍ଦିଉଠିଲେ । ତାଙ୍କର ସାତପୁରୁଷୀ ଜମିଦାରୀ ଘର, ଦ୍ୱାର, ସବୁ କ'ଣ ଏହିପରି ଗୋଟାଏ ପବନର ନିଃଶ୍ୱାସରେ ଉଡ଼ିଯିବ ? ସେ କ'ଣ ଶେଷରେ ଦାଣ୍ଡର ଭିଖାରି ହୋଇ ବସିବେ ? ଏ ବିପଦରେ ତାଙ୍କର ସହାୟ କିଏ ହବ ? ସେ ଜାଣନ୍ତି, ତାଙ୍କର ସଦର ଜମା ୮୭୫୦୦ । ଏତେ ଗୁଡ଼ାଏ ଟଙ୍କା ସେ କୋଉଠୁ ଆଣିବେ ବା ଏତେ କମ୍ ସମୟ ମଧ୍ୟରେ କିପରି ଯୋଗାଡ଼ କରିବେ ଯେ ସମ୍ପତ୍ତିକୁ ରକ୍ଷା କରିବେ ? ଏହିପରି ବାର ପ୍ରକାର କଥା ତାଙ୍କ ମନରେ ଅଣଆଶ ପବନ ପରି ମୁହୂର୍ତ୍ତକ ଭିତରେ ଖେଳିଗଲା । ଆଶଙ୍କାର ଦୁଃଖରେ ତାଙ୍କର ନାକ ଫୁଲିଉଠିଲା । ଆଖି ଛଳଛଳ ହୋଇଗଲା । ଶ୍ୟାମବାବୁଙ୍କ ସ୍ତ୍ରୀ ଏସବୁ ଲକ୍ଷ୍ୟକରି କହିଲେ, "କ'ଣ ହେଲା ପେମି ? କିଛି ଖରାପ ଖବର ନୁହଁ ତ ?" ପ୍ରମିଳା କଥା ତ କହିପାରିଲେ ନାହିଁ, କିଛି ସମୟ ତାଙ୍କୁ କଟମଟ କରି ଚାହିଁ କହିଲେ, "ଏହି ନିଅ ପଢ଼ ! ଏଥରକ ମନ ଶାନ୍ତି ହେଲା ତ ! ମୋର ଏ ସାମାନ୍ୟ ସମ୍ପତ୍ତି ତୁମ ଘଇତା-ମାଇପଙ୍କ ଜିଭରୁ ପାଣି ବୁହାଉଥିଲା । ଘଇତା ଯେତେ ବିଶ୍ୱାସରେ ବିଷ ଦେଇ ମାରିନେଇ ନପାରେ, ତା'ହେଲେ ମାଇପ ପୁତନା କାନ୍ଦଣାରେ ଭୁଲେଇ ହେଲେ ମାରିନବ । ଏଥରକ ନିଅ, ଖାଅ, ତୁମର ମଙ୍ଗଳ ହଉ । ମା' ମରିଗଲାବେଳେ ଯେ ଶୁଦ୍ଧ-ସୁବର୍ଣ୍ଣ ସମ୍ପତ୍ତି ତୁମ ହାତରେ ମୋ ପାଇଁ ସମର୍ପି ଦେଇଥିଲେ, ସେ ସମ୍ପତ୍ତିର ବିଷ ଖାଇ, ତୁମ ବଂଶର ଯେବେ ମଙ୍ଗଳ ହେବ ବୋଲି ଭାବିଚ, ତାହେଲେ ସେ ତୁମର ଭୁଲ । ମୋର ମା' ସ୍ୱର୍ଗପୁରୀରୁ ଏକଥା ନିଶ୍ଚୟ ଦେଖୁଚନ୍ତି । ତାଙ୍କର ଅଭିଶାପରେ, ମୋର ତାତିଲା ନିଃଶ୍ୱାସରେ, ଦେଖିବ, ତୁମର ଏ ସୁନାର ସଂସାର ଛ'ପକ୍ଷ ଛ'ମାସ ନ ଯାଉଣୁ ଯେବେ ମଶାଣି ପାଉଁଶ ନ ହୋଇଚି ।" କଥାଗୁଡ଼ାକ ଶୁଣୁ ଶୁଣୁ ଶ୍ୟାମବାବୁଙ୍କ ସ୍ତ୍ରୀଙ୍କ ମୁହଁ କଳାକାଠ ପଡ଼ିଗଲା, ତାତିଲା ପବନରେ ସଜ ଗୋଲାପଟି ଯେପରି ଝାଉଁଳି ବେକ ଭାଙ୍ଗିଦିଏ, ସେହିପରି ତାଙ୍କର ସମୁଦାୟ ଶରୀରଟି ଭାଙ୍ଗିପଡ଼ିଲା । ସେ ଚିତ୍ରପିତୁଳାଟି ପରି ଚିଠିଖଣ୍ଡି ନେଇ ପଢ଼ି ବସିଲେ । ଚିଠିର ଉଦ୍ଦେଶ୍ୟ ଯେତେବେଳେ ତାଙ୍କ ଆଶଙ୍କାଜାଲ ଛିଣ୍ଡାଇ ଏ ନିଷ୍ଠୁର ସତ୍ୟକୁ ତାଙ୍କ ମନ ଭିତରେ ଭୁକାଇପାରିଲେ, ସେତେବେଳେ ସେ ଏକାବେଳକେ ଭାଙ୍ଗିପଡ଼ିଲେ । ସତେ ଯିମିତି ଏ ଦୁଃଖର ଭୁଲା ହାୱା ତାଙ୍କର ଅନ୍ତର ଭିତର ଶୁଖାଇ ଖାଁ-ଖାଁ କରିଦେଉଚି ! ଲୁହ ତାଙ୍କ ଆଖିରୁ ଗଡ଼ିଲା ନାହିଁ । ଆଖିଟା ମରୁଭୂମି ପରି ଶୁଖିଲା । ଓଠ ଦି'ଟାକୁ ଜିଭ ଆଗରେ ଓଦା କରିବାକୁ ଚେଷ୍ଟା

କରୁଚନ୍ତି; କିନ୍ତୁ ଜିଭ ନାହିଁ, ଜିଭଟା ଯିମିତି ତାଙ୍କ ତାଳୁରେ ଲାଗିଯାଇଚି । ପ୍ରମିଳା କଥାଗୁଡ଼ାକ ପ୍ରଥମ ରାଗଦାଉରେ କହିଦେଇ ଯେତେବେଳେ ତାଙ୍କ ଆଡ଼କୁ କଟମଟ କରି ଚାହିଁଲେ ତାଙ୍କର ଭାବ ତାଙ୍କ ଆଖି ଭିତର ଦେଇ ଆସ୍ତେ ଆସ୍ତେ ମନକୁ ଚମକେଇ ଦେଲା । ସେ ଉଠିଯାଇ ତାଙ୍କ ହାତ ଧରି ଗଦଗଦ ହୋଇ କହିଲେ, "ବୌଦିଦି, ମତେ କ୍ଷମା କର । ମୁଁ ପାଷାଣୀ ରାଗ ଆଉ ନିରାଶାରେ ତୁମକୁ ବୃଥା କଷ୍ଟ ଦେଇଚି । ମୁଁ ଜାଣେ ତୁମେ ଦେବୀ । ତୁମ ଉପରେ ଏପରି ଅଯଥା ଆକ୍ଷେପ କରି ମୁଁ ବଡ଼ ପାପ କରିଚି । କ୍ଷମା କର ବୌଦିଦି ! କିନ୍ତୁ ମୋର କ'ଣ ହବ ଗୋ ?" ତାଙ୍କର ଧୈର୍ଯ୍ୟ ଭାଙ୍ଗିଗଲା । ସେ କଇଁକଇଁ ହୋଇ କାନ୍ଦିଉଠିଲେ । ଶ୍ୟାମବାବୁଙ୍କ ସ୍ତ୍ରୀ ତାଙ୍କର ଏ ଭାବ ପରିବର୍ତ୍ତନ ଦେଖି ମୁଗ୍‌ଧ ହୋଇଯାଇଥିଲେ । ତାଙ୍କର ଆଖିର ପାଣିରେ ତାଙ୍କ ନିଜ ମନର ଉଦାସ ଭାବ ଯେପରି ଧୋଇହୋଇଗଲା । ସେ ପ୍ରମିଳାଙ୍କୁ କୋଡ଼କୁ ଟାଣିନେଇ ତାଙ୍କ ଆଖିରୁ ଲୁହ ପୋଛିଦେଲେ ଓ କହିଲେ, "ପେମି, ଅନାଥର ସହାୟ, ସତୀର ରକ୍ଷାକାରକ ଭଗବାନ ନିଶ୍ଚୟ ତା'ର ଉପାୟ ବତାଇଦେବେ । ତୁମେ ସ୍ଥିର ରହ । ମୁଁ ଏଇ ଆସୁଚି ।" ଏହା କହି ତାଙ୍କ ନିଜ ଘରକୁ ଯାଇ ବାକ୍‌ସ ଫିଟାଇଲେ । ଯେତେକ ଗହଣା-ଗାଣ୍ଠି ଥିଲା ସବୁ କାଢ଼ିଲେ । ନିଜ ଦେହରେ ଯାହା କିଛି ଥିଲା, କେବଳ କାଚ ଦି-ଦି' ପଟ ଛଡ଼ା ସବୁ ବାହାରକଲେ । ବାକ୍‌ସ ଭିତରେ ଟଙ୍କା ପାଞ୍ଚଶ ନୋଟ ଯେ ଥିଲା, ତାକୁ ଧଇଲେ । ଏ ସବୁ ଧରି ସେ ପ୍ରମିଳାଙ୍କ ପାଖକୁ ଆସି କହିଲେ, "ପେମି ! ତୁମେ ଯେବେ ମନରେ କିଛି ନ ଭାବିବ, ତେବେ ମୁଁ କହିବି, ତମେ ମତେ ଦିଦି ବୋଲି ଡାକିଚ, ଦିଦି ବୋଲି ସ୍ନେହ କରିଚ । ଏ ଅବସ୍ଥାରେ ଆଉ ସବୁ କଥା ଛାଡ଼ିଦେଲେ ମଧ୍ୟ, ତୁମର ଦିଦି ଭାବରେ ମୋର ସାନଭଉଣୀ ପାଇଁ ମୋର ନିଶ୍ଚୟ କର୍ତ୍ତବ୍ୟ ଅଛି । ମୋର ତ ଆଉ କିଛି ନାହିଁ । ଏଇ ଗହଣାତକ ପ୍ରାୟ ୩ ହଜାର ଟଙ୍କାର ହବ, ଆଉ ଏ ୫୦୦ ଟଙ୍କା ମୁଁ ଟଙ୍କାଏ ଟଙ୍କାଏ କରି ଯାହା ସଞ୍ଚି ରଖିଥିଲି, ତୁମକୁ ଦଉଚି । ତୁମେ ୟାକୁ ବିକ ଭାଙ୍ଗ ଯାହା କର, ୟାରି ଧନରେ ତୁମ ଜମିଦାରୀ ଖଣ୍ଡିକ ରକ୍ଷାକର । ମୋ ରାଣଟି, ନାହିଁ କରନାହିଁ, ତୁମେ ନାହିଁ କଲେ ମୁଁ ଭାବିବି ତୁମେ ମତେ କ୍ଷମା କଲନାହିଁ ।"

ପ୍ରମିଳାଙ୍କ କଣ୍ଠରେ ଯେପରି ଗୋଟାଏ କ'ଣ ହାବୁଡ଼ିଗଲା; ତାଙ୍କ ଆଖିରେ ପାଣିର ଜାଲ ଧରିଗଲା । ତା'ପରେ ସେ ତାଙ୍କର ସ୍ୱରକୁ ଯଥାସମ୍ଭବ ଧୀର କରି କହିଲେ, "ଦିଦି, ତୁମେ ପ୍ରକୃତରେ ଦେବୀ । ମୁଁ ଏ ଦେବୀଙ୍କ ଉପରେ ଯେ ପାପ ସନ୍ଦେହ କରିଥିଲି, ତା'ର ଯଥେଷ୍ଟ ଶାସ୍ତି ହୋଇଗଲା । ଆଉ ମତେ ଲଜ୍ଜା ଦିଅନାହିଁ ଦେବୀ ! କିନ୍ତୁ ଦିଦି, ତୁମର ଏତେ ବଡ଼ ତ୍ୟାଗ ମୁଁ କୌଣସି ମତେ ନେଇପାରିବି ନାହିଁ । ମୁଁ ଜାଣେ, ଏଇତକ ତୁମର ସର୍ବସ୍ୱ । କାଲି ହୁଏତ ତୁମକୁ ଦାଣ୍ଡରେ ବସିବାକୁ ହବ । ସେତେବେଳେ ଏଇତକ ଖୋକାର ଏକମାତ୍ର ସମ୍ପତ୍ତି ହୋଇରହିବ । ମୁଁ କି ୟାକୁ ଛୁଇଁପାରେ ? ମୁଁ ଗୋଟାଏ ଡିର୍ଲା । ସମ୍ପତ୍ତିବାଡ଼ି ଗଲେ ମଧ୍ୟ କାହା ବେକରେ ବନ୍ଧାହୋଇ କୌଣସି ମତେ ଜୀବନଟା କଟାଇ ନେବି; କିନ୍ତୁ ଖୋକାର ଦୀର୍ଘ ଜୀବନ ଆଗକୁ ରହିଚି । ତା'ର ସେ ଦୀର୍ଘ ଜୀବନ ଲାଗି ତମର ଜୀବନଟି ମଧ୍ୟ ଲୋଡ଼ା । ନା, ନା, ଏ ହୋଇ ପାରେନାହିଁ । ମୁଁ ଯାଉଚି, ସୁଣୀ ତ ଲେଖିଚି, ତା'ର ବାପା ମୁନ୍‌ସଫ । ତାଙ୍କର ଓକିଲ ମୁକ୍ତାର କେତେ ସାଙ୍ଗସାଥୀ ଥିବେ । ସେମାନଙ୍କ ପରାମର୍ଶ କରି

ଯାହା କରିବାର କଥା ତା' କରିବାକୁ ଚେଷ୍ଟାକରିବି; ତେଣିକି ଯାହା କପାଳରେ... ।" ଏତିକିବେଳେ ଗୋରାବୋଉ ମାଉସୀ ଓ ଶ୍ୟାମବାବୁଙ୍କ ମା' ସେଠାରେ ଆସି ପହଞ୍ଚିଲେ । ଶ୍ୟାମବାବୁଙ୍କ ମା' ବୋହୂର ନିରାଭରଣ ରୂପ ଓ ମାଟି ଉପରେ ତାଙ୍କର ସବୁ ଅଳଙ୍କାର ଟଙ୍କା ପଇସା ପ୍ରମିଳାଙ୍କ ଗୋଡ଼ତଳେ ଥୁଆହୋଇଥିବାର ଦେଖି ତଟସ୍ଥ ହୋଇଗଲେ ସତ; କିନ୍ତୁ କିଛି ବୁଝିପାରିଲେ ନାହିଁ । ଗୋରାବୋଉ ମାଉସୀ କହିଲେ, "କିଲୋ ଟୁକୁଲୀଟା, ତୋର କି ଗପ ସରିବ ନାହିଁ ? ରାତି କେତେ ହେଲାଣି, ଜାଣୁ ?" ପ୍ରମିଳା ଉଠିଲେ, ବୁଢ଼ୀଙ୍କୁ ଓଳଗିହୋଇ ଗୋରାବୋଉ ମାଉସୀଙ୍କ ସାଙ୍ଗରେ ବାହାରି ପଡ଼ିଲେ । ଶ୍ୟାମବାବୁଙ୍କ ସ୍ତ୍ରୀ ତାଙ୍କ ପଛେ ପଛେ ଯାଇ ତାଙ୍କୁ ଏକୁଟିଆ ଡାକି କହିଲେ, "ପେମି, ୟାଙ୍କ ବିରୁଦ୍ଧରେ ଯାହା କରିବ ସେଥିରେ ତୁମର ତିଳେ ମାତ୍ର ଦୋଷ ହବନାହିଁ । ୟେ ଯାହା କରିଚନ୍ତି ତା'ର ଶାସ୍ତି ନାହିଁ । ତଥାପି ଯଦି ପାର ଅନ୍ତତଃ ମୋର ଖୋକା ଲାଗି ତାଙ୍କୁ କ୍ଷମା କରିବାକୁ ଚେଷ୍ଟାକରିବ ।" ପ୍ରମିଳା ତାଙ୍କୁ କୁଣ୍ଢେଇ ପକେଇ ଗୋଟିଏ ଚୁମ ଦେଲେ । ତାଙ୍କର ନିଃଶ୍ୱାସଟା ହଠାତ୍ ତାଙ୍କ ଛାତିଭିତରେ ଅଟକିଗଲା ପରି ଲାଗିଲା । ସେ ଆଉ କଥା ନ କହି ଘରୁ ବାହାରିଗଲେ ଦାଣ୍ଡରେ ଥୁଆ ହୋଇଥିବା ମଟର ଭିତରକୁ ।



# ତେତିଶି

ଧୋଇବାବୁ କଟକରୁ ଫେରି ବାଲେଶ୍ୱରଠାରେ ପ୍ରଫୁଲ୍ଲବାବୁଙ୍କୁ ଓହ୍ଲାଇଦେଲେ ଓ ତାଙ୍କ ପାଇଁ ଅପେକ୍ଷା କରିବାକୁ କହି ସେହି ସନ୍ଧ୍ୟା ଗାଡ଼ିରେ ଅମର୍ଦାରୋଡ଼ ଷ୍ଟେସନରେ ଆସି ଓହ୍ଲାଇଲେ । ସେତେବେଳକୁ ରାତି ପ୍ରାୟ ୭ଟା । ତାଙ୍କ ହାତରେ ଅଛି ମାତ୍ର ଗୋଟିଏ ବିଜୁଳି ମଶାଲ ଓ ଗୋଟିଏ ଠେଙ୍ଗା । ଅମର୍ଦାରୁ ରାଧାନାଥପୁର ଶାସନକୁ ଯିବାପାଇଁ ଗୋଟିଏ ଖଣ୍ଡିଆ ଜଙ୍ଗଲ ପଡ଼େ । ରାତି ୭ଟା ବେଳକୁ ରାସ୍ତାଟି ପ୍ରାୟ ଜନଶୂନ୍ୟ ହୋଇଯାଏ । ସେ ଏଇ ରାସ୍ତାରେ ଚାଲିଛନ୍ତି, ଗୁଣୁ ଗୁଣୁ କରି ଗୋଟିଏ ଗୀତ କ'ଣ ଗାଉଚନ୍ତି । ଜଙ୍ଗଲରୁ ଅଧାଅଧି ଯାଇଚନ୍ତି, ହଠାତ୍ କ'ଣ ଅନୁଭବ କରି ସେ ରାସ୍ତା ଉପରେ କାଠଗଡ଼ ପରି ଠିଆହୋଇଗଲେ । ଏଣିକି ତେଣିକି ଟିକିଏ ଚାହିଁଲେ । ବାଁ ହାତ ତରଫରେ ଗୋଟାଏ ଦି'ଟା ବୁଦା ଟିକିଏ ହଲିଲା ପରି ଜଣାଗଲା । ସେ ମଶାଲ ଆଲୁଅଟା ସେଇ ଆଡ଼ିକି ପକାଇଲେ; ଅନ୍ୟ ଆଡ଼କୁ ମଧ୍ୟ ପକାଇଲେ । ତା'ପରେ ଧୀରେ ଧୀରେ ଚାଲିବାକୁ ଆରମ୍ଭ କଲେ । କିଛି ଦୂର ଯାଇ ସେ ପୁଣି ଥକ୍କାମରା ହୋଇ ଠିଆହୋଇଗଲେ ଓ ଘୁରି ପଡ଼ିଲେ; କିନ୍ତୁ ସେଇ ମୁହୂର୍ତ୍ତକ ଯେ ସେ ଥକ୍କାମରା ହୋଇ ଠିଆହୋଇଗଲେ, ସେଇତକରେ ତାଙ୍କ ଭାଗ୍ୟଚକ୍ର ଘୂରିଗଲା । ତାଙ୍କ ତାଳୁ ଉପରେ ଗୋଟାଏ ବାଡ଼ି ଦୁଇଥର ସଟାଙ୍ଗ ସଟାଙ୍ଗ କରି ପଡ଼ିଲା । ସେ ପାଚିଲା ଆମ୍ବ ଭଳି ସେଇଠାରେ ଭୁସ୍‌କରି ପଡ଼ିଗଲେ । ତାଙ୍କ ମୁଣ୍ଡରୁ ରକ୍ତ ପିଚିକା ମାରି ରାସ୍ତାର ବାଲି ଧୂଳିକୁ ଓଦାକରି ଦେଲା । ତା'ପରେ ଦେଖାଗଲା ଦୁଇଜଣ ମଣିଷ । ସେ ଅନ୍ଧାରରେ ତାଙ୍କର ଛାଇ ଜଣାପଡୁଥିଲା ଯେପରି ରାକ୍ଷସ । ସେଥିଭିତରୁ ଜଣେ ନଇଁପଡ଼ି ଧୋଇବାବୁଙ୍କ ପକେଟ ଓ ଅଣ୍ଟା ଖୋଜିନେଲା ।

ଧୋଇବାବୁଙ୍କ ହାତରୁ ମଶାଲଟା ପଡ଼ି ରାସ୍ତାରେ ଗଡ଼ିଯାଇଥିଲା । ସେଉଟା ମଧ୍ୟ ସେ ଉଠାଇ ନେଲା । ଏତିକିବେଳେ ତାଙ୍କ ପଛରୁ ଆଉ ଦି'ଜଣ କିଏ ଧାଇଁ ଆସିବାର ଶବ୍ଦ ଶୁଣାଗଲା । ଏ ଦୁଇଜଣ ଜଙ୍ଗଲ ଭିତରକୁ ଚାଲିଗଲେ । ଆଗନ୍ତୁକ ଦୁଇଜଣଙ୍କ ହାତରେ ଆଲୁଅ ଥିଲା । ସେମାନେ ଆଲୁଅ ପକାଇ ଧୋଇବାବୁଙ୍କର ଏ ଅବସ୍ଥା ଦେଖିଲେ । ଜଣାପଡ଼ିଲା ଯେପରି ଧୋଇବାବୁଙ୍କର ଖେଳ ସେହିଠାରେ ଶେଷ ହୋଇଯାଇଚି । ଏ ଦି'ଜଣ ତାଙ୍କ ଭିତରେ କ'ଣ କଥାବାର୍ତ୍ତା ହେଲେ; ଜଣାପଡ଼ିଲା ଯେପରି ଏ ଜଙ୍ଗଲ ନିକାଞ୍ଚନ ରାସ୍ତାରେ ଗୋଟାଏ ଲାସ୍ ପାଖରେ ଏମାନେ ଧରାପଡ଼ିଲେ ଶେଷରେ ମଣିଷମାରୁ ମକଦ୍ଦମାରେ ଟଣାଓଟରା ହେବେ । ଆଉ ଯାହାକୁ ରଖିବାକୁ ଆସିଥିଲେ, ସେ ଯେତେବେଳେ ଶେଷ; ଏମାନଙ୍କର ଏଠାରେ ରହିବା ବୋକାମି । ଏମାନେ ଏହିପରି କଥା ଫୁସ୍‌ଫାସ୍ ହେଉଚନ୍ତି; ଏଇ ସମୟରେ ଦୂରରୁ ଗୋଟାଏ ମଟର ଆଲୁଅ ଦିଶିଲା । ଏମାନେ ମଟରର ସେଇ ଆଲୁଅରେ ଯେପରି ତାଙ୍କ ବାଟ ଦେଖିପାରିଲେ । ସେମାନେ ମଧ୍ୟ ପାଖ ଜଙ୍ଗଲ ଭିତରକୁ ଦୌଡ଼ି ପଳାଇଗଲେ । ମଟରଟା କଲିକତା ଆଡୁ ସାଁ-ସାଁ କରି ଦୌଡ଼ି ଚାଲିଛି । ଧୋଇବାବୁ ଯେଉଁଠାରେ ପଡ଼ିଚନ୍ତି, ତା'ର ପାଖ ହେଲାବେଳକୁ ମଟରଚାଳକ ଆଗରେ ଗୋଟାଏ ମଣିଷ ଭଳି କ'ଣ ପଡ଼ିଥିବାର ଦେଖି ମଟରଟା ବନ୍ଦ କରିଦେଲା । ମଟର ଭିତରୁ ଜଣେ ଭଦ୍ରଲୋକ ଓହ୍ଲାଇଆସି ଧୋଇବାବୁଙ୍କୁ ଗାଡ଼ିର ଆଲୁଅରେ ଦେଖି ଓଲଟପାଲଟ କରି ଛାତିରେ ନାକରେ ହାତ ଦେଇ ଗାଡ଼ି ପାଖକୁ ଚାଲିଗଲେ ଓ ଗାଡ଼ି ଭିତରେ ଆଉ ଜଣେ କାହାକୁ ସବୁ ହାଲ କହିଲେ । ଗାଡ଼ି ଭିତରୁ ସ୍ତ୍ରୀ ସ୍ୱରରେ, ସାରଙ୍ଗି କଣ୍ଠରେ କିଏ କହିଲା, "ତେବେ ଦେଖୁଚ କ'ଣ ? ଗାଡ଼ିରେ ଉଠାଇ ଜଲଦି ବାଲେଶ୍ୱର ଆଡ଼େ ଦୌଡ଼ନା !" ଡ୍ରାଇଭର ଓ ବାବୁ ମଟରରୁ ଓହ୍ଲାଇ ଧୋଇବାବୁଙ୍କୁ ଧରି ମଟରରେ ଲଦିଲେ । ଗାଡ଼ି ତା'ପରେ ପବନ ବେଗରେ ବାଲେଶ୍ୱର ଆଡ଼େ ଛୁଟିଚାଲିଲା ।



## ଚଉତିରିଶି

ପ୍ରମିଳା ଚାଲିଗଲା ପରେ କୁମୁଦିନୀ ଓ ତାଙ୍କର ଶାଶୁ ଖାଇବସିଲେ । ବୁଢ଼ୀ ପଚାରିଲେ, "କିଲୋ ମା, ତୁ ଯେ ଏତେ ମତଲବ କରି ପ୍ରମିଳାକୁ ଏଠିକି ଡାକିଆଣିଥିଲୁ, ତା'ର କି ହେଲା ? ଛାଡ଼ିଦେଲୁ ଯେ ବଡ଼..."

କୁମୁଦିନୀ : ନ ଛାଡ଼ି ଯେ ଅନ୍ୟ ଉପାୟ ନଥିଲା ମା ! ପ୍ରମିଳାର ମନରେ ଟିକିଏ ହେଲେ ପାପ ନାହିଁ । ତା' ଉପରେ ଅତ୍ୟାଚାର କରିବା ଯେ ଅସମ୍ଭବ ମା ! ତା'ର ପରେ ମା, ମୁଁ ତାକୁ ୟାଙ୍କ ହାତରୁ ବଞ୍ଚେଇବା ପାଇଁ ମୋ ଘରକୁ ଡାକିଥିଲି । ସେ ତ ବାଲେଶ୍ୱର ଚାଲିଗଲା । ଅତଏବ ତାଙ୍କ ହାତରୁ ରକ୍ଷାପାଇଲା । ମୁଁ ଆଉ ତାକୁ ଅଟକେଇ ରଖନ୍ତି କେନେ ?

ବୁଢ଼ୀ : ସେ ଗଲାବେଳେ ତା' ପାଖରେ ଯେ ତୁ ତୋର ଗହଣାଗୁଡ଼ାକ କୁଢ଼ାଇ ଦେଇଥିଲୁ, ସେ କେନେ ?

କୁମୁଦିନୀ : ୟାଙ୍କରି କୁଚକ୍ରରେ ପଡ଼ି ତା'ର ଜମିଦାରୀ ଯାନ ଆସ୍ଥାନ ସବୁ ବାକି ରାଜସ୍ୱ ପାଇଁ ନିଲାମ ହୋଇଯାଉଚି । ଭାବିଥିଲି ମୋର ଗହଣାଗଣ୍ଠିତକ ଦେଇ ସ୍ୱାମୀ-ପାପର ଯେବେ କିଛି ପ୍ରାୟଶ୍ଚିତ୍ତ କରିପାରନ୍ତି; କିନ୍ତୁ ସେ ନେଲାନାହିଁ । ତା'ର କିଏ ଆପଣାର ଲୋକ ବାଲେଶ୍ୱରରେ ଅଛନ୍ତି, ସେଠିକି ଯାଇଚି, କ'ଣ ବନ୍ଦୋବସ୍ତ କରିବ ବୋଲି ।

ବୁଢ଼ୀ : ତୋର ସର୍ବସ୍ୱ, ଦିହର ଗହଣା ଦି'ଖଣ୍ଡ ପର୍ଯ୍ୟନ୍ତ ଦେଇ ଉଦ୍ଧାର କରିବାକୁ ଯାଉଥିଲୁ; ଆଉ ସେ ତୋର ସଉତୁଣୀ ହବାକୁ ଯାଉଚି । ୟେ ତ ବଡ଼ ଆଶ୍ଚର୍ଯ୍ୟ ! ତୁ କ'ଣ ମା ! ତୋର ମନଟା, ଛାତିଟା କାହିଁରେ ତିଆରି ମା ?

ବୁଢ଼ୀ ଓ ବୋହୁ ଏହିପରି କଥାବାର୍ତ୍ତା ହେଉଛନ୍ତି, ଏହି ସମୟରେ ହଠାତ୍ ବାହାରପଟୁ ଗୋଟାଏ ଗୋଳମାଳ ହୋଇ ସାଙ୍ଗେ ସାଙ୍ଗେ ବନ୍ଦ ହୋଇଗଲା । ବୁଢ଼ୀ ଓ ବୋହୁ ତଡ଼ବଡ଼ କରି ଠିଆହୋଇ ତଟସ୍ଥ ଭଳି ଚାହିଁରହିଲେ । ତା'ପରେ ଦୁଇଜଣ ଯମକିଙ୍କର ଭଳି ଲୋକ କେଉଁଆଡୁ ଆସି ସେ ଦୁହିଁଙ୍କି ଧରିନେଲେ । ଧ୍ୟାନ ଭାଙ୍ଗି ପାଟିକରିବା ଆଗରୁ ସେମାନେ ଏମାନଙ୍କ ମୁହଁରେ ମେଞ୍ଚାଏ ଲେଖାଏଁ ଲୁଗା ମାଡ଼ିଦେଲେ । ତା'ପରେ କୁମୁଦିନୀ ଓ ଶାଶୁଙ୍କୁ ଘେନି ସେମାନେ ଘରୁ ବାହାରି ଚାଲିଗଲେ । କୁମୁଦିନୀ ବାଘୁଣୀ ଭଳି ତାଙ୍କର ହାତ ଓ ନଖଦେଇ ସେମାନଙ୍କୁ ଆକ୍ରମଣ କରୁଥାନ୍ତି, ସେ ଆକ୍ରମଣ ଯେପରି ତୂଳାବିଣ୍ଡାରେ ପର୍ବତ ଭାଙ୍ଗିବାର ଚେଷ୍ଟା; ନାକକାନ୍ଦଣାରେ ଯମର ମନ ବଦଳେଇବାର ପ୍ରୟାସ । ଏମାନେ ବାହାରପଟ ଖଞ୍ଜାରେ ଆସି ପହଞ୍ଚି ଦେଖନ୍ତି, ଯେପରି ଦୁଇ ତିନି ଜଣ ଲୋକ ଗୋଟାଏ ଘର ଭିତରୁ ଦୁଆରଟାକୁ ବାଡ଼ଉଛନ୍ତି । ଘରୁ ରାସ୍ତା ଉପରକୁ ଆସିଲେ ଦେଖାଗଲା ଆଉରି ଦୁଇ ଚାରି ଜଣ ଲୋକ ବାହାରେ ଲମ୍ବା ଲମ୍ବା ଲାଠିମାନ ଧରି ଠିଆହୋଇଛନ୍ତି । ରାତି ସେତେବେଳକୁ ପ୍ରାୟ ଅଧ । ଚାରିଆଡ଼ ଶୁନଶାନ । ଏ ଲୋକଗୁଡ଼ାକ ସମସ୍ତେ ମିଶି ଏ ଦୁଇଟି ନିରୀହ ସ୍ତ୍ରୀଲୋକଙ୍କୁ ଧରି ଶୂନ୍ୟେ ଶୂନ୍ୟେ ନେଇ ସେଇ ରାତିର ଗଭୀର ଅନ୍ଧାର ମଧ୍ୟରେ ଅଦୃଶ୍ୟ ହୋଇଗଲେ ।

X X X X

ସୁବର୍ଣ୍ଣରେଖା ଉପରେ ଜଳେଶ୍ୱର ଷ୍ଟେସନକୁ ଯିବାପାଇଁ ରେଳପୋଲର ସାମାନ୍ୟ ଦୂରରେ ଖଣ୍ଡେ ପଡ଼ିଆ । ପଡ଼ିଆଟାରେ ବଣୁଆ ଗଛଲତା ଅନେକ । ଗୋଟାଏ ବଡ଼ ବର ଗଛ ତା'ର ଓହଳ ପାହୁଲମାନ ପକାଇ ଦଶପାଦ ରାକ୍ଷସ ଭଳି ଠିଆହୋଇ ରହିଛି । ସେଇ ଗଛର କିଛି ଦୂରରେ କେତେଗୁଡ଼ିଏ ଭଙ୍ଗା ଓ ଦରଭଙ୍ଗା ପକ୍କାଘର । କାନ୍ଥଗୁଡ଼ାକରେ ଛୋଟ ଛୋଟ ଗଛ କେତେ ଉଠିଗଲାଣି । ସେମାନଙ୍କ ଚେରସବୁ ମେଲି ଠାଏ ଠାଏ କାନ୍ଥଟା ଫାଟିଯାଇଚି । ଏ ଥିଲା ଆଗେ ଜଳେଶ୍ୱର ଥାନା । ଦାରୋଗା ସାହେବଙ୍କ ଚାବୁକମାଡ଼ରେ କେତେ ଦୋଷୀ ଓ କେତେ ନିର୍ଦ୍ଦୋଷୀ ନିରୀହ ଲୋକଙ୍କର କାନ୍ଦଣା ପାଣିରେ ୟାର ମାଟି ଧୋଇହୋଇ ସୁବର୍ଣ୍ଣରେଖାର ପାଣିକୁ ବିଷାକ୍ତ କରିପକାଇଚି । କେତେ ବିକଳିଙ୍କର କରୁଣ ଆର୍ତ୍ତନାଦରେ ବରଗଛ କୋରଡ଼ ଭିତରେ ଚିଲ, ଶାଗୁଣା, ପେଚା ଇତ୍ୟାଦି ପକ୍ଷୀମାନଙ୍କ ମନରେ ଚମକ ଲାଗିରହିଚି । କେତେ ନରହନ୍ତା ମହାପାପୀ ସେ କାଳର ଭୈରବମୂର୍ତ୍ତି ଦାରୋଗାଙ୍କ ଅନୁଗ୍ରହ

ପାଇ ତା'ର ଆନନ୍ଦ ଅଟ୍ଟହାସରେ ଚମକ ଜଗାଇ ଦେଇଚି । ସେ ଥାନା ଆଉ ନାହିଁ; ସେ ଦାରୋଗା ସାହେବ ମଧ୍ୟ ନାହାନ୍ତି । କିନ୍ତୁ ଏ ଜାଗା ଯେପରି ତା'ର ଅତୀତ ଗୌରବକୁ ଛାଡ଼ିପାରି ନାହିଁ । ଏଇ ଶୁଣ, ତା'ର ଭଙ୍ଗା ତୁଟା ଛାତ ଉପରେ ଏ କାହାର କରୁଣ କାନ୍ଦଣା । ଗୋଟାଏ ଦରଭଙ୍ଗା କୋଠରୀ ଭିତରେ ଦୁଇଟି ସ୍ତ୍ରୀ କଟମଟିଆ ଅନ୍ଧାର, କେତେ ବର୍ଷର ଜମା ହୋଇଥିବା ଅଳିଆ ଉପରେ ପଡ଼ିରହିଚନ୍ତି । ଗୋଟାଏ ଖୁମ୍ବରେ ସେମାନେ ବନ୍ଧା । ମୁହଁରେ ତାଙ୍କର ଶାଢ଼ୀରୁ ମେଞ୍ଚାଏ ଲେଖାଏଁ ମଡ଼ା ହୋଇ ପଟି ବନ୍ଧା ହେଇଚି । ସେମାନେ କଇଁକଇଁ ହୋଇ କାନ୍ଦୁଚନ୍ତି । ସେ ଅଳିଆଗଦାରୁ ପୋକଜୋକ, ପିମ୍ପୁଡ଼ି, ଜନ୍ଦା, ରାଟୁରାଟୁ କାମୁଡ଼ି ପକାଉଚନ୍ତି । ଘଉଡ଼େଇଦବାର ବା କାମୁଡ଼ା ଜାଗାକୁ ଆଉଁସିବାର ଉପାୟ ନାହିଁ । କେବଳ ପେଟ ଭିତରୁ ରୁଦ୍ଧ କଣ୍ଠ ଦେଇ ଗୋଟାଏ ଗଁ-ଗଁ ଶବ୍ଦ ବେଳେବେଳେ ବାହାରିପଡୁଚି । ଜୀବନର ଆଶା ତ ଛାଡ଼ିସାରିଚନ୍ତି । ଜୀବନଟା ଗଲେ ବଞ୍ଚିଯାନ୍ତେ; କିନ୍ତୁ ଏ ଅଛଦରା ଜୀବନ କି ଯାଏ ?

ହଠାତ୍ ଭଙ୍ଗା ଦୁଆରଟା ଖଟ୍‌କରି ଖୋଲିଗଲା । ଦୁଃଖ ଓ ଯନ୍ତ୍ରଣାରେ ଏମାନେ ଯେ ଚେତାବୁଡ଼ା ହୋଇପଡ଼ିଥିଲେ, ଏ ଖଟ୍‌ଖଟ୍ ଶବ୍ଦରେ ସେମାନଙ୍କର ଭଙ୍ଗା ହୃଦୟରେ ଗୋଟାଏ ବଡ଼ ରକମର ଆଘାତ ଲାଗିଲା । ମାନ ଯାଇଚି, ମହତ୍ତ୍ୱ ଯାଇଚି, ଜୀବନ ମଧ୍ୟ ଯାଏ ଯାଏ ପ୍ରାୟ । ଥିଲା କେବଳ ଧର୍ମ—ନାରୀର ସତୀତ୍ୱ ଧର୍ମ । ଏ ଲୋକଗୁଡ଼ାକ ସେ'ଟିକୁ ଲୁଟିନେବାକୁ ଆସିଲେ ନା କ'ଣ ? ଦୁଆରମୁହଁରେ କିଏ ସେ ଗୋଟାଏ ଲୋକ ହା-ହା କରି ହସିଉଠିଲେ । ସେ ଶବ୍ଦରେ ଏ ଦୁହିଁଙ୍କ ମଧ୍ୟରୁ ଯେ ଯୁବତୀ, ତାଙ୍କର ଗୋଡ଼ଠାରୁ ମୁଣ୍ଡଯାଏ ଥରିଗଲା ସେ ହସରେ । ଲୋକଟା ବନ୍ଧା ବନ୍ଧା ସ୍ୱରରେ କହିଲା, "ହା-ହା-ହା, କି ପ୍ରମିଳା ଦେବୀ ! କି ଗୋରାବୋଉ ସା'ନ୍ତାଣୀ ! ତୁମର ଅନାଥର ନାଥ ଏକୋଇରବଳା ବିଶିକେସନ ସେ ମୋରିଟି କାଇଁ । ଏଥରକ ତୁମକୁ କିଏ ରକ୍ଷା କରିବ କହ ଦେଖି ? ବାଃ, କଥା କହୁନାହୁଁ ଯେ ! ଆଜି ତ ଭାରି ସୁନାପିଲା । ସେ ଗଳଗଳ ଜିଭ ସେ ଗଳଗଳ କଥା କୁଆଡ଼େ ଗଲା କହ ଦେଖି ? ନା ସହି, ତୁମେ ମାନ କରିଚ, ନା, ଶ୍ରୀମତୀଙ୍କର ଆଜି ଦୁର୍ଜୟ ମାନ । ୟେ ଯେ କୃଷ୍ଣ ଆସି ପହଞ୍ଚିଚନ୍ତି, ୟେ ମାନଭଞ୍ଜନ ହବ ଚାବୁକର ପ୍ରହାରରେ । ମନେ ଅଛି ସେ ଦିନର ଚାପୁଡ଼ା । ମନେ ଅଛି ସେ ଦିନର ଛାଞ୍ଚୁଣୀ ମାଡ଼ ! ଆଜି ତୁମ୍ଭର ସେ ଦମ୍ଭ ମୁଁ ଭାଙ୍ଗିବି । ସେ ଅପମାନର ପ୍ରତିଶୋଧ ନେବି ! ତୁମେ ଜାଣ, ଲୋକ ଫୋପଡ଼ା ମାରି ଆମ୍ବ ପାରେ । ଆମ୍ବଟି ତଳେ ପଡ଼ିଲେ, ତା'ର ରସ ଖାଇ ଟାକୁଆ ଓ ଚୋପାକୁ ଫୋପାଡ଼ି ଦିଏ । ସିମିତିକା ଆଜି ତୁମ ଉପରେ ଚାବୁକମାଡ଼ ଦେଇ ପ୍ରତିଶୋଧ ନେବି । ତା'ପରେ ତୁମେ ଯେତେବେଳେ ଆସି ମୋ ଗୋଡ଼ତଳେ ପଡ଼ି ପ୍ରାଣରକ୍ଷା ଚାହିଁବ ସେତେବେଳେ ତୁମର ଏ ଲାବଣ୍ୟ ଭଣ୍ଡାରକୁ ଶୋଷି, ତୁମକୁ ଫୋପାଡ଼ି ଦେଇ ଚାଲିଯିବି । ଶଇତାନି, ବିଟପି ! କହ ତୁ କେଉଁଠାରେ, କହ ?" ଏହା କହି ସେ ଲୋକଟା ହାତର ବିଜୁଳି ମଶାଲଟାର ଆଲୁଅ ଘରର ଯେ କୋଣରୁ କାନ୍ଦଣାର ଶବ୍ଦ ଆସୁଥିଲା, ସେଇ ଆଡ଼କୁ ପକାଇଲା । ଆଲୁଅଟା ପ୍ରଥମେ ଯାଇ ପଡ଼ିଲା ବୁଢ଼ୀଙ୍କ ଉପରେ । ଲୋକଟା କହିଉଠିଲା, "ହା, ହା, ହା, କି ଗୋରାବୋଉ ମାଉସୀ—ଏଁ, ଏଁ, ଏ କ'ଣ ? ନା ତ, ଏ ତ ଗୋରାବୋଉ ଭଳି ନୁହେଁ, ଏଁ, ଏଁ..." କହି ସେ ଗୋଟାଏ ହାତରେ ଆଖି ଦୁଇଟା ଭଲ

କରି ମଳିଦେଲା । ତା'ପରେ ପୁଣି ଭଲ କରି ନିରିଖି ଅନେଇଲା । ତା'ର ଦିହ ଥରିଉଠିଲା, ହାତ ଠକ୍ ଠକ୍ ହୋଇ ସେଥିରୁ ଚାବୁକ ଓ ଆଲୁଅ ଖସି ତଳେ ପଡ଼ିଗଲା । ତା'ର ସ୍ୱରରୁ ଖାଲି ଅସ୍ଫୁଟ ସ୍ୱରରେ ବାହାରିଲା—"ମା, ମୋର ମା ! ଏଁ, ଏଁ, ଏଁ ।" ଦୁଇ ଚାରି ମିନିଟ୍ ଏହିପରି ହୋଇ ଶେଷରେ ସେ ଆଲୁଅଟା ପାଉଁଟି ନେଇ ବୁଢ଼ୀଙ୍କୁ ଖୋଲିଦେଲା । ବୁଢ଼ୀ ଖୋଲାହେଲା ପରେ ଗୋଡ଼ ହାତ ଲମ୍ବେଇ ପାଞ୍ଚ ମିନିଟ୍ ଖଣ୍ଡେ ବସିଗଲେ । ସମସ୍ତେ ତୁନି, ସବୁ ନୀରବ, ନିସ୍ତବ୍ଧ । ତା'ପରେ ହଠାତ୍ ବୁଢ଼ୀ ଲଇଁପଡ଼ି ସେ ଲୋକଟାର ମୁହଁରେ ଦି'ଚାପୁଡ଼ା ଲଗେଇ ଦେଇ କହିଲେ, "କୁଳାଙ୍ଗାର, ପୋଡ଼ାମୁହାଁ ! ମୁଁ ତତେ ଏଇଥିପାଇଁ ଏତେ ବାର ବ୍ରତ କରି ଜନ୍ମ କରିଥିଲି; ମୁଁ ତତେ ଏଇଥିପାଇଁ ମୋ ମାଉଁସ ପାଣି ଫଟେଇ ପାଳି ଯାଁବାଳରୁ ସାଁବାଳ କରିଥିଲି ! ପିଲାଟିଦିନରୁ ତୋର ତୋଟି ଚିପିଦେଇ ମାରିନଦେଲି ଯାହା !" କହି ବୁଢ଼ୀ କାନ୍ଦିପକେଇଲେ । ଦି' ଚାପୁଡ଼ା ଖାଇ ଶ୍ୟାମବାବୁ—ବୋଧହୁଏ ବର୍ତ୍ତମାନ ଆଉ ବୁଝିବାକୁ ବାକୀ ନଥିବ ଯେ ଏ ମହାପୁରୁଷ ସ୍ୱୟଂ ଶ୍ୟାମବାବୁ—ଉଠି ଠିଆହେଲେ । କହିଲେ, "ସତ କହିଚୁ ମା, କୁଳାଙ୍ଗାର । ସତ କହିଚୁ ମା, ପିଲାଦିନୁ ମୋର ତୋଟି ଚିପି ମାରିଦେଇଥିଲେ ବଡ଼ ପୁଣ୍ୟ ଅର୍ଜନ କରିଥାନ୍ତୁ ।" ଆଉ ୟେ ? ୟେ ବୋଧହୁଏ କୁମୁଦିନୀ । ହାୟ ହାୟ, ୟେ କ'ଣ ହେଲା ! ୟେ କ'ଣ ମୁଁ କଲି । ମୋ ଖୋକା ? କହ କୁମ, ମୋ ଖୋକା କାହିଁ ?"

ବୁଢ଼ୀ ଏତେବେଳକୁ ବୋହୂର ବନ୍ଧନ ଖୋଲୁଥିଲେ; କହିଲେ ଖତେଇ ହୋଇ, "ମୋ ଖୋକା, ମୋ ଖୋକା ! ମୋ ଖୋକା କାଇଁ ! ତୋଭଳି ଅଧମର ପୁତ୍ର ମୁହଁ ଦେଖିବା ଭଗବାନଙ୍କ ସଂସାରରେ ବଡ଼ ରକମ ଅବିଚାର ।"

ଶ୍ୟାମ : ଖୋକା କାଇଁ, ଖୋକା ମୋର କାଇଁ ! ନା, ନା, ମୋର ଖୋକାକୁ ଆଣିଦବାକୁ ପଡ଼ିବ ତୁମକୁ । ମୁଁ ସମସ୍ତଙ୍କୁ ଛାଡ଼ିଦେଇ ପାରେ; କିନ୍ତୁ ମୋର ଖୋକା ମୋର । ମୁଁ ତାକୁ ଛାଡ଼ିବି କିମିତିକା ? ନା, ନା, ତାକୁ ମୋଠାରୁ ଛଡ଼ାଇ ନିଅନାହିଁ, ନିଅନାହିଁ । ଏଁ, ଏଁ; ୟେ କ'ଣ କରୁଛ କୁମ ! ମୁଁ ତୁମକୁ ଏତେ କଷ୍ଟ ଏତେ ନିର୍ଯ୍ୟାତନା ଭୋଗାଇଲି, ତଥାପି ତୁମେ ମୋର ଗୋଡ଼ଧରି ପଡ଼ିଯାଉଚ । ତୁମେ ମତେ ଗାଳିଦେବ ନାହିଁ । ଏଇ ନିଅ, ଏଇ ଚାବୁକ, ମାର ମତେ, ମାର କଷିକରି, ମାରିବ ନାହିଁ ? ତୁମେ ମତେ ଘୃଣା କରିବ ନାହିଁ ?" କୁମୁଦିନୀ ଦେବୀ ତାଙ୍କର ଗୋଡ଼ ଧରି ପଡ଼ିଗଲେ । ମୁଣ୍ଡ ଟେକି କହିଲେ, "ସ୍ୱାମୀ, ଦେବତା ମୋର ।"

"ଦେବତା ? ମୁଁ ! ତେବେ ରାକ୍ଷସ କିଏ ? ଶଇତାନ କିଏ ? ପାଷଣ୍ଡ କିଏ ? ନା, ଦେବି, ମୁଁ ଦେବତା ହେବି । ମୁଁ ପ୍ରକୃତରେ ଦେବତା ବୋଲି ଗର୍ବ କରିବାର ସୁବିଧା ନିଶ୍ଚୟ ତୁମକୁ ଦେବି; କିନ୍ତୁ ତା' ଆଗରୁ ଏ ଅପମାନ, ଏ ଯନ୍ତ୍ରଣାର ପ୍ରତିଶୋଧ ନବାକୁ ହବ ।" ଏହା କହି ଶ୍ୟାମବାବୁ ଦୁଆରମୁହଁକୁ ଫଡ଼କରି ଉଠିଗଲେ । ଡାକିଲେ, "ଆସ ହେ ବାବୁ !" ଯେ ଦୁଇଜଣ କୁମୁଦିନୀ ଓ ତାଙ୍କ ଶାଶୁଙ୍କୁ ଧରିଆଣିଥିଲେ ସେମାନେ ଆସି ପହଞ୍ଚିଲେ । ଶ୍ୟାମବାବୁ ବର୍ତ୍ତମାନ ବଡ଼ ଧୀର ସ୍ଥିର । ପଚାରିଲେ, "ଏଇମାନଙ୍କୁ ଆଣିବାକୁ ତୁମକୁ କୁହାଯାଇଥିଲା ?"

ଲୋକ : ହଁ ଗୋ ହଁ, ପ୍ରମଥ କହିଥିଲା, ସେଇ ଗାଁଟାର ଏକମାତ୍ର ପକ୍କା ଘରେ ଯେ ଦି'ଜଣ ମାଇକିନିଆ ଥିବେ, ତାଙ୍କୁ ନେଇଆସିବ ବୋଲି । ସେଇ ଗାଁର ସେଇ ଏକମାତ୍ର ପକ୍କା ଘରୁ ଆମେ ୟାଙ୍କୁ ଆଣିଚୁ ତୁମ କଥା ମୁତାବକ । ଏଥର ଆମ ପାଉଣା ଦିଅ ତ,

ଆମେ ଯାଉଁ । ତୁମ କଥା ତୁମେ କର । କହିବ ତ ତୁମ ପରେ ଆମେ ବି ଟିକିଏ ଚାଖିନବାକୁ... ସେ ଏତିକି କହିଚି, ଶ୍ୟାମବାବୁଙ୍କ ହାତର ଚାବୁକଟା ସଟାଂ କରି ତା'ର ମୁହଁ ଉପରେ କଙ୍କଡ଼ା ବିଛା ଲାଙ୍ଗୁଡ଼ ବୁଲେଇଦେଲା । ଲୋକଟା ଥରେ 'ବାପ୍‌ରେ' ବୋଲି ଡାକି ଶ୍ୟାମବାବୁଙ୍କୁ ଆକ୍ରମଣ କଲା । ତା'ର ସାଙ୍ଗ ମଧ୍ୟ ସେଥିରେ ଯୋଗଦେଲା । ଶ୍ୟାମବାବୁ ଅକାତରରେ ସେମାନଙ୍କ ସାଙ୍ଗରେ ଲଢ଼େଇ କରିବାକୁ ଲାଗିଲେ । ସେ ଗୋଟିଏ ଲୋକର ଠେଙ୍ଗା ପାହାର ରୋକିବାକୁ ଗଲାବେଳେ ଅନ୍ୟ ଲୋକଟା ପଛଆଡୁ ତାଙ୍କ ମୁଣ୍ଡକୁ ପାହାର ବସାଇବାକୁ ଯାଉଥିଲା । କୁମୁଦିନୀ ତାଙ୍କ ମଝିରେ ଠିଆହୋଇ ସେ ପାହାରଟା ନିଜ ମୁଣ୍ଡରେ ଅକାତରରେ ଧରିନେଲେ ଓ ସେଇଠାରେ ପଡ଼ିଗଲେ । ବୁଢ଼ୀ ବୋହୂର ଏ ଅବସ୍ଥା ଦେଖି ଓ ପୁଅର ଏ ସଙ୍କଟ ଅନୁଭବ କରି 'ମାରି ପକାଇଲା, ମାରି ପକାଇଲା' ବୋଲି ରଡ଼ି କରି ଘରୁ ଦୌଡ଼ିଆସିଲେ । ଦେଖିଲେ ଗୋଟିଏ ମଟର ଆଲୁଅ । ଦୌଡ଼ି ରାସ୍ତା ଉପରକୁ ଗଲେ । ମଟରଟାର ଆଗରେ ଠିଆହୋଇ ପାଟିକଲେ । ମଟର ଅଟକିଲା । ଏ ସେଇ ମଟର ଯେ ଧୋଇବାବୁଙ୍କର ଲାସ୍ ଉଠାଇ ନେଉଥିଲା । ସେଇ ଭଦ୍ରଲୋକ ବାହାରି ଆସି ପଚାରିଲେ, "ଖବର କ'ଣ ?" ବୁଢ଼ୀ ଯଥାସମ୍ଭବ ମୋଟାମୋଟି କଥା ଖନେଇ ଖନେଇ କହିଗଲେ । "ତୁମ ପୁଅ-ବୋହୂଙ୍କୁ ମାରିପକାଉଚନ୍ତି ? ଆଚ୍ଛା" କହି ସେ ଭଦ୍ରଲୋକ ମଟର ଭିତରେ ଯେ ଯୁବତୀ ବସିଥିଲେ ତାଙ୍କୁ କହି ବୁଢ଼ୀଙ୍କର ପଛେ ପଛେ ଗଲେ । ସେ ଘର ପାଖରେ ହେଲେ, ସେମାନେ ଦେଖିଲେ ଶ୍ୟାମବାବୁ ରକ୍ତ ସୁତୁବୁତୁ ହୋଇଯାଇଚନ୍ତି । ତାଙ୍କର ମୁଣ୍ଡ ଫାଟିଯାଇଚି । ତଥାପି ସେ କୁମୁଦିନୀଙ୍କ ଦିହକୁ ତାଙ୍କ ଦି'ପାହୁଲ ମଝିରେ ରଖି ଯଥାଶକ୍ତି ଯୁଝିଚାଲିଛନ୍ତି । ବେଶି ସମୟ ନୁହେଁ । ରକ୍ତସ୍ରାବ, ମାନସିକ ଅଶାନ୍ତି, ଅନଭ୍ୟସ୍ତ ପରିଶ୍ରମରେ ତାଙ୍କର ଶକ୍ତି ଭାଙ୍ଗିପଡ଼ିବା ଉପରେ । ଏତିକିବେଳେ ମଟରର ଭଦ୍ରଲୋକ ତାଙ୍କ ପକେଟରୁ ଗୋଟାଏ ପିସ୍ତଲ ବାହାର କରି ପାଟିକରି କହିଲେ, "ବାଡ଼ି ଫୋପାଡ଼ି ଦିଅ, ନହେଲେ ଗୁଳି କଲି ।" ସେ ଲୋକ ଦୁଇଟା ବୁଲିପଡ଼ି ଚାହିଁଲେ, ଦୁଆର ମୁହଁରେ ୟେ, ହାତରେ ପିସ୍ତଲ । ପଳାଇବାର ରାସ୍ତା ନାହିଁ । ଆକ୍ରମଣ କରିବାର ଉପାୟ ମଧ୍ୟ ନାହିଁ । ତଥାପି ଗାଲୁମାରି ଦେଖୁଥିଲେ ଓ କହିଲେ, "ଓ ତୁମେ ଯୁଗଳମୂର୍ତ୍ତି ? ଭାରି ତ ତୁମର ବଢ଼ତି ହୋଇ ଚାଲିଲା । କାଇଁ କଲିକତା, କାଇଁ ବାଲେଶ୍ୱର ।" ଭଦ୍ରଲୋକ କହିଲେ, "ଫୋପାଡୁଚ ନା, ଗୁଳି ଚଳେଇବି !" ସେମାନେ ଠେଙ୍ଗା ଫୋପାଡ଼ିଦେଲେ । ଶ୍ୟାମବାବୁ ଏକ ଆକସ୍ମିକ ସାହାଯ୍ୟ ପାଇ ସେଇଠାରେ ପଡ଼ିଗଲେ । ୟେ ଲୋକ କହିଲେ, "ଧର ଏ ଦୁଇଜଣଙ୍କୁ । ସେମାନେ ଜଣେ ଶ୍ୟାମବାବୁଙ୍କୁ ଓ ଜଣେ କୁମୁଦିନୀଙ୍କୁ ଧରି ଉଠାଇଲେ । ଚାଲ ଆଗେ, ଆଗେ, ମୁଁ ଯିମିତି କହୁଚି । ଯେ କିଛି ବଦମାସି ଆରମ୍ଭ କରିବ, ତା' ଉପରକୁ ମୁଁ ନିଶ୍ଚୟ ଗୁଳି ଚଳେଇବି ।" ଏହିପରି ଭାବରେ ମଟର ପାଖରେ ପହଞ୍ଚିଗଲେ । ସେ ଲୋକ କହିଲେ, "ଓଗୋ, ଆଜି ବଡ଼ ଶୁଭଯାତ୍ରା ଦେଖୁଚି । ଏ ଯେପରି ହେଲାଣି ଆମର ଗୋଟାଏ ଆମ୍ବୁଲାନ୍‌ସ ଗାଡ଼ି ନେଇ ଆସିବା ଉଚିତ ଥିଲା । ତୁମେ ଉଠି ଆଗକୁ ଆସ ତ । ତୁମେ, ଡ୍ରାଇଭର ଓ ଏ ବୁଢ଼ୀ ଆଗରେ, ତିନି ଜଖମି, ଦୁଇଗୁଣ୍ଡା ଓ ମୁଁ ପଛରେ । ବାବା, କି ମଧୁଚକ୍ର । ଏହିପରି ଭାବରେ ବସି ଗାଡ଼ି ଛାଡ଼ିଦେଲେ ।

●

# ପଇଁତିରିଶି

ବାଲେଶ୍ୱର ବଡ଼ଡାକ୍ତରଖାନା । ସହରର ଯାବତ ଦୁର୍ଗନ୍ଧ ନର୍ଦ୍ଦମାର ବେଢ଼ା ମଧ୍ୟରେ ଅସୂର୍ଯ୍ୟଂ ପଶ୍ୟା, ଅସୂର୍ଯ୍ୟଂ ସ୍ପର୍ଶ । ଏ ଡାକ୍ତରଖାନା, ଏଠିକି ରୋଗୀ ଆସନ୍ତି ଭଲ ହେବାପାଇଁ । ଡାକ୍ତରମାନେ ଫିନାଇଲ ଆଣି କ୍ଲୋରୋଡାଇନ ଇତ୍ୟାଦି ଦେଇ ଘରଦ୍ୱାର ନର୍ଦ୍ଦମା ନଳା ପରିଷ୍କାର ରଖନ୍ତି ରୋଗ ବିସର୍ପି ନଯିବ ବୋଲି; କିନ୍ତୁ ସ୍ୱରାଜ୍ୟ ମିଉନିସିପାଲିଟିର ଯେତକ ପଚାସଢ଼ା ନଳାପାଣି ସବୁ ଆସି ୟାରି ଦୁଆରମୁହଁରେ ଢେଉ ଖେଳିଯାଏ । ଏଇ ପଚାସଢ଼ାର ଅଣୁ-ପରମାଣୁମାନଙ୍କର ପେଟ ଭରା ମାଛି ଓ ମଶାର ଅଫୁରନ୍ତ ବାହିନୀ ଦଳେ ଦଳେ ଆସି ଡାକ୍ତରଖାନା, ଡାକ୍ତର, ରୋଗୀ ଇତ୍ୟାଦିଙ୍କ ଉପରେ ଆକ୍ରମଣ କରନ୍ତି । ଭଙ୍ଗା, ତୁଟା, ନୂଆ ପୁରୁଣା କୋଠା ଘର, ଚାଳଘର, କୁଡ଼ିଆଘର ଡାକ୍ତରଖାନାର କାନ୍ଧକୁ କାନ୍ଧ ଲଗାଇ ଦେଇ ଦିହକୁ ଦିହ ଘଷି ହୋଇ ଜମାଟ ବାନ୍ଧି ଧାଡ଼ି ମେଲି ଚାରିଆଡ଼େ ଲମ୍ବି ରହିଚନ୍ତି । ରୋଗୀ ବିଛଣାରେ ଶୋଇ ଏ ଘରମାନଙ୍କ ଭିତରୁ ଭାସିଆସୁଥିବା ଫୁଟନ୍ତ ବାଦାମ ତେଲର ଗନ୍ଧ, ଘଷିଜ୍ୱାଳର ଧୂଆଁ, ତବକାର ସୁବାସ ଯେତେବେଳେ ପାଏ, ଶାଶୁ ବୋହୂ, ଘଇତା ମାଇପ, ପଡ଼ିଶା-ଅଡ଼ିଶାର ବେଙ୍ଗରଡ଼ିରେ ଦୋ-ଅକ୍ଷରି ପୁରାଣର ଅଧ୍ୟାୟେ ଦି'ଅଧ୍ୟାୟ ଯେତେବେଳେ ଶୁଣେ, ପଚା ନର୍ଦ୍ଦମାର ଚିର ଅଭ୍ୟସ୍ତ ଶିରଫଟା ଗନ୍ଧସବୁ ଯେତେବେଳେ ତା' ନାକରେ ବାଜେ, ମଶା ଓ ମାଛିଦଳ ଯେତେବେଳେ ଗୁଣୁଗୁଣୁ କରି ତା' କାନରେ କେଉଁ ଅଜଣା ଦେଶର କେଉଁ ଅଜଣା ସନ୍ଦେଶ ତାଳେ ତାଳେ ବାଇଯାଏ, ସେତେବେଳେ ତା'ର ମନେହୁଏ, ତା' ନିଜ ଘରର କଥା । ସେ ଭାବେ ସେ ତା'ର ସେଇ ଜନ୍ମ-ଅଭ୍ୟସ୍ତ ଗୃହ କୁଟୁମ୍ବ ମଧ୍ୟରେ ପଡ଼ିରହିଚି, ଆନନ୍ଦରେ ସେ ଥରିଉଠେ । ଆରାମରେ ସେ ଚେତନା ହରାଇବସେ । ଧନ୍ୟ ସେ କାରିଗର, ଯେ ଏପରି ବାଗରେ ଏପରି ଡାକ୍ତରଖାନା ବନେଇବାର କଳ୍ପନା କରିପାରିଥିଲା । ଆଉ ଧନ୍ୟ ସେଇ ହାକିମମାନେ, ଯେଉଁମାନେ ସେଇ କଳ୍ପନା ଅନୁସାରେ କାମ କରାଇନେବାର ଦୂରଦୃଷ୍ଟି ରଖିପାରିଥିଲେ ।

ଏଇ ଡାକ୍ତରଖାନାର ପଇସାଦିଆ ୱାର୍ଡ ଅର୍ଥାତ୍ ଗୋଟାଏ କୋଠରୀରେ ଦୁଇଟି ଶେଯ ଉପରେ ଶ୍ୟାମ୍‌ବାବୁ ଓ ଧୋଇବାବୁ । ଶ୍ୟାମବାବୁ ଚୁପ୍‌ଚାପ୍ ପଡ଼ିରହିଛନ୍ତି । ବଲବଲ ଚାହୁଁଚନ୍ତି ଓ ବେଳେବେଳେ କ'ଣ ଗୁଡ଼ାଏ ଭଟର ଭଟର ହଉଚନ୍ତି । ଧୋଇବାବୁ ପାଖରେ ତାଙ୍କର ସାଥୀ ପ୍ରଫୁଲ୍ଲ ଓ ତାଙ୍କର ଉଦ୍ଧାରକର୍ତ୍ତା । ଦିନ ଆଲୁଅରେ ତୁମେ ମଧ୍ୟ ଚିହ୍ନିପାରିବ ଯେ ଏ ଉଦ୍ଧାରକର୍ତ୍ତା ଆମର ସେଇ ପୂର୍ବ-ପରିଚିତ ଅବିନାଶ ବାବୁ, ଆଉ ତାଙ୍କ ପାଖରେ ତାଙ୍କର ସହଧର୍ମିଣୀ ଓ ପ୍ରେମିକା ଶ୍ରୀମତୀ ।

ଧୋଇବାବୁ ଶୁଣୁଚନ୍ତି, ଅବିନାଶ ବାବୁ ବକ୍ତା । "ତା'ପରେ ମୁଁ ପ୍ରମଥ କାକାଙ୍କ ଚିଠିରୁ ବୁଝିଲି ଯେ ସେ ବାଲେଶ୍ୱରରେ ଗାଦିମାଡ଼ି ବସିଚନ୍ତି, ସେତେବେଳେ ମୁଁ ଜାଣିଲି ଯେ ତୁମେ ସେହିଠାରେ । ପ୍ରମଥ କାକାଙ୍କର ତୁମ ଉପରେ ଯୁ ପ୍ରେମ ଆଉ ତାଙ୍କର ଏକମାତ୍ର କନ୍ୟାରତ୍ନଙ୍କର ତୁମେ ଯେତେବେଳେ ଧର୍ମ ବିବାହିତ..." ତାଙ୍କ ଗାଲରେ ନୂଆ ପତ୍ର ପରି କୋମଳ ଗୋଟିଏ

ହାତର ସ୍ନେହ ଚାପୁଡ଼ା ବସିଗଲା । ସେ ଶୁଣିଲେ, "ଚୁପ୍‌କର, ବେହିଆମି କରିବାର ଜାଗା ଆଉ ମିଳିଲା ନାହିଁ ।"

ଧୋଇ : ଆହା-ହା, ଆପଣ କାହିଁକି ଏତେ କଷ୍ଟ କଲେ । ଆପଣଙ୍କ ହାତକୁ ଲାଗିଥିବ ବଡ଼ । ମତେ କହିଲେ ନାଇଁ କିଆଁ ? ତା'ପରେ ?

ଅବିନାଶ : ତୁମର ସହାନୁଭୂତି ଲାଗି ଶତ ଧନ୍ୟବାଦ । ତା'ପରେ ଆମ ମନରେ ଯେମିତି ଏ ଭାବ ହୋଇଚି, ଆମେ ସେମିତି ବାହାରିଲୁ । ଦେଖିବାର ଉଦ୍ଦେଶ୍ୟ ଯେ ଧୋଇ ବାନର କି ରକମ ନାଚେ । ଡର ତ ସହିଲା ନାଇଁ ଶ୍ରୀମତୀଙ୍କର । ପ୍ରେମର ଜୁଆର ଘନେଇ ଉଠିଲା । ସେ କହିଲେ, "ଧୋଇ ବାବୁ ଆମର ଏତେ ଉପକାର କରିଚନ୍ତି । ସେ କେଜାଣି କେତେ ବିପଦରେ ଥିବେ । ତୁମେ ଆଉ ରେଳଗାଡ଼ିକୁ ଅପେକ୍ଷା କରନାହିଁ । ଗୋଟାଏ ମଟର କର, ଚାଲ ଶୀଘ୍ର ଯିବା ।" ଆମେ ଦୌଡ଼ିଲୁ । ଏଥରକ ଶ୍ରୀମତୀଙ୍କର ଶ୍ରୀମାନଙ୍କ ସାଙ୍ଗେ ମିଳନ ହୋଇଗଲା, ଆମେ ତା'ହେଲେ ବିଦାୟ ।

ଧୋଇ : ହଁ,.ପିଠି ଗଲୁକରୁଚି ନା । ମୁଁ ଟିକିଏ ଭଲ ହୋଇଯାଏଁ, ତେବେ ଦେଖିନ୍ତି । ତା'ପରେ ଭୁଷପଣ୍ଡିତେ, ତୁମ ଆଡ଼ ଖବର କ'ଣ ?

ପ୍ରଫୁଲ୍ଲ : ମୋ ଖବର ଆଉ କ'ଣ, ମତେ ତ କାଲିଠାରୁ ଏଠି ପକେଇଦେଇ ଯାଇଚୁ । ଖାଇବାକୁ ନା ଅଛି ସୁବିଧା, ରହିବାକୁ ନା ଅଛି ଜାଗା—ଯାହା ମୁଁ ହନ୍ତସନ୍ତ ହେଲିଣି ।

ଧୋଇ : ଆହା-ହା, ମରିଯାଏଁ କିନା ।

ତରଳି ଗଲେଣି ଗୋ ମୋର ଲବଣୀ ପିତୁଳା,
ତୂଳାଗଦାରେ ତ ଲାଗିଗଲା ନିଆଁହୁଳା ।
ତୁ ତ ମଲୁ ନାହିଁ, ଯମ ବାପୁଡ଼ାର ଆଖି ନାହିଁ ।

ପ୍ରଫୁଲ୍ଲ : ଯାଃ, ତୁ ଏପରି କଲେ ମୁଁ ଆଉ କିଛି କହିବି ନାହିଁ ତତେ ।

ଧୋଇ : ଆହା-ହା, ମାନ କଲ, ସଖି ମାନ କଲ । କହୁଛୁନା ଇଲେ ଗଜଦନ୍ତୀଙ୍କର ମାନଭଞ୍ଜନ କରେଇବି । କହି ପ୍ରଫୁଲ୍ଲ ବାବୁଙ୍କ ଜଙ୍ଘକୁ ହାତ ବଢ଼େଇ ପୁଳେ ଚିମୁଟି ଦେଲେ । ପ୍ରଫୁଲ୍ଲ ବାବୁ "ଆରେ ବାପରେ, ନା ନା ମୁଁ କହୁଚି, ଛାଡ଼, ଛାଡ଼" କହି ବ୍ୟସ୍ତ ହୋଇଉଠିଲେ ।

ଧୋଇ : ହୁଁ, ଏଥରକ ଶ୍ରୀମୁଖ ଦନ୍ତପନ୍ତି ବ୍ୟାଦାନ କରନ୍ତୁ ।

ପ୍ରଫୁଲ୍ଲ : ଯାହାହଉ ମୋର ପରମ ସୌଭାଗ୍ୟ, ରାସ୍ତାରେ ରାଧାମୋହନ ବାବୁଙ୍କ ସାଙ୍ଗରେ ଦେଖାହେଲା ।

ଧୋଇ : ରାଧାମୋହନ ବାବୁ ? ସେ କିଏ ? ରାଧାମୋହନ ବାବୁ ମୁନ୍‌ସଫ୍ ?

ପ୍ରଫୁଲ୍ଲ : ହଁ, ହଁ ।

ଧୋଇ : ରାଧାମୋହନ ବାବୁଙ୍କର ଏଠିକି ବଦଳି ହେଲା ନା କ'ଣ ? ବୋକା, ଗଧ କାହାଁକା, ଆସି ଦି'ଘଣ୍ଟା ହେଲା ଏଠି ପାଳଚୁଣ୍ଡା ମନ୍ତ୍ରୀଙ୍କ ଭଳି ବସିଚି, ଏଇ କଥାଟା

ଚଟ୍‌କରି କହିପାରିଲୁ ନାହିଁ । ତା'ପରେ ତୁ ତାଙ୍କ ଆଗରେ ସକେଇହେଲୁ—ସେ ବିଚାରା ବୋକା ମଣିଷ, ତୋର ଶଇତାନି ବୁଝି ନପାରି ତତେ ଡାକି ଘରକୁ ନେଲେ, ଆଉ ତୁ ସେଠି ନିର୍ଦ୍ଧମ ଗ୍ରାସ ପକେଇ ତାଙ୍କ ଖଟ ପଲଙ୍କରେ ଘୁଙ୍ଗୁଡ଼ି ମାରି ତାଙ୍କ ବଂଶଯାକଙ୍କୁ ଅନିଦ୍ରା ରଖିଲୁ, ଏଇ ତ ?

ପ୍ରଫୁଲ୍ଲ : ମୁଁ କ'ଣ ରାତିଯାକ ଶୋଇଚି କି ? ତାଙ୍କ ଘରେ ରାତିଅଧଯାଏ ଲାଗିଚି ନାଟ । ରାଧାମୋହନ ବାବୁଙ୍କ ଝିଅ ସୁଶୀଳାର କିଏ ଜଣେ ସାଙ୍ଗ ଅଛନ୍ତି ଅମର୍ଦା ପାଖରେ, ତାଙ୍କ ନାଁଟା କ'ଣ କି....

ସେତେବେଳକୁ ଧୋଇବାବୁ ଅଧାଉଠା ହେଲେଣି । ପ୍ରଫୁଲ୍ଲ ଥମିଯିବାର ଦେଖି ସେ ତାଙ୍କ ଆଡ଼କୁ କଟମଟ କରି ଚାହିଁଲେ । ଆଖିରେ ଗୋଟାଏ ଅସ୍ୱାଭାବିକ ଉତ୍ତେଜନା । ପ୍ରଫୁଲ୍ଲବାବୁ ତ ତାଙ୍କ ଆଡ଼କୁ ଚାହିଁ ନାହାନ୍ତି, ସେ କିମିତି ଜାଣିବେ ଏକଥା । ହଠାତ୍ ତାଙ୍କ ଚୁଟି ଧରି ଯେତେବେଳେ ଧୋଇବାବୁ ତାଙ୍କ ମୁଣ୍ଡଟା ଟାଣିଆଣିଲେ, ସେତେବେଳେ ସେ ଜିଭ କାମୁଡ଼ି ପକେଇଲେ । ଧୋଇବାବୁ କହିଲେ, "କହ ନାଁଟା ତାଙ୍କର, ଜଲଦି କହ, ନହେଲେ ତୋ ପାଇଁ ମଧ୍ୟ ଏଠି ଗୋଟାଏ ଖଟିଆ ଯୋଗାଡ଼ କରିବାକୁ ହବ ।"

ପ୍ରଫୁଲ୍ଲ : ଆରେ ଛାଡ଼ ବାବା, ମୁଁ ହେଜି କରି ତତେ କହିବି । ଆମ ଦେଶୀ ନାଁ ହୋଇଥାନ୍ତା, ଚଞ୍ଚଳା କି ପାର୍ବତୀ କି ଗୌରୀ କି ଲକ୍ଷ୍ମୀ....

ଧୋଇ : କି ମା ମଙ୍ଗଳା, ରଣଚଣ୍ଡୀ, ଖପରଖାଇ ନାଁ, ତାହେଲେ ମନେ ରହନ୍ତା । ବେକୁବ୍ କାହାଁକା ! ପ୍ରମିଳା ନାଁଟା ହେଲା ଖରାପ, ଆଉ ତୋର ଏଇ ଏଇ ଗୋବରଗୋଟେଇ, ପତରମୁଣ୍ଡୀ ନାଁଗୁଡ଼ାକ ହେଲା ଭଲ ?

ପ୍ରଫୁଲ୍ଲ : ହଁ, ହଁ, ଠିକ୍ ମନେକରେଇ ଦେଲୁ...ପ୍ରମିଳା । ତାଙ୍କ ନାଁଟା ପ୍ରମିଳା । ତାଙ୍କର ଜମିଦାରୀ କ'ଣ ନିଲାମ ହେଇଯାଉଚି ବୋଲି ରାଧାମୋହନ ବାବୁ ତାଙ୍କୁ ଡକେଇ ପଠେଇଥିଲେ । ସେ ଆସି ପ୍ରାୟ ରାତି ଦଶଟା ବେଳେ ପହଞ୍ଚିଲେ ।

ଧୋଇ ଓ ଶ୍ୟାମ ଦୁହେଁଯାକ କହିଉଠିଲେ, "ଏଁ ପ୍ରମିଳା ! ପ୍ରମିଳା ଏଠାରେ ?" କିନ୍ତୁ ତା'ପରେ ଧୋଇବାବୁ ଶୋଇପଡ଼ିଲେ । ତାଙ୍କ ମୁଣ୍ଡର ଘା'ରୁ ବହୁତ ରକ୍ତ ଯାଇଥିଲା, ଘା'ଟା ମଧ୍ୟ ସଦ୍ୟ ବନ୍ଧା ହେଇଚି । ଏ ଉତ୍ତେଜନା ଛଟପଟରେ ଲିଭିଆସିଥିବା ଯନ୍ତ୍ରଣାଟା ବଢ଼ିଉଠିଲା । ସେ ମୁହଁଟା ଆମ୍ବିଳେଇ ଶୋଇପଡ଼ିଲେ । ଏତିକିବେଳେ ଡାକ୍ତର ବାବୁ ମଧ୍ୟ ଆସି ପହଞ୍ଚିଲେ । ଡାକ୍ତରବାବୁ ଟୋକା । ସେ ଆସି ପ୍ରଫୁଲ୍ଲ ଓ ଅବିନାଶ ବାବୁଙ୍କୁ କହିଲେ, "ଆପଣମାନେ ଟିକିଏ ଉଠିଯାଆନ୍ତୁ ତ ।"

ଅବିନାଶ : କାହିଁକି ?

ଡାକ୍ତର : ଡେପୁଟିବାବୁ ଆସିଛନ୍ତି ଏ ରୋଗୀମାନଙ୍କର ଇଜହାର ନେବାଲାଗି ।

ଧୋଇ : ଆମର ଇଜହାର ? ଆମର ଯେ କିଛି ଇଜହାର କରିବାର ଅଛି, କାଇଁ ସେ କଥା ତ ମୁଁ କିଛି ଜାଣେନାହିଁ ।

**ଡାକ୍ତର : ତୁମ ଜାଣିବା ନ ଜାଣିବାରେ କିଛି** ଦରକାର ନାହିଁ । ଆମ ଆଇନ୍‌ରେ ଅଛି **ଯେ କୌଣସି ସଙ୍ଗୀନ ଜଖମି ରୋଗୀ ଆସିଲେ,** ସେ କାଳେ ମରିଯିବ, ଏଇ ଭୟରେ ତା'ର **ଅନ୍ତିମ ଇଜହାର ଲେଖିବା ପାଇଁ** ପୁଲିସକୁ ଖବର ଦେବାକୁ ପଡ଼ିବ । ମୁଁ ପୁଲିସକି ଖବର **ଦେଇଥିଲି । ପୁଲିସ ମେଜେଷ୍ଟର** ନେଇ ଆସିଚି ତୁମର ଅନ୍ତିମ ଇଜହାର ନେବାକୁ ।

**ଧୋଇ : ବା'ରେ ଡାକ୍ତର, କୋଟି କୋଟି** ଦଣ୍ଡବତ ତୁମ ଦାନ୍ତ ଦି'ଧାଡ଼ିକି । ତୁମ **ପାଖକୁ ରୋଗୀ ଆସିଲେ ତୁମେ** ତାହାଲେ ଠିକ୍ **କରିନିଅ** ଯେ, ସେ ମଲା । ତା'ପରେ **ସହରପାଟରେ ଢେଣ୍ଡରା** ବଜାଇଦିଅ ଯେ ସେ ମଲା । ଚିକିତ୍ସା ତ ଯାହା କରୁଥିବ ଏଇଥିରୁ **ଜଣାପଡୁଛି । ତୁମ ଜାତଣାର ପ୍ରଭାବରେ** ଯେବେ ସେ ମରିଯାଏ, ତାହେଲେ କେହି କିଛି **କହିବେ ନାହିଁ । ଯେବେ ତା'ର ଆୟୁଷ** ଓ ବାପମା'ଙ୍କ ନିଃଶ୍ବାସରୁ ବଞ୍ଚିଯାଏ ତାହେଲେ ତୁମେ **ବାହାଦୁରି ନେବ ଯେ, ଆମେ ଯମମୁହଁରୁ** ଟାଣିଆଣିଲୁ । ବାବାରେ କାଳ-ବଇଦ !

**ଡାକ୍ତର : ଦେଖୁଚି ତୁମ ପ୍ରଳାପ ଆରମ୍ଭ ହେଲାଣି ।** ହୁଁ, ନାଡ଼ିର ଗତି ମଧ୍ୟ ମାନ୍ଦା, **ସନ୍ନିପାତିକ ଲକ୍ଷଣ । ଡାକ୍ତରବାବୁ ଲଇଁପଡ଼ି ତାଙ୍କ କପାଳକୁ ହାତ** ନଉଥିଲେ । ଧୋଇବାବୁ **ବାଁ ହାତରେ ତାଙ୍କ ହାତକୁ ଧରି ତୁହେ ହଲାଇଦେଲେ: କହିଲେ,** "ଆଉ ଏଉଟା କି ଲକ୍ଷଣ ? **ଆଃ, ସେଦିନ କଲିକତାରେ ମୋ ଭିଠାକୁ ମାଡ଼ ଖାଇ ଲୁଗା** ମାରା କରୁଥିଲା; ଆଜି ଡାକ୍ତରି-**ଆଲ୍ ଦେଖାଉଚି ।**

**ଡାକ୍ତର : ଯା, ତୁମେ ବଡ଼ ବେହିଆଟି ଧୋଇବାବୁ ।** ତମେ ଏପରି କରୁଚ, ଏପରି **କହୁଚ, ଏବେ ଯେବେ ମୋର କମ୍ପାଉଣ୍ଡର ବି ନର୍ସ-ଫର୍ସ କେହି ଦେଖି**ଦେବେ, ତେବେ କ'ଣ **କହିବେ ତୁମେ ?**

**ଧୋଇ : ହୁଁ, କହିବେ ଆଉ କ'ଣ ? କହିବେ ମାଙ୍କଡ଼-ନାଚ ହଉଚି** । ହେ, ସତରେ **ପୁଲିସ ଆଉ ମାଜିଷ୍ଟ୍ରେଟ ଆସିଚନ୍ତି ?**

**ଡାକ୍ତର : ଆରେ ଧାତ୍, ତୁମ ଦବୁଲିଆମିରେ ମୁଁ ଏକଦମ୍ ଭୁଲିଯାଇ**ଥିଲି । ସତରେ **ସେମାନେ ଆସିଚନ୍ତି, ତଳେ ବସିଚନ୍ତି ।**

**ଧୋଇ : ହୁଁ, ମନ ବୁଝେ । ଆଜ୍ଞା ତାକୁ ମନେଇପାରିବୁ ଯେ** ମୋର ଅନ୍ତିମ ଇଚ୍ଛା **ଅନୁସାରେ ଡକାଯିବ ବାବୁ—**

**ନାମ : ପ୍ରମଥବାବୁ ।**

**ଧୋଇ : ଓ ପ୍ରମଥବାବୁ ଦୁଇଜଣ ନ ଆସିଲେ ମୁଁ** କୌଣସି ଅନ୍ତିମ ଇଜହାର **ଦେଇପାରିବି ନାହିଁ ।**

**ଡାକ୍ତର : ତୁମର ପ୍ରଳାପ ଆସିଚି । ତୁମେ ଅସ୍ବା**ଭାବିକ ଉତ୍ତେଜିତ । ପ୍ରଳାପ ବକାରୁ **ଜଣାଯାଏ ଯେପରି ଯେ ସଦାଶିବ ବାବୁ ଓ ଆଉ କିଏଟି**...ହୁଁ ପ୍ରମଥ ବାବୁଙ୍କୁ ଦେଖିଲେ ତୁମର **ଉତ୍ତେଜନା କମିଯାଇପାରେ ଓ ପ୍ରଳାପ ଭଲ ହୋଇ**ଯାଇପାରେ । ହୁଁ, ସମ୍ଭବ ।

ଧୋଇ : ତେବେ ତୁ ମୋର ସୁନା ଡାକ୍ତରଟା । ଭଗବାନ କରନ୍ତୁ, ରୋଗୀ ତୋ ନାଁ ଶୁଣୁ ଶୁଣୁ ଛାନିଆରେ ଭଲ ହୋଇଯାନ୍ତୁ । ସଦାଶିବ ଓ ପ୍ରମଥ ଦୁହେଁ ଆସିଲେ ଆଗ ସେମାନଙ୍କୁ ମେଡେଷ୍ଟର ଓ ପୁଲିସିଙ୍କି ଦେଖାଇ ନେଇ ଆସିବୁ ।

ଡାକ୍ତର : କଥା ହଉଚି କିଆଁ ? ଏସବୁ କି ପାଲା ? ସେଦିନ ତୋ ବାହାଘର କାଗଜରେ ବାହାରିଗଲା, ତହିଁ ଆରଦିନ ପୁଣି ସେ ନ ହେଲା, ଆଜି ତୋର ଏ ଢଖମ ମାଡ଼, ସଦାଶିବ ବାବୁ କିଏ ? ପ୍ରମଥ କିଏ ? ସେମାନେ ବା ଏଠାରେ କାହିଁକି ? ତୋର ବା ତାଙ୍କ ସାଙ୍ଗରେ କି ଦରକାର, ୟେ ସବୁ ଭିତରେ କି ରହସ୍ୟ ଅଛି କହ ଦେଖି ?

ଧୋଇ : କୋଇଲି ଲୋ କେଶବ ଯେ... ମାରିବୁ ମାରିବୁ...ଅଇଲୁ ଦେଖି...ସଦାଶିବ ବାବୁ... ଆପଣ ? ଏଁ, ଏଁ ଏ ପୁଣି କିଏ ? ପ୍ରମଥ...ଓଃ ବାପ୍‌ରେ, ମା ଗୋ...

"କଲା ତ ବୋଲି ଏଥର । ଆଚ୍ଛା ଆଚ୍ଛା, ଆଉ ଗୁଡ଼ାଏ ଭଣ୍ଡାମି କର ନାହିଁ । ମୁଁ ଯାଉଚି ।" କହି ଡାକ୍ତର ଚାଲିଗଲେ । ଧୋଇବାବୁ ପ୍ରଫୁଲ୍ଲ ଓ ଅବିନାଶଙ୍କୁ କ'ଣ ଫୁସୁରୁ-ଫାସୁରୁ କରି କହିଲେ । ତା'ପରେ ଏ ଦୁହେଁ ମଧ୍ୟ ଚାଲିଗଲେ ।

●

## ଛତିଶି

ସେଦିନ ଦଶଟା ବେଳକୁ ବାଲେଶ୍ୱର ଟାଉନ ହଲ୍‌ରେ ଗୋଟିଏ ସାଧାରଣ ସଭା ଡକାଯାଇଛି । ସଦାଶିବ ବାବୁ ଦେଶର ବର୍ତ୍ତମାନ ରାଜନୈତିକ ପରିସ୍ଥିତି ସମ୍ବନ୍ଧରେ ଗୋଟିଏ ଭାଷଣ ଦେବେ । ଆମ ଦେଶର ନେତାମାନେ ଭାଷଣ ଦେବାରେ ବଡ଼ ଧୂରନ୍ଧର । ଭାଷଣର ଅର୍ଥ ସଜ ମାଛରେ ପୋକ ପକାଇବା, ବିନା ଧୂଆଁରେ ନିଆଁ ବାହାର କରିବା ଓ ଛତିଆ ତୁଣ୍ଡ ଉଝାଳିବା । ତାଙ୍କର ଦବାଟା ସେଇଠାରେ ଶେଷ; ତେଣିକି ଖାଲି ନବା । ଟାଉନ ହଲ୍‌ରେ ମଣିଷ କୋଡ଼ିଏ ଖଣ୍ଡେ ଆସି ରୁଣ୍ଡ ହୋଇଚନ୍ତି । ଜଣେଅଧେ ଆସୁଚନ୍ତି, ଦି' ଚାରିଜଣ ବାରଣ୍ଡାରେ ବୁଲୁଚନ୍ତି, ଟୋକା କେତେଟା ଖଣ୍ଡେ ଖଣ୍ଡେ ଟେନିସ୍ ରାକେଟ୍ ଘେନି ସାମନା ଟେନିସ୍ ପଡ଼ିଆରେ ଖେଳୁଚନ୍ତି । ସ୍ୱୟଂ ସଦାଶିବ ବାବୁ ଘର ଭିତରେ ବସି କେତେ ଜଣ ଧୋବଧାଉଳିଆଙ୍କ ସାଙ୍ଗରେ କି ଯୁକ୍ତି-ତର୍କ ନେଇ ବ୍ୟସ୍ତ । ଅଲଣା ନନ୍ଦେ ଓ ଫଲଣା ତିଆଡ଼ିଏ ବାହାର ବରଗଛ ମୂଳରେ ବସି ବଟୁଆଟିମାନ ଫିଟାଇ ପାନ ସଜାଡୁଛନ୍ତି । ଏଇ ସମୟରେ ପ୍ରଫୁଲ୍ଲବାବୁ ଓ ଅବିନାଶବାବୁ ଆସି ପହଞ୍ଚିଲେ । ପ୍ରଫୁଲ୍ଲବାବୁ ତାଙ୍କୁ ଦେଖି କହିଉଠିଲେ, "ଆରେ ତିଆଡ଼ିଏ, ନନ୍ଦେ, ଆପଣ ? ଆପଣମାନେ ବି ଏଠି !" କହି ତାଙ୍କ ପାଖକୁ ଚାଲ ଚାଲ ହୋଇ ଗଲେ । କଥାବାର୍ତ୍ତା ଲାଗିଲା । ମଝିରେ ପ୍ରଫୁଲ୍ଲବାବୁ କହିଲେ, "ସଭା ହବାକୁ ତ ଡେରି ଅଛି, ଆସନ୍ତୁ ନା ଆମ ବସାରୁ ଟିକିଏ ଚାହାପାଣି କରି ଚାଲିଆସିବା ।" ନର ବାସନା ହେଲେ ରାକ୍ଷସର ପାଟିରୁ ଯେପରି ନାଳ ଗଡ଼େ ଚାହାପାଣି ନା ଶୁଣି ନନ୍ଦଙ୍କ ପାଟିରୁ ସେମିତି ନାଳ ବୋହିବାକୁ ଆରମ୍ଭ କଲା । ତଥାପି କହିଲେ, "ନା ନା, ବାବୁ କାଲେ

ଖୋଜିବେ ବୋଇଲେ, ନ ପାଇଲେ ଖପା ହେବେ ।" ପ୍ରଫୁଲ୍ଲ କିନ୍ତୁ ଛାଡ଼ିବାର ଲୋକ ନୁହେଁ । ତାଙ୍କ କଟାଳରେ ଦୁହେଁ ରାଜି ହୋଇ ଗଲେ । ସମସ୍ତେ ବାହାରି ଚାଲିଲେ; ଯାଇ ପହଞ୍ଚିଲେ ଜେଲଖାନା ପାଖ ସରକାରୀ ଘରଟିରେ । ଏ ଘରଟା ଥିଲା ଆଗେ ପୂର୍ତ୍ତ ବିଭାଗର କଚିରି । ସେ ବିଭାଗ ଉଠିଗଲା ପରେ ବର୍ତ୍ତମାନ ପଡ଼ିରହିଚି ଖାଲି । ଏଇ ଘରର ଗୋଟାଏ ବଖରାରେ ଗୋଟାଏ ଷ୍ଟୋଭ ଜଳୁଚି । ଖଣ୍ଡେ ଅଧେ ମସିଣା ପଡ଼ିଚି । ସମସ୍ତେ ସେ ଘରକୁ ପଶିଗଲାକ୍ଷଣି ଅବିନାଶବାବୁ ଦୁଆରଟା ବନ୍ଦ କରିଦେଲେ । ଝରକାଗୁଡ଼ିକ ଆଗରୁ ବନ୍ଦ ଥିଲା । ଘରଟା ନିବୁଜ ହୋଇଗଲା । ଅବିନାଶବାବୁ ନନ୍ଦ ଓ ତିଆଡ଼ିଙ୍କ ସାଙ୍ଗରେ ଗପ ଯୋଡ଼ିଦେଲେ । ପ୍ରଫୁଲ୍ଲବାବୁ ଷ୍ଟୋଭରେ ଦି' ଚାରିଟା ହାୱା ଦେଇ ଷ୍ଟୋଭ ପାଖରେ ଗୋଟାଏ ଚିମୁଟା ଥୋଇଦେଇ ଚା'ପାଣି, କଂସା ଇତ୍ୟାଦି ଆଣିବାରେ ଲହର-ପହର ହେଲେ ଏମାନଙ୍କ ପଛବାଟ ଦେଇ । ଏମିତି କରୁଚନ୍ତି, ହଠାତ୍ ପରେ ପଛଆଡୁ ଖଣ୍ଡେ ଦଉଡ଼ିରେ ନନ୍ଦଙ୍କୁ ଗୁଡ଼ାଇ ଧରିଲେ ଅବିନାଶବାବୁ; ସାଙ୍ଗେ ସାଙ୍ଗେ ତାଙ୍କ ଦିହ ଚଦରରେ ତିଆଡ଼ିଙ୍କୁ ମଧ୍ୟ ବାନ୍ଧିଦେଲେ । ନନ୍ଦେ ଓ ତିଆଡ଼ିଏ ଏପରି ହବାର ଦେଖି ଆବା-କାବା ହୋଇଗଲେ । ତାଙ୍କ ତୁଣ୍ଡରୁ କଥା ବାହାରିଲା ନାହିଁ । ଅବିନାଶବାବୁ ଓ ପ୍ରଫୁଲ୍ଲବାବୁ ଏଇ ଅବସରରେ ତାଙ୍କ ତୁଣ୍ଡରେ ଗୋଟାଏ ଗୋଟାଏ ତୁଣ୍ଡି ବାନ୍ଧିଦେଲେ, ତା'ପରେ ଅବିନାଶବାବୁ କହିଲେ, "ଦେଖନ୍ତୁ ଏ ଘର ପାଖରେ ଆଖରେ ଘରଦ୍ୱାର କିଛି ନାହିଁ । ଏ ଘରଟା ବି ଖାଲି ଘର । ଏ ଷ୍ଟୋଭଟା ଜଳୁଚି । ଷ୍ଟୋଭର ଏଇ ଯେ ଲୁହା ଚକ୍‌ତିଟା ଦେଖୁଚ ନା, କିମିତି ପାଚିକରି ଲାଲ୍ ଟହଟହ ହୋଇଚି । ଆମ କହିବା କଥା ଯେବେ ନକର, ତା'ହେଲେ ଏଇ ଚୁମୁଟାରେ ସେଇ ଲୁହା ଚକତିକି ବାହାର କରି ତୁମ ଦିହରେ ପଟା ପଟା କରି ଚିଆଁ ଦିଆଯିବ । ବୁଝିଲ ତ ? ଏତେବେଳକୁ ନନ୍ଦ ଓ ତିଆଡ଼ିଙ୍କର ଚେତନା ପଶିଲାଣି । ଚେତନା ପଶିବା ସଙ୍ଗେ ସଙ୍ଗେ ପେଟ ଭିତରୁ ପାଣି ଆଖିକୁ ବାହାରିଆସିଲାଣି । ଅବିନାଶବାବୁ କହିଚାଲିଲେ—

"ସଦାଶିବ ଯେପରି ଯେପରି ଭାବରେ ଧୋଇଙ୍କୁ ମାରିବାକୁ ଉପାୟ କରିଥିଲେ ଓ ତାଙ୍କ ସମ୍ପତ୍ତି ନବା ପାଇଁ ଯେ ସେ ସବୁ ଫନ୍ଦି କରିଥିଲେ, ସେ ସବୁ ଆଦ୍ୟପ୍ରାନ୍ତ ତୁମକୁ ଲେଖି ଦବାକୁ ପଡ଼ିବ । ଏତିକି ମାତ୍ର କାମ । ଏଇତକ କରିଦେଲେ ତୁମେ ଖଲାସ, ଆମେ ବି ଖଲାସ । ଯେବେ ନ କର ତା'ହେଲେ ଆମର ଦୋଷ ନାହିଁ; ତୁମେ ବୁଝିବ, ଆଉ ନିଆଁ ଚକତି ବୁଝିବ । କ'ଣ ରାଜି ନା ନାହିଁ ? ଯେବେ ରାଜି ଅଛ ତୁନି ହେଇ ରହ । ରାଜି ନ ହେଲେ ମୁଣ୍ଡ ହଲାଅ ।" ସେମାନେ ତୁନି ହୋଇ ରହିଲେ । ପ୍ରଫୁଲ୍ଲବାବୁ କାଗଜ କଲମ ନେଇ ନନ୍ଦଙ୍କ ଆଗରେ ରଖିଲେ । ଅବିନାଶବାବୁ କହିଲେ, "ଲେଖୁଚ ନା ମୋ କଥା ମୁଁ କରିବି ।" ଏମାନେ ତଥାପି ତୁନି ହୋଇ ରହିଲେ । ଶେଷରେ ଅବିନାଶବାବୁ ଉଠିଯାଇ ନନ୍ଦ ଓ ତିଆଡ଼ିଙ୍କ ଦିହରୁ ମୁଣ୍ଡରୁ ଲୁଗା କାଢ଼ିପକାଇଲେ ଓ ସେଇ ଚୁମୁଟାଟାରେ ଷ୍ଟୋଭର ଚକତିଟାକୁ ଉଠାଇ ଆଣିଲେ । ସେତେବେଳକୁ ନନ୍ଦେ ଓ ତିଆଡ଼ିଏ ଝାଳରେ ବୁଡ଼ଗଲେଣି । ତାଙ୍କ କପାଳରୁ ଝରଝର ହୋଇ ଝାଳ ବହି ତାଙ୍କ ଆଖି ଭିତରେ ପଶୁଚି ଓ ଆଖିରୁ ଝରଝର ହୋଇ ଲୁହ ବହି ତୁଣ୍ଡିଟାକୁ ତିନ୍ତାଇ ଦେଉଚି । ଦୁହେଁଯାକ ଭିଡ଼ାଭିଡ଼ି ହୋଇ କାଗଜ କଲମ ଧରିବାକୁ ଗଲେ । ପ୍ରଫୁଲ୍ଲବାବୁ ଆଉ ଗୋଟାଏ ଦୁଆତ ଓ କଲମ ଆଣିଦେଲେ । ଦୁହେଁଯାକ ଲେଖିଚାଲିଲେ । ହାତ ଥରଥର

ହୋଇ କମ୍ପୁଚି । ଆଖିରୁ ନଈସୁଅ ବୋହିଯାଉଚି । ଛାତି ଧଡ଼ଧଡ଼ ହୋଇପଡୁଚି । ତଥାପି ସେମାନେ ଲେଖିଚାଲିଚନ୍ତି । ପାଞ୍ଚ ମିନିଟ୍ ମଧ୍ୟରେ ଲେଖାସରିଗଲା । ପ୍ରଫୁଲ୍ଲବାବୁ ଦୁଇଟାଯାକ ପଢ଼ିଲେ, ଠିକ୍ ମିଳିବାର ଦେଖି ଅବିନାଶବାବୁଙ୍କୁ କହିଲେ, "ଠିକ୍ ହେଇଚି ।" ଅବିନାଶବାବୁ ଏମାନଙ୍କୁ ଦସ୍ତଖତ କରିବାକୁ କହିଲେ । ଏମାନେ ଦସ୍ତଖତ କଲେ । ଅବିନାଶବାବୁ ପଚାରିଲେ, "କିହେ ପ୍ରଫୁଲ୍ଲ ଦା, ଦସ୍ତଖତ ଠିକ୍ ଅଛି ନା ?" ପ୍ରଫୁଲ୍ଲବାବୁ ମୁଣ୍ଡ ଟୁଙ୍ଗାରି ହଁ କଲେ । ସେ ମଧ୍ୟ ସେତେବେଳକୁ ଝାଳରେ ବୁଡିଗଲେଣି । ଶୁଖିଲା ଓଠ ଦି'ଟା ଜିଭରେ ଚାଟି ପକାଉଥାନ୍ତି । ଅବିନାଶବାବୁ କାଗଜ ଦି'ଖଣ୍ଡ ପକେଟରେ ପୂରେଇଲେ । ଷ୍ଟୋଭଟି ଲିଭେଇଲେ । ଘର ଭିତରେ ଯାହା କିଛି ଜିନିଷପତ୍ର ଥିଲା, ମାଏ ମସିଣା ପର୍ଯ୍ୟନ୍ତ ଗୋଟିଆ-ଗୋଟି କରି ବାନ୍ଧିଲେ । ଶେଷରେ ତିଆଡ଼ି ଓ ନନ୍ଦଙ୍କ ହାତରୁ ଦଉଡ଼ିଟାମାନ ଫିଟାଇଦେଇ କହିଲେ, "ଏ ଥରକ ତୁମେ ଖୋଲା ଖୋଲି ହୋଇ ଯିବ । ଆମେ ଚାଲିଲୁଁ । ଫେରେ କାହା ଆଗରେ ଏ ସବୁ କଥା କହିବ ତ, ତୁମର ଆଖି ଦୁଇଟାମାନ ଫୁଟାଇଦେବି । ଜିଭଟାକୁ ଗଡ଼େ ଗଡ଼େ କାଟିପକାଇବି । ଆଉ ଦି' ଗାଲରେ ଦି'ଟା ଲେଖାଏଁ ଚିଆଁ ଲଗାଇଦେବି, ଯାହା ମଲାଯାଏ ଝଟକୁଥିବ । ବୁଝିଲ ?" ତା'ପରେ ସବୁ ଜିନିଷପତ୍ର ଧରି ଅବିନାଶ ଓ ପ୍ରଫୁଲ୍ଲ ଚାଲିଗଲେ । ମସିଣାଖଣ୍ଡକ ବାହାରପଟ ଘର ଦୁଆରମୁହଁରେ ଥୋଇଦେଇ ସିଧେ ଡାକ୍ତରଖାନା ଆଡ଼କୁ ବିଦାୟ ହେଲେ ।

●

## ସଇଁତିରିଶି

ଡାକ୍ତରଖାନାର ସେଇ ଘରଟା, ଯେଉଁଠାରେ ଧୋଇ ଓ ଶ୍ୟାମ ପଡ଼ିଚନ୍ତି । ସେଇ ଦିନ ଉପରବେଳା, ଡାକ୍ତର ଆସି ଖବର ଦେଲେ ଯେ ସଦାଶିବ ବାବୁ ଆସି ଯାଇଚନ୍ତି ଓ ମେଜେଷ୍ଟର ବାବୁଙ୍କୁ ମଧ୍ୟ ଖବର ଦିଆହୋଇଚି । ସଦାଶିବ ଓ ପ୍ରମଥବାବୁଙ୍କୁ ଘର ମଧ୍ୟକୁ ଅଣାଗଲା । ସେତେବେଳକୁ ଶ୍ୟାମ ଆଖି ବୁଜି ପଡ଼ି ଗଁ-ଗଁ ହଉଚନ୍ତି । ଆଉ ଧୋଇ ଆଖି ଦୁଇଟା ଉଦ୍‌ଭ୍ରାନ୍ତ, ମୁହଁରୁ ଫେଣ ବାହାରୁଚି । ସେ ଭଡ଼ର ଭଡ଼ର ହେଉଚନ୍ତି । ବେଳେ ବେଳେ ଶିବବାବୁ ଶିବବାବୁ ବୋଲି ଚିତ୍କାର କରୁଛନ୍ତି । ଶିବବାବୁ ଓ ପ୍ରମଥବାବୁ ଘର ଭିତରକୁ ପଶିଯାଇ ଦିହିଁକି ଟିକିଏ ନିରିଖି କରି ଚାହିଁଦେଲେ, ତା'ପରେ ପରସ୍ପର ଆଡ଼କୁ ଟିକିଏ ମୁରୁକିହସା ଦେଇ ଧୋଇର ବିଛଣା ପାଖକୁ ଯେତେବେଳେ ଚାଲିଆସିଲେ ସେତେବେଳେ ସେମାନଙ୍କର ମୁହଁରେ କେତେ ଦୁଃଖ କେତେ ଯନ୍ତ୍ରଣାର ଚିହ୍ନ । ପ୍ରମଥ ତ ପ୍ରାୟ କାନ୍ଦିପକାଉଥିଲେ । ଡାକ୍ତର ଯାଇ କହିଲେ, "ଧୋଇବାବୁ ଧୋଇବାବୁ, ଶିବବାବୁ ଆସିଚନ୍ତି ।" ଦୁଇ ତିନିଥର ଡାକି କହିବା ପରେ ଧୋଇ କହିଲେ, "ଏଁ, ଏଁ, କିଏ, ଶିବବାବୁ, କାହିଁ, କାହିଁ !" ଶିବବାବୁ ତାଙ୍କ ପାଖକୁ ଯାଇ କହିଲେ, "ଧୋଇ, ମୁଁ ପରା ଆସିଚି ।" ଧୋଇ ମୁଣ୍ଡଟାକୁ ତାଙ୍କ ଆଡ଼କୁ ଗଡ଼େଇ ଚାହିଁଲେ ଓ ତା'ପରେ ଦୀର୍ଘନିଃଶ୍ୱାସ ପକାଇ କହିଲେ, "ତୁମେ ଆସିଚ, ପ୍ରିୟତମେ, ଆସିଚ । ତୁମରି ବାଟ ଚାହିଁ ଯେ ମୁଁ ବସିଥିଲି ଏତେବେଳଯାଏ ପ୍ରିୟତମେ !"

ଶିବ : ଏସବୁ କ'ଣ କହୁଚ ଧୋଇ ? ମୁଁ ପରା ସଦାଶିବ ବାବୁ । ବଡ଼ ଦୁଃଖର କଥା, ତୁମର ଏସବୁ କିପରି ହେଲା ? ଆହା-ହା, ଆମ ଗାଁର, ଆମ ଦେଶର ଗୋଟିଏ ଉଜ୍ଜ୍ୱଳ ରତ୍ନ ଚାଲିଗଲା । ଏ କ୍ଷତି ମୋର ନୁହେଁ, ସମୁଦାୟ ଦେଶର ।

ପ୍ରମଥ : ଆରେ ତୁମେ ଗୁଡ଼ାଏ କ'ଣ କହୁଚ । ମୋର ଗୋଟାଏ ବୋଲି ଝିଅ, କେତେ ଆଶାରେ ଏଇ ସେଇ ଦିନ ଧୋଇବାବୁଙ୍କ ହାତରେ ତାକୁ ସମର୍ପି ଦେଇଥିଲି । ମାସ ଗୋଟାଏ ଯାଉ ନ ଯାଉଣୁ ଶେଷରେ ମୋର ସ୍ନେହର ଝିଅଟିର ବିଧବା ନିରାଭରଣା ରୂପ ମୋତେ ଦେଖିବାକୁ ହେବ । ଓଃ କି କଷ୍ଟ, କି ନିଦାରୁଣ ଦଃଖ, ହାୟ ବିଧାତା ।

ଧୋଇ : ଓ ଆପଣ । ଯାହାହେଉ ଭଲ ହେଇଚି, ଆପଣମାନେ ଆସିଚନ୍ତି । ମୋର ଆଉ ବେଶି ଡେରି ନାହିଁ । ଏଇ ସମୟତକ ଭିତରେ ମୋର ସଂସାର କଥାଗୁଡ଼ାକର ବନ୍ଦୋବସ୍ତ କରିଯିବାକୁ ହବ । ମୋର ଯାହା କିଛି ସମ୍ପତ୍ତି ଅଛି ସବୁଥିରେ ମୁଁ ଶିବବାବୁ ଓ ପ୍ରମଥ ବାବୁଙ୍କୁ ଜଏଣ୍ଟ ଟ୍ରଷ୍ଟି ନିଯୁକ୍ତ କରିଯାଉଚି । ସେମାନେ ଏ ସମ୍ପତ୍ତିର ଲଭ୍ୟ ସେମାନଙ୍କ ଇଚ୍ଛାମତେ ଖର୍ଚ୍ଚ କରିପାରିବେ । ଅବଶ୍ୟ ସତ୍ କାର୍ଯ୍ୟରେ ।

ପ୍ରମଥ : କିନ୍ତୁ ମୋ କନ୍ୟାଟି ପାଇଁ ତ ପୁଣି କିଛି ସଂସ୍ଥାନ ଅଲଗା ହବା ଉଚିତ, ନାହେ କ'ଣ କହୁଚ ?

ଶିବ : ଆରେ ଧାତ୍, ଦେଖୁଚ ଧୋଇବାବୁଙ୍କର ଏପରି ଅବସ୍ଥା; ଏଥିରେ ତୁମର ମନରେ ଦୁଃଖ ଆସୁନାହିଁ ଯେ, ତୁମେ ଓଲଟି ଏଇ ସାମାନ୍ୟ ସମ୍ପତ୍ତି ଲାଗି ଭାଗବଣ୍ଟା କରୁଚ ? ଛି ଛି ।

ପ୍ରମଥ : ତୁମେ ବା କି ହିସାବରେ ଏଇ ସମ୍ପତ୍ତିର ଟ୍ରଷ୍ଟି ହେବ । ଧୋଇବାବୁ ଯାହା ଛାଡ଼ିଯିବେ ତା' ତାଙ୍କର ଉତ୍ତରାଧିକାରୀ ସ୍ତ୍ରୀର । ଏ ସମ୍ପତ୍ତି ଏପରିଭାବରେ ଉଇଲ କରିଦବାର ଅଧିକାର ତାଙ୍କର ନାହିଁ ।

ଶିବ : ଆହା-ହା, ସେ ସବୁ ତ ଆଇନଗତ କଥା; ପରେ ଦେଖାଯିବ । ବର୍ତ୍ତମାନ ଧୋଇବାବୁ ଯାହା କହୁଚନ୍ତି ସେଇଟା ଶୁଣିନିଅ ।

ପ୍ରମଥ : ନା, ଧୋଇବାବୁଙ୍କର ମନ ସ୍ଥିର ନାହିଁ । ତାଙ୍କର କଥାରେ କୌଣସି ମୂଲ୍ୟ ନାହିଁ । ମୋର ସାକ୍ଷୀ ଡାକ୍ତର ସାହେବ ।

ଡାକ୍ତର : ଦେଖନ୍ତୁ ରୋଗୀର ଅବସ୍ଥା ଭଲ ନୁହେଁ । ଆପଣମାନେ ଏଠାରେ ଏପରି ଗୋଳମାଳ କରିବେ ନାହିଁ ।

ଧୋଇ : ମୋର କିନ୍ତୁ ଏସବୁ କରିବା ଆଗରୁ ଗୋଟିଏ ସର୍ତ୍ତ ଅଛି ।

ଶିବ ଓ ପ୍ରମଥ : ସର୍ତ୍ତ ? ସେ ଫେର୍ କ'ଣ ?

ଧୋଇ : ସେ ତ ଆଉ କିଛି ନୁହେଁ । ଏଇ ଗୋଟାଏ ଗପ ମୁଁ ଲେଖିଚି, ଆପଣମାନେ ଏଥିରେ ଖାଲି ଗୋଟାଏ ଗୋଟାଏ ଦସ୍ତଖତ ମାରିଦେଲେ ମୁଁ ଆପଣଙ୍କ ନାମରେ ଟ୍ରଷ୍ଟିନାମା କରିଦେବି । ହାକିମ ବି ଆସିଯାଇଛନ୍ତି ।

ପ୍ରମଥ ଓ ଶିବ : ଏ କି ଖିଆଲ ? ଗୋଟାଏ ଗଫ ତୁମେ ଲେଖିଚ, ଆମେ ସେଥିରେ ଦସ୍ତଖତ କରିବୁ କିଆଁ ?

ଧୋଇ : କାରଣ କିଛି ନାହିଁ ଅବଶ୍ୟ । ଖାଲି ମରିବା ଲୋକର ଖିଆଲ । ମୋର ଏଇ ଶେଷ ଖିଆଲଟି ରଖିବ ନାଇଁ ? ତାହେଲେ ମତେ ଅନ୍ୟ ବ୍ୟବସ୍ଥା କରିବାକୁ ହବ ।

ଶିବ : ଆଚ୍ଛା ଦେଖାଅ ତ ଗଫଟା କ'ଣ ? ଧୋଇବାବୁ ତାଙ୍କ ମୁଣ୍ଡ ତଳୁ ଦୁଇ ତିନି ଫର୍ଦ୍ଦ କାଗଜର ଲେଖା ବାହାର କରିଦେଲେ । ସଦାଶିବ ବାବୁ ତାକୁ ପଢ଼ିଲାଗିଲେ । ପଢ଼ିଲା ଭିତରେ ତାଙ୍କର ମୁହଁରେ ଯେଉଁସବୁ ଭାବ ହେଲା, ତାହା ଚିତ୍ରପଟରେ ନେଇଥିଲେ ଭଲ ଅଭିନୟ ପ୍ରକାଶ କରିଥାନ୍ତା । ପ୍ରମଥ ବାବୁ ମଧ୍ୟ ତାଙ୍କର କାନ୍ଧ ଉପର ଦେଇ ପଢୁଥିଲେ । ଲେଖାଗୁଡ଼ାକ ଇଂରେଜୀରେ ।

ପ୍ରମଥ : ଏ ସବୁ ମିଛ କଥା । ବିଲ୍‌କୁଲ୍ ମିଛ ଜୁଆଚୋରି । ଆମେ ଏଥିରେ ସଇ କରିବୁଁ ? ବାଃ, ବେଶ୍ ତ, ନାହେ କ'ଣ କହୁଚ ?

ଶିବ : ଦେଖ ଧୋଇବାବୁ, ଏ ଥଟ୍ଟା ଟାପରାର କଥା ହୋଇ ନପାରେ । ତୁମେ ଏଥିରେ ଯାହା ସବୁ ଲେଖିଚ ସେ ବଡ଼ ରକମର ମାନହାନୀକର । ମୁଁ କଦାପି ଏସବୁ ସହ୍ୟ କରିବି ନାହିଁ । ମୁଁ ଆଜି କିଲଟର ସାହେବଙ୍କୁ କହିବି, କମିସନରଙ୍କୁ କହିବି, ମୁଁ... ମୁଁ...

ଧୋଇ : ଆହା-ହା, ଆପଣ ରାଗୁଛନ୍ତି କାହିଁକି ? ଦସ୍ତଖତ ନ କରିବେ ତ ନ କରିବେ । କେହି ତ ଆପଣଙ୍କୁ ବାଧ୍ୟ କରୁନାହିଁ । ଆହେ ଡାକ୍ତର, ମେଜେଷ୍ଟର ସାହେବ ଆସିଲେଣି ? ଡାକ ତ, ମୋର ଶେଷ ଉକ୍ତି ଏଇ କାଗଜଗୁଡ଼ିକରେ ତାଙ୍କ ସାମନାରେ ସହି କରିଦେଲେ କାମ ତୁଟିଯିବ । ଆଉ ବେଶୀ ସମୟ ନାହିଁ । ଓଃ, ବଡ଼ ଯନ୍ତ୍ରଣା । ଡାକ୍ତର, ଟିକିଏ ପାଣି ।

ନର୍ସ ତାଙ୍କ ମୁହଁରେ ପାଣି ଦେଲେ । ଡାକ୍ତର ବାହାରି ଯାଇଥିଲେ । ଶିବ ବାବୁ କହିଲେ, "ଏସବୁ ଯାହା ଲେଖିଚ ଧୋଇ, ଏ ବଡ଼ ସଙ୍ଗିନର କଥା । ଭାବ ଦେଖି, ଏହାର ପରିଣାମ କ'ଣ ହେବ ? ଏ ସବୁର କିଛି ପ୍ରମାଣ ତୁମେ ଦେଇ ପାରିବ ?

ପ୍ରଫୁଲ୍ଲ ବାବୁ ଏହି ସମୟରେ ଘର ଭିତରକୁ ପଶିଆସି କହିଲେ, "ୟେଁ, ଆପଣ ପ୍ରମାଣ ଚାହାଁନ୍ତି ? ମାନେ, ଆପଣ ।"

ଶିବ : କିଏ ପ୍ରଫୁଲ୍ଲ ! ତୁମେ ଏଠି କାହିଁକି ? ଆଉ ତୁମେ ୟାର ପ୍ରମାଣ ସମ୍ବନ୍ଧରେ କ'ଣ ଜାଣ ?

ପ୍ରଫୁଲ୍ଲ : ଆଜ୍ଞା, ମୁଁ ନା, ମାନେ...

ଧୋଇ : ପଣ୍ଡିତ !

ପ୍ରଫୁଲ୍ଲ : ହଁ, ହଁ, ଆପଣ ପ୍ରମାଣ ଚାହାନ୍ତି । ଆଚ୍ଛା କହନ୍ତୁ ଦେଖି, ଏ ଦସ୍ତଖତଟା ଆପଣ ଜାଣନ୍ତି କି ନାହିଁ ?

ଶିବ : ଦସ୍ତଖତ ? କି ଦସ୍ତଖତ ? କାଇଁ ?

ପ୍ରଫୁଲ୍ଲ : "ଆରେ, ହଁ ତ, ଓ..." କହି ପକେଟରୁ ଦୁଇଖଣ୍ଡ କାଗଜ ବାହାର କରି ଖଣ୍ଡିଏ ଶିବ ବାବୁଙ୍କ ମୁହଁ ପାଖରେ ଧରିଲେ ।

ଶିବ : ଆରେ କାଗଜଟା ମୋ ହାତକୁ ଦିଅ । ତେବେ ତ ମୁଁ ଦେଖିବି । କାଗଜଟା ତ ଆଉ ମୁଁ ଖାଇଯାଉ ନାହିଁ ।

ପ୍ରଫୁଲ୍ଲ : ଆଜ୍ଞା, ନା, ତା' କି ହୁଏ ? ଏଇ ନିଅନ୍ତୁ ନା ।

ଧୋଇ : ପଣ୍ଡିତ, କାଗଜଟା କ'ଣ ମୋତେ ଆଗ ଦେ ତ । ଡାକ୍ତର, ମୋତେ ଟିକିଏ ମୁଣ୍ଡ ଆଡୁ ଟେକିବାର ବ୍ୟବସ୍ଥା କର ତ ।

ସବୁତକ ହେଲା । ଧୋଇ କାଗଜ ଦୁଇଖଣ୍ଡ ନେଲେ ଓ ଗୋଟାଏ ଦସ୍ତଖତ ଦେଖାଇ ଶିବବାବୁଙ୍କୁ ପଚାରିଲେ, "ଏ ଦସ୍ତଖତଟା ଅଲଣା ନନ୍ଦଙ୍କର । ଚିହ୍ନିପାରୁଚ ?"

ଶିବ : ଏଁ, ହଁ ହୋଇପାରେ ।

ଧୋଇ : ଆଉ ଏଇଟା ?

ଶିବ : ଏସବୁ ଜାଲ ।

ଧୋଇ : ସେ ପରେ ପ୍ରମାଣିତ ହେବ । ଏଥିରେ କ'ଣ ଲେଖାଅଛି ଜାଣନ୍ତି ? ଶୁଣନ୍ତୁ, ମୁଁ ପଢୁଚି—ସଦାଶିବ ବାବୁ ଲଣ୍ଡାକୁ ସମ୍ପତ୍ତି କରାଇଦେବେ ବୋଲି ତା'ଠାରୁ ଦଶହଜାର ଟଙ୍କାର ହାଣ୍ଡନୋଟ ତିଆରି କରାଇନେଲେ ଓ ତା'ପରେ ତାଙ୍କରି ବୁଦ୍ଧି ଅନୁସାରେ ଧୋଇକୁ ଜିଗର କରାଇ କଲିକତା ପଠାଗଲା । ସେ ପ୍ରମଥଙ୍କୁ ଚିଠି ଲେଖିଲେ ଧୋଇଙ୍କୁ ସେଠାରେ ମାରିଦେବା ପାଇଁ ଓ ନିଜେ ଯାଇ ପ୍ରମଥଙ୍କୁ ସେଥିଲାଗି ଟ୧୫୦୦ ମଧ୍ୟ ଦେଲେ... ଆଉ ପଢ଼ିବା ଦରକାର ନାହିଁ ।

ଶିବ : ଏ ସବୁ ମିଛ ! ଏସବୁ ଜାଲ । ମୁଁ ଏହାର ବିଚାର ବିଚ୍‌ ଅଦାଲତରେ କରେଇବି ।

ପ୍ରମଥ : ଏ, ଏ କ'ଣ ? ମୋ ନାଁଟା ଏଥିରେ କ'ଣ ? ମୁଁ ତ ଏହା କିଛି ଜାଣେନାହିଁ ବାବା !

ଧୋଇ : ତାହେଲେ ଡାକ୍ତର, ଆଉ ଡେରି କାହିଁକି ? ଏମାନେ ଯେତେବେଳେ ମୋର ଶେଷ ଇଚ୍ଛା ଟିକକ ରଖିବେ ନାହିଁ, ମେଜେଷ୍ଟରଙ୍କୁ ଡାକିଦିଅ, ମୁଁ ସବୁ କଥା କହିଦେଇଥାଏ । ତା'ପରେ ପୁଲିସ ଯାହା କରିବେ । ଆଉ ରେଜିଷ୍ଟ୍ରାର ବାବୁ ଆସିଚନ୍ତି, ତାଙ୍କୁ ବି ଡାକିଆଣ । ମୁଁ ମୋର ସମସ୍ତ ସମ୍ପତ୍ତି ପୁରୀ କିଲଟରଙ୍କ ହାତରେ ଟ୍ରଷ୍ଟିନାମା କରିଦେବି ଯେ ସେ ଯେପରି ମୋ ଶତ୍ରୁମାନଙ୍କ ବିରୁଦ୍ଧରେ ସବୁକଥା ପ୍ରମାଣ କରି ଯଥାବିଧି ଦଣ୍ଡ ଦେଇପାରନ୍ତି । ଯାଅ !

ଡାକ୍ତର ଚାଲିଯାଉଥିଲେ ।

ପ୍ରମଥ : କିନ୍ତୁ ତୁମେ ଯେ ମୋ ଝିଅକୁ ବିବାହ କରିଚ । ତା'ର ବ୍ୟବସ୍ଥା ତ ତୁମକୁ କରିବାକୁ ପଡ଼ିବ ।

ଏତିକିବେଳେ ଅବିନାଶବାବୁ ଆସି ପହଞ୍ଚିଗଲେ । କହିଲେ, "ନା, ପ୍ରମଥ କାକା, ସେ ବ୍ୟବସ୍ଥା ମୁଁ କରିସାରିଚି । ମୁଁ ତୁମର ଜୁଆଇଁ । ଆଶୀର୍ବାଦ କର ମୋତେ ।" କହି ପ୍ରମଥବାବୁଙ୍କ ଗୋଡ଼ତଳେ ମୁଣ୍ଡିଆଟିଏ ମାଇଲେ । ପ୍ରମଥ ବୋକାଙ୍କ ଭଳି ଠିଆହୋଇ ରହିଲେ । କହିଲେ, "ତୁମେ ମୋର ଜ୍ୱାଇଁ ? କେମିତି ? ସେଦିନ ତ ୟାଙ୍କରି ସାଙ୍ଗରେ ବାହା ହୋଇଥିଲା ।"

ଅବିନାଶ : ନା, ଆଜ୍ଞା ! ସେ ବିବାହଟା ମିଛ । ସେ ପୁରୋହିତ ମିଛ । ସେ ସବୁ ସଲଟନ ମିଛ ।

ପ୍ରମଥ : ତା'ହେଲେ ତୁମେ, ଧୋଇ ଓ ମୋର କନ୍ୟା ବିଚାର କରି ମତେ ଠକେଇଚ ? ବେଶ୍, ମୁଁ ତା'ହେଲେ ତୁମ ନାଁରେ ମକଦ୍ଦମା ଆଣିବି ।

ଅବି : ଖୁବ୍ ଖୁସିରେ । ଆପଣଙ୍କ ଝିଅ ସାବାଳିକା । ସେ ସ୍ୱଇଚ୍ଛାରେ ମୋତେ ବାହା କରିଚନ୍ତି । ତୁମ ହାତରେ ଯାହା ହବ, ତା' କର ।

ଡାକ୍ତର : ତା'ହେଲେ ମୁଁ ଯାଏ ।

ଶିବ : ନା ଡାକ୍ତରବାବୁ, ଯାଅନାହିଁ । ଆପଣ କ'ଣ କହିବାକୁ ଚାହାନ୍ତି ଯେ ଧୋଇ ପ୍ରକୃତିସ୍ଥ ।

ଡାକ୍ତର : ନିଶ୍ଚୟ ।

ଶିବ : ଧୋଇ, ତୁମେ ମୋର ପୁଅ ଭଳି । ତୁମ ବାପା ମୋର ବିଶେଷ ବନ୍ଧୁ ଥିଲେ । ଏ ସବୁ ଗୋଳମାଳ କଲେ କେତେ ଦୁର୍ନାମ ହେବ । ମୁଁ ଓଡ଼ିଶାର ଜଣେ ପ୍ରସିଦ୍ଧ ଲୋକ । ତୁମେ ମଧ୍ୟ ଅଜଣା ନୁହଁ । ଭୁଲିଯାଅ ବାପ, ସବୁକଥା ଭୁଲିଯାଅ । ଏସବୁ ତୁମେ ଯାହା ଭାବୁଛ, ଏସବୁ କିଛି ନୁହେଁ । ତୁମ ମନରେ ଯଦି ମୁଁ ଅଜାଣତରେ ମଧ୍ୟ କଷ୍ଟ ଦେଇଥାଏ, ତା'ହେଲେ ମୋତେ କ୍ଷମା କର । ଆଉ କ'ଣ ?

ଧୋଇ : ଉହୁଁ, ମୁଁ ସବୁ ଭୁଲିଯିବି ଯଦି ତୁମେ ମୋ ସର୍ତ୍ତଗୁଡ଼ିକ ମାନିଯିବ ।

ଶିବ : କ'ଣ, ଏ କାଗଜଟାରେ ଦସ୍ତଖତ କରିବି । କିନ୍ତୁ ତା'ହେଲେ ଯେ ମୁଁ ନିଜେ ନିଜେ ଧରାପଡ଼ିଯିବି । ତୁମେ ଯଦି ଏଉଟା ପୁଲିସରେ ଦେଇଦିଅ ।

ଧୋଇ : ମୁଁ ଜବାବ କରୁଚି ଯେପର୍ଯ୍ୟନ୍ତ ତୁମେ ସୁନାପିଲା ହୋଇ ରହିବ, ସେ ପର୍ଯ୍ୟନ୍ତ ମୁଁ କଦାପି ଏହାକୁ ବ୍ୟବହାର କରିବି ନାହିଁ ତୁମ ବିରୁଦ୍ଧରେ; କିନ୍ତୁ ତୁମେ ଯଦି ମୋ ଉପରେ ପୁଣି ଏପରି ଅତ୍ୟାଚାର ଆରମ୍ଭ କର, ତା'ହେଲେ ମୁଁ ନିଶ୍ଚୟ ଏହାକୁ ବ୍ୟବହାର କରିବି ।

ପ୍ରମଥ : କିନ୍ତୁ ତା'ର ଜାମିନ କ'ଣ ?

ଧୋଇ : ଜାମିନ ମୋର କଥା । ଏ ଜଗତରେ ଏପରି ଲୋକ ବର୍ତ୍ତମାନ ଅଛନ୍ତି ଯେଉଁମାନେ କି ମରିଯିବେ ପଛକେ ନିଜ କଥାର ବାହାର ହେବେ ନାହିଁ ।

ପ୍ରମଥ : ଓଃ ତୁମର କଥା ! ସେଥିରେ ପୁଣି ନିର୍ଭର !

ଧୋଇ : ତୁମ ପାଳି ଆସୁଚି, ବ୍ୟସ୍ତ କିଆଁ ? କ'ଣ କହୁଚ ଶିବ ବାବୁ ?

ପ୍ରମଥ : ମୋର ପାଲା । ମୋର ପାଲା ଗୋଟାଏ କିସ । ଶାଲା ଉଡ଼େ, ଯେ ପୁଣି ମୋର ବୁଝିବେ । ଓଃ, ଢେର୍ ଢେର୍ ଦେଖିଚି ।

ଶିବ : ତୁମେ ପ୍ରମଥ ଟିକିଏ ତୁନି ପଡ଼ ତ । ଆଚ୍ଛା, ମୁଁ ତୁମ ଜବାବରେ ନିର୍ଭର କରି ନ ହେଲା ଦସ୍ତଖତ କରିଦେଲି; କିନ୍ତୁ ମୁଁ କହେଁ ଯେ କାଗଜଟା ଜଉ ମୋହର ହୋଇ ରଖାଯିବ ଜଣେ ତୃତୀୟ ପକ୍ଷ ହାତରେ ।

ଧୋଇ : ତା' ହଉ । ସେଉଟା ରହୁ ଡାକ୍ତରଙ୍କ ଜିମା । କିହେ ଡାକ୍ତର ?

ଡାକ୍ତର : ମୋର କୌଣସି ଆପତ୍ତି ନାହିଁ ।

"ମୋର ବି ନାହିଁ । ଦିଅ ତେବେ ।" କହି ଶିବବାବୁ କାଗଜଟା ନେଇ ଦସ୍ତଖତ କଲେ ।

ଧୋଇ : ଆଉ ଗୋଟିଏ କଥା ! ମୋ ସାଙ୍ଗରେ ଯେ ବାଜି ପକାଇଥିଲ, ତା'ର ପାଞ୍ଚଶ ଟଙ୍କା ମତେ ଦବାକୁ ହବ ।

ଶିବ : କିନ୍ତୁ ତୁମେ ତ ବାଜି ଅନୁସାରେ ଫେରିଯାଇନାହଁ ।

ଧୋଇ : ତୁମେ ସେଥିପାଇଁ ଦାୟୀ । ତୁମକୁ ଦବାକୁ ହେବ ।

ଶିବ : ବାଃ, ମୋଠାରୁ ଦସ୍ତଖତ କରେଇ ନେଇସାରି ଏ ସବୁ ପୁଣି କି ଗୋଳମାଳ ।

ଧୋଇ : ଦସ୍ତଖତଟା ଆପଣ କାଟିଦେଇ ପାରନ୍ତି ।

ଶିବ : ଆଚ୍ଛା, ମୁଁ ଦେବି । ମୁଁ ଏମାନଙ୍କ ଆଗରେ ଜବାବ ଦେଉଛି ଯେ ଦେବି ।

ଧୋଇ : ତା'ପରେ ପ୍ରମଥବାବୁ ! ଆପଣ ଦସ୍ତଖତ କରିବେ ନାଇଁ ?

ପ୍ରମଥ : ମୁଁ ଦସ୍ତଖତ-ଫସ୍ତଖତ କିଛି କରିବି ନାହିଁ । ମୋତେ ତୁମ ଓଡ଼ିଆ-ଭେଡ଼ାଙ୍କ ଭଳି ପାଇଛ ନା କ'ଣ ? କହିଲେ ହେଲା, ଆଉ କ'ଣ ? ହୁଁ, ନାହେ କ'ଣ କହୁଚ ?

ଧୋଇ : ଆପଣ ଦୁଇଜଣ ଗୁଣ୍ଡା ପଠାଇଥିଲେ ପ୍ରମିଳା ଦେବୀଙ୍କି ଟେକିଆଣିବା ପାଇଁ । ସେମାନେ ଭୁଲରେ ଶ୍ୟାମ ବାବୁଙ୍କ ସ୍ତ୍ରୀ ଓ ମା'ଙ୍କୁ ଧରିନେଇ ଗୋଟାଏ ଖାଲି ଘରେ ଅଟକେଇ ରଖିଥିଲେ । ଏ ଅଭିଯୋଗର ପ୍ରମାଣ ମୋ ହାତରେ ଅନେକ ଅଛି ।

ପ୍ରମଥ : ପ୍ରମାଣ କାଇଁ ? ଦେଖାଅ ତ ।

ଧୋଇ : ପ୍ରମାଣ ଦେଖିବାକୁ ହେଲେ ପୋଲିସକୁ ଡାକିବାକୁ ପଡ଼ିବ । ସେଥିରେ ରାଜିଅଛ ତ ?

ପ୍ରମଥ : ଡାକ ଯା, ଡରିଚି ପରା ।

ଧୋଇ : ଡାକ୍ତର ! ତା'ହେଲେ ପୁଲିସକୁ ଡାକ ।

ଡାକ୍ତର ଚାଲିଗଲେ । ଅବିନାଶ ମଧ୍ୟ ତାଙ୍କ ପଛେ ପଛେ ଗଲେ । କିଛି ସମୟ ପରେ ପୁଲିସ ଦାରୋଗା ସାଙ୍ଗରେ ଅବିନାଶବାବୁ ଓ ସେଇ ଗୁଣ୍ଡା ଦୁଇଟା ଆସି ହାଜର ହେଲେ । ଏମାନଙ୍କ ଉପରେ ଆଖି ପଡ଼ିବା ମାତ୍ରେ ପ୍ରମଥ ବାବୁଙ୍କ ମୁହଁ କଳାକାଠ ପଡ଼ିଗଲା ।

ସେ ଭିତରେ ଓଠ ଦି'ଟା ଓଦା କରି ଦେଇ କହିଲେ, "ଧୋଇବାବୁ ! ଏମାନଙ୍କୁ ବିଦା କରିଦିଅନ୍ତୁ । ଆପଣଙ୍କ ସାଙ୍ଗରେ ମୋର କଥା ଅଛି ।"

ଧୋଇବାବୁଙ୍କ ଇସାରା ଅନୁସାରେ ଅବିନାଶବାବୁ ଏମାନଙ୍କୁ ନେଇ ଚାଲିଗଲେ । ପ୍ରମଥ କହିଲେ, "ମୁଁ ଦସ୍ତଖତ କରିଦେଲେ ମୋର ଛୁଟି ତ ?"

ଧୋଇ : ନା, ଶ୍ୟାମ ବାବୁଙ୍କଠାରୁ ଢଳେଶ୍ୱର ଡାକବଙ୍ଗଳାରେ ଯେ ହେଣ୍ଡନୋଟଟା କରାଇ ନେଇଥିଲ ସେଉଟା ଫେରାଇଦବାକୁ ପଡ଼ିବ ।

"ନିଅ ବାବା ନିଅ," କହି ପ୍ରମଥବାବୁ ପକେଟରୁ ଖୋଜି କାଗଜ ଖଣ୍ଡି ବାହାର କରି ଦେଲେ ।

ଧୋଇ : ତା'ପରେ ଶ୍ୟାମବାବୁଙ୍କ ପାଖରୁ ଯେ ୧୫୦୦ ଟଙ୍କା କାଲି ନେଇଚ, ସେତକ ମଧ୍ୟ ଫେରାଇଦେବାକୁ ହେବ ।

ପ୍ରମଥ : ଟଙ୍କା ତ ଖରଚ ହୋଇଯାଇଚି ।

ଧୋଇ : ଆପଣଙ୍କ ପକେଟରେ ଯେ ଟଙ୍କା ମୁଣିଟା ଅଛି, ଦିଅନ୍ତୁ ତ ।

ପ୍ରମଥ : କିନ୍ତୁ ସେଥିରେ ତ ସେ ଟଙ୍କା ନାହିଁ ।

ଧୋଇ : ଦେବେ ନା ନାହିଁ ?

"ଆଚ୍ଛା ନିଅନ୍ତୁ" କହି ପ୍ରମଥବାବୁ ୧୫୦୦ ଟଙ୍କା ମଧ୍ୟ ଫେରାଇଦେଲେ ।

ଧୋଇ : ଡାକ୍ତର ମେଡେଷ୍ଟର ବାବୁଙ୍କୁ କହିଦେବେ ମୋର କିଛି କହିବାର ନାହିଁ । ଆପଣମାନେ ଆସନ୍ତୁ ।



## ଅଠତିରିଶି

ରାଧାମୋହନବାବୁ ମୁନ୍‌ସଫଙ୍କ ଘର । ଗୋଟିଏ ପାଖରେ ବସିଚନ୍ତି ପ୍ରମିଳା ଦେବୀ ଓ ତାଙ୍କ ପାଖରେ ଠିଆ ହୋଇଚନ୍ତି ଧୋଇବାବୁ । ପ୍ରମିଳା କହୁଚନ୍ତି, "କିନ୍ତୁ ସେଥିରେ ମୋର କି ଲାଭ । ଏହି ସମ୍ପତ୍ତିବାଡ଼ି ରହିଗଲେ ମଧ୍ୟ ଭବିଷ୍ୟତକୁ ଯେ ମୁଁ ରଖିପାରିବି ବା ଶ୍ୟାମବାବୁଙ୍କର ଯେ ମନ ପରିବର୍ତ୍ତନ ଏଇଲେ ହେଇଚି, ସେ ଯେ ସବୁଦିନେ ରହିବ, ଯାର କି ଠିକ୍ ଅଛି । ଶେଷରେ ଯେତେବେଳେ ଏ ସମ୍ପତ୍ତି ଯିବାର, ସେତେବେଳେ ଏଇ ଦିନୁ ଗଲେ ଭଲ । ହନ୍ତସନ୍ତ ସବୁ ସରିଯିବ ।

ଧୋଇ : ତୁମେ ଗୋଟିଏ କାହାକୁ ବାହା ହୋଇପଡ଼ିଲେ ତ ତୁମ ସମ୍ପତ୍ତି ରହିଯାନ୍ତା ।

ପ୍ରମିଳା : ବର ତ ଆଉ ଗଛରେ ଫଳିନାହିଁ ଯେ ମୁଁ ତୋଳିଆଣିବି । ମତେ ବାହା ହବାକୁ ତ ଲୋକ ରାଜି ହବା ଦରକାର ।

ଧୋଇ : ମୁଁ ତ ରାଜି ଅଛି ।

ପ୍ରମିଳା : ତୁମେ ? ସାହସ ତ କମ୍ ନୁହେଁ ! ଏଇଥିପାଇଁ ତେବେ ଏଡ଼େ ସୁଆଙ୍ଗ ହେଉଥିଲ; ବାରବୁଲା, ଛତରଖିଆ କୁ'ଠାର ।

ଧୋଇ : ଓଃ, ତୁମେ ତା'ହେଲେ ଟଙ୍କାଗଦା କୋଠା-ବାଡ଼ିକି ବାହା ହବାକୁ ଚାହଁ; ମଣିଷକୁ ନୁହେଁ ?

ପ୍ରମିଳା : ମୁଁ ମଣିଷ ଭଳି ମଣିଷକୁ ବାହା ହବାକୁ ଚାହେଁ । ତୁମ ପରି ଅକର୍ମା ମାଗିଖିଆକୁ ନୁହେଁ ।

ଧୋଇ : ଓଃ, ମୁଁ ଯେବେ ପ୍ରମାଣ କରିଦେଇପାରେଁ ଯେ ମୁଁ ଅକର୍ମା ନୁହେଁ କି ମାଗିଖିଆ ନୁହେଁ, ତା'ହେଲେ ମତେ ବାହା କରିବ ତ ?

ପ୍ରମିଳା : ମୁଁ ସେ କଥା କହିନାହିଁ ।

ଧୋଇ : କହିନାହଁ ମୁଁ ଜାଣେ । ସେଥିପାଇଁ ପଚାରୁଛି । କରିବ କି ନାହିଁ ?

ପ୍ରମିଳା ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, "ଅସମ୍ଭବ କଦାପି ସମ୍ଭବ ହୋଇ ନପାରେ । ତୁମେ ଯାଅ ତ ଏଇଠାରୁ । ତୁଚ୍ଛାଟାରେ ଗୁଡ଼ାଏ ବକ୍‌ବକ୍ କରି ମାର କେନେ ?"

ଧୋଇବାବୁ ଠିଆହୋଇ ଗୋଟିଏ ଖଁକାର ଖାଁ ମାରିଦେଲେ । ତା'ପରେ କହିଲେ, "ମୁଁ ଯାଉଚି ।" ଫେରିପଡ଼ି ଦୁଆରଟା ଖୋଲିଦବା ମାତ୍ରେ ଦୁଆର ଆରପଟୁ ଶଙ୍ଖ ହୁଳହୁଳି ପଡ଼ିଗଲା । ସୁଶୀଳା ଆସି ଧୋଇବାବୁଙ୍କ ଗୋଡ଼ତଳେ ମୁଣ୍ଡିଆ ମାରି କହିଲେ, "ଧୋଇ ଦା ! ତୁମେ କୁଆଡ଼େ ?" ରାଧାଶ୍ୟାମବାବୁ ତାଙ୍କ ପଛରେ ଆସି କହିଲେ, "ଧୋଇ, ତୁମେ କୁଆଡ଼େ ? ଟିକିଏ ଖବର ଦିଅନ୍ତ ନାହିଁ ।"

ପ୍ରମିଳା : ଧୋଇବାବୁ ! ସୁଶୀ, ଏ କ'ଣ ସେଇ ଧୋଇବାବୁ ?

ସୁଶୀ : ଏ ଓଡ଼ିଶାରେ ଏକମାତ୍ର ଧୋଇବାବୁ ଗୋ ! କିଏ ଇମିତି ବାରବୁଲା ମାଗିଖିଆ ହୋଇପାରେ ଅଚଳାଚଳ ସମ୍ପତ୍ତି ଥାଉ ଥାଉ ।

"ବୋକା, ଗଧ !" କହି ପ୍ରମିଳା ଫଟ୍‌କରି ସେଠାରୁ ବାହାରିଗଲେ । ବାହାରି ଗଲାବେଳେ ଧୋଇବାବୁଙ୍କ ଆଡ଼କୁ ଚାହିଁ ଜିଭ କାଢ଼ି ଖତେଇ ହୋଇ ପଳେଇଗଲେ । ଧୋଇବାବୁ ମଧ୍ୟ ଛାଡ଼ି ନ ଥିଲେ ।

ରାଧା : କିନ୍ତୁ ଧୋଇ ! ଶିବବାବୁ ଓ ପ୍ରମଥକୁ ଛାଡ଼ିଦେଇ ଭଲ କଲନାହିଁ ।

ଧୋଇ : ଆଜ୍ଞା, ଶିବବାବୁ ନଥିଲେ ଏ ଜୀବନର ଆଠଅଣା ଚାଲିଯିବ । ତାଙ୍କ ସାଙ୍ଗରେ ଆଉରି କେତେ ଖେଳର ମୁଁ ଆଶା ରଖିଚି ପରା !

॥ ସମାପ୍ତ ॥

# ମଙ୍ଗଳାଚରଣ

ରହସ୍ୟାତ୍ମକ ଗଳ୍ପ ବା ଉପନ୍ୟାସକୁ ସାଧାରଣ ଲୋକେ ଯେତିକି ଆଦର କରନ୍ତି, ଉଞ୍ଚୁ କପାଳିଆ, ବଡ଼ ମୁଣ୍ଡିଆମାନେ ତାକୁ ସେତିକି ନାକ ଟେକନ୍ତି । ସେମାନଙ୍କ ମତରେ ରହସ୍ୟାତ୍ମକ, ହେଉ ହେଉ ଗୁଇନ୍ଦା ଗପ ଗୁଡ଼ାକ ସାହିତ୍ୟ ଜଗତରେ କୁଷ୍ଠ ରୋଗି । ବଡ଼ ବଡ଼ ଗପ - ଶହ ଶହ ପୃଷ୍ଠା ବ୍ୟାପି - ଯୁଥେରେ ପ୍ରକୃତି ବର୍ଣ୍ଣନା, ଗାଁର ପ୍ରକୃତିର ପରାକୃତି, ଚରିତ୍ର ଚିତ୍ରଣ ନାଁରେ ଚରିତ୍ରର ଚରମ ପୂର୍ଣ୍ଣତା କରାଯାଏ । ସେ ରକମ ଗପ ଲେଖିବାରେ ବାହାଦୁରି ବେଶି ବୋଲି ବଡ଼ବଡ଼ ସାହିତ୍ୟିକମାନେ କହି ଆସିଛନ୍ତି । ରହସ୍ୟାତ୍ମମ ଗଳ୍ପ ଖରାପ ହୋଇପାରେ, ଯେପରି ଏଇ ସବୁ ବଡ଼ ବଡ଼ ଗପ ମଧ ଖରାପ ହୋଇପାରେ । ରହସ୍ୟାତ୍ମ ଗଳ୍ପ ମଧ ଉଚ୍ଚ ଦରର ହୋଇପାରେ । ସବୁ ନିର୍ଭର କରେ ଲେଖକ ଉପରେ । ଭଲ କାରିଗର କେବଳ ମାଟି ପିଣ୍ଡୁଳାରେ ମଧ ତାଠାରୁ ଢ଼େର ବେଶି ଖରାପ କାମ କରିପାରେ । କରେ ମଧ । ଚୋରି, ଡକେଇତି, ମଣିଷ ମାରୁ ଭଳି ବିଷୟ ବସ୍ତୁକୁ ଘେନି ମଧ ସୁନ୍ଦର ଓ କାରୁକଳା ମଣ୍ଡିତ ବହି ଲେଖା ଯାଇପାରେ । ଯାଇଚି ମଧ । ଚୋରି, ଡକେଇତି, ମଣିଷମାରୁ, ମନୁଷ୍ୟ ଚରିତ୍ରର କ୍ରମବିକାଶ ମାତ୍ର । ଆଉ ମନୁଷ୍ୟ ଚରିତ୍ରର କ୍ରମବିକାଶ ହିଁ ସାହିତ୍ୟ କଳାର ପ୍ରଧାନ କାର୍ଯ୍ୟ । ଅବଶ୍ୟ ଆଜି କାଲି ବଜାରରେ ଶହ ଶହ ଗୁଇନ୍ଦା ଗପ ବାହାରୁଛି - ଯାହାର ଏକମାତ୍ର ଲକ୍ଷ୍ୟ ଗଣ୍ଡା ଗଣ୍ଡା ଖୁଣି, ଡକନେ ଡକନେ ଅସମ୍ଭବ ପରିସ୍ଥିତି । ଗୁଇନ୍ଦାଙ୍କର ଆମର ଜୀବନ ଓ ଦୈବ ସୁବିଧାର ଅଗଣନ୍ତି ପସରା ବଳରେ ପାଠକଙ୍କୁ ସ୍ତମ୍ଭୀଭୂତ କରି ରଖିବା । ଏ ମଧ ଗୋଟିଏ କଳା । ଅବଶ୍ୟ ନିକୃଷ୍ଟ ଧରଣର କଳା । କିନ୍ତୁ ରହସ୍ୟାତ୍ମ ସାହିତ୍ୟ କେବଳ ଏଇଆ ନୁହେଁ । କେବଳ ବ୍ଲେକ୍ ସିରିଜ ବା ପାଞ୍ଚକଡ଼ି ଦେ ସିରିଜ ବା ମୋହନ ସିରିଜ ରହସ୍ୟାତ୍ମକ ସାହିତ୍ୟର ପରିପୋଷକ ନୁହେଁ । ଆଜି କାଲି ରହସ୍ୟତ୍ମକ ଗପ ଛଡ଼ା ଆଉ ଗୋଟିଏ ପ୍ରକାର ଉପନ୍ୟାସ ଗପ ବାହାରୁଚି ଯାହାରକି ଛାଞ୍ଚ ଗୋଟିଏ ମାତ୍ର । ଦୁଇ ଜଣ ପୁରୁଷ ଗୋଟିଏ ସ୍ତ୍ରୀ ପଛରେ ଅଥବା ଦୁଇ ଜଣ ସ୍ତ୍ରୀ ଗୋଟିଏ ପୁରୁଷ ପଛରେ ଘୁରି ବୁଲିବେ । ଅନୁରାଗ ହବ, ବିରାଗ ହବ, ବିଚ୍ଛେଦ ହବ, ମିଳନ ହବ, ନ ହେଲେ ପାଞ୍ଚକ ଯାକ ମରି ଶୋଇବେ । ଏଇ ମାତ୍ର ଗୋଟିଏ ବିଷୟ ବସ୍ତୁକୁ ଘେନି ଯେ ଯେମିତି ପାରିଲା ସେ ସେମିତି ବାଗେଇ ଲେଖିଗଲା । ନାଁ ହେଲା ଭଲ ଉପନ୍ୟାସ । ଏହି ଯେ ତିନି ଆଙ୍କୁଶିଆ ବିଷୟବସ୍ତୁ, ଯାକୁ ଭଲ କରି ଲେଖାଯାଇ ପାରେ । କିନ୍ତୁ ସାଧାରଣତଃ ଖରାପ କରି ହିଁ ଲେଖାଯାଏ ଓ ଯାଉଚି । ତା ବୋଲି ଏ ବିଷୟ କିନ୍ତୁ ଖରାପ ନୁହେଁ ।

ରହସ୍ୟାତ୍ମକ ଲେଖା ଭାରତୀୟ ସାହିତ୍ୟରେ ଗୋଟାଏ ନୂଆ ଆମଦାନି ପାଶ୍ଚତ୍ୟର ସାହିତ୍ୟରୁ ଏହା ଆମର ଶିକ୍ଷା ବା ଅନୁକରଣ । ପାଶ୍ଚତ୍ୟ ସାହିତ୍ୟରେ ଏ ଜାତୀୟ ଖରାପ ଲେଖା ଅଛି । ଭଲ ଲେଖା ମଧ ଅଛି । ସର୍ କୋନନ୍ ଡଏଲଙ୍କର ସରଲୋକ ହୋମସ୍ ବହିଗୁଡ଼ିକ, ଜି:କେ: ଚେଷ୍ଟରଟନଙ୍କର ଫାଦର ବ୍ରାଉନ ବହିଗୁଡ଼ିକ ଓ ସେମାନଙ୍କ ଆଗରୁ ଏଡଗାର ଆଲେନ ପୋଙ୍କର ବହି ଗୁଡ଼ିକ ବିଶ୍ୱ ସାହିତ୍ୟରେ ଉଚ୍ଚ ସ୍ଥାନ ପାଇ ଆସିଛି । କାରଣ ସେମାନେ ଏଇ ଚୋରି, ଡକେଇତି ମଣିଷମାରୁ ଭଳି ବିଷୟ ବସ୍ତୁକୁ ସାହିତ୍ୟିକ କଳାର ଛାଞ୍ଚରେ ଲେଖିପାରିଛନ୍ତି ।

ଓଡ଼ିଆ ସାହିତ୍ୟରେ ଏପରି ଧରଣର ଲେଖା ବୋଧ ହୁଏ ନାହିଁ । ମୁଁ ତ ପଢ଼ିନି । କେହି କେବେ ପଢ଼ିଚି ବୋଲି ମଧ ମୁଁ ଶୁଣିନି । ଆମର ଯୁ ଯୁବକ ଉତ୍ସାହୀମାନେ ରହସ୍ୟାତ୍ମକ ସାହିତ୍ୟ ଲେଖୁଛନ୍ତି ସେମାନଙ୍କ ଦୃଷ୍ଟି ଉଚ୍ଚକୋଟି ରହସ୍ୟାତ୍ମକ ସାହିତ୍ୟ ଆଡ଼କୁ ଟାଣି ଆଣିବା ପାଇଁ ଓ ପାଠକମାନଙ୍କ ଆଗରେ ହତ୍ୟା ଡକାଇତି ଇତ୍ୟାଦି ସାମାଜିକ ଦୋଷଗୁଡ଼ିକ ମଧରେ ଯେ ମନୁଷ୍ୟ ଚରିତ୍ରର କ୍ରମ ବିକାଶ ଓ ଶେଷ ପରିଣତି ଅଛି । ତାହା ଦେଖାଇବା ଲାଗି ମୁଁ ଏ ଗଳ୍ପଟି ସରଲକ୍ ହୋମ ବା ଫାଦର ବ୍ରାଉନ୍ଙ୍କର ଛାଇ ତଳେ ଆରମ୍ଭ କରିଛି । କେତେ ଦୂର ସଫଳ ହେବି ଜାଣେନି, ସେ ପାଠକମାନଙ୍କ ହାତରେ ।

ଗୋବିନ୍ଦ ତ୍ରିପାଠୀ

# ଏକ

ବ୍ରହ୍ମପୁର ସହରରେ ଗଦାଧର ବାବୁଙ୍କ ଘର । ଘରୋଇ ଗୁଇନ୍ଦା ଭାବରେ ତାଙ୍କର ନାଁ ଇତି ମଧ୍ୟରେ ବହୁତ ବଢ଼ି ଯାଇଅଛି । କୃଷ୍ଣମୂର୍ତ୍ତି ଓ ତାଙ୍କ ସ୍ତ୍ରୀଙ୍କ ହତ୍ୟା ମକଦ୍ଦମାରେ ପ୍ରକୃତ ଆସାମୀକୁ ଧରାଇ ଦେଲା ପରେ ପୁଲିସ ବିଭାଗରେ ମଧ୍ୟ ତାଙ୍କ ପ୍ରତି ନଜର ପଡ଼ିଛି । ଅକଡ଼ିଆ ମକଦ୍ଦମାଟାଏ ପଡ଼ିଲେ ଓ ସେଥିରେ ପୁଲିସି କୂଳ କିନାରା କରି ନ ପାରିଲେ, ପୁଲିସି ସାହେବଙ୍କ ନିର୍ଦ୍ଦେଶ ଅନୁସାରେ ଓ ବେଳେବେଳେ ଇନିସ୍‌ପେକ୍ଟର ବାବୁ ନିଜ କାମଟା ପର ଉପରେ ଦେଇ ତୁଲାଇ ନେବା ଲାଗି ଆପ୍‌ଛାଏଁ ଆସି ତାଙ୍କର ପରାମର୍ଶ ଲୋଡ଼ୁଛନ୍ତି । ଲୋକେ ମଧ୍ୟ ଜାଣିଗଲା ପରେ, ଯୁ ମକଦ୍ଦମାର ଗୋଇ ପୁଲିସ କାଢ଼ି ନପାରେ, ତା'ଲାଗି ତାଙ୍କ ପାଖମୁ ଆସୁଚନ୍ତି । ଅବଶ୍ୟ ଭାରତ ବର୍ଷରେ ବିଶେଷତଃ ଓଡ଼ିଶା ଭଳି ପ୍ରଦେଶରେ ଘରୋଇ ଗୁଇନ୍ଦା ପୁଲିସିର ସାହାଯ୍ୟ ଲୋଡ଼ିବା ଭଳି ଘଟଣା ବହୁତ କମ୍ । ସୁତରାଂ ବ୍ୟବସାୟ ଭାବରେ ଗଦାଧରଙ୍କର ବେଶୀ କିଛି ରୋଜଗାର ନ ହବା ହିଁ ଉଚିତ । ତଥାପି ଯେପରି ଜଣାପଡ଼େ ତାଙ୍କର ରୋଜଗାର କମ ନୁହେଁ । ଅନ୍ତତଃ ବରହମପୁର ସହରରେ ଗୋଟାଏ ଘର ଭଡ଼ା ନେଇ ଚାକର, ପୂଝାରୀ ରଖି ଓ ଗୋଟିଏ ଅଫିସ ଖୋଲି ମଧ୍ୟ ଏ ଦୁର୍ଦ୍ଦିନରେ ସେ ତାଙ୍କର ଖର୍ଚ୍ଚ ତୁଲାଇ ନଉଚନ୍ତି ତ । ଅନେକ ସମୟରେ ଅନେକ ପ୍ରକାର ଗହ୍ରାକି ତାଙ୍କ ପାଖକୁ ଆସିବାର ଦେଖାଯାଉଚି । ବଡ଼ବଡ଼ ମହାଜନ ସେଠଙ୍କ ଠାରୁ ଆରମ୍ଭ କରି, ଗରିବ ମଳି ମୁଣ୍ଡିଆଙ୍କ ପର୍ଯ୍ୟନ୍ତ ସବୁ ଧରଣର ଓ ପ୍ରକାରର ଲୋକ ତାଙ୍କ ଘରକୁ ଯାଆସ କରନ୍ତି । ତାଙ୍କ ଘରର ତଳମହଲାରେ ତାଙ୍କର କଚିରି । ଗୋଟିଏ ଗୁମାସ୍ତ ଗୋଟିଏ ଟାଇପ କଳ ଧରି ଟେବୁଲ କୁରଶି ପକାଇ ବସିଥାଏ । କାଗଜ ପତ୍ରର ସମ୍ଭାର ଦେଖି ମନେହୁଏ ଯେପରି ତାଙ୍କର ଚିଠିପତ୍ରର ସଂଖ୍ୟା ମଧ୍ୟ କମ୍ ନୁହେଁ । ଏଇ ଘରେ ଦୁଇ ତିନିଟା ଆଲମାରି, ଗୋଟାଏ ଟେବୁଲ ଓ ତିନି ଚାରି ଖଣ୍ଡ ଚୌକି । ତା ପାଖ ଘର ତାଙ୍କର ବୈଠକଖାନା । ଏ ଘରେ ଗଦି ଚୌକି ସତରଞ୍ଜି ବିଛା ମେଜିଆ, ଧୋବ ଧୋବ କନା ଘୋଡ଼ିଆ ଶେଯ ସବୁ ଯଥା ରିତିରେ ସଜା ହୋଇଚି । ଗଦାଧର ବାବୁଙ୍କ ପ୍ରକୃତ କର୍ମସ୍ଥାନ କିନ୍ତୁ ଓପର ମହଲାରେ । ଏହି ମହଲାରେ ଗୋଟାଏ ଘରେ ସେ କେତେଗୁଡ଼ିଏ ସରଞ୍ଜାମ ଆଣି ସଜାଇ ରଖିଛନ୍ତି ଯେପରି ଅଣୁବିକ୍ଷଣ ଯନ୍ତ, ଦୂରବିକ୍ଷଣ ଯନ୍ତ୍ର, ଫଟ ନିଆ ଯନ୍ତ୍ର, ଗୋଟିଏ ଟେବୁଲ ଉପରେ ଧାଡ଼ି ବନ୍ଧା କେତେଗୁଡ଼ିଏ ବୋତଲ ଓ ସରୁ କାଚ ନଳୀ, ଗୋଟାଏ ଷ୍ଟୋଭ ଇତ୍ୟାଦି କେତେ ଯେ କଥା । ଘରର ଗୋଟାଏ କୋଣରେ ଗୋଟାଏ ଚୌକି ଓ ଟେବୁଲ । ତା ଉପରେ ଏହି ଅଣୁବିକ୍ଷଣ ଓ ଦୂରବିକ୍ଷଣ ଯନ୍ତ, ଆଉ ଗୋଟିଏ କୋଣରେ କଳା କନାରେ ପରଦା ଦିଆ ଗୋଟିଏ ଛୋଟ ଘର ଓ ଓଷୁଧପାତି ଟେବୁଲ ପାଖରେ ଖଣ୍ଡିଏ ଚୌକି । ତା ପାଖ ଘରଟି

ନିଜର ବସିବା ଘର । ବେଶି କିଛି ଜିନିଷପତ୍ର ନାହିଁ । ତିନିଚାରି ଖଣ୍ଡ ସାଧାରଣ ଚୌକି । ଖଣ୍ଡେ ଟେବୁଲ ଓ କେତେ ଖଣ୍ଡ ଆଲମିରାରେ ଗୁଡ଼ାଏ ବହି ଥାକ ଥାକ ହୋଇ ଥୁଆ ହୋଇଛି । ସେଥି ଭିତରୁ ଅଧିକାଂଶ ଉପନ୍ୟାସ । ଆଉ ବାକି ତକ ଅପରାଧ ବିଜ୍ଞାନ । ଏ ଘରଟା ଦାଣ୍ଡ ଉପରକୁ । ଗଦାଧର ଠିଆ ହୋଇଛନ୍ତି ଦାଣ୍ଡକୁ ଚାହିଁ । ତାଙ୍କ ପାଖରେ ଠିଆ ହୋଇଛନ୍ତି ତାଙ୍କର ସେକ୍ରେଟାରୀ ବା ସାହାଯ୍ୟକାରୀ ନରସିଂହ ବାବୁ । ଏ ବି ଜଣେ ପାଠୁଆ । କିନ୍ତୁ ପାଠସାଠ ପଢ଼ି ମଧ ତାଙ୍କର ଜନ୍ମଗତ ଖୋଇ ଗଲାନି । ସବୁ କଥାରେ ହଇ ହଇ ମାରିବା ତାଙ୍କର ଅଭ୍ୟାସ । କାହାରିକୁ ତେଢ଼ି କହିବାର ସେ କେହି କେବେ ଶୁଣିନି । ତାଙ୍କର ମନଟା ଗୋଟାଏ ସବାଖିଆ କେଳା । ଯାହା ଆସିଲା ତାହା ଭିତରକୁ ସେ ବି ସହି । ସବୁ ଜିନିଷ ଯେପରି ତାଙ୍କ ଆଖି ଆଗରେ ନୂଆ । ବିଶେଷତଃ ଗଦାଧରଙ୍କ । ଗଦାଧରଙ୍କ ଛିଙ୍କିବା ଠାରୁ ଲାଟସାହେବଙ୍କୁ ଭେଟିବା ପର୍ଯ୍ୟନ୍ତ ଯେପରି ସବୁ ଗୋଟା ଗୋଟା ମସ୍ତବଡ଼ ଘଟଣା, ଯାହା କେବେ ହେଇନି ବା ହେବନି । କି ଉପାୟରେ ଗଦାଧର ଯେ ଏପରି ଗୋଟିଏ ଅତି –କୁଗୁର ଯୋଗାଡ଼ କରି ବସିଛନ୍ତି, ସେ ଗୋଟିଏ ବଡ଼ କଥା ; ଆଉ ଦିନେ କହିବି ।

ଗଦାଧର ବାହାରକୁ ଚାହିଁ ଠିଆ ହେଇଥିଲେ । ବ୍ରହ୍ମପୁର ମଟର ଆଡ୍ଡା ପାଖରେ ତାଙ୍କ ଘର । ଏ ପଟୁ ସେ ପଟୁ ପଁ ପଁ ଘଁ ଘାଁ ହେଇ ଘରୋଇ ମଟର, ଭଡ଼ା ମଟର, ଝଟକା, ଗୋରୁ ଗାଡ଼ି କେତେ ଯେ ଆସୁଚନ୍ତି ଯାଉଛନ୍ତି । ବ୍ରହ୍ମପୁର ସହରର ଏ ଯାଗା ସବୁଠୁ ବଡ଼ ଗହଳି । ଗହଳିକୁ ଚାହିଁ ସରକାର ଘର ରାସ୍ତାଟାକୁ ଚୌଡ଼ା କରିଚନ୍ତି । ତଥାପି ଗହଳି ଦିନକୁ ଦିନ ବଢ଼ି ଚାଲିଚି । ହଠାତ୍ ଗଦାଧର ବୁଲିପଡ଼ି କହିଲେ, "କାମ ନାଇଁ, କାମ ନାଇଁ ବୋଲି ମରି ଯାଉଥିଲ, ନିଅ ଏବେ କାମ ଆସିଗଲା ।"

ସତେ ଅବା କେଡ଼େ ବଡ଼ ମହାସତ୍ୟ ଗୋଟାଏ ନୂଆ କରି କହି ପକାଇଲେ – ନରସିଂହଙ୍କର ପାଟି ମେଲା ହୋଇଗଲା । ଆଖି ଉପରକୁ ଉଠିଗଲା । ସେ କହିଲେ, "ଆଁ ! କାମ ! କାଇଁ କାମ !"

ଗଦାଧର ତାଙ୍କ ବେକଟା ଧରି ଦାଣ୍ଡ ଆଡ଼କୁ ଦେଖାଇ କହିଲେ, "ଏଇଯେ କାମ ସଦେହରେ ଆସୁଚନ୍ତି, ଦେଖୁନ, ଏଇ, ଏଇଯେ ଭଦ୍ରଲୋକ, ହାଁ ସେଇ, ଏଥର କହତ ଶ୍ରୀମାନ ନରସିଂହ ଚରଣ ମହାପାତ୍ର ବାବୁ, କଣ ଦେଖୁଚ ତାଙ୍କ ଠି ?"

ନର – ଦେଖୁଚି ? ଦେଖୁଚି ଆଉ କଣ, ମଣିଷଟାଏ, ନା ନା, ବାବୁ ଜଣେ, ବୟସ ୩୦ ଖଣ୍ଡେ ହବ, ଗୋରା, ପାତଳା, ଲୁଗା ପିନ୍ଧିଚନ୍ତି, କମିଜ ଖଣ୍ଡେ, ଗୋଡ଼ରେ ହଲେ ଅଧାଯୋତା । ଆଉ କଣ ?

ଗଦା – ତାଙ୍କ ଆକାର ପ୍ରକାର ଲୁଗାପଟାରୁ ତୁମେ ବୁଝିପାରୁଚ, ସେ କୁଆଡୁ ଆସିଚନ୍ତି, କାହିଁକି ଆସିଚନ୍ତି, ସେ କିଏ, ତାଙ୍କର କି ବ୍ୟବସାୟ, ରହିଥ, ରହିଥ, ଆଖି ଫେରାଇ ନିଅନି, କଣ ଖାଇଚନ୍ତି –

ନର – ଏ ଗୁଡ଼ାକ ମନିଷଟାଙ୍କୁ ଦେଖି ନେଇ ମୁଁ କିମିତି ଜାଣିବି ଭଲା କହିଲେ ? ମୁଁ ତ ଆଉ ଆପଣ ନୁହେଁ ।

ଗଦା – କିଆଁ ନୁହଁ ? ତୁମେ ଯୁ ସମାଜର ମନିଷ, ମୁଁ ମଧ ସେହି ସମାଜର । ତୁମେ ଏମ.ଏ. ପାଶ୍ କରିଚ ପ୍ରଥମ ଶ୍ରେଣୀରେ, ମୁଁ ବି.ଏସ୍‌ସି. ପାଶ୍ କରିଚି ମାତ୍ର, ତୁମେ ସୁତରାଂ ମୋଠାରୁ ବେଶୀ ବୁଦ୍ଧିମାନ ଓ ପାଠୁଆ ତୁମ ମୋ ଭିତରେ ଏତିକି ଯେ ତୁମେ ମୋ ଅପେକ୍ଷା ପାଠାରେ, ଧନରେ ମାନରେ ସବୁ ଗୁଣରେ ବଡ଼ ।

ନର – ହଁ, ସତେ । ଆରେ ମୁଁ ତ ଏ କଥା ମୋଟେ ଭାବିନି । ମୁଁ ଆପଣାଙ୍କଠାରୁ ବଡ଼ ନା ? ବାଃ, କିମିତି ମଜାର କଥା, ଏଁ ! ମୁଁ ବଡ଼, ଆପଣ ସାନ । ତା ହେଲେ ତ ଆପଣ ମୋ କଥା ମାନି ଚଳିବେ ?

ଗଦା – ତା କୁଦିନ ଚଳିନି ବନ୍ଧୁ ? ତୁମେ ଆସିଲେ ଯେ ଦିନ ବନ୍ଧୁ, ଘେନି ତବ କୃପା ବିନ୍ଦୁ, ଫୁଟିଲା ଉଆଁସେ ଇନ୍ଦୁ, ମନ୍ଥିଲା ମୋ ମନ ସିନ୍ଧୁ, ଭୁଲି ଗଲି ସବୁ ପାଠ, ଶିଖିଲି ତୁମରି ଶାଠ, ମୋ ମନ ଦର ପୋଡ଼ା କାଠ, ତୁମେ ବସି ବସି କେତେ –

ଏତିକି ବେଳେ, ତାଙ୍କର ଏ କବିତାଟି ସରିଗଲା ଆଗରୁ, ତାଙ୍କର କିରାଣି ଆସି ହାଜର ହେଲେ ଓ ନମସ୍କାର କରି କହିଲେ, "ଆଜ୍ଞା !"

ଗଦା – ହଁ ବନ୍ଧୁ, ଜାଣିଚି ମୁଁ ତୁମ ଆବଦାର, ଆସିଚନ୍ତି ଖରିଦିଦାର, ଦେଇଚନ୍ତି ବଧାଇ, କହିଚନ୍ତି ମଙ୍ଗାଇ, ଦେବି କେଶ୍ ଭଙ୍ଗାଇ ଘିନି ଆସ ବନ୍ଧୁ ତାଙ୍କୁ ବାରେ ବାଟ ମଣାଇ ।

ଏହା କହି ସେ ନରସିଂହଙ୍କୁ ଯାଇ କଣ୍ଠେଇ ମୁଣ୍ଡେଇ ଧରି ଦେଇ ଗୋଟିଏ ଚୌକିରେ ବସେଇଲେ ଓ ନିଜେ ଟେବୁଲ ପାଖ ଚୌକିରେ ବସିଗଲେ, ଗମ୍ଭୀର ଓ କର୍ମରତ ।

କେତେଗୁଡ଼ାଏ ଫାଇଲି ସମାନାରେ ଥୁଆ ହୋଇଥିଲା । ସେ ସେଥିରୁ ଗୋଟାଏ ଫାଇଲ ଉଠାଇ ନେଇ ଏପରି ତନ୍ମୟ ହୋଇ ସେଥିରେ ବୁଡ଼ିଗଲେ, ଯେପରି କେତେବେଳୁ ସେ ଧ୍ୟାନମଗ୍ନ, ଯେପରି କି ମୁହୂର୍ତ୍ତକ ଆଗରୁ ତାଙ୍କର ସେ ବଢ଼ାରିଗିରି ସ୍ୱପ୍ନର କୁହୁକ । ନରସିଂହ ତାଙ୍କ ଆଡ଼କୁ ଚାହିଁ ଆଶ୍ଚର୍ଯ୍ୟରେ ଆଁ କରି ପକାଇଲେ । ଗଦାଧରଙ୍କର ବେହିଆମିରେ ତାଙ୍କ ମୁହଁରେ ଯେ ହସଟିକ ଆସିଯାଇ ଥିଲା । ତାର ଚିହ୍ନ ଏ ପର୍ଯ୍ୟନ୍ତ ତାଙ୍କ ମୁହଁରୁ ଯାଇନି, ଅଥଚ ଗଦାଧର ଏକାବେଳେ ପରିବର୍ତ୍ତିତ । ତାଙ୍କ ମୁହଁରେ କାମ କରି କରି ଥକା ଆସିଯିବାର ଭାବ, ତାଙ୍କର କପାଳରେ ଗଭୀର ଚିନ୍ତାର ରେଖା, ଆଖିରେ କ୍ଲାନ୍ତିର ଉଦାସ ଭାବ । ନରସିଂହ ତାଙ୍କୁ ଚାହୁଁଥାନ୍ତି ଯେତିକି, ଆଶ୍ଚର୍ଯ୍ୟରେ ତାଙ୍କର ପାଟିଟା ଫାଡ଼ି ହୋଇଯାଇଥାଏ । ସେତିକି ଆଉ କିଛି ସମୟ ଏହିପରି ଯାଇଥିଲେ ଏକଦମ ପାଟି ପାଖରୁ ସେ ବି ଫାଳ ହୋଇଯିବାର ଭୟ ପୂର୍ଣ୍ଣ ମାତ୍ରାରେ ଥିଲା । ତାଙ୍କ କପାଳ ସୌଭାଗ୍ୟ । କିରାଣି ବାବୁ ପଶି ଆସିଲେ । ତାଙ୍କ ପାଖରେ ଜଣେ

ଭଦ୍ରଲୋକ, ଠିକ୍ ଯେପରି ନରସିଂହ ବାବୁ ବର୍ଣ୍ଣନା କରିଥିଲେ। ତାପରେ ନରସିଂହ ବାବୁଙ୍କ ପାଟିଟା କଡ଼ାକ କରି ଯୋଡ଼ି ହୋଇଗଲା। କିରାଣି ବାବୁ କହିଲେ "ଆଜ୍ଞା, ତାଙ୍କେ ଆସିଛନ୍ତି।"

କଥାଟା ଯେପରି ଗଦାଧରଙ୍କ କାନରେ ପଶି ତାଙ୍କର ଧ୍ୟାନ ଭାଙ୍ଗି ଦେଲା। ସେ ବିରକ୍ତ ହୋଇ କହିଲେ, "ମୁଁ କହିଥିଲି ତୁମକୁ ମୁଁ ବଡ଼ କାର୍ଯ୍ୟ ବ୍ୟସ୍ତ। କାହାରି ସାଙ୍ଗରେ ଦେଖା କରି ପାରିବିନି ବୋଲି, ତଥାପି ତୁମେ –"

ସେ ଭଦ୍ରଲୋକ ସେଥିରେ ବାଧା ଦେଇ କହିଲେ, "ତାଙ୍କର ଦୋଷ ନାହିଁ। ମୋର କାମ ମଧ୍ୟ ବଡ଼ ଜରୁରି। ସେଇ ହେତୁ ମୁଁ ତାଙ୍କୁ ମଙ୍ଗେଇ –"

ଏତେବେଳକୁ ଯେପରି ଗଦାଧର ପ୍ରକୃତିସ୍ଥ ହୋଇ ଯାଇଛନ୍ତି। ସେ ଉଠି ଠିଆ ହେଲେ। ତାଙ୍କର ମୁହଁ ସାଉଁଳେଇ ହୋଇଗଲା। ସେ ସ୍ୱସ୍ତିର ଗୋଟାଏ ନିଶ୍ୱାସ ପକାଇ ନମସ୍କାର କରି କହିଲେ, "ଓ, ହଁ, କ୍ଷମା କରିବେ। ମୁଁ ଟିକିଏ ବେଉସାଗିରି କରୁଥିଲା.... ବୁଝିଲେନା ? ବସନ୍ତୁ।" ଭଦ୍ରଲୋକଙ୍କୁ ତାଙ୍କ ଆଗରେ ଥିବା ଗୋଟାଏ ଚୌକିରେ ବସେଇ ସେ ନିଜେ ବସିଲେ ଓ କିରାଣିକୁ କହିଲେ, "କିଛି ଚା ଓ ଜଳଖିଆ ଜଲଦି ମଗାଅ।"

ଭଦ୍ର – ଆଜ୍ଞା, ମୋ କଥାଟା –

ଗଦା – ଶୁଣିବି। ଆପଣ ଆଗ କିଛି ଖାଇ ନିଅନ୍ତୁ। ଚା ଟିକକ ମଧ୍ୟ ନ ଖାଇ ଘରୁ ଏପରି ବ୍ୟସ୍ତ ହୋଇ ପଳାଇ ଆସିବା ଆପଣଙ୍କର ଉଚିତ ହେଉନି।

ଭଦ୍ର – ଆପଣ ଯେବେ ଜାଣନ୍ତେ ମୋ ଭିତିରେ କି ତୋଫାନ ବହୁଚି, ତା ହେଲେ – ଏଁ, ଆପଣ କିପରି ଜାଣିଲେ ଯେ ମୁଁ ଚା ଖାଇ ଆସିନି ବୋଲି ?

ଗଦା – କାହିଁକି ? ସେଥିରେ ଆଶ୍ଚର୍ଯ୍ୟ କଣ ଅଛି। ଗୋଟାଏ ଦର୍ପଣରେ ଯେବେ ଆପଣ ଆପଣଙ୍କ ମୁହଁକୁ ଦେଖନ୍ତେ, ତା ହେଲେ ଆପଣଙ୍କୁ ବୁଝିବାକୁ ଡ଼େରି ଲାଗନ୍ତା ନି। ଖାଲି ଆଜି ନୁହେଁ ପ୍ରାୟ ୩/୪ ଦିନ ହେଲା। ଆପଣ କିଛି ଖାଇ ନାହାନ୍ତି ବୋଲି କହିଲେ ଚଳେ। ତେବେ ଚାରୁ ପିଉଚନ୍ତି ନିଶ୍ଚୟ। କିନ୍ତୁ ଆଜି ସେତିକ ମଧ୍ୟ କରି ନାହାନ୍ତି। କାରଣ ମୁଁ ଦେଖିଚି ଆପଣ ବସରୁ ଓହ୍ଲେଇ ଚା ଦୋକାନଟା ସାମନାରେ ଦେଖି ସେଠିକି ଚାଲିଯାଉଥିଲେ। କିନ୍ତୁ ପରେ ନିଜର ଏ ଦୁର୍ବଳତା ଲାଗି ନିଜକୁ ଘୃଣା କରି ଫେରି ଆସିଲେ।

ଗୁମାସ୍ତା ବାବୁ ହୋଟେଲ ପିଲା ହାତରେ କିଛି ପୁରୀ ତରକାରୀ ଓ ମିଠା ଏବଂ କପେ ଚା ଓ ଗିଲାସେ ପାଣି ଘେନି ହାଜିର ହେଲେ। ଗଦାଧର ନିଜେ ସେସବୁ ଘେନି ସେ ଭଦ୍ରଲୋକଙ୍କ ସାମନାରେ ରଖିଲେ ଓ ଖାଇବାକୁ ଅନୁରୋଧ କଲେ। ଭଦ୍ରଲୋକ ଅମଙ୍ଗ ହେଲେ କହିଲେ, "ନା, ଆଜି ମୋର ସେସବୁ କିଛି ଦରକାର ନାହିଁ, ମୋ କଥାଟା ଆଗେ ଶୁଣନ୍ତୁ।"

ଗଦା – ଆପଣ ଖାଇ ସୁସ୍ଥ ନ ହେବା ପର୍ଯ୍ୟନ୍ତ ମୁଁ କିଛି ଶୁଣିବିନି । ଯାହାର ଦେହ ଓ ମନ ଦିଟା ଯାକ ଅସୁସ୍ଥ, ସେ ମନିଷମାରୁ ଭଳି ମନ୍ଦା ବିଷୟରେ କଣ ବା ଠିକ୍ କରି କହିପାରେ । ଆଉ ମୁଁ ବା ତାକୁ କଣ ଜେରା କରିପାରେ । ଖା'ଇ ନିଅନ୍ତୁ । ତାପରେ ଯଦି ନ ଖାଇବେ, ତା ହେଲେ ଆପଣଙ୍କ ରାସ୍ତା ଦେଖନ୍ତୁ । ଆପଣଙ୍କର ପିଡ଼ିତ ମନର ଅସାର ପ୍ରଳାପ ଶୁଣିବା ଭଳି ମୋର ସମୟ ନାହିଁ ।"

ସେ ଗମ୍ଭୀର ହୋଇ ବସିଗଲେ । ଭଦ୍ରବ୍ୟକ୍ତି ମଧ ବିରକ୍ତି ହୋଇ ଉଠିଲେ – କହିଲେ "ଆପଣଙ୍କ ପାଖକୁ ଆସିଚି ବୋଲି ଆପଣଙ୍କ ପାଖରୁ ଏ ଅଭଦ୍ରାମି – ଓ ନା, କ୍ଷମା କରିବେ । ପ୍ରକୃତରେ ମୋର ମନଟା ଭୀଷଣ ଭାବରେ ରୋଗେଇଚି ।" ହଉ, କହି ସେ ଖାଇବାକୁ ଆରମ୍ଭ କଲେ । ଯେତକ ଆସିଥିଲା ସବୁ ସରିଲା । ଚା ପିଆଲାଟି ପିଇ ଦେଲେ । ତାଙ୍କ ମୁହଁରୁ ରଗଣ ଭାବ ଓ ଅତ୍ୟାଚାରିତ ଭାବ ଅନେକଟା କମି ଗଲା । ଗଦାଧର ତାଙ୍କ ହାତକୁ ଖଣ୍ଡେ ସିଗାରେଟ୍ ବଢ଼ାଇ ଦେଲେ ଓ ସିଗାରେଟରେ ନିଆଁ ଲଗାଇ ଦେଲେ । ଏଥରକ ଭଦ୍ରବ୍ୟକ୍ତି ଚୌକି ଉପରେ ଆରାମରେ ବସି ସିଗାରେଟରୁ ଦି ଚାରି ଫୁଙ୍କା ଟାଣି କହିଲେ, "ଧନ୍ୟବାଦ, ଗଦାଧର ବାବୁ, ଆପଣ ଦୟାରୁ ସତରେ ମୋ ଦେହରେ ଜୀବନ ପଶିଲା ଭଳି ଅନୁଭବ କରୁଚି । ମୁଁ ଏଥରକ –"

ଗଦା – ହଁ, କହିବେ ଆପଣଙ୍କ କଥା । ପୁଲିସିତ ଠିକ୍ କରି ନେଇଚି ଯେ, ଆପଣଙ୍କର ସ୍ତ୍ରୀ – ଆପଣଙ୍କର ସ୍ତ୍ରୀ ବୋଧ ହୁଏ, ନା – ଓ ଆପଣଙ୍କର ଭାଇ – ଭାଇନା ? ମହାଦେବ ବାବୁଙ୍କ ମା'ଙ୍କୁ ନିଷ୍ଠୁର ଭାବରେ ପଥରରେ ମୁଣ୍ଡ ଛେଚି ମାରି ପକାଇଲେ ଓ ତାଙ୍କ ଘରୁ ବାକ୍ସ ଭାଙ୍ଗି ସୁନା ଗହଣା ପ୍ରାୟ ପାଞ୍ଚ ହଜାର ଟଙ୍କାର ନେଇଗଲେ । କେତକ ଗହଣା ମଧ ତାଙ୍କର ତୁମ ଘରୁ, ତୁମ ସ୍ତ୍ରୀଙ୍କ ଶୋଇବା ଘରୁ ବାହାରିଚି । ତୁମ ବାଡ଼ିଆଡୁ ମଧ ଖଣ୍ଡେ ରକ୍ତ ବୋଳା ଧୋତି କଦଳି ଗଛ ସନ୍ଧିରୁ ବାହାରିଚି । ଏସବୁ ପ୍ରାମଣ ପରେ ଆପଣ ଆଉ କଣ କହିବାକୁ ଚାହାନ୍ତି ?

ଭଦ୍ର – ପୁଲିସ କଣ ପାଇଚନ୍ତି, ନ ପାଇଚନ୍ତି ମୁଁ ଜାଣେ । ମୋ ସ୍ତ୍ରୀ ଓ ଭାଇ ବିରୁଦ୍ଧରେ କଣ ପ୍ରମାଣ ଅଛି ଓ କିପରି ଆଉରି ପ୍ରମାଣ ସଂଗ୍ରହ କରାଯାଉଚି, ତା ମଧ ମୁଁ ଜାଣେ । ତଥାପି ମୁଁ କହିବି ମୋ ସ୍ତ୍ରୀ ଓ ଭାଇ ନିର୍ଦ୍ଦୋଷ । ଏଇ ସବୁ ପ୍ରମାଣ ଉପରେ ତାଙ୍କର ଯେବେ ଫାଶୀ ହୁଏ, ତା ହେଲେ ଦୁଇ ଦୁଇଟି ନିରୀହ ପ୍ରାଣୀଙ୍କୁ ହତ୍ୟା କରିବାକୁ ପଡ଼ିବ, ଗଦାଧର ବାବୁ ଆପଣ ହିଁ ଏଥିରେ ମୋର ଏକମାତ୍ର ସହାୟ । ଆପଣ ବହୁତ ବଡ଼ ବଡ଼ ରହସ୍ୟ ଖୋଜି ବାହାର କରିଛନ୍ତି, କେତେ ନିରୀହ ଲୋକଙ୍କୁ ପୁଲିସିର ହାତରୁ ଛଡ଼ାଇ ଆଣିଛନ୍ତି । ମୁଁ ଠାକୁରଙ୍କ ନାରେ, ଆପଣଙ୍କ ମନୁଷ୍ୟତାର ନାରେ, ଆପଣଙ୍କୁ ଭିକ୍ଷା ମାଗୁଚି, ମୋର ନିର୍ଦ୍ଦୋଷ ସ୍ତ୍ରୀ ଓ ଭାଇଙ୍କୁ ପ୍ରାଣ ଦିଅନ୍ତୁ, ବାବୁ, ଆପଣ ଯାହା କହିବେ ମୁଁ ତା କରିବାକୁ ତିଆରି ଅଛି । ମୁଁ ଅପାଣଙ୍କ ଗୋଡ଼ ଧରୁଚି, ଆପଣଙ୍କୁ ନେହୁରା –

ଗଦା – ଦେଖନ୍ତୁ, ହରେକୃଷ୍ଣ ବାବୁ, ଆପଣ ଏପରି ଅଧୀର ହେଲେ କାମ ଚଳିବ କିପରି ? ମୁଁ ଯେବେ ଏ କାମ ହାତରେ ନିଏଁ, ତା ହେଲେ ସବୁ ବିଷୟ ମୋର ଖୁଁଟି ଖିଟି କରି ଜାଣିବା ଉଚିତ । ଆଉ ସେସବୁ କଥା ମତେ ଠିକ୍ ଠିକ୍ ଭାବରେ କହିବ କିଏ ? ଆପଣ ଯେବେ ପ୍ରକୃତିସ୍ଥ ନ ହେବେ, ତା ହେଲେ କାମ ଉଠିବ କିପରି ?

ଭଦ୍ର – ଠିକ୍ କହିଚନ୍ତି, ଠିକ୍ କହିଚନ୍ତି । ବୁଝୁଚନ୍ତିତ ମୋର ଅବସ୍ଥା । ମତେ ଟିକିଏ ସମୟ ଦିଅନ୍ତୁ । ମୁଁ ନିଜକୁ ଠିକ୍ କରି ନଉଚି ।

ସେ ପନ୍ଦର ମିନିଟ୍ ଖଣ୍ଡେ ଚୁପ୍‌ଚାପ୍ ବସି ରହିଲେ । ଯା ଭିତରେ ଗଦାଧର ଲକ୍ଷ୍ୟ କଲେଣି ଯେ ନରସିଂହ ପାଟି ଆଉ ଫାଡ଼ି ଦି ଫାଳ ହୋଇଯିବା ଉପରେ । ସେ ଚଟ୍ କରି ଉଠିଯାଇ ଗୋଟାଏ ହାତ ନରସିଂହଙ୍କ ମୁଣ୍ଡ ଓ ଗୋଟାଏ ତାଙ୍କ ଓଠ ତଳେ ରଖି ତାଙ୍କ ପାଟିକୁ ବୁଜି ଦେଲେ ଜୋରରେ । ଦାନ୍ତରେ ଦାନ୍ତ ବାଡ଼େଇ ହୋଇଗଲା । ନରସିଂହଙ୍କର ଆଖିରୁ ପାଣି ଗଡ଼ି ପଡ଼ିଲା । ସେ କଣ କହିବାକୁ ଯାଉଥିଲେ, ଗଦାଧର ତାଙ୍କୁ "ଚୁପ୍ ଚୁପ୍" ବୋଲି ଥିରି କରି ବାରଣ କଲେ ଓ ସେ ଭଦ୍ର ଲୋକଙ୍କ ଆଡ଼କୁ ଆଙ୍ଗୁଠି ହଲାଇ ଦେଖାଇ ଦେଲେ । ଏସବୁ ସୁଆଙ୍ଗ ଚାଲିଥିଲା । ବେଳେ ସେ ଭଦ୍ର ଲୋକ ସବୁ ଲକ୍ଷ୍ୟ କରୁଥାନ୍ତି । ମେଘ ଛାଇ ଭିତରୁ ସୂର୍ଯ୍ୟ ଟିକିଏ ଉଙ୍କି ଦେଲା ପରି ତାଙ୍କ ମୁହଁରେ ଟିକିଏ ହସ ଫୁଟି ଉଠିଲା । ସେ କହିଲେ, "ଥାଉ ଥାଉ, ଗଦାଧର ବାବୁ, ସେ ଭଦ୍ରଲୋକଙ୍କୁ ମୋ କୋକୁଆ ଭୟ ଦେଖାଇ ଅସ୍ଥିର କରନ୍ତୁନି । ମୁଁ ସମ୍ପୂର୍ଣ୍ଣ ପ୍ରକୃତିସ୍ଥ । ଏଥରକ ଆପଣ ଯାହା ପଚାରିବେ ମୁଁ ଠିକ୍ ଠିକ୍ କହି ଦେବି । ବିଚଳିତ ହେବିନି ।"

ନରସିଂହ ତାଙ୍କ ଗାଲ ହାଡ଼ ଆଉଁସି ଆଉଁସି କହି ପକାଇଲେ ଚଟ୍ କରି, "ତେବେ ଆଉ ମତେ ଏମିତି କିଆଁ ହିନି ଅବସ୍ଥା କରୁଚ ? ମତେ ଆଗେ ଗୋଟାଏ କଥା କହନା ।"

ଗଦା – ତୁମେ ତୁନିହ ।

ହରେ – ନା, ନା, ସେ କଣ ପଚାରିବା ପାଇଁ ବଡ଼ ବ୍ୟଗ୍ର । ତାଙ୍କ କଥା ଶୁଣି ସାରନ୍ତୁ ।

ନର – ମୁଁ କହୁଚି ତୁମେତ ଏଇନା ମୋରି ପାଖରେ ବସିଚ । ତୁମେ ଜାଣିଲ କିପରି ଯେ ଏ ଛତ୍ରପୁରରୁ ଆସିଚନ୍ତି, ତାଙ୍କର ଏଇ ମକଦ୍ଦମା ଅଛି ଆଉ ସେ ମକଦ୍ଦମାରେ ଏତେ କଥା ହେଇଯାଉଚି ?

ହରେ – ହଁ, ସତ କଥାତ । ମୋର ମଧ୍ୟ ଆପଣ କହିଲା ବେଳେ ସେଇ କଥା ମନେ ହେଉଥିଲା । ଆପଣ ମୋ ପରିଚୟ ମଧ ଜାଣି ପାରିଲେ । ଆପଣଙ୍କ ସାଙ୍ଗରେ ତ ମୋର କେବେ ସାକ୍ଷାତ ହେଇନି ।

ଗଦା – ତା ହେଇନି । କିନ୍ତୁ ଏଥିରେ ଏପରି ଆଶ୍ଚର୍ଯ୍ୟ କିଛି ନାହିଁ । ଆପଣ ମଟରରୁ ଓହ୍ଲେଇଲା ବେଳେ ମୁଁ ଦାଣ୍ଡକୁ ଚାହିଁ ଠିଆ ହୋଇଥିଲି । ମୁଁ ଦେଖିଲି ଆପଣ ଛତ୍ରପୁର ମଟରରୁ ଓହ୍ଲେଇଲେ ।

ହରେ – କିନ୍ତୁ କେତେ ମଟରତ ଯାଆସ କରୁଚି, କେତେ ଲୋକତ ଓହ୍ଲାଉଚନ୍ତି, ମୋରି ଉପରେ ଆପଣଙ୍କ ନଜର ଗଲା କିଆଁ ।

ଗଦା – ମୋର ନିଜର ଆପଣଙ୍କ ଉପରେ ଏକା ନୁହେଁ । ମଟରରେ ଯେତେ ଲୋକ ଆସିଲେ ଓ ଓହ୍ଲେଇଲେ ସମସ୍ତଙ୍କୁ ମୁଁ ନଜର ଦେଇଚି । ଧାନରୁ ଅଗାଡ଼ି ବାଛିବା ବା ଟଙ୍କା ଗଦାରୁ ମାରା ଟଙ୍କା ବାଛିବା ଯେପରି ଅଭ୍ୟାସ ବିଦ୍ୟା, ମନିଷକୁ ଚାହିଁ ଦେଇ ତା ବିଷୟରେ ଠିକ୍ ଧାରଣା କରି ନେବା ଗୋଟାଏ ସେହି ପରି ବିଦ୍ୟା । ମୁଁ ସେ ଅଭ୍ୟାସ ବିଦ୍ୟା ଶିଖିଚି । ଆପଣଙ୍କ ମଟରରୁ ଯେତେ ଲୋକ ଓହ୍ଲେଇଲେ ତା ଭିତରେ ବିଶେଷ ନଜର ଦେଲା ଭଳି ଲୋକ କେହି ନ ଥିଲେ, ଆପଣଙ୍କ ଛଡ଼ା । ଆପଣଙ୍କ ମୁହଁର ଆକୁଳତା ଅପାଣଙ୍କୁ ସେମାନଙ୍କ ଠାରୁ ଅଲଗା କରି ଦେଇଥିଲା । ସେହି ସମସ୍ତଙ୍କୁ ଛାଡ଼ି ଆପଣଙ୍କ ପ୍ରତି ମୋର ନଜର ଗଲା । ଆପଣ ମଟରରୁ ଓହ୍ଲେଇ ସିଧେ ମୋ ଘର ଆଡ଼େ ଆସିଲେ । ବାଟରେ ଚାହା ଦୋକାନକୁ ଦେଖି ସେଠିକି ଯିବା ପାଇଁ ପାଦ ବଢ଼େଇଲେ, କିନ୍ତୁ ପର ମୁହୂର୍ତ୍ତରେ ନିତାନ୍ତ ଅସହନ୍ତିକ ଭାବରେ ପାଦ ଫେରାଇ ଆଣି ମୋ ଘର ଆଡ଼େ ଆସିଲେ । ଛତ୍ରପୁରରୁ ମୋ ପାଖକୁ ଏପରି ବ୍ୟସ୍ତ ହୋଇ କିଏ ଆସିବ, କାହିଁକି ଆସିବ ? ଆପଣ ମୋର ପରିଚିତ ନୁହନ୍ତି । ସୁତରାଂ ଆପଣ ନିଶ୍ଚୟ ମୋର ଗ୍ରାହକ । କି କାମ ଏପରି ଛତ୍ରପୁର ଆଡ଼େ ହୋଇ ପାରି ଥାଏ, ଯେ ତାଲାଗି ମୋର ଫିସ୍ ୫୦ ଟଙ୍କା ଦବାକୁ ପ୍ରସ୍ତୁତ ହୋଇ କିଏ ଆସିବ ? ମୋର ପୁଲିସ ମହଲାରେ ଜଣାସୁଣା ଅଛି । କୁଠି କଣ ଘଟୁଚି ମୁଁ ଜାଣେ । ଛତ୍ରପୁରରେ ଆପଣଙ୍କର ଏଇ ମକଦ୍ଦମା ଛଡ଼ା ଆଉ ସେପରି କିଛି ଘଟିନି । ଅତଏବ ମୁଁ ଠିକ୍ କରି ନେଲି ଆପଣ ସେଇ ମକଦ୍ଦମାରେ ଆସିଚନ୍ତି । ମକଦ୍ଦମାର ସବୁ ହାଲ ମୁଁ ଆଗରୁ କହିଗଲି । ଏଥିରେ ହାତ ସଫେଇ କିଛି ନାହିଁ, ହରେକୃଷ୍ଣ ବାବୁ ।

ନର – ହାତ ସଫେଇ ନାହିଁ ତ ମୁଁ କିଆଁ ଜାଣିଲିନି, ବୁଝିଲିନି । ମୁଁ ବି ତ ସେ ମକଦ୍ଦମା କଥା ଶୁଣିଚି ?

ଗଦା – ତୁମେ ଜାଣିଲନି, ବୁଝିଲନି, କାରଣ, ତୁମେ ତୁମେ, ଆଉ ମୁଁ ବୁଝିଲି, ଜାଣିଲି, କାରଣ ମୁଁ ମୁଁ । ଛାଡ଼ନ୍ତୁ ସେ କଥା । ଆପଣ କଣ କହିବାକୁ ଚାହାନ୍ତି ହରେକୃଷ୍ଣ ବାବୁ ?

ହରେ – କେବଳ ଏତିକି ଯେ ମୋର ସ୍ତ୍ରୀ ଓ ଭାଇ ନିର୍ଦ୍ଦୋଷ ।

ଗଦା – ଏ ସବୁ ପ୍ରମାଣ ପରେ ମଧ୍ୟ ?

ହରେ – ଏସବୁ ପ୍ରମାଣ ପରେ ମଧ ।

ଗଦା – କିଛି ବିଶେଷ କାରଣ ଅଛି, ଆପଣଙ୍କର ଏ ବିଶ୍ୱାସ ଲାଗି ।

ହରେ – କାରଣ ମୋର ସ୍ତ୍ରୀକୁ ମୁଁ ବେଶ୍ ଜାଣେ, ସେମାନେ ଏପରି କାମ କେବେ କରି ପାରନ୍ତିନି ।

ଗଦା – ଯେ କୌଣସି କାରଣର ନୁହେଁ । ଯେ କେବଳ ଆପଣଙ୍କର ଅନ୍ଧବିଶ୍ୱାସ । ସେମାନେ ଯେବେ ନିର୍ଦ୍ଦୋଷ, ସେ ଅଳଙ୍କାର ଆପଣଙ୍କ ସ୍ତ୍ରୀଙ୍କ ଶୋଇବା ଘରୁ ବାହାରିଲା କିପରି ?

ହରେ – ତା ମୁଁ କହି ପାରିବିନି । କିନ୍ତୁ ଆପଣ କଣ ବିଶ୍ୱାସ କରୁଚନ୍ତି ଯେ ମଣିଷ ମାରୁ କରି ଜିନିଷ ଲୁଟି କରେ, ସେ ଲୁଟି ଜିନିଷ ଏହି ପରି ଭାବରେ ନିଜ ପାଖରେ ରଖିଥାଏ ? ସେ ମଣିଷ ମାରୁର ଚିହ୍ନ ରକ୍ତ ଲୁଗାଟିକି ମଧ ପୋଡ଼ି ଦେଇ ପାରେନି ?

ଗଦା – ସେ ଗୋଟାଏ ଯୁକ୍ତିର କଥା ମାତ୍ର । କିନ୍ତୁ ସତ୍ୟ ହଉଚି ଯେ ଆପଣଙ୍କ ସ୍ତ୍ରୀଙ୍କ ପାଖରୁ ଅଳଙ୍କାର ବାହାରିଚି । ଆପଣଙ୍କ ଭାଇଙ୍କର ରକ୍ତ ବୋଳ ଲୁଗା ଆପଣଙ୍କ ବାଡ଼ିଆଡୁ ବାହାରିଚି । ଏହାର କି କୈଫିୟତ ଆପଣ ଦେଇ ପାରିବେ ?

ହରେ – ସେଇ କୈଫିୟତ ଦେଇ ପାରୁନି ବୋଲିତ ଆପଣଙ୍କ ପାଖକୁ ଆସିଚି । ଆପଣ ଦୟା କରନ୍ତୁ, ଗଦାଧର ବାବୁ, ମୋର ନିର୍ଦ୍ଦୋଷ ଭାଇ ଓ ସ୍ତ୍ରୀକୁ ରକ୍ଷା କରନ୍ତୁ, ମୋ କୁଳରେ କଳଙ୍କ ନ ଲାଗୁ । ସେମାନେ ଯେବେ ଫାଶୀ ପାନ୍ତି, ତା ହେଲେ ମୁଁ ଆପଣଙ୍କ ଦୁଆରେ ହିଁ ଫାଶୀ ଦେଇ ମରିବି ।

ଗଦା – ସେଥିରେ ମୋର କିଛି ମାତ୍ର ଦୁଃଖ ନାହିଁ । ଯେତେବେଳେ ଆପଣଙ୍କର ଖୁସି ଆପଣ ଆସି ଫାଶୀ ଦେଇ ପାରନ୍ତି । ମୁଁ ଦେଖୁଚି ମୋ ବାରଣ୍ଡା ଛାତରେ ଗୋଟାଏ ଲୁହା ଆଙ୍କୁଶ ଲାଗିଚି । ଦୌଡ଼ି ଖଣ୍ଡେ ସେଠି ଲଗାଇ ଦେବା ବଡ଼ ସହଜ । କହିବେତ ଭଲ ଛଣପଟ ଦଉଡ଼ି ଖଣ୍ଡେ ବି ସେ ବରଣ୍ଡା କାନ୍ଥ ଆଲମାରିରେ ରଖି ଦେଇଥିବି । ହଁ, ହେ ନରସିଂହ ବାବୁ, ଦେଖିବଟି, ଖଣ୍ଡେ ଭଲ ଶକ୍ତ ଦଉଡ଼ି ଯେପରି ସେଠି ରହେ ।

ନର – କଣ ଯେ ଆପଣ ସବୁ ବେଳେ ବେଳେ କହନ୍ତି ।

ଗଦା – ତୁମେ ଚୁପ୍ କର । ଦେଖନ୍ତୁ ହରେକୃଷ୍ଣ ବାବୁ, ଏ ସବୁ ଭାବ ପ୍ରବଣତାରେ ଫୌଜଦାରି ମାମଲା ଭଳି ଟାଣ ଗେଙ୍ଗେଟି ପଥର ଭାଙ୍ଗି ପରେନା । ମୁଁ ସର୍ବଜ୍ଞ ନୁହେଁ । ମୁଁ ମାତ୍ର ଜଣା ବିଷୟକୁ ବିଶ୍ଳେଷଣ କରି ସେଥିରୁ ନ୍ୟାୟସଙ୍ଗତ ଉପସଂହାର ବାହାର କରେ । ଏ ସ୍ଥଳରେ ତ ଜଣା ଜିନିଷ ଯାହା, ତାହା ସବୁ ଆପଣଙ୍କ ବିରୁଦ୍ଧରେ ଆପଣତ ନୂଆ କିଛି କହୁ ନାହାନ୍ତି, ମୁଁ କିପରି କଣ କରିବି ? ଆପଣ ଆପଣଙ୍କ ସ୍ତ୍ରୀକୁ ପଚାରି ଥିଲେ, ସେ ଅଳଙ୍କାର କୁଠୁ କିପରି ଆସିଲା ?

ହରେ – ପଚାରିଥିଲି । ସେ କହିଲେ କହି ପାରିବେନି । କିନ୍ତୁ କହିଲେ ଯେ ସେ ଅଳଙ୍କାର ଲୁଟି କରି ନାହିଁ ଆଣି ନାହାଁନ୍ତି । ଲୁଟି ଜିନିଷ ବୋଲି ଜାଣି ବି ନାହାଁନ୍ତି । ମୁଁ ଜାଣେ ସେ ନିର୍ଦ୍ଦୋଷ, ମୁଁ ଜାଣେ ସେ ନିର୍ଦ୍ଦୋଷ ।

ଗଦା – ଆପଣ ଗୋଟିଏ କଥା ଭାବି ଭାବି ନିଜକୁ କୁହୁକ କରି ପାରନ୍ତି । ମତେ ପାରିବେନି । ଆପଣଙ୍କ ଭାଇ ?

ହରେ – ସେ କହେ ଯେ ସେ ଏ ବିଷୟରେ କିଛି ଜାଣେନି । ସେଇ ଦିନ ସନ୍ଧ୍ୟାବେଳେ ସେ ତା କାର୍ଯ୍ୟ ଜାଗାରୁ ଆସି ପହଞ୍ଚିଲା । ବଡ଼ କ୍ଲାନ୍ତ ଥିଲା । ପୁଞ୍ଜିଏ ଖାଇ ଶୋଇଗଲା । ରାତିରେ ସେ ଉଠିନି କି କିଛି ଜାଣିନି । କିନ୍ତୁ ସେ ନିର୍ଦ୍ଦୋଷ ବାବୁ ସେ ନିର୍ଦ୍ଦୋଷ ।

ଗଦା – ସମସ୍ତେ ନିର୍ଦ୍ଦୋଷ, ତା ହେଲେ ଦୋଷି କିଏ ? ସେ ଅଳଙ୍କାର ଗୁଡ଼ାକ ଗଲା କୁଆଡ଼େ ? କିଏସେ ନେଲା ? ଆପଣ କଣ କହିବାକୁ ଚାହାଁନ୍ତି ଯେ ସେ ଅଳଙ୍କାରଗୁଡ଼ାକ ଆପଣଙ୍କର ?

ହରେ – ନିଶ୍ଚୟ । ସେଇଆତ ପୁଲିସକୁ କହିଚୁଁ ।

ଗଦା – ପୁଲିସ୍‌କୁ ସେଇଆ କହିଚନ୍ତି, ମୁଁ ଜାଣେ । କିନ୍ତୁ ଯାହା କହିଚନ୍ତି, ସେ କଣ ସତ୍ୟ ?

ହରେ – ମୁଁ ଆଉ କଣ ମିଛ କହୁଚି ?

ଗଦା – ନିଶ୍ଚୟ ମିଛ କହୁଛନ୍ତି । ଦେଖନ୍ତୁ ହରେକୃଷ୍ଣ ବାବୁ ଆପଣ ଏ ମକଦ୍ଦମାର ସତ୍ୟ ବାହାର କରିବା ଲାଗି ମତେ ଡାକୁଛନ୍ତି । କିନ୍ତୁ ଏତେ ମିଛ ବି କହୁଚନ୍ତି । ମିଛ ଖବର ବି ଦଉଚନ୍ତି । ଏପରି ଅବସ୍ଥାରେ ମୁଁ କିପରି ଆପଣଙ୍କ ମକଦ୍ଦମା ନେଇ ପାରେଁ ? ଆପଣ ମନ ଠିକ୍ କରନ୍ତୁ, ହୁଏତ ସତ୍ୟ କହିବେ ଆଉ ମୁଁ ମକଦ୍ଦମା ନେବି, ନ ହେଲେ ମିଛି କହିବେ ତ ନିଜ ବାଟ ଦେଖିବେ ।

ହରେ – କିନ୍ତୁ –

ଗଦା – ଏଥିରେ କିନ୍ତୁ ଫିନ୍ତୁ କିଛି ନାହିଁ । ରୋକଠୋକ କଥା । ରୋକ୍‌ଠୋକ୍ ଜବାବ ।

ହରେ – ମୁଁ ସତ କହିଲେ ଆପଣ ଏ ମକଦ୍ଦମା ହାତକୁ ନେବେ ? ମୋ ସ୍ତ୍ରୀ ଓ ଭାଇଙ୍କୁ ମୁକ୍ତ କରି ପାରିବେ ?

ଗଦା – ମୁଁ ହାକିମ ନୁହେଁ କି, ଓକିଲ ନୁହେଁ । ତେବେ ଏତିକି କହିପାରେ । ଆପଣ ସତ ସତ କଥା କହିଗଲେ, ମୁଁ ବିଚାର କରିବି ଏ ମକଦ୍ଦମାରେ ଆପଣଙ୍କର କିଛି ଉପାୟ ଅଛି କି ? ଯଦି ଉପାୟ ପାଏ, ତା ହେଲେ ନେବି ଆଉ ମୋର ଆଶା ମୁଁ କୃତକାର୍ଯ୍ୟ ହେବି ।

ହରେ – କିନ୍ତୁ ଆପଣ ତ ମୋତେ ଆଶାଟିଏ ବି ଦଉ ନାହାନ୍ତି ।

ଗଦା – ମୁଁ ଆଶାର ବେପାର କରେନି, ହରେକୃଷ୍ଣ ବାବୁ । ମୁଁ ସତ୍ୟର ବ୍ୟାପାର କରେ ।

ହରେ – ତା ହେଲେ ମୁଁ ଯାଉଚି । କେତେ ଯେ ଆଶ କରି ଆସିଥିଲି ।

ଗଦା – ନିରାଶ ହେଲେ ନା ? ବଡ଼ ମାମୁଲି କଥାଟା । ଆଚ୍ଛା ଆସିବା ହେଉ ।

ହରେ – ତା ହେଲେ କଣ ମୋତେ ରକ୍ଷା କରିବେନି ?

ଗଦା – ମୁଁ ନାହିଁ କରିନି ହରେକୃଷ୍ଣ ବାବୁ, ଆପଣ ମୋ ସର୍ତ୍ତରେ ରାଜି ହେଲେ ମୁଁ ବିଚାର କରିବି, କହିଚି ।

ହରେ – କିନ୍ତୁ ମୁଁ ପୁଲିସ ଆଗରେ ମୋର ଅଳଙ୍କାର ବୋଲି କହି ଆପଣଙ୍କ ଆଗରେ ନାହିଁ କରିବି କିପରି ? ଆପଣ ଯେବେ ମୋର ସାହାଯ୍ୟ ନ କରନ୍ତି, ଶେଷରେ ତ ଏଇ ଗୋଟିକ ଆମର ଏକମାତ୍ର ସଫେଇ ହବ ।

ଗଦା – ମୋ ଆଗରେ ସତ କହିଦେଲେ ତ, ମୁଁ ଆଉ ଯାଇ କଚିରିରେ ତୁମ ବିରୁଦ୍ଧରେ ସାକ୍ଷୀ ଦେବିନି । ଡର କାହିଁକି ?

ହରେ – ଓଃ ଆପଣ ବଡ଼ ନିର୍ମମ । ଏତକ କହି ସେ ଗଦାଧରଙ୍କ ଆଡକୁ ଚାହିଁ ରହିଲେ । ଗଦାଧର ନିର୍ବିକାର ଭାବରେ ବସି ଟେବୁଲ ଉପରେ ତବଲା ବଜାଉଥାନ୍ତି ଆଙ୍ଗୁଠିରେ । କିଛି ସମୟ ଏହିପରି ଭାବରେ ଚାହିଁ ରହି ହରେକୃଷ୍ଣ ଗୋଟିଏ ଦୀର୍ଘ ନିଶ୍ୱାସ ପକେଇ ଶେଷରେ କହିଲେ, "ହଉ, ମୁଁ ରାଜି । ପଚାରନ୍ତୁ, ସବୁ ସବୁ କହିବି ।"

ନର – କିଛି ଲୁଚେଇବେନି, କିଛି ମିଛ କହିବେନି ।

ହରେ – ଏଁ, ମତେ କଣ କଚିରି ହଲପ ନବାକୁ ପଡ଼ିବ ?

ଗଦା – ନାଇଁ, ନାଇଁ ତାଙ୍କ କଥା ଶୁଣନ୍ତୁନି । ବସନ୍ତୁ । ତା ହେଲେ ସେ ଅଳଙ୍କାର ଆପଣଙ୍କର ନୁହେଁ ?

ହରେ – ନାଁ ।

ଗଦା – କାହାର ?

ହରେ – ସେ ସବୁ ମହାଦେବ ବାବୁଙ୍କ ସ୍ତ୍ରୀଙ୍କର ଥିଲା । ତାଙ୍କର ମୃତ୍ୟୁ ପରେ ମହାଦେବ ବାବୁ ସେଗୁଡ଼ିକ ସାଇତି ରଖିଥିଲେ । ତାଙ୍କ ଘରେ ଗୋଟିଏ ବାକ୍ସରେ ।

ଗଦା – ଯୁ ବାକ୍ସ ଭଙ୍ଗା ହୋଇ ସେ ଗୁଡ଼ିକ ଲୁଟି ହୋଇଗଲା ?

ହରେ – ହଁ ।

ଗଦା – ସେ ଅଳଙ୍କାର ଗୁଡ଼ିକ ପୁଲିସ ଆପଣଙ୍କ ସ୍ତ୍ରୀଙ୍କ ବାକ୍ସ ଭିତରୁ ପାଇଲେ । ତାଙ୍କ ବାକ୍ସ ଭିତରେ କିଏ ରଖିଲା ?

ହରେ – ମୋ ସ୍ତ୍ରୀ ।

ଗଦା – ସେ କିପରି ପାଇଲେ ?

ହରେ – ସେ କଥା କହି ପାରୁନି ମୋ ସ୍ତ୍ରୀ ଏଇଠି ମୂକ ବନିଯାଉଚି । କିଛି କହୁନି । ମୁଁ ରାଗିଚି, କାନ୍ଦିଚି, ମୁଣ୍ଡ ବାଡ଼େଇ ହେଇଚି, ରାଣ ନିୟମ ପକେଇଚି । ସେ ଖାଲି ଗୋଟିଏ କଥା କହୁଚି, "ମତେ ପଚାରନି ସେ କଥା, ମୁଁ କହି ପାରିବିନି । ମୁଁ ନିର୍ଦ୍ଦୋଷ । ମୁଁ ମାଉସୀଙ୍କି ମାରିନି । ମୁଁ ସେ ସବୁ ଆଣିନି । କି ରାମ ବି ଆଣି ନାହାନ୍ତି । ମୁଁ ଜାଣେ ମୋର ଫାଶୀ ହେବ । ଦୁଃଖ ନାହିଁ । ମୋ ଲାଗି ତୁମେ ଭାବ ନି । ରାମଙ୍କୁ ବଞ୍ଚାଅ । କିଛି ନ ହେଲେ ମୁଁ ସବୁ ଦୋଷ ମାନି ଯିବି । ରାମଙ୍କୁ ବଞ୍ଚାଇବି । ଖାଲି ଏତିକି ମୋର ମାଗୁଣି ତୁମ ପାଖରେ, ତୁମେ ଅନ୍ତତଃ ମନିଷ ମାରୁ ବୋଲି ଭାବନା । ତୁମେ ଅନ୍ତତଃ ବିଶ୍ୱାସ କର, ମୋ ହାତ କାହାରି ରକ୍ତରେ ନାଇ ହେଇନି ।"

ଗଦା – ଆଚ୍ଛା ସେ ଯାଉ । ସେ ତ ଲୁଚାଉଚନ୍ତି । କିନ୍ତୁ ପାରିବେନି, ତାଙ୍କୁ ସତ ମାନିବାକୁ ପଡ଼ିବ । ସେ ମୁଁ ଦେଖିନେବି । ଆଚ୍ଛା, ମହାଦେବ ବାବୁଙ୍କ ଘର ଆଗପଟେ କାହା ଘର ?

ହରେ – ମଦନ ବାବୁଙ୍କ ଘର । ସେ ସେଦିନ ଘରେ ନ ଥିଲେ । ଘଟଣାର ପ୍ରାୟ ସପ୍ତାହକ ଆଗରୁ ସେ କଟକ ଯାଇଥିଲେ ବିଶେଷ କାମରେ । ଫେରି ଆସିଲେ ଘଟଣାର ଖବର ପାଇ ଦିନକ ବାଦ ।

ଗଦା – ତାଙ୍କ ଘରେ ।

ହରେ – କେହି ନଥାନ୍ତି । ସେ ଅବିବାହିତ । ମା ବାପ କେହି ନାହାନ୍ତି । ଗୋଟିଏ ଚାକର ମାତ୍ର ଥାଏ । ସେଇ ରୋଷେଇ ବାସେଇ କରି ଦିଏ ।

ଗଦା – ସେ ଦିନ ସେ ଚାକରଟା ଥିଲା ସେ ଘରେ ।

ହରେ – ନା, ଯୁଦିନ ମଦନ କଟକ ଗଲେ, ସେଇ ଦିନ ସେ ଚାକରଟାକୁ ମଧ୍ୟ ତାଙ୍କ ସାଙ୍ଗରେ ନେଇ ଯାଇଥିଲେ ।

ଗଦା – ହୁଁ, ତାହେଲେ ସେ ଘରଟା ବରାବର ଖାଲି ଥିଲା ।

ହରେ - ହଁ ।

ଗଦା - ଦୁଆର ?

ହରେ - ବାହାର ଭିତରୁ ସବୁ ବନ୍ଦ ଥିଲା । ବାହାର ଘରେ ଚାବି ପଡ଼ିଥିଲା । ଚାବି ଥିଲା ଏଁ, ମାନେ.....

ଗଦା - ଥମକି ଗଲେ ଯେ ହରେକୃଷ୍ଣ ବାବୁ, ଚାବି ଥିଲା ଆପଣଙ୍କ ଘରେ କାହିଁକି ?

ହରେ - ସେ ଗଲାବେଳେ ଦେଇ ଯାଇଥିଲେ । କହିଲେ ସେ ତାଙ୍କ ମାମୁଁଙ୍କର ତାଙ୍କ ଆଗରୁ ଆସିବାର ହେଇପାରେ । ତା ହେଲେ ସେ ଚାବିଟା ଆମ ଘରେ ଥିଲେ ସେ ନେଇ ଖୋଲି ରହି ପାରିବେ ।

ଗଦା - ମାମୁଁ ତାଙ୍କର ଆସିଥିଲେ ?

ହରେ - ନା, ଆସି ନାହାନ୍ତି ।

ଗଦା - ତାଙ୍କ ଘର, ନାଁ ?

ହରେ - ତଙ୍କ ଘର ରମ୍ଭା । ନାଁ ଲକ୍ଷଣ ମହାପାତ୍ର । କିନ୍ତୁ ଏ ଗୁଡ଼ାକରେ କଣ ଅଛି ବାବୁ ?

ଗଦା - କଣ ଅଛି ନ ଅଛି ମୁଁ ଜାଣେ । ମଦନ ବାବୁ ଆପଣଙ୍କ ଘରେ କେବେ ଚାବି ରଖିଦେଇ ଯାଇଥାନ୍ତି ?

ହରେ - ନା, ଆଗେତ କେବେ ନୁହେଁ ।

ଗଦା - ସେ ଚାବି କଣ ସେ ଆପଣଙ୍କ ସ୍ତ୍ରୀଙ୍କୁ ଦେଇ ଯାଇଥିଲେ ?

ହରେ - ହଁ ।

ଗଦା - ଆପଣଙ୍କ ସ୍ତ୍ରୀ ସହିତ ତାଙ୍କର କିପରି ପରିଚୟ ?

ହରେ - ପାଖ ପଡ଼ିଶା ଘର । ସେ ମୋ ସ୍ତ୍ରୀକୁ ଭାଉଜ ଭାଉଜ ବୋଲି ଡାକନ୍ତି ଓ ସେ ମଧ ତାଙ୍କୁ ଦିଅର ଲେଖାରେ ଥଟାଟାପୁରା କରେ ।

ଗଦା - ଓ, ମଦନ ବାବୁ କଣ କାମ କରନ୍ତି ?

ହରେ - କାମତ ସେପରି କିଛି କରେ ନି । କିଛି ଜମିବାଡ଼ି ଅଛି । ଭାଗଭୁଗା ଦେଇ ସେଥିରୁ କିଛି ମିଳେ । କହେ ବ୍ୟବସାୟ କରୁଚି ବୋଲି, ଚଳେ ବେଶ୍ ଥାଟରେ ।

ଗଦା - ବ୍ୟବସାୟ କରନ୍ତି ସେ ?

ହରେ - ମୁଁ ଜାଣିନି । ତାକୁ କେତେ ଥର ପଚାରିଚି । ସେ କଣ କହି ସବୁ ବାଆଁରେଇ ଦିଏ । ମୋର ଏତେ ମୁଣ୍ଡ ବଥା କାହିଁକି ? ଆମେ ଭଲ ନା ସେ ଭଲ ।

ଗଦା - ତେବେ ଆପଣତ କିଛି ଜାଣି ଥିବେ ।

ହରେ - ଜାଣିନି । ତେବେ ଶୁଣିଚି, ସେ କଣ ମଦଫଦ ଖାଏ ।

ଗଦା - ଆଉ ମାଇକିନା ?

ହରେ - କରୁଥିବ ଅଭିଆଡ଼ି ହେଇତ ଆସି ୩୦ ବର୍ଷ ହେଲାଣି । କିଏ ଜାଣେ ?

ଗଦା - ତାଙ୍କର ମହାଦେବ ବାବୁଙ୍କ ସହ କିପରି ଭାବ ଅଛି ?

ହରେ - ଖୁବ୍ । ଆମ ଘରଠୁ ବି ବେଶୀ । ମହାଦେବ ଘରକୁ ଆସିଲେ ମଦନର ଘର ଏକାବେଳକେ ଅଚ୍ଛେଦ୍ୟ ସମ୍ବନ୍ଧ ।

ଗଦା - ଆଚ୍ଛା । ଆପଣଙ୍କ ସ୍ତ୍ରୀ ମହାଦେବ ଘରକୁ ବରାବର ଯା ଆସ କରନ୍ତି ବୋଧହୁଏ ।

ହରେ - ହଁ ମହାଦେବ ନ ଥିଲେ ବୁଢ଼ିଟା ଏକୁଟିଆ ପଡ଼ିଥାଏ ଘରେ । ସେ ଆମ ଘରେ, ନ ହେଲେ ମୋ ସ୍ତ୍ରୀ ତାଙ୍କ ଘରେ । ମୋ ସ୍ତ୍ରୀକୁ ସେ ଝିଅ ଭଳି ଦେଖୁଥିଲେ । ମୋ ସ୍ତ୍ରୀ ମଧ ତାଙ୍କୁ ମା ଭଳି ତାଙ୍କ ଗୋଡ଼ ଘଷି ଦିବାଠାରୁ ତାଙ୍କର ମୁଣ୍ଡ କୁଣ୍ଡେଇ ଦବା ପର୍ଯ୍ୟନ୍ତ ସବୁ କରୁଥିଲା । ଏତେ ସ୍ନେହ ଥାଉଁ ଥାଉ ମୋ ସ୍ତ୍ରୀ କି କେବେ ଯା କରି ପାରନ୍ତା । ଆପଣଙ୍କୁ ସମ୍ଭବ ଲାଗୁଚି ?

ଗଦା - ମହାଦେବ ନ ଥିଲା ବେଳେ ଭଲା ମଦନ ତାଙ୍କ ଘରକୁ ଯାଏ ?

ହରେ - ଯାଏ ବୋଧହୁଏ । ଠିକ୍ କରି କହି ପାରିବିନି । ମୋ ସ୍ତ୍ରୀ ଜାଣିଥିବ ।

ଗଦା - ସେ ବହୁତ କିଛି ଜାଣନ୍ତି, ବହୁତ କିଛି ଜାଣନ୍ତି, ଆଚ୍ଛା, ହରେକୃଷ୍ଣ ବାବୁ, ଆପଣଙ୍କ ବୟସ କେତେ ହେବ ?

ହରେ - ଆଜ୍ଞା ୩୫ ।

ଗଦା - ଆପଣଙ୍କ ସ୍ତ୍ରୀଙ୍କର ?

ହରେ - ଆଜ୍ଞା ଏଇ ୨୦/୨୧ ।

ଗଦା - ଏତେ ବ୍ୟବଧାନ କିପରି ।

ହରେ - ମୋର ଏ ଦ୍ୱିତୀୟ ପକ୍ଷ ।

ଗଦା - ଓ, ଆଚ୍ଛା ହରେକୃଷ୍ଣ ବାବୁ, ଆପଣଙ୍କ ଦିହର ସ୍ଫୂର୍ତ୍ତି, ବଳ, ଡାକ୍. ମାନେ ଏଇ ଯୌବନ ଶକ୍ତି କିପରି ?

ହରେ - ଏ ଗୁଡ଼ାକ ଆପଣ କଣ ପଚାରୁଛନ୍ତି । ନରସିଂହ ବସି ବସି ନାକ ଟେକୁଥାନ୍ତି । ଏ ଗୁଡ଼ାକ ଶୁଣି କହିଲେ, "କଣ ଗୁଡ଼ାଏ ଅଭଦ୍ରଙ୍କ ଭଳି କଥା ବାର୍ତ୍ତା କରୁଚ ମ" ।

ଗଦା - ଆପଣଙ୍କ ସ୍ତ୍ରୀ ଆପଣଙ୍କୁ ଖୁବ୍ ଭଲ ପାନ୍ତି ନା ?

ହରେ - ନିଶ୍ଚୟ ।

ଗଦା - ଅଥଚ ଆପଣଙ୍କୁ ଏ ମକଦ୍ଦମାର ସତ କଥା ଟିକକ ବିଶ୍ୱାସ କରି କହିପାରୁ ନାହାନ୍ତି । ଆଚ୍ଛା ଆଚ୍ଛା ଆପଣ ଯାନ୍ତୁ, ମୁଁ ଆଜି ପୁଲିସ ବାଲାଙ୍କ ସାଙ୍ଗରେ କଥା ବାର୍ତ୍ତା କରି ତାଙ୍କ କାଗଜପତ୍ର ଦେଖି ନିଏ । କାଲି ଆସିବେ । ଅଚ୍ଛା ; ନମସ୍କାର ।



## ଦୁଇ

ଗଦାଧର ବାବୁ ପୁଲିସି କାଗଜପତ୍ରରୁ ଯାହାସବୁ ଦେଖିଲେ ଓ ବୁଝିଲେ ତାହାର ସାର ମର୍ମ ଏହି ପରି : -

୨୫/୧୧/୪୭ ସକାଳ ୯ ଘଣ୍ଟା ବେଳେ ସୋଦରୀ ବେଓ୍ୱା ସ୍ୱାମୀ ମୃତଫା ରଙ୍ଗନାଥ ବେହେରା ଆଚ୍ଛା ଛତ୍ରପୁର ଥାନାରେ ଇତଲା କଲା ଯେ ସେ ଏହି ସହରର ଶ୍ରୀରାମପୁର ମହଲ୍ଲା ବାସିନ୍ଦା ମହାଦେବ ଆପଟଙ୍କ ଘରେ ଚାକରାଣୀ କାମ କରେ । ଦିନ ଯାକ ତାଙ୍କ ଘରେ ରହେ ଓ ସନ୍ଧ୍ୟାରେ କାମଦାମ ସାରି ତା ନିଜ ଘରକୁ ଚାଲିଯାଏ । କାଲି ରାତିରେ ମଧ୍ୟ ସେ ସେହି ପରି କାମ ଦାମ ସାରି ପ୍ରାୟ ରାତି ୮ ଘଣ୍ଟା ବେଳେ ଘରକୁ ଗଲା । ସେତେବେଳେ ମହାଦେବ ବାବୁଙ୍କ ଘରେ ତାଙ୍କ ମା ଏକଲା ଥାନ୍ତି । ମହାଦେବ ବାବୁ ରସୁଲ କୁଣ୍ଡାରେ କାମ କରନ୍ତି ଗୁମାସ୍ତା, ନା କଣ । ସେ କାଲି ରାତିରେ ଗଲାବେଳେ ମହାଦେବ ବାବୁଙ୍କ ମାଙ୍କ ପାଖରେ ତାଙ୍କ ପଡ଼ିଶା ଘର ହରେକୃଷ୍ଣ ବାବୁଙ୍କ ସ୍ତ୍ରୀ ଥିଲେ । ସୋଦରୀ ବେଓ୍ୱା ଆଜି ସକାଳ ସାତ ଘଣ୍ଟା ବେଳେ କାମ ଉପରକୁ ଗଲା ବେଳକୁ ଦେଖିଲା ଯେ ଦାଣ୍ଡ କବାଟ ଭିତରେ ବନ୍ଦ ଅଛି । ସବୁଦିନେ ମହାଦେବ ବାବୁଙ୍କ ମା ସକାଳୁ ଉଠି ଦୁଆର ଖୋଲି ଦେଇଥାନ୍ତି । ଆଜି କବାଟ ବନ୍ଦ ଦେଖି ସେ ଦୁଆରେ ହାତ ମାରି ଡାକିଲା । କହି ଶୁଣିଲେନି । ବେଓ୍ୱାର ମନରେ ସନ୍ଦେହ ହେଲା । ସେ ଦୁଆରେ ଡାକିବାର ସେହି ସାହିର ମାଗୁଣି, ନରିଆ ହେରିକା ଦେଖିଛନ୍ତି । ବେଓ୍ୱାର ମନରେ ସନ୍ଦେହ ହେଲା । ବୁଢ଼ୀ ମଣିଷ କଣ ଦିହ ମୁଣ୍ଡ ହେଲାକି ? ଏହା ଭାବି ସେ ହରେକୃଷ୍ଣ ବାବୁଙ୍କ ଘରକୁ

ଗଲା । ତାଙ୍କ ସ୍ତ୍ରୀଙ୍କୁ ଏକ କଥା କହିବାରୁ ସେ କହିଲେ, "ଆରେ ବୁଢ଼ୀଟା ମରି ଗଲା କିଲୋ ? ବାଡ଼ି ଆଡ଼ ବୁଲି ଯାଇ ଡାକିଲୁ ।" ବେଓ୍ୱା ବାଟେ ଗଲା, ଦେଖିଲା ବାଡ଼ି ଦୁଆର ଆଉଜା ହୋଇଚି । ବାଡ଼ି ଦୁଆର ଦେଇ ଘର ଭିତରକୁ ଯାଇ ଦେଖିଲା, ବୁଢ଼ୀ ଭିତର ପଟ ଅଗଣାରେ ଓଳି ତଳେ ମରି ପଡ଼ିଚି । ତା ମୁଣ୍ଡ କିଏ ପଥରରେ ପିଟି ଛତୁ କରି ଦେଇଚି । ଏହା ଦେଖି ବେଓ୍ୱା ପାଟି କଲା । ପାଖ ପଡ଼ିଶା ସବୁ ଜମିଗଲେ । ପାଖ ପଡ଼ିଶାରୁ ଆଉ ସବୁ ଆସିବା ଆଗରୁ ହରେକୃଷ୍ଣ ବାବୁଙ୍କ ସ୍ତ୍ରୀ ଆଗ ଆସିଥିଲେ । ସେ ଏସବୁ ଦେଖି ବେଓ୍ୱାଙ୍କୁ କହିଲେ ପାଟି କରନା । ବେଓ୍ୱା ନ ମାନିବାରୁ ତାକୁ ଧମକେଇଲା । ଏତିକିବେଳେ ପଡ଼ିଶାର ଆଉ ସବୁ ଲୋକ ଆସିବାରୁ ସେ ତାଙ୍କ ଘରକୁ ଚାଲିଗଲେ ।

ଏହି ପରି ଇତଲା ପାଇ ଛତ୍ରପୁର ଥାନାର ଦାରୋଗା ବାବୁ ସାଙ୍ଗେ ସାଙ୍ଗେ ଘଟଣାସ୍ଥଳକୁ ଗଲେ । ଦେଖିଲେ ବୁଢ଼ୀ ଉପର ସାହାଲା ଘରର ପିଣ୍ଡା ତଳେ ପ୍ରାୟ ଦି ହାତ ପିଣ୍ଡାକୁ ଛାଡ଼ି ମରି ପଡ଼ିଛି । ତାର ମୁହଁ ତଳକୁ, ମୁଣ୍ଡ ଓପର ଖପୁରି ଚୂନା ଚୂନା ହେଇଯାଇଚି । ରକ୍ତର ଛିଟା ଚାରିଆଡ଼େ ଖେଳେଇ ହୋଇ ପଡ଼ିଚି । ଦହି ବାହାରି ପଡ଼ିଚି । ବୁଢ଼ୀର ବୟସ ଅନ୍ଦାଜ ୬୫ ବର୍ଷ ହେବ । ତା ଦିହର ସାଢ଼ୀ ଖଣ୍ଡକ ଅଣ୍ଟା ପର୍ଯ୍ୟନ୍ତ ଖସି ଯାଇଚି । ବୁଢ଼ୀ ଯୁଠି ମରି ପଡ଼ିଥିଲା ତା ପାଖରେ କିନ୍ତୁ କି ଜିନିଷରେ ମୁଣ୍ଡ ଛେଚା ହେଇଚି ତାର କୌଣସି ପତ୍ତା ନ ଥିଲା । ସେମାନେ ଘର ଭିତରକୁ ଯାଇ ଦେଖିଲେ ବୁଢ଼ୀ ଯୁ ଖଟ ଉପରେ ଶୋଇଥିଲା, ସେଥିରେ ବିଛଣା ଠିକ୍ ପଡ଼ି ରହିଚି । ଘରର ଯୁ ଜିନିଷ ଯୁଠି ରହିବାର କଥା ସେହିଠାରେ ରହିଚି । କେବଳ ଗୋଟିଏ ଟିଣ ବାକ୍ସ ଖଟତଳେ ଥୁଆ ହୋଇଛି । ସେଥିରେ ଚାବି ଲାଗିଛି । ବାକ୍ସ ଖୋଲି ଦେଖାଗଲା କେତେ ଗୁଡ଼ିଏ କାଗଜପତ୍ର ଓ କେତେଖଣ୍ଡ ରେଜା ଗହଣା ସେଥିରେ ଅଛି ।

ପୁଲିସ ଏ ସବୁ ଡାକ୍ତର ମାଇନା ପାଇଁ ଚାଲାଣ ଦେଇ ଓ ମହାଦେବ ବାବୁଙ୍କ ପାଖକୁ ତାର ପଠାଇ ଅନୁସନ୍ଧାନ ଆରମ୍ଭ କଲେ । ସେମାନେ ବାଡ଼ିଆଡ଼େ ଯାଇ ଦେଖିଲେ ଯେ, ହରେକୃଷ୍ଣ ବାବୁ ଓ ମହାଦେବ ବାବୁଙ୍କ ବାଡ଼ି ମଝିରେ ଖଣ୍ଡେ ମାଟି ପାଚିରି ଅଛି । ପାଚିରି ଖଣ୍ଡକ ଅଣ୍ଡେ ଉଞ୍ଚ ହବ ସବୁଠାରୁ ଉଚା ଜାଗାରେ । କିନ୍ତୁ ତାହାର ଅଧିକାଂଶ ଭାଗ ଭାଙ୍ଗି ଗଲାଣି । ସ୍ଥାନେ ସ୍ଥାନେ ହାତେ ଦେଢ଼ହାତ ଉଞ୍ଚାର ହୁଡ଼ା ଗୋଟେ ମାତ୍ର ରହିଚି । ଏହି ପରି ଗୋଟାଏ ହୁଡ଼ା ଉପରେ ହରେକୃଷ୍ଣ ବାବୁଙ୍କ ବାଡ଼ିରୁ ମହାଦେବ ବାବୁଙ୍କ ବାଡ଼ିକୁ ଯାଆସ କରିବାର ପାହଣ୍ଡି ରହିଚି । ଜଣାଯାଏ ଦି ଘର ମାଇପିଙ୍କ ଭିତରେ ଏହି ରାସ୍ତାରେ ଯାଆସ ବରାବର ହେଉଥିଲା । ମହାଦେବ ବାବୁଙ୍କ ବାଡ଼ି ଭିତରୁ କୌଣସି ପତ୍ତା ନ ପାଇ, ସେମାନେ ହରେକୃଷ୍ଣ ବାବୁଙ୍କ ବାଡ଼ିକୁ ଗଲେ । ହରେକୃଷ୍ଣ ବାବୁଙ୍କ ବାଡ଼ିଆଡ଼େ ଗୋଟାଏ କୁଅ । କୂଅ ପାଖରେ ଗୁଡ଼ାଏ କଦଳୀ ଗଛ ଓ ଅନ୍ୟାନ୍ୟ ଛୋଟ ଗଛର ବଣ । ଏହି ବଣ ଭିତରେ ସେମାନେ ଖଣ୍ଡେ ରକ୍ତ ବୋଳା ଧୋତି ପାଇଲେ ଓ ଆଉରି ଅନୁସନ୍ଧାନ କରୁକରୁ ଗୋଟାଏ ଶିଳପୁଆ ପାଇଲେ ଯେଉଁଥିରେ ରକ୍ତ ଓ ପାଚିଲା ବାଳ ଲାଗିଥିଲା । ଏହି କାରଣରୁ ଓ ବେଓ୍ୱା ହରେକୃଷ୍ଣ ବାବୁଙ୍କ

ସ୍ତ୍ରୀଙ୍କର ଯେ ପ୍ରତିକ୍ରୀୟାର କଥା କହିଥିଲା ସେଥିରୁ ପୁଲିସର ହରେକୃଷ୍ଣ ବାବୁଙ୍କ ଘର ଉପରେ ସନ୍ଦେହ ହେଲା । ସେମାନେ ତାଙ୍କ ଉପରେ ନଜର ରଖିଲେ ଓ ତାଙ୍କର ଘର ଏବଂ ବାଡ଼ିଆଡ଼େ ନଜର ଦେବା ପାଇଁ ପୁଲିସ ମୁତୟନ କଲେ । ମହାଦେବ ବାବୁ ଆସିବା ପର୍ଯ୍ୟନ୍ତ ଅନୁସନ୍ଧାନ ବେଗ ଶୀଥିଳ କରାଗଲା । ଯା ଭିତରେ ହରେକୃଷ୍ଣ ବାବୁଙ୍କ ସ୍ତ୍ରୀ ଘରେ ଗୋଟାଏ ପୁଡ଼ିଆ କଣ ଘେନି ତାଙ୍କ କୂଅ ମୂଳକୁ ଯାଇଥିଲେ ଓ ପକାଇବାର ଉପକ୍ରମ କଲା ବେଳେ ମୁତୟନ ସିପାହିର ଆବାଜ ପାଇ ସେ ପୁଡ଼ିଆଟା ନେଇ ପଳାଇଗଲେ । ସିପାହି ଠାରୁ ଖବର ପାଇ ଦାରୋଗା ଓ ଇନ୍‌ସିପେକ୍ଟର ତୁରନ୍ତ ତାଙ୍କ ଘର ଖାନ ତଲାସ କଲେ । ଓ ଖାନତଲାସରୁ ଗୋଟିଏ ପୁଡ଼ିଆରେ ବନ୍ଧା ହୋଇଥିବା, ହଳେ ସୁନାର ବାଲା ଉ୪୫ରି, ବାର ପଟ ସୁନାର କାଚ ଉ୯ରି, ହଳେ ସୁନାର ଅନନ୍ତ ଉ୮ରି, ହଳେ ସୁନାର ବାଲୁ ଭ୬ରି, ଗୋଟାଏ ଗିନି ହାର ଭ୮ରି, ଗୋଟାଏ ବିଛା ହାର ଭ୭ରି, ସୁନାର କାନଫୁଲ ଦି ହଳ ଉ୧୪ରି, ସୁନାର କମର ପଟି ଭ୮ରି ଓ ସୁନାର ସିନ୍ଥି ଭ୨୪ରି ମିଳିଲା । ଏ ପୁଡ଼ିଆଟା ହରେକୃଷ୍ଣଙ୍କ ସ୍ତ୍ରୀଙ୍କ ନିଜ ଲୁଗାପଟା ଟ୍ରଙ୍କରେ ତଳେ ଗୁଞ୍ଜା ହୋଇଥିଲା । ତାଙ୍କ ନିଜର ଅଳଙ୍କାର ତାଙ୍କ ଦିହରେ ଯାହା ଥିଲା ତାକୁ ବାଦ୍ ବାକି କିଛି ତାଙ୍କ ହାତ ବାକ୍ସରେ ଥିଲା । ପରେ ମହାଦେବ ବାବୁ ଆସିଲେ ଏସବୁ ଅଳଙ୍କାର ତାଙ୍କ ମୃତା ସ୍ତ୍ରୀଙ୍କର ଓ ସେ ସବୁ ସେହି ଟିଣ ବାକ୍ସରେ ଥିଲା ବୋଲି ସେ କହିଲେ ଓ ଚିହ୍ନିଲେ । ସେ ଆଉରି ମଧ କହିଲେ ଯେ ତାଙ୍କର ମା ତାଙ୍କୁ କେତେଥର କହିଚନ୍ତି ହରେକୃଷ୍ଣଙ୍କ ସ୍ତ୍ରୀ ଏ ଅଳଙ୍କାର ସବୁ ଦେଖି ବହୁତ ଲୋଭେଇଛନ୍ତି । ବେଳେବେଳେ ଏସବୁ ମାଗି ପିନ୍ଧନ୍ତି ଓ କେତେଥର ଏସବୁ ଜିନିଷ ତାଙ୍କୁ ବିକି ଦେବା ପାଇଁ କଟାଳ କରନ୍ତି ।

ତାପରେ ଅନୁସନ୍ଧାନରୁ ଜଣାପଡ଼ିଲା ଯେ ହରେକୃଷ୍ଣ ବାବୁଙ୍କ ସାନ ଭାଇ ରାମକୃଷ୍ଣ ବାବୁ ରାତିରେ ସନ୍ଧ୍ୟାବେଳେ ଆସିକାରୁ ଘରକୁ ଆସିଥିଲେ ଓ ତହିଁ ଆରଦିନ ସକାଳେ ଘଟଣା ଧରା ପଡ଼ିବା ଆଗରୁ କାମକୁ ଚାଲି ଯାଇଚନ୍ତି । ରକ୍ତ ଲଗା ଧୋତି ଓ ବୁଢ଼ୀର ହାତରେ କେତେ ଗୁଡ଼ାଏ ମୁଣ୍ଡ ବାଳ ଯେ ରହିଥିଲା ସେ ପୁରୁଷ ମୁଣ୍ଡର ବାଳ ବୋଲି ଜଣା ପଡ଼ିବାରୁ ତାଙ୍କୁ ମଧ ସନ୍ଦେହ କରାଗଲା । ଏଇ ସନ୍ଦେହ ଉପରେ ହରେକୃଷ୍ଣଙ୍କର ସ୍ତ୍ରୀ ଓ ଭାଇଙ୍କୁ ଧରାଗଲା ।

ଲାସର ଡାକ୍ତର ମାଇନାରୁ ଜଣା ପଡ଼ିଲା ଯେ ମୁଣ୍ଡ ଖପୁରି ହାଡ଼ ଚୌଚିର ହୋଇ ଫାଟି ଯାଇଚି । ଗୋଟିଏ ଯାଗାରେ ହାଡ଼ ମୁଣ୍ଡ ଦହି ଭିତରକୁ ପଶି ଯାଇଛି ଓ ଦହି ବାହାରି ଆସିଚି । ଦହି ଭିତରେ ଛୋଟ ଛୋଟ ଭଙ୍ଗା ଖପୁରି ହାଡ଼ର ଆଁଶ ଅନେକ ଦେଖାଗଲା । ଡାକ୍ତର ହିଁ ପ୍ରଥମେ ବୁଢ଼ୀର ମୁଠା ଭିତରେ କେତେଗୁଡ଼ିଏ ଛୋଟ ଛୋଟ ବାଳ ଦେଖିବାକୁ ପାଇଲେ । ସେ ଆଉରି ମଧ କହିଲେ ଯେ, ବେକ ଶିରା ହାଡ଼ ଉପରେ ଜଖମ ଲାଗିଚି । ଲାସର ଦାନ୍ତ ପଡ଼ିଯାଇ ଥିଲା । ଦାନ୍ତ ଖୋଲି ମାଇନା କରିବାରେ ଦେଖାଗଲା ଯେ ବୁଢ଼ୀର ବୟସ ୬୫ ହୋଇଥିଲେ ମଧ ଦାନ୍ତଗୁଡ଼ିକ ସବୁ ଅଛି ଓ ବୟସ ଅନୁପାତରେ ମଜବୁତ ମଧ । ସାମନା ଦାନ୍ତ ଦିଭାଡ଼ି ଭିତରେ ସେ ଖଣ୍ଡିଏ ଛୋଟ ଚମଡ଼ା ଭଳି ଜିନିଷ ପ୍ରା ୧/୪"ର ପାଇଲେ ।

ପୁଲିସର ଉପସଂହାର ଯେ ହରେକୃଷ୍ଣ ବାବୁଙ୍କ ସ୍ତ୍ରୀ ଏ ଅଳଙ୍କାର ଗୁଡ଼ିକ ପ୍ରତି ଗୋଟାଏ ମାୟା କରି ବସିଥିଲେ। ବୁଢ଼ୀଙ୍କୁ ଫୁସଲା ଫୁସଲି କରି ନ ପାରିବାରୁ ସେ କିଣିବା ପାଇଁ ପ୍ରସ୍ତାବ କଲେ। ସେଥିରେ ମଧ୍ୟ ଏମାନେ ଅମଙ୍ଗ ହବାରୁ ସେ ତାଙ୍କ ଦିଅରଙ୍କ ସାହାଯ୍ୟରେ ବୁଢ଼ୀକୁ ମାରି ସେ ଅଳଙ୍କାର ଗୁଡ଼ିକ ନେଇଗଲେ। ରାମକୃଷ୍ଣ ବାବୁ ସେଦିନ ରାତିକ ପାଇଁ କାହିଁକି ଛତ୍ରପୁର ଆସିଥିଲେ ତାହାର କୌଣସି କାରଣ ଦେଇ ପାରିଲେ ନି। ପରେ ଜଣାପଡ଼ିଲା ଯେ ସେ ଅସ୍କା ଛାଡ଼ି ଛତ୍ରପୁର ଆସିବା ପାଇଁ ତାଙ୍କ ଉପରିସ୍ଥ କର୍ମଚାରୀଙ୍କର ଅନୁମତି ପର୍ଯ୍ୟନ୍ତ ନେଇ ନାହାନ୍ତି, ସେ ଧୋତି ଖଣ୍ଡକରେ କୌଣସି ଧୋବା ଚିହ୍ନ ମିଳିଲାନି। କିନ୍ତୁ ସେଇ ରକମ ଧୋତି ରାମକୃଷ୍ଣ ବାବୁଙ୍କ ପାଖରୁ ଆଉରି ୩ ଖଣ୍ଡ ମିଳିଲା।

ଗଦାଧର ବାବୁ ସେଦିନ ପୁଲିସ ସାହେବଙ୍କ ସାଙ୍ଗରେ ଦେଖା କଲେ ଓ ଜେଲରେ ମୁଦାଲାମାନଙ୍କ ସହିତ ଦେଖା କରିବା ଲାଗି ଅନୁମତି ମାଗିଲେ। ପୁଲିସ ସାହେବ ତାଙ୍କର ଏ ମକଦ୍ଦମା ସହିତ ସଂପୃକ୍ତ ଥିବାର ଦେଖି ପଚାରିଲେ, "ଆପଣଙ୍କର ଏଥିରେ ସ୍ୱାର୍ଥ କଣ ଗଦାଧର ବାବୁ ? ଆପଣ କଣ ମୁଦାଲାମାନଙ୍କ ପାଇଁ ଲଢୁଚନ୍ତି ?"

ଗଦା - ହଁ, ସେହିପରି କିଛି।

ସାହେବ - ସେ କେବଳ ଆପଣଙ୍କର ଟଙ୍କା କୁଟା।

ଗଦା - କିଆଁ ?

ସାହେବ - ମକଦ୍ଦମାଟା ଏତେ ସଫା ଯେ ସେଥିରେ ଆପଣଙ୍କର କୌଣସି କାରସାଦି ଖଟିବନି।

ଗଦା - ମକଦ୍ଦମାଟା ଏତେ ସଫା ବୋଲି ତ ମୁଁ ସେଇଟା ହାତକୁ ନେଇଚି ସାହେବ।

ସାହେବ - ତାର ମାନେ।

ଗଦା - ଖୁଣି ମକଦ୍ଦମା କଦାପି ଏତେ ସଫାସୁତୁରା ହୋଇପାରେନା ସାହେବ। ଯାହା ଆପଣଙ୍କୁ ସଫା ଦେଖାପଡୁଛି ସେ ହଉଚି କେବଳ ଉପରର ଆବରଣ। ପୁଲିସ ଲୋକ। ଓପର ସଫାଟା ହିଁ ସଫା ବୋଲି ଆପଣମାନେ ଧରି ନେଲେ। ଭିତରେ ଯେ ମାରୁ ଅଛି ସେ କଥାତ ଆପଣମାନେ ବୁଝିବେନି।

ସାହେବ - ଆପଣ କଣ କହିବାକୁ ଚାହାନ୍ତି ଯେ ଯା ଭିତରେ ଏଇ ଅଳଙ୍କାର ରହସ୍ୟ ଛଡ଼ା ଆଉ କିଛି ଅଛି ?

ଗଦା - ନା, ଅଳଙ୍କାର ହିଁ ଏ ମାମଲାର ପ୍ରକୃତ କାରଣ।

ସାହେବ - ତା ହେଲେ ?

ଗଦା – ଅଳଙ୍କାର ଉଦ୍ଦେଶ୍ୟ ହେଲା ବୋଲି ଯେ ହରେକୃଷ୍ଣ ବାବୁଙ୍କ ସ୍ତ୍ରୀ ଓ ଭାଇ ଏ ହତ୍ୟା କରିଚନ୍ତି, ସେ କଥାଟା ସତ ହେବ କାହିଁକି ?

ସାହେବ – ତା ହେଲେ ଆପଣ କଣ କହିବାକୁ ଚାହାନ୍ତି ଯେ ଅନ୍ୟ କେହି ଏହି ଅଳଙ୍କାର ଲାଗି ବୁଢ଼ୀଟାକୁ ଜୀବନରେ ମାରି ପକାଇଲା । ଅଥଚ ସେହି ଅଳଙ୍କାର ଗୁଡ଼ାକ ଯାଙ୍କ ହାତରେ ଦେଇଗଲା ।

ଗଦା – ଏଥିରେ ଏପରି କଣ ଅସମ୍ଭବ ଅଛି ସାହେବ ?

ସାହେବ – ଅସମ୍ଭବର କଥା ଉଠୁନି ଗଦାଧର ବାବୁ, ଯୁକ୍ତି ବଳରେ ସବୁ ସମ୍ଭବ । କିନ୍ତୁ ସାଧାରଣ ମନୁଷ୍ୟର ସାଧାରଣ ବୁଦ୍ଧି ହିଁ ଆମର ପସରା । ସେଥିରେ ଏଇଟା ଅବଶ୍ୟ ଅସମ୍ଭବ । ଯେ ଯୁକଥାଟାରେ ଲୋଭରେ ଏତେ ବଡ଼ ନୃଶଂସ ହତ୍ୟା କରିବାକୁ ସାହସ କରେ ଓ ଫାଶୀ କାଠର ଭୟ ବୋଝ ନିଜ ମୁଣ୍ଡରେ ମୁଣ୍ଡାଏ, ସେ କଦାପି ସେଇ ଜିନିଷଟାକୁ ପର ହାତକୁ ଦେଇ ଦେବନି ।

ଗଦା – କିନ୍ତୁ ସେ ଲୋକ ଯେବେ ଏ ଜିନିଷ ଅନ୍ୟ ପାଇଁ ଚୋରି କରେ ?

ସାହେବ – ଆପଣ କଣ କହିବାକୁ ଚାହାନ୍ତି ଯେ ହରେକୃଷ୍ଣ ବାବୁଙ୍କ ସ୍ତ୍ରୀଙ୍କ ପାଇଁ ଅନ୍ୟ କେହି – ? ମାନେ, ଓଃ ହୁଁ । ଆପଣ କଣ ହରେକୃଷ୍ଣ ବାବୁଙ୍କ ସ୍ତ୍ରୀଙ୍କ ସମ୍ବନ୍ଧରେ ଯେ ଗୁଜବ ଅର୍ଥାତ୍ ତାଙ୍କର ଚରିତ୍ର ନେଇ – ସେ କଥଟା ବିଶ୍ୱାସ କରନ୍ତି ?

ଗଦା – ଅବିଶ୍ୱାସ କାହିଁକି କରିବି ସାହେବ ? ଏ କଣ ଏମିତି ଗୋଟାଏ ଅସମ୍ଭବ କଥା ?

ସାହେବ – ତା ହେଲେ ଆପଣ କଣ ତାଙ୍କର ପ୍ରେମିକମାନଙ୍କ ମଧ୍ୟରୁ କାହାକୁ ସନ୍ଦେହ କରୁଚନ୍ତି ।

ଗଦା – ମୁଁ ସମସ୍ତଙ୍କୁ ସନ୍ଦେହ କରୁଚି । ଏ ମାମଲା ସହିତ ଜଡ଼ିତ ଯେତେ ଲୋକ ମୁଁ ସମସ୍ତଙ୍କୁ ସନ୍ଦେହ କରୁଚି ।

ସାହେବ – ହରେକୃଷ୍ଣ ବାବୁଙ୍କ ସ୍ତ୍ରୀଙ୍କୁ ଓ ଭାଇଙ୍କୁ ମଧ୍ୟ ?

ଗଦା – ହୁଁ ।

ସାହେବ – ଅଥଚ ତାଙ୍କ ଲାଗି ତୁମେ ଲଢ଼ିବାକୁ ଯାଉଚ, ଏ କିପରି !

ଗଦା – ମୁଁ ସମସ୍ତଙ୍କୁ ସନ୍ଦେହ କରୁଚି ମାତ୍ର, କାହାରିକୁ ଦୋଷୀ ସାବ୍ୟସ୍ତ କରୁନି, ସମସ୍ତଙ୍କୁ ସନ୍ଦେହ କରିବା ଯାହା ସମସ୍ତଙ୍କୁ ନିର୍ଦ୍ଦୋଷ ବୋଲି ଭାବିବା ମଧ୍ୟ ସେଇଆ । ମୁଁ କଣ

ଜଣ କରି ସମସ୍ତଙ୍କର କଥା ଓ ଚାଲିଚଳନ ପରୀକ୍ଷା କରିବି। ଜଣ ଜଣଙ୍କୁ ନିର୍ଦ୍ଦୋଷ ବୋଲି ପ୍ରାମଣ କରିବି। ତା ପରେ ଯାଇ ପ୍ରକୃତ ଦୋଷୀ ଧାର ପଡ଼ିବ। ମୁଁ ଏମାନଙ୍କ ସପକ୍ଷରେ ଯାଉଚି, କାରଣ ପୁଲିସ ଏମାନଙ୍କ ବିରୁଦ୍ଧରେ ଯେଉଁ ପ୍ରମାଣ ସଂଗ୍ରହ କରି ଏମାନଙ୍କୁ ଦୋଷୀ ବୋଲି ସାବ୍ୟସ୍ତ କରୁଚି ସେ ପ୍ରମାଣ ସବୁ ଭୁଲ ଓ ଅଯୌକ୍ତିକ।

ସାହେବ - ଭୁଲ ଓ ଅଯୌକ୍ତିକ ! କିପରି ?

ଗଦା - ଆପଣଙ୍କ ପ୍ରଥମ ପ୍ରମାଣ ଯେ ବୁଢ଼ୀଙ୍କୁ ଶେଷ ଥର ବଞ୍ଚି ଥିବାର ଦେଖିଥିଲେ ହରେକୃଷ୍ଣ ବାବୁଙ୍କ ସ୍ତ୍ରୀ। ଏ ଯଥେଷ୍ଟ ପ୍ରମାଣ ନୁହେଁ। ହରେକୃଷ୍ଣ ବାବୁଙ୍କ ସ୍ତ୍ରୀ ବୁଢ଼ୀଙ୍କୁ ଛାଡ଼ି କେତେବେଳେ ଘରକୁ ଗଲେ ଓ ତାପରେ କଣ ହେଲା ତାର କୌଣସି ପ୍ରମାଣ ଆପଣଙ୍କର ନାହିଁ। ହରେକୃଷ୍ଣଙ୍କ ସ୍ତ୍ରୀ ସୋଦରୀର ପଛେ ପଛେ ତାଙ୍କ ଘରକୁ ଚାଲି ଯାଇ ପାରି ଥାନ୍ତି ଓ ତାପରେ ବୁଢ଼ୀ ଦାଣ୍ଡ ଦୁଆର ବାଡ଼ି ଦୁଆର ଦେଇ ଶୋଇବାକୁ ଯାଇପାରିଥାନ୍ତି। ଯେବେ ତା ହୁଏ ତା ହେଲେ ସେ ବା ତାଙ୍କ ଦିଅର ଯେ କିପରି ତାଙ୍କ ଘରକୁ ପଶିଲେ ତାର ପ୍ରମାଣ ଆପଣଙ୍କର ନାହିଁ। ୨ୟ ପ୍ରମାଣ ଯେ ରକ୍ତ ଲଗା ଧୋତି ତାଙ୍କ ବାଡ଼ି ଆଡୁ ମିଳିଲା। ସେ ଧୋତି ଭଳି ଧୋତି ବଜାରରେ ହଜାର ହଜାର ଖଣ୍ଡ ମିଳୁଚି। ସେ ଯେ ହରେକୃଷ୍ଣଙ୍କ ଭାଇଙ୍କର ତା କୌଣସି ପ୍ରମାଣ ନାହିଁ। ସେଥିରେ ଧୋବା ଚିହ୍ନ ନାହିଁ, କି ଅନ୍ୟ କୌଣସି ପ୍ରକାର ଚିହ୍ନ ନାହିଁ। ଯୁଥିରୁ ଜାଣିବେ ଯେ ସେ ଯାଙ୍କରି। ତାପରେ ଏତେବଡ଼ ନରହତ୍ୟା ଏପରି କୌଶଳରେ କରିପାରେ, ସେ ରକ୍ତ ବୋଳା ଲୁଗା ଖଣ୍ଡିକ ଧୋଇ ଧାଇ ସଫା କରି ପାରେନି, କି, ପୋଡ଼ି ପାଉଁଶ କରି ଦବନି, ଅଥଚ ତାକୁ ସାଇତି କରି ନିଜର ଘରେ ରଖିବ - ଏପରି ଭାବିବା ସାଧାରଣ ମନୁଷ୍ୟର ସାଧାରଣ ବୁଦ୍ଧିର ଅପମାନ। ଆପଣଙ୍କର ୩ୟ ପ୍ରମାଣ ଯେ, ଏ ଅଳଙ୍କାରଗୁଡ଼ିକ ହରେକୃଷ୍ଣଙ୍କ ସ୍ତ୍ରୀ କଥା ଧରା ପଡ଼ିଲା ପରେ ଓ ପୁଲିସ ଜଗିବାକୁ ମୁତୟନ ହୋଇ ସାରିଲା ପରେ କୂଅରେ ଫୋପାଡ଼ିବାକୁ ନଉଥିଲେ ଓ ସେଥିରେ ବିଫଳ ହେଇ ଶେଷରେ ସେ ସବୁ ନେଇ ନିଜ ବାକ୍ସରେ ଭିତରେ ସାଇତି ରଖିଲେ। ଏ ମଧ୍ୟ ଆପଣଙ୍କ ସାଧାରଣ ବୁଦ୍ଧିର ଅପବ୍ୟବହାର। ଏତେ ବଡ଼ ବୋକା ଏପରି ହତ୍ୟା କରି ହୋଇ ନ ପାରେ।

ସାହେବ - ହୁଁ, ଆପଣଙ୍କ ଯୁକ୍ତି ଅବଶ୍ୟ ସମ୍ଭବ-ସମର୍ଥ କିନ୍ତୁ ଏ ଅଳଙ୍କାର ତାଙ୍କୁ ମିଳିଚି ଓ ସେ ତାର କୌଣସି କୈଫିୟତ ଦେଇପାରୁ ନାହାନ୍ତି। ଏ ଆକଟ ସତ୍ୟ।

ଗଦା - ତା ନିଶ୍ଚୟ। କିନ୍ତୁ ସେଥିରୁ ଯେ ଉପସଂହାର ଆପଣ କରୁଚନ୍ତି ଯେ - ଯେ ଆକାଟ ସତ୍ୟ ସୁତରାଂ ଏଇମାନେ ହତ୍ୟାକାରୀ ଏ କଥା ମଧ୍ୟ ଆକଟ ସତ୍ୟ - ଏଇତକ, ଏଇ ଯୁକ୍ତି ଟିକକ ଅକାଟ ସତ୍ୟ ନୁହେଁ।

ସାହେବ - ଯାଉ, ଆପଣଙ୍କ ସହିତ ସମ୍ଭବ ଅସମ୍ଭବ ନେଇ ବାଦାନୁବାଦ କରି ଲାଭ ନାହିଁ। ଆମେ ଦୋଷୀଙ୍କୁ ପାଇଚୁଁ। ଆମର ବିଶ୍ୱାସ ଯେ ସେଇ ଦୋଷୀ। ଆମେ ତାଙ୍କ ଜଗିରେ

ହାଜିର କରିବୁଁ, ତେଣିକି ହାକିମ ଜାଣନ୍ତି ଓ ସେ ଜାଣନ୍ତି। ଆପଣ ସେମାନଙ୍କୁ ରକ୍ଷା କରିବା ପାଇଁ ମୁତଯନ ହେଉଛନ୍ତି। ଆପଣ ଆପଣଙ୍କ କାମ କରିବେ କରନ୍ତୁ।

ଗଦା - ତା ତ କରିବି। ମାତ୍ରକ ଆପଣମାନଙ୍କର ସାହାଯ୍ୟ ବିନା ଏ ରହସ୍ୟର ସତ୍ୟାସତ୍ୟ ବାହାର କରିବା ସମ୍ଭବ ନୁହେଁ। ମୁଁ ସେଇଥି ପାଇଁ ଆସିଚି।

ସାହେବ - ଆମର ସାହାଯ୍ୟ ! ଆମେ ମିଛୁଆ, ଆମର ଯୁକ୍ତି ଖରାପ ଏଇ କଥା ପ୍ରମାଣ କରିବାକୁ ଆମ୍ଭେମାନେ ଆପଣଙ୍କୁ ସାହାଯ୍ୟ କରିବୁ ବୋଲି ଆପଣ ବିଶ୍ୱସ କରନ୍ତି ? ଆପଣଙ୍କଠୁଁ ବଡ଼ ଆଶାବାଦିତ ଆଉ କାହାରିକୁ ମୁଁ ଦେଖିନି, ଗଦାଧର ବାବୁ।

ଗଦା - ଏଥିରେ ଆଶାର କଥା କିଛି ନାହିଁ। ଆପଣ ଯେ ସାହାଯ୍ୟ କରିବେ ଏଥିରେ ସନ୍ଦେହ ନାହିଁ। ଆପଣଙ୍କ ସାହାଯ୍ୟ ବିନା ମଧ ମୁଁ ଏ ରହସ୍ୟ ଭେଦ କରିବି। କେବଳ ପ୍ରଭେଦ ଏତିକି ଯେ ଆପଣଙ୍କ ସାହାଯ୍ୟରେ ଏହାର ରହସ୍ୟ ଭେଦ ହୋଇ ପାରିଲେ ସମସ୍ତ ପୁରୁଷାର୍ଥ ଆପଣମାନେ ହିଁ ପାଉଇବେ। ତା ନ ହେଲେ ମୁଁ ପ୍ରମାଣ କରି ଆପଣମାନଙ୍କୁ ଅପଦାର୍ଥ ପ୍ରମାଣ କରି ସାରିଲା ପରେ ବିଚ୍ ଅଦାଲତରେ କହିବି ଯେ ସତ୍ୟ କାଢ଼ିବାର ସୁବିଧା ଆପଣମାନଙ୍କୁ ଦେଲେ ମଧ ଆପଣମାନେ ତାକୁ ଆଗ୍ରାହ୍ୟ କରିଚନ୍ତି ଓ ଜଣେ ସମ୍ଭ୍ରାନ୍ତ ବଂଶୀୟା ମହିଳାଙ୍କୁ ବିଚ୍ ଅଦାଲତରେ ଅପମାନିତ, ଲାଞ୍ଛିତ ଓ ବିବ୍ରତ କରିଚନ୍ତି। ତାପରେ ମୋର ଆଶ୍ରୟପ୍ରାର୍ଥୀଙ୍କୁ ପରାମର୍ଶ ଦେବି ଯେ, ହତ୍ୟା ମକଦ୍ଦମାରେ ପ୍ରକୃତ ପ୍ରମାଣ ଛପାଇ ଥିବା ଓ ମିଥ୍ୟା ପ୍ରମାଣକୁ ଭାଙ୍ଗି ଭୁଙ୍ଗି ସତ ବୋଲି ପ୍ରମାଣ କରିବାର ଅଭିଯୋଗରେ ଆପଣମାନଙ୍କ ନା'ରେ ମକଦ୍ଦମା କରିବେ।

ସାହେବ - ଏ କଣ ଧମକ ?

ଗଦା - ମୋଟେ ନୁହେଁ, ସାହେବ, ମୋଟେ ନୁହେଁ, ଯାହା କରିବା ମୋର ପ୍ରତିଜ୍ଞା, ସେ ଧମକ କିପରି ହବ ? ସାହେବ ! ଆପଣ ବୋଧହୁଏ ଜାଣିଥିବେ - ଆପଣ ନୂଆ ଏଠିକି - ତଥାପି ଆପଣ ଜାଣିଥିବେ - କେତେ ପ୍ରକାରେ ଆପଣମାନେ ମୋ ଠାରୁ କେତେ ସାହାଯ୍ୟ ପାଆନ୍ତି। ମତେ ସାହାଯ୍ୟ ନ କଲେ, ମୁଁ ମଧ୍ୟ ଆପଣମାନଙ୍କୁ ସାହାଯ୍ୟ ଭବିଷ୍ୟତରେ କରିବିନି।

ସାହେବ - ମୁଁ ଜାଣେ ! ସେହି ହେତୁରୁ ହିଁ ଆପଣଙ୍କର ଏତେ ଔଦ୍ଧତ୍ୟ ଏତେବେଳ ଯାଏ ବରଦାସ୍ତ କରିଥିଲି। ଆଉ ନୁହେଁ। ଆପଣ ଏଥର ଆସନ୍ତୁ। ନମସ୍ତେ କହି ସାହେବ ଚୌକିରୁ ଧାଡ଼ କରି ଉଠି ପଡ଼ିଲେ। ଗଦାଧର ମଧ ଚୌକିରୁ ଉଠି ନିଜ ହାତ ବନ୍ଧା ଘଡ଼ି ଆଡ଼କୁ ଚାହିଁ, "ଓ ଘଡ଼ିଟା ବନ୍ଦ ହୋଇଗଲା ନା କଣ ? ଇଲେ କେତୋଟା ହବ ସାହେବ ?" କହି ନିଜ ହାତରୁ ଘଡ଼ିଟା ଖୋଲି ପକାଇଲେ। ସାହେବ କାନ୍ଥରେ ଟଙ୍ଗା ହୋଇଥିବା ଘଡ଼ି ଆଡ଼କୁ ଚାହିଁ କହିଲେ "୧୦ଟା ୪୦"। ସାହେବଙ୍କର ଗୋଟିଏ ହାତବନ୍ଧା ଘଡ଼ି ମଧ ସେ ଟେବୁଲ ଉପରେ ଥିଆ

ହୋଇଥିଲା । ଗଦାଧର ଟେବୁଲ ଉପରେ ହାତ ରଖି କାନ୍ଥ ଘଡ଼ି ଆଡ଼କୁ ଚାହିଁଲେ କହିଲେ - "ମାତ୍ର ୧୦ଟା ୪୦ ଘଡ଼ିଟା ଠିକ୍ ଅଛି ତ ? ସାହେବ ଟେବୁଲ ଉପରେ ତାଙ୍କ ଘଡ଼ି ଦେଖିବା ପାଇଁ ଟେବୁଲକୁ ଚାହିଁଲେ । ଘଡ଼ିଟା ଟେବୁଲ ଉପରେ ନାହିଁ । କାଗଜ ପତ୍ର ଦରାଣ୍ଡି ପକାଇଲେ । ଯା ଭିତରେ ଗଦାଧର ତାଙ୍କ ହାତରେ ଥିବା ଘଡ଼ିଟାରେ ଚାବି ଦେଇ, କାନ ପାଖରେ ଧରି କହିଲେ, "ଏଁ ! ହଁ ଆଚ୍ଛା ଥାଉ, ଆଉ କଷ୍ଟ କରିବେନି । ମୁଁ ଟେସନ୍‌ରେ ମିଳେଇ ଦେବି । ମୁଁ ଯାଉଚି ତା ହେଲେ ।"

ସାହେବ ଘଡ଼ିଟା ଖୋଜି ଖୋଜି କହିଲେ, "ବଡ଼ ଆଶ୍ଚର୍ଯ୍ୟ ମୋର ଠିକ୍ ମନେ ହେଉଚି, ଏଇଠି ଥିଲା ଘଡ଼ିଟା ଗଲା କୁଆଡ଼େ ?"

ଗଦା - ମୁଁ ଚୋରେଇ ନେଇଚି । ମତେ ଖାନତଲାସ କରନ୍ତୁ ସାହେବ । ମତେ ଚାଲାଣ କରନ୍ତୁ ।

ସାହେବ - ଆପଣଙ୍କୁ ଘଡ଼ି ଚୋରିରେ ଚାଲାଣ କରି କିଛି ଲାଭ ନାହିଁ, ଗଦାଧର ବାବୁ ଆପଣଙ୍କୁ ଚାଲାଣ କରି ଯେବେ ଫାଶୀ କାଠରେ ଝୁଲାଇ ପାରନ୍ତି ବା ଆଣ୍ଡାମାନରେ ସଢ଼ାଇ ପାରନ୍ତି ତା ହେଲେ କେଜାଣି ଅବା ମୋର କାମନା ପୂର୍ଣ୍ଣ ହନ୍ତା ।

ଗଦା - ଏ ଶୁଭେଚ୍ଛା ଲାଗି ଅଶେଷ ଧନ୍ୟବାଦ । ତା ହେଲେ ମତେ ଖାନତଲାସ କରିବେନି ।

ସାହେବ - ଓ, କାହିଁକି ବିରକ୍ତ କରୁଚ ଶୁଣେ, ଯାଅ ।

ଗଦା - ମତେ ଶେଷରେ ଘଡ଼ିଟା ଚୋରାଇ ନେଲି ବୋଲି ଅପବାଦ ଦେବେନିତ ?

ସାହେବ - ଅର୍ଦ୍ଦଳି, ଅର୍ଦ୍ଦଳି ? ରିଡ଼ର ?

ଅର୍ଦ୍ଦଳି ଆସି ସଲାମ ଦେଲା ଗୋଟାଏ ପଟୁ, ଆର ପଟୁ ରିଡ଼ର ।

ସାହେବ - ଏ ବାବୁଙ୍କୁ ରାସ୍ତା ଦେଖାଅ ।

ଗଦା - ଧନ୍ୟବାଦ ସାହେବ । ମୁଁ ରାସ୍ତା ଦେଖିଚି । ନମସ୍ତେ ।



## ଚାରି

ଗଦାଧର ସେଇ ଦିନ ମାଜିଷ୍ଟ୍ରେଟଙ୍କ ଇଜଲସରେ ଆସାମିମାନଙ୍କ ସହିତ ସାକ୍ଷାତ କରିବା ପାଇଁ ଅନୁମତି ଦରଖାସ୍ତ କଲେ । ମାଜିଷ୍ଟ୍ରେଟ କୋର୍ଟ ବାବୁଙ୍କୁ ପଚାରି ଅନୁମତି ଦେଇଦେଲେ । ସେଇ ଅନୁମତି ନେଇ ଗଦାଧର ବାବୁ ଜେଲଖାନାକୁ ଗଲେ ଓ ଜେଲରଙ୍କ

ଦପ୍ତରରେ ବସି ପ୍ରଥମେ ହରେକୃଷ୍ଣଙ୍କ ଭାଇଙ୍କ ସହିତ ସାକ୍ଷାତ କଲେ । ରାମକୃଷ୍ଣ ବାବୁଙ୍କର ବୟସ ୨୫ ବର୍ଷ ହବ । ଗଢ଼ଣ ପତଳା ଓ ଲମ୍ୱା, ବର୍ଣ୍ଣ ଗୋରା । ମୁହଁରେ ବସନ୍ତ ଚିହ୍ନ । ଶୁଖିଲା ମୁହଁ ଓ ଉଦ୍‌ଭ୍ରାନ୍ତ ଚାହାଣି ନେଇ ସେ ଆସି ଗଦାଧରଙ୍କ ପାଖରେ ଠିଆ ହେଲେ । ଗଦାଧର ଉଠିଯାଇ ତାଙ୍କୁ ଗୋଟିଏ ଚୌକିରେ ବସେଇଲେ । ତାପରେ କହିଲେ, "ରାମକୃଷ୍ଣ ବାବୁ ଆପଣ ମୋର ନା ଶୁଣିଥିବେ ବୋଧହୁଏ । ମୋ ନା ଗଦାଧର ମହପାତ୍ର । ଆପଣଙ୍କ ଭାଇ ଏ ମକଦ୍ଦମର ରହସ୍ୟ ଖୋଲିବା ଲାଗି ମତେ ନିଯୁକ୍ତ କରିଚନ୍ତି । ମୋର ପୂର୍ଣ୍ଣ ବିଶ୍ୱାସ ଆପଣ ନିର୍ଦ୍ଦୋଷ ଓ ଏ ଅଭିଯୋଗରୁ ନିଶ୍ଚୟ ମୁକ୍ତ ହେବେ । କିନ୍ତୁ ତା ଅଗରୁ କେତୋଟି କଥାର ଠିକ୍ ଠିକ୍ ଉତ୍ତର ଅପଣଙ୍କୁ ଦାବାକୁ ପଡ଼ିବ । ଦେବେ ?"

ରାମକୃଷ୍ଣ – ପଚାରନ୍ତୁ । ସମ୍ଭବ ହବତ ଦେବି ।

ଗଦା – ଆପଣ ସେଦିନ ସଞ୍ଜବେଳେ କାହାରି ଅନୁମତି ନ ନେଇ କାହିଁକି ଆସ୍କାରୁ ଛତ୍ରପୁର ଆସିଥିଲେ ?

ରାମକୃଷ୍ଣ – ଏମିତି, ମନ ହେଲା ଟିକେ ଘରୁ ବୁଲି ଆସିବି ବୋଲି ।

ଗଦା – ଉଁ, ହୁଁ ଆପଣ ଠିକ୍ କଥା କହୁ ନାହାନ୍ତି ।

ରାମକୃଷ୍ଣ – ଏ ଛଡ଼ା ମୁଁ ଏ ବିଷୟରେ ଆଉ କିଛି କହି ପାରିବିନ ।

ଗଦା – ଆପଣଙ୍କର ଜୀବନ ରକ୍ଷା କରିବାକୁ ମଧ ନୁହେଁ ?

ରାମକୃଷ୍ଣ – ନା ।

ଗଦା – ଆପଣଙ୍କ ଭାଉଜଙ୍କ ପ୍ରାଣ ଓ ମାନ –

ରାମକୃଷ୍ଣ – ଭାଉଜଙ୍କ ମାନ ? ମାନେ ? ତାଙ୍କ ସମ୍ମାନରେ –

ଗଦା – ଆପଣଙ୍କ ଭାଉଜଙ୍କ ସମ୍ୱନ୍ଧରେ ଆପଣ ଯାହା ସନ୍ଦେହ କରୁଚନ୍ତି, ସେ କଣ ଏ ମକଦ୍ଦମା ଶୁଣାଣି ହେଲେ ଲୁଚି ରହିବ ବୋଲି ଆପଣ ଆଶା କରୁଚନ୍ତି ରାମକୃଷ୍ଣ ବାବୁ ?

ରାମକୃଷ୍ଣ – ମୁଁ ତ ସନ୍ଦେହ କେବେ କରି ନ ଥିଲି, କିନ୍ତୁ –

ଗଦା – ହୁଁ, ଆପଣ ସନ୍ଦେହ କରି ନ ଥିଲେ, କିନ୍ତୁ ? କିନ୍ତୁ କେହି କହିଲେ ନା ?

ରାମକୃଷ୍ଣ – କ୍ଷମା କରିବେ, ମୁଁ ଆଉ କିଛି କହି ପାରିବିନି ।

ଗଦା – ହୁଁ, କହିବେନି । ନ କହନ୍ତୁ । କିନ୍ତୁ ସେ ଚିଠିଟା କଣ କଲେ ?

ରାମକୃଷ୍ଣ – ମୋ ହାତ – ନା ନା ସେ, ଆପଣ ମତେ ନା – ମୁଁ ଆଉ କିଛି କହିବିନି ।

ଗଦା - ହୁଁ, ହାତ ବାକ୍ସରେ ରଖିଚନ୍ତି ନା, ଆଚ୍ଛା ଯାଉ ସେ କଥା । ଆପଣ ଯାନ୍ତୁ । ଆରେ, ଆପଣଙ୍କ ମୁଣ୍ଡରେ ଏଇଟା କଣ ଲାଗିଚି । ଦେଖି ସେ ଉଠିଯାଇ ତାଙ୍କ ମୁଣ୍ଡ ଦେଖିବା ବାହାନାରେ ତାଙ୍କ ହାତରେ ଲୁଚା ହୋଇଥିବା ଗୋଟିଏ ଛୋଟ କତୁରୀରେ ଦି ଚାରିଟା ବାଳ କାଟି ପକେଟରେ ପୂରାଇ ନେଲେ ତା ପରେ ତାଙ୍କୁ ବିଦାୟ କଲେ ।

ତାପରେ ଆସିଲେ ହରେକୃଷ୍ଣ ବାବୁଙ୍କ ସ୍ତ୍ରୀ ଶ୍ରୀମତୀ ବିମଳା ଦେବୀ ସୁନ୍ଦରୀ । କୌଣସି ସ୍ତ୍ରୀକୁ ଅସୁନ୍ଦରୀ ବୋଲି କହିବାର ଅଧିକାର କାହାରି ନାହିଁ । କାରଣ ସେ କାହରି ନା କାହାରି ସୁନ୍ଦରୀ ନିଶ୍ଚୟ । ମତେ ଯେ ଅସୁନ୍ଦରୀ ଦିଶନ୍ତି, ସେ ହୁଏତ ତୁମକୁ ତାଙ୍କର ମାଦକତାରେ ପାଗଳ କରି ରଖିଚନ୍ତି । ମୋର ପ୍ରେୟସି ଯାହାଙ୍କୁ ମୁଁ ଜଗତର ଶ୍ରେଷ୍ଠ ସୁନ୍ଦରୀ ବୋଲି ଭାବେ ଓ ସ୍ୱର୍ଗର ଦେବୀ, ଘରର ଲକ୍ଷ୍ମୀ ବୋଲି ପୂଜା କରେଁ ସେ ହୁଏତ ତୁମ ଆଖିରେ ମୋଟୀ, ବାଙ୍ଗେରୀ ଓ ଦାନ୍ତୁରୀ ବୋଲି ଜଣା ପଡ଼ିପାରନ୍ତି । କେଦାରକୁ ତାର ଗୌରୀ ସୁନ୍ଦରୀ, ମଜ୍‌ନୁକୁ ତାର ଲୟଲା ସୁନ୍ଦରୀ । ନାରୀ ସୌନ୍ଦର୍ଯ୍ୟର ମାପକାଠି ପ୍ରେମିକାର ଆଖିରେ ତାର ସୌରଭ ପ୍ରେମିକ ହୃଦୟର ନନ୍ଦନ କାନନରେ । ବିମଳା ଯୁବତୀ, ବୟସ ୨୦/୨୧ ଭିତରେ, ବର୍ଣ୍ଣ ଗୋରା, ହଳଦିଆ ଗୋରୀ, ଅଉଟା ସୁନା ପରି । ମୁହଁଟି ଥାଳି ପରି ଗୋଲ, ଓଠ ତଳେ ଗୋଟିଏ କଳାଜାଇ ମନ୍ଦା । ଓଠ ଯୋଡ଼ିକ ସରୁ ସରୁ । ନାକଟି ସରୁ କିନ୍ତୁ ଟିକିଏ ଉଚା । ଆଖି ଯୋଡ଼ିକ ଓସାରିଆ, କିନ୍ତୁ ସେଥିରେ ତରଳ ଭାବ କିଛି ନାହିଁ । କାରଣ ସେଥିରୁ ତୁମର ବା ମୋର କିଛି ମାତ୍ର ଲାଭ ନାହିଁ ।

ସେ ଆସି ଠିଆ ହେଲେ, ଗଦାଧର ମଧ ଉଠି ଠିଆ ହେଲେ ଓ ତାଙ୍କୁ ବସିବାକୁ ଅନୁରୋଧ କଲେ । ତା ଶୁଣିଲେନି । ଗଦାଧର ପୁଣି ବସିପଡ଼ି ପଚାରିଲେ "ଆପଣ ଜାଣନ୍ତି ଆପଣଙ୍କ ସ୍ୱାମୀ ଆପଣଙ୍କୁ ଏ ମକଦ୍ଦମାରୁ ରକ୍ଷା କରିବା ପାଇଁ ମତେ ଲଗାଇଚନ୍ତି ?" ବିମଳା ତଥାପି ନିରବ ।

ଗଦା - ମୋର କେତେଟା କଥା ପଚାରିବାର ଅଛି, ତାର ଠିକ୍ ଠିକ୍ ଜବାବ୍ ଦବାକୁ ହେବ ଆପଣଙ୍କୁ ।

ବିମଳା - ମୋର ଯାହା କହିବାର ଅଛି, ମୁଁ ପୁଲିସକୁ କହିଚି, ମୋର ଆଉ କିଛି କହିବାର ନାହିଁ ।

ଗଦା - ତା ହେଲେ କଣ ଆପଣ ଯେ ଅପଣଙ୍କ ସ୍ୱାମୀ ଘରେ ନ ଥିଲା ବେଳେ, ଅନ୍ୟ ପୁରୁଷମାନଙ୍କୁ ହେଇ ହେଇ ମଦନ ବାବୁଙ୍କୁ ଘେନି ରହନ୍ତି -

ବିମଳା - ଚୁପ୍, ଚୁପ୍, ଛୋଟ ମୁହଁରେ ବଡ଼ କଥା !

ଗଦା - ଏ କଥା ତା ହେଲେ ସତ ? ତୁମର ସ୍ୱାମୀ -

ବିମଳା - ସେ କଣ ଏକୁ ସତ ବୋଲି ବିଶ୍ୱାସ କରନ୍ତି ?

ଗଦା - କରିବେନି ? ଅପାଣ ଯଦି ମନ ଖୋଲି ସବୁ କଥା ନ କହିବେ, ମଣିଷ ମାରୁ ମକଦ୍ଦମାରେ ବିଚ ଅଦାଲତରେ ଆସାମୀ ଠିଆ ହେବେ ପଛକେ, ଏ ଅଳଙ୍କାର ସବୁ ଆପଣଙ୍କ କୁଠୁ ପାଇଲେ ସେତକ ମଧ୍ୟ ତାଙ୍କୁ ନ କହିବେ, ତା ହେଲେ ସେ ବା ଆଉ କେହି କଣ ବିଶ୍ୱାସ କରିବ ?

ମୂହର୍ତ୍ତକ ଲାଗି ବୋଧହୁଏ ବିମଳାଙ୍କର ଆଖି ଛଳଛଳ ହେଇ ଉଠିଲା ପରା । ଠିକ୍ କହି ହଉନି । ତାଙ୍କର ଆତ୍ମସଂଯମ ଅସମ୍ଭବ । ଗୋଟିଏ ନିଶ୍ୱାସ ତାଙ୍କ ଦିହ ଥରାଇ ବାହାରି ପବନରେ ମିଶି ଗଲା । ବେଶ୍ ଏତିକି । ତା ପରେ ସେ ସହିପରି ଉଦାସ ହେଇ ରହିଲେ କିଛି କହିଲେନି । କେବଳ ତାଙ୍କ ପାଟିଟା ଆଉରି ବେଶୀ ଭିଡ଼ି ହୋଇଗଲା । ଗଦାଧର ଏ ସବୁ ଲକ୍ଷ୍ୟ କଲେ । ତାଙ୍କର ମନଟା ଅସହଣିକ ହୋଇ ଉଠିଲା । ୟାଙ୍କ ମନରେ ଏ ନିବିଡ଼ ମୁଦକୁ ଭାଙ୍ଗିବା ଲାଗି ତାଙ୍କର ସେ ଅପ୍ରାକୃତିକ ଧୈର୍ଯ୍ୟବନ୍ଧକୁ ଚୂନା କରିବା ପାଇଁ ତାଙ୍କର ମନ ଉତ୍କ୍ଷିପ୍ତ ହୋଇ ଉଠିଲା । ସେ କିଛି ସମୟ ବସି ଭାବିଲେ ତା ପରେ ଗମ୍ଭୀର ଓ ଗଭୀର ଭାବରେ କହିଲେ, “ଭଲ, ଆପଣଙ୍କ ସ୍ୱାମୀଙ୍କର ପଦମର୍ଯ୍ୟାଦ, ଆପଣଙ୍କ ଦିଅରଙ୍କ ପ୍ରାଣ - ଏ ସବୁ ଆପଣଙ୍କ ପାଖରେ କିଛି ନୁହେଁ । ଅଥଚ ଆପଣ କହିବାକୁ ଚାହାନ୍ତି ଯେ ଆପଣ ପତିବ୍ରତା । ଗୋଟିଏ ଦୁଶ୍ଚରିତ୍ର, ଲମ୍ପଟ, ନିଶାଖୋରର ଜୀବନ ଯାହା ଆଖିରେ ଏ ସବୁଠୁ ବଡ଼ ସେ ବିଟପୀ ଓ କୁଳ ନାଶିନୀ ନୁହେ ତ ଆଉ କିଏ ? ଅଥଚ ଆସ୍ପର୍ଦ୍ଧା ଯେ ଏଡ଼େ ବଡ଼ ଆଘାତ ପରେ ମଧ୍ୟ ତାଙ୍କ ସ୍ୱାମୀ ତାଙ୍କ କଥାରେ ବିଶ୍ୱାସ କରିବେ । ଆସ୍ପର୍ଦ୍ଧ ଯେ ଲୋକେ ତାଙ୍କୁ ସତୀ ସାବିତ୍ରୀ ବୋଲି ପୂଜା କରିବେ ।”

ତାଙ୍କର ବାକ୍ୟ ବାଣ ବନ୍ଦ ହେଲା । ସେ ଛଅଣ ଭଳି ବିମଳାଙ୍କ ଆଡ଼କୁ ଚାହିଁଥାନ୍ତି । ଲକ୍ଷ୍ୟ କଲେ, ତଥାପି ବିମଳା ନିରବ । କିନ୍ତୁ ଏଥରକ ସେ ବେଶ୍ ବୁଝି ପାରିଲେ, ବିମଳାଙ୍କ ଆଖିରୁ ତାଙ୍କ କଥାର ଭିତରେ ଭିତରେ ନିଆଁ ଝଲସି ଉଠୁଥାଏ । ତାଙ୍କର ହାତ ଦୁଇଟା ମୁଠା ମୁଠା ହେଇ ଯାଉଥାଏ । ତଥାପି ସେ ନିରବ । ଗଦାଧର ପୁଣି କହି ଚାଲିଲେ, “ଆପଣ ଯେତେ ଲୁଚାଇଲେ ମଧ ଆପଣଙ୍କର ପାପ ଛପି ରହିବନି । ଆପଣ ଆପଣଙ୍କ ପ୍ରେମିକକୁ ନିରବ ରହି ବଞ୍ଚାଇ ପାରିବେନି । ମୁଁ ହଲପ କରି କହୁଚି, ମୁଁ ମଦନକୁ ଫାସି କାଠରେ ଝୁଲାଇବି, ଝୁଲାଇବି ।”

ଏଥର ସେ ଲକ୍ଷ୍ୟ କଲେ ବିମଳାଙ୍କ ମୁହଁରେ ପ୍ରଥମେ ଆଶ୍ଚର୍ଯ୍ୟର ଭାବ, ତା ପରେ କିଛି ବୁଝି ନ ପାରିବାର ଭାବ ଓ ଶେଷରେ ଘୃଣା ଓ ତାଚ୍ଛଲ୍ୟର ଭାବ ଗୋଟିକ ପରେ ଗୋଟିଏ ଉଇଁ ଲିଭିଗଲା । ଗଦାଧର ଯେପରି ଏଥର କୂଳ ପାଇଚନ୍ତି । ତାଙ୍କ ମୁହଁରେ ହସ ଟିକିଏ ମୃଦୁକେଇ ଗଲା । ସେ ଗମ୍ଭୀର ହୋଇ କହି ଚାଲିଲେ, “ଆଉରି ମଧ ମୁଁ ପ୍ରତିଜ୍ଞା କରୁଚି, ଆପଣଙ୍କର ଭାଇ, ସେଇ ଲମ୍ପଟ, ନିଶାଖୋରଟାକୁ ମଧ” - ଶିଖଣ୍ଡିକୁ ଦେଖି ଭୀଷ୍ମଙ୍କର ଦମ୍ଭ ଭାଙ୍ଗିଗଲା ।

ବିମଳା ଚମକି ପଡ଼ିଲେ । ତାଙ୍କର ଦିହ ଥରିଗଲା । ସେ କହି ପକାଇଲେ "ନାଇଁ, ନାଇଁ, ସେ କଥା କହନି । ସେ କିଛି କରିନି । ସେ ନିର୍ଦ୍ଦୋଷ । ମୁଁ ମାରିଚି, ମୁଁ ମାରିଚି, ଆଉ କେହି ନୁହେଁ, ମୁଁ ମାରିଚି, ମୁଁ ଆସାମୀ । ମୁଁ ଦୋଷ ମାନୁଚି । ତୁମେ କିଏ ତା ଭିତରକୁ ଆସିବା ପାଇଁ ? ମୁଁ ତୁମକୁ ଡାକିନି । ମୁଁ ତୁମକୁ ଏ ମକଦ୍ଦମାରେ ଲଗାଇନି ମୁଁ ତୁମକୁ ଚାହେଁନି । ମୁଁ ତମ ସାଙ୍ଗରେ କୌଣସି କଥା କହିବିନି । ଜେଲର ବାବୁ ମୋତେ ଭିତରକୁ ପଠାଇ ଦିଅନ୍ତୁ ।"

ସେ ଉଦ୍‌ଭ୍ରାନ୍ତ, ସେ ବାୟାଣୀ ବାଘୁଣୀ ପାଖରୁ ତା ଛୁଆକୁ ନବା ପାଇଁ ଆସିଲେ ସେ ଯେପରି ହୁଏ, ସେହି ପରି ବିମଳା ଦେବୀ ହଉଚନ୍ତି, ଜେଲର ଗଦାଧରଙ୍କୁ ଚାହିଁଲେ, ଗଦାଧର ମୁଣ୍ଡ ଟୁଙ୍ଗାରି ଦେଲେ । ଜେଲର ବାବୁ ବିମଳାଙ୍କୁ ଭିତରକୁ ପଠାଇ ଦେଲେ ।



## ପାଞ୍ଚ

ମହାଦେବ ବାବୁଙ୍କୁ ଘରେ ତାଙ୍କ ମା'ଙ୍କର ଶ୍ରାଦ୍ଧ ଉତ୍ସବ । ତାଙ୍କ ବୁଢ଼ୀ ମା'ଙ୍କୁ ନିଷ୍ଠୁର ଭାବରେ ହତ୍ୟା କରାଯାଇଚି । ତାଙ୍କର ସର୍ବସ୍ୱ ଲୁଟି କରି ନିଆଯାଇଚି । ତଥାପି ସମାଜ କହେ ତାଙ୍କ ଶ୍ରାଦ୍ଧ ପାଇଁ ତାଙ୍କୁ ଆଡ଼ମ୍ବର କିରବାକୁ ପଡ଼ିବ । ଭାଇମାନେ ପିଟା ଖାଇବେ ଲୁଗା ପିନ୍ଧିବେ, ମଧୁର ଖାଇବେ, ବ୍ରାହ୍ମଣ ଭୋଜନ ହେବ । ଦଶ ହଜାର ଟଙ୍କା ତ ଯାଇଚି ତା ସଙ୍ଗରେ ଆଉ ପାଞ୍ଚ ଶହ ଘରେ ଖର୍ଚ୍ଚ ହେବ । ଏତିକି ବେଳେ ମଧ ଭାଇ ବିରାଦଙ୍କର ସାଧିବା ବେଳ । ତାଙ୍କର ଓ ତାଙ୍କ ବାପା ଗୋସେଇଁ ବାପାଙ୍କର କୁକାଜର କୁ କଥା ପଡ଼ିବ । ମୀମାଂସା ହବ, ସେ ନତ ମସ୍ତକ ହେବେ । ଏଇଆ ହିଁ ସମାଜର କଥା । ସମାଜ ବ୍ୟକ୍ତିର ହିସାବ ରଖେନି । ସେ ତାର ଚିରଚରିତ ପନ୍ଥା ଧରି ଗଡ଼ି ଚାଲିଚି । ଲୋକେ କହନ୍ତି ସେ ସମାଜ ଆଉ ନାହିଁ । ସେ ଭାଙ୍ଗି ଗଲାଣି ବା ଭାଙ୍ଗିବା ଉପରେ । ମିଛ କଥା । ସମାଜ ଓ ବ୍ୟକ୍ତି ମଧରେ ଯେ ବାଡ଼ିଆ ପିଟା ସେ ଯାଇନି । ସେ ଆଉରି ଘନିଷ୍ଠ ହେଉଚି । ସମାଜର ବ୍ୟକ୍ତି ଉପରେ ଯେ ଅତ୍ୟାଚାର ସେ ଭାଙ୍ଗିନି, ସେ ଆଉରି ଜୋରରେ ଆସନ ମାଡ଼ି ବସୁଚି । ଇଲେ ସଂସାର ଯେ ରକମ ଗଢ଼ି ଉଠୁଛି, ସେଥିରେ ବ୍ୟକ୍ତିର କୌଣସି ଅଧିକାର ନାହିଁ । ଆଗ କାଳେ ସମାଜରେ ସମାଜ ଓ ଶାସନ ଦୁଇଟା ଅଲଗା ଅଲଗା ପ୍ରଭାବ ବ୍ୟକ୍ତି ଉପରେ ମାଡ଼ି ବସୁଥିଲେ । ବ୍ୟକ୍ତି ସମାଜ ଓ ଶାସନ ମଧରେ ବାଡ଼ିଆ ପିଟା ଲଗାଇ ଦେଇ ଟିକିଏ ନିଶ୍ୱାସ ମାରିବାକୁ ବେଳ ପାଉଥିଲା, ଟିକିଏ ସ୍ୱାଧୀନତା ପାଇବାକୁ ଚେଷ୍ଟା କରୁଥିଲା । ଆଗେ ଯେବେ ସମାଜ ମତେ ଦଣ୍ଡ ଦେବାକୁ ଯାଉଥିଲା, ମୁଁ ରଜା ଦୁଆରେ ଫେରାଦି ହୋଇ ପାରୁଥିଲି ଓ ରଜାଙ୍କ ଅନୁଗ୍ରହ ପାଇ ପାରିଲେ ସମାଜକୁ ବୁଢ଼ା ଅଙ୍ଗୁଳି ଦେଖାଇବାର ଆଶା ଅନ୍ତତଃ କରି ପାରୁଥିଲି । ଇଲେ ଆଉ ତା ହବନି, ହଉନି । ସମାଜ ଓ ଶାସନ ଆପଣା ଆପଣା ଭିତରେ ଲଢ଼େଇ କରି ଦେଖି ନେଲେ ଯେ ଏ ଲଢ଼େଇରେ ବ୍ୟକ୍ତିର ହିଁ

ସୁବିଧା, ତାଙ୍କର ନୁହେଁ। ଫଳରେ ସେମାନେ ଏବେ ଏକ ହୋଇ ଗଲେଣି। ହେବାକୁ ଚେଷ୍ଟା କଲେଣି। ବଳ ସେବି ଓ ସାମ୍ୟବାଦୀ ରାଷ୍ଟ୍ରରେ ସମାଜ ଓ ଶାସନ ଏକ। ଏ ଦୁଇ ଶକ୍ତିର ଏକତ୍ର ଆଘାତରେ ବ୍ୟକ୍ତି ପେଷି ହୋଇଗଲାଣି। ବ୍ୟକ୍ତିର ଏକମାତ୍ର ଉପାଦେୟତା ସମାଜ ଓ ଶାସନର ଗୋଲାମି କରିବାରେ, ତାର ନିଜର ମତ ରୁଚି ବା ବିଚାର ବୋଲି କିଛି ନାହିଁ। ସମାଜ ଓ ଶାସନ କହେ ଏହା ଦେବାକୁ ହବ। ସେ କରିବ। ମହାଦେବ ବାବୁ କରି ଯାଉଚନ୍ତି। ଆଜି ଦଶାହ ବ୍ରାହ୍ମଣ ଭୋଜନ ହବ। ବନ୍ଦୋବସ୍ତ ଚାଲିଚି। ଘରେ ବନ୍ଧୁବାନ୍ଧବ ଜ୍ଞାତି ଭଗାରି ଗୋଛାଏ ହୋ ହୋ ହଉଚନ୍ତି। ଏ କାମ ଉଧୁରିବା ଲାଗି ମହାଦେବ ବାବୁ ବାହାରୁ କେତେକ ଲୋକ ଲଗାଇଚନ୍ତି। ପାଣି ଆଣିବା, ମସଲା କୁଟିବା, ପତ୍ର ସଜାଡ଼ିବା ଇତ୍ୟାଦିରେ ସେମାନେ ବ୍ୟସ୍ତ। ଦାଣ୍ଡ ଦୁଆରେ ଗୋଟିଏ ଦରବୁଢ଼ା ଭିଖାରି ବସି ଯେ ଯାଉଚି ତାକୁ କଣ ଖାଇବାକୁ ମାଗୁଚି। ପିନ୍ଧିଚି ଛିଣ୍ଡା ଲୁଗା ଖଣ୍ଡେ କୌପୁନି ଭଳିଆ, ଦିହରେ ଖଣ୍ଡେ କମିଜର ଅବଶିଷ୍ଟାଂଶ। ଗୋଟିଏ ହାତ କହୁଣି ପର୍ଯ୍ୟନ୍ତ ଚିରି ପଡ଼ି ଯାଇଚି। କାନ୍ଧ ଉପରଟା ଫଟା। ଆଉ ଗୋଟାଏ ହାତରେ ଅନ୍ତତଃ ୮ଟା ଫାଟ, ଦିହ ଯାକ ମଧ୍ୟ ସେହିପରି, ମୁହଁରେ ଗୁଡ଼ିଏ ଅପରିଷ୍କାର ଦାଢ଼ି ନିଶ ମୁଣ୍ଡରେ କୁଞ୍ଚୁ କୁଞ୍ଚୁଆ ବାଳ ଗୁଡ଼ାକ ଧୂଳି ମଳିରେ ଭରି ରହିଚି। ପାଦରେ ହଳେ ଛିଣ୍ଡା କଳା ଯୋତା କେତେ ତାଳି ପଡ଼ିଚି। ସେ କହୁଚି, "ବାବୁ, ବୁଢ଼ୀମା ବଞ୍ଚିଥିଲା ବେଳେ ମୁଁ ରାତି ରାତି ତାଙ୍କୁ ଜଗି ଏଇ ପିଣ୍ଡାରେ ପଡ଼ିଥାଏଁ। ସେ ମତେ ଭାତ ତୋଡ଼ାଣି ପେଜ ମୁନ୍ଦିଏ ମୁନ୍ଦିଏ ଦିଅନ୍ତି। ସେ ତ ଗଲେ, ତାଙ୍କ ଶୁଦ୍ଧ ଘରେ ମତେ ଖଣ୍ଡେ କନା କି ଗଣ୍ଡେ ଚୂଡ଼ା ବି ମିଳିଲାନି। ଏ ବାବୁ, ଦିଅମ ଦିଟା ତୁମରି ଧରମ ହବମ ବାବୁ।" କିଏ ଶୁଣୁଚି ? ଯେଝା କାମରେ ଯେ ବ୍ୟସ୍ତ। ଜଣେ ଲୋକ କିନ୍ତୁ ଶୁଣିଲା। ମୂଲିଆ ଭଳି ଦିଶୁନି ଯେ, ନାକ ତଳେ ଦିପଟା ନିଶ। ଗାଲ ଗୁଡ଼ାକ ଫୁଲକା ଫୁଲକା, ଆଖି ଭ୍ରୂଲତାର ବାଳ ଶିଉଳି ଖାଇଲା ପରି ଦେଖା ଯାଉଚି। ସେ ଗୋଟାଏ ଭାର ଘିନି ଯାଉଥିଲା ପାଣି ଆଣିବାକୁ। ତା କାନରେ ଏକଥା ସବୁ ପଡ଼ିଗଲାରୁ ସେ ଟିକିଏ ଠିଆ ହେଲା। ତାପରେ କହିଲା, "କାହିଁକି କେଟେରେ କେଟେରେ ହଉଚୁ ବା। ବସ୍ ବସ୍, ମିଳିଲା ବେଳେ ମିଳିବ। ରହ, ମୁଁ ଆସେ।" ସେ ପାଣି ପାଇଁ ଚାଲିଗଲା। ଆସିଲା ପରେ ପାଣି ରଖିଦେଇ ବାହାରକୁ ଆସି ଠିଆ ହେଲା। ସେ ଭିଖାରିଟା କହିଲା, "ବାବୁ, କଣ ଦବ ବୋଲି କହୁଥିଲ ପରା, କାଇଁ ଦେଲନିତ।" ସେ ଲୋକ କହିଲା, "ଏଁ, ବ୍ରାହ୍ମଣ ଗୋସେଇଁମାନେ ଖାଇ ନାହାନ୍ତି, ଯାକୁ ଆଗେ ଦେଇ ଦେବେ ଇଲେ।"

ଭିଖାରି – ଏ ଭାଇ, ନେହୁରା ହଉଚି, କିଛି ଖାଇନି ଦିନଯାକ ଦିଟା କଣ ଆଣିଦେ ଭାଇ ତୋର ବହୁତ ଧରମ ହେବ।

ସେ ଲୋକ – "କିଛି ଖାଇନୁ ଦିନ ଯାକ ? ଆଚ୍ଛା, ଆ ମୋ ସାଙ୍ଗରେ, ଦି ପଇସାର ମୁଢ଼ି କିଣିବା, ଖାଇବା" କହି ସେ ଆଗେ ଆଗେ ଚାଲିଲା ବଜାର ଆଡ଼େ। ଭିଖାରିଟା ଟିକିଏ ଥା ଥା ମା ମା ହୋଇ ତା ପଛ ଧଇଲା। ମହାଦେବ ବାବୁଙ୍କ ଘର ଗଳିରୁ ବାହାରି ସହର ରାସ୍ତା

ଉପରେ ହେଲା । ସେ ଲୋକଟା ଥମକି ଠିଆ ହେଲା । ଭିଖାରି ତା ପାଖକୁ ଆସିଲା । ଗୋଟାଏ ଦୋକାନରୁ ଦି ପଇସାର ମୂଢ଼ି କିଣି ତା ଅଣ୍ଟିରେ ଦେଇ ଦୋକାନ ଆଗ ଗଛ ମୂଳେ ତାକୁ ବସାଇଲା ଓ ନିଜେ ବସିଲା । କହିଲା, "ତୁ କଣ ମା'ଙ୍କୁ ଜଗି ଶୋଉ ବୋଲି କହିଲୁଣି ?"

ଭିଖାରି – କଥା କଣ କି ବାବୁ, ମୁଁ ତ ବାରବୁଲା ମଣିଷ, ଏଣେ ତେଣେ ବୁଲେ ଦିନ ଯାକ ରାତିରେ ତାଙ୍କ ଦାଣ୍ଡ ପିଣ୍ଡାରେ ଶୁଏ ।

ଲୋକ – ବୁଢ଼ୀ ଯୁ ଦିନ ମଲେ ସେ ଦିନ ରାତିରେ କଣ ସେଠି ଶୋଇଥିଲୁ ?

ଭିଖାରି – ସେଇତ ମଜର କଥା ।

ଲୋକ – କଣ ମଜାର କଥା ମ ?

ଭିଖାରି – ଉଁ ହୁଁ, କହିବିନି । ଦେ ଆଉ ଦି ପଇସା ଦେ ।

ଲୋକ – ଆଚ୍ଛା ତୁ କହ, ତା ପରେ ଦି ପଇସା କିଆଁ ଚାରି ପଇସା ଦେବି ।

ଭିଖାରି – କଥା କଣ କି ସେଦିନ ସଞ୍ଜ ବେଳେ ମୁଁ ତାଙ୍କ ଦୁଆରେ ଶୋଇଥିଲି । ପଡ଼ିଶା ଘର ବାବୁଆଣୀ ଆସିଥିଲେ ମା'ଙ୍କ ପାଖକୁ । ସେ ଚାଲିଗଲେ । ମା ଦୁଆର ଦବାକୁ ଆସି ମତେ କହିଲେ ଆଇଲୁଣି କିରେ । ହଉ ଶୋ, ଖାଇଚୁ ? ମୁଁ କହିଲି ନାଇଁ ମା । କିଛି ଖାଇନି । ସେ ଘରକୁ ଯାଇ ଗୁଡ଼େ ତୋଡ଼ାଣି, ଦିଟା ଭାତ ଆଣି ଦେଲେ । ମୁଁ ଖାଇ ବସିଲି । ସେ ଦୁଆର କିଳି ଶୋଇବାକୁ ଗଲେ । ମୁଁ ଖାଇସାରି ଶୋଇବାକୁ ଯାଉଚି ଜଣେ ଲୋକ ଆସିଲା, କହିଲା, "ବେ, ଭୋଜି ହଉଚି ଗୋଟାଏ ଠି ଯିବୁ ?" ମୁଁ କହିଲି, "ମତେ କଣ ମିଳିବ ଗଲେ ?" "ହଁ ରେ, ଗରିବ ଭୋଜନ, ଯେ ଯାଉଚି ସେ ପେଟପୂରା ଖାଉଚି ଆଉ ଗଣ୍ଡେ ପଇସା ପାଉଚି ।" ମୁଁ କି ଆଉ ସମ୍ଭାଳି ହୁଏ । ଗଲି ତା ପଛେ ପଛେ ଗାଁ ଆର ପଟେ ସେ ଯୁ ବଗିଚାଟା ଅଛି ସେଠିକି ମତେ ନେଲା । ସେଠି ଘରଟିଏ ଅଛି । ମତେ ପେଟେ ଖାଇବାକୁ ଦେଲା । ଯାହା ଖାଇ ପାରିଲି ଖାଇଲି, ବାକି ତକ ବାନ୍ଧିଲି କାନିରେ । ଚାରିଟା ପଇସା ଦେଲା, କହିଲା, "ଆରେ ରାତିତ ବହୁତ ହେଲାଣି, ଆଉ କୁଆଡ଼େ ଯିବୁ, ଏଇଠି ଶୋଇପଡ଼ ।" ପେଟ ତ ଭାରି ହେଇଥିଲା । ତାରି କଥାମାନି ମୁଁ ସେଠି ଶୋଇପଡ଼ିଲି ।

ସେ ଲୋକ – ହୁଁ ବେଶ୍ କଲୁ । ତା ନ ହେଲେ ତୋର ଏ ଦାମିକା ଜୀବନଟା ଅକାରଣେ ଯାଇଥାନ୍ତା ଯମପୁରକୁ ।

ଭିଖାରି – ଏଁ କଣ କହିଲ ?

ସେ ଲୋକ – କିଛି ନି, ଶୁଣୁ ମୁଁ ତତେ ଏହି ଦି ଅଣା ପଇସା ଦେଲି ତୁ ଏ କଥା ଆଉ କାହାରିକୁ କହିବୁ ନାହିଁ ତ ? ଯେବେ ନ କହିବୁ ତିନି ଦିନ ପରେ ମୁଁ ତତେ ଆଉରି ଆଠ ଅଣା

ପଇସା ଦେବି । ଆଉ ଗୋଟିଏ କଥା ତୁ ସବୁ ଦିନ ସେଇ ମହାଦେବ ବାବୁଙ୍କ ଘର ପାଖରେ ରହିଥିବୁ । ମୁଁ ପ୍ରତିଦିନ ଆସି ଚତେ ଖାଇବାକୁ ଦେବି । ମୋ କଥା ଯେବେ ନ ମାନିବୁ, ତା ହେଲେ କିଛି ବୋଇଲେ କିଛି ଦେବିନି ।

ତିନି ଦିନ କାଳ କିଛି ନ କରି ଶୋଇ ଶୋଇ ଖାଇବାକୁ ମିଳିବ ଓ ତା ଉପରେ ପୁଣି ଆଠ ଅଣା ପଇସା – ବାରେ, ଏକଥା କିଏ ଛାଡ଼େ । ଭିଖାରି ମଙ୍ଗିଲା । ତା ପରେ ସେ ଲୋକଟା ସେଠାରୁ ଉଠି ଚାଲିଗଲା । ମହାଦେବଙ୍କ ଘର ଆଡ଼କୁ । କିନ୍ତୁ ମହାଦେବଙ୍କ ଘରକୁ ନ ଯାଇ ସେ ତାଙ୍କ ଘର ପାଖ ମଦନବାବୁଙ୍କ ଘର ଭିତରକୁ ପଶିଗଲା । ଦୁଆର ମେଲା ଥିଲା । ଘର ଭିତରକୁ ଯାଇ ତା ଖୋସେଣି ଭିତରୁ ଗୋଟିଏ ଛୋଟ ଟର୍ଚ୍ଚ ବାହାର କଲା ଓ ତାରି ଆଲୁଅରେ ଘର ଭିତରୁ ଅଗଣାକୁ ଗଲା । ଅଗଣାରେ ଗୋଟାଏ ପାଚେରୀ ମୂଳରେ କେଇଟା ଲମ୍ବା ଲମ୍ବା ବାଉଁଶ ପଡ଼ିଥିଲା ସଭା ଉପର ବାଉଁଶଟା ଆଡ଼େଇ ନେଇ ସେ ତାକୁ ତା ଆଲୁଅରେ ଭଲ କରି ପରୀକ୍ଷା କରିନେଲା । ତା ପରେ ଆଲୁଅ ପକାଇ ପାଚିରି ଏପଟ ଚାଳଟାକୁ ନିରିଖି ନିରିଖି ଦେଖିଲା । ଏତିକି ବେଳେ ବାହାରୁ ଦାଣ୍ଡ ଦୁଆର ମେଲାଇବାର ଓ କେହି ଲୋକ ଘର ଭିତରକୁ ଆସିବାର ଶବ୍ଦ ଶୁଣାଗଲା । ଏ ଲୋକଟା ତା ହାତ ଆଲୁଅ ବନ୍ଦ କରିଦେଇ ଅଗଣାରୁ ଉଠି ଦାଣ୍ଡ ଘରର ଭିତର ପଟ ବାରଣ୍ଡା କୁଣରେ ଲୁଚି ଠିଆ ହୋଇଗଲା । ସେ ଦୁଆର ମେଲା କରି ପଶି ଆସିଲେ ପିଣ୍ଡାକୁ ମଦନ ବାବୁ । ସେ ଆସିବା ସାଙ୍ଗେ ସାଙ୍ଗେ, ଏ ଲୋକଟା ତାଙ୍କ ଉପରକୁ ଡେଇଁ ପଡ଼ିଲା । ମଦନ ବାବୁ ଏପରି ଅପ୍ରତ୍ୟାଶିତ ଭାବରେ ଆକ୍ରାନ୍ତ ହେବା ଦ୍ୱାରା ମୂକ ବନିଗଲେ, ପାଟି ତୁଣ୍ଡ କରି ପାରିଲେନି । ଏ ଲୋକଟା ତାଙ୍କୁ ମାଡ଼ି ବସିଲା । ତାଙ୍କ ପିଠି ଉପରେ ବସି ଗୋଟାଏ ଛୋଟ କତୁରିରେ ତାଙ୍କ ମୁଣ୍ଡରୁ କିଛି ବାଳ କାଟି ନେଲା ଓ ତାର ଟର୍ଚ୍ଚ ଟା ମାରି ମଦନର ଦି ହାତ ପାପୁଲି ମେଲା କରି ଦେଖିନେଲା । ମଦନଙ୍କର ବାଁ ହାତ ପାପୁଲିର ମଝିରେ ଚମଡ଼ା ଉଠି ଯାଇଥିବାର ଗୋଟିଏ ଛୋଟ ଦାଗ ଦେଖାଗଲା । ଏତିକି କରିସାରି ସେ ଲୋକଟା ମଦନଙ୍କ ଉପରୁ ଉଠି ଦାଣ୍ଡ ଘର ଦେଇ ବାହାରକୁ ଚାଲିଗଲା ଓ ଦାଣ୍ଡ ଗହଳିରେ ନିଜକୁ ମିଶାଇ ଦେଲା । ସବୁ ଘଟଣା ଗୁଡ଼ିକ ଏତେ ଜଲଦି ହୋଇଗଲା ଯେ, ସେ ଉଠି ଚାଲିଯିବା ପର୍ଯ୍ୟନ୍ତ ମଦନ ବୁଝିପାରିଲେନି କଣ ହଉଚି, ତାଙ୍କ ଉପରକୁ ଭାର ଯେତେବେଳେ କମିଗଲା ସେ ଉଠିଲେ । ବସି କିଛି ସମୟ ଭାବିଲେ, ତାପରେ ତାଙ୍କ ବାଁ ହାତ ପାପୁଲି କି ଚାହିଁଲେ ଘର ଭିତରର ଲଣ୍ଠନ ଆଲୁଅରେ । ତାପରେ ଘର ଭିତରକୁ ଯାଇ ଚାରିଆଡ଼ ଖୋଜିଲେ । ଦେଖିଲେ ଯୁ ଜିନିଷ ଯୁଠି ଥିଲା ସେଇଠି ଅଛି । ତା ପରେ ସେ ତାଙ୍କ ଖଟ ଉପରେ ବସି କିଛି ସମୟ ଭାବିଲେ, କଣ କେଜାଣି, ଭାବି ଭାବି ସେ – କୌଣସି ଶେଷ ସିଦ୍ଧାନ୍ତରେ ପହଁଚିଲେ ଯେପରି, ତାଙ୍କର ମୁହଁରେ ଦୃଢ଼ ନିଷ୍ଠୁରତାର ଗୋଟାଏ ନିଶ୍ଚିତ ଭାବରେ ବିଭୀଷିକା ଖେଳିଗଲା ।



## ଛଅ

ବ୍ରହ୍ମପୁରରେ ଗଦାଧର ବାବୁଙ୍କ ଘର । ଗଦାଧର ବାବୁ ତାଙ୍କ ବୈଠକଖାନାରେ ଗୋଟାଏ ଚୌକିରେ ବସି ଟେବୁଲ ଉପରେ ଗୋଡ଼ ଥୋଇ ଓ ଟେବୁଲ ଦାଢ଼ରେ ଟବଲା ବଜାଉ ବଜାଉ ନରହରିଙ୍କ ଉପରେ ବକ୍ତୃତା ଝାଡୁଛନ୍ତି । "ପାଠଶାଠ ଗୁଡ଼ାଏ ପଢ଼ି ଏଇ ସାମାନ୍ୟ କଥାଟା ଯେବେ ତୁମର ସେଇ ସିମେଣ୍ଟ କଂକ୍ରିଟର ମଗଜ ଭିତରେ ନ ପଶିଲା ତାହେଲେ ତୁମ ବାପାଙ୍କ ପ୍ରତି ପ୍ରକୃତରେ ସହାନୁଭୂତି ଦେଖାଇବାର କଥା । ଏଥିରେ ଭଲା ଏପରି କଣ ଅବୁଝା କଥା ରହିଲା ? ତୁମର ସାଧାରଣ ଜ୍ଞାନ ବା common sense ଗୋଟାଏ ମନଗଢ଼ା କଥା । ତୁମ ହିସାବରେ ସାଧାରଣଜ୍ଞାନ ବା ବିବେକ ଯେପରି ଗୋଟାଏ ନିଷ୍ଚିତ ଓ ପରିମିତ ପଦାର୍ଥ, ଏତିକି ଲମ୍ବା, ଏତିକ ଓସାରିଆ, ଏତିକି ଉଚ୍ଚ ଏତିକି ଓଜନର ଗଦାଏ ଅଦେଖା ଅଶୁଣା ଜିନିଷ । କିନ୍ତୁ ପ୍ରକୃତରେ ସେ ସେପରି କିଛି ନୁହେଁ । ରବର ଖଣ୍ଡେ ଭଳି ସେ କେତେବେଳେ ପାଞ୍ଚ ହତା ଲମ୍ବି ହୋଇ ଯାଇ ପାରେ ଆଉ କେତେବେଳେ ମଧ ପାଞ୍ଚ ଆଙ୍ଗୁଳି ।"

ନରହରି – ତୁମେ କଣ ଯେ କହ, ତାର କିଛି ବୁଝି ହୁଏନି । ସାଧାରଣଜ୍ଞାନ ବା common sense ଯେବେ ତୁମ କହିବା ଅନୁସାରେ ସ୍ଥିତିସ୍ଥାପକ ଶ୍ରେଣୀୟ ହୁଏ । ତା ହେଲେ ବିଶ୍ୱସଭ୍ୟତରେ ନୈତିକ ଯୋଗ୍ୟତାର କୌଣସି ଅର୍ଥ ରହିବ ନାହିଁ ଯେ ।

ଗଦା – ବାପରେ ବାପ । ମୋର ଏଇ ସାମାନ୍ୟ କଥାଟା ଭିତରେ ବିଶ୍ୱସଭ୍ୟତା, ନୈତିକ ଯୋଗ୍ୟତା ଭଳି ବଡ଼ ବଡ଼ କଥାଟା ମାନ ସମ୍ପେଇ ପରେ ବୋଲି ମୋର ମୋଟେ ଧାରଣା ନ ଥିଲା । ଆହେ ଭୃଷ୍ଟ ପଣ୍ଡିତେ ତୁମେ କହିଲ, ତୁମର ଜ୍ଞାନ ତୁମର ଅଭିଜ୍ଞତା ଉପରେ ନିର୍ଭର କରେ କି ନି ?

ନରହରି – ତା ନିଶ୍ଚୟ କରେ ।

ଗଦା – ତୁମର ଜ୍ଞାନ ଆଉ ପୁଣି ତୁମର ବୁଦ୍ଧି ଓ ବିଚାର ଶକ୍ତି ଉପରେ ନିର୍ଭର କରେ କି ନି ?

ନରହରି – ତା ଅବଶ୍ୟ କରେ ।

ଗଦା – ତେବେ ଆଉ କଣ ।

ନରହରି – କିଛି ବୁଝିପାରିଲି ନି ଯେ, ତା ହେଲେ ତୁମେ କଣ କହିବାକୁ ଚାହିଁ ଯେ ଯାହା ସେଠାରେ ନୈତିକ, ତାହା ମୋଠାରେ ଅନୈତିକ ।

ଗଦା – ନିଶ୍ଚୟ । ତୁମର ନେତା ଯେବେ ପାଞ୍ଚଟା ମାଇକିନିଆ ବା ଦଶଟା ଗୋଲଗାଲିଆ ଟୋକା ଘିନି ବୁଲନ୍ତି, ତାହା ହେଲେ ସେ ନୈତିକତା, ଆଉ ସେତିକି ଯେବେ ତୁମେ କର

ତାହେଲେ ତୁମର ନୈତିକ ଅଧଃପତନ। ବଡ଼ ହକିମଙ୍କ ପ୍ରିୟ ଛୋଟ ହକିମ ଯେବେ ପନ୍ଦର କୋଡ଼ିଏ ହଜାର ଟଙ୍କା ଗଡ଼ପ କରନ୍ତି ବା କରାନ୍ତି, ତାହେଲେ ସେ ଯୋଗ୍ୟତାର ଜ୍ୱଳନ୍ତ ଜବାବ। କିନ୍ତୁ ତାଙ୍କ ଛଡ଼ା ଆଉ ଯେବେ କେହି ଲେଖୁ ଲେଖୁ ଦୀର୍ଘଇ କାରରେ ଆଙ୍କୁଶଟି ଭଲ କରି ନ ଥାନ୍ତି ବା "ବ"ର ପେଟ ନ କିଳନ୍ତି ତା ହେଲେ ସେ ହେଇଗଲେ ଏକାବେଳେ ଅଯୋଗ୍ୟ, ଅପଦାର୍ଥ ଓ ଅମନୁଷ୍ୟ। ଏଇ ଦେଖନା, ତୁମେ ମୋର ପ୍ରିୟ, ସେଇ ହେତୁରୁ ତୁମର ଦରୋଟି ବାଚାଳତା ମତେ ଭାରି ଭଲ ଲାଗେ। କିନ୍ତୁ ଆଉ କେହି ଯେବେ ସେପରି କହନ୍ତା ତା ହେଲେ କଣ ହନ୍ତା ଜାଣିଚ ? ହନ୍ତା ଏଇଆ।

କହି ସେ ନରହରିଙ୍କ ଗାଲରେ ଚପାଟ କରି ଚାପୁଡ଼ାଟାଏ ଚଳାଇ ଦେଲେ। ଏହି ସମୟରେ ତାଙ୍କ କିରାଣି ବାବୁ ଆସି କହିଲେ ପୁଲିସ ଇନିସ୍‌ପେକ୍ଟର ବାବୁ ଆସିଚନ୍ତି। ହୁକୁମ ଦେଲା। ଇନ୍‌ସପେକ୍ଟର ମନମୋହନ, ତାଙ୍କର ଓଳିଆ ଓଦରଟିର ପଛରେ ଘର ଭିତରକୁ ପଶି ଆସିଲେ। ଅଭିବାଦନ ଇତ୍ୟାଦି ପରେ ଗଦାଧର ପଚାରିଲେ। ହୁକୁମ୍ ହେଉ ଇନ୍‌ସିପେକ୍ଟର ସାହେବ ! ବନ୍ଦା ହାଜିର।

ଇନ୍‌ସିପେକ୍ଟର ବାବୁ ଦିଖିଲ ପାନ ପାଟି ପାକୁଳି ଭିତରେ ଭର୍ତ୍ତି କରି କହିଲେ, "ବଡ଼ ମୁସ୍କିଲିରେ ମରୁଚି ଗଦାଧର ବାବୁ। ଏ ଶଳା ସାଇବକୁ ନେଇ ଆଉ ପାରି ହେଲାନି। ଭାବୁଚି ଛୁଟି ନେଇ ପଳାଇ ଯିବି।"

ଗଦା - ଉଁ ହୁଁ, ସେତକତ ହୋଇପାରୁନି, ଇନ୍‌ସିପେକ୍ଟର ସାହେବ।

ମନ - ମାନେ ? ଛୁଟି ମିଳିବ କି ନି ସେ କଥା -

ଗଦା - ମୁଁ ଜାଣେନି। କିନ୍ତୁ ଏ କଥା ନିଶ୍ଚୟ ଜାଣେ ଯେ ଛୁଟି ମିଳିବନି।

ମନ - ଧେତ୍, ଚଗଲାଟା। କହିଲି କଣ କି, ଏମିତି କଥା ଶୁଣିଚ କୁଠୁ ? ଘରେ ବସି ବସି ଘଣ୍ଟା ହଜାଇଲା, ମୋ ଉପରେ ହୁକୁମ ଚୋର ଧର। ଅଥଚ ତା ବେହେରା, ଖାନ-ସମା, ମସଲଚି ସମସ୍ତେ ସଚ୍ଚା ସୁନା। ତାଙ୍କୁ ସନ୍ଦେହ କରାଯାଇ ନ ପାରେ। ସେମାନଙ୍କୁ ବାଦଦେଲେ ବାକି ତ କେବଳ -

ଗଦା - ମୁଁ ନା ? ହୁଁ, ତା ମୁଁ ଜାଣେ, ତୁମେ ସେଇଥି ପାଇଁ ଲସର ପସର ହେଇ ଧାଇଁ ଆସିଚ, ତା ମଧ ମୁଁ ଜାଣେ। କିନ୍ତୁ ବାପ ଧନ, ମୁଁ ତ ତମ ସାଇବଙ୍କୁ ଖାନତଲାସି ଦେଇଚି, ଆଉ ତୁମେ ଯେବେ ଆଉ ଥରେ -

ମନ - ଆରେ ନା ନା, ସେମିତି କିଛି ନୁହେଁ। ସେମିତି କିଛି ନୁହେଁ। ମୁଁ କହୁଥିଲି କଣକି, ତୁମେ ଟିକିଏ ମତେ ଏଥିରେ ସାହାଯ୍ୟ କରନା, ବାପ।

ଗଦା – ତୁମ ସାଇବ, ତୁମେ ତୁମର ଅଭିଜ୍ଞ ଗୋଇଁନ୍ଦା ପୁଲିସ ଥାଉଁ ଥାଉଁ ମୋ ଭଳି ଗୋଟାଏ ବାଜେ ଘରେଇ ଗୁଇନ୍ଦା କଣ କରିପାରେ ଭଲା ? ନା, ବାପଧନ, ମୋ ହାତରେ ସେ ସବୁ କିଛି ହୋଇ ପାରିବନି ?

ମନ – ତା ମାନେ ତୁ ସାହାଯ୍ୟ କରିବୁନି । ମୁଁ ଜାଣେ ତୁ କରିବୁନି । ମୁଁ ତାହେଲେ ଆସେ । କେତେଟା ବଜିଛି ଦେଖ୍ ।

ଗଦାଧର ଉଠିଯାଇ ମନମୋହନଙ୍କ ମୁଣ୍ଡଟିକି ଧରି କାନ୍ଥରେ ଟଙ୍ଗା ହୋଇଥିବା ଘଡ଼ି ଆଡ଼କୁ ବୁଲେଇ ଦେଲେ । ଏଇ ଦେଖ, ଦଶଟା ବାଜି ବାର ମିନିଟ୍ ।

ମନ – ମୁଣ୍ଡଟା ଛାଡ଼ମ । ତୋର ଏ ଘଡ଼ିଟା କଣ ଠିକ୍ ଅଛି ? ମୋଟେ ଦଶଟା ? ନା ନା, ବୋଧହୁଏ ଭୁଲ ।

ଗଦାଧର – "ଓ" ବୋଲି କହି ତାଙ୍କ ଟେବୁଲ ଦେହର ଗୋପ୍ତି ବାକ୍ସରୁ ଗୋଟିଏ ହାତବନ୍ଧା ଘଡ଼ି ବାହାର କରି କହିଲେ, "ଇନ୍‌ସିପେକ୍ଟର ସାହେବ, ଏଇ ଦେଖନ୍ତୁ, ଏ ଘଡ଼ି ତୁମ ସାହେବଙ୍କର ମୁଁ ଚୋରାଇ ଆଣି ମୋର ଏ ଦରାଜ ଭିତରେ ରଖିଚି । ମୋ ଘଡ଼ିଟା ଭୁଲ ହୋଇପାରେ, କିନ୍ତୁ ତୁମ ସାହେବଙ୍କ ଘଡ଼ିଟା ତ ଭୁଲ ହୋଇ ପାରେନି । ଏଇ ଦେଖ । ଠିକ୍ ୧୦/୧୨ ।"

ମନମୋହନ ବୁଲିପଡ଼ିଲେ, ଘଡ଼ିଟାକୁ ଚାହିଁଲେ, କହିଲେ, "ହୁଁ ଠିକ୍ ଅଛି ତ ? ଏ ଘଡ଼ିଟା କିନ୍ତୁ" –

ଗଦା – ତୁମ ପୁଲିସ ସାହେବଙ୍କର ନା ? ଜବତ କରିବ ?

ମନ – ନା, ନା, ସେ କଥା ମୁଁ କହୁନି । କିନ୍ତୁ ଏ ଘଡ଼ିଟାତ ତୁମ ପାଖରେ କେବେ ମୁଁ ଦେଖିନି ।

ଗଦା – ତେବେ କି ଘଡ଼ି ଦେଖିଚ ?

ମନ – ଏଁ ମାନେ ?

ଗଦା – ତା କହି ପାରିବନି । ମୋ ପାଖରେ ଘଡ଼ି ଦେଖିଚ । କିନ୍ତୁ କି ଘଡ଼ି ଦେଖିଚ ତା ତୁମେ ଲକ୍ଷ୍ୟ କରିନ । ତା ହେଲେ କିପରି କହିବ ଯେ ଏଇ ଘଡ଼ିଟା ମୋ ପାଖରେ ତୁମେ ଦେଖିନ ବୋଲି ? ଉଁ, ଉଁ, ହେଲାନି ଇନିସ୍‌ପେକ୍ଟର ସାହେବ । ଖାଲି ଧପା । ସବୁ ସାପକୁ ଢଡ଼ମନ୍ତ ନୁହେଁ । ଆଚ୍ଛା । ତା ହେଲେ ଆସିବା ହନ୍ତୁ, ନା ଆଉ କିଛି ଅଛି ? କହି ଗଦାଧର ଇନ୍‌ସପେକ୍ଟରଙ୍କ କାନ୍ଧରେ ଗୋଟାଏ ହାତ ରଖି ଆଉ ହାତରେ ତାଙ୍କ ଓଳିଆ ଓଦରକୁ କଣ

କଲେ କେଜାଣି, ମନମୋହନ ଚିରି ଚିରେଇ ଉଠିଲେ। ଆଖି ପିଛଡ଼ାକର କଥା। ତାପରେ ଗଦାଧର ତାଙ୍କ ଚୌକିରେ ଓ ମନମୋହନ ତାଙ୍କ ଆସ୍ଥାନରେ।

ମନ - ମୁଁ ତୁମକୁ କେତେ ଥର କହିଚି ଗଦାଧର ତୁମେ ମୋ ସାଙ୍ଗରେ ଏମିତି ଲାଗିବନି। ମୋର ତ ପୁଣି ଗୋଟାଏ ଇଜ୍ଜତ୍ ଅଛି। ନାଁ ହେ ନରହରି ବାବୁ।

ନର - ତା ସତ କଥା ଏକା, ମନମୋହନ ବାବୁ, ସେ ଏମିତି ପିଲାଙ୍କ ଭଳି ଲୋକଙ୍କ ସାଙ୍ଗରେ ଲାଗନ୍ତି, ତାଙ୍କର କଣ ଇଜ୍ଜତ୍ ଅଛି। ଲୋକେ କଣ କହିବେ।

ଗଦା - ଶୁଣିଲ, ତୁମ ସାକ୍ଷିଙ୍କ ଜମାନବନ୍ଦି। ତୁମ ଇଜ୍ଜତ୍ ନୁହେଁ ମୋ ଇଜ୍ଜତ୍, ମୋ ଇଜ୍ଜତ୍ ସମ୍ବନ୍ଧରେ ଲୋକେ କଣ କହୁଚନ୍ତି, ନରହରି ବାବୁ ?

ନରହରିଙ୍କର ବୁଝିବା ଉଚିତ ଥିଲା - ଏ ସମ୍ମାନ ସମ୍ବୋଧନ ଆଉ ଏ କଅଁଳ କଥା ମହାଭାରତ ଆରମ୍ଭ ଆଗରୁ ଝିମିଟି ଖେଳ ବିଚାର ବୁଝିଲେନି। କହିଲେ, "ଏଇ ଯେ ତୁମେ ବଡ଼ ପିଲାଳିଆ, ଚପଳ ଓ ଚଞ୍ଚଳ।"

ଗଦା - ତ ସେଥିରେ କ୍ଷତିଟା କଣ ?

ନର - କ୍ଷତି ନୁହେଁ, ତୁମେ ସରଲୋକହୋମ୍ ବା ଫାଦର ବ୍ରାଉନଙ୍କ ଭଳି ଜଣେ ସାଧାରଣ ଗୁଇନ୍ଦା। ଅଥଚ ତୁମର ଟିକିଏ ହେଲେ ଗାମ୍ଭୀର୍ଯ୍ୟ ନାହିଁ। ଲୋକଙ୍କର ତୁମ ପ୍ରତି ଆସ୍ଥା ଆସିବ କିପରି ? ଏଇ ଦେଖ ସରଲୋକହୋମ୍ସ କିପରି ଗମ୍ଭୀର, ମୀତଭାଷି ଓ ପକ୍ୱ ଜ୍ଞାନ।

ଗଦା - ଆଉ ଅଫିମା, ମଦୁଆ, ଓ କୋକେନି। ମନମୋହନ ବାବୁ, ତୁମେ ବଡ଼ ଗୁଇନ୍ଦା ହେବାକୁ ଚାହଁ, ଏଇ ହୋମ୍ସଙ୍କ ଭଳି ?

ମନ - ତା କିଏ ନ ଚାହେଁ ?

ଗଦା - ତା ହେଲେ ଗୋଟେ କାମ କର। ସକାଳୁ ବୋତଲେ ମଦ, ଦି ପହରେ ଦିଟା କୋକେନ ଇଞ୍ଜେକସନ୍ ଓ ସନ୍ଧ୍ୟା ବେଳକୁ ଟେଳାଏ ଅଫିମ ପକାଅ। ତାପରେ ଗୋଟାଏ ବୀଣା ବା କେନ୍ଦେରା ଧରି ଆରାମ ଚୌକିରେ ବସି ପାଖ ପଡ଼ିଶାଙ୍କ କାନରେ ଅତଡ଼ା ପକାଇ ଯାଅ। ବେଶ୍ ସବୁ ରହସ୍ୟ, ସାପ ସାପୁଆ କେଳାର ସପ୍ତସ୍ୱରି ଶୁଣି ତା କବରରୁ ବାହାରି ଆସିବା ଭଳି ତୁମ ସାମନାରେ ସଫା ହେଇଯିବ। ତା ପରେ ବନ୍ଧୁ ?

ନର - ତୁମର ବୁଝିବା ଭୁଲ ଗଦାଧର ବାବୁ। ତୁମେ ତ ସବୁକଥାକୁ ହସରେ ଉଡ଼େଇ ଦେବ। କିନ୍ତୁ ଜାଣିବା ଉଚିତ ତୁମର ଯେ ଯେମାନେ ଅତି ବୁଦ୍ଧିଆ ସେମାନଙ୍କର କେତେଗୁଡ଼ିଏ ଖୋଇ ଥାଏ।

ଗଦା – ସତେ ନା କଣ । ମୁଁ ଯେବେ କହେଁ – ଏଇ ବାନ୍ଦରାମି କରିବା ମୋର ଗୋଟାଏ ଖୋଇ, ତାହେଲେ ବୋଧହୁଏ ମୁଁ ଗୋଟାଏ ଅତି ବୁଦ୍ଧିଆ ବୋଲି ତୁମେ ମାନିବ ।

ନର – ନା ।

ଗଦା – ନା, ମୁଁ ଅତି ବୁଦ୍ଧିଆ ନୁହେଁ ତା ହେଲେ ।

ନର – ଉଁ, ହୁଁ, ସେ କଥା ମୁଁତ କହୁନି । ଉ ଉ ଉ ଆରେ ବାପରେ, ଧଡ଼, ଖଡ଼ ହେଇ ତାଙ୍କ ଚୌକିଟା ତାଙ୍କ ସମେତ ଓଲଟି ପଡ଼ିଲା ପଛକୁ । ବୁଝି ହେଲାନି, ଗଦାଧର ତାଙ୍କ ଚୌକିରୁ ଉଠି ତାଙ୍କ ଆଡ଼କୁ ଯିବାରେ ଏ ଘଟଣା ଘଟିଲା, କି, ଏ ଘଟଣା ଘଟିବା ପରେ ସେ ତାଙ୍କ ବନ୍ଧୁଙ୍କର ସାହାଯ୍ୟ ଲାଗି ନିଜ ଚୌକିରୁ ଉଠି ତରବର ହେଇ ଗଲେ । ଗଦାଧର ନରହରିଙ୍କୁ ଉଠଉ ଉଠଉ କହିଲେ, "ଆହା, ଆହା, ପଡ଼ିଗଲ ବନ୍ଧୁ ! କୁଠି କିଛି ଲାଗି ନାହିଁତ ?

ନର – ଉଁ, ପକେଇ ଦେଇ ପୁଣି ସୁଆଗ ଦେଖା । ଭଲ ମୁଣ୍ଡଟା ଯେବେ ମୋର ଫାଟି ଯାଇଥାନ୍ତା । ତୁମେ ମଣିଷ ମାରିଦେବ ଦେଖୁଚି ।

ଗଦା – ମୁଁ ? ମୁଁ ତୁମକୁ ପକେଇ ଦେଲି ? ମନମୋହନ ବାବୁ, ତୁମେତ ଏଇଠି ବସିଚ ଭଲା କହିଲ, ସେ ଚୌକିଟା ପଡ଼ିବା ଆଗରୁ ମୁଁ ତା ଦିହରେ ହାତ ଦେଇଚି ତୁମେ ଦେଖୁଚ ?

ମନ – ତା ମୁଁ ଠିକ୍ ହଲପ୍ କରି କହି ପାରିବିନି ।

ଗଦା – ବାଃ, ତୁମେ ଏଇଠି ବସିଚ, ତୁମଠୁ ହାତେ ଦୂରରେ ମୁଁ, ମୋ ଠାରୁ ହାତେ ଦୂରେ ନରହରି । ଦିନ ବେଳରେ ସଫା ଆକାଶର ପରିଷ୍କାର ଆଲୁଅ । ଅଥଚ ତୁମେ କହି ପାରିବନି । ତୁମେ ହୁଏତ ମିଛୁଆ । ନ ହେଲେ ଅନ୍ଧ । ସାଧାରଣ ଜ୍ଞାନ ଯା ଛଡ଼ା ଆଉ କଣ କହିପାରେ । ଇନ୍‌ସପେକ୍ଟର ସାହେବ ?

ମନ – ଓଃ ସେଇ ସାଧାରଣ ଜ୍ଞାନ ! ହୁଁ ଛାଡ଼ ଏ ସବୁ କଥା, ମୁଁ କହୁଚି ଗଦାଧର ମତେ ଟିକେ ସାହାଯ୍ୟ କର । ନ ହେଲେ ମୋତ ଚାକିରି ଖଣ୍ଡ ଯିବା ଉପରେ ।

ଗଦା – ମାନେ........ ।

ମନ – ଆଜି ଦିନ ଭିତରେ ଯେବେ ସାଇବଙ୍କ ଘଡ଼ିଟା ଖୋଜି ଦାଖଲ ନ କରେ ତା ହେଲେ ଆମର ଦଫା ରଫା ।

ଗଦା – କିନ୍ତୁ ସେଥିରେ ତୁମର ଦୋଷ ହେଲା କିମିତି । ତାଙ୍କ ଘର ତାଙ୍କ ନାକ ତଳୁ ତାଙ୍କ ଆଖିରେ କୁହୁକ ବାନ୍ଧି ଚୋର ତାଙ୍କ ଘଡ଼ି ନେଲା, ଆଉ ତୁମେ କିଆଁ ମାଡ଼ ଖାଇବ ।

ମନ – ସେ ମେମ୍ ସାହେବଙ୍କ ଠୁଁ ଯୁ ମାଡ଼ ଖାଉଚନ୍ତି ସେଉଟା ଦି ଗୁଣ ହେଇ ମୋ ଆଡ଼କୁ ନିଶ୍ଚୟ ଆସିବ ।

ଗଦା – ସେ ଘଡ଼ିଟା କୁଆଡ଼େ ମେମ୍ ସାହେବ ସାହେବଙ୍କ ଜନ୍ମ ଦିନ ତାଙ୍କୁ ଭେଟି ଦେଇଥିଲେ । ଏଟା ଚୋରି ହବାକୁ ଦବା ଦ୍ୱାରା ସାହେବଙ୍କର ମେମ୍ ସାହେବଙ୍କ ପ୍ରତି ପ୍ରେମ ନାହିଁ ବୋଲି ପ୍ରମାଣିତ ହେଉଛି – ଏଇ ହେଉଛି ଉଲେ ସମସ୍ୟା । ସାହେବ ପରଦା ଆଢୁଆଳରେ ଯାହା ପାଉଚନ୍ତି ତାହା ଦ୍ୱିଗୁଣ କରି ମୋ ଆଡ଼କୁ ଚଳାଉଚନ୍ତି, ବୁଝିଲତ ।

ଗଦା – ଚମତ୍କାର ଚାକିରି । ତା ହେଲେ ସରକାରୀ ଚାକିରରେ କାମଧନ୍ଦା ଯେତେବଡ଼ ନୁହେଁ, ତା ଠାରୁ ବେଶୀ ବଡ଼ ସାଇବଙ୍କ ଖୁସ୍ ମିଜାସ ଓ ଆଉରି ବେଶୀ ବଡ଼ – ମାନେ ବୃହତ୍ତମ ଜିନିଷ ହେଉଚି ମେମ୍ ସାହେବଙ୍କ ଖୁସି ମିଜାସ । ଏଇ ନା ? ଭାରି ସହଜ କାମ ହେ ଚାକିରିରେ ଉନ୍ନତି କରିବା, ତାହେଲେ ଦିଟା ଲୋକଙ୍କ ପାଇଁ ଦି ଘଡ଼ି ବାଥଗେଟ୍ ଜଡ଼ା ତେଲ – ବେଶ୍, ହେଇଗଲାତ ।

ମନ – ତା ଯାହା କହିଲ ଗଦାଧର, ତା ଏକା ସତ । ତୁମେ ତୁମର କର୍ତ୍ତବ୍ୟ ପାଳନ କରିବା ଲାଗି ଖଟି ଖଟି ମର କେହି ଦେଖିବେ ନାହିଁ । କେହି ବୁଝିବେ ନାହିଁ । ତୁମେ ତୁମ ବୁଦ୍ଧି ପ୍ରାଖର୍ଯ୍ୟରେ ଦି ଜଣଙ୍କ କାମ ଏକା ଏକା କରି ନେଇ ପାର; କେହି ସେ କଥା ଶୁଣିବେନି । ଚାହିଁବେନି । କିନ୍ତୁ ତୁମେ ଯେବେ କିଛି ନ କରି ଓ ଏତେଟିକିଏ ବୁଦ୍ଧି ନ ଥାଇ, ଖାଲି ଉପର ହାକିମଙ୍କ ଘରୋଇ ହୁକୁମ ତାମିଲ କରି ଯାଅ ଓ ହାକିମିଆଣି ଓ ହାକିମ ଛୁଆଙ୍କୁ ଦେବତା ଭଳି ପୂଜା କରିଯାଅ ତା ହେଲେ କାମ ଫତେ । ତୁମେ ବୁଦ୍ଧିରେ ଗଧ ହୋଇଥିଲେ ମଧ ଏକଦମ ବୁଦ୍ଧିରେ ଜ୍ୟୋତିଷ୍ମାନ, ତୁମେ ନିତ୍ୟାନ୍ତ ଅଳସୁଆ ଓ ଅପାରଗ ହୋଇଥିଲେ ମଧ ଖୁବ୍ କର୍ମଠ ଓ ପାରଦଦର୍ଶୀ ।

ଗଦା – ସାବାସ୍ । ସ୍ୱାଧୀନ ଭାରତରେ ଦେଶ ସେବୀ କଂଗ୍ରେସ ମନ୍ତ୍ରୀମଣ୍ଡଳରେ ମଧ ଏଇଆ ଚାଲିଛି ଏବେ ବି ?

ମନ – ଛାଡ଼ ସେ କଥା । ମୁଁ କହୁଥିଲି ଗଦାଧର, ତୁମେ ମତେ ଏ ଘଡ଼ିଟା ମିଳବାର ଉପାୟ କହ, ମୁଁ ତୁମକୁ ସେ ହତ୍ୟା ମକଦମାରେ ସବୁ ରକମ ସାହାଯ୍ୟ କରିବି ।

ଗଦା – ଉଁ, ହୁଁ ଲାଞ୍ଚ ନେବାଟା ପୁଲିସ ବାଲାଙ୍କ ପ୍ରକୃତି ହେଇ ପାରେ, ଆମ ଘରୋଇ ଗୁଇନ୍ଦାଙ୍କର ନୁହେଁ । ବିଶେଷତଃ ସେ ହତ୍ୟା ମକଦ୍ଦମାରେ ତୁମେ ମତେ କି ସାହାଯ୍ୟ କରିପର ?

ମନ – ଯୁ ରହସ୍ୟ ପାଇଁ ସାହେବଙ୍କ ପାଖୁ ଯାଇଥିଲ ।

ଗଦା – ସେ ଯାହା ଦେବାକୁ ନାହିଁ କଲେ, ତୁମେ ତା ଦବ କେମିତି ?

ମନ – ମୁଁ ଦେବି ଠିକ୍ ଯାହା ଚାହିଁବ । ତାଙ୍କର ଏସବୁ ଜାଣିବା କିଛି ଦରକାର ନାହିଁ । ତୁମେ ମୋ ପାଖକୁ ନ ଆସି, ତାଙ୍କ ପାଖକୁ ଯେ ଗଲ କିଆଁ, ମୁଁ ଏ ପର୍ଯ୍ୟନ୍ତ ବୁଝି ପାରୁନି ।

ଗଦା – ତୁମେ କଣ କହିବାକୁ ଚାହଁ ଯେ ତୁମେ ଯାହା ଇଛା ତା କରିଗଲେ ବି ତୁମ ମାଲିକ କିଛି ଜାଣି ପାରିବେ ନି ?

ମନ – ସେ କଣ ଜାଣିବେ । ଆମେ ଯାହା ତାଙ୍କ କାନକୁ ନେବୁ, କି ତାଙ୍କ ନାକ ତଳେ ନେଇ ନ ଥୋଇବୁଁ, ତା ତାଙ୍କର ଜାଣିବା ଅସମ୍ଭବ ।

ଗଦା – ସାବାସ୍ ଘର କରଣା । ସେଇଥି ପାଇଁ ନା ସରକାରଙ୍କର ଏତେ ପ୍ରଶଂସା ।

ମନ – କଣ କହୁଚ ଗଦାଧର, ଟିକେ ସାହାଯ୍ୟ କରବନି ?

ଗଦା – ମୁଁ କଣ କରିପାରେଁ, ଇନ୍‌ସପେକ୍ଟର ସାହେବ ! ମୋର ମନବିତ ଠିକ୍ ନାହିଁ, ସେ ହତ୍ୟା ମକଦମାଟା ନେଇ ମୁଁ ଏତେ ବିବ୍ରତ ଯେ –

ମନ –ମୁଁ ତ କହିଲି –

ଗଦା – (ନ ଶୁଣିଲା ପରି ହୋଇ) ଯେବେ ତୁମର ସେ ଏକଜିବିଟ ଗୁଡ଼ାକ – ସେ ବାଳ, ସେ ରକ୍ତ ଲୁଗା ଇତ୍ୟାଦି ଟିକିଏ ଦେଖି ପାରିଥାନ୍ତି – ଆରେ ହଁତ ମୋର ଏତେ ମୁଣ୍ଡ ବଥା କିଆଁ ? ଆସାମିର ଓକିଲତ ସେ ସବୁ ଦେଖିବାର ହକ୍‌ଦାର । ହଁ ଠିକ୍ ଠିକ୍ ତାଙ୍କୁଇ ଲଗେଇ ଦେବି । ନରହରି ବାବୁ ତୁମେ ବଡ଼ ବୋକା । ଏଇତକ ବୁଦ୍ଧି ତୁମ ମୁଣ୍ଡକୁ ଆସିଲାନି ଆଜିଯାଏ । ଛି, ତୁମେ ବଡ଼ –

ମନ – ଦେଖ ଗଦାଧର, ସେ ସବୁର କିଛି ଦରକାର ନାହିଁ । ମୁଁ ତୁମକୁ ସବୁ ଦେଖାଇ ଦେବି । ମୋ ସାଙ୍ଗରେ ଆସ ଏଇକ୍ଷଣି ।

ଗଦା – ଉଁ ହୁଁ, ତାତ ମାନୁଚି । ମୋର ଯେ ଅନେକ କାମ ବାକି ପଡ଼ିଚି । ତେବେ ସେ ଗୁଡ଼ାକ ଏଠିକି ଆସି ପାରନ୍ତା – ନା, ସେ ଓକିଲଟାକୁ କହିଦେବି, ସେ ଯାଇ ଦେଖୁ ।

ମନ – ହୁଁ, ଆଛା, ସେ ଗୁଡ଼ାକ ମୁଁ ନେଇ ଆସିବି ଏଠିକି ।

ଗଦା – ତୁମେ ଆଣିବ ? ଏଠିକି ? ସାଇବ ବାହାଦୁର ତୁମର ଜାଣିଲେ –

ମନ – ସେ ମୁଁ ବୁଝିବି ।

ଗଦା – ଆଛା ନେଇ ଆସ, ତା ହେଲେ ସେ ଓକିଲ ପାଖକୁ ଯିବା ଦରକାର ପଡ଼ିବନି ।

ମନ – ଆଉ ସେ ଘଡ଼ିଟା ।

ଗଦା – ତୁମେ ଜାଣ ମନମୋହନ, ଆମର ଏ ନରହରି ବାବୁ କଣ ସବୁ ମନ୍ତ୍ର ଜାଣନ୍ତି ଯାହା ବଳରେ ସେ ହଜିଲା ଜିନିଷର ପତ୍ତା କହି ଦେଇ ପାରିବେ ।

ନର – ମାନେ, ଏଁ, ମୁଁ –

ଗଦା – ହଁ, ହଁ, ମୁଁ ଜାଣେ ଏଇକଥା ତ କହୁଚି । ତୁମେ ଇମିତି ଉତ୍‌ପିଛ ହୋଇ ପଡୁଚ କିଆଁ । କଥା କଣ କି, ସେଥି ଲାଗି ତାଙ୍କର କଣ ପୂଜାଧୂଜା କରିବା ଦରକାର । ତୁମେ ଯାଅ ଏଇଲେ ସେ ପୂଜାଧୂଜା କରି ଠିକ୍ ତିଆରି ହୋଇଯିବେ ଆଜି ସନ୍ଧ୍ୟା ବେଳକୁ । ତୁମେ ଯଦି ସେତିକି ବେଳକୁ ଆସ ଆଉ ମୋ ମନଟା ଠିକ୍ ଥାଏ, ବୁଝିଲେତ – ମୋ ମନଟା ଠିକ୍ ଥିବ । ନିତାନ୍ତ ଦରକାର, ତା ହେଲେ ସେ ତୁମକୁ ଘଡ଼ିର ଠିକ୍ ପତ୍ତା ବତେଇ ଦେବେ, ନାହେଁ ନରହରି ବାବୁ ଏଇଆନା ?

ନର – ଏ, ତୁମେ ଏ ଗୁଡ଼ାକ ସବୁ ମାନେ ।

ଗଦା – ଲାଜ କଣ ଏଥିରେ । ଯେ ଯୁ ବିଦ୍ୟା ଜାଣେ, ସେ ତାକୁ ଲୁଚାଇଲେ ସଂସାର ଚଳିବ, ଆଚ୍ଛା ତା ହେଲେ –

ମନ – ମୁଁ ଏଇ ୧୨ଟା ଭିତରେ ସେ ଜିନିଷ ଗୁଡ଼ିକ ଘିନି ଆସୁଚି । କହି ଉଠି ଚାଲିଗଲେ । ଗଦାଧର ତାଙ୍କ ପକେଟରୁ ଗୋଟାଏ ଝରଣା କଲମ କାଢ଼ି ହାତରେ ଧରି ବୁଲାଇବାକୁ ଲାଗିଲେ ନରହରି କହିଲେ, "ଏ ସବୁ କଣ ? ମନ୍ତ୍ର ପୂଜାଧୂଜା, ମତେ ଏ ସବୁ ଭିତରେ..."

ଗଦା – ଚୁପ୍ ! ମନମୋହନ ପ୍ରବେଶ କଲେ ।

ଗଦ – ପୁଣି ଫେରିଲେ ଯେ.....

ମନ – ମୋ କଲମ୍‌ଟା ।

ଗଦା – (କଲମଟା ଧରି ବୁଲାଉ ବୁଲାଉ) କଣ ହେଲା ତୁମର କଲମଟା !

ମନ – ମୋ ଛାତି ପକେଟରେ ଥିଲା, କାଇଁ ପାଉନିତ, ଦେଖି ସେ ଉଟା ନୁହେଁ ତ ?

ଗଦା – ଏଉଟା ! ସାବାସ୍ ସାହେବତ ତାଙ୍କ ଘଡ଼ି ମୁଁ ନେଇଚି ବୋଲି ଅଭିଯୋଗ କରି ପାରିଲେନି, ବାକି ତୁମର ଫାଉଣ୍ଟେନ ପେନ ଚୋରାଇବାର ଅଭିଯୋଗ ବାକି ଥିଲା । ତୁମ ପୁଲିସବାଲାଙ୍କୁ ଦୂରୁଁ ଜୁହାର ବାବା । ଏଇଠି ବସି ଇଲେ ସାହେବଙ୍କ ଘଡ଼ି ଖୋଜି ଦବା ପାଇଁ କେତେ ଖୋସାମୋଦ କରିଗଲେ । ତା ପରେ ବୋଧହୁଏ ମନେ ପଡ଼ିଗଲା ଯେ, – କୁଣିସି ମତେ ମୋ ବିରୁଦ୍ଧରେ ଗୋଟାଏ ଚୋରି ମକଦ୍ଦମା ଠିଆ କରିଦେଲେ ମୁଁ ବାଧ ହୋଇ ତୁମରି କଥା କରିବି । ଏଇନା ?

ମନ – ଏସବୁ ତୁମେ କଣ କହୁଚ ଗଦାଧର ।

ଗଦା – ଯାହା ସତ, ସେଇଆ କହୁଚି । ତା ନ ହେଲେ ତୁମେ କୁ ସାହସରେ ମୋରି ଘରେ ଆସି ଅଭିଯୋଗ କରନ୍ତ ଯେ ମୁଁ ତୁମର କଲମ ଚୋରାଇ ନେଇଚି ଆଉ ମୋର ହକ୍ କିଣା ଖରିଦ କଲମଟା ତୁମରି ବୋଲି ।

ମନ – ନା, ନା, ମୁଁ ତ ସେମିତି କିଛି କହିନି । ଖାଲି କହୁଥିଲି ଏଇଟା ମୋରି କଲମ ଭଳି ।

ଗଦା – ଦିଶୁଚି, ଅତଏବ ଏଇଟା ତୁମରି । କିଛି ଚିହ୍ନ ଥିଲା ତୁମ କଲମରେ ?

ମନ – ନା, ନୂଆ କଲମଟା ।

ଗଦା – ଏଇ ବ୍ରହ୍ମପୁର ବଜାରରୁ କିଣିଚ ବୋଧହୁଏ । ଛାତ୍ର ଭଣ୍ଡାର ଦୋକନରୁ ତାଙ୍କର ତ ଏବେ ପ୍ରାୟ ଶହେ ଖଣ୍ଡେ ଏଇ ନୂଆ ପାର୍କର କଲମ ଆସିଚି । ମୁଁ ବି ଗୋଟାଏ କିଣିଚି ଯେ, ଆଉ କିଛି ?

ମନ – ଏଁ, ନା, ଆଉ କିଛି ନାହିଁ । ମୁଁ ତା ହେଲେ ବାରଟା ବେଳେ ଆସିବିତ ?

ଗଦା – ତୁମେ ଯେପରି ବ୍ୟବହାର କରୁଚ, ସେଥିରେ ତୁମକୁ ତ ମୋଟେ ମୋ ଘରେ ପୂରାଇବାକୁ ଦବା ଉଚିତ ନୁହେଁ । ତେବେ କଣକି ମନମୋହନ ଭାଇ, ତୁମ ପ୍ରତି ମୋର ଗୋଟେ ମାୟା ଆସି ଯାଇଚି । ବିଶେଷତଃ ଭାଉଜଙ୍କ ଆଦୃତ ଗୋଟାଏ ଏ ସମ୍ପର୍କ ବି ଅଛି । ଆସ, ଆସ ।

ମନମୋହନ ଗଦାଧରଙ୍କ ହାତରେ ଥିବା କଲମଟା ଆଡ଼କୁ ଚାହିଁ, ଗୋଟାଏ ଦୀର୍ଘ ନିଶ୍ୱାସ ଛାଡ଼ି ଚାଲିଗଲେ ।



## ସାତ

ଗଦାଧର ଦୁଇ ତିନି ପାଇଁ କଟକ ଯାଇଥିଲେ । ଫେରି ଆସିଚନ୍ତି । ତାଙ୍କ କାମ କଲା ଘରେ ବସି ଟେବୁଲ ଉପରେ ଗୋଟାଏ ବତି ଜାଳି ଦେଇଛନ୍ତି । ତାଙ୍କ ଆଗରେ କେତେଗୁଡ଼ିଏ କାଚ ନଳ କାଚ ବୋତଲରେ ଗୁଡ଼ାଏ ଓଷୁଧ ବା ରାସାୟନିକ ଦ୍ରବ୍ୟ । ଦୁଇଟି ପାତ୍ରରେ ଅଲଗା ଅଲଗା ହେବ ଦୁଇ ଚାରି ଲେଖାଁଏ ମୁଣ୍ଡବାଳ । ଆଉ ଦୁଇଟି ପାତ୍ରରେ ଦୁଇଟି ଅଲଗା ଅଲଗା ରକ୍ତଲଗା କାଚଖଣ୍ଡ । ସେ ପ୍ରଥମେ ଗୋଟାଏ ପାତ୍ରରେ ମୁଣ୍ଡବାଳ ଦେହରେ କିଛି ରସାୟନିକ ଦ୍ରବ୍ୟ ଢାଳିଦେଲେ ଓ ତାକୁ ଗୋଟାଏ ବୁନସେନ ବର୍ଣ୍ଣର ଉପରେ ନେଇ ରଖିଲେ । କିଛି ସମୟ ପରେ ସେ ପାତ୍ରଟି ଓହ୍ଲେଇ ଟେବୁଲ ଉପରେ ରଖିଲେ । ଆଉ ପାତ୍ରଟି ନେଇ ସେହି ପରି

କଲେ। ପ୍ରଥମ ପାତ୍ରର ସେ ପାଣି ଗୁଡ଼ିକ ଥଣ୍ଡା ହେଲା ପରେ ତାକୁ ଗୋଟାଏ କାଚନଳିରେ ପୂରାଇ ତା ଦେହରେ ଆଉ କଣ ରସାୟନିକ ଦ୍ରବ୍ୟ ଦେଇ ପୁଣି ବୁନସେନ ବର୍ଣ୍ଣର ଉପରେ ଧଇଲେ ତାର ରଙ୍ଗ ଓ ଅନ୍ୟାନ୍ୟ ରସାୟନିକ କ୍ରିୟା ଲକ୍ଷ୍ୟ କରି ଗୋଟାଏ ପକେଟ ବହିରେ ଲେଖି ରଖିଲେ। ଆରଟା ନେଇ ସେଇପରି କଲେ ଓ ତା ବିଷୟରେ ମଧ ପକେଟ ବହିରେ ଲେଖି ନେଲେ। ତାପରେ ସେ ବାଳଗୁଡ଼ିକର ଅଗ କାଟି ଅଲଗା ଅଲଗା କରି ଗୋଟିଏ ଅଣୁବିକ୍ଷଣ ଯନ୍ତ୍ରରେ ସେଗୁଡ଼ିକ ପରୀକ୍ଷା କରି ଯାହା ଦେଖିଲେ ସେସବୁ ମଧ ଅଲଗା ଅଲଗା କରି ଲେଖି ନେଲେ। ଏସବୁ କରିସାରି ସେ ସେ ରକ୍ତ ଲୁଗା କାଚ ଖଣ୍ଡ ଦୁଇଟି ମଧ ଅଣୁବୀକ୍ଷଣ ତଳେ ନେଇ ପରୀକ୍ଷା କଲେ। ସେ ଏସବୁ ପରୀକ୍ଷା କରୁଚନ୍ତି ଏତିକିବେଳେ ପାଖ ବୈଠକଖାନାରୁ ଧୂମ୍ କରି ଗୋଟାଏ ଶବ୍ଦ ହେଲା। ସେ ହଠାତ୍ ଉଠିପଡ଼ି ବୈଠକଖାନାକୁ ପଶିଗଲେ ଓ ସେଠାରେ ଯାଇ ଯାହା ଦେଖିଲେ ସେଥିରେ ସେ କିଛି ସମୟ ଲାଗି ତାଟକା ହୋଇ ରହିଗଲେ। ଦେଖିଲେ ନରହରି ତଳେ ପଡ଼ିଛନ୍ତି ତାଙ୍କ ହାତରେ ଗୋଟାଏ ମିଠେଇ। ତାଙ୍କ ପାଖରେ ଗୋଟାଏ ଝୁଡ଼ିରେ କଣ ଗୁଡ଼ାଏ ଥୁଆ ହୋଇଚି। ତାକୁ ଖୋଲି ଦେଖନ୍ତିତ – ମିଠେଇ, ରସଗୋଲା, କମଳା। ପରେ ସେ ଯାଇ ନରହରିଙ୍କୁ ପରୀକ୍ଷା କଲେ। ତାପରେ ତାଙ୍କର ଲୁଗାପଟା ଖୋଲିଦେଲେ। ତାଙ୍କ ରସାୟନିକ ଘରକୁ ପଶିଯାଇ କଣ ଗୋଟାଏ ଔଷଧ ଆଣି ନରହରିଙ୍କ ପାଟି ଚିରି ତାଙ୍କ ପେଟରେ ଅଜାଡ଼ି ଦେଲେ। କିଛିସମୟ ପରେ ନରହରିଙ୍କର ଦିହ ଗୋଟାକ ଥରି ଉଠିଲା। ଛଟ ପଟ କରି ଉଠିଲା। ତା ପରେ ସେ ଆଖି ମେଲି ଚାହିଁଲେ ଓ ଗଦାଧରଙ୍କୁ ଦେଖି ବୋକାମି ହସର ଗୋଟାଏ ଦୁର୍ବଳିଆ ଚିହ୍ନ ତାଙ୍କ ଶୁଖିଲା ଓଠରେ ଦେଖା ହେଲା। ସେ ବସିବାକୁ ଚେଷ୍ଟା କଲେ ଅଧା ବସା ହେଇଚନ୍ତି ଅ ଅ କରି ତାଙ୍କ ପେଟ ଭିତରୁ ଗୁଡ଼ାଏ ବାନ୍ତି ବାହାରି ପଡ଼ିଲା। ଗଦାଧର ତୁନି ତୁନି ହେଇ ଠିଆ ହୋଇଥାନ୍ତି। ଅକାର ଓପରେ ଅକାର। ଓଃ କେତେ ଯେ ବାନ୍ତି। ନରହରିଙ୍କର ତୋଟି ଛାତି ଯେପରି ପୋଡ଼ି ଯାଉଚି। ତାଙ୍କର ନିଶ୍ୱାସ ଯେପରି ବନ୍ଦ ହୋଇ ଯାଉଚି। ସେ ଯନ୍ତ୍ରଣାରେ ବିକଳ ହୋଇ ଗଦାଧରଙ୍କ ଆଡ଼କୁ ଚାହିଁଉଥାନ୍ତି – ଯେପରି ଚାହେଁ ପୋଷା କୁକୁରଟି ପଡ଼ିଆ ବାଡ଼ିର କଣ ଖାଇ ପେଟ ଯନ୍ତ୍ରଣାର ବିକଳରେ ତା ମାଲିକ ଆଡ଼କୁ। ଗଦାଧରଙ୍କ ମୁହଁରେ କିନ୍ତୁ ସହାନୁଭୂତିର ବା ଦୟାର କିଛି ମାତ୍ର ଚିହ୍ନ ନ ଥାଏ। ତାଙ୍କୁ ଧରି ପକାଇବାକୁ କି ତାଙ୍କ ପିଠି ଆଉଁସି ଦେବାକୁ ତାଙ୍କର ଯେପରି ମନରେ ଭାରି ଘୃଣା। ଏ ଅ ଅ ଶୁଣି ଗଦାଧରଙ୍କ ଚାକର ଓ କିରାଣି ପଶି ଆସିଲେ। ସେମାନେ ନରହରିଙ୍କ ସାହାଯ୍ୟ କରିବାକୁ ଯିବାକୁ ପ୍ରସ୍ତୁତ ହେଲେ, ଗଦାଧର ତାଙ୍କୁ ମନା କଲେ। ବାନ୍ତି କରି କରି ନରହରି ହାଲିଆ ହୋଇ ସେଇ ବାନ୍ତି ଦିହରେ ଶୋଇ ପଡ଼ିଲେ। ଗଦାଧର ସେତେବେଳକୁ ଯାଇ ତାଙ୍କର ସେ ବାନ୍ତି ବୋଳା ଦିହକୁ ନିଜ ହାତରେ ଟେକି ବସାଇବାକୁ ଚେଷ୍ଟା କଲେ। ଆଉରି ଝଲକେ ଦି ଝଲକା ବାନ୍ତି ହେଲା। ଗଦାଧର ସେମିତି ଧରି ବସାଇଥାନ୍ତି। ପାଞ୍ଚ ମିନିଟ୍ ଖଣ୍ଡେ ଗଲା। ଆଉ ବାନ୍ତି ହେଲାନି। ନରହରିଙ୍କ ମୁହଁରେ ଟିକିଏ ତେଜ ଦେଖାଗଲା। ତାଙ୍କର ନିଶ୍ୱାସ ପ୍ରଶ୍ୱାସ ସ୍ଥିର

ହୋଇ ଆସିଲା । ସେ କହିଲେ ଟିକେ ପାଣି ଦିଅ । ଗଦାଧର ତାଙ୍କ କିରାଣିଙ୍କୁ ନରହରିଙ୍କୁ ଧରି ବସିବା ପାଇଁ କହି ତାଙ୍କ ରସାୟନିକ ଘରକୁ ଯାଇ ପୁଣି କଣ ଓଷୁଧ ଆଣି ଦେଲେ । ନରହରି ତାକୁ ପିଇ ଦେଇ ମୁହଁଟା ଆମ୍ବିଳେଇ ଦେଲେ । ତାପରେ କହିଲେ, "ଉଃ ଲୁଗାପଟା ଗୁଡ଼ାକ କଣ ହେଲାଣି, ମୁଁ ଟିକିଏ ଧୁଆ ଧୋଇ ହେବି । ଗଦାଧରଙ୍କ ନିର୍ଦ୍ଦେଶରେ ତାଙ୍କୁ ତାଙ୍କ ଗାଧୁଆ ଘରକୁ ନେଇଗଲେ ଚାକର ଓ କିରାଣି । ଆଉ ଜଣେ ଚାକର ଆସି ଘରୁ ଚୌକି ଟେବୁଲ ଉପରେ ପାଣି ଆଣି ସଫା କରିବାକୁ ଗଲା । ଗଦାଧର ସେ ମିଠେଇ ଓ ଫଳ ଝୁଡ଼ିଟା ନେଇ ଚାଲିଗଲେ ତାଙ୍କ ରସାୟନିକ ଘରକୁ ।

ନରହରି ଗାଧୋଇ ପାଧୋଇ ସଫା ସୁତୁରା ହୋଇ ଗଦାଧରଙ୍କ ଶୋଇଲା ଘରେ ତାଙ୍କରି ଶେଯରେ ଯାଇ ଶୋଇଲେ । ତାଙ୍କୁ ଗଭୀର ନିଦ ହୋଇଗଲା । ଦୁଇ ଘଣ୍ଟା ପରେ ଯେତେବେଳେ ସେ ନିଦରୁ ଉଠନ୍ତି, ଦେଖନ୍ତି ଯେ ଗଦାଧର, ବ୍ରହ୍ମପୁରର ବଡ଼ ଡାକ୍ତର ଓ ପୁଲିସ ଇନସ୍‌ପେକ୍ଟର ମନମୋହନ ବାବୁ ଆସି ବସିଚନ୍ତି । ସେ ସସବ୍ୟସ୍ତରେ ବିଛଣାରୁ ଉଠି ବସିଲେ ଓ ସମସ୍ତଙ୍କୁ ନମସ୍କାର କଲେ ଗୋଟାଏ ବୟସ୍କ ଲୋକ ବୋକାମି କରି ଧରା ପଡ଼ିଗଲେ ସେ ଯେପରି ବାଲୁରୁ ବାଲୁରୁ ହୋଇଯାଏ । ନରହରି ଏମାନଙ୍କୁ ଦେଖି ସେହି ପରି ସାଲୁର ବାଲୁର ହୋଇଗଲେ । ଗଦାଧର କହିଲେ, "ଦେଖୁଚ ଦେଖୁଚ, କିମିତି ମୁହଁଟା କରୁଚି । ଏଡ଼େ ବଡ଼ ଗଜା ଭେଣ୍ଡାଟା, ବାହା ହୋଇଥିଲେ ଚାରି ପୁଅର ବାପା ହନ୍ତାଣି, ଅଥଚ ଛୋଟ ପିଲାଙ୍କ ଭଳି ଯାହା ଦେଖିଲା । ବାଛ ନାଇ ବିଚାର ନାଇଁ ତାକୁ ନେଇ ପାଟିରେ ପୂରାଇ ଦେଲା । ଏମିତି ପେଟ ଗାବୁରା ମଣିଷ ମୁଁ କୁଠି ଦେଖିନି ।

ନରହରି – ଉଁ, ପେଟ ଗାବୁରା କଣମ ? ମିଠେଇ ଗୁଡ଼ାକ ଥୁଆ ହେଇଚି । ଭଲ କି ମନ୍ଦ ଦେଖିବା ପାଇଁ ତ ମାତ୍ର ଗୋଟାଏ –

ଗଦା – ଆଉ କମ ଅଭଦ୍ର ବି ନୁହେଁ ? ସେ ସବୁତ ମୋ ପାଇଁ ଆସି ଥିଲା । ମତେ ନ ପଚାରି ନ କହି ତୁ ଟାକୁକିନା ପାଟିକୁ ପକାଇ ଦେଲୁ ।

ନର – ମାତ୍ର ଗୋଟାଏ ତ !

ଗଦା – ହୁଁ, ମାତ୍ର ଗୋଟାଏ ତ । ଗୋଟାକୁ ଦିଟା ହେଇ ପାରିଲା କୁଠି ? ତୋ ଭାଗ୍ୟ ଭଲ ଯେ ସେଇ ଗୋଟାକରେ ଚିତ୍ ପଟାଙ୍ଗ ମାରିଦେଲୁ । ନ ହେଲେ ଏମିତି ବସି ବାକ୍ ଚାତୁର୍ଯ୍ୟ କରୁ ନ ଥାନ୍ତୁ ।

ମନ – କିନ୍ତୁ ଏପରି ଉତ୍କଟ ବିଷ ଦେଇ ଏ ଫଳ ମିଠେଇ ପଠେଇଲା କିଏ ?

ଗଦା – ତା ତୁମେ ଚିହ୍ନି ପାରିବନି । ମୋର ଜଣେ ବିଶିଷ୍ଟ ବନ୍ଧୁ ସେ, ମୁଁ ଜାଣେ ।

ମନ – ତାଙ୍କ ନାଁତ କହିବାକୁ ପଡ଼ିବ ଗଦାଧର ବାବୁ ।

ଗଦା – କହିବାକୁ ପଡ଼ିବ ? କିଆଁ ?

ମନ – ଏଯେ ବିଷ ଦିଆ ମକଦ୍ଦମା, ଦୌର ମକଦ୍ଦମା ।

ଗଦା – କିଏ କହୁଚି ଏ ମକଦ୍ଦମା ଦୌର ମକଦ୍ଦମା ।

ମନ – ପୁଲିସ ନିଶ୍ଚୟ କରିବ ।

ଗଦା – ତାହେଲେ ପୁଲିସ ତାଙ୍କ ନା ବାହର କରୁ, ଅନୁସନ୍ଧାନ କରି । ମୋର ଗରଜ ପଡ଼ିଚି । ହଜାର ହଜାର ଟଙ୍କା ମୋଟା ଦରମା ଖାଇ ପୁଲିସ ସାଇବ ଠୁଁ ସିପେଇ ପର୍ଯ୍ୟନ୍ତ ପଣ ପଣ ଗଦା ମରିଚନ୍ତି । ତାଙ୍କ କାମ ସେ କରନ୍ତୁ । ମୁଁ କାର ଖାଏଁ ନା ଧାରେଁ ଯେ ତାଙ୍କ କୋଡ଼ରେ ନେଇ ଆସାମିକୁ ବସେଇ ଦେବି ।

ମନ – କିନ୍ତୁ ଦୌର ମକଦ୍ଦମାର ପ୍ରମାଣ ସେ ଲୁଚାଏ, ସେ ମଧ ଦୌର ମକଦ୍ଦମାରେ ପଡ଼େ ଗୁଇନ୍ଦା ସାହେବ ।

ଗଦା – ତା ପଡ଼େ, କିନ୍ତୁ ପ୍ରମାଣ ଲୁଚେଇଲା କିଏ ?

ମନ – ଏ ତୁମେ ।

ଗଦା – କିପରି ?

ମନ – ତୁମେ କହିଲ ତୁମେ ଆସାମିର ନା ଜାଣ । ପୁଣି କହୁଚ କହିବନି ପୁଲିସ କି ।

ଗଦା – ମୁଁ କଣ କହିଲି ଯେ ପ୍ରମାଣ ନୁହେଁ, ଇନ୍‌ସପେକ୍ଟର ସାହେବ । ତୁମକୁ ପ୍ରମାଣ କରିବାକୁ ହବ ମୁଁ ଜାଣେ ଓ ଜାଣି ଲୁଚେଇଲି, ନା ? ପ୍ରମାଣ କର । ତା ପରେ ଡାକ୍ତର ବାବୁ, ବନ୍ଧୁ ମୋର ଠିକ୍ ଅଛନ୍ତି ତ, ଆଉ କିଛି ଭୟ ନାହିଁ ତ ?

ଡାକ୍ତର – ଠିକ୍ ଅଛନ୍ତି, କିନ୍ତୁ ଆଉ ଟିକିଏ ମାତ୍ର ବେଶୀ ହୋଇଥିଲେ ଯମ ପୁରୀକି ଯାଇଥାନ୍ତେ । ମୁଁ ଜାଣେ । ଦୁଃଖର କଥା ସେ ଯାଇ ନାହାନ୍ତି ।

ଗଦା – ତା ହେଲେ ମନମୋହନ ବାବୁ, କୁଆଡ଼େ ଆସିବା ହେଲେ । ସାହେବଙ୍କ ଘଡ଼ିଟା ମିଳିଲାନି କି ନାହିଁ ?

ମନ – ବଡ଼ ଆଶ୍ଚର୍ଯ୍ୟର କଥା, କାଲି ସକାଳେ ସାହେବ ନିଜେ ତାଙ୍କର ଟେବୁଲ ଉପରୁ ତାଙ୍କ ଘଣ୍ଟା ପାଇଗଲେ ।

ଗଦା – ଶୁଣିଲେତ ଡାକ୍ତର ବାବୁ, ଘଡ଼ିଟା ସେଇ ଟେବୁଲ ଉପରେ ରଖିଲେ, ସେଇ ଟେବୁଲ ଉପରେ ଅଛି । କାଗଜପତ୍ର କିଛି ବୋଧହୁଏ ଘୋଡ଼େଇ ହୋଇ ଯାଇଥିଲା । ଟେବୁଲଟା

ଭଲ କରି ଖୋଜିବାର ଧୈର୍ଯ୍ୟ ନାହିଁ। ଖାଲି ଯା ଉପରେ ସନ୍ଦେହ, ତାକୁ ଧର ଯାକୁ ମାର। ଖାସା ପୁଲିସ ସାହେବ, ଖାସା ପୁଲିସ ଇନ୍‌ସପେକ୍ଟର, ଯାହା ହେଉ ମୁଁ ବଞ୍ଚିଗଲି। ମୋ ଦିହରେ ତ ଟୋପାଏ ହେଲ ରକ୍ତ ନ ଥିଲା। କୁଦିନ ଏ ପୁଲିସ ବାବୁମାନେ ଆସି ମୋ ହାତରେ କଡ଼ା ଲଗାଇ ଦେବେ।

ମନ – ମୁଁ ଶୁଣିଲି ଯେ ତୁମେ କାଲି ସକାଳେ ସାଇବଙ୍କ ବଙ୍ଗଲାକୁ ଯାଇଥିଲ।

ଗଦା – ସତେ ନା କଣ ? କଣ କହିବାକୁ ଚାହଁ ଯେ ମୁଇଁ ଯାଇ ପୁଲିସ ସାଇବଙ୍କ ଘରେ ପଶି ତାଙ୍କ ଟେବୁଲ ଉପରେ ତାଙ୍କର ଘଣ୍ଟା ରଖିଦେଇ ଆସିଥିଲି ? ଆଉ ତୁମର ପହରା ଇତ୍ୟାଦି କେହି ଜାଣି ପାରିଲେନି। ତୁମର ପୁଲିସ ସାହେବ ଟେବୁଲ ପାଖରେ ବସିଥାନ୍ତି, ମୁଁ ଗଲି, କଥା ହେଲି, ଆଇଲି। ଅଥଚ ସେ ମଧ କିଛି ଜାଣି ପାରିଲେନି। ତୁମେ ଯେବେ ଏଇ କଥା ବିଶ୍ୱାସ କରୁଥାଅ ମନମୋହନ, ତା ହେଲେ ତୁମ ସାଇବଙ୍କର ଖୁବ୍ ବାହାଦୁରି କରୁଚ ଏକା।

ମନ – ମୁଁ କିଛି କହୁନି। କେବଳ ଯାହା ଘଟିଥିଲା ସେତିକି କହୁଚି ମାତ୍ର।

ଗଦା – ଅଚ୍ଛା, କହିଲେଣିତ, ଏଥରକ ଆସିବା ହଉ।

ମନ – ଯିବିତ। ଯିବା ଆଗରୁ ମୁଁ ଖାଲି ଜାଣିବାକୁ ଚାହେଁ ଯେ ସେ ମକଦମାରେ ଯେ ତଦନ୍ତ କରିଥିଲୁ ତାର କଣ ହେଲା।

ଗଦା – ତୁମର ଦରକାର ?

ମନ – ଆମେ ଯେ କାଲି ଚାର୍ଜସିଟ୍ ଦଉଚୁଁ।

ଗଦା – ବେଶ୍‌ତ। ମୋ ସାଙ୍ଗରେ ତୁମେ କରିବ ନ କରିବ ତାର ବି ସମ୍ବନ୍ଧ ?

ମନ – ମୁଁ କହି ରଖୁଚି ଗଦାଧର, ଥରେ ମକଦମା ଶୁଣାଣି ମାଜିଷ୍ଟ୍ରେଟ ପାଖରେ ଆରମ୍ଭ ହୋଇଗଲେ ଆସାମିର ଦୌର ସୁପର୍ଦ୍ଦ ନିଶ୍ଚୟ।

ଗଦା – ମୁଁ କହି ରଖୁଚି ମନମୋହନ, ସେ ମାଜିଷ୍ଟ୍ରେଟ, ପୁଲିସିର ଭିତରି ପକେଟରେ ବସିଥିଲେ ବି, ମୁଁ ଆସାମିମାନଙ୍କୁ ତାଙ୍କରି କୋର୍ଟରୁ ଖଲାସ କରି ଆଣିବି।

ମନ – କିପରି ?

ଗଦା – ମାଜିଷ୍ଟ୍ରେଟ ଖଲାସିର ରାୟ ଦେବେ, ଆସାମିମାନଙ୍କୁ ଛାଡ଼ି ଦବା ପାଇଁ ହୁକୁମ ହବ, ଜେଲର ତାଙ୍କୁ ସେ ହୁକୁମ ଶୁଣାଇବେ, କଇଦି ଘରର ଚାବି ଖୋଲିବ, ତାଙ୍କୁ –

ମନ – ସେ ସବୁ ମୁଁ ଜାଣେ, କିନ୍ତୁ ତୋର ପ୍ରମାଣ କଣ ?

ଗଦା – ଓ, ପ୍ରାମଣ ? ସେଉଟାତ ତୁମେ ନିଶ୍ଚୟ ଜାଣିବାକୁ ଚାହିଁବ । ତା ନହେଲେ ତାକୁ କାଟିବା ପାଇଁ ମିଛ ପ୍ରମାଣ ଯୋଗାଡ଼ କରିବ କିପରି ?

ମନ – ତୁ ସବୁବେଳେ ଆମକୁ ଏପରି ଖରାପ ନଜରରେ ଦେଖୁ କାହିଁକି, ଗଦାଧର ? ମୁଁ କି କେବେ ତୋର କିଛି ଉପକାର କରିନି ।

ଗଦା – ମାନେ ! ତୁମେ ମନମୋହନ ବାବୁ ନା, ପୁଲିସ ଇନ୍‌ସପେକ୍ଟର ସାହେବ ?

ମନ – ମୁଇଁତ, ପୁଲିସ ଇନ୍‌ସପେକ୍ଟର, ଏ ଦିହେଁ ଯାକ କଣ ଅଲଗା ?

ଗଦା – ନିଶ୍ଚୟ, ଯେ ନିମକସଚ୍ଚା ଚାକିରିଆ ସେ ତା ଚାକିରି କଲା ବେଳେ ନିଜର ବ୍ୟକ୍ତିଗତ ସତ୍ତା ଡୁବେଇ ଦିଏ । ତା ନ ହେଲେ ସେ ନିମକହାରାମ ହେବ ।

ମନ – ତା ହେଲେ ତୁମେ କହିବନି ଯା ପରେ ତୁମର ଚାଲ କଣ ?

ଗଦା – କାହିଁକି କହିବିନି କହି ସାରିଚିତ ।

ମନ – ଆଚ୍ଛା, ଦେଖାଯିବ । ତୁମେ ନ କହିଲେ ମଧ୍ୟ ତୁମର ଆଗୁଆ ଚାଲ ଜାଣିବାରେ ଆମକୁ କଷ୍ଟ ହବନି ।

ଗଦା – ତା ମୁଁ ଜାଣେ, ବିଦାୟ, ନମସ୍କାର ।

ମନମୋହନ ପ୍ରତି ନମସ୍କାର ନ କରି ସେଠାରୁ ଉଠି ଫଡ଼୍ କରି ଗଲେ ଚାଲି । ଗଦାଧର କିଛି ସମୟ ନିଷ୍ଚଳ ହୋଇ ବସି କଣ ଭାବି ନେଲେ ଓ ପରେ ତାଙ୍କର ଓ ନରହରି ବାବୁଙ୍କୁ ଡ଼ାକି ତାଙ୍କର ଜିନିଷପତ୍ର ସଜାଡ଼ି ୫ଟା ବେଳେ ରେଳ ପାଇଁ ଗୋଟାଏ ଗାଡ଼ି ବନ୍ଦୋବସ୍ତ କରିବାର ଆଦେଶ ଦେଲେ ।



# ଆଠ

କଟକ ଟେସନ । ଏତେ ବଡ଼ ଗୋଟାଏ ପ୍ରଦେଶର ରାଜଧାନୀ । ଏ ପ୍ରଦେଶର ସବା ବଡ଼ ଓ ଜନଗହଳ ଟେସନଟାଏ । ଏଥିରେ କିନ୍ତୁ ଯାତ୍ରୀମାନଙ୍କ ରହିବା ପାଇଁ ପ୍ଲାଟଫର୍ମ ଉପରେ ଗୋଟାଏ ଛାତ ନାହିଁ । ଯେଉଁମାନେ ବି.ଏନ୍.ଆରରେ ବୁଲିଥିବେ, ସେମାନେ ଦେଖିଥିବେ ଛୋଟ ଟେସନଟିଏ ହେଲେ ମଧ ତାର ପ୍ଲାଟଫର୍ମ ଉପରେ ଛାତ ରହିଛି । ଦିନ ଥିଲା ଯେତେବେଳେ ଲୋକେ କହୁଥିଲେ ବି.ଏନ୍. ଆର୍‌ଟା ଘରୋଇ କମ୍ପାନିର ଜିନିଷ । ଆଉ ସେ କମ୍ପାନି ବିଲାତି କମ୍ପାନି । ଅତଏବ ସେମାନେ ଦେଶି ଲୋକଙ୍କର ସୁବିଧା ଅସୁବିଧାକୁ ଲକ୍ଷ୍ୟ

କରିବେ କିଆଁ, ସେମାନେ ତାଙ୍କର ମୋଟ ବାର୍ଷିକ ଲାଭ ହିଁସା ପାଇଲେ ହେଲା । ଏବେ ତ ଏ କମ୍ପାନି ସରକାରଙ୍କର, ଏବେତ ଦେଶୀ ଲୋକେ ଏହାର ମାଲିକ । ତଥାପି ଗାଡ଼ିକୁ ଅପେକ୍ଷା କରି ଓ ଗାଡ଼ି ଚଢ଼ିବା ପାଇଁ ପ୍ରତି ଗାଡ଼ିରେ ଯେ ଶହ ଶହ ଲୋକ ସ୍ତ୍ରୀ ପିଲା ଘେନି ଖରାରେ ବର୍ଷାରେ ହଇରାଣ ହେଉଚନ୍ତି, ସେ କଥା ଦେଖିଲା କିଏ, ବୁଝିଲା କିଏ ।

ଗାଡ଼ି ପହଁଞ୍ଚିଲା ବେଳକୁ ରାତି ୧୧ଟା । ଝପାଝପ୍ ବର୍ଷା ଚାଲିଚି । ଟେସନର ପାଏ କେ ଗୋଟାଏ, ଦି'ପାକେ ଗୋଟାଏ ମିଞ୍ଜି ମିଞ୍ଜି ଆଲୁଅରେ ରାସ୍ତା ପରିଷ୍କାର ଦେଖାଯାଉନି । ବର୍ଷାକୁ ଡରି କୁଲିମାନେ ମଧ୍ୟ ଆସୁ ନାହାନ୍ତି । ତଥାପି ବିଚାରା ଯାତ୍ରିମାନଙ୍କୁ ଓହ୍ଲେଇବାକୁ ହବ । ନିଜ ନିଜର ଗଣ୍ଠିରି ବାକ୍ସ ସବୁ ଘିନି ଲୋକେ ସୁତୁବୁତୁ ଓଦା ହୋଇ ତରବରିଆରେ ଓହ୍ଲାଉ ଓହ୍ଲାଉ କିଏ ପଡୁଚି, କିଏ ହସୁଚି । ଗଦାଧର ବାବୁ ଗୋଟିଏ ଦ୍ୱିତୀୟ ଶ୍ରେଣୀ ଡବାରୁ ଓହ୍ଲାଇଲେ ଓ ଓହ୍ଲେଇବା ସାଙ୍ଗେ ସାଙ୍ଗେ ତାଙ୍କ ହାତର ଟର୍ଚ୍ଚଲାଇଟା ମଧ୍ୟ ଅନ୍ଧାରକୁ ଚମକେଇ ଝଲସି ଉଠିଲା । ଦେଖିଲେ ତାଙ୍କ ପଛରେ ଗୋଟାଏ ଲୋକ କଣ ଗୋଟାଏ ଜିନିଷ ତାର ପକେଟ ଭିତରେ ତରବର କରି ରଖି ଦଉଚି । ଗଦାଧର ଚଟ୍ କରି ତାଙ୍କ ହାତଟିକୁ ଧରି ପକାଇ କହି ପକାଇଲେ, "ଆହା, ବନ୍ଧୁ, ବହୁତ ସାଧ ସାଧନା ପରେ ତୁମ ସାଙ୍ଗରେ ହଠାତ୍ ଏପରି ସାକ୍ଷାତ୍ ହେବ ବୋଲି କିଏ ଜାଣିଥିଲା । ଆସ ବନ୍ଧୁ, ଆସ । ଆଜି ତୁମେ ମୋର ଅତିଥି ।" ଲୋକଟା ହାତ ଛଡ଼ାଇବାକୁ ଚେଷ୍ଟା କରି କହିଲା "କିଟା କହୁଚୁବେ । ହାମେ ତ ଗାଡ଼ିରୁ ଓହ୍ଲେଇ ହାମର ଘରକୁ ଯାଉଚେଁ ।

ଗଦା – ତା ଯାଉଚ, ଠିକ୍ "ତୁମେ ଯାଉଚେ, ହାମର ସାଥିରେ ।" ବୁଝୁଚ ? ବେଶୀ ଲାଜ କରନି, ବନ୍ଧୁ ପଛରେ ପୁଲିସ ପହରା । ଆଗରେ ହେଇ ଟେସନ ବାରଣ୍ଡାରେ ପୁଲିସ । ତୁମ ପକେଟରେ ଖୋଲା ଛୁରା । ତୁମେ ପୁରୁଣା କଇଦି । କି ରକମ ? ବେଶୀ ଲାଜ କରିବତ, ଏଇ ଯେ ସିପାହୀ, ବାବୁ । ବହୁତ କଷ୍ଟ ପାଇଲେ, ନା ? ଟେସନ ବାରଣ୍ଡାକୁ ଚାଲନ୍ତୁ । ମୁଁ ଏଠୁ ପଳେଇ ଯାଉ ନାହିଁ ଯେ । ହଁ, ନରହରି ତୁମେ ସିପାହୀ ବାବୁଙ୍କ କପେ ଚା ଖୁଆଇବାର ବନ୍ଦୋବସ୍ତ କରତ । ବିଚାରା ସାରା ରାସ୍ତାଟି ବର୍ଷାରେ ତିନ୍ତିତିନ୍ତି ଟେସନକୁ ଟେସନ ମୋ ଡବା ପାଖରେ ପହରା ଦେଇ ଦେଇ ହଇରାଣ । ଯାଅ, ନରହରି ଓ ତାଙ୍କ ସହିତ ଜଣେ ଭଦ୍ରଲୋକ, ଧୋତି ଓ ଅଧାକମିଜ ପିନ୍ଧା ଚାଲିଗଲେ ଟେସନ ବାରଣ୍ଡାକୁ ।

ଗଦାଧରଙ୍କର ବନ୍ଧୁ ତାଙ୍କ ହାତ ଛଡ଼ାଇ ଯିବାର ଉଦ୍ୟମ କରୁଥିଲେ । ଗଦାଧର ଅତି ସ୍ନେହରେ ତାଙ୍କ କଚଟିଟାକୁ ଏପରି ଧରି ପକେଇଲେ ଯେ ଲୋକଟା ଉଃ, ଆଃ କରି ପକାଇ କହିଲା, ଆରେ ଛାଡ଼, ଛାଡ଼ । ହାତଟା ହାମର ଭାଙ୍ଗି ଦବନା କଣ ?

ଗଦା – ନା, ନା, ତାକି ମୁଁ ପାରେ ! ତେବେ କଣକି ବହୁତ ଦିନର ପୁରୁଣା ବନ୍ଧୁ । ତୁମକୁ ଛାଡ଼ି ଦବାକୁ ମୁଁ ମୋଟେ ରାଜି ନୁହେଁ । ତୁମେ ଯେବେ ଅମଙ୍ଗ ହବ, ପଳାଇବାକୁ ଚେଷ୍ଟା କରିବ ତା ହେଲେ ବାଧ୍ୟ ହୋଇ ମୁଁ ତୁମକୁ କଷ୍ଟ ଦେବି । ତୁମକୁ ଯେ ମୋ ସାଙ୍ଗରେ

ଯିବାକୁ ହେବ ବନ୍ଧୁ ଭଲରେ ହଉବା ଖଣ୍ଡିଆ ଦଣ୍ଡିଆ ହଉ, ଆସ । ସେ ତାର କଚଟିଟା ଆଉ ଟିକିଏ ଦାବିଦେଲେ । ଲୋକଟା ପୁଣି ଆଃ, ଉଃ ହେଇ ତାଙ୍କ ସାଙ୍ଗରେ ଗଲା ।

ଗଦାଧର ତାଙ୍କ ସେ ବନ୍ଧୁଟିକୁ ସାଙ୍ଗରେ ନେଇ ଯୁଠି ନରହରି ଓ ସାଧାରଣ ବେଶି ସିପାହି ଚା ଖାଉଥିଲେ ସେଇଠିକି ଗଲେ । ସେମାନେ ସମସ୍ତେ ଟେସନର ସାହାଣ ଗଳି ପାର ହେଇ ବାହାରକୁ ଆସିଲେ । "ବାବୁ ରିକ୍ସା ଚାହି, ବାବୁ ଘୋଡ଼ା ଗାଡ଼ି ଚାହି" ବୋଲି କହି ସେମାନଙ୍କୁ ଘେରି ଗଲେ । ଗଦାଧରଙ୍କ ସାଙ୍ଗ ସେଇ ଗହଳିରେ ପଳାଇବାର ଚେଷ୍ଟା କରିବାକୁ ଯାଉଥିଲେ । ଗଦାଧର ସିପାହି ବାବୁଙ୍କୁ ଡାକି ବନ୍ଧୁଙ୍କର ଅପର କଡ଼ରେ ଠିଆ କରାଇଲେ । ଏ ଦିଗରେ ଗଦାଧରଙ୍କର ହାତର ଚାପ ଓ ଅନ୍ୟ ଦିଗରେ ସିପାହି ବାବୁଙ୍କ ଚାପ ପାଇ ବିଚାରା ସୁନା ପିଲାଟି ପରି ତାଙ୍କ ମଝିରେ ଚାଲିଲା । ଗଦାଧର ଦିଖଣ୍ଡ ଘୋଡ଼ାଗାଡ଼ି ଠିକ୍ କଲେ । ଗୋଟିକରେ ନରହରି ଓ ସିପାହୀ ଅନ୍ୟଟିରେ ସେ ଓ ତାଙ୍କର ବନ୍ଧୁ । ଗାଡ଼ି ଦୁଇଟି ଯାଇ ତୁଳସିପୁରରେ ଗୋଟିଏ ଛୋଟ ଏକ ମହଲା ଘର ପାଖରେ ଠିଆ ହେଲା । ସେମାନେ ସମସ୍ତେ ଓହ୍ଲାଇଲେ । ଗଦାଧର ତାଙ୍କ ପକେଟରୁ ଗୋଟିଏ ଚାବି ବାହାର କରି ନରହରିଙ୍କୁ ଦେଲେ । ନରହରି ସଦର ଦୁଆର ତାଲା ଖୋଲିଲେ । ଘର ଭିତରକୁ ଯାଇ ବିଜୁଳି ବୋତାମ ଟିପି ଆଲୁଅ ଜାଳିଲେ । ଭିତରପଟ ଦୁଆର ଖୋଲିଲେ । ଗଦାଧର ବାବୁଙ୍କୁ ଧରି ସିପାହିଙ୍କ ସହିତ ଘର ଭିତରକୁ ଗଲେ । ଦାଣ୍ଡ ଘରେ ସିପାହିଙ୍କୁ ଅପେକ୍ଷା କରିବାକୁ କହି ସେ ଭିତର ପଟ ଖଞ୍ଜାକୁ ଘିନି ଗଲେ । ଓ ପଛପଟେ ଗୋଟାଏ ଘର ଖୋଲା ତା ଭିତରେ ବନ୍ଧୁଙ୍କୁ ରଖି ଦୁଆର ବାହାରୁ ଚାବି ପକାଇ ଦାଣ୍ଡ ଘରକୁ ଆସିଲେ । ସିପାହିଙ୍କୁ କହିଲେ ସିପାହି ବାବୁ, ତୁମ ଇନ୍‌ସପେକ୍ଟରର ହୁକୁମ ତୁମେ ତାମିଲ କରିବ । ମୁଁ ଜାଣିଥିଲି ଯେ ତୁମ ଇନ୍‌ସିପେକ୍ଟରର ସାହେବ ଜଣେ ପୁଲିସ ମୋ ପିଛା ଲାଗାଇବେ । ଆଶା କରିଥିଲି ଯେ ସେ ଜମାଦାର ବା ଦାରୋଗା କେହି ହେବେ । ସେ ଯେ ମାତ୍ର ଜେଣ ସିପାହୀଙ୍କୁ ମୋ ପଛରେ ଦେଉଛନ୍ତି ଏଇଟା ମୋ ପକ୍ଷରେ ବହୁତ ବଡ଼ ଅପମାନ । ଯାହାହେଉ, ତୁମେ ଆସିଚ । ତୁମର କର୍ତ୍ତବ୍ୟ ତୁମକୁ କରିବାକୁ ପଡ଼ିବ । ଏ ବର୍ଷା ରାତିରେ ମୁଁ ତୁମକୁ ବାହାରି ଯିବାକୁ କହିବିନି । ତୁମେ ଏଇଠି ରହ । ଇଚ୍ଛା କରତ, ମୋ ଶୋଇଲା ଘର ଦୁଆର ମୁହଁରେ ପହରା ଦେଇପାର । କିନ୍ତୁ ମୁଁ ତୁମକୁ ଭଦ୍ରଲୋକର ଜବାବ ଦଉଚି । ମୁଁ ଏ ରାତିରେ କୁଆଡ଼େ ଯିବିନି । ତୁମେ ଯେବେ ମୋ କଥାରେ ବିଶ୍ୱାସ କର, ତାହାଲେ ନିଶ୍ଚନ୍ତ ମନରେ ଶୋଇଯାଇ ପାରେ । ଏଇ ଦାଣ୍ଡଘର କାନ୍ଥ ଆଲମାରି ଭିତରେ, କିଛି ବିସ୍‌କୁଟ୍, ଫଳ ଇତ୍ୟାଦି ଅଛି । ଭୋକ ଲାଗୁଥିଲେ ପେଟକ ଖାଇନିଅ । ନରହରି ବାବୁ ବିଛଣା ଆଣିଦେବେ । କଣ କହୁଚ ?

ସିପାହି – ଆଜ୍ଞା ଆପଣଙ୍କ କଥାରେ ମୋର ପୂରା ବିଶ୍ୱାସ ଆମେ ଗରିବ ଚାକିରିଆ ବାବୁ, ହୁକୁମ ତାମିଲ କରିବା ଜୀବ, ଆପଣ କଦାପି ମୋ ଭଳି ଲୋକଙ୍କୁ ଠକେଇବେନି । ତେବେ ବାବୁ, ଗୋଟାଏ କଥା ପଚାରିବି ? ଆପଣ ମତେ ଚିଠିଟି ଚିହ୍ନିଲେ ।

ଗଦା – ବଡ଼ ବାହାଦୂରି ସେଥିରେ କିଛି ନାହିଁ ସିପାହି ବାବୁ, ହଁ, ଆପଣଙ୍କ ନାଁ ଟି କଣ ? ଓ, ରାମଚନ୍ଦ୍ର ବେଶ୍ ନାଆଁ । ତୁମ ଇନ୍‌ସପେକ୍ଟର ଧମକେଇ କରିଗଲେ ଯେ ମୋର ଚାକର ସେ ମୋ ବିନା ସାହାଯ୍ୟରେ ଜାଣିଯିବେ ସେ ତଆଉ ଦଇବ ପୁରୁଷ ନୁହନ୍ତି । ଠିକ୍ କଲି ଯେ ସେ ମୋ ପିଛା ପୁଲିସ ଲଗେଇବେ । ସେ ଦିନ ମୁଁ ଲକ୍ଷ୍ୟ କରି ଦେଖିଲି ଜଣକ ପରେ ଜଣେ ଲୋକ ଆସି ସାଧାରଣ ବେଶରେ ମୋ ଘର ଛକି ରହିଲେ । ମୁଁ ଗାଡ଼ି ଡକାଇଲି ଦେଖିଲି ଜଣେ ଆସି ଗାଡ଼ିଆଳଠୁ ବୁଝିଲା, ମୁଁ କୁଆଡ଼େ ଯିବି । ସେ ଚାଲିଗଲା ତାପରେ ଟେସନରେ ମୁଁ ତୁମକୁ ଦେଖିଲି ତୁମେ ମୋ ପଛେ ପଛେ ଥାଅ । ମୁଁ ଗାଡ଼ିରେ ବସିଲି ତୁମେ ବି ପାଖ ଡବାରେ ବସିଲ । ପ୍ରତି ଟେସନରେ ତୁମେ ଓହ୍ଲାଇ ମୋ ଡବା ପାଖରେ ପଇନ୍ତରା ମାଇଲ । ବୁଝିବାର ଆଉ ବାକି ରହିଲା କଣ ? ସେ ଯାହା ହଉ, ଶୋଇ ଯାଅ କାଲି ସକାଳେ ଦେଖାଦେଖି ।

ଗଦାଧର ସେଠାରୁ ଚାଲିଗଲେ । ନରହରିଙ୍କୁ ଦେଖି ସବୁ କହିଲେ ନରହରି ବିଛଣାପତ୍ର ନେଇ ଦାଣ ଘରେ ପଶିଲେ ଓ ଅଗଣା ଦୁଆର ବନ୍ଦ ବାନ୍ଦ କରି ଦେଲେ ।

ଭିତର ଘରକୁ ଗଦାଧର ଆସି ଆଲୁଅ ଜାଳିଲେ । ଘରଟି ମଝିଆ ଆକାରର । ସେଇ ଗୋଟିଏ ଦୁଆର ଛଡ଼ା ସେଥିରେ ଆଉ ଦୁଆର ବା ପଞ୍ଜର ନାହିଁ । ଚାରିଆଡ଼ ନିବୁଜ । ଖଣ୍ଡିଏ ବେତ ଚୌକି ଓ ଆଉ ଗୋଟିଏ ଅଦ୍‌ଭୁତ ଧରଣର ପଥର ଚୌକି । ଚାରିଖଣ୍ଡ ଛୋଟ ପଥର ଖୁମ୍ବ ମାଟିରେ ପୋତା ହେଇଚି ଓ ତା ଉପରେ ଖଣ୍ଡେ ଆବୁଡ଼ିଆ ପଥର ପଟା ପଡ଼ିଚି । ଚୌକିର ପିଠି ଭଳି ଖଣ୍ଡେ ପଥର ମାଟିରେ ଖୋଳା ହୋଇ ଏଇ ପଥର ପଟାକୁ ଲାଗି ଥୁଆ ହେଇଚି । ଚୌକି ତଳଟା ଗୋଟାଏ ଚୁଲି ଭଳିଆ । ସେଥିରେ କେତେ ଗୁଡ଼ାଏ କୋଇଲା ଭରା ରହିଛି । ଗଦାଧର ସେ ଘରକୁ ପଶି ଆସିଲା ମାତ୍ରକେ ତାଙ୍କର ବନ୍ଧୁ ହଠାତ୍ ଆସି ତାଙ୍କୁ ଆକ୍ରମଣ କଲେ । ଗଦାଧର ଯେପରି ଆଗରୁ ପ୍ରସ୍ତୁତ ଥିଲେ । ସେ ଚୁନି ହୋଇ ଠିଆ ହୋଇଗଲେ ଓ ସେ ଲୋକଟା ତାଙ୍କ ପାଖକୁ ଆସିଲା ମାତ୍ରକେ, ଗଦାଧରଙ୍କର ଡାହଣ ହାତ ତାଙ୍କ ବାଁ ଗାଲ ହନୁରେ ଓ ତାଙ୍କର ବାଁ ହାତ ତାର ଲାହି ଉପର ଦେଶରେ ମୁଗୁର ଭଳି ନ ଦେଇ ପଡ଼ିଲା । ସେତିକିରେ ଲୋକଟା ପାଟିତୁଣ୍ଡ ନ କରି ତଳେ ପଡ଼ିଗଲା । ଗଦାଧର ସେଇ ଘରର କାନ୍ଥଖୁରାରେ ରଖା ଯାଇଥିବା ଛଣି ଦଉଡ଼ି ବିଡ଼ାଟିଏ ଆଣି, ଲୋକଟାର ହୋସ ଆସିବା ଆଗର ତାର ହାତ ଗୋଡ଼ ବାନ୍ଧି ପକେଇଲେ ଓ ଟେକି ତାକୁ ନେଇ ସେଇ ଲୁହା ଚୌକି ଉପରେ ଥୋଇ ଚୌକିର ବାହା ଓ ପିଠି ସହିତ ତା ବେକକୁ ଓ ଅଣ୍ଟାକୁ ବାନ୍ଧି ଦେଲେ । ତାପରେ ସେ ମେଞ୍ଚାଏ କନା ବାନ୍ଧି ଗୋଟିଏ ତୁଣ୍ଡି ତିଆରି କଲେ ଓ ହାତରେ ଧରି ସେ ଲୋକଟାର ପାଖରେ ଡାହାଣ ହାତରେ ଗୋଟାଏ ପାଣି ଢ଼ାଳ ଧରି ଠିଆ ହୋଇ ତାର ମୁହଁରେ ଓ ମୁଣ୍ଡରେ ପାଣି ଅଜାଡ଼ିଲେ । ପାଣି ଅଜାଡ଼ିଲା କ୍ଷଣି ଲୋକଟା ଆଖି ମେଲି ଚାହିଁଲା ଓ ନିଜର ଏପରି ଅବସ୍ଥା ଦେଖି ଡକା ପକେଇବା ପାଇଁ ପାଟି ମେଲା କଲା । ସେଇ ମୁହୂର୍ତ୍ତରେ ଗଦାଧର ତା ମୁହଁରେ ସେ ତୁଣ୍ଡିଟା ମାଡ଼ି ଦେଇ, ତା ବି କଡ଼ର ଦଉଡ଼ି ତା ମୁଣ୍ଡ ପଛ ପଟକୁ ଟାଣି ନେ ବାନ୍ଧି ଦେଲେ । ତାପରେ ସେ ବେତ ଚୌକିଟା

ପଥର ଚୌକିର କଡ଼ ପାଖକୁ ଟାଣି ଆଣି ବସି କହିଲେ, "ବନ୍ଧୁ, ତୁମକୁ ଏପରି କଷ୍ଟ ଦେବାକୁ ବାଧ ହେବା ଦ୍ୱାରା ମୁଁ ବଡ଼ ଦୁଃଖିତ । ଏତେ ଦୁଃଖିତ ଯେ, ଦେଖୁଚି ମୋ ଆଖିରୁ କିପରି ଲୁହ ଧାର ଧାର ହୋଇ ଗଡ଼ି ଯାଉଚି । କିନ୍ତୁ ଉପାୟ ନାହିଁ । ଏ ଯେ ମୋର ଗୁରୁଦେବଙ୍କର ହୁକୁମ । ନୂଆ ବନ୍ଧୁଟିଏ ପାଇଲେ ତାଙ୍କଠାରୁ ମରମ କଥାତକ ଶୁଣିବା ଯାଏ, ଏହିପରି କରିବା ମୋର ଧର୍ମ । ତୁମେ ଯେତେ ଜଲଦି ତୁମ ମରମ କଥାତକ ସରମ ନ ରଖି ବଖାଣିବ, ସେତେ ଜଲଦି ତୁମକୁ ମୁଁ ଏଥିରୁ ମୁକୁଳେଇ ଦେବି । ବୁଝିଲତ ? ବୁଝିଲ ଯେବେ ଆଖିପତା ଦିଥର ପକାଅ, ନ ବୁଝିଲେ ଥରେ । ଓଃ, ବୁଝିଚ ତା ହେଲେ । ବର୍ତ୍ତମାନ ମୁଁ ତୁମକୁ ଦିଟି କଥା ପଚାରିବି, ଗୋଟିଏ ହଉଚି, ତୁମକୁ କିଏ ମତେ ଛୁରା ମାରିବାକୁ ପଠାଇଲା । ଆଉ ସେ କୁଠି ରହେ । ବେଶ୍ ଏଇତକ କହିଦେଲେ ତୁମେ ମୁକ୍ତ, ମୁଁ ମଧ ନିଶ୍ଚନ୍ତ । କହିବନି ବନ୍ଧୁ ? କହିବାକୁ ଯେବେ ରାଜି ତେବେ ଆଖି ପିଛାଡ଼ି ଦି ଥର । ଓଃ, କହିବନି ? ଏ ବଡ଼ ଜବରଦସ୍ତି, ତୁମର ବନ୍ଧୁ ମତେ ଏପରି କଷ୍ଟ ଦେଇ ଭଲା ତୁମର କଣ ଲାଭ ? ତୁମେ ଦେଖୁଚ ସରକାରଙ୍କର ମୋ ପ୍ରତି ଏତେ ଅନୁଗ୍ରହ ଯେ ମୁଁ ଯୁଆଡ଼େ ଯାଏ ପଛରେ ପୁଲିସ ପହରା । ମୁଁ ଯେବେ ପୁଲିସିକୁ କହିଦିଏ ଯେ ତୁମେ ମତେ ଛୁରା ମାରିବା ବେଳେ ମୁଁ ତୁମକୁ ଧରିଚି, ପୁଲିସ ସାଙ୍ଗେ ସାଙ୍ଗେ ସେ କଥା ବିଶ୍ୱାସ କରିବ, ଆଉ ତୁମର ତାପରେ ଗୋଡ଼ ଖଡୁ ହାତ ଖଡୁ ସହିତ ମାମୁଁ ଘରର ନିମନ୍ତ୍ରଣ । ତୁମେ ଯେବେ ଆଶା କରିଥାଅ ଯେ ତୁମକୁ ମୁଁ ଏଠି ବେଶିଦିନ ରଖି ପାରିବିନି, ସେ ମଧ ତୁମର ଭୁଲ । ଏ ଘରର ଚାବି ମୋ ହାତରେ, ଏଘକୁ କେହି ଆସନ୍ତି ନି । ଏ ଘର ଏପରି ତିଆରି ଯେତେ ଶବ୍ଦ କଲେ ବି ବାହାର ଲୋକେ ଜାଣିପାରିବେନି । ମୁଁ ଇଛା କଲେ ତୁମକୁ ଏଇ ଘରେ ବନ୍ଦ କରି ରଖି ଖାଇବା ପିଇବାକୁ ନ ଦେଇ ମାରି ଦେଇପାରେ । ଅବଶ୍ୟ ସେପରି କରିବାରେ ମୋ ମନରେ ଦାରୁଣ ଦୁଃଖ ହେବ । ସେ କଷ୍ଟ ମୁଁ ସହି ପାରିବିନି । ସ୍ଥାନ ଛାଡ଼ି ପଳେଇ ଯିବି । କଣ କହୁଚ ? କହିବା ଏଥର ? ନା, ତଥାପି ମଧ ନୁହେଁ । ମୋର ମନେ ହଉଚି, ରାତି ସାରାର ବର୍ଷମାଡ଼ ଖାଇ ତୁମ ଦିହ ଥଣ୍ଡା ହୋଇଯାଇଚି । ସେହି ହେତୁ ତୁମେ କଥା ଧରି ପାରୁନ । ଟିକିଏ ଗରମ କରିବା ଦରକାର, ନାହେ ବନ୍ଧୁ, ଆଚ୍ଛା ଦେଖ, ନା ତୁମେ ଦେଖି ପାରିବନି । ଏଇ ତୁମେ ଯେଉଁ ସିଂହସନରେ ବସିଚ, ତା ତଳେ ଗୋଟିଏ କୋଇଲା ଆଞ୍ଚ କୋଇଲାରେ ଭରା ଅଛି । ସେଥିରୁ ପ୍ରତ୍ୟେକ କୋଇଲା ଖଣ୍ଡି କିରାସିନିରେ ବୁଡ଼ା ହେଇଚି । ଖାଲି ଦିଆସିଲିଟିଏ ମାରିଦେଲେ ନିଆଁ ଧରିଯିବ । ଟିକିଏ ବିଞ୍ଚିଦେଲେ ନିଆଁ ଡହକି ଉଠିବ । ତୁମେ ଯୁ ପଥର ଖଣ୍ଡିକରେ ବସିଚ, ଯେ ଝକମକି ପଥର ଭଳି ଅଳ୍ପକେ ତାତି ଯାଏ । ଖୁବ୍ ଜଲଦି ମାତ୍ର ପନ୍ଦର ମିନିଟ୍ ଭିତରେ ସେ ପଥରଟି ତାତି ଉଠିଲେ, ତୁମ ତଳପଟୁ ବେଶ୍ ଗରମ ବାହାରିବ ଓ ସେ ଗରମ ତୁମ ମୁଣ୍ଡକୁ ପଶିବାକୁ ଡେରି ହବନି । ବୁଝିଲତ ? ବୁଝିଚ, କହିବତ ? କହିବନି, ଭଲ । ଏହା କହି ସେ ପକେଟରୁ ଖଣ୍ଡିଏ ଦିଆସିଲି ନେଇ ଲଇଁ ପଡ଼ି ଆଞ୍ଚରେ ଲଗାଇ ଦେଲେ । କୋଇଲା ଜଳି ଉଠିଲା । କିଛି ସମୟ ଖଣ୍ଡିଏ ବିଞ୍ଚଣା ଧରି ସେ ତାକୁ ବିଞ୍ଚିଲେ କାଠ କୋଇଲା ବେଶୀ ଧୂଆଁ ନ ହୋଇ ଜଲଦି ଆଞ୍ଚ ତେଜିଗଲା । ତା ପରେ ଗଦାଧର ସିଧା ହୋଇ ବସି ଖଣ୍ଡିଏ ଚିଠାରେ

ଲଗାଇ ସେ ଲୋକଟା ଆଡ଼କୁ ଚାହିଁ ବସିଲେ । ତିନି ଚାରି ଖଣ୍ଡି ସିଗାରେଟ ସଇଲା ବେଳକୁ ଲୋକଟା ଛଟପଟ ହବାକୁ ଆରମ୍ଭ କଲା । ତାର ମୁହଁରୁ ଝାଳ ବୋହି ଭାସିଗଲା । ଆଖି ଦୁଇଟା ନାଲ ହୋଇ ଉଠିଲା ସେ ମାଡ଼ ଖାଇ ଯବତ ହବା କୁକୁର ଭଳି ଗଦାଧରଙ୍କ ଆଡ଼କୁ ଚାହିଁ ରହିଲା ।

ଗଦାଧର ପଚାରିଲେ. "କି, ବନ୍ଧୁ, କହିବତ ଏଥର, ବେଶ୍ ବେଶ୍ କହିବ, ଏଥର, ନା । କିନ୍ତୁ ସାବଧାନ କରି ଦଉଚି, ଯେବେ ପୁଣି ଚାଲାକି ଖେଳ, ଆଉ ତୁମ କଥା ଶୁଣିବିନି, ଅନ୍ତତଃ ତୁମେ ଦରସିଝା ନ ହେବା ଯାଏ, ବୁଝିଲତ ?" ଏହା କହି ସେ ଲୋକଟାର ଚୌକି ଦିହର ବନ୍ଧା ଖୋଲି ଦେଲେ ଓ ତାକୁ ଟାଣି ଆଣି ତଳେ ନଡ଼ା ବିଡ଼ାଟା ଭଳି ପକାଇ ଦେଲେ । ତାପରେ ତା ତୁଣ୍ଡରୁ ସେ ଲୁଗା ମେଞ୍ଚାଟା ଖୋଲି ଦେଲେ । ସେ ପାଣି ଟିକିଏ ମାଗିଲା ପିଇବାକୁ । ପାଣି ପିଇ ସାରି ସାଷ୍ଟମ ହେଲା । ସେ ଲୋକଟା ଯାହା କହିଲା ତାର ସାରାଂଶ ଏଇ ଯେ: – ସହରର – ନମ୍ବର ଘର ଗୋଟିଏ ଭଡ଼ା ଘର, ସେଠି ବାହାର ବିଦେଶିମାନେ ଆସି ବେଳେ ବେଳେ ଭଡ଼ା ନେଇ ରହନ୍ତି । ଜଣେ ଦକ୍ଷିଣିଆ ବାବୁ ଆସି ସେଠି ଥିଲେ । ଘରର ମାଲିକ ପହିଲମାନ ଗୁଣ୍ଡା ଦଳର ଜଣେ । ତାଙ୍କ ସାଙ୍ଗରେ ସାଥି ହୋଇ ସେ ଗୋଟାଏ ଲୋକକୁ ଜବତ କରିବା ପାଇଁ ତାଙ୍କର ସାହାଯ୍ୟ ମାଗିଲେ । ଜୀବନରେ ମାରିଦେବା ତାଙ୍କର ଲକ୍ଷ୍ୟ ନ ଥିଲା । କେବଳ ଭୟ ଦେଖାଇ ସେ ଯୁ କାମ କରୁଚନ୍ତି ସେଥିରୁ ତାଙ୍କୁ ଭଗେଇ ଦେବା ହିଁ ଥିଲା ଅସଲ ଲକ୍ଷ୍ୟ । ସେଥିଲାଗି ସେ ଗୁଣ୍ଡା ସର୍ଦ୍ଦରଙ୍କୁ ଟ୫୦୦ ଦବାର ଠିକ୍ ହେଲା । ଓ ଗୁଣ୍ଡା ସର୍ଦ୍ଦାର ତାକୁ ଏଥିଲାଗି ନିଯୁକ୍ତ କଲେ । କାମ ହାସଲ କରି ପାରିଲେ ସେ ଟ୨୫୦ ବକ୍‌ସିସ୍ ପାଇବ ବୋଲି କଥା ହେଲା । ସେ ଛତ୍ରପୁର ଗଲା ଓ ସେଠାରେ ସେଇ ଲୋକଟାର ପରାମର୍ଶ ଅନୁସାରେ ଗୁଡ଼ାଏ ଫଳ କିଣି ସେଥିରେ ବିଷ ଇଞ୍ଜେକ୍‌ସନ୍ ଦେଇ ଗଦାଧରଙ୍କ ଦୁଆରେ ଦେଇ ଆସିଲା । ସେଥିରେ କିଛି ଫଳ ନ ହେବାରୁ ଓ ଗଦାଧର କଟକ ଯିବା ଖବର ମିଳିବାରୁ, ତାଙ୍କ ପିଛା ଧରି ସୁବିଧା ଅନୁସାରେ ଛୁରାରେ ତାଙ୍କୁ ସାମାନ୍ୟ ଜଖମ କରିବାକୁ ତାକୁ ହୁକୁମ ଦେଲା ।"

ସେ ଯାହା କହିଲା, ଗଦାଧର ତାହା ଲେଖି ନେଲେ ପଢ଼ି ଶୁଣାଇ ଦେଲେ ଓ ତା ପରେ ସେ ଲୋକର ବୁଢ଼ା ଆଙ୍ଗୁଠି ଛାପ ତା ଉପରେ ନେଲେ । ତା ପରେ ତାର ଗୋଡ଼ହାତ ସେହି ପରି ବାନ୍ଧି ପକାଇ ଦେଇ କହିଲେ, "ତୁମେ ଯାହା କହିଲ, ସେଇଆ ସତକି ମିଛ ମୁଁ ଜାଣେନି । ମୁଁ ସକାଳେ ଏହା ପରୀକ୍ଷା କରି ଦେଖିବି । ଯେବେ ସତ ହୁଏ, ତା ହେଲେ ଆସି ତୁମକୁ ମୁକୁଳେଇ ଦେବି । କିନ୍ତୁ ତମକୁ ସରକାରି ସାକ୍ଷି ଭାବରେ ସାକ୍ଷୀ ଦବାକୁ ପଡ଼ିବ । ଯଦି ଠିକ୍ ଠିକ୍ କଥା ସାକ୍ଷ୍ୟ ଦିଅ, ତା ହେଲେ ତୁମକୁ ଟ ୨୫୦ ପୁରସ୍କାର ମିଳିବ, ନାଇଁ ଯେବେ ତୁମ କଥା ମିଛି ହୁଏ, ତା ହେଲେ ଯାହା ହବ ତାତ ବୁଝୁଚ ।" ଏହା କହି ଦୁଆର ବନ୍ଦ କରି ଆଉ ଗୋଟାଏ ଘରେ ଶୋଇବାକୁ ଗଲେ ।

●

# ନଅ

– ସହରର – ଗଳିରେ – ନମ୍ବର ଘର । ଘରଟାର ବାହାର ପଟ ପକ୍କା ଘର କିନ୍ତୁ ଚାଳ ଛପର । ଭିତର ପଟେ ଦି ସାହଲା ଘର । ମଝି ସାହାଲାରେ ମାତ୍ର ଗୋଟିଏ ପକ୍କା କୋଠରି, ସାହାଲାର ମଝିରେ ଏପଟ ସେପଟ ଖୋଲା ବାରଣ୍ଡା, ତ ପଛକୁ ଆଉ ଗୋଟିଏ ସାହାଲା କଚା ଘର । ବାହାର ସାହି ଦାଣ୍ଡ ଘର ବାହାରୁ ପଟୁ ବନ୍ଦ । ରାତି ପ୍ରାୟ ଦଶଟା ବାଜିଚି । ଦି ଜଣ ମଣିଷ ସେ ବାହାର ପଟ କୋଳପ ଫିଟେଇ ଅତି ସଂଗୋପନରେ ଘରେ ଓ ସିଧେ ଯାଇ ମଝି ସାହାଲ ଘର ଦୁଆରେ ପହଞ୍ଚିଲେ । ସେ ଘରଟା ମଧ୍ୟ ବାହାର ପଟୁ ତାଲା ବନ୍ଦ ଥିଲା । ସେମାନେ ସେ ଚାବି ଖୋଲି ଭିତରେ ପଶିବା ମାତ୍ରକେ ସେ ଘର ଭିତରୁ ଜଣେ ଲୋକ ଚମକି ଆସି ତାଙ୍କ ଆଗରେ ଠିଆ ହେଲା, କହିଲା "ଆଣିଚ ଭାଇ, ଆଣିଚ, ଦିଅ ଟିକିଏ ମୋ ଦିହ ଭାଙ୍ଗି ପଡୁଚି ।" ଏହା କହି ସେ ଆସୁଥିବା ଜଣକୁ ଯାଇ ଧରି ପକାଇବାକୁ ଚେଷ୍ଟା କଲା । ସେ ତାକୁ ଜୋରରେ ଠେଲି ଦେଲା, ଲୋକଟା ଯାଇ ଗୋଟାଏ କଣରେ ଲଥ କରି ପଡ଼ିଗଲା । ଏମାନେ ବତି ଜାଳିଲେ । ତାଙ୍କ ଭିତରୁ ଜଣେ ଦକ୍ଷିଣିଆ ଭଳି ଲୁଗା ପିନ୍ଧିଚି ଓ ବାଳ ରଖିଚି । ଆଉ ଜଣେ ମସ୍ତ ବଡ଼ ମଣିଷ । କଳା ମଶମଶ ବଳି ଦେଲା ପରି ପିଟି ଦେଲା ପରି ସେ ଦେହଟାରେ ମାଛି ବସିଲେ ମଧ ଖସି ପଡ଼ିବ । ଜଗନ୍ନାଥଙ୍କ ଭୋଗଲଗା ପଥୁରି ଥାଳି ଭଳି ସେ ମୁହଁଟାରେ ନେଉଳ ଲାଙ୍ଗୁଡ଼ ଭଳି ଦି ପଟ ନିଶ, ତା ଉପରେ ନାଳ ଟହ ଟହ କୁକୁଡ଼ା ଗୁନିଆ ଆଖି ଦିଟା । ଭଙ୍ଗା ଢିପା ନାକଟା ଗୋଟାଏ ଖଣ୍ଡିଆ ପାହାଚ ଭଳି ମୁହଁରୁ ଚୌଠେ ମାଡ଼ି ବସିଚି । କାନ ଦିଟା ମୋଚକା ମୋଚକା । ବାହାର ଓ ଛାତିର ମାଂସ ପେଶି ଗୁଡ଼ାକ ଅଜଗର ସାପ ଭଳି ମୋଡ଼ି ଭିଡ଼ି ହେଉଛନ୍ତି । ତାର ଚମଡ଼ା ତଳେ । ତା ହାତରେ ଗୋଟାଏ ଲୁହାବାଡ଼ି ଓ ଅଣ୍ଟାରେ ଗୋଟାଏ ଛୁରା । ସେ ଯାଇ ଘର କୁଣରେ ପଡ଼ିଥିଲା । ଯୁ ଲୋକଟା ତାର ହାତ ଧରି ଟାଣି ଆଣି ଘର ମଝିରେ ବସାଇଲା ଓ ସେ ତାର ସାଥି ଦୁହେଁ ତା ପାଖରେ ବସିଲେ । ସେ ଲୋକଟା କହିଲା ଦେଖିବେ ଚୁପ୍ ହୋଇ ବସିବୁ ତ ବସିବୁ, ନ ହେଲେ ଜାଣିବୁ ନା – ଏହା କହି ସେ ତାକୁ ତାର ଛୁରା ଦେଖାଇଲା । ସେ ଲୋକଟା ଡରିମରି ଯେପରି ମାଟିରେ ମିଶିଗଲା ।

ତାପରେ ଦକ୍ଷିଣିଆ କହିଲେ, "ପହିଲାମାନ ବାବୁ, କିସ କରିବା ହେ, ତୁମର ସେ ଲୋକଟା ତ ନାହିଁ ଫେରିବାର ।"

ପହିଲ – ହାମାର ଡର, ସେ ଶାଳ ଗୁଇନ୍ଦା ତାକୁ ପକଡ଼ି ନେଲାଣି ସେ ଯେକି କହିବ, କି କରିବ, ଶଳାଟା ତ ଭାରି ଗଧ । ତୁ ବାବୁ ଏଠୁ ଚଲ୍ । ହାମେ ଆଉ ତତେ ଏଠି ରଖି ପାରିବା ନାହିଁ । ତୋ ଲାଗି ହାମର ଜାନ ଯିବନା କଣ ?

ଦକ୍ଷି – ମୁଁ ନ ହେଲା ବା ଗଲି । ଏ ଲୋକଟା ତୁମେ କିଛି ଭାବୁଚ, ତାର ଭାଇ ଭଉଣୀ ଜେଲରେ ଅଛି । ମଣିଷ ମାରୁ ମକଦ୍ଦମାରେ ସଡୁଚି ।

ଲୋକ – ଏଁ, ମୋ ଭଉଣୀ ଜେଲରେ ? ମଣିଷମାରୁ ମକଦମା ? ସେ ତ ମଣିଷ ମାରିନି, ନା, ମ, ସେ କାହିଁକି ମାରିଚି ସେ କିମିତି ମାରିବ ! ଏଁ, କଣ ସବୁ କହୁଚ ତୁମେ ? ଓଃ, କିଛି ଯେ ମୁଣ୍ଡରେ ପଶୁନି ମୋର ଗୋଟାଏ ଦିଟା ଛିଟା ଦିଅନା ଭାଇ, ଦେଖିବ ମୋର ସବୁ ବୁଦ୍ଧି ଚାଲି ଆସିବ ।

ଦକ୍ଷି – ତୁ ସେ କାଗଜଟା ଦସ୍ତଖତ କରିବାକୁ ନ ମଙ୍ଗିବା ଯାଏ ତତେ କିଛି ମିଳିବନି ।

ଲୋକ – କାଗଜ ? କି କାଗଜ ! ଦିଅ, ମୁଁ ବଳେ ଦସ୍ତଖତା କରିଦେବି ।

ଦକ୍ଷି – ସତେ ? ତେବେ ନେ, ଏଇ କାଗଜଟାର ଏଇଠି ଦସ୍ତଖତ କର । ଧର ଏ କଲମ । ସେ ଖଣ୍ଡେ କାଗଜ ମୋଡ଼ି ତାର ଗୋଟାଏ ଜାଗା ଦେଖାଇ ଦେଲେ ଓ ଗୋଟାଏ ଝରଣା କଲମ ବଢ଼ାଇ ଦେଲେ । ସେ ଲୋକଟା କଲମ ଧରି ଦସ୍ତଖତ କରିବାକୁ ଯାଉ ଯାଉ ହଠାତ୍ ଥମିଗଲା, କହିଲା, "ଉଁ ହୁଁ, ମୁଁ ନ ପଢ଼ି କରି କିମିତି ଦସ୍ତଖତ କରିବି, କଣ ଏଥିରେ ଲେଖାଅଛି । ମୁଁ ଟିକିଏ ପଢ଼େଁ ।"

ଦକ୍ଷି – ପୁଣି ସେଇ କଥା ? ଶଳା ବେହିମାନ । ଏହା କହି ସେ ତାକୁ ଗୋଟାଏ ଚାପୁଡ଼ା ମାଇଲା ।

ପହିଲି – ଆରେ ଛାଡ଼ । ଯେ ଲେଖା ଲେଖି ଦସ୍ତଖତ ଫସ୍ତଖତ ହାମେ ବୁଝୁନୁଁ । ଶଳା ବୋକା – ବେ, ସେ ଆଜି ଯାହା ନେଖି ହବ, କାଲି ତ ମାନିବନି । ତୁ ଭାବିଚୁ ସେ ମୁକୁଳି ଗଲା ପରେ ଯେତେବେଳେ ଶୁଣିବ ତା ଭଉଣୀ ସେ ମାଇକିନାଟାକୁ ମାରିଚି ବୋଲି ଜେହ୍ଲେରେ ଅଛି, ସେତେବେଳେ ସେ ତୁନି ହୋଇ ବସିରହିବନା, ତୁ ତାଠୁ ଗୋଟେ ଦସ୍ତଖତ ନେଇଚ୍ଛ ବୋଲି ? ବେ, ମୋ କଥାମାନ, କାଢ଼ ଟ ୫୦୦ । ମୁଁ ଆଜି ରାତିରେ ତାକୁ ସାବାଡ଼ କରିଦେବି । ମୁଲୁ ମାଇଲେ ଯିବ ସରି, ଦେବଙ୍କ ସାଙ୍ଗେ କିମ୍ପା କଳି ।

ଦକ୍ଷି – ଶୁଣୁଲୁତ, ଶଳା, ତୁ ଯେବେ ଲେଖି ନ ଦେବୁ, ତା ହେଲେ ପ୍ରାଣରେ ମରିବୁ ।

ଲୋକ – ଓ, ଏ ଲେଖାଟା ତା ହେଲେ ବୁଝିଲି । ମୋ ଭଉଣୀ ସେ ବୁଢ଼ୀଟାକୁ ମାଇଲା ବୋଲି ମୋଠୁ ଲେଖେଇ ନବନିା ? ତୁମେ ମାଇଲ, ଫାଶୀ ଯିବ ମୋ ଭଉଣୀ, ମୋରି ସାକ୍ଷରେ । ବାଃ, ବେଶ୍ ଚାଲାକିତ ।

ଦକ୍ଷି – ତା ହେଲେ ମରିବୁ ?

ଲୋକ – ମାର, କିନ୍ତୁ ଏ କଥା ମୁଁ ଲେଖି ଦେଇ ପାରିବିନି । ମୋରି ହେତୁରୁ ମୋ ଭଉଣୀର ଏ ଅବସ୍ଥା । ଏଇ ଗୁଳି ଖୁଆଇ ତୁ ମତେ ପଶୁ କରିଚୁ । ମୁଁ ତୋ ଚକ୍ରାନ୍ତ ବୁଝି ପାରି ନ ଥିଲି । ମୁଁ ଯେବେ ଏଥିରୁ ବଞ୍ଚେ, ତାହେଲେ ତୁ ନିଶ୍ଚୟ ଫାଶୀ କାଠରେ ଝୁଲିବୁ ।

ଦକ୍ଷି - ଚୁପ୍ ବେ, ତାକୁ ଦି ଚାପଡ଼ା ମାଇଲା। ତାପରେ କହିଲମାନଙ୍କୁ ଲକ୍ଷ୍ୟ କରି କହିଲା, "ଠିକ୍ କହିଚ ଭାଇ। ତୁମରି କଥାଇ ଠିକ୍। ଏ ଲୋକଟାକୁ ବଞ୍ଚାଇ ଛାଡ଼ି ଦେଲେ ବଡ଼ ବିପଦ। ତୁମେ ଦେଖିଲା କାମ କର, ଆଜି ରାତି ଭିତରେ।"

ପହିଲ - ଆରେ ଆଗେ ମାଲ, ପଛେ ତାଲ, ଦେ ଟ ୫୦୦।

ଦକ୍ଷି - ନା ଭାଇ, ଟ ୫୦୦ ବଡ଼ ବେଶୀ, ଟ ୩୦୦ ନିଅ।

ପହିଲ - ଉଁ, ହୁଁ, ଟ୫୦୦ ରୁ ଗୋଟିଏ କଉଡ଼ି କମ୍ ହେଲେ ଚଳିବ ନାହିଁ। କିଛି ସମୟ ତାଙ୍କ ଭିତରେ ଦରଦାମ ଚାଲିଲା। ଯା ଭିତରେ ସେ ଲୋକଟା ସେଠାରୁ ଖସି ପଳାଇବାର ଉଦ୍ୟମ କରି ଆସ୍ତେ ଆସ୍ତେ ଘୁଞ୍ଚି ଘୁଞ୍ଚି ସେମାନଙ୍କ ଠାରୁ ଟିକିଏ ଦୂରକୁ ଯାଇ ହଠାତ୍ ଉଠି ପଡ଼ି ଦୁଆର ମୁହଁକୁ ଦଉଡ଼ିଲା। ମାତ୍ର ସେ ଦଉଡ଼ିବା ଛେଳି ବାଘ ମୁହଁରୁ ଦଉଡ଼ିଲା ପରି। ଗୋଟାଏ ଝାମ୍ପରେ ପହିଲମାନ ତାକୁ ଧରିଲା ଓ ଗୋଟାଏ ମୁଖିରେ ତାର ଦାନ୍ତ ଛଡ଼େଇ ବେହୋସ କରି ତଳେ ଦୁପ କରି ପକାଇ ଦେଲା। ସେତିକି ବେଳେ ଅଗଣା ଭିତରେ କଣ ଦୁପ୍ ଦାପ୍ ହୋଇ ପଡ଼ିଲା। ଏମାନେ ଦୁଆର ଖୋଲି ଦେଖନ୍ତି ତ, ଗଦାଧର୍ ବାବୁ, ସଦର ଥାନା ଦାରୋଗା ଓ ଦୁଇଜଣ ସିପାହି ପାଚିରି ଡେଇଁ ଅଗଣାରେ ପହଞ୍ଚିଛନ୍ତି। ଏମାନଙ୍କୁ ଦେଖି ପହିଲମାନ ଓ ତାର ସାଙ୍ଗ ଦକ୍ଷିଣିଆ ଯେ ମିନିଟିଏ ଦି ମିନିଟ ଅଚାବୁଆ ହୋଇ ଠିଆ ହୋଇଗଲେ। ସେଇ ଅବସରରେ ପୁଲିସମାନେ ଆସି ସେମାନଙ୍କୁ ଘେରି ନେଲେ। ପହିଲମାନଙ୍କୁ ଦି ଜଣ ସିପାହି ଧରି ଥିଲେ। ସମ୍ଭାଳି ପାରିଲେନି। ତାର ଜ୍ଞାନ ଫେରି ଆସିଲା କ୍ଷଣି ସେ ଦିଟା ସିପାହିଙ୍କୁ ତା ଦିହର ମାଛି ଝାଡ଼ି ଦେଲା ଭଳି ଝାଡ଼ି ଦେଇ ଦି ଡ଼ିଆଁରେ ଘର ପାର ହୋଇ ଚାଲିଗଲା। ପୁଲିସ ଓ ଗଦାଧର ସେ ଦକ୍ଷିଣିଆ ଓ ସେ ଲୋକଙ୍କୁ ଧରି ଥାନାକୁ ନେଇଗଲେ। କହିବା ନିଷ୍ପ୍ରୟୋଜନ ବୋଧହୁଏ, ଯେ ଏ ଦକ୍ଷିଣିଆ ଖୁଣି ହୋଇଥିବା ବୁଢ଼ୀଙ୍କର ପଡ଼ିଶା ଘରର ଓ ଏ ଲୋକଟା ସେ ଖୁଣିରେ ଧରା ହୋଇଥିବା ହରିବାବୁଙ୍କ ସ୍ତ୍ରୀଙ୍କର ଭାଇ ଗୋପାଳ।

•

## ଦଶ

ଛତ୍ରପୁର ଏସ୍.ଡି.ଓ.ଙ୍କ ଇଜଲାସରେ ବୁଢ଼ୀଙ୍କ ହତ୍ୟା ମକଦ୍ଦମା ଅନୁସନ୍ଧାନ ଚାଲିଚି। ପୁଲିସ ପକ୍ଷର ଜମାନବନ୍ଦି ସରିଚି। ଆଜି ଆସାମି ପକ୍ଷର ଜମାନବନ୍ଦି। କଚରି ଭିତରେ ସୋରିଷ ପକେଇବାକୁ ଜାଗା ନାହିଁ। ଛତ୍ରପୁର ସହରର ଯେତେ ଲୋକ ସମସ୍ତେ ଯେପରି ଏ ମକଦମା ଶୁଣିବାକୁ ହାଜିର ଅଛନ୍ତି। ଆସାମିର ଆଡ଼ାରେ ହରିବାବୁଙ୍କ ସ୍ତ୍ରୀ ଓ ଭାଇ। ସେମାନଙ୍କ ମୁହଁରେ ଗୋଟାଏ ବ୍ୟଗ୍ରତା ଓ ଗୋଟାଏ ଉକଣ୍ଠା। ସ୍ପଷ୍ଟ ଜଣା ପଡୁଚି। ହାକିମ୍ ଆସାମି ପକ୍ଷର ଓକିଲଙ୍କୁ

ପଚାରିଲେ "ଆପଣ ସାକ୍ଷ୍ୟ ଦେବେ ?" ଓକିଲ କହିଲେ, "ହଁ ହଜୁର ।ମୋର ସାକ୍ଷ୍ୟ ମହଜୁଦ୍ ଅଛନ୍ତି ।" ହାକିମଙ୍କ ଆଦେଶ ପ୍ରଶ୍ନରେ ଗଦାଧର ବାବୁ ଯାହା କହିଲେ, ତାହାର ସାରମର୍ମ ଏହି, "ଏ ମକଦ୍ଦମା ନବା ପାଇଁ ହରିବାବୁଙ୍କ ଦ୍ୱାରା ଅନୁରଦ୍ଧ ହେଲା ପରେ, ସେ ଏହାର ସମସ୍ତ ବିବରଣି ପଢ଼ିନେଲେ । ସେଥିରୁ ତାଙ୍କ ଦୁଇଟି ସନ୍ଦେହ ହେଲା, ପ୍ରଥମ – ଯେବେ ହରିବାବୁଙ୍କ ସ୍ତ୍ରୀ ବୁଢ଼ୀଙ୍କୁ ମାରି ଅଳଙ୍କାର ତକ ଚୋରାଇ ନବାର ସୁବିଧା ତାଙ୍କ ଦିଅର ସାଙ୍ଗରେ କରି ଏ ହତ୍ୟା କରିଥାନ୍ତି, ତା ହେଲେ ସେ, ସେ ଅଳଙ୍କାର ଗୁଡ଼ିକ ନିଜ ଘରେ ରଖି ନ ଥାନ୍ତେ ଓ ରଖିଥିଲେ ମଧ ଏପରି ଭାବରେ ରଖିଥାନ୍ତେ ଯେ, କେହି ତାର ପତ୍ତା ପାନ୍ତେ ନାହିଁ । ତା ନ କରି ଖୁଣି ଜଣା ପଡ଼ିଲା ପରେ ଦିନ ଦିପହରେ ପୁଲିସି ଜଗୁଆଳି ସାମନାରେ ସେ ଯେ ସେ ଅଳଙ୍କାର ଗୁଡ଼ିକ କୁଅରେ ପକାଇବାକୁ ଗଲେ ଏହା ହିଁ ତାଙ୍କର ନିର୍ଦ୍ଦୋଷତାର ପ୍ରଥମ ସନ୍ଦେହ । ଦ୍ୱିତୀୟ ସନ୍ଦେହର କଥା ଯେ ହରିବାବୁଙ୍କ ଭାଇ ତାଙ୍କର ରକ୍ତ ବୋଳା ଲୁଗାଟିକୁ ଅନେକ ପ୍ରକାରେ ହରଣଚାଲ କରିପାରି ଥାନ୍ତେ । ସେ ତାକୁ ନେଇ ନିଜ ବାଡ଼ିର କଦଳି ବୁଦା ଗହଳରେ ରଖନ୍ତେ କିଆଁ ? ଏଇ ସନ୍ଦେହ ହେତୁରୁ ମୁଁ ହରିବାବୁଙ୍କ ସ୍ତ୍ରୀ ସହିତ ଜେଲରେ ଦେଖାକରି ତାଙ୍କର ହାବଭାବ ଓ କଥାବାର୍ତ୍ତାରୁ ମୁଁ ବୁଝିଲି ଯେ ସେ ନିରପରାଧୀନି । କିନ୍ତୁ ତାଙ୍କର କୌଣସି ଆତ୍ମୀୟଙ୍କୁ ରକ୍ଷା କରିବାକୁ ଯାଇ ସେ ଏପରି ମୂକ ବନି ଯାଉଚନ୍ତି । ତାଙ୍କର କିଏ ଏପରି ଆତ୍ମୀୟ ଅଛି ଅନୁସନ୍ଧାନ କରି ବୁଝିଲି ଯେ ସେ ସଦାନନ୍ଦଙ୍କ ଆର ପଡ଼ିଶା ଘରର ମାଲିକଙ୍କ ସହିତ ପାପ ପ୍ରରୟାସକ୍ତ । ଅଛନ୍ତି ବୋଲି ସାହିରେ ସମସ୍ତଙ୍କ ମନରେ ସନ୍ଦେହ । ଅତଏବ ମୋର ସନ୍ଦେହ ସେହି ଲୋକ ଉପରେ ହେଲା । ବୁଢ଼ୀଙ୍କର ସୁଧ ଘର ସମୟରେ ମୁଁ ସଦାନନ୍ଦ ବାବୁଙ୍କ ଘରେ ଛଦ୍ମବେଶରେ ମୂଲିଆ ହୋଇ କାମ କଲି ଓ ସମୟ ଉଣ୍ଡି ଆର ପଡ଼ିଶା ଘରକୁ ଯାଇ ଖୋଜି ଦେଖିଲି ଯେ ତାଙ୍କ ଅଗଣାରେ ଖଣ୍ଡେ ବାଉଁଶ ଅଛି, ଯାହା ଦିହାରେ ରକ୍ତର ଛିଟା ଠାଏ ଠାଏ ଲାଗିଚି । ଏ ସ୍ଥଳରେ ମୋର ଅଦାଲତକୁ ମନେ ପକେଇ ଦେବା ଉଚିତ ଯେ ଲାସ ମାଇନା ସମୟରେ ଲାସ ପାଟିରୁ ଖଣ୍ଡେ ଛୋଟ ଚମଡ଼ା ବାହାରିଥିଲା ଓ ତା ହାତରୁ କେତୋଟି ମୁଣ୍ଡ ବାଳ ମଧ ବାହାରି ଥିଲା । ପୁଲିସ ଏ ସବୁ ଘେନା କଲେନି । ମୁଁ କିନ୍ତୁ ସେ ଚମଡ଼ାଟି ପରୀକ୍ଷା କଲି ଓ ଦେଖିଲି ଯେ ତାହା କୌଣସି ଲୋକର ପାପୁଲି ଚମଡ଼ା । ବୁଢ଼ୀଙ୍କ ମରିବାର ଦୃଶ୍ୟ ମୁଁ କଳ୍ପନା କଲି । ଖୁଣି ହୁଏତ ଏ ପଡ଼ିଶା ବା ସେ ପଡ଼ିଶା ଯେ ହେଉନା କାହିଁକି ବୁଢ଼ୀ ଯେତେବେଳେ ଚାରିଆଡ଼ ବନ୍ଦ କରି ଶୋଇଥିଲେ, ଖୁଣି ନିଶ୍ଚୟ ଦି ଘର ପାଚେରୀ ଡେଇଁ ତାଙ୍କ ଅଗଣାକୁ ଯାଇଥିବ । ହରିବାବୁଙ୍କ ତରଫରୁ ପାଚିରି ଡେଇଁବାର କିଛି ଚିହ୍ନ ନ ଥିଲା । ମୁଁ ବହୁତ ଡ଼େରିରେ ଅନୁସନ୍ଧାନ ଆରମ୍ଭ କରିଥିଲି । ସୁତରାଂ ସେ ଚିହ୍ନର ଅଭାବ ବଡ଼ ବେଶୀ ସନ୍ଦେହ ଆଣି ନ ପାରେ । ମୁଁ ଭାବିଲି ପାଚିରି ଡେଇଁବାର ଉପାୟ ହୁଏତ ନିଶୁଣି, ନ ହେଲେ ବାଉଁଶ ସାହାଯ୍ୟରେ ଡେଇଁବା, ଦି ପଟ ପଡ଼ିଶାଘରେ କାହାରି ନିଶୁଣି ଥିବାର ମୁଁ ଦେଖିଲିନି । ଅତଏବ ବାଉଁଶ ସାହାଯ୍ୟରେ ଖୁଣି ପାଚିରି ଡେଇଁ ପଶିଥିବାର ମୁଁ ଠିକ୍ କଲି । ଖୁଣି ସଦାନନ୍ଦଙ୍କ ଅଗଣାରେ ଡେଇଁ ପଶିବାର

ଶବ୍ଦରେ ବୁଢ଼ୀଙ୍କର ନିଦ୍ର ଭାଙ୍ଗି ଯାଇଥିବ ସେ ଦୁଆର ଖୋଲି ଅଗଣାକୁ ଆସିଥିବେ। ସେତେବେଳେ ଖୁଣି ତାଙ୍କୁ ପଛଆଡୁ ଆକ୍ରମଣ କରିଥିବ। ବୁଢ଼ୀ ପାଟି ନ କରିବା ଲାଗି ସେ ନିଶ୍ଚୟ ତାଙ୍କ ମୁହଁ ତା ହାତରେ ବନ୍ଦ କରି ଦେଇଥିବ। ବୁଢ଼ୀ ପ୍ରାଣ ବିକଳରେ ପଛ ଆଡ଼ିଆ ତା ମୁଣ୍ଡବାଳକୁ ଧରି ପକାଇଥିବେ ଓ ତାର ପାପୁଲି କାମୁଡ଼ି ଦେଇଥିବେ। ସେଇ କାମୁଡ଼ାରେ ପାପୁଲିର ଚମଡ଼ା ଛିଣ୍ଡିଯାଇ ତାଙ୍କ ପାଟିରେ ଓ ଖୁଣିର ମୁଣ୍ଡ ବାଳ କିଛି ତାଙ୍କ ହାତରେ ରହିଯାଇଥି। ମୁଁ ଏହିପରି କଳ୍ପନା କରି ତାଙ୍କ ଆର ପଡ଼ିଶାଙ୍କ ହାତ ପରୀକ୍ଷା କରିବାକୁ ଚାହିଁଲି। ବୁଢ଼ୀଙ୍କ ଶ୍ରାଦ୍ଧ ଘର ଦିନ ମୁଁ ଯେତେବଳେ ତାଙ୍କ ଅଗଣାରେ ପଶି ସେ ବାଉଁଶଟା ପରୀକ୍ଷା କରୁଥିଲି ସେତିକି ବେଳେ ସେ ଘରକୁ ପଶି ଆସିଲେ। ତାର ଶବ୍ଦ ଶୁଣି ମୁଁ ଲୁଚି ରହିଲି ସେ ଘର ଭିତରକୁ ପଶିଗଲେ। ଅନ୍ଧାରରେ ତାଙ୍କୁ ଆକ୍ରମଣ କରି ତଳେ ପକାଇ ଦେଲି। ସେଇ ଅବସରରେ ମୁଁ ତାଙ୍କ ହାତ ପାପୁଲି ମୋ ଟର୍ଚ୍ଚ ଆଲୁଅରେ ପରୀକ୍ଷା କରି ଦେଖିଲି ବାଁ ହାତ ପାପୁଲିରେ ଟିକିଏ ଖଣ୍ଡିଆ ଦାଗ ଅଛି। ସେତିକିବେଳେ ମଧ ମୁଁ ତାଙ୍କ ମୁଣ୍ଡରୁ କେରାଏ ବାଳ କଇଁଚିରେ କାଟି ନେଇଗଲି। ଏ କଥା ଅନ୍ୟ କେହି ଜାଣି ପାରିଲେନି, ସତ, କିନ୍ତୁ ସେ ଭଦ୍ର ଲୋକଙ୍କ ମନରେ ସନ୍ଦେହ ଓ ଅବିଶ୍ୱାସ ପ୍ରଥମ ଥର ପାଇଁ ଚେଇଁ ଉଠିଲା। ସେଇ ରାତିରେ ଗୋଟିଏ ଭିଖାରି ସହିତ ଆଳପ କଲି। ସେ ସବୁ ଦିନେ ସଦାନନ୍ଦଙ୍କ ପିଣ୍ଡାରେ ଆଶ୍ରୟ ନିଏ ଓ ବୁଢ଼ୀ ତାଙ୍କ ଅଇଁଠା ଭାତ ତୋଡ଼ାଣି ତାକୁ ଦିଅନ୍ତି। ତାଠୁ ବୁଝିଲି ସେ ରାତିରେ ଜଣେ କିଏ ଆସି ତାକୁ ମଉଛା ଖାଇବାକୁ ସହର ବାହାରେ ଗୋଟାଏ ବଗିଚାକୁ ନେଇଗଲେ। ସେ ଦେଖିଲା ଆଉ କେହି ନାହାନ୍ତି। ସେ ଏକା। ତାକୁ ଖାଇବାକୁ ଦିଆ ହେଲା ଡେରିରେ ଓ କୁହାଗଲା ଯେ ଏତେ ଡ଼େରିରେ ସେ କୁଆଡ଼େ ଯିବ, ସେଇଠି ଶୋଇପଡୁ। ସେ ସେହିଠାରେ ଶୋଇ ପଡ଼ିଲା। ସୁତରାଂ ସେ ରାତିରେ ଘଟଣା ବେଳେ ସେ ସବୁ ଦିନ ଭଳି ସଦାନନ୍ଦଙ୍କ ବାରାଣ୍ଡାରେ ନ ଥିଲା। ଆପଣମାନେ ତାର ସାକ୍ଷ୍ୟ ଶୁଣିବେ। ମୁଁ ଅନୁସନ୍ଧାନ କରି ବୁଝିଲି ସେ ବଗିଚାର ଜଗୁଆଳି ସଦାନନ୍ଦଙ୍କ ଆର ପଡ଼ିଶାର ଆପଣା ଲୋକ।

ତା ପରେ ମୁଁ ସେଇ ରକ୍ତ ବୋଳା ଧୋତିଟାକୁ ପରୀକ୍ଷା କରି ଦେଖିଲି ଯେ ତାର ସାମନାପଟଟା ରକ୍ତରେ ବୁଡ଼ି ଯାଇଚି। ସେଉଟା ହବା ସ୍ୱାଭାବିକ। କିନ୍ତୁ ମୁଁ ମଧ୍ୟ ଦେଖିଲି ତାର ପଛ ପଟରେ ଠାଏ ଠାଏ ଟିକିଏ ରକ୍ତ ଚିହ୍ନ ଅଛି। ଯେପରି ହାତରୁ ରକ୍ତ ବୋହିଲେ ଲୋକ ଲୁଗାରେ ଛାପି ଦିଏ। ସେ ରକ୍ତର ଧୂଆ ନେଇ ମୁଁ ପରୀକ୍ଷା କରି ଦେଖିଲି ତାହା ସଦାନନ୍ଦଙ୍କ ଭାଇଙ୍କ ରକ୍ତ ଶ୍ରେଣୀର ନୁହେଁ। ଅନ୍ୟ ପକ୍ଷରେ ସେ ଧୂଆ ଓ ବାଉଁଶ ରେ ଯେ ରକ୍ତ ଲାଗିଥିଲା ସେ ଏକ ଶ୍ରେଣୀର। ପରେ ମୁଁ ସେ ଆଗ ପଡ଼ିଶାଙ୍କ ରକ୍ତ ନେଇ ପରୀକ୍ଷା କରି ଦେଖିଲି ତାଙ୍କର ରକ୍ତ ଓ ଏ ଦି ରକ୍ତ ଏକ ଶ୍ରେଣୀର। ମୋର ରସାୟନିକ ପରୀକ୍ଷାର ଫଳ ଏଇ କାଗଜରେ ଅଛି ଦାଖଲ କଲି। ଏପର ମୁଁ ହରିହର ବାବୁଙ୍କ ଭାଇଙ୍କ ମୁଣ୍ଡରୁ କିଛି ବାଳ ନେଲି। ସେ ବାଳ ଓ ବୁଢ଼ୀ ହାତରେ ବାଳକୁ ରସାୟନିକ ପ୍ରକ୍ରୀୟାରେ ପରୀକ୍ଷା କରି ଦେଖିଲି ଯେ ଦିଥରେ ଲାଗି

ଥିବା ତେଲ ଏକ ନୁହେଁ। ଆପରନ୍ତୁ ଆଗ ପଡ଼ିଶାଙ୍କ ମୁଣ୍ଡରୁ ଯେ ବାଳ ନେଇଥିଲି ତା ଦିହ ତେଲ ବୁଢ଼ୀ ହାତରେ ଥିବା ବାଳ ତେଲ ସହିତ ସମାନ। ସେ ପରୀକ୍ଷା ଫଳ ମଧ୍ୟ ଦାଖଲ କଲି। ତାପର ଏ ତିନିପ୍ରକାର ବାଳକୁ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ପରୀକ୍ଷା କରି ଦେଖିଲି ଯେ ବୁଢ଼ୀ ହାତ ବାଳ ଓ ଆଗ ପଡ଼ିଶାଙ୍କ ବାଳ ଏକ ଶ୍ରେଣୀର ଓ ଏକରକମ ତିଆରି। ତାହାର ପରୀକ୍ଷା ଫଳ ମଧ ମୁଁ ଦାଖଲ କଲି।

ଏସବୁ ପରେ ମୋ ମନରେ ଦୃଢ଼ ଧାରଣା ହେଲା ଯେ ଏଇ ପଡ଼ିଶା ଘର ହିଁ ପ୍ରକୃତ ହତ୍ୟାକାରୀ। ତାହେଲେ ମଧ ହରିବାବୁଙ୍କ ସ୍ତ୍ରୀଙ୍କୁ ମୁକ୍ତ କରାଯାଇ ପାରୁନି। କାରଣ ଅଳଙ୍କାର ତାଙ୍କ ଠାରୁ ବାହାରିଲା। ତାଙ୍କର ଏ ଲୋକଟା ସହିତ ପାପ ପ୍ରଣୟ ଥିବାର ଜନଶ୍ରୁତି ଅଛି। ମୁଁ ଏଇ କଥାଟାକୁ ଅନୁସନ୍ଧାନ କରି ଦେଖିଲି ଯେ ଏଇ ଯେ ଜନଶ୍ରୁତି ଯେ କେବଳ ଏଇ ଲୋକଟାର ଚକ୍ରାନ୍ତ। ଯାହାକୁ ପଚାରିବ ସେ କହିଚି ଯେ ସେ ଶୁଣିଚି ଏଇ ଲୋକଙ୍କ ଠାରୁ ବା ତା ବନ୍ଧୁମାନଙ୍କଠାରୁ ଯେ ହରିବାବୁଙ୍କ ସ୍ତ୍ରୀ ତାକୁ ଭଲ ପାଏ। ତାପରେ ହରି ବାବୁଙ୍କ ସ୍ତ୍ରୀଙ୍କୁ ପଚାରା ପଚରି କରି ଦେଖିଲି ଯେ, ଏ ଲୋକଟାର କଥା ପଡ଼ିବାରେ ତାଙ୍କର କିଛି ମାତ୍ର ବିକାର ହେଲାନି କିନ୍ତୁ କଥା କଥାରେ ତାଙ୍କ ଭାଇଙ୍କ ଉପରେ ସନ୍ଦେହ ହବାର ମୁଁ କହି ପକାଇବାରୁ ସେ ବଡ଼ ବିବ୍ରତ ହୋଇ ପଡ଼ିଲେ। ମୁଁ ଖବର ନେଇ ବୁଝିଲି ଯେ ତାଙ୍କର ଗୋପାଳ ବୋଲି ଜଣେ ଭାଇ ଅଛନ୍ତି, ସେ ଗୁଲିଖାଆନ୍ତି। ଜୁଆ ଖେଳନ୍ତି ଓ ଆଗ ପଡ଼ିଶାଙ୍କ ପଛରେ ବୁଲନ୍ତି। ମୁଁ ତାଙ୍କର ପତ୍ତା ନବାକୁ ଚେଷ୍ଟା କଲି। ପାଇଲିନି ତାଙ୍କ ଘରେ, ହରିବାବୁଙ୍କ ଘରେ ବା ତାର ସାଙ୍ଗ ସାଥି କେହି ତାର ବର୍ତ୍ତମାନ ପତ୍ତା ଦେଇ ପାରିଲେନି। କିନ୍ତୁ ଯାହା ମୁଁ ଶୁଣିଲି ସେଥିରୁ ବୁଝିଲି ଯେ ସେଇ ଘଟଣା ଦିନଠାରୁ ସେ ନିରୁଦ୍ଦିଷ୍ଟ। ମୁଁ ଠିକ୍ କରି ନେଲି ଯେ ପ୍ରକୃତ ଖୁଣି ତାଙ୍କୁ କୁଆଡ଼େ ଗାଏବ କରି ଦେଇଚି।

କୋଟ ମହୋଦୟ ଜାଣନ୍ତି ଯେ ପୁଲିସ ସାକ୍ଷ୍ୟ ଦେଇଚନ୍ତି ଯେ ଆଗ ପଡ଼ିଶା ଘଟଣାର କିଛି ଦିନ ଆଗରୁ କଟକ ଯାଇଥିଲେ। ନିଜ କାମରେ ଓ ଘଟଣାର ଦି ଦିନ ପରେ ଫେରି ଆସିଥିଲେ। ସେ ଯେ ଏ ସବୁ ଦିନ କଟକରେ ଥିଲେ ତାର ପ୍ରମାଣ ମଧ୍ୟ ଅପଣଙ୍କ ନଥିରେ ଅଛି। ଅତଏବ ମୁଁ କଟକରେ ଅନୁସନ୍ଧାନ ଆରମ୍ଭ କଲି। କଟକ ଭଳି ସହରରେ କିଏ ଲୁଚାଇ କଣ କରୁଚି ତାକୁ ଖୋଜି ବାହାର କରିବା ବଡ଼ କଷ୍ଟକର। ସେହି ହେତୁରୁ ମୋର ଡେରି ହେଲା। ଆଉରି ଡେରି ମଧ ହୋଇଥାନ୍ତା। କିନ୍ତୁ ମୋର ଓ ମୁଦାଇର ସୌଭାଗ୍ୟରୁ ଖୁଣି ନିଜେ ଧରା ପଡ଼ିବାର ଉପାୟ କରି ଦେଲା। ମୁଁ ଯେତେବେଳେ ଶୁଣିଲି ଯେ ପୁଲିସ ଖୁବ୍ ଶୀଘ୍ର ଚାର୍ଜସିଟ ଦେବେ ଓ ଶୁଣାଣି ଆରମ୍ଭ ହବ, ସେତେବେଳେ ମୁଁ କଟକ ଯାଇ ସେଠି ଦି ଚାରି ଦିନ ରହିବାର ଠିକ୍ କଲି, ତା ଆଗରୁ ଗୋଟାଏ ଘଟଣାରୁ ମୁଁ ବୁଝି ପାରିଥିଲି ଯେ ପ୍ରକୃତ ଖୁଣି ମୋ କାର୍ଯ୍ୟାବଳିର କଥା ଜାଣି ପାରିଚି ଓ ମୋ ପିଛା ଲୋକ ଲଗାଇଚି। ମୁଁ କଟକ ଯୁ ଗାଡ଼ିରେ ଗଲି ସେ ଗାଡ଼ିରେ ତାର ଗୋଟାଏ ଅତିତାୟି ମଧ୍ୟ ଯାଇଥିଲା। ମୁଁ କଟକ ଟେସନରେ ଓହ୍ଲାଇଲା ବେଳେ ମେଘ

ଅନ୍ଧାର ଓ ବର୍ଷାର ସୁବିଧା ନେଇ ସେ ଅତିତାୟି ମତେ ଛୁରା ମାରିବାକୁ ଉଦ୍ୟମ କଲା । ମୁଁ ଆଗରୁ ସାବଧାନ ଥିଲି ତାକୁ ଧରି ପକାଇଲି । ସେ ସାକ୍ଷି ଅଛି । ତାରି କଥାରୁ ମୁଁ ପ୍ରକୃତ ଖୁଣିର ଗୁପ୍ତ ବାସସ୍ଥାନ ଠାବ କଲି ଓ ସ୍ଥାନୀୟ ପୁଲିସଙ୍କ ଅନୁକମ୍ପାରୁ ତାରି ଘର ଭିତରେ ସେ ଓ ପହିଲମାନ ଗୋଟାଏ ଗୁଣ୍ଡା ଗୋପାଳକୁ ହତ୍ୟା କରିବାକୁ ଯିବା ବେଳେ ତାଙ୍କୁ ଧଇଲି । ଗୋପାଳର ସାକ୍ଷ୍ୟ ଅପାଣମାନେ ଶୁଣିବେ ।

ତାପରେ ଡକରା ହେଲା ଗୋପାଳ ବାବୁଙ୍କୁ । ସେ କହିଲେ ଯେ ଯେ ଗୁଲି ଖାଆନ୍ତି ଓ ଜୁଆ ଖେଳନ୍ତି । ଏସବୁ ସେଇ ପଡ଼ିଶା ଘର ତାକୁ ଶିଖାଇ ଥିଲେ । ଫଳରେ ସେ ତାଙ୍କର ବହୁତ ବଶ ହୋଇଥାନ୍ତି । ଘଟଣାର ସାତ ଆଠ ଦିନ ଆଗରୁ ସେ ଗୋପାଳଙ୍କୁ ଖବର ଦେଲେ ଘଟଣା ଦିନ କଲିକତା -ମାନ୍ଦ୍ରାଜ ମେଲ ବେଳକୁ ସେ (ଗୋପାଳ) ଯେପରି ଛତ୍ରପୁର ଟେସନରେ ଥାନ୍ତି । ଗୋପାଳ ଯାଇ ଅପେକ୍ଷା କଲେ । ସେ ଭଦ୍ରଲୋକ ଗାଡ଼ିରୁ ଓହ୍ଲାଇ ତାଙ୍କୁ ନେଇ ନିଜ ଘରକୁ ଗଲେ ଓ ଦୁଆର ଖୋଲି ନିଜ ଘରେ ପଶିଲେ । ତାଙ୍କ ବାଡ଼ି ଦୁଆର ଖୋଲି ସେ ଗୋପାଳଙ୍କୁ ସଦାନନ୍ଦଙ୍କ ବାଡ଼ିଆଡ଼େ ଅପେକ୍ଷା କରିବାକୁ କହି ଦେଲେ ଓ ଦୁଆର ବନ୍ଦ କଲେ । ଗୋଟାଳ ବାଡ଼ି ଆଡ଼େ ଅପେକ୍ଷା କରିଥାନ୍ତି । କିଛି ସମୟ ପରେ କଣ ଗୋଟାଏ ଦୁପ୍ କରି ପଡ଼ିବାର ଆବାଜ ହେଲା । ତା ପରେ ଦୁଆର ଖୋଲିବାର ଶବ୍ଦ, ତାପରେ ଅସ୍ପଷ୍ଟ ଚିତ୍କାର ଶବ୍ଦ, ଓ ଗୋଟିଏ ହୁ କରି ଶବ୍ଦ ହେଲା । କିଛି ସମୟ ପରେ ସେ ଭଦ୍ରଲୋକ ସଦାନନ୍ଦଙ୍କ ବାଡ଼ି ଦୁଆର ଖୋଲି ଆସିଲେ । ତାଙ୍କ ହାତରେ ଗୋଟିଏ ପୁଡ଼ା ତାଙ୍କୁ ଦେଇ କହିଲେ, ଚୁପ୍ ଚାପ୍ ଲୁଚି ଲୁଚି ଟେସନକୁ ଚାଲ, ମାନ୍ଦ୍ରାଜ କଲିକତା ଗାଡ଼ିକୁ ଅପେକ୍ଷା କର । ତାଙ୍କ ହାତରେ ଗୋଟାଏ ଟର୍ଚ୍ଚ ଲାଇଟ୍ ଥିଲା । ସେ ଟର୍ଚ୍ଚ ଲାଇଟ୍‌ଟା ଯିବା ପାଇଁ ଟିପିଲା ବେଳେ ତାଙ୍କର ନଜର ସେ ଲୋକଟାର ଦିହ ଓ ଲୁଗା ଉପରେ ପଡ଼ିଗଲା । ସେ ଦେଖିଲେ ସେଓ ତା ଲୁଗା ରକ୍ତରେ ସୁତୁସୁତୁ । ସେ ଏତିକ ଲକ୍ଷ୍ୟ କରିଚନ୍ତି କିନି, ସେ ଲୋକଟା ହଠାତ୍ ଦୁଆର କିଳି ଚାଲିଗଲା । ଗୋପାଳଙ୍କ ମନରେ ଭୀଷଣ ସନ୍ଦେହ ହେଲା । ସେ ଭାବିଲେ ଯେ ସେ ଲୋକଟା ବୁଢୀକୁ ମାରି ଅଳଙ୍କାର ଗୁଡ଼ାକ ଚୋରାଇ ନେଇଚି । ଅଳଙ୍କାର ସହିତ ଯେବେ ଗୋପାଳ ଧରା ପଡ଼ନ୍ତି ତା ହେଲେ ତାଙ୍କର ଫାଶୀ ନିଶ୍ଚୟ । ସେ ଭୟରେ ବିହ୍ୱଳ ହୋଇ ନିଜ ଭଉଣୀ କଥା ଭାବିଲେ । କୁଣିସି ମତେ ଏ ଅଳଙ୍କାରଟାର ବୁଜୁଳାଟାର ଦାୟିତ୍ୱ ନିଜ ମୁଣ୍ଡ ଉପରୁ ଖସାଇବା ଲୋଭରେ ସେ ଯାଇ ହରିବାବୁଙ୍କ ଦୁଆରେ ଆଘାତ କଲେ । ହରିବାବୁଙ୍କ ସ୍ତ୍ରୀ ଉଠି ଆସିଲେ । ଅନେକ ଥର ସେ ଏହି ପରି ଲୁଚି ଆସି ଭଉଣୀଠୁ ପଇସାପତ୍ର ନେଇ ଯାନ୍ତି ରାତିରେ । ହରିବାବୁଙ୍କ ସ୍ତ୍ରୀ ଦୁଆର ଖୋଲି ଦେଲେ ଗୋପାଳ ସେ ଗଣ୍ଠିଲିଟା ତାଙ୍କ ହାତକୁ ବଢ଼ାଇ ଦେଇ "ରଖିଥା, ପରେ ଆସିବି" କହି ସେଠାରୁ ପଳାଇ ଗଲେ । ଟେସନକୁ ଆସି ସେ ଭଦ୍ର ଲୋକଙ୍କୁ ଦେଖିଲେ ତାଙ୍କୁ ଏସବୁ କଥା କହିଲେ । ସେ ତାଙ୍କ ଉପରେ ଭାରି ରାଗିଗଲେ । କିନ୍ତୁ ଅନ୍ୟ ଉପାୟ ନ ଦେଖି ସେ ତାଙ୍କୁ ନେଇ କଟକ ଚାଲିଗଲେ । ସେଇ ଦିନଠାରୁ ସେ ଗୋପାଳଙ୍କୁ ଗୋଟାଏ ଘରେ ବନ୍ଦ କରି

ରଖିଲା । ବାହାରକୁ ଛାଡ଼ି ଦେଲାନି, କି କାହାରି ସହିତ କଥା କହିବାକୁ ଦେଲାନି । ତାପରେ ଗୋପାଳ ସେ ଶେଷ ଦିନ ରାତିର କଥା ବୟାନ କଲେ ।

ତାପରେ ହାକିମ ଅନ୍ୟାନ୍ୟ ସାକ୍ଷୀମାନଙ୍କର ଜେରା ଜମାନବନ୍ଦି କଲେ । ସବୁ ସରିଲା ପରେ ପୁଲିସ ସାହେବଙ୍କ ପରାମର୍ଶରେ ଗଦାଧରଙ୍କୁ ଜେରା କରିବା ପାଇଁ ସରକାରି ଓକିଲ ପ୍ରାର୍ଥନା କଲେ - ପୁଲିସ ସାହେବ, ଇନ୍‌ସପେକ୍ଟର ମନମୋହନ ଓ ଅନ୍ୟାନ୍ୟ ପୁଲିସ ବାଲାମାନେ ଥାନ୍ତି । ଗଦାଧର ସାକ୍ଷି ଆଡ଼କୁ ଗଲାପରେ ସରକାରି ଓକିଲ ତାଙ୍କୁ ପଚାରିଲେ ଆପଣ ଏତେ ଯେ ପ୍ରମାଣ ଯୋଗାଡ଼ କଲେ, ସେ କଥା ଆପଣ ପୁଲିସକୁ କହିଲେନି କାହିଁକି ?

ଗଦା - ମୁଁ କହିଚି ।

ଓକିଲ - କାହାକୁ କହିଚନ୍ତି ।

ଗଦା - ଖୋଦ୍ ପୁଲିସ ସାହେବଙ୍କୁ । ପୁଲିସ ସାହେବ ଉଠି ଠିଆ ହୋଇଗଲେ ଓ କଣ ଓକିଲ ସାହେବଙ୍କୁ କାନେ କାନେ କହିଲେ ।

ଓକିଲ - ସାହେବ କହୁଚନ୍ତି ତୁମେ ତାଙ୍କୁ ଏସବୁ ପ୍ରମାଣ କଥା କହିନ କିଛି ।

ଗଦା - ମୁଁ କହିଚି ।

ଓକିଲ - ତାର ପ୍ରମାଣ ?

ଗଦା - ସାହେବଙ୍କ ହାତ ବନ୍ଧା ଘଡ଼ି -

ଓକିଲ - ଗଦାଧର ବାବୁ, ଏ ଧର୍ମ ବିଚାରର ସ୍ଥାନ, ଥଟ୍ଟା ପରିହାସର ଜାଗା ନୁହେ । ମନେ ରଖିବେ ।

ଗଦା - ଆଜ୍ଞା ଖୁବ୍ ମନେ ଅଛି । ମୁଁ ଯାହା କହିଚି ସତ ।

ଓକିଲ - ସାହେବଙ୍କ ହାତ ବନ୍ଧା ଘଡ଼ି କିପରି ତୁମର ପ୍ରମାଣ, ଖୋଲି କରି କହନ୍ତୁ ।

ଗଦା - କହିବି ତେବେ ? (ତାପରେ ସାହେବଙ୍କ ଆଡ଼କୁ ଓ ଇନ୍‌ସପେକ୍ଟରଙ୍କ ଆଡ଼କୁ ଅନେଇ ରହିଲେ ।) ହୁକୁମ ଦେଲେ ନିଶ୍ଚୟ କହିବି ।

ସାହେବ ସେତେବେଳକୁ ଭିତରେ ଓଠ ଓଦା କରିବାକୁ ଲାଗିଲେଣି । ମନମୋହନ ତାଙ୍କ କାନରେ କଣ କହିଲେ । ସେ ମୁଣ୍ଡ ହଲାଇ ଦେଲେ । ମନମୋହନ ପୁଣି ସରକାରି ଓକିଲଙ୍କୁ କହିଲେ । ସରକାରି ଓକିଲ ଟିକିଏ ଆଶ୍ଚର୍ଯ୍ୟ ହୋଇ ତାପରେ କହିଲେ, "ହଜୁର, ମୁଁ ପୁଲିସ ସାହେବଙ୍କ ପରାମର୍ଶ ଅନୁସାରେ ତାଙ୍କୁ ଜେରା କରିବାକୁ ଯାଉଥିଲି । ବର୍ତ୍ତମାନ ପରାମର୍ଶ ମିଳୁଚି

ଯେ, ଆଉ ଜେରା ଦରକାର ନାହିଁ, ମୁଁ ବୁଝିଚି ଯେ ଅକାରଣେ କେତେ ଗୁଡ଼ାଏ ସମୟ ଅଦାଲତରେ ନଷ୍ଟ ହେଲା ସେଥିପାଇଁ ମୁଁ ବଡ଼ ଦୁଃଖିତ।"

ଗଦା – ହଜୁର ଆପଣଙ୍କ ସାମନାରେ ଓକିଲ ବାବୁ ମତେ କୋଟକୁ ଥଟ୍ଟା ତାମସା କରିବା ଲାଗି ମହାନ ଅଭିଯୋଗ ଆଣିଚନ୍ତି। ତା ଦ୍ୱାରା ମୋ ବ୍ୟବସାୟୀ କ୍ଷତି ହେବାର ସମ୍ଭବନା। ମୁଁ ଏ ମିଥ୍ୟା ଅଭିଯୋଗର ପ୍ରତିକାର ପ୍ରାର୍ଥନା କରେଁ।

ଏସ୍.ଡି.ଓ. – ହୁଁ, ନା, ନା, ଆପଣଙ୍କ ଉପରେ କୁଣିସି ଅଭିଯୋଗ ନାହିଁ। କୁଣିସି ଅଭିଯୋଗ ନାହିଁ। ହୁଁ ଓକିଲ ବାବୁ, ଉଁ ଗଦାଧର ବାବୁ, ଆଚ୍ଛା, ଆଚ୍ଛା।



ଏସବୁ ପ୍ରମାଣ ପରେ ହରିହର ବାବୁଙ୍କ ସ୍ତ୍ରୀ ଓ ଭାଇଙ୍କର ଯେ ଖଲାସି ହେଲା ଏବଂ ଆଉ ପଡ଼ିଶାର ସେ ଭଦ୍ରଲୋକ ଯେ ଧରା ହୋଇ ଖୁଣିର ଶାସ୍ତି ପାଇଲେ ଏ କଥା କହିବା ନିଷ୍ପ୍ରୟୋଜନ।

## ସମାପ୍ତ

ପ୍ର:ଥା: – ଏ ଗଳ୍ପର ସମସ୍ତ ଚିତ୍ର କାଳ୍ପନିକ।

# ପ୍ରାରମ୍ଭ

ମୁଁ ଜୀବନରେ ଏ ପର୍ଯ୍ୟନ୍ତ କେବେହେଲେ ଗୁଇନ୍ଦା ଗପ ଲେଖିନି । ତଥାପି ଜଣେ ପ୍ରକାଶକ ମହାଶୟଙ୍କ ହୁକୁମ ହେଲା, ଆପଣଙ୍କ ହାତରେ ଗୁଇନ୍ଦା ଗପ ଭଲ ହୁଏ, ଆପଣ ୧୫ ଦିନ ଭିତରେ ୧୦୦ ପୃଷ୍ଠାରେ ଗୋଟାଏ ଗୁଇନ୍ଦା ଗପର ଲେଖା ପଠାନ୍ତୁ । ପ୍ରଶଂସକବି ବୋଧହୁଏ କବିଦ୍ୱୟ ନିଶାଖାଙ୍କରେ ଏଇପରି କିଛି ସ୍ୱପ୍ନ ଦେଖି ବିଳିବିଳେଇ ପକେଇଲେ । ବ୍ରହ୍ମ କବି । ସେ କୁଆଡ଼େ ବିଳିବିଳେଇଲେ ବେଦ । ଅତଏବ ପ୍ରକାଶକଙ୍କ ଏ ବିଳିବିଳେଇବା ବେଦ; ମୋ ଭଳି ଲୋକ ନ ମାନି 'କାନ୍ୟା ଗତି' ।

କିନ୍ତୁ ଗୁଇନ୍ଦା ଉପନ୍ୟାସ ? ମନରେ କେଡ଼େବଡ଼ ଆଶା ପୋଶିଥିଲି ଯେ ଦିନେ ଆମ ଦେଶର ବିଜ୍ଞ ଓ ସର୍ବଜ୍ଞ ସାହିତ୍ୟିକ ଓ ସମାଲୋଚକମାନଙ୍କ ମନ ତୃପ୍ତ କଲାଭଳି ଗୋଟାଏ ଉଚ୍ଚକୋଟୀର ଉପନ୍ୟାସ ଲେଖିବି । ମୁଁ ଜାଣେ ଆମ ଦେଶର ସାହିତ୍ୟ ମହାରଥୀ ଓ ସମାଲୋଚକ ଚମୂପତିମାନଙ୍କ ଆଖିକି ଗୁଇନ୍ଦା ଗପ ନାଗଫେଣି କଣ୍ଟା ଓ ତାଙ୍କ ନାକକୁ ସେଉଟା ପଚା ନର୍ଦ୍ଦମା ଗନ୍ଧ । ହବାର ମଧ କଥା । ଆଜିକାଲି ହିନ୍ଦୀ, ବଙ୍ଗଳା ଓ ଓଡ଼ିଆ ସାହିତ୍ୟରେ ଯେ ରକମ ଓ ଧରଣର ଗୁଇନ୍ଦା ଗପ ବାହାରି ସାରା ଦେଶଟାକୁ କାଦୁଅ କରି ପକାଇଲାଣି, ସେଥିରେ ସାହିତ୍ୟିକ ଓ ସମାଲୋଚକମାନେ ଯେ, ଗୁଇନ୍ଦା ଗପକୁ ଦେଖିଲେ ଡେଙ୍ଗିବେ, ସେଥିରେ ଆଶ୍ଚର୍ଯ୍ୟ କିଛି ନାହିଁ । ଏ ଜାତୀୟ ଲେଖା ଆମ ଦେଶର ଲେଖା ନୁହେଁ । ଏ ପୁରାପୁରି ପାଶ୍ଚାତ୍ୟ ଦେଶରୁ ବିଶେଷତଃ ଇଂରେଜି ସାହିତ୍ୟରୁ ଆମଦାନି ବା ଚୋରେଇ; ତଥାପି ଇଂରେଜ ସାହିତ୍ୟରେ ଗୁଇନ୍ଦା ଗପର ସ୍ଥାନ ଖୁବ୍ ଉଚ୍ଚ ଧରଣର । କୋନାନ୍ ଡଏଲଙ୍କର ସରଲୋକ ହୋମସ୍ ଶ୍ରେଣୀୟ ଗପ ଓ ଏଡ଼ଗାର ଆଲାନ ପୋଙ୍କର ଆର୍ସେନି ଲୁପିନ ଶ୍ରେଣୀୟ ଗପର ସ୍ଥାନ ଇଂରେଜୀ ସାହିତ୍ୟରେ କମ୍ ନୁହେଁ । ଗଳ୍ପ ଲେଖିବା ଗୋଟାଏ କଳା । ସେଇ ଗଳ୍ପର ବିଷୟବସ୍ତୁ ଯାହା ହେଉନା କାହିଁକି ଗଳ୍ପଟି ଯେବେ କଳାନିୟମାନୁରୂପ ହୁଏ, ତାହା ହେଲେ ତାହା ଉଚ୍ଚ ସାହିତ୍ୟ ହେବ । ହେଲେ ମଧ, ତାହାର ଭାଷା ଓ ତାହାର ଶୈଳୀ କଳାରୁଚିର ବହିର୍ଭୂତ ହେବା ଉଚିତ ନୁହେଁ ଓ ସେଥିରେ ମାନବୀୟତାର ଅଭାବ ହବା ଆବଶ୍ୟକୀୟ ନୁହେଁ । ଇଟା, ପଥର ଚୂନ ସିମେଣ୍ଟ ନେଇ ଯେପରି ସୁଦୃଶ୍ୟ ଓ ସୁରୁଚି ସଂପନ୍ନ ଘର ତିଆରି କରାଯାଇ ପାରେ, ସେହିପରି ମାଟି -ଛଣ -ବାଉଁଶ ନେଇ ମଧ ସୁନ୍ଦର ଓ ସୁରୁଚି ଘର ତିଆରି କରାଯାଇ ପାରେ; ତିଆରି କରିବା ଲୋକ ଉପରେ ସବୁ ନିର୍ଭର କରେ । ଏହାହିଁ ମୋର ବିଶ୍ୱାସ । ମୁଁ ଇଂରେଜ ଓ ଫରାସୀ ଗୁଇନ୍ଦା ଗପ ଅନେକ ପଢ଼ିଛି । ମୁଁ ଦେଖିଚି ଡଏଲ ଓ ପୋ'ଙ୍କ ଛଡ଼ା ଏଡ଼ଗାର ୱାଲେସ, ଫିଲିପ୍ ଓପେନହାମ୍ ଇତ୍ୟାଦିଙ୍କର ଗୁଇନ୍ଦା ଗପ ମଧ ଉଚ୍ଚକୋଟିର ।

କଳାବିଦ ଓ କଳାକାରକ ଭାବେ ଏମାନଙ୍କ ସ୍ଥାନ ଇଂରେଜୀ ସାହିତ୍ୟରେ ମଧ କମ୍ ନୁହେଁ । ଭାବିଲି ଏ ଯେବେ ସତ, ତାହେଲେ ଚେଷ୍ଟା କଲେ କାହିଁକି ଟିକିଏ ସୁରୁଚି ସଂପନ୍ନ ଓ କଳାବିଧି ଅନୁମୋଦିତ ଗପ ଲେଖା ନ ଯାଇପାରେ ? ଚେଷ୍ଟା କରି ଦେଖେଁ । ମୋତେ ସମୟ ମାତ୍ର ୧୫ ଦିନ ଯାଇଛି । ମୋର ମଧ ଏ ଦିଗରେ ଏ ପ୍ରଥମ ଉଦ୍ୟମ । ଅତଏବ ଯେ ଯେବେ ମୋ ଆଦର୍ଶର କିଛି ମାତ୍ର ସମକକ୍ଷ ହୋଇ ପାରିଥାଏ ତା ହେଲେ ନିଜକୁ ଉତ୍ସାହିତ ମନେ କରିବି ।

ଗୋବିନ୍ଦ ତ୍ରିପାଠୀ

# ଏକ

ବ୍ରହ୍ମପୁର ସହର ଥାନା । ବେଳ ପ୍ରାୟ ୧୦ ଘଣ୍ଟା । ପୋଲିସ ଇନିସ୍‌ପେକ୍ଟର ମନମୋହନ ବାବୁ, ବଡ଼ ଦାରୋଗା ରାଧିକା ବାବୁ, ଛୋଟ ଦାରୋଗା ଆପ୍‌ପାଦୁ ରାମସ୍ୱାମୀ ବାବୁ ଓ ମନମୋହନଙ୍କର ଆଗନ୍ତୁକ ବନ୍ଧୁ ଗଦାଧର ବାବୁ, ଇନିସ୍‌ପେକ୍ଟରଙ୍କ ଦପ୍ତରରେ ବସି କଥାବାର୍ତ୍ତା ଚଳେଇଛନ୍ତି । ଦିଖଣ୍ଡି ଚୌକିରେ ମନମୋହନ ଓ ଗଦାଧର । ଆଉ ଦାରୋଗା ଓ ଛୋଟ ଦାରୋଗା ଗୋଟାଏ ବେଞ୍ଚ ଉପରେ । ମଝିରେ ଟେବୁଲଟାଏ । କେତେଗୁଡ଼ାଏ ଖାତା, କେତେଗୁଡ଼ାଏ ଅନୁସନ୍ଧାନ ଦୈନିକ ବିବରଣୀ, କେତେଗୁଡ଼ାଏ ନାଲିଫିତା ବନ୍ଧା ନଥି, ଗୋଟାଏ କାଳିଘଡ଼ି ବୈଠକିରେ ଗୋଟାଏ କଳା କାଳିଘଡ଼ି ଓ ଗୋଟାଏ ନାଲି କାଳିଘଡ଼ି, ଦିଟା ନିବ୍‌ଲଗା କଲମ, କାଳି ବାଲୁ ବାଲୁ, ଗୋଟାଏ ଦିଟା ପେନ୍‌ସିଲ୍ । କାଗଜପତ୍ର ଦବେଇ ରଖିବା ପାଇଁ ୨/୪ ଖଣ୍ଡ ଗେଙ୍ଗେଟି ପଥର ମୁଣ୍ଡା । ଦପ୍ତରକୁ ଲାଗି ଆଉ ଗୋଟିଏ ଛୋଟ ଘର । ସେ ଘରେ ଇନିସ୍‌ପେକ୍ଟରଙ୍କ ପେଷ୍କାର ବା ରିଡର୍ ଗୋଟାଏ ଟେବୁଲ ପାଖେ ବସି କ'ଣ ଗୁଡ଼ାଏ ଲେଖୁଛନ୍ତି । ବିରକ୍ତିର ଓ କର୍ମକ୍ଲାନ୍ତିର ଚିହ୍ନ ତାଙ୍କ କଳା ଭୁଷୁଣ୍ଡା ମୁହଁଟିକୁ ବିକଟାଳ କରି ପକାଇଚି । ତାଙ୍କ ମୁଣ୍ଡ ଉପରେ ଗୋଟାଏ ବିଜୁଳି ପଙ୍ଖା ଘିରି ଘିରି ହୋଇ ବୁଲିଚି । ତାଙ୍କ ମୁଣ୍ଡ ମଧ୍ୟ ସେହିପରି ଘିରିଘିରି ହୋଇ ବୁଲୁଚି ତାରି ସାଙ୍ଗରେ ତାଳ ଦେଇ । ଏଣେ ଦପ୍ତରରେ ବାବୁମାନଙ୍କ ମୁଣ୍ଡ ଉପରେ ଗୋଟାଏ ବିଜୁଳି ପଙ୍ଖା ବୁଲୁଚି । ତଳେ କଥାର ସୁଅ ମଧ୍ୟ ଘିରି ଘିରି ହୋଇ ଚକାଭଉଁରୀ ଖାଉଚି । କଥାର ମର୍ମ ଅପରାଧର ଅଭିବ୍ୟକ୍ତି । କିଏ କେତେଟା ଚୋରି ବା ଡକେଇତି ଧରିଚନ୍ତି ଓ କିପରି କୌଶଳରେ ଅପରାଧୀକୁ ଧରି ପକେଇଚନ୍ତି ତାରି ବଢ଼େଇ କରୁଚନ୍ତି । ଗଦାଧର ଏକମାତ୍ର ଶ୍ରୋତା । ସେ ମୁରୁକେଇ ମୁରୁକେଇ ହସୁଚନ୍ତି ଓ ଟେବୁଲ ଉପରେ ନିଜ ଆଙ୍ଗୁଠିରେ ତବଲା ବଜାଉଚନ୍ତି, ଠକ୍ ଠକ୍ ଠକ୍ । ବଡ଼ ଦାରୋଗା ବାବୁ ଇନିସ୍‌ପେକ୍ଟରଙ୍କୁ କହୁଚନ୍ତି – "ଆଜ୍ଞା, ଆପଣ ସେ ଯୁ ପୁରୁଣା ଚୋର ଦି'ଟାଙ୍କୁ ଯୁ କୌଶଳରେ ଧରିଲେ, ସେ ଦେଖିବାର ଓ ଶିଖିବାର କଥା । ଆପଣ ଯାଣନ୍ତି ଗଦାଧର ବାବୁ, ଆମ ଇନିସିପେଟର ସାହେବଙ୍କ ସହିତ କାମ କରିବାରେ ବଡ଼ ରକମ ଆନନ୍ଦ ଅଛି । ଯେଡ଼େ ବଡ଼ ଗୋଳମାଳିଆ ମକଦ୍ଦମା ହେଉ ପଛକେ, ସେ ସଙ୍ଗେ ସଙ୍ଗେ ତା'ର ଅସଲି ଭିତିରି ରହସ୍ୟ ବାହାର କରି ଦିଅନ୍ତି । ଏଇ ସେ ଦିନ ଦେଖିନ୍ଥିନା, କିପରି ମଜାରେ ପୁତୁଣ୍ଡୀ ଜମିଦାରଙ୍କ ଘର ଚୋରିର ରହସ୍ୟ ଧରା ପକାଇ ଦେଲେ । ଆପଣ ଶୁଣି ନାହାନ୍ତି ବୋଧହୁଏ, ପୁତୁଣ୍ଡୀ ଜମିଦାର ଆସି ଆମର ଏଠି ଇତଲା କଲେ ଯେ ତାଙ୍କ ଘରୁ ରାତିରେ କିଏ ଚୋର ପ୍ରାୟ ୪୦ ହଜାର ଟଙ୍କାର ହୀରା, ନୀଳା ଓ ସୁନାର ଗହଣା ଚୋରି କରି ନେଇଚି । ବଡ଼ ସଙ୍ଗୀନ ମକଦ୍ଦମା, ସିନ୍ଧିକଟା ନାହିଁ, ଚାବି ଭଙ୍ଗା ନାହିଁ, ଘରେ ଏତେ ଚାକର ବାକର ଅଛନ୍ତି, କେହି ଜାଣିଲେନି ଅଥଚ ଏତେଗୁଡ଼ାଏ ଟଙ୍କାର ମାଲ ହରଣଚାଳ । ଆମର ଅକଲ ଗୁଡୁମ୍ । କେତେଦିନ ଲାଗି କେତେ ଅନୁସନ୍ଧାନ ଚଳେଇଲୁଁ । କିଛି ହେଲାନି, ଅଥଚ ଯୁଦିନ ଇନିସ୍‌ପେକ୍ଟର୍ ବାବୁ ଅନୁସନ୍ଧାନ ସୁପରଭାଇଜ୍ କରିବାକୁ ଗଲେ, ସେଇଦିନ

ଦି'ଚାରି କଥା ଜମିଦାରଙ୍କୁ ପଚାରିଚନ୍ତିତ, ସେ ବେଶ୍ ଏକାବେଳେକେ ଥଣ୍ଡା । କହିଲେ - ମୁଁ ମକଦ୍ଦମା କରିବାକୁ ଚାହେଁନି । ମୁଁ ଇତଲା ଉଠାଇ ନଉଚି; ଗଦାଧର ସମ୍ଭାଳି ହୋଇ ପାରିଲେନି । କହି ପକାଇଲେ, "ହଁ, ବଡ଼ ବାହାଦୁରୀ । ମୁଁ ଏ ମକଦ୍ଦମାର କିଛି ଜାଣେ ନାହିଁ; ମାତ୍ର ତୁମଠାରୁ ଯେତିକି ଶୁଣିଲି ସେଇଥିରୁ ମୁଁ କହିପାରିବି ତୁମ ଇନିସିପେକ୍‌ଟର୍ ବାବୁ ଜମିଦାରଙ୍କୁ କ'ଣ ସବୁ ପଚାରିଲେ ।

ମନ - ତା ତୁମେ ନିଶ୍ଚୟ କହି ପାରିବନି । ସେ ତେ ମୋର ପରସନାଲ ଡାଇରିର କଥା, ତୁମେ ଜାଣିବ କିପରି ? କହିଲ ଦେଖି ।

ଗଦା - ତୁମେ ତାଙ୍କୁ ପଚାରିଲ, 'ତୁମ ରାଣୀ କେଉଁଠି ଶୁଅନ୍ତି ? ତାଙ୍କ ପାଖରେ କିଏ ଥାଏ ? ତାଙ୍କ ଗୋଡ଼ କିଏ ଘଷିଦିଏ ? ତାଙ୍କର ବିଶ୍ୱାସୀ ଚାକର କିଏ ?'

ମନ - ଏଁ, ତୁମେ ଏସବୁ ଜାଣିଲ କିମିତି ? ରିଡ଼ର, ରିଡ଼ର -

ରିଡ଼ର ବାବୁ ପାଖଘରୁ ଆଜ୍ଞା ବୋଲି କହି ଚାଲି ଆସିଲେ । ମନମୋହନ ଗର୍ଜନ କରି ପଚାରିଲେ, 'ତୁମେ ମୋର ପରସନାଲ ଡାଇରି କାହାକୁ ପଢ଼ିବାକୁ ଦେଇଚ ?'

ରିଡର ବାବୁ ଥା ଥା ମା ମା ହୋଇଗଲେ । କହିଲେ, 'ଆଜ୍ଞା, ନା, ତ, ମୁଁ, ନା କାହାକୁ'-

ଗଦାଧର - ତୁଚ୍ଛାଟାରୁ ସେ ଭଦ୍ର ଲୋକଙ୍କ ଉପରେ ଗର୍ଜନ କରୁଚ କିଆଁ ? ଯେ ଏମିତି କ'ଣ ଗୋଟାଏ ଗଭୀର କଥା ଯେ ତୁମର ପରସନାଲ୍ ଡାଇରିର କଥା ନ ଜାଣିଲେ ଲୋକ ଅନୁମାନ କରି ପାରିବ ନି ? ଜଣେ ସମ୍ଭ୍ରାନ୍ତ ଲୋକ ଘରୁ ଚୋରି ହେଇଚି, ସେ ଇତଲା କଲେ । ତୁମେ ଯାଇ ତାଙ୍କୁ କେତେ କଥା ପଚାରିଲ । ସେ ସବୁଥିରେ ଡରିଯାଇ ମକଦ୍ଦମା ଉଠାଇ ନେବାକୁ ଚେଷ୍ଟା କଲେ । ଏପରି ଅବସ୍ଥାରେ ଯେକୌଣସି ସମ୍ଭ୍ରାନ୍ତ ଲୋକ ଡରିଯାଇ ପାରେ - ମାତ୍ର ଗୋଟିଏ ବିଷୟରେ; ସେ ତା'ର ପଦ ମର୍ଯ୍ୟାଦା ହାନିର ଭୟ । ତା'ର ପଦମର୍ଯ୍ୟାଦା ହାନିର ଚରମ ସୀମା ତା ସ୍ତ୍ରୀ ବା ଭଉଣୀ ପ୍ରତି କୌଣସି ରକମ ଅପବାଦାତ୍ମକ ଦୋଷାରୋପ । ସେମାନଙ୍କର ଚରିତ୍ର ଭଲ ହୋଇଥାଉ ବା ମନ୍ଦ ହୋଇଥାଉ, ସେମାନଙ୍କ ଚରିତ୍ରରେ ସନ୍ଦେହ ଆସିଲା ଭଳି କଥା ପଡ଼ିଲେ ହେଁ, ସମ୍ଭ୍ରାନ୍ତମାନେ ଡରିଯିବେ ଓ ଯେତେ ଆର୍ଥିକ ହାନି ହେଲେ ମଧ ତାହା ଲୁଚେଇ ରଖିବେ । ତୁମେ ଚୋରିର ପ୍ରକୃତ ତଥ୍ୟ ବାହାର କରିବାରେ ଅକ୍ଷମ ହେଲ, ଚୋରର ବୁଦ୍ଧି ଆଗରେ ତୁମର ବୁଦ୍ଧି ପରାସ୍ତ ହେଲା; କିନ୍ତୁ ନିଜର ବଡ଼େଇ ରଖିବାକୁ ପଡ଼ିବ, ସେହି ହେତୁରୁ କୁବୁଦ୍ଧି ପାଞ୍ଚ, ତାଙ୍କ କୁଟୁମ୍ବର ମଇଳା କନା ସବୁ ତାଙ୍କ ପେଡ଼ି ଭିତରୁ କାଢ଼ିବାର ଉଦ୍ୟମ କଲ । ସେ ଡରିଗଲେ । ଟଙ୍କା ତ ଗଲା; ଯାଉ, ମହତ ଥାଉ, ଏହା ଭାବି ଇତଲା ଉଠାଇ ନେବାକୁ କହିଲେ । ତା'ପରେ କ'ଣ ହେଲା ? ଚୋରି ମକଦ୍ଦମା ଉଠିବାର ତ ନୁହେଁ । କିମିତି ପୁଣି ବନ୍ଦ ହେଲା ? ଫାଇନାଲ ରିପୋର୍ଟ କ'ଣ ଦେଲ ? ଆଉ କାହିଁକି ?

ମନ - ଏତେ କଥା ଯେବେ ଅନୁମାନ କରି ପକାଇଲ, ଏତକ ବି ଅନୁମାନ କରି ପକାଅ ନା ?

ଗଦା - ତା କରି ସାରିଚି । କହିବାକୁ କହିବ ତ କହିଦେବି । କିନ୍ତୁ ସେ ମଧ ହେବ ତୁମ ଗମ୍ଭିରି ଘରର ଭିତିରି ସିନ୍ଦୁକର ଅତି ମଇଳା କନାଗୁଡ଼ାକ । କ'ଣ କହୁଚ ? କହିବି ?

ରାଧିକା - ଆଜ୍ଞା ; ଆମ ବାବୁଙ୍କର ମଇଳା କିଛି ନାହିଁ, ସବୁ ସଫା ।

ଗଦା - ହୁଁ, ଏକାବେଳେକେ ଧୋବ ଫରଫର, ବଗପକ୍ଷୀ ପରି ବା ଆଉଟା ରୁପା ଖଣ୍ଡ ପରି, ନା କ'ଣ ?

ଏତିକି ବେଳେ ଦି'ଜଣ ସିପାହୀ ଚା', ଗରମ ପୁରୀ, ପାନତୁଆ, ରସଗୋଲା, ପାଣି ଗିଲାସ ଇତ୍ୟାଦି ଘିନି ହାଜିର ହେଲେ । ପରଶା ଗଲା । ଖିଆ ଚାଲିଲା । ଗପର ସୁଅ ଏଇଠାରେ ବନ୍ଦ ହେଲା । ଖିଆ ସରିଲା । ହାତ ଧୋଇଲେ, ପାନ ଚୋବେଇଲେ, ସିଗିରେଟ୍ ଫୁଙ୍କିଲେ । ଦୋକାନର ଚାକର ଆସି ଅଇଁଠା ବାସନ ଉଠାଇ ନମସ୍କାର କରି ଖାଲି ହାତରେ ଗଲା ଚାଲି । କଥାର ସୁଅ ପୁଣି ଗଡ଼ି ଚାଲିଲା, ସେଇ ଦିଗରେ ।

ଗଦାଧର - ତୁମେ ସବୁ ଯେତେ ବଡ଼ାଇ କରନା, ପ୍ରକୃତ ଅପରାଧି ଧରିବାର କୌଶଳ ତୁମେ ସବୁ ଜାଣିନ । ତୁମର କେତୋଟା ଧରାବନ୍ଧା ଗତ ଅଛି । ସେଇ ଗତକୁ ଅନୁସରଣ କରି ତୁମେ ଗୋଟାଏ ଉପସଂହାରରେ ପହଞ୍ଚ ଓ ସେଇ ଉପସଂହାରକୁ ପ୍ରମାଣ କରିବା ଲାଗି ଗୁଡ଼ାଏ ସାକ୍ଷୀ ତିଆରି କର ମାତ୍ର ।

ମନ - ତାହେଲେ ତୁମେ କ'ଣ କରିବାକୁ ଚାହଁ ଯେ ପୁଲିସ ଯେତେ ସବୁ ମକଦ୍ଦମା ଧରନ୍ତି, ସେସବୁ ମିଛ, ନ ହେଲେ ବନାବନି ?

ଗଦା - ନା, ତା ମୁଁ କହୁନି । ତୁମେ ଯେତେ ମକଦ୍ଦମା ଧରି କଚିରିକୁ ପଠାଅ, ସେଥିରୁ ଶତକଡ଼ା ପ୍ରାୟ ୭୫ ତ ମୁଦେଇ ଖୋଦ୍ ଚୋରକୁ ହାତେ ହାତେ ଧରି ତୁମ ପାଖରେ ହାଜିର କରାଏ । ତୁମେ କେବଳ କେତେଗୁଡ଼ାଏ ବାଜେ କଥା ଏଣୁତେଣୁ ଲେଖି, ମକଦ୍ଦମାଟା କଚେରିକୁ ପଠାଇ ଦେଇ ମକଦ୍ଦମାର ବାହାବାଟା ନେଇଯାଅ । ମୁଦେଇ ଚୋର ଧରି ଆଣିବ, ସାକ୍ଷୀ ଗୁହା ଆଣି ତୁମ ପାଖରେ ହାଜିର କରିଦେବ, ଚୋରି ମାଲ ଧରେଇ ଦେବ, ଚିହ୍ନଟ ଦେବ, ଆଉ ତୁମେ ମକଦ୍ଦମା ଧରି ପକେଇଲ ! ବାକୀ ଯେ ୨୫ ରହିଲା, ସେଥିରୁ କେତୋଟାରେ ଅବଶ୍ୟ ତୁମର ଗତାନୁଗତିକତା ସଫଳ ହୁଏ । ସେ କିନ୍ତୁ ଅନ୍ଧାର ଘରକୁ ଟେକା ମାଇଲା ଭଳି । ଲାଗିଯାଏ ଦୈବାତ୍; ଏଇ ଧରଣ, କାହା ଘରେ ଚୋରି ହେଲା । ଫକୀରା ଚୋର ଆଗେ ଦି ଚାରି ଥର ଏହିପରି ସିନ୍ଧିକାଟି ଚୋରି କରିଥିଲା । ସେ ଇଲେ ଜେଲରୁ ବାହାରେ । ଅତଏବ ତୁମର ଗତାନୁଗତିକତା କହିଲା, ସେଇ ଚୋର । ଯେପରିକି ଏହି ରକମ ସିନ୍ଧି ଆଉ କୌଣସି ଚୋରର

କାଟିବାର ଅଧିକାର ନାହିଁ ଓ ଅନ୍ୟ କାହାରି ପକ୍ଷରେ ସମ୍ଭବ ନୁହେଁ। ଯେପରିକି ଫକୀରା ଯେତେବେଳେ ସିନ୍ଧି କାଟେ, ଠିକ୍ ସେଇ ପୁରୁଣା ଭାଗମାପ, ସେଇ ପୁରୁଣା ଖଣତି ଓ ସେଇ ଏକରକମ ଡିହ ମାରିବାର ଢଙ୍ଗକୁ ଇଞ୍ଚ ଇଞ୍ଚ କରି ହିସାବ କରି ଖୋଳେ। ଯେବେ ଦୈବାତ୍ ସେଦିନ ରାତିରେ ଫକୀରା ସାକ୍ଷୀ ଗୁହା ପ୍ରମାଣଗୁଡ଼ାଏ ରଖି ତା ନିଜଘର ଭିତରେ, ତା ନିଜ ମାଇପ ପାଖରେ ଶୋଇ ନ ଥାଏ, ତା'ହେଲେ ତୁମେ ଉପସଂହାର କରିନେଲ, ସେଇ ସେ ସିନ୍ଧି କାଟିଚି। ତାପରେ ଲାଗିଗଲ ପ୍ରମାଣ ଯୋଗାଡ଼ କରିବାରେ। ଖଣ୍ଡେ ଅଧେ ବାସନ ତା ଘରୁ ବାହାରିଲା, ଖଣ୍ଡେ ଅଧେ ଲୁଗା ତା'ଘରୁ ଜବତ କଲ। ଦେଲ ମକଦ୍ଦମା ଲଗେଇ। ଏଇଆ ନା ? ତୁମେ ତ ବୁଝିଲନି, ମଣିଷଟା ଗୋଟାଏ ନିର୍ଜୀବ କଳ ବା ଯନ୍ତ୍ର ନୁହେଁ ଯେ ସବୁବେଳେ ସବୁ ପରିସ୍ଥିତିରେ ସେ ଏକ ରକମ ବ୍ୟବହାର କରିଯିବ। ସେ ଗୋଟାଏ ଜୀଅନ୍ତା ମଣିଷ। ତା'ର ପ୍ରକୃତି, ବ୍ୟବହାର ଓ ଚଳନ ତା ଦିହ ଓ ମନର ପରିବର୍ତ୍ତନ ଉପରେ ନିର୍ଭର କରେ। କେବଳ କେତୋଟି ମନୋବିଜ୍ଞାନ ସମସ୍ୟା ଛାଡ଼ିଦେଲେ, ମନୁଷ୍ୟର କୌଣସି କଥା ସବୁଦିନ ଲାଗି ଏକା ରହେନି। ଏପରିକି ମନୋବିଜ୍ଞାନର ତତ୍ତ୍ୱ ମଧ ଚିର ସ୍ଥିର ନୁହେ; ଭାବନାର ଓ ପରିସ୍ଥିତିର ସଂଘାତରେ ଲୋକ ନିଜର ଚିରାସକ୍ତ ଭାବନା ସ୍ରୋତରୁ ମଧ ବହୁ ଦୂରକୁ ଚାଲିଯାଏ। ତୁମେ ଏ କଥା ବୁଝନି। ତୁମେ ଏ କଥା ଜାଣନି। ତୁମ ପକ୍ଷରେ ମନୁଷ୍ୟ ଗୋଟିଏ ନିର୍ଜୀବ ଜଡ଼ ଯନ୍ତ୍ର। ତାହାର ଚରିତ୍ର ବୁଝିବା ଗୋଟାଏ ଜୀବହୀନ, ସ୍ପନ୍ଦନହୀନ, ଗତାନୁଗତିକତା। ଗୋଟାଏ ଜୀବନ୍ତ ଚରିତ୍ରର ଚଳନ ଓ ବ୍ୟବହାରକୁ ଅନୁଶୀଳନ କରିବା ବୈଜ୍ଞାନିକଙ୍କର କାର୍ଯ୍ୟ। ତାହା ବିଜ୍ଞାନସମ୍ମତ ପ୍ରଣାଳୀରେ ମାତ୍ର କରାଯାଇ ପାରେ। ତୁମ ପକ୍ଷରେ ମୁଁ ଜାଣୁଚି, ଏସବୁ ଦୁରୂହ ବ୍ୟାପାର। ତୁମେ ବୁଝ ମାତ୍ର ଗୋଟିଏ କଥା, ଯେକୌଣସି ମତେ ଗୋଟାଏ ଲୋକକୁ ଜେଲ୍‌ରେ ପୂରେଇ ଦେଲେ ବା ଫାଶିକାଠରେ ଝୁଲେଇ ଦେଲେଇ ତୁମର କର୍ତ୍ତବ୍ୟ ଶେଷ। ତା' ଲାଗି ତୁମେ ସବୁ କରିପାର, ଜାଲ ପ୍ରମାଣ ତିଆରି କରିବାଠାରୁ ସାକ୍ଷୀ ଅଡ଼ାରେ ହଲପ କରି ମିଛ କହିବା ପର୍ଯ୍ୟନ୍ତ ସବୁ କିଛି। ଅଥଚ ଟିକିଏ ପରିଶ୍ରମ କଲେ, ଟିକିଏ ତୁମର ବୁଦ୍ଧି ବିବେକକୁ ଠିକ୍ ରାସ୍ତାରେ ଚଳେଇଲେ, ତୁମେ ମଣିଷ ଚରିତ୍ରକୁ ଠିକ୍ ବୁଝି ପାରନ୍ତ। ମଣିଷ ଚରିତ୍ର ପରିବର୍ତ୍ତନଶୀଳ ସତ, ମାତ୍ର ଦୁର୍ବୋଧ ନୁହେଁ।

ରାଧିକା – ଆଜ୍ଞା, କ୍ଷମା କରିବେ ମୋର ଟିକିଏ କାମ ଅଛି।

ମନ – ବସ, ବସ। ଶୁଣ, ଭୁଷ୍‌ପଣ୍ଡିତଙ୍କ ଚକ୍ଷୁ ଭକ୍ଷଣ। ତାପରେ ତୁମେ ପାରିବ ?

ଗଦା – ଏ ଯେ ତୁମକୁ ଚକ୍ଷୁ ଭଳି ଲାଗିବ ସେଥିରେ ଆଶ୍ଚର୍ଯ୍ୟ କ'ଣ ଅଛି ! ତୁମେ ଜାଣ ନାହିଁ ଏଡ୍‌ଗାର ଆଲାନ୍ ପୋ ଆର୍ସେନିଲୁପିନଙ୍କ ଚରିତ୍ର ଚିତ୍ରଣରେ ଓ ସାର୍ କୋନନ୍ ଡାୟାଲ୍, ସର୍‌ଲୋକହୋମ୍‌ଙ୍କର କାର୍ଯ୍ୟକଳାପ ବର୍ଣ୍ଣନାରେ –

ମନ – ଓହୋ, ତା' ହେଲେ ତୁମେ ତୁମର ଏ ପାଣ୍ଡିତ୍ୟଗୁଡ଼ାକ ସେଇ ଗୁଇନ୍ଦା ଗପ ବହିରୁ ମିଳିଚି, ନା ? ମୁଁ ତ ଭାବିଥିଲି –

ଗଦା - ଯେ ମୁଁ ଫ୍ରଏଡ଼ଙ୍କ ମନୋବିଜ୍ଞାନ, ଆଇନଷ୍ଟାଇନ୍‌ଙ୍କର ଭୌତିକ ବିଜ୍ଞାନ ଇତ୍ୟାଦି କେତେ କ'ଣ ପଢ଼ିଛିବୋଲି ? ଏଇ ତ ତୁମର ଆଉ ଗୋଟାଏ ଭୁଲ୍ । ସର୍‌ଲୋକ୍ ହୋମସ୍ ବା ଆର୍ସେନିଲୁପିନ୍ ଉପନ୍ୟାସର ବା ଗଳ୍ପର ନାୟକ ହୋଇପାରନ୍ତି ; କିନ୍ତୁ ତାଙ୍କର ସ୍ରଷ୍ଟା ଡଏଲ ବା ପୋ । ତୁମ ଭଳି ଗୋବର ଗଣେଶ ନ ଥିଲେ । ବଡ଼ ପଣ୍ଡିତ, ବଡ଼ ବୈଜ୍ଞାନିକ ସେମାନେ । ତାଙ୍କ ବୈଜ୍ଞାନିକ ଗବେଷଣା ଓ ପାଣ୍ଡିତ୍ୟର ବାହାଦୁରୀରେ ଯାହା ମଲା ଚରିତ୍ର ଭାବରେ ଲେଖି ଯାଇଚନ୍ତି, ତାହା ସର୍ବବାଦୀ ସତ୍ୟ ।

ମନ - ତାହେଲେ ତୁମେ କ'ଣ କହିବାକୁ ଚାହଁ ଯେ ତୁମେ ମଧ ସର୍‌ଲୋକ ହୋମ୍‌ସ୍‌ଙ୍କ ଭଳି ଲୋକଟାକୁ ଦେଖି ଦେଲେ କହିଦେବ, ସେ କ'ଣ କାମ କରେ, କେଉଁଠୁ ଆସୁଛି, କାହିଁକି ଆସିଛି, ଇତ୍ୟାଦି ।

ଗଦା - ମୁଁ ସର୍ବଜ୍ଞ ନୁହେଁ । ସର୍‌ଲୋକ ହୋମ୍‌ସ୍ ମଧ ସର୍ବଜ୍ଞ ନ ଥିଲେ । ସୂକ୍ଷ୍ମ ଭାବରେ ପ୍ରତ୍ୟେକ ଜିନିଷଟିକୁ ଦେଖିବ । ଓ ନିଜର ଅଭିଜ୍ଞତା ଉପରେ ଦେଖିବାରୁ ଯୁକ୍ତିଯୁକ୍ତ ଉପସଂହାର କରିବାହିଁ ଥିଲା ହୋମ୍‌ସ୍‌ଙ୍କର କାର୍ଯ୍ୟ । ମୁଁ ଡଏଲ୍‌ଙ୍କର ପ୍ରଦର୍ଶିତ ଏଇ ପନ୍ଥା ଅନୁସରଣ କରିବାକୁ ଚେଷ୍ଟା କରୁଛି ମାତ୍ର । ଏଥିରେ ବଡ଼ ବେଶୀ ବାହାଦୁରୀ କିଛି ନାହିଁ ତୁମ୍ଭେମାନେ ମଧ ଟିକିଏ ଚେଷ୍ଟା କଲେ କରି ପାରନ୍ତ ।

ମନ - ଆଚ୍ଛା, ସେ ଦେଖାଯିବ । ଆଗେ ତ ତୁମର ଏ ହଟଚମଟ ବିଦ୍ୟାର ଗୋଟାଏ ନମୁନା ଦେଖାଅ ।

ସେ ବାହାରକୁ ଉଠିଗଲେ । ଦେଖିଲେ ଜଣେ ଭଦ୍ରଲୋକ ଖଣ୍ଡିଏ ଛତା ଧରି ଥାନା ଭିତରକୁ ପଶି ଆସୁଛନ୍ତି । ବୟସ ଅନ୍ଦାଜ ୩୦/୪୦ ହେବ । ସେ ଇନିସ୍‌ପେକ୍ଟରଙ୍କୁ ଦେଖି ନମସ୍କାର କଲେ । ଇନିସ୍‌ପେକ୍ଟର ତାଙ୍କୁ ଡାକି ତାଙ୍କ ଦପ୍ତରକୁ ନେଲେ । ସେ ଭଦ୍ରଲୋକ ସେଠାରେ ଦାରୋଗା ପ୍ରଭୃତିଙ୍କୁ ଦେଖି ନମସ୍କାର କରି ଠିଆହେଲେ । କହିଲେ - "ଆଜ୍ଞା" ମନମୋହନ ତାଙ୍କୁ ବାଧାଦେଇ କହିଲେ "ହଁ, ହଁ ସେ ପରେ ହବ । ଟିକିଏ ଠିଆ ହୁଅ ।" ତାପରେ ଗଦାଧରଙ୍କ ଆଡ଼କୁ ବୁଲି କହିଲେ, "ଏଇଯେ ଭଦ୍ରଲୋକଙ୍କୁ ଦେଖୁଚ, ତାଙ୍କ ବିଷୟରେ ତୁମେ କ'ଣ ଅନୁମାନ କରୁଛ ଗଦାଧର ।" ଗଦାଧର ସେ ଲୋକ ଆଡ଼କୁ ତୀବ୍ର ଦୃଷ୍ଟିରେ କିଛି ସମୟ ଚାହିଁ, ତାଙ୍କୁ ପଚାରିଲେ - ଆପଣ ନିମଖଣ୍ଡିରୁ ଆସୁଛନ୍ତି ନା' ?

ଭଦ୍ରଲୋକ - ଆଜ୍ଞା ! ହଁ, କିନ୍ତୁ ମୁଁ ତ ଆପଣଙ୍କୁ ଚିହ୍ନେନି ।

ଗଦା - ନା, ତା' ଚିହ୍ନନି । ମୁଁ ମଧ ତୁମକୁ ଚିହ୍ନେନି । ତୁମେ ଗା'ର କାର୍ଯୀ ନା କରଣ ? କାର୍ଯୀ ବୋଧହୁଏ ନା ?

ଭଦ୍ର - ଆଜ୍ଞା, ମୁଁ ତ କାର୍ଯୀ । ହଁ କାର୍ଯୀ । କିନ୍ତୁ ଆପଣ...

ଗଦା - ଆପଣ ରାସ୍ତାରେ ଆସୁ ଆସୁ ହଠାତ୍ ଖୁବ୍ ବର୍ଷା ହେଲା, ନା ?

ଭଦ୍ର - ଆଜ୍ଞା ହଁ, ଭାରୀ ବର୍ଷା, ହଠାତ୍ ଆସିଗଲା ।

ଗଦା - ବ୍ରହ୍ମପୁର ପାଖ ହେଲା ବେଳକୁ ଗୋଟାଏ ମଟର ନିମଖଣ୍ଡି ଆଡ଼େ ଗଲା, ନା ?

ଭଦ୍ର - ଆଜ୍ଞା, ହଁ, କିନ୍ତୁ...

ଗଦା - ସେଥିରେ ତହସିଲଦାର ବାବୁ ଯାଉଥିଲେ । ତୁମକୁ ଡାକି ଫେରିଯିବାକୁ କହିଲେ । ତୁମେ ବ୍ରହ୍ମପୁରରେ ଜରୁରୀ କାମ ଅଛି ବୋଲି କହି ଯିବାକୁ ମନାକଲ ଓ ତହସିଲଦାର ବାବୁ ଫେରି ଆସିଲେ ବ୍ରହ୍ମପୁର କଚେରୀରେ ତାଙ୍କ ସାଙ୍ଗରେ ଦେଖା କରିବାକୁ ସେ ହୁକୁମ୍ ଦେଲେ, ନା ?

ଭଦ୍ର - ଆଜ୍ଞା, ଆପଣ କ'ଣ ତାଙ୍କ ସଙ୍ଗରେ ଥିଲେ ନା କ'ଣ ? ମୁଁ ତ ଦେଖିନି ଆପଣଙ୍କୁ ।

ଗଦା - ତା ଦେଖିନ । କାରଣ ମୁଁ ସେଠି ନ ଥିଲି । ଆପଣ ଏତଲା ଦେବାକୁ ଆସିଛନ୍ତି ନା ? ଖୁଣି ଏତଲା ବୋଧହୁଏ ।

ଭଦ୍ର - ହଁ, ଆଜ୍ଞା । ତେବେ -

ଗଦା - ଆପଣ ସିଧା ଥାନାକୁ ନ ଆସି ଡେରି କଲେ କାହିଁକି ? ବାଟରେ ଗୋଟାଏ ଚା' ଦୋକାନରେ କପେ ଚା' ଖାଇବା ପାଇଁ ଯାହା ଡେରି କଲେ ତ କଲେ, ଥାନାକୁ ଆସିବା ଆଗରୁ ଓକିଲ ବସାକୁ ଗଲେ କିଆଁ ?

ଭଦ୍ର - ଏଁ, ଆଜ୍ଞା, ମୁଁ -ନା -ଆଜ୍ଞା, ମୋର ଟିକିଏ କାମ ଥିଲା ବୋଲି -

ମନ - କାର୍ଯୀ ବାବୁ, ଏସବୁ ସତ ?

ଭଦ୍ର - ଆଜ୍ଞା, ସବୁ ସତ । କିନ୍ତୁ ଏ ବାବୁ କିପରି ଜାଣିଲେ ଏଇ ସବୁ କଥା ?

ରାଧିକା -ଆଶ୍ଚର୍ଯ୍ୟତ ! ଆପଣ କ'ଣ କହିବାକୁ ଚାହାନ୍ତି ଯେ, ଏଇଠି ବସି ବସି ଏ କାର୍ଯୀଙ୍କି ଦେଖି ଦେଇ ଆପଣ ତାଙ୍କ ଉଦ୍ଦେଶ୍ୟରେ ଏତେଗୁଡ଼ାଏ କଥା ଅନୁମାନ କରି ନେଇଛନ୍ତି ?

ମନ - ତା ତ ତୁମ ଆଖିରେ ଦେଖୁଚ । ଆଉ ପଚାରିବା ଲାଭ କ'ଣ ? କଥା ହେଉଚି ଯେ, ତୁମେ ଏସବୁ ଜାଣିଲ କିପରି ? କହିବାର କିଛି ଆପତ୍ତି ଅଛି ?

ଗଦା - କିଛି ନାହିଁ । ଏଥିରେ ମନ୍ତ୍ରଯନ୍ତ୍ର କି ଯାଦୁବିଦ୍ୟା କିଛି ନାହିଁ ଯେ, ମୁଁ ଲୁଚେଇ ରଖିବାକୁ ଯିବି । ଏଇ ଦେଖ, ଏ ଭଦ୍ର ବ୍ୟକ୍ତି ଯେତେବେଳେ ଆସିଲେ ତୁମକୁ ନମସ୍କାର କଲେ

ଓ ଠିଆ ହୋଇ ରହିଲେ । ତଥାପି ସେ ଯେ କ'ଣ ଗୋଟାଏ କହିବାକୁ ବଡ଼ ଉଦ୍‌ଗ୍ରୀବ ଥିଲେ, ତା ତୁମେ ମଧ ବୁଝି ପାରୁ ଥିବ । ସାଧାରଣ ଚୋରି, ଡକାଏତିର ଏତଲା ନେଇ କାର୍ଯ୍ୟୀମାନେ ଏପରି ଉଦ୍‌ଗ୍ରୀବ ହୋଇ ଏକଲା ଥାନାକୁ ଧାଇଁ ଆସନ୍ତିନି । ଚଳିଆରୀ ହେରିକାଙ୍କ ହାତରେ ଏତଲା ପଠାଇ ଦିଅନ୍ତି । ସେ ଯେ ନିଜେ ଆସିଛନ୍ତି ଓ ଏପରି ଉଦ୍‌ଗ୍ରୀବ ହୋଇ, ସେଥିରୁ ମୁଁ ଅନୁମାନ କଲି ଯେ, ଏତଲାଟା ନିଶ୍ଚୟ ଜରୁରୀ । ଖୁଣୀ ମକଦ୍ଦମା ଛଡ଼ା ଅନ୍ୟ କୌଣସି ମକଦ୍ଦମା ହୋଇଥିଲେ ସେ ମୁଦେଇକୁ ଧରି ଆସିଥାନ୍ତେ । ମାତ୍ର ସାଙ୍ଗରେ କେହି ନାହିଁ । ତା'ର କାରଣ ଯେ ଏତଲା ଶୁଣିବା ମାତ୍ରକେ ଦାରୋଗା ନିଜେ ଯିବେ, ଏଇ ଆଶାରେ । କୁ ମକଦ୍ଦମାରେ ଏତଲା ପାଇବା ମାତ୍ରକେ ଦାରୋଗା ସଙ୍ଗେ ସଙ୍ଗେ ଯା'ନ୍ତି ? କେବଳ ଖୁଣି, ନ ହେଲେ ସଙ୍ଗୀନ୍ ଡକେଇତି, ନୁହେଁ ? ଆମର ଏଠି ଦିନ ଦି'ପହରେ ସଙ୍ଗିନ୍ ଡକେଇତି ଜଣାଶୁଣା ନାହିଁ । ଅତଏବ ମୁଁ ଉପସଂହାର କଲି ଯେ ଖୁଣୀ ।

ମନ – କିନ୍ତୁ ସେ ନିମଖଣ୍ଡିରୁ ଆସିଲେ ବୋଲି କିମିତି ଜାଣିଲ ? ଆଉ ସେ ଯେ ଗ୍ରାମର କାର୍ଯ୍ୟୀ ?

ଗଦା – ତୁମର ମନେ ଥିବ ପ୍ରାୟ ଦେଢ଼ଘଣ୍ଟା ତଳେ ଏଠାରେ ପାଣି ହୋଇଥିଲା । ଆଉ ମେଘର ଗତି ଲକ୍ଷ୍ୟ କରିଥିଲେ ବୁଝିଥିବ, ଯେ ନିମଖଣ୍ଡି ତରଫରେ ବେଶୀ ବର୍ଷା ହୋଇଥିବାର ସମ୍ଭାବନା । ଭଦ୍ର ବ୍ୟକ୍ତିଙ୍କ ହାତରେ ଛତାଟି ଦେଖ । ପାଣିରେ ସୁତୁବୁତୁ ଓଦା । ଅତଏବ ସେ ଚାଲି ଆସିଛନ୍ତି ବର୍ଷାରେ । ଯେବେ ସେ ଛତ୍ରପୁର, ଗୋଲନ୍ତ, ବାଲିପଡ଼ା ବା କୁକୁଡ଼ାଖଣ୍ଡି ଆଡୁ ଆସିଥାନ୍ତେ, ତାହେଲେ ସେ ବସ୍‌ରେ ଆସିଥାନ୍ତେ । ଛତା ଓଦା ହେବାର ବିଶେଷ କାରଣ ନ ଥାନ୍ତା । ସେ ଯେବେ ରାସ୍ତା ନ ଥିବା କୌଣସି ଗାଁ'ରୁ ଆସିଥାନ୍ତେ । ତା' ହେଲେ ତାଙ୍କ ଗୋଡ଼ରେ କାଦୁଅ ବେଶି ଲାଗିଥାନ୍ତା ବା ଯେତେବେଳେ ନ ହୋଇଛି ଓ ମେଘର ଗତିରୁ ନିମଖଣ୍ଡି ଆଡ଼େ ବେଶୀ ବର୍ଷା ହେବାର ସମ୍ଭାବନା ରହିଛି, ଅତଏବ ମୁଁ ସିଦ୍ଧାନ୍ତ କଲି ସେ ସେ ନିମଖଣ୍ଡି ଆଡୁ ଆସୁଛନ୍ତି । ଦାରୋଗାଙ୍କ ପାଖରେ ତାଙ୍କର ଭାବଭଙ୍ଗୀ ଓ ତାଙ୍କ ଚେହେରାରୁ ମୁଁ ଅନୁମାନ କଲି, ସେ ଜଣେ ଗ୍ରାମ କର୍ମଚାରୀ ।

ମନ – ତା ଅବଶ୍ୟ ସହଜ । କିନ୍ତୁ ତହସିଲଦାର ମଟର ଇତ୍ୟାଦିରେ ଯିବା ଖବର କିପରି ଜାଣିଲ ?

ଗଦା – ତୁମେ ନିରିଖି କରି ଦେଖ, ତାଙ୍କର ଲୁଗା ପେର ଓ କାମିଜିର ସାମନା ଦିଗଟାରେ କାଦୁଅ ଛିଟା ପଡ଼ିଛି; ଆଉ ସେହି ଛିଟାଟା ବର୍ତ୍ତମାନ ବି ଓଦା ଅଛି, ସେଥିରୁ ଏଇ ଏକମାତ୍ର ଅନୁମାନ କରାଯାଇ ପାରେ ଯେ ଆସିଲାବେଳେ ତାଙ୍କ ସାମ୍‌ନା ଦିଗରୁ କୌଣସି ଦ୍ରୁତଗାମୀ ଯାନ ଯାଇଥିଲା । ଯେତେ ଛିଟା ପଡ଼ିଛି, ସେଥିରେ କେବଳ ଗୋଟାଏ ବାଇସାଇକେଲ୍‌ର କଥା ଆସି ପାରେନା । ଅତଏବ ମଟର ଗାଡ଼ି ନିଶ୍ଚୟ । ନିମଖଣ୍ଡିକୁ ମଟର

ଗାଡ଼ିରେ ସରକାରୀ କର୍ମଚାରୀ ଛଡ଼ା କିଏ ଯାଇପାରେ ! ପୁଲିସ୍ ଦାରୋଗା ଓ ଇନିସ୍‌ପେକ୍ଟର ତ ଏଠି । କଲେକ୍ଟର ବା ସବ୍‌କଲେକ୍ଟର ହୋଇଥିଲେ କାର୍ଯୀ ତାଙ୍କୁ ରାସ୍ତାରେ ଭେଟି ତାଙ୍କ ସଙ୍ଗରେ ନ ଯାଇ ଏଠାକୁ ଆସି ନଥାନ୍ତେ । ଅତଏବ ତହସିଲଦାର ବାବୁ ବୋଲି ମୁଁ ଠିକ୍ କରିନେଲି ।

ମନ : ତା'ପରେ ତହସିଲଦାରଙ୍କ ସାଥିରେ ଯାଙ୍କର କଥାବାର୍ତ୍ତା ?

ଗଦା – ତାଙ୍କ କାମିଜକୁ ଚାହଁ । ମଇଳା ରଙ୍ଗର ଗୋଟାଏ ରେଖା ଠିକ୍ ଛାତି ତଳକୁ ଅଛି ଓ ତା ତଳକୁ କମିଜରେ ମଇଳା ଘଷି ହେବାର ଚିହ୍ନ ଅଛି । ଯେପରି ବାବୁ ଗାଡ଼ି ଭିତରେ ; ଯାଙ୍କୁ ଡାକିଲେ । ଇଏ ସେଠାକୁ ଯାଇ ଗାଡ଼ି ଉପରେ ଆଉଜିପଡ଼ି ତାଙ୍କ ସଙ୍ଗରେ କଥାବାର୍ତ୍ତା କରୁଛନ୍ତି । ତହସିଲଦାର ଯେତେବେଳେ ତାଙ୍କୁ ଅଟକାଇ କଥାବାର୍ତ୍ତା ହୋଇଛନ୍ତି, ସେ ନିଶ୍ଚୟ ତାଙ୍କୁ ଫେରିଯିବାକୁ କହିଛନ୍ତି ଓ ଇଏ କାମର ଗୁରୁତ୍ୱ ଦର୍ଶାଇ ବ୍ରହ୍ମପୁର ଆସିଛନ୍ତି । ତହସିଲଦାର ତା'ହେଲେ ନିଶ୍ଚୟ ଯାଙ୍କୁ ବ୍ରହ୍ମପୁରରେ ଭେଟିବାକୁ କହିଥିବେ ।

ରାଧିକା – କିନ୍ତୁ ବ୍ରହ୍ମପୁରରେ ଓକିଲ ଘରକୁ ଯିବା ଓ ଚା' ଖାଇବା କିପରି ଜାଣିଲ ?

ଗଦା – ଆପଣ ଭାବନ୍ତୁ । ସେ କାମର ଜରୋରୀ ହେତୁ ତହସିଲଦାରଙ୍କ ସଙ୍ଗେ ଯାଇ ନାହାନ୍ତି, ଅଥଚ ଦେଢ଼ଘଣ୍ଟା ତଳେ ବ୍ରହ୍ମପୁର ପାଖରେ ବର୍ଷା ପାଇଛନ୍ତି ସେ । ସେଠାରୁ ଥାନାକୁ ଆସିବା ଲାଗି ତାଙ୍କୁ ଅଧଘଣ୍ଟାଏ ଲାଗିଥିବ । ବାକି ଘଣ୍ଟାକ କଉଠେ ରହିଲେ ? ତାଙ୍କ କାମିଜ ଆଗରେ ଓ ଓଠ ତଳେ ଚା' ପାଣିର ଦାଗ ଅଛି । କଉଁ ଜିନିଷ ଲୁଗାରେ ପଡ଼ିଲେ କିପରି ଦାଗ ଛାଡ଼ିଦିଏ ତା' ସଯନ୍ଦର୍ଶୀ ଠିକ୍ କରିଦିଏ । ସେ ଯେତେବେଳେ କାର୍ଯ୍ୟର ଗୁରୁତ୍ୱ ଘେନି ତହସିଲଦାରଙ୍କ ସାଙ୍ଗରେ ଗଲେନି, ସେ ନିଶ୍ଚୟ ରାସ୍ତାରେ ସାଙ୍ଗସାଥୀଙ୍କ ସହିତ ଗପ କରି ଘଣ୍ଟାଏ କାଳ କଟାଇ ନ ଥିଲେ । ମକଦ୍ଦମା ନେଇ ଆସିଛନ୍ତି । ଅତଏବ ଓକିଲ ପରାମର୍ଶ ସମ୍ଭବ । ସେହି ହେତୁରୁ ମୋର ଏ ଉପସଂହାର ।

ମନ – ତୁମେ ଯେ ଭାବରେ କଥାଗୁଡ଼ିକର କୈଫିୟତ ଦେଲ ସେ ଭାବରେ ଅବଶ୍ୟ ଜିନିଷଟା ବଡ଼ ସହଜ । କିନ୍ତୁ ତୁମେ କ'ଣ କହିବାକୁ ଚାହଁ ଯେ, ଏଇ ଯେ ପାଞ୍ଚ ସାତ ମିନିଟ୍ ତାଙ୍କୁ ଦେଖିଲ, ତାରି ଭିତରେ ତୁମେ ଏତେଗୁଡ଼ାଏ ଯୁକ୍ତିତର୍କ ମନ ଭିତରେ କରି ଏ ଉପସଂହାରରେ ପହଞ୍ଚିଗଲ ?

ଗଦା – ହଁ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, ଏ ଗୋଟାଏ ଅଭ୍ୟାସ । ତୁରନ୍ତ ବିଚାର ଯେତେ ଅଭ୍ୟାସ କରାଯିବ, ତାହା ସେତେ ସହଜ ହୋଇଯିବ ।

ମନ – କିନ୍ତୁ ତୁମର ଏସବୁତ ଅନୁମାନ ? ଏ ମିଛ ବି ହୋଇ ପାରି ଥାନ୍ତା ?

ଗଦା – କେତେଟା ଅନୁମାନ । କିନ୍ତୁ ଯୁକ୍ତିସଂଗତ ଅନୁମାନ ଅଧିକାଂଶ ସମୟରେ ଭୁଲ୍ ହୁଏନା । କେତେଟା କଥା ଯେପରି ଚା'ର ଦାଗ, ମାଟିଦାଗ ଇତ୍ୟାଦି ବୈଜ୍ଞାନିକ ବିଶ୍ଳେଷଣର କଥା, ସୁତରାଂ ଅଭ୍ରାନ୍ତ ।

ମନ – ଆଶ୍ଚର୍ଯ୍ୟ ନିଶ୍ଚୟ, ଆଚ୍ଛା, ଗଦାଧର ପରେ ତୁମ ସଙ୍ଗରେ ଏ ବିଷୟରେ କଥାବାର୍ତ୍ତା ହେବ । ବର୍ତ୍ତମାନ କାର୍ଯୀଙ୍କ କଥା ଶୁଣାଯାଉ । କଅଣ ଇତଲା ତୁମର କାର୍ଯୀ ବାବୁ ।

କାର୍ଯୀ – ଆଜ୍ଞା, ବଡ଼ ଶକ୍ତି କଥାଟା ଏକା ! ଆମ ଗାଁ' ଚ୍ଚି: କୃଷ୍ଣମୂର୍ତ୍ତି ସୁବୁଦ୍ଧି ଓ ତା'ର ଭାରିଯା ପି: ଚମ୍ପାବତୀ ଆଜି ସକାଳ ସାତ ଘଣ୍ଟା ବେଳେ ତାଙ୍କ ଶେଜରେ ମରି ଶୋଇବାର ଦେଖାଗଲା ।

ମନ – ଦିହେଁ ଯାକ ଏକା ବେଳେକେ ? କିପରି ମଲେ ଅନୁମାନ ? ବେମାରୀ ହୋଇଥିଲା କିଛି ?

କାର୍ଯୀ – ଆଜ୍ଞା ନା, କାଲି ରାତିରେ ତାଙ୍କ ବନ୍ଧୁଙ୍କ ଘରକୁ ଯାଇଥିଲେ । ରାତି ଏଗାର ଘଣ୍ଟାକୁ ଫେରିଲେ । ତା'ପରେ ଆଜି ସକାଳକୁ ଏ କାଣ୍ଡ ।

ମନ – କିଛି ଯଖମ ଦିହରେ ?

କାର୍ଯୀ – ଆଜ୍ଞା, କିଛି ନାହିଁ ।

ରାଧିକା – ଖୁଣୀ ବୋଲି ଜାଣିଲ କିମିତି ?

କାର୍ଯୀ – ଆଜ୍ଞା, ଆଉ ଦି'ଜଣଯାକ କିମିତି ମରନ୍ତେ ଏକାବେଳେକେ ? କେହି ବୋଧହୁଏ କଅଣ ଯନ୍ତ୍ର କରି ମାରିଦେଇଛି ପରା !

ମନ – ହୁଁ ମନ୍ତ୍ର କରିନା, ଗୁଣି କରି, ଏଁ ? ଫଉଲ୍ । କ'ଣ କହୁଛ ଗଦାଧର ?

ଗଦା – ମୁଁ କିପରି କହିବି ? କିଛି ଦେଖିନି, କିଛି ଜାଣିନି । ମୁଁ କ'ଣ ସର୍ବଜ୍ଞ ହୋଇଛି । କିନ୍ତୁ କାର୍ଯୀ ବାବୁ ଆପଣ ଓକିଲଙ୍କ ପାଖକୁ ଯାଇଥିଲେ କିଆଁ ?

କାର୍ଯୀ – ଆଜ୍ଞା ମୋର ନିଜର ଗୋଟାଏ ମୋକଦ୍ଦମା ଥିଲା ।

ଗଦା – ହୁଁ, ଖୁଣୀ ମାମଲାର ଇତଲା ଦେବାକୁ ଆସି ଥାନାରେ ଇତଲା ନ ଦେଇ ତୁମ ଓକିଲଙ୍କ ପାଖକୁ ତୁମ ମକଦ୍ଦମାରେ ବାହାରିଗଲ ? କିଏ ସେ ଓକିଲ ?

କାର୍ଯୀ – ଆଜ୍ଞା, ମୁଁ – ଇଏ, ମାନେ, ସୁରି ନାରାୟଣ । ବାବୁ, ମାନେ, ନା, ନା–

ଗଦାଧର ଟିକିଏ ମୁରୁକି ହସିଲେ ଓ ମନମୋହନଙ୍କ ଆଡ଼କୁ ଚାହିଁଲେ । ମନମୋହନ କିନ୍ତୁ କାର୍ଯୀଙ୍କ ଏତଲାଟା ନେଇ ପଢୁଥାନ୍ତି । ସେ ଏସବୁ ଲକ୍ଷ୍ୟ କରି ନାହାନ୍ତି ବୋଧହୁଏ । ପଢ଼ିସାରି କହିଲେ, "ରାଧିକା ବାବୁ, ଯାଅ ଦେଖ । ନା, ନା, ମୁଁ ମଧ୍ୟ ଯିବି । ଆତ୍ମହତ୍ୟା ବୋଧହୁଏ । କ'ଣ କହୁଛ ଗଦାର ବାବୁ ?"

ଗଦା - ମକଦ୍ଦମାର ସବୁକଥା ନିଜେ ନ ବୁଝି ନ ଦେଖି କୌଣସି ମତ ମନରେ ସ୍ଥାନ ଦିଏନି ।

ମନ - ତୁମେ ଯିବ, ଆସନା, ଦେଖିବା, ପ୍ରକୃତ ଘଟଣା ସାମ୍ନାରେ ତୁମର, ଅନୁମାନ ଗୁଡ଼ାକ କେତେଦୂର କାର୍ଯ୍ୟକାରୀ ହେବ ଓ ଆମର ଗତାନୁଗତିକ ଅନୁସନ୍ଧାନ କେତେ ଦୂର କାର୍ଯ୍ୟକାରୀ ହେବ, କ'ଣ କହୁଛ ?

ଗଦା - ଚାଲ, ମୋର ଆପତ୍ତି ନାହିଁ । ଅନ୍ତତଃ ଇନିସ୍‌ପେକ୍ଟର ସାହେବଙ୍କର ଅଦ୍ୱିତୀୟ ଅନୁସନ୍ଧାନ ପ୍ରଣାଳୀର ଜ୍ୱଳନ୍ତ ନିଦର୍ଶନଟାଏ ତ ଦେଖିବାକୁ ମିଳିବ । ନା ହେ ରାଧିକା ବାବୁ ?



## ଦୁଇ

ଗାଁ' ଖଣ୍ଡିକର ଆକାର ତ୍ରିଶୂଳ ପରି । ଯାହା ହଉ ଗାଁ'ର ବର୍ଣ୍ଣନା ମୋ ଗପ ଲାଗି ଦରକାର ନାହିଁ । ତୁମର ଦରକାର ଥିଲେ ତୁମେ ଯାଇ ଦେଖି ଆସିପାର । ତ୍ରିଶୂଳର ମୂଳ ନେଇ ମଝିଶୂଳକୁ ଗଲେ ପ୍ରାୟ ଅଧେ ରାସ୍ତା ପରେ ପଡ଼ିବ ଗୋଟିଏ ମହଲା ଧରଣର କୋଠାଘର । ଆଡ଼ି ବନ୍ଧା ସାହି ଘରକୁ ଘର ଠେଲାଠେଲି ହୋଇକି ଅମୃତ ଆଶାରେ ଠିଆ ହୋଇଛନ୍ତି । ସେହି ମହଲା ଧରଣର କୋଠାଘର ଦୁଆରେ ଏମାନଙ୍କ ପୋଲିସ ମଟରଟା ଯାଇ ଠିଆ ହେଲା । ଇନିସ୍‌ପେକ୍ଟର, ଦାରୋଗା, ଛୋଟ ଦାରୋଗା, କାର୍ଯ୍ୟୀ, ସିପାହୀ ଓ ଶେଷରେ ଗଦାଧର ବାବୁ ଓହ୍ଲାଇଲେ । ଦୁଆର ମୁହଁରେ ଓ ବରଣ୍ଡାରେ କେତେଗୁଡ଼ାଏ ଲୋକ ବସିଛନ୍ତି । ଆଣ୍ଠୁ ଠେଙ୍ଗ ଉପରେ ହାତକୁ ଲମ୍ବେଇ ଦେଇ, ସତେ ଯେପରି ମଡ଼କୁ ଆବୋରି ବସିଛନ୍ତି ଶାଗୁଣା ଦଳ । ପୋଲିସ ମଟରଟା ଆସି ଠିଆ ହେବା ସଙ୍ଗେ ସଙ୍ଗେ ଏଘର ସେଘର ସବୁଠୁ ଖଡ଼ଖାଡ଼ ହୋଇ ଧାଇଁ ଆସିଲେ । କେତେ ଯେ ପିଲାଛୁଆ, ଭେଣ୍ଡିଆ, ବୁଢ଼ା, ବଡ଼ ବ୍ୟତିବ୍ୟସ୍ତ ହୋଇ ଯେପରି ଡେରି ହେଲେ ତାଙ୍କ ଭାଗଟା ବୁଡ଼ିଯିବ ପରା । ଇନିସ୍‌ପେକ୍ଟର ବାବୁ ଦାରୋଗା ଓ ଗଦାଧର, କାର୍ଯ୍ୟୀ ଏବଂ ଆଉ ଦୁଇଜଣଙ୍କୁ ଘେନି ଘର ଭିତରକୁ ଚାଲିଲେ । ଘର ଭିତରୁ କନ୍ଦାକଟାର ହୁରି ଆସୁଥାଏ । ମାଇପେ ଜଣେ ଦି'ଜଣ ଓ ଛୁଆ ଦି ତିନିଟାଙ୍କର । ତଳ ଓ ମଝି ସାହାଲାରେ ଦି' ବଖରା ଲେଖାଏଁ ପକ୍କା ଘର, ମଝିରେ ପକା ଅଗଣା, ସବା ପଛରେ ଚାଳଘର ଦି' ବଖରା, ରୋଷେଇ ଘର, ଢିଙ୍କିଶାଳ । ମଝି ସାହାଲାର ଦି' ବଖରା ଘର ଭିତରୁ ଗୋଟିଏ ବଡ଼ ଘର ଓ ଗୋଟିଏ ଛୋଟ । ବଡ଼ ଘର ଦିହରୁ ଛୋଟ ଘରକୁ ବାଟ । ଏଇ ବଡ଼ ଘର ଦୁଆରେ ଚାବି ଦିଆ ହେଇଚି । ଗାଁ' ତଳିଆରୀ ଓ କରଣ ସେଇଠି ଦୁଆର ମୁହଁରେ ଜଗି ବସିଛନ୍ତି । ଏମାନଙ୍କୁ ଦେଖି ସେମାନେ ଉଠି ଦଣ୍ଡବତ କଲେ । ଘର ଭିତରୁ ଆହୁରି ଜୋର୍‌ରେ କାନ୍ଦବୋବାଳି ଆରମ୍ଭ ହେଲା । ଇନିସ୍‌ପେକ୍ଟର ପଚାରିଲେ - "ଏଇ ଘରଟା ଚାବି କାହା ପାଖରେ ?" କାର୍ଯ୍ୟୀ ଚାବି

ବନ୍ଦ୍ହାଇଦେଲେ । ଇନିସ୍‌ପେକ୍ଟର ଚାବି ଖୋଲିଲେ, ଶିକୁଳି ଫିଟାଇଲେ, ପଶି ଯାଇ କହିଲେ, "ଏ ଘର ଭିତରକୁ ଆଉ କିଏ କିଏ ଆସିଥିଲେ ?"

କାର୍ଯୀ - ଆଜ୍ଞା ମୋ ଆସିବା ଆଗରୁ କିଏ ଆସିଥିବେ କେଜାଣି, ମୁଁ ଆସିବା ପରେ କରଣ ଓ ତଲିଆଁରୀ ଛଡ଼ା ଆଉ କେହି ଆସନି । ତା'ପରେ ଚାବି ବନ୍ଦ କରି ମୁଁ ଚାଲିଗଲି ।

ସେମାନେ ଦେଖିଲେ ଘରର କାନ୍ଥକୁ ଲାଗି ଗୋଟାଏ ଖଟ । ସେଥିରେ ଖଣ୍ଡେ ଶେଯ ଓ ତା' ଉପରେ ଖଣ୍ଡେ ମଇଳା କନ୍ଥା ପଡ଼ିଛି । ତଳେ ସତରଞ୍ଜି, ସତରୟଞ୍ଜି ଉପରେ ଗୋଟିଏ ଶେଯ ଓ ଶେଯ ଉପରେ ଗୋଟିଏ ଅପେକ୍ଷାକୃତ ସଫା ଚଦର ବିଛା ହୋଇଛି । ଦିଖଣ୍ଡି ତକିଆ ଉପରେ ମୁଣ୍ଡ ଦେଇ ଦୁଇଟି ଲୋକ, ଜଣେ ପୁରୁଷ, ବୟସ ଅନ୍ଦାଜ ୩୦/୩୫, କଳା ସାବନା, ମୁହଁରେ ଦିପଟ ଛୋଟ ନିଶ, କେବଳ ଧୋତି ଖଣ୍ଡିକ ଛଡ଼ା ବାକି ସବୁ ଦିହ ମୁକୁଳା, ଧୋତି ଆଣ୍ଠୁ ଉପରୁ ଉଠି ଯାଇଛି । ଫେରଟା ବିଅ୍ଣ୍ଡ ହୋଇ ପଡ଼ିଚି, ଗୋଟିଏ ସ୍ତ୍ରୀ, ପୁରି ଦେଲା ପରି, ବୟସ ପଚିଶ ତିରିଶ ଭିତରେ, ମୁଣ୍ଡରେ ପାତା ପକା ହୋଇ ମାଙ୍ଗ କଟାଯାଇଛି । ଦିହରେ କୁମୁଟି ଘର ସ୍ତ୍ରୀମାନଙ୍କର ସାଧାରଣ ଅଳଙ୍କାର ପିନ୍ଧିଛି, ଖଣ୍ଡି, ଧୋବ, ଫରଦୀ ଶାଢ଼ୀ । ଦିହିଁଙ୍କର ଆଖିବ ଦି'ଟା ପୂର୍ଣ୍ଣ ଭାବରେ ଖୋଲା, ଯେପରିକି ସେ କଟମଟ କରି ଚାହିଁ ରହିଛନ୍ତି । ଓଠ ଦୁଇଟା ଲେସିଡ଼ି ଯାଇଛି ଟିକେ । ଦାନ୍ତ ବାହାରି ପଡ଼ିଛି ସାମାନ୍ୟ କରି । ସେମାନଙ୍କ ମୁହଁରେ ଏକରକମ ଭାବ । ସେମାନେ ଯେ ପଡ଼ି ରହିଛନ୍ତି । ସେ ମଧ ଏକ ପ୍ରକାର ଭାବରେ । ଯାଙ୍କର ଡାହାଣ ଗୋଡ଼ଟା ବଙ୍କେଇ ରହିଛି ଓ ତା'ର ମଧ ସେହି ଗୋଡ଼ଟା । ଦିହିଁଙ୍କର ହାତ ମୁଠା ହୋଇଯାଇଚି ଓ ଦିମୁଠା ଯାକ ଛାତି ଉପରେ ରହିଛି । ଶେଯରେ ଛଟପଟ ହେବାର କୌଣସି ଚିହ୍ନ ନାହିଁ । ଜଣା ପଡୁଛି ଯେମିତି ଶୋଇବାକୁ ଯାଇଚନ୍ତି, ସେମିତି ମରି ଯାଇଛନ୍ତି ଯେପରି ।

ଦାରୋଗା ବାବୁ ତାଙ୍କ ଡାଏରି କାଢ଼ି ମଡ଼ ମାଇନା ରିପୋର୍ଟ ଲେଖି ବସିଲେ । ଛୋଟ ଦାରୋଗା ବାବୁ ଘରର ନକ୍ସା ବନେଇ ବସିଲେ ଓ ଇନିସ୍‌ପେକ୍ଟର ବାବୁ ସାଙ୍ଗରେ ଥିବା ସେହି ଘରର ଜଣେ ଦିଜଣ ଲୋକଙ୍କୁ ପଚରା ପଚରି କରି ବସିଲେ । ଘରର ମଣିଷ ବୋଇଲେ, ଜଣେ ଚାକର ଓ ଲେଖାଯୋଖାର ଜଣେ ବିଧବା ମାଉସୀ । ଆଉ ତିନୋଟି ପିଲା, ଦଶ ବର୍ଷର ଗୋଟିଏ ପୁଅ, ଆଠ ବର୍ଷ ଓ ପାଞ୍ଚ ବର୍ଷର ଦୁଇଟି ଝିଅ । ସେମାନଙ୍କୁ ପଚାରିବାରେ ଜଣାପଡ଼ିଲା ଯେ, ତା ଆଗ ରାତିରେ ସେମାନେ ଓ ପିଲାମାନେ ସବୁ ରାତି ନଅଟା ବେଳକୁ ଖାଆପିଆ ସାରିନେଲେ । ବାପା ଓ ମା' ପିଲାଙ୍କୁ ଖଟ ଉପରେ ଶୁଆଇ ଦେଇ ଚାଲିଗଲେ ତାଙ୍କର ଜଣେ ବନ୍ଧୁଙ୍କ ଘରକୁ । ବନ୍ଧୁଙ୍କର ନାମ ଦୁଙ୍ଗଡୁ ଗୋପାଳ । ସେଠାରୁ ସେମାନେ ପ୍ରାୟ ରାତି ୧୧ଟା ବେଳକୁ ଫେରି ଆସିଲେ, ମାଉସୀ ଦି'ଟା ଡାଟିଆରେ ଦିଡାଟିଆ ଗରମ ଦୁଧ ସବୁ ଦିନ ଭଳି ତାଙ୍କୁ ନେଇ ଦେଲେ । ତା'ପରେ ସେ ଶୋଇବାକୁ ଗଲେ ଚାଲି ତଳ ଘରକୁ । ଏମାନେ ତାର ଅଧଘଣ୍ଟାକ ପରେ ଶୋଇବାକୁ ଗଲେ । ଦୁଆର ବନ୍ଦ କରିବା ଶବ୍ଦରୁ ସେ ତାହା ଜାଣି ପାରିଲେ । ଗୃହିଣୀ ସାଧାରଣତଃ ସକାଳ ପାଞ୍ଚ ଛ'ଟା ଭିତରେ ଉଠି ଘର କାମରେ ଲାଗି ଯା'ନ୍ତି ଓ ଚାକର ଚାକରଙ୍କୁ

ଡକା ଡକି କରି ଉଠାନ୍ତି । ସେଦିନ ସେ ଡାକହାକ ନ କରିବାରୁ ମାଉସୀ ଓ ଚାକର ଉଠୁ ଉଠୁ ଡେରି ହେଲା, ପ୍ରାୟ ସାତା । ସେତେବେଳେ ସେମାନେ ବି ଦେଖନ୍ତି ଯେ, ଏମାନଙ୍କ ଶୋଇଲା ଘର ଦୁଆର ଭିତରୁ ବନ୍ଦ ଅଛି । ଏମାନେ କାମରେ ଲାଗିଲେ । ଅଧଘଣ୍ଟା କାଟର ଗଲା । ତଥାପି ଶୋଇଲା ଘରର ଦୁଆର ନ ଫିଟିବାରୁ ଏମାନଙ୍କ ମନରେ ସନ୍ଦେହ ହେଲା । ଦୁଆର ମୁହଁରେ ଯାଇ ଡାକ ପକାଇଲେ ଓ ଦୁଆରରେ ବାଡ଼େଇଲେ । ଶେଷକୁ ବଡ଼ ପୁଅ ଆସି ଦୁଆର ଖୋଲିଲା । ଆଉ ଆଉ ପିଲାମାନେ ମଧ ଉଠିଲେ । କିନ୍ତୁ ଏ ଦୁଇଜଣ ନ ଉଠିବାରୁ ମାଉସୀ ଯାଇ ତାଙ୍କ ହଲାଇ ଡାକିଲେ ଓ ଦେଖିଲେ ଦିହ କାକର, ସ୍ୱର ଶବ୍ଦ ନାହିଁ । ସେମାନେ ଡରିଗଲେ ଓ ପାଟି କଲେ । ସାଇପଡ଼ିଶା ଜମିଗଲେ । କାର୍ଯୀଙ୍କି ଖବର ହେଲା । ସେ ଆସିଲେ, ମଢ଼ ଦେଖିଲେ, ମାଇନା କଲେ ଓ ଜଗୁଆଳି ରଖେଇ ଘର ବନ୍ଦ କରି ଚାଲିଗଲେ ।

ଇନିସ୍‌ପେକ୍ଟର ପଚାରିଲେ – ଦୁଧ ଗିନା ଦି'ଟା କାହିଁ? 'ମାଉସୀ ଦେଖାଇଦେଲ; ମଢ଼ର ଗୋଡ଼ତଳେ କବାଟ –କୁଣରେ ଦି'ଟା ଗିନା ଥୁଆ ହୋଇଚି । ସେଥିରେ ଟିକିଏ ଟିକିଏ ଦୁଧ ଚକିରେ ଅଛି । ଇନିସ୍‌ପେକ୍ଟରଙ୍କ ହୁକୁମରେ ସେ ଗିନା ଦୁଇଟା ସେହିପରି ଅବସ୍ଥାରେ ଜବତ କରାଗଲା । ଜବତ କରିବା ଆଗରୁ ଗଦାଧର ଯାଉ ଗିନା ଦୁଇଟା ଭଲ କରି ଦେଖିନେଲେ ଓ ତାଙ୍କ ପକେଟ୍‌ରୁ ଗୋଟେ ସୂର୍ଯ୍ୟମୁଖୀ କାଚ ଭଳି କାଚ ବାହାର ତା' ସାହାଯ୍ୟରେ ତାକୁ ପରୀକ୍ଷା କରିନେଲେ । ଇନିସ୍‌ପେକ୍ଟର ଯେତେବେଳେ କଥାବାର୍ତ୍ତା ହେଉଥିଲେ, ତା' ଭିତରେ ଗଦାଧର ଘରର ଚାରିଆଡ଼ ବୁଲି ବୁଲି ପରୀକ୍ଷା କରୁଥାନ୍ତି, ସେତେବେଳେ ଗୁରୁଣ୍ଡି ପଡ଼ି ଦି'ପାଖକୁ ଲକ୍ଷ୍ୟ କରୁଥାନ୍ତି, କେତେବେଳେ ଠିଆ ହୋଇ କାନ୍ଥ ବାଡ଼କୁ । ଏହିପରି ବୁଲୁବୁଲୁ ସେ ହଠାତ୍ ବିଛଣା ପାଖରେ ବସି ପଡ଼ିଲେ । ଦି' ମଢ଼ଙ୍କ ମଝିରେ ଗୋଡ଼ତଳ ଆଡ଼କୁ ଶେଯ ଉପରେ ଗୋଟିଏ ପାଦଚିହ୍ନ ଭଳି ଚିହ୍ନ ଥିଲା । ପକେଟରୁ ଫିତା କାଢ଼ି ତା'ର ଲମ୍ୱ ଓସାର ମାପିଲେ ଓ ଖଣ୍ଡିଏ ରଙ୍ଗ ଖଡ଼ିରେ ସେହି ଚଦର ଉପରେ ସେହି ପାଦ ଚିହ୍ନର ଛବି ଆଙ୍କିଦେଲେ; ତାପରେ ଗଲେ ସେ ଦୁଆର ଆଡ଼କୁ । ଦୁଆରଟା ବନ୍ଦ କରି ଦେଖିଲେ, ଗୋଟିଏ ଗେଡ଼ା ଦୁଆର ବନ୍ଧରୁ ଝୁଲୁଛି ଓ ଆର ଦୁଆର ବନ୍ଧରେ ଗେଡ଼ା ରଖିବା ପାଇଁ ଲୁହାର ଆଙ୍କୁଶଟିଏ ଅଛି । ଗେଡ଼ା ଦେଲେ, ପୁଣି ଉଠାଇଲେ । ଗେଡ଼ାଟାକୁ ତାଙ୍କ ସୂର୍ଯ୍ୟକାଚରେ ଭଲକରି ପରୀକ୍ଷା କଲେ । କ'ଣ ଦେଖିଲେ କେଜାଣି, ତାଙ୍କର ଆଖି ଉଜ୍ଜ୍ୱଳ ହୋଇ ଉଠିଲା, ନାକ ଫୁଲି ଉଠିଲା । ଯେପରି ଶିକାରୀ କୁକୁର ଶିକାରର ଗନ୍ଧ ପାଇଛି । ସେ ତରବର ହୋଇ ଘର ଚାରିଆଡ଼େ ଚାହିଁଲେ । ଦେଖିଲେ ଗୋଟାଏ ଟ୍ରଙ୍କ୍ ଥୁଆ ହୋଇଛି, ସେଇଟା ଆଣି କବାଟ ପାଖରେ ପକାଇ ତା' ଉପରେ ଠିଆ ହୋଇ କବାଟର ଉପର ଆଡ଼କୁ ତନ୍ନତନ୍ନ କରି ପରୀକ୍ଷା କଲେ । କବାଟ ଦାଢ଼ରେ ରୁମ ଭଳି କ'ଣ ଲାଗିଥିଲା । ତାକୁ ଅତି ଯତ୍ନରେ ବାହାର କରି ଖଣ୍ଡିଏ ଲଫାଫା ଭିତରେ ସାଇତି ରଖିଲେ ।

ଗଦାଧରଙ୍କ କାଣ୍ଡ କାରଖାନା ଦେଖି ଇନିସ୍‌ପେକ୍ଟର ବାବୁ ମୁରୁକି ମୁରୁକି ହସୁଥାନ୍ତି । ଦାରୋଗା ବାବୁ ନାକ ଟେକୁଥାନ୍ତି । ତାଙ୍କର ଏହିସବୁ ପରୀକ୍ଷା ସରିଲା ବେଳକୁ ପୁଲିସ ବାବାଙ୍କ

କାମ ମଧ ସରିଥାଏ । ଇନିସ୍‌ପେକ୍ଟର ପଚାରିଲେ, 'କ'ଣ ଗଦାଧର, ତୁମର ଗୁଇନ୍ଦାଗିରି ସରିଲା ନା ଆଉ କିଛି ଅଛି ?

ଗଦାଧର -ନା, ସରିଲା । ତୁମର ?

ମନ - ଆମର ବି, ତାହା ହେଲେ ଚାଲ । ରାଧୁ, ଲାସ୍‌କୁ ଡାକ୍ତରଖାନାକୁ ପଠାଇବାର ବନ୍ଦୋବସ୍ତ କର । ଦେଖ ଯେପରି ଲାସ ଦେଖି ରିପୋର୍ଟ ଆଦି ମିଳିଯାଏ । ଆତ୍ମହତ୍ୟା ବୋଧହୁଏ ।

ଗଦା - କିପରି ?

ମନ - ବିଷ ଖାଇ ନିଶ୍ଚୟ ।

ଗଦା - ବିଷ କାଇଁ ? କି ବିଷ ?

ମନ - ବିଷ ବୋଧହୁଏ ସେ ଦୁଧରେ ଥିଲା ।

ଗଦା - ତା' ମାନେ, ଏମାନେ ଦୁଧରେ ବିଷ ଦେଇ ଖାଇ ଶୋଇ ପଡ଼ିଲେ । ତିନି ତିନିଟା ଛୋଉଣ୍ଡ ନାବାଳକ ଛୁଆ ଛାଡ଼ି, ହଠାତ୍ ଏ ଦୁହେଁ ଯାକ ବିଷ ଖାଇବାକୁ ଗଲେ କିଆଁ ? ସେପରି କିଛି କାରଣ ପାଇଛ ?

ମନ - ନା, ତା ପାରେନି । ଏ ଚାକର ଚାକରାଣୀ ଦି'ଟା ଯେବେସତ କହୁଥାନ୍ତି, ତାହେଲେ ତ ଜଣାପଡୁଛି, ସ୍ତ୍ରୀ -ପୁରୁଷଙ୍କ ଭିତରେ ଖୁବ୍ ଭଲ ଭାବ ଥିଲା ।

ଗଦା - ପଇସାପତ୍ରର ଗୋଳମାଳ ?

ମନ - ମୁଁ ଯେତେଦୂର ଜାଣେ, ଏ ଜଣେ ଗାଁ'ର ବିଶିଷ୍ଟ ଧନୀ ଓ ବ୍ୟବସାୟୀ ; ଅନ୍ତତଃ ଟଙ୍କା ପଚାଶ ଷାଠିଏ ହଜାର ନଗଦ ଗଣିଦେବା ବାଲା ।

ଗଦା - ତା'ହେଲେ ?

ମନ - କହି ହଉନି । ହୁଏତ ଆତ୍ମହତ୍ୟା, ନ ହେଲେ ଦୁଧରେ ଏ ମାଉସୀଟା କୌଣସି ସ୍ୱାର୍ଥରୁ ବିଷ ଦେଇଛି । ଯାହାର ଦୁଇଟା ପରୀକ୍ଷା ନ କରିବା ପର୍ଯ୍ୟନ୍ତ କିଛି କହି ହଉନି ।

ଗଦା - ତୁମେ ଦୁଧରେ ବିଷ ମୋଟେ ପାଇବନି, ମୁଁ କହି ରଖୁଛି ।

ମନ - ତାହାହେଲେ ତୁମେ କ'ଣ କହିବାକୁ ଚାହଁ ?

ଗଦା - ମୁଁ କହିବି ଏ ନରହତ୍ୟା । ପୃଷିକ ଏସିଡ୍ ବା ସେହିପରି ଆହୁରି କିଛି ଭୀଷଣ ବିଷଦ୍ୱାରା ଏ ନରହତ୍ୟା କରିଛି ଜଣେ ଲୋକ, ଯାହାର ଉଚ୍ଚତା ପ୍ରାୟ ପାଞ୍ଚଫୁଟ ଚାରି ଇଞ୍ଚ ।

ମନ - ଆଉ ବାକି ତା' ନାଁଟା କହିଦେଲେ ତ ହେଲା । କହି ଦଉନ ?

ଗଦା – କାଲି ଭିତରେ କହି ପାରିବି ।

ମନ – ହୁଁ । ଦୁଧରେ ଯେବେ ବିଷ ନାହିଁ, ତାହାହେଲେ ସେ କ'ଣ ତାଙ୍କୁ ମାଡ଼ିବସି ବିଷ ପିଆଇ ଦେଲା ? ଆଉ ସେ ଗଲା କଉବାଟେ ? ଦୁଆର ଭିତରୁ ବନ୍ଦ ଥିଲା । ସେ କ'ଣ ପବନ ହୋଇ ଦୁଆର ଫାଙ୍କ ବାଟେ ଉଡ଼ି ବାହାରିଗଲା ? କି ବୋକାମି । ଏଇ ଯେବେ ନରହତ୍ୟା ହୋଇଥାଏ, ଉଡ଼ି ବାହାରିଗଲା ? କି ବୋକାମି । ଏଇ ଯେବେ ନରହତ୍ୟା ହୋଇଥାଏ, ତାହେଲେ ଏଇ ନିଶ୍ଚୟ ଏଇ ମାଉସୀର ନ ହେଲେ ବନ୍ଧୁ ଦୁଗ୍‌ଦୁ ଗୋପାଳର କାର୍ଯ୍ୟ ।

ଗଦା – ଦୁଗ୍‌ଦୁ ଗୋପାଳ ? କାହିଁକି ?

ମନ – ସେ ବୋଧହୁଏ ତାଙ୍କୁ କ'ଣ ଖାଇବାକୁ ଦେଇଛି । ସେଥିରେ ବିଷ ଦେଇଥିବ-

ଗଦା – ଆଉ ସେ ବିଷ ଖାଇ ଏମାନେ ଏତେବାଟ ଆସି, ଘରେ ଲୁଗାପଟା ଛାଡ଼ି ସାଇତି, ଦୁଧ ଖାଇ, ଦୁଆର ବନ୍ଦ କରି ଶୋଇଲେ, ଆଉ ମରିଗଲେ ? କିଛି ଜାଣି ପାରିଲେନି, କିଛି ଛଟପଟ ହେଲେନି ? ଆଶ୍ଚର୍ଯ୍ୟ ଯୁକ୍ତି ।

ମନ – ତୁମ ଯୁକ୍ତି ଓ ଉପସଂହାରଠାରୁ କମ୍ ଆଶ୍ଚର୍ଯ୍ୟ କିନ୍ତୁ । ହୁଁ, ସାଧୁ, ସବୁ ହୋଇଗଲା ତ ? ଚାଲ । ଏ ଦୁଧଗିନା ଦି'ଟା ବି ସାବଧାନରେ ଡାକ୍ତରଙ୍କ ପାଖକୁ ପଠାଅ । ସେ ଯେବେ ଏଥିରୁ କିଛି ବାହାର କରି ପାରନ୍ତି, ନ ହେଲେ କେମିକାଲ ଏକ ଜାମିନରଙ୍କ ପାଖକୁ ପଠାଇବା ଦରକାର ହେବ ।

ଏମାନେ ଗଲେ ଚାଲି ।



## ତିନି

ସେ ଦିନ ସନ୍ଧ୍ୟା ବେଳେ, ପୁଣି ସେହି ଇନିସ୍‌ପେକ୍ଟରଙ୍କ ଦପ୍ତରରେ ସେହି କେତେ ଜଣ ବସିଛନ୍ତି । ମଡ଼ା ତନଖି ଓ ଦୁଧ ଦେଖି ରିପୋର୍ଟ ଆସିଯାଇଛି । ତା'ର ଆଲୋଚନା ଚାଲିଛି ।

ମନ – ତା'ହେଲେ ତୁମର ଏ ଅନୁମାନଟା ଠିକ୍ ହେଲା ଗଦାଧର । ପ୍ରୁଷିକ ଏସିଡ୍ । ଠିକ୍ ଦିଟା ଯାକ ମଡ଼ାର ପେଟରୁ ପ୍ରୁଷିକ୍ ଏସିଡ୍‌ର ଚିହ୍ନ ଡାକ୍ତର ପାଇଛନ୍ତି । ଗଦାଧର ମୁରକି ହସିଲେ । କହିଲେ – 'ଆଉ ଦୁଧରୁ' ?

ମନ – ତା' ବି ମାନୁଚି, ତୁମର ଅନୁମାନ ଏଠାରେ ମଧ ସତ । ଦୁଧରେ କୌଣସି ବିଷର ଚିହ୍ନ ନାହିଁ । କିନ୍ତୁ ତୁମେ କିପରି ଅନୁମାନ କଲ ଦୁଧରେ ବିଷ ନ ଥିବ ବୋଲି ।

ଗଦା – ତୁମେ ଗିନା ଦି'ଟା ଭଲ କରି ପରୀକ୍ଷା କରି ଦେଖିଛ ? ତା ଦେଖିନ। ମୁଁ ଦେଖିଛି । ଏଇ ଆଣ ସେ ଗିନା ଦି'ଟା । ନିଅ ମୋର ସୂର୍ଯ୍ୟକାଚ । ଦେଖ, ଗିନାଚକିରେ ଯଉଟିକେ ଦୁଧ ଲାଗିଛି, ତା'ଛଡ଼ା ଗିନାରେ ଅନ୍ୟ କୌଉସି ଦୁଧର ଚିହ୍ନ ନାହିଁ । ଗିନାରେ ଗରମ ଦୁଧ ପଶି ଆସି ଥିଆ ହେଲା । ତା'ର ଅଧ ଘଣ୍ଟାକ ପରେ ସେମାନେ ଦୁଆର ବନ୍ଦ କଲେ । ତୁମେ ନିଶ୍ଚୟ ଜାଣ, ପ୍ରୁଷିକ ଏସିଡ୍ ଖାଇବାର ଦୁଇ ତିନି ମିନିଟ୍ ପରେ ମୃତ୍ୟୁ ଘଟେ । ଅତଏବ ଦୁଆର ବନ୍ଦ କରିବାର ଠିକ୍ ପୂର୍ବରୁ ସେମାନେ ଦୁଧ ଖାଇଥିବେ । ସେହି ଦୁଧରେ ବିଷ ଥିଲା । ଦୁଇ ଯେବେ ଅଧଘଣ୍ଟାଏ ପର୍ଯ୍ୟନ୍ତ ଶିକାରେ ରହେ, ତାହେଲେ ଦୁଧର ଓ ସରର ଦାଗ ଅବଶ୍ୟ ଗିନାରେ ରହିବ। ଏଥିରେ ସେସବୁ କିଛି ନାହିଁ। ସେଥିରୁ ମୁଁ ଅନୁମାନ କଲି ଯେ ନରହନ୍ତା ଏମାନେ ମରିଯିବା ପରେ ଆସି ଗିନା ଦିଟା ଧୋଇଧାଇ ସଫା କରି ଓ ତୁମକୁ ଭୁଲେଇବା ପାଇଁ ସେଥିରେ ଟିକିଏ ଟିକିଏ ଦୁଧ ରଖିଦେଇ ଯାଇଚି ।

ମନ – ହୁଁ, ତା ଯେବେ ହୁଏ, ସେ ଆସିଲା କୁ ବାଟେ ଓ ଗଲା କୁ ବାଟେ ? ଦୁଆରଟା ଯେ ଭିତର ପଟୁ ବନ୍ଦ ଥିଲା । ତୁମ କଥା ଯେବେ ସତ୍ୟ, ତାହାହେଲେ ଏକମାତ୍ର ଉପସଂହାର ଏଇୟା ହେବ ଯେ, ସେହି ମାଉସୀ ଦୁଧରେ ବିଷ ଦେଇଥିଲା ଓ ସକାଳେ ଯେତେବେଳେ ଦୁଆର ଖୋଲାହେଲା, ସେ ଗିନା ଦି'ଟା ମାଜି ସେଥିରେ ଟିକିଏ ଦୁଧ ରଖି ତା'ପରେ ଡାକହାକ ପକେଇଲା ।

ଗଦା – କିନ୍ତୁ ତୁମେ ତ ମୃତ ଲୋକଙ୍କ ପିଲାମାନଙ୍କୁ ପଚାରିଚ; ସେମାନେ କ'ଣ କହିଲେ ?

ମନ – ସେମାନେ ସେପରି କିଛି ତ କହି ନାହାନ୍ତି । ତେବେ ଏ ବିଷୟଟା ମୁଁ ସେମାନଙ୍କୁ ସଫା ପଚାରିନି । ଚାଲ ଯିବା । ଆଜି ରାତିଟା ଦେଖୁଚି, ଶୋଇବାକୁ ଯୋଗ ନାହିଁ । ରାଧୁ ତୁମେ ପ୍ରସ୍ତୁତ ତ ?

ରାଧିକା – ଆଜ୍ଞା, ହଁ । ସବୁ ତିଆରି । ମୁଁ ସାଙ୍ଗରେ କିଛି ଜଳଖିଆ ବି ଧରି ନେଇଛି ।

ମନ – ହୁଁ, ଜଳଖିଆ ? ତୁମର ପେଟ ଚିନ୍ତାଟା ହିଁ ସବୁଠୁ ବେଶୀ । ଚାଲ ଗଦାଧର । କିନ୍ତୁ ଗଦାଧର ତୁମେ କିମିତି କହିଲ ଯେ, ଯେ ମାରିଚି ତା'ର ଉଚ୍ଚତା ପାଞ୍ଚ ଫୁଟ ଚାରି ଇଞ୍ଚ ?

ଗଦା – ସେ କଥା ପରେ କହିବି । ସତ କହିବାକୁ ଗଲେ ଏଇଟା ମୋର ଗୋଟାଏ ଅନୁମାନ। ମୋର କହିବା ଉଚିତ ନ ଥିଲା । ଆଉ ଟିକିଏ ଭଲ କରି ପରୀକ୍ଷା ନ କଲେ ମୁଁ କହିପାରିବିନି ।

ମନ – ମୋର ତ କିନ୍ତୁ ମନେ ହେଉଚି, ସେଇ ମାଉସୀଟାର ଏ କାଣ୍ଡ । କିଛି ଭିତିରି ମତଲବ ତା'ର ନିଶ୍ଚୟ ଅଛି । ଜଣା ପଡ଼ିଯିବ ଯେ । କିନ୍ତୁ ତା'ର ଉଞ୍ଚା ତ ପାଞ୍ଚ ଫୁଟ ବି ହବନି ।

ଗଦା - ତା'ର ଉଞ୍ଚା ଯେବେ ପାଞ୍ଚ ଫୁଟ ନ ହୁଏ ଓ ତା'ର ପାଦର ମାପ ଯେବେ ନ' ଇଞ୍ଚ ନ ହୁଏ, ତାହାହେଲେ ସେ ନିଶ୍ଚୟ ହତ୍ୟାକାରୀ ନୁହେଁ।

ମନ - ଦିହ ଉଚତାରୁ ପୁଣି ପାଦ ମାପ ବି ଆସିଗଲା। ଆଉ କିଛି ?

ଗଦା - ଆଉ ? ଆଉ ଅନେକ କିଛି ଅଛି ପରେ କହିବି। ଚାଲ।

ସେମାନେ ଯାଇ ପୁଣି ନିମଖଣ୍ଡି ଗାଁ'ରେ ପହଞ୍ଚିଲେ। ଇନିସ୍‌ପେକ୍ଟର ଓ ଦାରୋଗା, ମାଉସୀ ଓ ପିଲାମାନଙ୍କୁ ଡକାଇ ଗୁଡ଼େଇ ତୁଡ଼େଇ ମନା ପ୍ରଶ୍ନ ପଚାରିଗଲେ। ସେ ଚାକରଟାକୁ ବି ଅନେକ କିଛି ପଚାରିଲେ। ସେଥିରୁ ଯାହା ଉପାଦେୟ ତାହା ଦିଆଗଲା ତଳେ-

ମନ - ବେ, ତୁ କେତେ ଦିନ ହେଲା ଅଛୁ ଏଠି ?

ଚାକର - ଆଜ୍ଞା, ପାଞ୍ଚ ବର୍ଷ ହେବ।

ମନ - ମାଉସୀ ବି ତ ଏଠି ପାଞ୍ଚ ବର୍ଷ ହବ ଅଛି। ସେ ଆଗେ ଆସିଲା ନା ତୁ ଆଗେ ?

ଚାକର - ଆଜ୍ଞା, ମୁଁ ନା ସେ, ନା ମୁଁ ଆଗେ।

ମନ - ହୁଁ, ତୁ ମାଉସୀକି ଆଗରୁ ଚିହ୍ନିଥିଲୁ ?

ଚାକର - ଆଜ୍ଞା, ନା କଦାପି ନୁହେଁ। ମୁଁ କେବେହେଲେ ତା' ଆଗରୁ ତାକୁ ଦେଖି ନ ଥିଲି।

ମନ - ହୁଁ, ଭାରି ଘେର ତ, ଯା ଆଗରୁ ତୁ କଉଠେ ଥିଲୁ ?

ଚାକର - ଆଜ୍ଞା, ଗା'ରେ ଆମର।

ମନ - କୁ ଗାଁ ?

ଚାକର - ଅଣ୍ଡାଳିଆ, ଆଜ୍ଞା ନା, ମାନେ, ଆଜ୍ଞା ଏଇ ପହଲାଦପୁର।

ମନ - ହୁଁ, ଅଣ୍ଡାଳିଆ, ମାଉସୀ ବି ତ ଆଗେ ସେଇଠି ଥିଲା। ତା ଜାଣିଥିଲୁ ସେଠି ?

ଚାକର - ଆଜ୍ଞା, ଅଣ୍ଡାଳିଆ ମୋ ଗାଁ' ନୁହେଁ। ମୁଁ ସେଠି କେବେ ନ ଥିଲି। ମୁଁ ମାଉସୀକି କେବେ ହେଲେ ଦେଖିନି ଏଇଠିକି ଆସିବା ଆଗରୁ।

ମନ - ତେବେ ରେ ଶଳାଟି ଅଣ୍ଡାଳିଆ ଗାଁ' ନା କିମିତି ବାହାରି ପଡ଼ିଲା ତୁଣ୍ଡରୁ ? ଶଳା କଥା ଲୁଚଉଚୁ ମୋ ଆଗରେ। ସତ କହ, ନ ହେଲେ -

ଚାକର - ଆଜ୍ଞା, ହଜୁର, ମୁଁ ସତ କହିବାର। ମିଛ କହିଲେ ମୋ ଆଖି ଫୁଟିଯିବ।

ମନ - ତେବେ କହ, ତୁ ଆଗରୁ ମାଉସୀକୁ ଚିହ୍ନିଥିଲୁ ନା ଚିହ୍ନି ନ ଥିଲୁ ?

ଚାକର - ଆଜ୍ଞା, ମୁଁ ସତ କହୁଚି, ଚିହ୍ନି ନ ଥିଲି ।

ମନ - ଫେରେ ମିଛ । ଆଛା । ଛୋଟ ବାବୁ ପ୍ରହଲାଦପୁର କାର୍ଯୀ ପାଖକୁ ଲୋକ ପଠାଅ, ଏ ଲୋକଟାର ଘର ସଂସାର ଅଛି ନା କିଛି ନାହିଁ ।

ଚାକରଟା ଏତେବେଳକୁ ଢ଼ିଭରେ ଓଠ ଓଦା କରିବାକୁ ଆରମ୍ଭ କଲାଣି ; ଥରକୁ ଥର ଛେପ ଢୋକୁଛି, ଯେପରି ତା'ର ତାଳୁଟା ଶୁଖିଯାଉଚି । ସେ ମୂକଙ୍କ ଭଳି ବସି ରହିଲା, କିନ୍ତୁ ଆଉ କିଛି କହିଲାନି । ସେ ବସିଥାଏ, ମାଉସୀକୁ ଡାକରା ପଡ଼ିଲା ।

ମନ - ହଇ ହେ, ଏ ଲୋକଟା ଅଣ୍ଡାଳିଆରେ ଥିଲା ବୋଲି କହୁଚି । ତୁମେ ତ ସେଠି ଥିଲ ? ନିଶ୍ଚୟ ଯାକୁ ଦେଖିଥିବ ?

ମାଉସୀ - ଏଁ ଗୋସେଇଁଖିଆ କହିଦେଲା ? ହଇରେ ନରସିଂଆ, ମୁଁ ପରା ତୋତେ ଏତେ ବୁଝେଇ କହିଲି !

ମନ - ହୁଁ, କଣ କହିଇ ମାଉସୀ ? ସେଇଟା ତ ଖାଲି ବୋକାଟା, ସେ କ'ଣ ଏତେ ସେତେ ବୁଝେ । ତୁମ ଭଳି ଚାଲାକ ତ ନୁହେଁ ସେ ।

ମାଉସୀ - ମୁଁ କିଛି ଆଉ କହି ପାରିବି ନି । ମୋ ମୁଣ୍ଡ ଘୁରୋଉଚି । ଆହେ ମୋର ଖାମିଦ, ଆହେ ମୋ ସାଆନ୍ତାଣି, ତୁମର ଏ ଛେଉଣ୍ଡ ପିଲାଙ୍କୁ କିଏ ଦେଖିବ ହେ ସାଆନ୍ତାଣି ? କହି ସେ ବାହୁନେଇ କାନ୍ଦି ଉଠିଲା । କାନ୍ଦୁ କାନ୍ଦୁ ମୁଣ୍ଡ ପିଟି ଦେଲା ତଳେ । ବେହୋସ୍ ହୋଇଗଲା । ମୁଣ୍ଡଟା ବି ଫାଟିଗଲା ତା'ର । ଇନିସ୍‌ପେକ୍ଟର ଡାକ୍ତର ମାଇନା କରି ଥାନାରେ ଚାକରଟା ସହିତ ରଖିବାକୁ ପଠାଇଦେଲେ । ତା'ପରେ ଆରମ୍ଭ ହେଲା ହିଙ୍ଗୁଳୁ ଗୋପାଳଙ୍କର ଇଜାହାର ।

ମନ - ଏମାନେ ତୁମ ଘରକୁ କାହିଁକି ଯାଇଥିଲେ ?

ଗୋପାଳ - ଏମିତି ବୁଲି ଆଜ୍ଞା । ତାଙ୍କର ଆମର ସଙ୍ଗାତ କିନା ।

ମନ - ହୁଁ, ସଙ୍ଗାତ ସଙ୍ଗାତୁଣୀ ଯେତେବେଳେ ତୁମ ଘରକୁ ଯାଇଥିଲେ, କିଛି ନିଶ୍ଚୟ ଖା'ପିଅ ହୋଇଥିବ ତ ? ଆଉ କ'ଣ ନ ଖୁଆଇ ଛାଡ଼ିଥିବ ତୁମେ ?

ଗୋପାଳ - ନାହିଁ ଆଜ୍ଞା, ସେମାନେ ତ ଖାଇକରି ଯାଇଥିଲେ । ଆମର ବି ଖା'ପିଅ ସରିଥିଲା । ଖାଲି ବସିଲେ, ଗପସପ ହେଲା, ପାନବିଡ଼ି ଖାଇଲେ, ଆସିଲେ ।

ମନ - ଆଛା, ଗୋପାଳ ବାବୁ, ଦି' ଘଣ୍ଟା କାଳ ତ ବସି କଥାବାର୍ତ୍ତା ହେଲେ ଯେ ଆପଣଙ୍କ ସାଙ୍ଗରେ । କ'ଣ ବୁଝିଲେ ଆପଣ ? ଏମାନଙ୍କ ମନରେ କିଛି ଦୁଃଖ କି କଷ୍ଟ ଥିବାର ଜାଣିଲେ ଆପଣ ?

ଗୋପାଳ - ନା, ଦୁଃଖ କଷ୍ଟ ତ କିଛି ନାହିଁ ବା ନ ଥିଲା। ସେ ମୋ ସଙ୍ଗାତ ତାଙ୍କ ଭାର୍ଯ୍ୟା ବି ମୋ ଭାରିଯାର ସଙ୍ଗାତୁଣୀ, ତାଙ୍କ ଆମ ଭିତରେ କିଛି ହେଲେ ଲୁଚାଚୋରା ନ ଥିଲା। ତେବେ -

ମନ - କଅଣ ତେବେ ?

ଗୋପାଳ -ଆଜ୍ଞା ନା, ସେ କିଛି ନୁହେଁ। ସେ ଗୋଟିଏ ବାଜେ କଥା।

ମନ - ଶୁଣନ୍ତୁ ଗୋପାଳ ବାବୁ, ଇଏ ଆପଣଙ୍କ ସଙ୍ଗାତ। ସେ କିପରି ମଲେ ତା'ର ତଦାରଖ ଆମେ କରୁଛୁ। ଏଥିବରେ ଆପଣଙ୍କର ପୂରା ସାହାଯ୍ୟ କରିବା ଉଚିତ। ଯେତେ ଛୋଟ କଥା ହେଲେ ବି ସେଥିରୁ ହୁଏତ ସତ ବାହାରି ପଡ଼େ। ଆପଣ କହନ୍ତୁ, ଦରକାରୀ କି ଅଦରକାରୀ ମୁଁ ବାଛି ନେବି।

ଗୋପାଳ - ଆଜ୍ଞା, ସିମିତି କିଛି ନୁହେଁ। ଏଇ ତାଙ୍କର ମାଉସୀ, ସେଇ ଚାକରଟା ବିଷୟରେ -

ମନ - ହଁ, ହଁ କିସ ହେଲା ଯେ ?

ଗୋପାଳ - କିଛି ନୁହେଁ ଆଜ୍ଞା, ସେ କହୁଥିଲେ କୁଆଡ଼େ ଏ ଦିହିଙ୍କ ଭିତରେ କିସ କିସ ହୋଇ ଏ ମାଉସୀଟା ପେଟ ହେଇଚି ନା କ'ଣ ?

ମନ - ତା'ପରେ ?

ଗୋପାଳ - ତାଙ୍କର ଦୁଃଖ ଯେ, ତାଙ୍କେ କ'ଣ କରିବେ ? ଏ ଦିହେଁ ଯାକ ତାଙ୍କର ବଡ଼ ବିଶ୍ୱାସୀ ଚାକର ଥିଲେ। ସତରେ ଆଜ୍ଞା, ସେ ମାଉସୀଟା ତାଙ୍କ ଲାଗି ଆଉ ତାଙ୍କ ପିଲା ଲାଗି ଯାହା ଖଟୁଥିଲା, ତାହା ନିଜର ମାଆ ମାଇପ ବି କରିବେନି। ଗାଁ' ଗତି କଥା। ଜାଣିଶୁଣି ଗାଁ' ଭିତରେ ବିପଟୀଟାକୁ ରଖିବେ କିମିତି ? ଜଣାପଡ଼ିଲେ ତ ଜାତିଭାଇ ଅଟକିବେ। ଆଉ ଛାଡ଼ି ଦେବାକୁ ବି ମନ ବଳୁ ନ ଥିଲା। କହୁଥିଲେ ଆମକୁ ଆଶ୍ରା କରି ଅଛି। ଗୋଟାଏ ଭୁଲ୍ କରି ପକାଇଲା ବୋଲି ତାକୁ ତଡ଼ି ଦେଲେ କାହିଁ ଯିବ ସେ ?

ମନ - ଜାଣିଲେ ଯେତେବେଳେ ନିଶ୍ଚେ ତାକୁ ଖୁବ୍ ଗାଳି ଦେଇଥିବେ, ମାରିଥିବେ ?

ଗୋପାଳ - ତା ତ କରିଛନ୍ତି। ସଙ୍ଗାତେ ଆମର ଟିକିଏ ବଦ୍‌ରାଗୀ ଥିଲେ। ରାଗ ମୋହରେ ଇନ୍ଦ୍ରଚନ୍ଦ୍ର ମାନିବେନି।

ସେ ବିଦାୟ ହେଲେ। ମନମୋହନ ବାବୁ ବସି ବସି କିଛି ସମୟ ଭାବିଲେ। ତାପରେ ପାଖ ପଡ଼ିଶା ହେରିକା କେତେ ଲୋକଙ୍କୁ ଏହି ବିଷୟରେ ଗୁଡ଼େଇ ତୁଡ଼େଇ ପଚାରିଲେ। ତାଙ୍କ ଭିତରେ ଜଣେ ବୁଢ଼ା ଥାନ୍ତି। ସେ କହୁ କହୁ କହିଲେ, "ଆଜ୍ଞା, ଏ କଳିକାଳ, ଘୋର କଳିକାଳ।

ଦେଖୁ ନାହାନ୍ତି ନା ଏ ଗାଁ'ଟାରେ ତିନିମାସ ଭିତରେ କିମିତି ହଳକୁ ହଳ ଅଚାନକ ମରି ଶୋଇ ଯାଉଚନ୍ତି ?'

ମନ – ହଁ, ହଁ, ସେ ସତ କଥା, ଯେ ମୁଁ ପଚାରୁଥିଲି କିସ ବି –

ଗଦା – ଟିକିଏ ରହ ମନୁ । ମୁଁ ଯାଙ୍କୁ ଦି' ଚାରି କଥା ପଚାରିବି । କ'ଣ ହେଲା ଘଡ଼େଇ ବାବୁ । ଆଉ କିଏ ଇମିତି ମରିଥିଲା କି ?

ବୁଢ଼ା – ଏଁ, ତୁମେ ଜାଣିନ ? ଦାରୋଗା ବାବୁ ତ ନିଜେ ତନଖି କରିବାକୁ ଆସିଥିଲେ ।

ଗଦା – କାହା କଥା କହୁଚନ୍ତି ? ସେଇ ଯେ –

ବୁଢ଼ା – ହଁ ହଁ ବାବୁ ସେଇ, ସେଇମ, ସେଇ । କଣମ, ସେଇ । କଣକି, ଜଗନ୍ନାଥ ଆଉ ତା' ଭାରିଯା ଦିହେଁ ଯାକ ଇମିଟି ମରି ଶୋଇଗଲେ, କ'ଣ ବିଷ ଖାଇକରି, ନା କ'ଣ କହିଲେ ତ ।

ଗଦା – କେବେଟି ? ଏଇ ପାଞ୍ଚ ମାସ ହବ ନାହିଁ କି ହେ ?

ବୁଢ଼ା – ପାଞ୍ଚ ମାସ କୁଠୁ ହବ । ହଁ, ଏଇଟା ହେଲା ଅଶିଣ, ହଇହେ, ସେ ଦିହେଁ ଯାକ କେବେ ମଲେଟି ? ହଁ, ହଁ, ଶ୍ରାବଣ ମାସରେ ତ ।

ଗଦା – ଠିକ୍ କହିଛନ୍ତି, ଶ୍ରାବଣ ମାସରେ । ବୁଢ଼ାବୁଢ଼ୀ ହୋଇ ଯାଇଥିଲେ –

ବୁଢ଼ା – ନା, ନା, ବୁଢ଼ାବୁଢ଼ୀ କିଆଁ ସେ ହେବେ ? ତୁମେ ତ ଆଚ୍ଛା ଲୋକ, ତୁମେ ବୋଧହୁଏ କହୁଚ ସଦେଇ ଆଉ ତା' ଭାରିଯା କଥା । ଆଶ୍ଚର୍ଯ୍ୟ କଥା ହେ, ବୁଢ଼ାଟା ବିଷ ଖାଇ ମଲା । ବୁଢ଼ୀଟା ତା'ଦେଖି କୂଅକୁ ଡେଇଁପଡ଼ି ମରିଗଲା । ପିଲା ଛୁଆ ତ ନ ଥିଲେ । ବୁଢ଼ା ବୁଢ଼ୀ ଯୋଡ଼ିକ ଚକୁଆ ଚକୋଇ ଭଳି ଚଳୁଥିଲେ । ବୁଢ଼ୀ ସହନ୍ତା କେତେକେ ?

ଗଦା – ଓ, ହଁ, ସେଇଟା ତ ଜଗନ୍ନାଥ ଆଗରୁ ନା ?

ବୁଢ଼ା – ଜଗନ୍ନାଥ ଆଗରୁ ? ନା, ନା, ତାପରେ କି ? ଟୋକା ତୁମେ, ତୁମର ଏଡିକି ମନେ ନାହିଁ ? ଦେଖିଲ ମୋର ବଅସ ଆସି ହେଲାଣି ପଞ୍ଚସ୍ତରୀ । ସବୁ କଥା ମୋର ଖିନିଭିନି କରି ମନେ ଅଛି । ଶ୍ରାବଣ ମାସରେ ଜଗା ଓ ତା ଭାରିଯା, ଭୋଦୁଅ ମାସରେ ସଦେଇ ଆଉ ତା ଭାରିଯା, ଆଉ ଅଶିଣ ମାସରେ ଏ ଦୁହେଁ । ମାସକୁ ହଳେ; ମାସକୁ ହଳେ; ମୁଁ କହିଲି ଆରେ ପିଲେ, ମା ମଙ୍ଗଳାଙ୍କ ପାଖରେ ଯୋଡ଼ି ବୋଦା ଦିଅ । ମାଜଣା କର । ଏ ଗାଁ'କୁ କାଳ ଘୋଟିଛି । ନ ହେଲେ ଏମିତି କେତେ ଯିବେ । ମୋ କଥାଟା ହସରେ ଉଡ଼େଇ ଦେଲେ । ଏବେ ଦେଖ ।

ଗଦା – ସତ କଥା । ଆଚ୍ଛା ଘଡ଼େଇ ବାବୁ, କୃଷ୍ଣମୂର୍ତ୍ତିଙ୍କର ଜଗନ୍ନାଥ ସାଙ୍ଗରେ କ'ଣ ସଙ୍ଗାତ ନା ମଇତ୍ର ଥିଲେ ନା !

ବୁଢ଼ା – ସଙ୍ଗାତ ମଇତ୍ର ତ କିଛି ନୁହେଁ । ତେବେ ଲୋକେ କହନ୍ତି ଜଗା କ'ଣ ଟଙ୍କା ଋଣ ନେଇଥିଲା କୃଷ୍ଣଠୁଁ । କିନ୍ତୁ ହେଇଟି ବାବୁ । ଜଗାର ସେ ଯେଉଁ ଭାରିଯାଟା, ସାକ୍ଷାତ ଗୋଟିଏ ସରଗର ପରି । ଭୁଆଶୁଣୀଟା । ଜଗାକୁ ଚାହିଁ ହେଲାନି, ଜଗା ଯେମିତି ତ୍ରିପଣ୍ଡ କଳା, ତା ଭାରିଯା ଥିଲା ସେମିତି ଆଉଟା ସୁନା ଭଳି ଦାଉ ଦାଉ । ମଲାବେଳେ ବି ଦେଖିଛି, ସତେ ଯେମିତି ସୁନାର ପ୍ରତିମାଟିଏ ଶୋଇଛି । ଗୋଟିଏ ରନ୍ଧ୍ରେ ଗଢ଼ା । ମରି ଶୋଇଥାଏ, ଟିକିଏ ତା'ର କିଛି ବେଢ଼ଙ୍ଗ ନ ଥାଏ । ଜଗା ବି ତାକୁ ଭାରି ଭଲ ପାଉଥିଲା ନିଜେ ତ ସୁନାରୀ ବଣିଆ । କେତେ ରଙ୍ଗଢଙ୍ଗର ଅଳଙ୍କାର ନିଜ ହାତରେ ଗଢ଼ି ତାକୁ ସଜେଇ ଥିଲା । ଆଉ ଜଗାର ସେ ସାନଭାଇଟା, ସୁରିଆ । ସେ ତ ଥିଲା ଭାଉଜର ଗୋଲାମ । ସତେ ଯେପରି ରାମ ସୀତାଙ୍କ ପାଖରେ ଲକ୍ଷ୍ମଣ । ସେଇଟା ସେଇଦିନୁ ନ ଖାଇ ନ ପିଇ କଣ୍ଢାକାଠ ପଡ଼ି ଗଲାଣି । ଏକାବେଳେକେ ବାୟା ।

ଗଦା – ହଁ ତା ତ ହେବ । ଏତେ ଭଲ ପାଉଥିଲା ଯେତେବେଳେ । ତାହେଲେ ଜଗା କୃଷ୍ଣମୂର୍ତ୍ତୀଙ୍କଠାରୁ ଟଙ୍କା ଧାର କରିଥିଲା ? ତା ଘର ଆଡ଼େ ଯା' ଆସ ନିଶ୍ଚେ କରୁଥିବ ।

ବୁଢ଼ା – ତା ବାପ, ମହାଜନ ଖାତକ ଯେତେବେଳେ, ଟଙ୍କା ତାକିଦି କରିବାକୁ ଯାଏନି ଆଉ କ'ଣ ? ସେ ବି ଯାଏ, ବେଳେ ବେଳେ ସନେଇକି ବି ପଠାଏ ।

ଗଦା – ଓ, ସଦେଇ କି ନା ? ସଦେଇ କି କିଆଁ ?

ବୁଢ଼ା – ତୁମେ ଜାଣନି ପରା ! କୁଆଡ୍ତୁ ଜାଣିବ । ଆମ ଗାଁ'ର ତ ନୁହଁ ତୁମେ । ସଦେଇ ପରା କୃଷ୍ଣର ବୋଲହାକ କରୁଥିଲା । ତାଙ୍କର ବହୁ ଦିନର ପୁରୁଣା ଚାକରଟା । ବୁଢ଼ା ହୋଇଗଲା ; କାମଦାମକୁ ପାରିଲା ନାହିଁ । ବେଳେବେଳେ ଏ ଟଙ୍କା ପଇସା ତାଗଦା କରି କିଛି କିଛି କୃଷ୍ଣଠାରୁ ପାଉଥିଲା । ଚଳୁଥିଲେ ଦି ପ୍ରାଣୀ । ମୋ ଠୁ ଛୋଟ ହେ । ୬-୭ ବର୍ଷର ସାନ । ସେ ତ ଚାଲିଗଲା ମୁଁ ବସିଚି । କେତେ କ'ଣ ଦେଖିବି ; କେତେ କ'ଣ ଅଙ୍ଗେ ନିଭେଇବି ବୋଲି ବସି ରହିଛି ।

ଗଦା – ଆଚ୍ଛା ମନୁ, ତୁମେ କହିପାରିବ, ଜଗନ୍ନାଥ ଓ ତା'ର ସ୍ତ୍ରୀ ଯେ ମରିଥିଲେ, କିପରି ?

ମନ – ଆତ୍ମହତ୍ୟା । ଜଗନ୍ନାଥ ଗୋଟାଏ ଚିଠି ଲେଖି ଛାଡ଼ି ଦେଇ ଯାଇଥିଲା ଯେ, ସେ ଦୁହେଁଯାକ ଏ ସଂସାରର କଷ୍ଟ ସମ୍ଭାଳି ନ ପାରି ଆତ୍ମହତ୍ୟା କଲେ ।

ଗଦା – କୁଥେରେ ?

ମନ – ପ୍ରୁଷିକ୍ ଏସିଡ୍ । ସେମାନେ ବଣିଆ କି ନା । ସୁନା ସଫେଇ କରିବାକୁ ପ୍ରୁଷିକ୍ ଏସିଡ୍ ରଖିଥାନ୍ତି ? ତାକୁ ଖାଇ –

ଗଦା – ଆଉ ସଦେଇ ଯେ ମଲା ସେ କୁଥେରେ ?

ମନ - ସେ ବି ପୃଷିକ୍ ଏସିଡ୍। ଏଁ, ମାନେ; ତୁମର ମତଲବ ?

ଗଦା - ପୃଷିକ୍ ଏସିଡ୍‌ର ଏ ଯେ ବିଷସୂଅ ଚାଲିଛି, ଏଥିରୁ ତୁମେ କିଛି ବୁଝି ପାରୁନ ?

ମନ - ବୁଝିବି ଆଉ କ'ଣ ? ଜଗା ଓ ସ୍ତ୍ରୀ ଋଣରେ ବୁଡ଼ି ରହିଥିଲା ଉପାୟ ନ ଦେଖି ଆତ୍ମହତ୍ୟା କଲା, ପୃଷିକ୍ ଏସିଡ୍ ଖାଇ। ତାପରେ ସମସ୍ତେ ଜାଣିଲେ ଯେ, ପୃଷିକ୍ ଏସିଡ୍ ଖାଇଲେ ସହଜରେ ମନୁଷ୍ୟ ମରିଯାଏ। ବଣିଆ ଘରେ ପୃଷିକ୍ ଏସିଡ୍ ଅପୂର୍ବ ନାହିଁ, ଯେ ମରିବାକୁ ଚାହିଁଲା ସେ ନେଲା। ଆଉ ବୁଝିବାର କ'ଣ ଅଛି ? ଯାଅ। ଗୁଡ଼ାଏ ବାଜେ କଥାରେ ବହୁତ ସମୟ ନଷ୍ଟ ହେଲାଣି। ଟିକିଏ ଶୋଇବା କି କ'ଣ କରିବା କାମଦାମ ସାରିଲେ, ନା ଖାଲି ଏଇ ବକ୍‌ବକ୍ ?

ରାଧିକା - ଆଜ୍ଞା, ଜଳଖିଆ କିଛି କରି ନିଅନ୍ତୁ। ଏ ସିମେଇ ଜଳଖିଆଟା -

ମନ - ତୁମର ଖାଲି ପେଟ ଚିନ୍ତା। ଏମିତି ପେଟ ପୋଡ଼ି ଯାଉଛି ତ ଯାଅ ଖାଅ, ମର। ମୋର ବେଳ ନାହିଁ। ଏଇ କେତେଟା ସାକ୍ଷୀ ନେଲେ, ମୁଁ ଯାଇ ଟିକିଏ ଗଡ଼ପଡ଼ ହେବି। ରାତି କେତେଟା ହେ ?

ଗଦା - ମାତ୍ରକ ଗୋଟାଏ -

ମନ - ଏଁ, ଗୋଟାଏ ? ଥା ଥାଉ, ଆଉ ସବୁ କାଲି ହେବ। ଚାଲିଲି ସେ ସ୍କୁଲ ଘରକୁ। ଟିକିଏ ଶୋଇଯିବା।



## ଚାରି

ପୁଲିସ୍ ଅନୁସନ୍ଧାନ ଶେଷ ହୋଇଚି। ପୁଲିସ ସାହେବ ଖୋଦ୍ ଆସି ଅନୁସନ୍ଧାନରେ ଯୋଗ ଦେଇଛନ୍ତି। ଅନୁସନ୍ଧାନରୁ ଓ ମାଉସୀର ଡାକ୍ତର ମାଇନାରୁ ଜଣାପଡ଼ିଛି, ମାଉସୀ ଚାରିମାସ ପ୍ରାୟ ଗର୍ଭବତୀ। ପୁଲିସ୍‌ର ଜେରାରେ ସେମାନେ ମାନିଚନ୍ତି ଯେ ମାଉସୀର ଓ ଚାକରର ବହୁ ଦିନରୁ ଭାବଥିଲା। ମାଉସୀ ଯୌବନରେ ବିଧବା ହୋଇଥିଲେ। ତା'ପରେ ଏ ଚାକରଟାର ପ୍ରେମରେ ପଡ଼ି ଗାଁ' ଓ ଘର ଛାଡ଼ି ସେମାନେ ପଳାଇ ଆସି ଏଠାରେ ଆଶ୍ରୟ ନେଇଥିଲେ। ମାଉସୀ କୃଷ୍ଣମୂର୍ତ୍ତୀଙ୍କର ବହୁ ଦୂର ସମ୍ପର୍କୀୟା; ଗରିବ ଘରର ଝିଅ। ତାଙ୍କର ନିଃସହାୟ ଅବସ୍ଥା ଦେଖି ଓ ନିଜ ଘରେ ପିଲାମାନଙ୍କୁ ସମ୍ଭାଳିବା ପାଇଁ ସ୍ତ୍ରୀଙ୍କର ଜଣେ ସାହାଯ୍ୟକାରିଣୀ ଦରକାର ଥିବାରୁ, କୃଷ୍ଣମୂର୍ତ୍ତୀ ତାଙ୍କୁ ଘରେ ରଖିଥିଲେ। ସେ ଆସିବାର କିଛି ଦିନ ପରେ ଏ ଚାକରଟା ଆସେ ଓ ମାଉସୀଙ୍କର ଫୁସୁଲା ଫୁସୁଲିରେ ଭୁଲି ଏମାନେ ସେଉଟାକୁ ମଧ୍ୟ ଘରେ ରଖିଛନ୍ତି। ବଡ଼ ପ୍ରଲୋଭନ ଥିଲା ଯେ ଦରମା ନବନି; କେବଳ ଖାଇପିଇ ରହିବ।

ତା'ପରେ ଏ ଦୁଇଜଣ ବେଶ୍ ସୁଖରେ ରହିଲେ ଏକାଠି । ଏତେ ଦିନପରେ ମାଉସୀ ଯେତେବେଳେ ଗର୍ଭବତୀ ହେଲେ ଓ ତାହା ଜଣା ପଡ଼ିଲା, କୃଷ୍ଣମୂର୍ତ୍ତୀ ଓ ତାଙ୍କର ସ୍ତ୍ରୀ ସେମାନଙ୍କୁ ବହୁତ ଧିକ୍କାର କରି କହିଲେ, ମାଡ଼ ଦେଲେ, ଓ ଘରୁ ବାହାର କରି ଦେବାର ଧମକାଇଲେ ମଧ୍ୟ । ତଥାପି ମାଉସୀଙ୍କର ସେମାନଙ୍କ ପ୍ରତି ଓ ପିଲାଙ୍କ ପ୍ରତି ଅକୃତ୍ରିମ ସ୍ନେହ ଓ ଯତ୍ନ ଲୋଭ ସେମାନେ ସମ୍ଭାଳି ପାରିଲେନି । କି ଉପାୟରେ କ'ଣ କରି ଆଉ ଲୋକେ ବେଶୀ ଜାଣିବେନି, ଅଥଚ ସେମାନଙ୍କୁ ବାହାର କରିଦବ । ପଡ଼ିବନି ତାହାରି ଚିନ୍ତାରେ ସେମାନେ ବିବ୍ରତ ଥିଲେ । ଥରେ ଚାକରଟା ପ୍ରସ୍ତାବ କଲା ଯେ, ସେମାନେ ଦି'ଜଣ ଯେତେବେଳେ ତାଙ୍କ ପରି ପାଞ୍ଚବର୍ଷ କାଳ ବିନା ପଇସାରେ ଚାକିରି କରି ଆସିଛନ୍ତି । କୃଷ୍ଣମୂର୍ତ୍ତୀଙ୍କର ସେମାନଙ୍କୁ ଅନ୍ତତଃ ଟଙ୍କା ଦି'ଶହ ଦେବା ଉଚିତ । ତାହାହେଲେ ସେମାନେ ସେଇ ଦି'ଶହ ଟଙ୍କାରେ କିଛି ଦୋକାନ ପୋକାନ ଖଣ୍ଡେ କରି ଅଲଗା ହୋଇ ରହନ୍ତେ ଓ ଚଳନ୍ତେ । ଏ ପ୍ରସ୍ତାବରେ କୃଷ୍ଣମୂର୍ତ୍ତୀ ରାଜି ହେଲେନି । ଏହି ବିଷୟ ନେଇ ମଧ୍ୟ ସେମାନଙ୍କ ମଧ୍ୟରେ କଳିଗୋଳ ଥରେ ଦି'ଥର ହୋଇଯାଇଛି । ପୁଲିସ ଏସବୁ ଖୋଳିତାଡ଼ି ବାହାର କରିଚନ୍ତି । ପୁଲିସବାଲାମାନଙ୍କର ବର୍ତ୍ତମାନ ଦୃଢ଼ ବିଶ୍ୱାସ ଯେ, ଏଇ ଦୁଇଜଣ ନିଜର କଳଙ୍କ ଘୋଡ଼ାଇବା ଓ କୃଷ୍ଣମୂର୍ତ୍ତୀ ଓ ତାଙ୍କ ସ୍ତ୍ରୀ ମରିଗଲେ ପିଲାମାନଙ୍କ ଭାର ନେଇ କିଛି ଟଙ୍କା ମାରିନେବା ଆଶାରେ ଏପରି କରିଛନ୍ତି । ତା' ଉପରେ ଯେ ସବୁ କଳିଗୋଳ ହୋଇଚି । ତା'ର ରାଗ ଓ ପ୍ରତିହିଂସା ଅଛି । ସେଇମାନେ ଦୁଧରେ ବିଷ ଦେଇଛନ୍ତି ଓ ତହିଁ ଆର ଦିନ ସକାଳେ ଯେତେବେଳେ ସେମାନଙ୍କ ମଲାଖବର ଜଣାପଡ଼ିଛି, ସେତେବେଳେ ଦୁଃଖୀ ଓ ମୁହ୍ୟମାନ ବାଳକମାନଙ୍କର ଅଗୋଚରରେ ସେ ଗିନା ଦୁଇଟା ଧୋଇ ଦେଇ ସେଥିରେ ଭଲ ଦୁଧ ପକାଇ ଦେଇଛନ୍ତି । ଗଦାଧର ଆପତ୍ତି କରି କହିଥିଲେ; କିନ୍ତୁ କିଆଁ ? ଗିନା ଦି'ଟା ଧୋଇଧାଇ ଅଲଗା କରି ରଖିଦେଲେ ଓତ ହୋଇଥାନ୍ତା । ଦୁଧ ଖାଇବା କଥା ପିଲାମାନେ ଜାଣନ୍ତିନି । ମାଉସୀ ଯେ ଦୁଧ ଆଣି ଦେଇଥିଲା, ତା'ର ଏକମାତ୍ର ସାକ୍ଷୀ ମାଉସୀ । ସେ ଦୁଧ ଦବା କଥା ନ କହିଥିଲେ ଓ ଗିନା ଦୁଇଟା ଧୋଇଧାଇ ଲୁଚାଇ ଦେଇଥିଲେ, କାହାର କି ସାଧ ଯେ ସେ କଥା ଜାଣନ୍ତା । ଏତେ ସହଜ ଉପାୟ ଥାଉଁ ଥାଉଁ ମାଉସୀ ଦୁଧ ଦବା କଥା ମାନନ୍ତା କାହିଁକି ଓ ଦୁଧ ଗିନାକୁ ଧୋଇ ପୁଣି ସେଥିରେ ଦୁଧ ରଖି ସେଠି ଥୁଅନ୍ତା କାହିଁକି ? ତା'ର ଜବାବ ମିଳିଲା ପୁଲିସ ସାହେବଙ୍କ ଆଡୁ ଯେ ମାଉସୀ ଗଦାଧର ବାବୁଙ୍କ ଭଳି ଚାଲାକ ହୋଇଥିଲେ ତା କରିଥାନ୍ତା, ସେ ବୋକା ଓ ତା' ପଥରେ ଏପରି କୁକର୍ମ ଏଇ ପ୍ରଥମ । ସୁତରାଂ ଏଇ ଭୁଲ୍ । ଗଦାଧର ମୁଣ୍ଡ ହଲେଇ ତୁନି ହେଲେ । ପୁଲିସ ସାହେବଙ୍କ ଆଦେଶ ଅନୁସାରେ ମାଉସୀ ଓ ଚାକରଙ୍କୁ କୃଷ୍ଣମୂର୍ତ୍ତି ଓ ତାଙ୍କ ସ୍ତ୍ରୀଙ୍କୁ ବିଷ ଦେଇ ହତ୍ୟା କରିବା ଅପରାଧରେ ବନ୍ଦୀ କରାଗଲା । ସମସ୍ତ ପ୍ରମାଣ ତିଆରି । କେବଳ ଗୋଟିଏ କଥାର ପ୍ରମାଣ ଏ ପର୍ଯ୍ୟନ୍ତ ପୁଲିସ ପାଇ ନାହାନ୍ତି । ସେ ହଉଚି ଯେ ଏମାନେ ପ୍ରୁଷିକ ଏସିଡ୍ ପାଇଲେ କଉଠୁ ? ଏହି ବିଷୟରେ ଅନୁସନ୍ଧାନ କରିବା ଦରକାର ବୋଲି ସାହେବଙ୍କର ହୁକୁମ ହେଲା । ପୁଲିସ ଯାଇ ଏମାନଙ୍କ ଲୁଗାପଟା, ଭଙ୍ଗା ବାକ୍ସ ଖଣ୍ଡିକ, ରହିବା ଘର ଇତ୍ୟାଦି ସବୁ ତନ୍ନତନ୍ନ କରି ଖୋଜିଲେ । କିନ୍ତୁ କୌଣସିଠାରେ ବିଷର କିଛି ଚିହ୍ନ ପାଇଲେନି ।

ଘର ଚାରି ଆଡ଼ ଖୋଜିଖୋଜି ଓ ଚାଳ ଦରାଣ୍ଡି ମଧ୍ୟ ବିଷଚିହ୍ନ ଥିବା କୌଣସି ବୋତଲ ପାଇଲେନି। ତା'ପରେ ପାଖ ଆଖ ବଣିଆମାନଙ୍କ ଘର ତଲାସ ହେଲା। କାହାରି କାହାରି ପାଖରେ ପୃଷିକ ଏସିଡ୍ ମିଳିଲା। ଢେରା ଜମାନବନ୍ଦୀ ଚାଲିଲା। ଗାଁ'ସାରା ହୁଲସ୍ଥୁଲ। ବଣିଆମାନଙ୍କ ପ୍ରାଣ ଅତିଷ୍ଠ। କିଏ ସେ ଚାକରଟାକୁ ବା ମାଉସୀକୁ ପୃଷିକ ଏସିଡ୍ ଦେଇଚି କହ। ବାରମ୍ବାର ଏଇ ପ୍ରଶ୍ନ। ଗଦାଧର ଅବଶ୍ୟ ଏଇସବୁ ଅନୁସନ୍ଧାନ ବାହାନରେ ପୁଲିସ୍ ସାଙ୍ଗରେ ଯାଆନ୍ତି, କିନ୍ତୁ ଏସବୁ ଘାଣ୍ଟ ଚକଟରେ ନ ରହି, ଗାଁ ଭିତରେ, ପୋଖରୀ କୂଳରେ, ଆମ୍ବ ତୋଟାରେ, ଗାଁ ବାଡ଼ିଆଡ଼େ ଘୂରି ଗୂରି ବୁଲନ୍ତି। ଯାହାକୁ ପାଆନ୍ତି, ତା' ସାଙ୍ଗରେ ଗୁଡ଼ାଏ ଏଣୁତେଣୁ କଥାବାର୍ତ୍ତା ହୁଅନ୍ତି। କେତେ ରାଜ୍ୟର ଗପ। ମନମୋହନ ବେଳେବେଳେ ତାକୁ ବିଦ୍ରୂପ କରି କହନ୍ତି, 'କି ହେ, ତୁମ ପାଞ୍ଚ ଫୁଟ ୪ ଇଞ୍ଚ ଲମ୍ବ ଆଉ ନଅ ଇଞ୍ଚ ଲମ୍ବ ପାଦ ଥିବା ଲୋକଟା କୁଆଡ଼େ ଗଲା ? ପାଇଲ ଠିକଣା ? ଗାଁ' ବାଲା ସମସ୍ତଙ୍କୁ ଡାକି ତାଙ୍କ ପାଦ ମାପ ନବା ନା କ'ଣ ? ଗଦାଧର କହନ୍ତି, "ମୋର ଏ ଆସାମୀ କିଏ ମୁଁ ଜାଣେ, କହିବ ତ ଏଇ ଘଣ୍ଟାକ ଭିତରେ ତାକୁ ଧରେଇ ଦେବି।"

ମନ – ସତ ? ତେବେ ଦଉନ ?

ଗଦା – ନ ଦଉଚି ତା'ର କାରଣ, ମୋର ଜାଣିବା ଓ ତୁମକୁ ବୁଝେଇବା ଭିତରେ ପ୍ରଭେଦ ଅନେକ।

ମନ – ତା' ମାନେ ତୁମେ କେବଳ ଗୋଟାଏ ଆନୁମାନିକ ଧାରଣା ଉପରେ ଚାଲିଚ। ତୁମର କିଛି ପ୍ରମାଣ ନାହିଁ।

ଗଦା – ପ୍ରମାଣ ଅଛି, ନିଶ୍ଚୟ ଅଛି। ଏଡ଼େ ବଡ଼ ଗୋଟାଏ ଅପରାଧର ପ୍ରମାଣ ନ ଥାଇ ରହି ପାରେନା।

ମନ – ହୁଁ, ପ୍ରମାଣ ଅଛି। ଆଉ ସେ ହେଉଚି ଯେ ମାଉସୀ ଓ ଚାକର ହତ୍ୟାକାରୀ। ତାର ଭୂରି ଭୂରି ପ୍ରମାଣ ମୋ ହାତରେ।

ଗଦା – ତୁମ ହାତରେ ଯେ ପ୍ରମାଣ ଅଛି, ସେ କେବଳ ଭୁଲ୍; କେବଳ ଧୂଆଁ। ତୁମେ ତୁମ ରାସ୍ତାରେ ଚାଲ, କାରଣ ତୁମେ ସିଧା ରାସ୍ତା ଜାଣନି, ଜାଣିଲେ ବି ସେଥିରେ ଚାଲିବନି।

ମନ – ଆମେ ଯେ ରାସ୍ତାରେ ଚାଲିଚୁ, ସେଇ ଠିକ୍। ସେଇ ରାସ୍ତାରେ ଚାଲି ତୁମେ ଦେଖିବ, ଆମେ ଏ ଦି'ଜଣଙ୍କୁ ଫାସି କାଠରେ ଝୁଲେଇବୁଁ।

ଗଦା – ମିଛ କଥା, ବିରାଟ ମିଛ। ତୁମେ ପାରିବନି। ତୁମର ପାରିବା ଉଚିତ ନୁହେଁ। ସେ ହେବ ଆଉ ଦୁଇଟା ନିରୀହ ଲୋକଙ୍କର ହତ୍ୟା। ଅନ୍ୟାୟ ହତ୍ୟା। ଏ ହୋଇପାରେନା। ମୁଁ ଏହା କରିବାକୁ କଦାଚ ଦେବିନି।

ମନ - ତୁମେ ଦେବନି ? ଓଁ ଭାରି ତ !

ଗଦା - ନିଶ୍ଚୟ ଭାରି । ଏତେ ଭାରି ଯେ ତାକୁ ବୋହି ପାରିବାର ଶକ୍ତି ତୁମର ନାହିଁ, କିନ୍ତୁ ଜାଣି ରଖ, ମୁଁ ମୁଁ ଗଦାଧର ମହାପାତ୍ର, ମୁଁ ଜବାବ ଦଉଚି, ମୁଁ ନିଶ୍ଚେ -

ଏତିକି ବେଳେ ଦାରୋଗା ବାବୁ ଓ ଜଣେ ସିପାହୀ ସୁରିଆ ଓରଫ ସୁରି ନାରାୟଣକୁ ଘେନି ଆସିବାର ଦେଖା ପଡ଼ିଲା । ଗଦାଧର ବ୍ୟସ୍ତ ହୋଇ କହିଲେ, "ଏଇଟା ସେଇ ଜଗନ୍ନାଥର ଭାଇ ସୁରିଆ ନା ? ହୁଁ, ମୁଁ ଜାଣେ । ମୁଁ ଗଲି ଭାଇ । ଫେରେ ଦେଖାହେବ ପରେ ।" ଏହା କହି ସେ ସେଠାରୁ ଫଡ଼ କରି ସୁରିଆ ଓ ଦାରୋଗାଙ୍କ ଆଡ଼କୁ ପଛକରି ଏକମୁହାଁ । ମନମୋହନ ବାବୁ ଆଶ୍ଚର୍ଯ୍ୟ ହୋଇ କିଛି ସମୟ ଚାହିଁଲେ ଓ ପରେ ମୁଣ୍ଡ ହଲାଇ ପାଖରେ ଥିବା ଛୋଟ ଦାରୋଗାଙ୍କ ଆଡ଼କୁ ମୁହଁ ଆଣିନେଇ ମୁଣ୍ଡରେ ଟିପ ମାରି ଜଣାଇଁ ଦେବାକୁ ଗଲେ ଯେ ଗଦାଧରଙ୍କର ମୁଣ୍ଡ ଖରାପ ।

ଦାରୋଗା ବାବୁ ସୁରିଆକୁ ଆଣି ଇନିସ୍‌ପେକ୍ଟରଙ୍କ ପାଖରେ ହାଜିର କଲେ । ମନମୋହନ ତାଙ୍କୁ ଘୁଡ଼େଇ ତୁଡ଼େଇ କେତେ କ'ଣ ପଚାରିଲେ । ଦାରୋଗା କହିଲେ ଯେ ସେ ସୁରିଆଙ୍କ ଘର ଖାନତଲାସ କରିଛନ୍ତି । ଟୋପେ ହେଲେ ପୃଷିକ ଏସିଡ଼ ବାହାରିନି । ସେ କହନ୍ତି ଯେ ତାଙ୍କ ଭାଇ ଓ ଭାଉଜଙ୍କ ମୃତ୍ୟୁ ପରେ ପୁଲିସ ଆସି ତାଙ୍କ ଘର ଖାନତଲାସ କରି ଯାହା କିଛି ପୃଷିକ୍ ଏସିଡ୍ ଥିଲା ସବୁ ନେଇ ଯାଇଚନ୍ତି । ତାପରେ ତ ସେ ଆଉ ବଣିଆ କାମ କରୁ ନାହାନ୍ତି, ଏସିଡ୍ ରଖିବେ କାହିଁକି ?

ମନ - ତୁମ ଭାଇ କୃଷ୍ଣମୂର୍ତ୍ତୀଙ୍କଠାରୁ କ'ଣ ଟଙ୍କା ଧାର କରିଥିଲେ ତୁମେ ଜାଣ ?

ସୁରି - ମୁଁ ତ ଜାଣେନି, ତେବେ ଶୁଣିଚି । ସତ କି ମିଛ ଜାଣେନି ।

ମନ - ସେ କ'ଣ ହାଣ୍ଡନୋଟ ନେଇଥିଲେ ?

ସୁରି - ମୁଁ କିମିତି ଜାଣିବି ?

ମନ - ତୁମ ଭାଇଙ୍କର କିଛି ହିସାବ ପତ୍ର ଅଛି ? ଦେଖିବ, ସେଥିରେ ତ ନିଶ୍ଚୟ ଲେଖାଥିବ ।

ସୁରି - ନା, ଆମ ବେଉସା ହିସାବପତ୍ରରେ ସେପରି କିଛି ତ ଲେଖା ନାହିଁ । ଆପଣ ଚାଲନ୍ତୁ; ମୁଁ ଦେଖାଇଦେବି ।

ମନ - ତୁମ ଘରକୁ ୟା'ଙ୍କର ଏ ଚାକର କି ମାଉସୀ, କେବେହେଲେ ଯାଇ ନାହାନ୍ତି ।

ସୁରି - ମୋ ଜାଣତରେ ତ ନୁହେଁ ।

ମନ - ତୁମେ ଜାଣ ଯେକୁ ବଣିଆ ଘରକୁ ଯା ଆସ କରନ୍ତି କି ନାହିଁ ?

ସୁରି - ଯାଉଥିବେ, ମୁଁ ଜାଣିନି ।

ମନ - ମୁଁ କହୁଛି, ତୁମେ ତାଙ୍କ ସାହାଯ୍ୟରେ ତୁମ ଭାଇଙ୍କ ଦିଆ ହାଣ୍ଡନୋଟାଟା ଚୋରାଇ ନେଇ ତାଙ୍କୁ ବିଷ ଯୋଗାଇଚ ?

ସୁରି - ସତେ ? ଭାରି ଚାଲାକ ତ ଆପଣ । ମୁଁ କହୁଚି ମୁଁ ଜାଣେନି, ମୋ ଭାଇ ତାଙ୍କଠୁ ଟଙ୍କା ଧାର କରିଥିଲା କି ନା, ମୁଁ ଜାଣେନି ସେ ହାଣ୍ଡନୋଟଟା ନେଇଥିଲା କି ନା, ମୁଁ ଏ ଚାକର ଚାକରାଣୀଙ୍କ ସହିତ କେବେହେଲେ କଥା ବି ହୋଇନି । ତୁମେ ପ୍ରମାଣ କର, ଯାହା କହୁଚ ।

ମନ - ଚୁପ୍ ବେ ! ଶଳା ଏକାବେଳକେ ଜଜ୍, ମେଜେଷ୍ଟର ବନିଗଲା ।

ସୁରି - ଆପଣ ମତେ ଶଳା ବୋଲି ଗାଳି ଦେଲେ କାହିଁକି ? ଏତେ ଲୋକଙ୍କ ଆଗରେ ମୋର ଇଜ୍ଜତ ନେଲେ ଆପଣ । ମୋର ଅପମାନ କଲେ । ଭାଇମାନେ, ତୁମେ ସବୁ ସାକ୍ଷୀ । ମୁଁ ଆଜି ଯାଇ ମକଦ୍ଦମା କରିବି ।

ରାଧିକା - ଏ, ହୋସ୍‌ରେ ଆ । ଏମିତି ଗୁଡ଼ାଏ କ'ଣ କହୁଚୁ ?

ସୁରିଆ - ଯାହା କହୁଛି ଠିକ୍ କହୁଚି, ଆମେ ତୁମର ଚାକର ନା ଗୋଲାମ କିଏ ? ତୁମେ ଆମକୁ ଯା' ଇଚ୍ଛା ତା କହିବ ? ଏ ସ୍ୱରାଜ ଯୁଗରେ ପୁଲିସବାଲାମାନେ ନିର୍ଦ୍ଦୋଷକୁ ଏହିପରି ବ୍ୟବହାର କରିବେ ବୋଲି କ'ଣ କଂଗ୍ରେସୀ ସରକାର ହୁକୁମ ଦେଇଛନ୍ତି ?

ମନ - ଏଇଟା ପାଗଲାଟା ହେ; ଦିଅ, ତାକୁ ଛାଡ଼ିଦିଅ ।

ରାଧିକା ଓ ସିପାହି ଛାଡ଼ିଦେଲେ । ସୁରିଆ ଭଡ଼ର ଭଡ଼ର ହୋଇ ଗଲା ଚାଲି । ଯୁମାନେ ଥିଲେ ସେଠି, ସେମାନେ କହିଲେ, "ହଁ ଆଜ୍ଞା, ଭାଇ ଭାଉଜ ମଲାଦିନୁଁ ପିଲାଟା ପାଗଳା ହୋଇଗଲାଣି ; ତା ମନ କୁଆଡ଼େ ଉଡୁଚି ।"

ଅନୁସନ୍ଧାନ ଶେଷ ହେଲା ଏ ଦିନକ ପାଇଁ । ଫଳ ଶୂନ, ଏମାନେ କିଛି ମାତ୍ର ପ୍ରମାଣ ପାଇ ପାରିଲେନି ଯେ ସେ ବିଷ କୁଠୁ ଏ ଚାକର ଚାକରାଣୀ ଦି'ଟା ପାଇଲେ ; ଆଉ ତାକୁ କୁଠି ରଖିଥିଲେ ; ଆଉ କୁଆଡ଼େ ପୁଣି ଗାଏବ୍ କରିଦେଲେ । ଏତକ ପ୍ରମାଣ ନ ନେଲେ ଯେ ମକଦ୍ଦମା ଜଜ୍‌କୋର୍ଟରେ ଚଳିବ ନାହିଁ, ବିଷଦିଆ ମକଦ୍ଦମା ସାଧାରଣତଃ ଟେକେନି, ଆଉ ଏଥିରେ କେବଳ ମୁଦାଲାର ସ୍ୱୀକୃତି ଓ କେତେଗୁଡ଼ାଏ ଆନୁଷଙ୍ଗିକ ପ୍ରମାଣ ଛଡ଼ା ସିଧା ଅନ୍ୟ ସାକ୍ଷ୍ୟ କିଛି ନାହିଁ । ତା' ଉପରେ ଏ ବିଷୟରେ ପ୍ରମାଣ ନ ମିଳିଲେ ସବୁ ଭଣ୍ଡୁର ହେବ । ଇନିସ୍‌ପେକ୍ଟର ବାବୁ ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ ଉଠିଲେ ସେଠାରୁ ।



# ପାଞ୍ଚ

ଗଦାଧର ମନମୋହନଙ୍କ ପାଖରୁ ଚାଲିଗଲେ ତ ଏକାବେଳେକେ ସ୍କୁଲ ଘରକୁ । ସେଠି ତାଙ୍କର ଖଣ୍ଡିଏ କନା ବ୍ୟାଗ୍ ଥିଲା । ସେଇଟିକୁ ଉଠାଇ ନେଇଗଲେ, ଗାଁ' ପାଖର ଗୋଟିଏ ବୁଦୁବୁଦୁକିଆ ଜଙ୍ଗଲ ଆମ୍ବ ତୋଟାକୁ । କିଛି ସମୟ ପରେ ସେଇ ଜଙ୍ଗଲ ଭିତରୁ ବାହାରି ଆସିଲେ ଦାଢ଼ୀବାଲା ମୁସଲମାନ । ପିନ୍ଧିଛନ୍ତି ଲୁଙ୍ଗି, ମୁଣ୍ଡରେ ଫେଜ୍ ଟୋପି । ଟୋପି ଭିତରୁ ମୁଣ୍ଡ କଡ଼ର କେତେଗୁଡ଼ାଏ ଦରପାଚିଲା ବାଳ ଦେଖା ପଡୁଛି । ଦାଢ଼ି ଓ ନିଶ ମଧ ଦରପାଚିଲା । ଦିହରେ ସିପାହୀମାନଙ୍କ ପରି ଖଣ୍ଡିଏ ଖାକି ଅଧାହାତ କାମିଜ । ଗୋଡ଼ରେହଳିଏ ପୁରୁଣା ଦରଛିଣ୍ଡା ନାଗରା ଅଧା ଯୋତା । ଏ ମିଆଁ ପୁଅ ସେଇ ଜଙ୍ଗଲରୁ ବାହାରି ଅନ୍ୟବାଟେ ଗାଁ' ଭିତରକୁ ପଶିଲେ ଓ ସିଧା ଯାଇ ସୁରିଆର ଘର ପାଖରେ ତା' ପଡ଼ିଶା ଘର ପିଣ୍ଡାରେ ବସିଲେ – ଗୋଡ଼ ତଳକୁ ଲମ୍ବାଇ । ଘରର ଜଣେ ପିଲା ସେ ପିଣ୍ଡାରେ ବସିଥିଲା । ସେ ମିଆଁ ପୁଅକୁ ଦେଖି ସେଠାରୁ ଉଠି ଡରରେ ଘର ଭିତରକୁ ପଳେଇଲା । କିଛି ସମୟ ପରେ ସେ ଘରୁ ଜଣେ ଭେଣ୍ଡିଆ ବାହାରି ଆସି ଟିକିଏ ଥା ଥା ମା ମା ହୋଇ ପଚାରିଲେ, "ତୁମେ କିଏ ହେ ?"

ମିଆଁ – କିଏ ଆଉ ବାପ, ମଣିଷଟାଏ ତ ଦେଖୁଚ ।

ଭେଣ୍ଡିଆ – ତା ତ ଦେଖିଲି ; ତୁମ ଘର କୁଠି ?

ମିଆଁ – ତୁମେ ଜାଣି ପାରିବନି ବାପ, ସେ ବହୁତ ଦୂର ।

ଭେଣ୍ଡିଆ – ଆମ ପିଣ୍ଡାରେ କିଆଁ ଆସି ବସିଚ ?

ମିଆଁ – ବସିଗଲି, ଏମିତି । କୁଠି ତ ବସନ୍ତି, ତୁମ ପିଣ୍ଡା ବା ଆଉ କାହା ପିଣ୍ଡା, ମୋ ପିଣ୍ଡା ତ ନୁହେଁ, ବାଛ ବିଚାର ଆଉ କ'ଣ ?

ଭେଣ୍ଡିଆ – ତୁମେ ଆମ ଗାଁ'କୁ ଆସିଛ କାହିଁକି ?

ମିଆଁ – ତା ଆଉ ଆସନ୍ତି ନି ? ଏଇଟା ଯେ ତୁମ ଗାଁ ।

ଭେଣ୍ଡିଆ – ଏଁ ତୁମେ କ'ଣ ମୋତେ ଥଟା କରୁଚ କିଏ ?

ମିଆଁ – ମୁଁ ? ତୁମକୁ ? ୟା ଆଲ୍ଲା, ତା କି କରିପାରେଁ ! ବାପ, ତା କି କରିପାରେ । ଏତିକି ବେଳେ ସେ ଦେଖିଲେ ସୁରିଆ ଆସୁଚି ; କହିଲେ, "ଏ ଚୁପ୍" ।

"ଏ ଲୋକଟା କିଏ କହତ ବାପ ?" ଏହା କହି ସେ ସୁରିଆ ଆଡ଼କୁ ଆଙ୍ଗୁଠି ଦେଖାଇ ଦେଲେ । ସୁରିଆର ନଜର ତାଙ୍କ ଉପରେ ପଡ଼ିଗଲା । ସେ ସାଙ୍ଗେ ସାଙ୍ଗେ ଆଙ୍ଗୁଠି ଲୁଚେଇ ନେଲେ । ସୁରିଆ ତାଙ୍କ ଆଙ୍ଗୁଠି ଦେଖାଇବା ଦେଖିଛି । ଦେଖି ଟିକିଏ ଥମକି ଯାଇଛି । ପଛକୁ

ଫେରି ଅନେଇଛି । ତା'ପରେ ଟିକିଏ ଥା ଥା ମା ମା ହୋଇ ଶେଷରେ ତାଙ୍କ ଆଡେ ନ ଚାହିଁ କ'ଣ ଆଖି ମିଟିକାଟେ ମାରି ଦେଇ ଘର ଭିତରକୁ ପଶି ଯାଇଚି । ମିଆଁ ପୁଅ ଏସବୁ ଦେଖିଛନ୍ତି କି ନାହିଁ କେଜାଣି ; କିନ୍ତୁ ପଚାରିଲେ – "ଏଇଟା ସୁରି ନାରାୟଣ ଘର ? ଏ ଯେ ଗଲା ଏ କ'ଣ ସୂର୍ଯ୍ୟ ନାରାୟଣ ?"

ଭେଣ୍ଡିଆ – କାହିଁକି ? ତୁମର ସେଥିରେ କ'ଣ ? ସୁରି ସାଙ୍ଗରେ ତୁମର କ'ଣ କାମ ଅଛି ?

ମିଆଁ – ମୋର ନୁହେଁ, ମୋର ନୁହେଁ ।

ଭେଣ୍ଡିଆ – ତେବେ ତା କଥା କାହିଁକି ପଚାରୁଚ ? ତା' ଘର ବୋଲି ତୁମେ କିମିତି ଜାଣିଲ ?

ମିଆଁ – କିଆଁ ? ଦାରୋଗାଜୀ ନିଜେ ମୋତେ ଦେଖାଇ ଦେଇଚନ୍ତି । ମୁଁ ଜାଣିବି ନି ? ଦାରୋଗାଜୀ କ'ଣ ଭୁଲ୍ କରିବେ କେବେ ?

ଭେଣ୍ଡିଆ – ତୁମେ ତେବେ କ'ଣ ପୁଲିସ ଲୋକ ?

ମିଆଁ – ଏଁ, ମୁଁ ପୁଲିସ ହୁଏ, କି ଗୁଇନ୍ଦା ପୁଲିସ ହୁଏ, ତୁମର କ'ଣ ଅଛି ହେ ? ଯା ଯା, ଫେରେ ମୋ ସଙ୍ଗରେ ଚଲାକି ଖେଳିବ ତ ଭଲ ହେବନି କହି ଦଉଚି, ୟା ଆଲ୍ଲା ! ତୋବା, ତୋବା ।

ଭେଣ୍ଡିଆ ଶଙ୍କିକରି ସେଠାରୁ ଚାଲିଗଲେ ଘର ଭିତରକୁ । ଭିତରୁ ଦାଣ୍ଡ ଦୁଆରଟା ବି ବନ୍ଦ କରିଦେଲେ । ତା'ପରେ ସେ ବାଡ଼ିଆଡ଼ ଦେଇ ପଶିଗଲେ ସୁରିଆ ଘରକୁ । ସୁରି ଚାହିଁ ବସିଥିଲା । ସେ ତାକୁ ଦେଖି ପଚାରିଲେ । "କିରେ ଲୋକଟା କିଏ ? ମୋ ଆଡ଼କୁ ଆଙ୍ଗୁଠି ଦେଖାଇ କିସ କହୁଥିଲା ରେ ?"

ଭେଣ୍ଡିଆ ସବୁକଥା କହିଲେ । ଶେଷରେ କହିଲେ ଯେ ସେ ଗୁଇନ୍ଦା ପୁଲିସ୍ । ଦାରୋଗା ତାକୁ ସୁରିଆ ଘର ଦେଖାଇ ଦେଇ ସେଠାରେ ବସାଇ ଯାଇଛନ୍ତି । ସୁରିଆ ବଡ଼ ଭାବନାରେ ପଡ଼ିଲା । କିଛି ସମୟ ଭାବି କହିଲା, "ଭାଇ ଗୋପାଳ, ମୋର ଗୋଟାଏ କାମ କରିବୁ ? ତୁ ଯା ସେଇଟାକୁ ପାନ, କଫି, ସିଗାରେଟ୍ ହେରିକା ଦେଇ ହାତକରି କଥା ନେ ତ, ସେ କାହିଁକି ମୋ ଘର ଉପରେ ନଜର ଦେଇଛି । ନେ, ଏ ଦି' ଟଙ୍କା । ଯାହା ଖର୍ଚ୍ଚ ହେବ କରିବୁ ।" ଗୋପାଳ ଟଙ୍କା ଦୁଇଟି ଧରି ଖୁସିରେ ଘରକୁ ଫେରିଲେ । ପାନ ଭାଙ୍ଗିଲେ । ବିଡ଼ି କାଢ଼ିଲେ । ସେସବୁ ଓ ଗୋଟାଏ ମସିଣା ଘିନି ପୁଣି ଦୁଆର ଫିଟାଇ ଦାଣ୍ଡକୁ ଗଲେ । ସେତେବେଳକୁ ମିଆଁ ପୁଅ ବାରଣ୍ଡା କାନ୍ଥକୁ ଆଉଜି ଢୁଳଉଚନ୍ତି ।

ଗୋପାଳ - ଏ ମିଆଁ ସାହେବ, ଶୋଇଗଲେ କି ?

ମିଆଁ ଚମକି ଉଠି ପଡ଼ିଲେ । କହିଲେ, "ନାଇଁ ନାଇଁ, ଶୋଇନି, ଶୋଇନି, ଏଇ ଆଖି ବୁଜି ଆଲ୍ଲାଙ୍କ ନା ନଉଥିଲି ନା ?"

ଗୋପାଳ - ଖାଲି ତଳଟାରେ ବସିଚନ୍ତି, ମସିଣାଟା ପକାଇ ଦିଏଁ ।

ମସିଣା ପକେଇ ଦେଲେ । ମିଆଁ ଆସି ଚକାମାଳି ପକାଇ ବସିଲେ । ଗୋପାଳ ପାନ, ସିଗାରେଟ୍ ଓ ଦିଆସିଲି ତାଙ୍କ ପାଖରେ ରଖିଲେ । ପଚାରିଲେ, "କାଫି ଆଣିବି ?" ମିଆଁ ପାନ ଚୋବାଉ ଚୋବାଉ କହିଲେ, "ବାଃ ବେଶ୍ ମିଠା ପାନତ ? କାଫି ? ହଁ, ଆଣ, ବସି ବସି ଆଉ କ'ଣ କରିବା ?" କଫି ଆଣିବାକୁ ବରାଦ ହେଲା । ଗୋପାଳ ଆସି ମିଆଁଙ୍କ ପାଖେ ବସିଲା । ଗପ ଚାଲିଲା । ମିଆଁ ଏ ସତ୍କାର ପାଇ ଜଣାପଡ଼ିଲା ଯେ, ଏକାବେଳେକେ ତରଳି ପାଣି ହୋଇଗଲେଣି । ଖୁବ୍ ମନଖୋଲି କଥାବାର୍ତ୍ତା ଆରମ୍ଭ କଲେ । ଗାଁ' କଥା, ବିଲବାଡ଼ି କଥା, ଛୁଆପିଲାଙ୍କ କଥା ଏମିତି କେତେ କଥାରେ କଥାରେ ମିଆଁ ସୁରିଆ କଥା ପଚାରି ବୁଝିଲେ ଯେ ସୁରିଆ ଗାଁ କାର୍ଯୀଙ୍କ ସାନ ଝିଅକୁ ବାହା ହୋଇଚି । ଗୋପାଳର ପ୍ରଶ୍ନରେ ମିଆଁ କହିଲେ, "ଆରେ ବାପ, ଯାହା ପଚାରିଲ ଭାରି ଗୁପ୍ତ କଥା ସେ । ଦେଖୁଚି, ତୁମେ ଭାରି ଭଲ ମଣିଷ । ସେହିହେତୁରୁ କହୁଚି, କଥାଟା ଯେମିତି କାନକୁ ଦିକାନ ନ ହୁଏ, ବୁଝିଲ ? କଥା କ'ଣ କି, ଦାରୋଗା ବାବୁଙ୍କର ସନ୍ଦେହ ଯେ ଏଇ ସୁରିଆଟା କୃଷ୍ଣମୂର୍ତ୍ତି ଓ ତା'ର ସ୍ତ୍ରୀକୁ ବିଷ ଦେଇ ମାରିଚି, ତାଙ୍କ ପାଖରୁ ତା ଭାଇ ଯେ ଟଙ୍କା କରଜ ନେଇଥିଲା, ସେଇଥିରୁ ମୁକୁଳିବା ପାଇଁ ।"

ଗୋପାଳ - କିନ୍ତୁ ସେ ତ ଚାକର ଚାକରାଣୀ ଦିଟାଙ୍କୁ ଧରି ନେଇଚନ୍ତି ।

ମିଆଁ - ଧରି ନେଇଚନ୍ତି ସିନା; କିନ୍ତୁ ପ୍ରମାଣ କାଇଁ ? ତାଙ୍କ ପାଖରୁ ଯେବେ ବିଷ ବାହରା, ତେବେ ଅବା କିଛି ହୋଇଥାନ୍ତା । ତା' ତ ବାହାରିଲାନି । ଏବେ ବି ଯେବେ ସେମାନେ କୁଠି ବିଷ ନୁଚେଇ ରଖିଛନ୍ତି ବୋଲି ଜଣାପଡ଼େ, ତାହେଲେ ଅବଶ୍ୟ ସୁରିଆ ଉପରକୁ ଆଞ୍ଚ ଆସିବନି । ତା' ନ ହେଲେ, ସୁରିଆକୁ ପୁଲିସ୍ ଯେ ସନ୍ଦେହ କରିଚନ୍ତି, ତାକୁ ନିଶ୍ଚେ ଧରିବେ । ସେଇଥି ପାଇଁ ସୁରିଆ ଉପରେ ନଜର ରଖିବା ଲାଗି ଦାରୋଗା ବାବୁ ମତେ ଏଠି ବସେଇ ଦେଇଚନ୍ତି ନା । ଏକଥା କାହାରିକୁ, ହେଇ ହେଇ ସୁରିଆକୁ ମୋଟେ କହିବ ନାହିଁଟି ।

ଗୋପାଳ - ଓ, ଏମିତି ତେବେ କଥା । ବିଚରା ସୁରିଆ ତ ବଡ଼ ବିପଦରେ ପଡ଼ିଲା ତେବେ ।

ମିଆଁ - ବିପଦ ବୋଇଲେ ବିପଦ । ତା' କପାଳ ଯେବେ ତେଜ ଥିବ, ତା' ହେଲେ ସେ ଚାକର ଚାକରାଣୀଙ୍କ ଘରୁ ବିଷ ବାହାରିବ । ନ ହେଲେ ବଡ଼ ବିପଦ ।

ଏ ବାପ, ମୁଁ ଟିକିଏ ପଡ଼ିଆ ଆଡୁ ଆସେ'। ପେଟଟା ଠିକ୍ ନାହିଁ କାଲିଠୁ। ମୁଁ ପାରିବିନି ଏ କାମ କରି। ଥରକୁ ଥର ପଡ଼ିଆକୁ ଧାଇଁବି ନା ଏଠି ପହରା ଦେବି ? ଦାରୋଗାଙ୍କୁ କହେ, ଯେବେ ଆଉ କାହାକୁ ପଠାନ୍ତି। ଇଆ ଆଲ୍ଲା କହି ସେ ଉଠିଲେ।

ଗୋପାଳ – ତୁମେ ତେବେ କ'ଣ ଆଉ ଆସିବ ନି ମିଆଁ ପୁଅ। ତୁମ ସାଙ୍ଗରେ କଥାବାର୍ତ୍ତା କରି ମନଟା ବସି ଯାଇଥିଲା। ଆସିବ ନିଶ୍ଚେ ଏଁ ?

ମିଆଁ – ଖୋଦା କା ମର୍ଜି, ଦେଖାଯାଉ, କହି ସେ ଚାଲିଗଲେ। ଗୋପାଳ ସୁରିଆ ପାଖକୁ ଯାଇ ତାକୁ ଏସବୁ କଥା କହିଦେଲା।



## ଛଅ

ମିଆଁ ସେଠରୁ ଉଠି ସିଧା ଚାଲିଗଲେ ସେଇ ବୁଦିବୁଦିକିଆ ଜଙ୍ଗଲ ଆମ୍ବତୋଟା ଆଡ଼କୁ। ସେ ସେଇ ଜଙ୍ଗଲ ଭିତରେ ଗଲେ ଛପି। ତାପରେ ସେ ଜଙ୍ଗଲରୁ ବାହାରିଲେ ଗଦାଧର ବାବୁ; ହାତରେ ସେଇ ବ୍ୟାଗଟା। ସେ ଚାଲ ଚାଲ ହୋଇ ଗଲେ ସ୍କୁଲ ଘରକୁ। ଦେଖିଲେ ମନମୋହନ ଦି'ଟା ବେଞ୍ଚ ଯୋଡ଼ି ଦେଇ ତାରି ଉପରେ ଶୋଇ ଯାଇଚନ୍ତି। ଦାରୋଗା ବାବୁ ଗୋଟାଏ ଫେଣା ପାଚିଲା କଦଳୀ ଧରି ବସିଚନ୍ତି ଭିତର ପିଣ୍ଡାରେ ଗୋଟାଏ ଚୌକି ପକାଇ। ଗୋଟା ଗୋଟା କଦଳୀ ଛଡ଼ଉଚନ୍ତି ଓ ପାଟିରେ ଗଳେଇ ଦଉଚନ୍ତି। ଗଦାଧର ଯାଇଁ ପହଞ୍ଚିଲା ବେଳକୁ ଫେଣାରୁ ପ୍ରାୟ ଅଧେ ସରିଥିଲା। ଗଦାଧରଙ୍କୁ ଦେଖି କହିଲେ, 'ଆଜ୍ଞା, ଭୋକ କରୁଥିଲା ଯେ ଏ ଯାଗାଟାରେ ତ ଆଉ କିଛି ମିଳେନି, ଏଇ କଦଳୀ ଫେଣାଟା ପାଇଲି, ଆପଣ ନିଅନ୍ତୁ। ଆପଣଙ୍କୁ ବୋଧହୁଏ, କଦଳୀ ଭଲ ଲାଗେନି, ନା ? ଭଲ ପାଚି ନାହିଁ, କଷା କଷା ଲାଗୁଚି, ନେବେ ?' ଏହା କହିବା ଭିତରେ ଆଉ ଦୁଇଟା ସରିଲାଣି। ଗଦାଧର ମୃଦୁକି ହସି କହିଲେ, 'ନା, ନା, ମୋର କଦଳୀ ଦରକାର ନାହିଁ।' ଦାରୋଗା ମୁଣ୍ଡ ହଲେଇ ଗଦାଧରଙ୍କର ଏ କଥାକୁ ଖୁବ୍ ସମର୍ଥନ କଲେ ଓ ଆଉ ଗୋଟିଏ କଦଳୀ ପାଟିକୁ ଠେଲି ଦେଲେ। ଦାରୋଗା କଦଳୀ ଖିଆରେ ବ୍ୟସ୍ତ ଥିବା ଦେଖି ତାଙ୍କୁ କିଛି କହିବା ବେଆଦବି ଭାବି ଗଦାଧର ବାଧ ହୋଇ ଇନିସ୍‌ପେକ୍ଟରଙ୍କ ପାଖକୁ ଗଲେ। ସେ ନିଘୋଡ଼ ଶୋଇଛନ୍ତି। ଘୁଙ୍ଗୁଡ଼ିରେ ତାଙ୍କର ଓଳିଆ ପେଟ ଯେପରି ପଡୁଚି ଉଠୁଚି। ଘର ଚାଳଟା ମଧ ଯେପରି ପଡୁଚି ଉଠୁଚି। ଗଦାଧର ତାଙ୍କୁ ଟିକିଏ ଚାହିଁଲେ। ତା'ପରେ ସେ ବେଲୁନ୍ ଭଳି ପେଟରେ ଆଙ୍ଗୁଠି ଟିପି ଡାକିଲେ। 'ମନମୋହନ', ପାଞ୍ଚ ସାତ ପଦ ଓ ଦଶବାର ଥର ଆଙ୍ଗୁଠି କେଞ୍ଚା ପରେ ମନମୋହନ ଧଡ଼ପଡ଼ ହୋଇ ଉଠି ପଡ଼ିଲେ। କହିଲେ, 'ଏ, କିଆଁ ଚିହାର କରି ଘର ଭାଙ୍ଗୁଚୁମ।'

ଗଦା - ଘରଟା ମୋ ଚିହ୍ନାରରେ ଭାଙ୍ଗିବାର କୌଣସି ଆଶଙ୍କା ନାହିଁ। ଯଦି ଭାଙ୍ଗି ଥାଆନ୍ତା, ତାହେଲେ ତୋ ଘୁଙ୍ଗୁଡ଼ିରେ।

ମନ - କେତେ ମିଛ କହୁଛୁରେ ଗଧା। ମୁଁ ତ ଖାଲି ଆଖି ବୁଜି ଟିକିଏ ଏଇ ମକଦ୍ଦମା କଥା ଭାବୁଥିଲି। ଆଉ ଘୁଙ୍ଗୁଡ଼ି ମାଇଲି କେତେବେଳେ? କିଆଁରେ କ'ଣ ହେଲା: ମୁହଁଟା ଆମ୍ପିଳେଇ ଦେଲୁଯେ।

ଗଦା - ନାଇଁ, ମନେ ପଡ଼ିଗଲା ଭାଉଜଙ୍କ କଥା। ଆହା, ବିଚାରୀ, ବରାବର ଶୁଖି ଶୁଖି ଯାଉଚନ୍ତି ମୁଁ ଦେଖୁଚି। ଭାବୁଥିଲି, କ'ଣ ହେଲା। ଏଥରକୁ ବୁଝି ପାରିଲି।

ମନ - ତୋ ଭାଉଜ? ମାନେ? ଓ, ମୋ ସ୍ତ୍ରୀ କଥା କହୁଚୁ। ସେ ଶୁଖି ଯାଉଚି? ହଁ, ମୋର ବି ସେହିପରି ମନେ ହେଉଚି। କିଆଁ? କ'ଣ ବୁଝିଲୁ?

ଗଦା - ଗୋଟେ ଭୂମିକମ୍ପର ଗର୍ଜନ ଯେବେ ରାତିଯାକ କାନ ପାଖରେ ହୁଏ, ତାହେଲେ କାହାରିକୁ ବି ନିଦ ଲାଗିପାରେ? ବିଚାରି ନ ଶୋଇ ନ ଶୋଇ ଏପରି ଶୁଖି ଯାଉଛନ୍ତି ନିଶ୍ଚୟ।

ମନ - ହୁଁ। କ'ଣ ଏଇ କଥା କହିବା ଲାଗି ମୋର ଭାବନା ନଷ୍ଟ କଲୁ?

ଗଦା - ଭାବନା ନା ସ୍ୱପ୍ନ! ସେ ଯାଉ, ମୋର ଗୋଟାଏ ଅନୁରୋଧ ରକ୍ଷା କରିବ?

ମନ - କଣ?

ଗଦା - ମୁଁ ଟିକିଏ ସେ ଚାକର ଚାକରାଣୀଙ୍କ ସହିତ ଦେଖା କରନ୍ତି। ଅନୁମତି ପାଇଁ ଟିକିଏ ମାଜିଷ୍ଟ୍ରେଟ୍‌ଙ୍କ ପାଖକୁ ଲେଖିବେ?

ମନ - କିଆଁ।

ଗଦା - ମୋର କିଛି କଥା ତାଙ୍କୁ ପଚାରିବାର ଅଛି।

ମନ - କ'ଣ?

ଗଦା - କହିଲି, ତାଙ୍କୁ ପଚାରିବି, ତୁମକୁ ନୁହେଁ? ଲେଖିବ କି ନାହିଁ କହିଲ ଆଗେ।

ମନ - ବୃଥା ଭୂଆଁ ବୁଲୁଚୁ ଗଦା, ବୃଥା ଭୂଆଁ ବୁଲୁଚୁ। ସେମାନେ ତ ଅଧା ଫାଶୀ କାଠରେ ଝୁଲି ସାରିଲେଣି। ଖାଲି ସେ ବିଷକୁଠୁ ପାଇଲେ ତା'ର ପ୍ରମାଣଟା ପାଇ ପାରିଲେ -

ଗଦା - ମୋର ବିଶ୍ୱାସ ତା ତୁମେ କାଲି ପାଇବ।

ମନ - ମାନେ?

ଗଦା - ମାନେ ହୁଏତ ଗୋଟିଏ ଚିଠି ଆଜି ରାତିରେ ନ ହେଲେ କାଲି ସକାଳେ ପାଇବ

ଯେ, ସେମାନଙ୍କ ଘରର କୌଣସି ଯାଗାରେ ବିଷ ଶିଶି ରଖା ଯାଇଚି । ତୁମେ ଧାଇଁ ଯିବ, ଆଉ ଠିକ୍ ସେଇଠି ବିଷ ଶିଶି ପାଇବ ।

ମନ - କିନ୍ତୁ, ତାଙ୍କ ଘର ତ ଖାନତଲାସ ହୋଇଚି, କିଛି ମିଳିନି ।

ଗଦା - ଏଥରକ ମିଳିବ ।

ମନ - ଏ ସବୁ ତୁ କ'ଣ କହୁଚୁ ? ତୁ କିମିତି ଜାଣିଲୁ ? କିଏ ସେ ଚିଠି ଦେବ ?

ଗଦା - ଆଚ୍ଛା, ଚିଠି ପାଅ, ଜିନିଷ ମିଳୁ । ତା'ପରେ ଏସବୁ ପ୍ରଶ୍ନର ଜବାବ ପାଇବ । ଏବେ ଲେଖିଦିଅ ତ ।

ମନ - ଉହୁଁ, ମୁଁ କିଛି ବୁଝି ପାରୁନି । ତୁ କ'ଣ ମୋତେ ଥଟା କରୁଚୁ ?

ଗଦା - ମୋଟେ ନା । କହୁଚି ଏକଦମ ଖାଣ୍ଟି ସତ କଥା ।

ମନ - ତା' ଯେବେ ସତ ହୁଏ, ତା ହେଲେ ତ ଆମର ମକଦ୍ଦମା ପୂରା ହୋଇଗଲା । ଆଉ ତୁଯେ କହୁଥିଲ - ?

ଗଦା - ମନୁ ଭାଇ, ମନୁ ଭାଇ ! ତୁମେ କ'ଣକରି ପୁଲିସ୍ ଇନିସ୍‌ପେକ୍ଟର ହେଲ, ମୁଁ ବୁଝି ପାରୁନି । ଥାଉ, ଥାଉ ଆଉ ଗୁଡ଼ାଏ ନିଜର ଗଜପାଣ୍ଡିତ୍ୟ ଦେଖାଇ ହୁଅନି, ସୁନା ଭାଇଟି ପରା, ଲେଖିଦିଅ ।

ମନ - ତୁ କ'ଣ ଇଲେ ବ୍ରହ୍ମପୁର ଯିବୁ ?

ଗଦା - ନାଇଁ ତ, ମାଜିଷ୍ଟ୍ରେଟ୍‌ଙ୍କ ପାଖକୁ ତୋ ଚିଠିଟାନେଇ ଏଠି ବସି କ'ଣ ଚାଟିବି ? କାହିଁକି ବୃଥା ସମୟ ନଷ୍ଟ କରୁଚୁ ଭଲା ? ଚିଠି ଖଣ୍ଡିକ ମୁଁ କହିଲା ବେଳକୁ ଲେଖି ନେଇଥିଲେ ତ ଏତେ ବେଳକୁ କଡ଼େ ଶୋଇ ସାରନ୍ତୁଣି ।

ମନ - ହୁଁଃ, ମୁଁ ଯିମିତି ଶୁଏ ଖାଲି, ଆଚ୍ଛା, ଆଚ୍ଛା, ନେ ।

ଏହା କହି ସେ ମୁଣ୍ଡତଳୁ ଖଣ୍ଡେ କାଗଜ ଓ ଝରଣା କଲମ ବାହାର କରି ଲେଖିଦେଲେ, ମାଜିଷ୍ଟ୍ରେଟ୍‌ଙ୍କ ପାଖକୁ ଖଣ୍ଡେ ଚିଠି ନେଇ ସେ ମୁଦାଲାମାନଙ୍କ ସହିତ ଗଦାଧରକୁ ସାକ୍ଷାତ କରିବା ପାଇଁ ଅନୁମତି ଦେବାକୁ । ଗଦାଧର ସେଇଟିକୁ ନେଇ ପକେଟରେ ରଖିଲେ, ତାପରେ ମନମୋହନଙ୍କ ଦି କାନ୍ଧରେ ହାତ ଦେଇ ତାଙ୍କ 'ଆରେ ଆରେ' କହିବା ଭିତରେ ତାଙ୍କୁ ଖଟରେ ଶୁଆଇ ଦେଇ କହିଲେ, 'ହଁ, ଏଥର ବେଶ୍ ନିଶ୍ଚିନ୍ତରେ ଆଖିବୁଜି, ନାକ ଆବାଜ କରି, ଶୋଇ ଶୋଇ ମକଦ୍ଦମା କଥା ଭାବୁଥା । ଏଁ, ସୁନା ଭାଇଟି ପରା ମୋର, ଧୋରେ ବାୟା ଧୋ । ଆରେ ବାୟା ଆ । ମୁଁ ଯାଉଚି ଟା ଟା ।' ସତକୁ ସତ ଏଇତକ କଥା ଭିତରେ ମନମୋହନ

ଆଖି ବୁଜି ଦେଲେ । ତାଙ୍କର ନାକ ଡାକି ଉଠିଲା । ଗଦାଧର ତାଙ୍କୁ ଚାହିଁ ହସି ଦେଇଗଲେ ଚାଲି ସେଠାରୁ ।



## ସାତ

ମାଜିଷ୍ଟ୍ରେଟ୍‌ଙ୍କ ଅନୁମତି ଧରି ଗଦାଧର ଜେଲକୁ ଗଲେ । ଜେଲରଙ୍କୁ ଅନୁମତି ପତ୍ର ଦେଲେ । ଜେଲର ତାଙ୍କୁ ନେଇ ତାଙ୍କ ନିଜ ଅଫିସରେ ବସାଇଲେ । ଓ୍ୱାଡ଼ରକୁ ବନ୍ଦୀ ଦୁଇଜଣଙ୍କୁ ଆଣିବାକୁ ହୁକୁମ ଦେଲେ । ଭିତର ଦୁଆର ଖୋଲିଲା । କିଛି ସମୟ ପରେ ବନ୍ଦୀ ଦୁଇଜଣ ଆସି ହାଜର ହେଲେ । ସେମାନେ ଭୟରେ ଓ ଆତୁରରେ ଯେପରି ମାଟି ଭିତରେ ପଶି ଗଲେଣି । ଗଦାଧରଙ୍କୁ ଦେଖି ମାଉସୀ କହି ଉଠିଲା, 'ମୁଁ କ'ଣ ତୁମର ଦୋଷ କରିଥିଲି ବାବୁ, ମିଛରେ ମୋତେ ଏତେ ଦଣ୍ଡ ଦେଉଛ ? ଧରମ ଅଛି, ନିର୍ଦ୍ଦୋଷୀକୁ ଦଣ୍ଡ ଯେ ଦିଏ' -

ଗଦା - ଥୟ ଧର ମାଉସୀ । ମୁଁ ଜାଣେ ତୁମେ ନିର୍ଦ୍ଦୋଷ; କିନ୍ତୁ ପୁଲିସର ବା ଦୋଷ କ'ଣ ? ସେମାନଙ୍କୁ ଯେପରି ପ୍ରମାଣ ମିଳିଲା, ସେମାନେ ସେହିପରି କଲେ । ଏଣିକି ତୁମ ପ୍ରାଣ ତୁମ ହାତରେ । ତୁମେ ଯେବେ ଧୈର୍ଯ୍ୟ ଧରି ମୋ କହିବା କଥା ଅନୁସାରେ ଚଳିବ ଓ ମୋ କଥାରେ ଠିକ୍ ଠିକ୍ ଜବାବ ଦେବ, ତା' ହେଲେ ମୁଁ ସତ କହୁଚି, ତୁମକୁ ଏଥିରୁ ମୁକୁଳେଇ ନେବି ।

ଚାକର - ହଁ ବାବୁ, ଆମେ ସତ ସତ କହିବୁଁ । ବାବୁ, ଆମକୁ ଏଥିରୁ ମୁକୁଳେଇ ନିଅ । ବାବୁ, ଆମେ କିଛି କରିନୁ ବାବୁ - ଖାଲି ମିଛରେ -

ମାଉସୀ - ତୁନି ହୁଅରେ ନିରଂଶିଆ । ତୁ ତୁନି ହ । ମୁଁ କହିବି, ହଁ ବାବୁ, ତୁମେ ତ ପୁଲିସ ଲୋକ, ଆମକୁ ଇମିତି ପାପଲେଇ, ସାକୁଲେଇ, ଏତେ ଦୂର ଆଣି, ପୁଣି ସାଉଁଳଉଚ, କ'ଣ ଫାଶି କାଠରେ ଝୁଲାଇବାକୁ -

ଗଦା - ମାଉସୀ, ମୁଁ ପୁଲିସ ଲୋକ ନୁହେଁ । ମୁଁ ତୁମର ଶତ୍ରୁ ନୁହେଁ । ପୁଲିସ୍ ଯିମିତି ତୁମ ବିରୁଦ୍ଧରେ ପ୍ରମାଣ ଖୋଜି ତୁମକୁ ଫାଶି କାଠରେ ଝୁଲାଇବାକୁ ଯାଉଚି, ମୁଁ ସିମିତି ତୁମ ସପକ୍ଷରେ ପ୍ରମାଣ ଖୋଜି ତୁମକୁ ସେଥିରୁ ମୁକୁଳେଇବାକୁ ଚେଷ୍ଟା କରୁଚି । ମୁଁ ଜାଣେ, ତୁମେ ଦୁହେଁ ନିର୍ଦ୍ଦୋଷ । ମୁଁ ଜାଣେ କିଏ ପ୍ରକୃତ ଦୋଷୀ, କିନ୍ତୁ ମୋ ଜାଣିବାରେ ତ ହବନି । ପ୍ରମାଣ ଚାହିଁ । ତୁମର ଯେବେ ମୋ କଥାର ବିଶ୍ୱାସ ହେଉଚି, ତାହେଲେ, ମୁଁ ଯାହା ସବୁ ପଚାରିବି ସତ ସତ କହ, ନ ହେଲେ ମୁଁ ଯାଉଚି । ତୁମ ଭାଗ୍ୟ ତୁମର । ମୁଁ ଆଉ କ'ଣ କରିପାରେ ।

ମାଉସୀ – ତୁମେ ସତ କହୁଛ କି ମିଛ କହୁଛ । ଆମକୁ ଆମରି ମୁହଁରେ ଧରେଇ ଦେବା ପାଇଁ ଏ ଗୋଟାଏ ଫାନ୍ଦ କି କ'ଣ, ମୁଁ କିମିତି ଜାଣିବି ?

ଗଦା – ତା'ର କୌଣସି ଉପାୟ ନାହିଁ । ମୁଁ ଯାହା କହୁଚି, ତା ଉପରେ ବିଶ୍ୱାସ କରିବା ଛଡ଼ା ଆଉ କିଛି ମୁଁ କହି ନ ପାରେ, ଏଣିକି ତୁମର ଖୁସି ।

ମାଉସୀ – ତୁ ପୁତ ମୋ ମୁଣ୍ଡ ଛୁଇଁ କହିବୁ, ତୁ ତ ଆମକୁ ଫାନ୍ଦରେ ପକାଉନି ?

ଗଦା – ତୁମ ମୁଣ୍ଡ ? ତୁମ ମୁଣ୍ଡ କ'ଣ, ମୋର ଯେବେ ପୁଅ ଥା'ନ୍ତା, ତା ମୁଣ୍ଡ ବି ଛୁଇଁ କହନ୍ତି –

ମାଉସୀ – ହଉ, ହଉ ବାପ, କ'ଣ ପଚାରୁଚୁ ପଚାରେ ।

ଗଦା – ବେଶ୍, ସୁନା ମାଉସୀଟିଏ । ଆଚ୍ଛା ମାଉସୀ ଠିକ୍ ମନେ କରି କହ । ସେଦିନ ରାତିରେ ତୁମ ସା'ନ୍ତ ସାଆନ୍ତାଣୀ ଯେତେବେଳେ ପିଲାଙ୍କୁ ଶୁଆଇ ଦେଇ ଗଲେ ଚାଲି ବନ୍ଧୁ ଘରକୁ ? ତୁମେ ଦିହେଁଯାକ କ'ଣ କଲ ?

ଚାକର – କହନା ଲୋ, କିଛି କହନା । ହଁ, ମୁଷ୍କିଲରେ ପଡ଼ିବୁଟି ।

ମାଉସୀ – କିଆଁମ ? ଆମେ କ'ଣ କରିଥିଲେଇଁ କି, କହିବାନି ? ପଚାରୁଚି ଯେତେବେଳେ ପୁଅ, ନ କହିବା କିଆଁ ? ସେଥିରେ କ'ଣ ଅଛି ?

ଗଦା – କିଛି ନାହିଁ ମାଉସୀ । ସେଥିରେ ତୁମର ଭଲ ଛଡ଼ା ମନ୍ଦ କିଛି ନାହିଁ । ସେଇଟା ବୋକାଟା । ତା' କଥା ଶୁଣନି । ତୁମେ କହିବଟି ତୁମ ଭଳି ବୁଦ୍ଧିମତୀ, ଚାଲାକ ଚତୁର ମାଉସୀଙ୍କି ଏ ବୋକାଟା କ'ଣ ପାଠ ପଢ଼େଇବ ?

ମାଉସୀ – ଶୁଣିଲୁରେ ନିରଇଁଶିଆ, ଶୁଣିଲୁ ? ତୁ ମତେ ପୁଣି କହୁ ବୋକା ବୋଲି ନା ? ତୁଇ ନିରେଇଁଶିଆ ତ ମାଡ଼ ଡରରେ ସବୁ ଖୋଲି କହି ଦେଲୁ ବୋଲି ଆମର ଏ ହୀନି ଅବସ୍ଥା । ନ ହେଲେ ସେ ଓଲିଆତୋଟା ଇନିସ୍‌ପେକ୍ଟର କ'ଣ କରିଥାନ୍ତା ?

ଗଦା – ଠିକ୍ କହିଚ ମାଉସୀ । ତା' କଥା ଶୁଣନି । କ'ଣ ହେଲାଟି ?

ମାଉସୀ – କୁ କଥା କହିଲୁ ପୁତ ।

ଗଦା – ସେଇ ଯେ ପଚାରିଲି, ତୁମେ ସବୁ କୁଆଡ଼େ ଗଲ, ସା'ନ୍ତ ସା'ନ୍ତାଣୀ ଘରୁ ଚାଲିଗଲା ପରେ ।

ମାଉସୀ – କଥା କ'ଣ କି ପୁଅ, ଏମାନେ ଚାଲିଗଲେ । ଆମେ ଖା'ପିଅ ସାରି ଶୋଇବାକୁ ଯାଉଛୁଁ, ତଳିଆରି ଆସି ଡାକ ପକେଇଲା । କହିଲା, କାର୍ଯୀବାବୁ ଡାକୁଚନ୍ତି । ମୁଁ ଅଙ୍ଗପେଇଶିଆକୁ

କହିଲି ତୁ ଯା । ତାକୁ ଅନ୍ଧାର ଡାହାଣୀ ଖାଇଯିବ । ଏଡ଼େ ବଡ଼ ଗଛା ଭେଣ୍ଡିଆଟା । ଅନ୍ଧାର ହେଲେ ଘରୁ ଗୋଡ଼ କାଢ଼ିବନି । ସେ ଦିନ ସିମିତି –

ଗଦା – ହଁ, ହଁ, ମୁଁ ଜାଣେ । ତୁମେ ବୋଲି ତାକୁ ଚଳେଇ ଦଉଚନା । ତା'ପରେ କ'ଣ ହେଲା –

ମାଉସୀ – ସେ କହିଲା ତୁ ଚାଲ । ମୁଁ ଏକୁଟିଆ କିମିତି ଆସିବି । ମୁଁ କହିଲି ପିଲାଗୁଡ଼ାଏ ଘରେ ଏକୁଟିଆ ଶୋଇଚତି, ମୁଁ ତାକୁ ଛାଡ଼ିକରି କିମିତି ଯିବି ?

ଗଦା – ହଁ, ତା ଉତୁରୁ କ'ଣ ହେଲା ? ଗଲ ?

ମାଉସୀ – ଗଲି କିମିତି ମ ? ମୁଁ କ'ଣ ଯାଉଥିଲି ? ମୁଁ ତ ନିଷ୍ଠା ନାହିଁ କରିଦେଲି । ସେ ଯୁ ତଳିଆରି, ସେ କହିଲା – 'ନାଁ, କାର୍ଜୀବାବୁ କହିଚନ୍ତି, ତୁମେ ଦୁହେଁଯାକ ଚାଲ' ମୁଁ କହିଲି, 'ଆମେ ଗଛଜଳାଟି, ତୋ ଆଖି କ'ଣ ଫୁଟି ଯାଇଛି ନା, ତୋ କାନରେ ପଥର ପଡ଼ିଚି । ପିଲାଏ ଏକୁଟିଆ, ଘରେ କେହି ନାହାନ୍ତି । ଦୁହେଁ ଯାକ କିମିତି ଯିବୁ ?'

ଗଦା – ତା'ପରେ ସେ କହିଲା ଯେ, 'ଜରୁରି କାମ । ଏଇ ତ ବାଟ । ଇଲେ ଯିବ ଆଉ ଇଲେ ପଳେଇ ଆସିବ,' ଏଇଆନା ?

ମାଉସୀ – ହଁ ରେ ବାପା ? ସେଇଆ । ଏ' ତୁ କିମିତି ଜାଣିଲୁ ?

ଗଦା – ଆଚ୍ଛା, ଛାଡ଼ ସେ କଥା । ତୁମେ ଗଲ । ଦୁଆରଟା ବନ୍ଦ କରିଦେଇ ଗଲ ନା ଖୋଲା ଥିଲା ।

ମାଉସୀ – ମତେ କ'ଣ କରି ପାଇଛୁ କିରେ ପୁଅ, ଏଡ଼େ ବଡ଼ ଘର, କୁକଥା ନାହିଁ ସେ ଥିରେ, ଗାଁଟା ଯାକରେ ଏତେ ଚିଜ ଭଲା କାହା ଘରେ ଅଛି ? ଖାଲି ଲୋକଙ୍କ ପାଣିରୁ ନାଳ ଗଡ଼େ ଆମ ଘରର ଚିଜ ସରଞ୍ଜାମ ଦେଖିଲେ । ମୁଁ ଘରଟା ମେଲା କରିଦେଇ ଯାଆନ୍ତି ? ଖାସା କହିଲୁ ତ ?

ଗଦା – ନା' ମୋର ଭୁଲ୍ । ତାଲା ଲଗେଇ ଦେଇଗଲ ବୋଧହୁଏ ? କାର୍ଜି କ'ଣ କହିଲା ?

ମାଉସୀ – ସେ ଆଣ୍ଠୁକୁଡ଼ାର କ'ଣ କମ୍ ବହପ । ସେଦିନ ଆଚ୍ଛା କରି ଦିପଦ ଶୁଣେଇ ଦେଇଛି ମ, ତା' ମନ ମାନୁଥିବ ଯେ । ରାଇଜଳା, କ'ଣ କରି ଆମକୁ ପାଇଥିଲାକି ? ସେ ଗାତପଶା ଗରିବ ଗୁରୁବାଙ୍କ ତୋଟି ଚିପି ଘର ଭର୍ତ୍ତି କରୁଚି ବୋଲି ଭାବିଚି ସମସ୍ତେ ତରି ପରି, ଯୁ ପାତ୍ରରେ ଖାଇବ, ସେହି ପାତ୍ରରେ –

ଗଦା - ତା ତୁମେ ଆଉ କାର୍ଯ୍ୟୀ ସେଇଟା କଥା କହନ୍ତି । କଣ କହିଲାଟି ? ସେଇ ଜଗାର ହାଣ୍ଡନୋଟ୍ କଥାନା ?

ମାଉସୀ - ସତ ସତ ତୁ ତ ସବୁ ଜାଣିଚୁ ? ଏଁ ତୁ କିମିତି ଜାଣିଲୁ ? ତୁ ତୁ ସେଠି ନଥିଲୁ ? ମୁଁ ତତେ ତ ଦେଖିନି ?

ଗଦା - ନା, ତୁମେ ମତେ ଦେଖିନ । କେତେ ଟଙ୍କା ଯାଚିଲା ତୁମକୁ ?

ମାଉସୀ - ଟଙ୍କା, ତା ଟଙ୍କା ପୋଡ଼ିଯାଉ, ସେ ପୋଡ଼ିଯାଉ । କି ଟଙ୍କା ଦେଖାଇଲାରେ । ମୁଁ ତ ନା'କୁ ମାତ୍ର କହିଥିଲେ ମୋ ସା'ନ୍ତ ସାନ୍ତାଣୀ କୋଡ଼ିଏ କି ଦି କୋଡ଼ି ଟଙ୍କା ଦେଇ ଥା'ନ୍ତେ । ଆଉ କ'ଣ ନା ନେ ଦଶ ଟଙ୍କା ନେ, ସେ ହାଣ୍ଡନୋଟ୍‌ଟା ଆଣି ଦେଲେ ଆଉରି ଦଶଟା ଦେବି । ଦଶଟା, ଛିଁଆ ଛିଆରେ ତୋର 'ଦଶ ଟଙ୍କା, ଦେଲି ଦି'ପଦ ଶୁଣାଇ କଷିକରି । ତା ଉପରେ ପୁଣି ଧମକ । କିଆଁମ ମୁଁ କ'ଣ କରି ପକାଇଲି କି ? ଗୋଟିଏ ଅଣ୍ଡିରା ରଖିଚି । ମୁଁ ତ ତୁମ ମାଇପିଙ୍କ ଭଳି ଘରେ ଘଇତା ବସେଇ ଦାଣ୍ଡରେ ବାର ଅଣ୍ଡିରା ଗୋଟଉନି ।

ଗଦା - ନାଇଁ ମାଉସୀ, ତୁମ ଭଳି ସତୀ କିଏ ? ତେବେ ଯେ ତୁମକୁ ଧମକେଇଲେ, ଏକଥା ଯେବେ କାହା ଆଗରେ କହିବୁ, ତା' ହେଲେ ତୋର ପେଟ ହବା କଥା କହି, ତତେ ଗାଁ'ରୁ ବାହାର କରିଦେବି ନା ? ଆଚ୍ଛା ମାଉସୀ ମୁଁ ଯାଉଚି । ତୁମେ ବ୍ୟସ୍ତ ହେବନି, ମୁଁ ତୁମ ପାଇଁ ଚେଷ୍ଟା କରୁଛି । ତୁମେ ଏଇ ଦି' ତିନି ଦିନ ପରେ ମୁକୁଳି ଯିବ ।

ମାଉସୀ - ତୋ ତୁଣ୍ଡରେ ଶୁଭ ବରଷୁରେ ପୁତ, ତୋ ଭାରିଜାର ହାତକାଚ ବଜର । ମହାପ୍ରଭୁ ତୋତେ ରଖେ ।

ମାଉସୀର ଆର୍ଶୀବାଦ - ବର୍ଷା ଭିତରେ ଜେଲରଙ୍କୁ ଠାରି ଗଦାଧର ଦେଲେ ଚମ୍ପଟ ।



# ଆଠ

ସେ ଦିନ ରାତି ପ୍ରାୟ ୮ଟା । ସୁରିଆ ତା' ବାଡ଼ି ଦୁଆର ଫିଟାଇ ବାଡ଼ି ଭିତରକୁ ଗଲା, ଖୁବ୍ ତୁନି ତୁନି ହୋଇ । ହାତରେ ଗୋଟାଏ ଟର୍ଚ୍ଚ ଲାଇଟ୍ । ଆର ହାତରେ ଗୋଟାଏ ଅକ୍ଷତ । ତା ବାଡ଼ିଆଡ଼ଟା ଚାରିଆଡୁ ବାଡ଼ଘେରା । ବାଡ଼ି ଭିତରେ ଶାଗ ପରିବାପତ୍ର ଗଛ ଓ ବୁଦା । ବଡ଼ ଗଛ ଭିତରେ ଦୁଇଟା ଆମ୍ବଗଛ ଓ ଗୋଟାଏ ତିନ୍ତୁଳି ଗଛ । ସେ ସିଧା ଗଲା ତିନ୍ତୁଳି ଗଛ ମୂଳକୁ । ଟର୍ଚ୍ଚ ପାରି ଗଛ ମୂଳରୁ ପ୍ରାୟ ଦି' ହାତ ଦୂରରେ ଗୋଟାଏ ଜାଗାରେ ବସି ପଡ଼ିଲା । ଖଣତି ଧରି ଖୋଳିବାକୁ ଆରମ୍ଭ କଲା । ପ୍ରାୟ ୫/୧୦ ମିନିଟ୍ ପରେ ସେ ତାରି ଭିତରୁ ଗୋଟିଏ ଶିଣି

ବାହାର କରି ଆଣିଲା ଓ ସେଥିରୁ କ'ଣ ଢାଳି ଆଉ ଗୋଟାଏ ଛୋଟ ଶିଶିରେ ଭରତି କଲା । ତା'ପରେ ସେ ଗାଡ଼ରେ ହାତ ପୁରାଇ ଗୋଟିଏ, ଛୋଟ ଟିଣ ବାକ୍ସ ବାହାର କଲା । ସେଥିରୁ ଦି'ଖଣ୍ଡ କାଗଜ ବାହାର କଲା । ଟର୍ଚ୍ଚ ଆଲୁଅରେ ଖଣ୍ଡିଏ କାଗଜକୁ ଦେଖିଦେଇ ରଖିଦେଲା ଓ ଆର କାଗଜ ଖଣ୍ଡି ନିଠେଇ କରି ପଢ଼ିଲା ଏପଟରୁ ସେପଟ ପର୍ଯ୍ୟନ୍ତ । ତା'ପରେ ସେ କଲା ଏକ ଅଦ୍ଭୁତ କାମ । ସେ କାଗଜଟାକୁ ଓଠ ପାଖରେ ଲଗେଇଲା, ତାକୁ ନେଇ ମୁହଁରେ ଘଷିଲା, ଛାତିରେ ଲଗେଇଲା । ତା'ପରେ ସେ କାଗଜକୁ ମୋଡା କୋଚା କରି ହାତରେ ମୁଠେଇ ଧରି ଦିହାତ ଟେକି କ'ଣଗୁଡ଼ାଏ ବିଡ଼ିରି ବିଡ଼ିରି କରି କହିଗଲା । ପ୍ରାୟ ୧୫ ମିନିଟ୍ ପର୍ଯ୍ୟନ୍ତ ତା'ର ଏକ ସୁଆଙ୍ଗ ଚାଲିଲା । ପରେ ଏହା ପ୍ରକୃତିସ୍ଥ ହେଲା ପରି ଜଣାଗଲା । ସେ କାଗଜ ସହିତ ବାକ୍ସ ଓ ବଡ଼ ବୋତଲଟା ଗାତଭିତରେ ରଖି ଗାତଟା ବନ୍ଦ କରିଦେଇ ସେ ସେଠାରୁ ଉଠି ଚାଲିଗଲା । ସେ ତା' ବାଡ଼ି ଦୁଆରରେ ପହଞ୍ଚି ବାଡ଼ି ଦୁଆରଟା ଆସ୍ତେ କରି ବନ୍ଦ କରିଦେଲା । ତା'ପରେ ସେଇ ତିନ୍ତୁଳି ଗଛରୁ କିଏ ଜଣ ଓହ୍ଲେଇ ଆସିଲା । ଅନ୍ଧାର ରାତି, ଲୋକଟାର ଦିହଟା ବି କଳା । ଗଛ ଦିହରୁ ଭୂତ କି ବ୍ରହ୍ମରାକ୍ଷସ ଓହ୍ଲାଇଲା ଭଳି ଦିଶିଲା ସେ । ସେ ମଧ୍ୟ ସେଇ ଗାତ ପାଖକୁ ଗଲା । ଅତି ସନ୍ତର୍ପଣରେ ସେଠା ଖୋଲିଲା । ସେ ବୋତଲ ବାହାର କରି ତା'ର ଠିପି ଖୋଲି ଶୁଙ୍ଘିଲା । ଠିପି ବନ୍ଦ କରି ରଖି ଦେଲା ଗାତ ଭିତରେ ବାକ୍ସ ଖୋଲିଲା । ସେ କାଗଜ ଦିଟା ତା' ପାଖରେ ଥିବା ଗୋଟିଏ ଛୋଟ ଟର୍ଚ୍ଚର ସରୁ ଆଲୁଅ ରେଖାରେ ପଢ଼ିଲା । ତାକୁ ମଧ୍ୟ ବନ୍ଦ କରି ଦେଇ ଗାତରେ ପୁଣି ପୋତିଦେଇ ସେଇ ଅନ୍ଧାରରେ ମିଳେଇ ଗଲା ।



## ନଅ

ସେଇ ଦିନ ରାତି ପ୍ରାୟ ୧୦ଟା । ଅନ୍ଧାର କିଟିକିଟିଆ ରାତି । ମଫସଲ ଗାଁଟି ନୀରବ, ନିସ୍ତବ୍ଧ । ଯେ ଯୁଆଡ଼େ ଖାଇପିଇ ଶୋଇ ପଡ଼ିଲେଣି । କେବଳ ଗୋଟିଏ ଦୁଇଟି ଘରୁ ଛୋଟ ପିଲା କାନ୍ଦିବାର ଶବ୍ଦ ଆସୁଚି । କୁ ଘରେ ବା କିଏ କେତେବେଳେ କାଶି ଦେଉଚି । କୁ ଘରୁ ଅବା କାନଡେରି ଶୁଣିଲେ ଫୁସ୍‌ଫାସ୍ ଓ ଫୁଟ୍‌ଫାଟ୍ ଶବ୍ଦ ଶୁଣାଯାଉଚି । ବେଳେବେଳେ କୁ'ଠି ବୁଲା କୁକୁରଟା ଶୋଇଚି ଦାଣ୍ଡରେ, କାହାର ଆବାଜ ପାଇ ଭୁ ଭୁ ରଡ଼ି ଛାଡୁଚି । ତା'ର ରଡ଼ି ଶୁଣି ବେଳେ ବେଳେ ଦାଣ୍ଡରେ ଶୋଇଥିବା ବୁଲାଚରା ଗାଈଗୋରୁ, ଛେଳି, ମେଣ୍ଢା ତାଙ୍କ ନିଦରୁ ଛାନିଆରେ ଉଠି ପଳଉଛନ୍ତି । ଜଣେ ଲୋକ ଏହିପରି ସମୟରେ କଳା ଲୁଗାରେ ଦିହ ଘୋଡ଼ାଇ ଅତି ଧୀର ଓ ଯଥେଷ୍ଟ ବେଗରେ ଗାଁ' ଦାଣ୍ଡରେ କନ୍ଦି ବିକନ୍ଦି ହେଇ ସୁହୁସି ଚାଲିଚି । ବେଳେ ବେଳେ କ'ଣ ଶୁଣି ପଛକୁ ଚାହୁଁଚି, ବେଳ ବେଳେ ଘର କାନ୍ଥ ଦିହରେ ଆଉଜି କାଳିଆ ମାଟି କାନ୍ଥ ସାଙ୍ଗରେ ଏକ ହୋଇ ଯାଇଚି । ତା'ର ପଛରେ ଆଉ ଜଣେ ସିମିତି କାଳିଆ ଭୂତ ପ୍ରାୟ

୩୦ ହାତ ଦୂରରେ ସେହିପରି ନିଜକୁ ଛପେଇ ଛପେଇ ଚାଲିଛନ୍ତି । ଏହିପରି ଲୁଚକାଳି ଖେଳ ଭିତରେ ପ୍ରଥମ ଲୋକଟି ଆସି କୃଷ୍ଣମୂର୍ତ୍ତିର ଘର ପାଖରେ ପହଞ୍ଚିଲା । ସେଠି ପହଞ୍ଚି ସେ କିଛି ସମୟ ଅମକି ଠିଆ ହୋଇ ଏଣେତେଣେ ଚାହିଁଲା, ଯେପରି କାହାରି ପ୍ରତୀକ୍ଷା କରୁଚି । ପଛରେ ଲୋକଟା ମଧ୍ୟ ସେ ଠିଆ ହେବାର ଦେଖି ନିଜେ ଗୋଟିଏ ଘରର ଦୁଆର ପିଣ୍ଡାରେ ଯାଇ ଲେପେଟାଇ ପଡ଼ିଲା । ପ୍ରଥମ ଲୋକ ଦେଖିଲା କେହି ଆସୁ ନାହାନ୍ତି, କିଛି ଘଟୁ ନାହିଁ । ତା'ପରେ ସେ ଅତି ଧୀରେ ଧୀରେ କୃଷ୍ଣମୂର୍ତ୍ତିଙ୍କ ଘରର ଦକ୍ଷିଣ ପଟକୁ ଲାଗି ଯେ ସରୁ ଗଳିଟି ଅଛି, ତାରି ଭିତରେ ଢୁକି ଗଲା । ଏଇ ପଟେ କୃଷ୍ଣମୂର୍ତ୍ତି ଘରର ଗୋଟିଏ ପାଚିରୀରେ ପ୍ରାୟ ପୁରୁଷେ ଉଚ୍ଚ । ମାଟି କାନ୍ଥେଣି, ପଥର ପାଚେରି ଓ ପରେ ଚାଳ ନାହିଁ । ବର୍ଷା ପାଣି ଖାଇ ଖାଇ ପଥର ସନ୍ଧିରୁ ମାଟି ଗାନ୍ଥେଣି ଧୋଇ ହୋଇ ଯାଇ ଗୋଟିଏ ଖୋଲ ହୋଇ ଯାଇଚି । ପାଚିରୀର ମଝିକୁ ଆସି ସେ ପ୍ରଥମ ଲୋକଟା ହାତରେ ଦରାଣ୍ଡି ଗୋଟିଏ ଯାଗା ଠଉରେଇଲା । ପଥର ସନ୍ଧିଖୋଲ ଭିତରେ ଦି ଗୋଡ଼ ଆଙ୍ଗୁଠି ରଖି ସେଥିରେ ଭରା ଦେଇ ସେ ଉପରକୁ ଉଠିଲା ଓ ଉପର ପଥର ଲେଦାକ ହାତରେ ଧରି ଶେଷରେ ପାଚିରୀ ଶେଷକୁ ଗଲା । ସେଠି କିଛି ସମୟ କାନ ଡେରି କ'ଣ ଶୁଣିଲା । ତା'ପରେ ଆସ୍ତେ ଆସ୍ତେ ଖସି ଭିତର ଅଗଣାରେ ଅଦୃଶ୍ୟ ହୋଇଗଲା । ପଛର ସେ ଲୋକଟା ପ୍ରଥମ ବ୍ୟକ୍ତି ଗଳି ଭିତରକୁ ପଶିବାର ଦି ଚାରି ମିନିଟ୍ ପରେ ଯୁଁଠି ଶୋଇଥିଲା, ସେଠାରୁ ଉଠି ଗଳି ମୁହଁକୁ ଆସିଲା ଓ କୃଷ୍ଣମୂର୍ତ୍ତି କାନ୍ଥର ଉହାଡ଼ରେ ରହି ବେକ ଲମ୍ବେଇ ଦେଖିଲା ବେଳକୁ ପ୍ରଥମ ବ୍ୟକ୍ତି ପାଚିରୀ ଶିଖକୁ ଉଠି ସାରିଲାଣି, ସେ ଅଗଣା ଭିତରେ ଅଦୃଶ୍ୟ ହୋଇଗଲେ ଏ ଲୋକଟା ସେଇ ଯାଗାକୁ ଯାଇ ତା'ର ପାଖରୁ ଗୋଟିଏ ଛୋଟ ଟର୍ଚ୍ଚ ବାହାର କଲା ଓ ତା'ର ସରୁ ମାତ୍ର ତୀବ୍ର ଆଲୁଅକୁ ହାତ ଦେଇ ବନ୍ଦ କରି ସେଇ କ୍ଷୀଣ ଆଲୁଅରେ କାନ୍ଥର ଅବସ୍ଥା ଦେଖିନେଲା । ସେଇ ପଥର ସନ୍ଧି ଖୋଲ, କାନ୍ଥରେ ଘଷି ହୋଇ ଯାଉଥିବା ଚିହ୍ନ, ଖୋଲ ଭିତର ମାଟି ଚିହ୍ନ ସବୁ । ତାପରେ ସେ ମଧ୍ୟ ସେଇ ଖୋଲରେ ଗୋଡ଼ ଦେଇ ପାଚିରୀ ଉପରକୁ ଉଠିଲା । ପାଚିରୀମଥା ଉପରେ ଉଣ୍ଡି କ'ଣ ଦେଖିଲା କେଜାଣି, ତା'ପରେ ସେ ଅତି ଧୀରେ ଓହ୍ଲାଇ ପଡ଼ି ତରବର ହୋଇ ନିଶବ୍ଦରେ ପଳାଇଗଲା । ତା'ର ପ୍ରାୟ ପାଞ୍ଚ ମିନିଟ୍ ପରେ ପ୍ରଥମ ବ୍ୟକ୍ତିଟା ମଧ୍ୟ ଅଗଣା ଭିତରୁ ବାହାରି ଆସିଲା ଓ ଗାଁ' ଦାଣ୍ଡର ଅନ୍ଧାରରେ ମିଶିଗଲା ।



## ଦଶ

ତହିଁ ଆର ଦିନ ସକାଳ ପ୍ରାୟ ୭ଟା ବେଳ ହେବ । ଗୋଟାଏ ସାଇକେଲ ଚଢ଼ି ଗଦାଧର ବ୍ରହ୍ମପୁର ଆଡୁ ଆସି ଗାଁ' ଇସ୍କୁଲ ଘରେ ପହଞ୍ଚିଲେ । ସେତେବେଳେ ଦାରୋଗା ବାବୁ ଉଠି ଦାନ୍ତ ମୁହଁ ଧୋଇ ଭିତରେ ବାରଣ୍ଡାରେ ଚକା ମାଳିଟେ ପକାଇ ବସି ଯାଇଚନ୍ତି । ସାମନାରେ ଗୋଟିଏ

ଜଳଖିଆ ଯାଗା ଖୋଲା ହୋଇ ଥୁଆ ହେଇଚି । ସେଥିରେ କିଛି ବାସି ପୁରୀ, ବାସି ଆଳୁଭଜା ଓ କିଛି ମିଠେଇ ଅଛି । ସେ ସବୁ ଗୋଟି ଗୋଟି କରି ପକାଉଛନ୍ତି ପାଟିକି । ଗଦାଧର ଭିତରକୁ ପସି ଆସି ଏସବୁ କାଣ୍ଡ କାରଖାନା ଦେଖି ମୁହଁ ବିକଟାଳି ଦେଇ କହିଲେ, 'ହା, ଭଗବାନ !' ଦାରୋଗା ବାବୁଙ୍କ ଦୃଷ୍ଟି ଜଳଖିଆ ଜାଗାରୁ ଉଠିଯାଇ ତାଙ୍କ ଉପରେ ପଡ଼ିଲା । କହିଲେ – 'ଏଇ ଯେ ଗଦାଧର ବାବୁ, ଆସନ୍ତୁ, ଆସନ୍ତୁ, ଖଣ୍ଡେ ଅଧେ ହେଉ । ବାସି ଜିନିଷଗୁଡ଼ାକ କିନ୍ତୁ । ଥଣ୍ଡା ହୋଇଗଲାଣି ।'

ଗଦା – ତଥାପି ତୁମର ଚାଲିଚି ଏଡ଼ିକି ସକାଳୁ । ଦାନ୍ତ ଘଷିବାକୁ ସମୟ ପାଇନ ବୋଧହୁଏ ।

ରାଧିକା ପାଟିରେ ଗୋଟିଏ ପୁରୀ ଓ ଆଳୁଭଜା ଭର୍ତ୍ତି କରି ଗାଉଁ ଗାଉଁ ହୋଇ କହିଲେ, 'ନାଇଁ, ଆଜ୍ଞା, ଦାନ୍ତ ଘଷିଚି । ଦାନ୍ତ ନ ଘଷି କରି ଖାଉଚି କ'ଣ ପିଲା ହେଇଚି ?'

ଗଦା – ତା ନିଶ୍ଚୟ ନୁହେଁ, ପିଲା ନୁହେଁ, ଶିଶୁ । ତୁମ ପେଟକୁ କ'ଣ ଏଡ଼େ ସକାଳୁ ଏଡ଼ିକି ଭୋକ କଲାଣି ? ଧନ୍ୟ ତମେ, ଧନ୍ୟ ତୁମର ପେଟ । ଆଉ ତୁମର ଇନିସ୍‌ପେକ୍ଟର ବାବୁ ?

ରାଧିକା – (ଘୁଙ୍ଗୁଡ଼ି ମାରିବାର ଅଭିନୟ କରି ତା ପରେ ଜିଭ କାମୁଡ଼ି ପକାଇଲେ) ନାଇଁ, ଆଜ୍ଞା, ସେ କିଛି ନୁହେଁ । କାଲି ଅନୁସନ୍ଧାନ ସାରି, ଅନୁସନ୍ଧାନ ରିପୋର୍ଟ ହେରିକା ଲେଖି ଡେରି ହୋଇ ଗଲାକିନା, ସେଇଥି ପାଇଁ –

ଗଦା – ଥାଉ, ଥାଉ, ଆଉ ସଫେଇ ହେବା ଦରକାର ନାହିଁ । ମୁଁ ସବୁ ଜାଣେ । ତା'ପରେ ଆଉ ସବୁ କ'ଣ ଅନୁସନ୍ଧାନ କଲ ? ବିଷ କୁଠୁ ଆସିଲା ? ତା'ର କିଛି ପତ୍ତା ମିଳିଲା ?

ରାଧିକା – କିଛି ନାଇଁ, ଆଜ୍ଞା, କିଛି ନାଇଁ । ଗାଁ' ଗୋଟାକ ଯାକ ପିଲା ବଡ଼ ମାଇପେ ସମସ୍ତଙ୍କୁ ଜେରା କରି ସାରିଲୁଣି । ଖାଲି ଚକ୍ଷୁକୁଟା, ଗୋଟିଏ ହୋଇ ଚାଉଳ ମୁଣ୍ଡିବି ମିଳିଲାନି । ଇନିସ୍‌ପେକ୍ଟର ବାବୁ ଆମର ଟିକିଏ ଧର୍ମଭୀରୁ ମାନେ ଧର୍ମପ୍ରାଣ ଲୋକ କିନା ! ମୁଁ ହୋଇଥିଲେ କେତେବେଳୁ –

ଗଦା – ଗୋଟାଏ ବିଷ ଶିଶି କୁଠୁ ଆଣି ଥୋଇଦେଇ ଧରେଇ ଦିଅନ୍ତଣି, ଏଇନା ?

ରାଧିକା – ଆଜ୍ଞା, ସତରେ କହନ୍ତୁ ଭଲା, ଯେବେ ମୁଁ ଜାଣିଲି ଯେ ଆପଣ ପ୍ରକୃତ ଦୋଷୀ, ଅଥଚ ସାମାନ୍ୟ ଟିକିଏ କଥା ଲାଗି ଆପଣ ଖସି ଯାଉଛନ୍ତି, ତାହାଲେ ସେଇ କଥା ଟିକକ ଯୋଗାଇ ଦେବାର ଦୋଷ କ'ଣ ? ଧରନ୍ତୁ ଦି'ଟା ଲୋକ ଗୋଟେ ଘରେ ଚୋରି କରୁଥିଲେ ସିନ୍ଧି କାଟି । ମୁଁ ଗସ୍ତରେ ଗଲା ବେଳକୁ ଜଣେ ସିନ୍ଧି କାଠି ଓ ଚୋରା ମାଲ ଘେନି ଚାଲିଯାଇଛି ; ଆଉ ଜଣକ ଘର ଭିତରୁ ବାହାରି ଆସୁଚି । ମୁଁ ତାକୁ ଗୋଡ଼ାଇଲି ଓ ଗାଁ ମଝିରେ

ଧଇଲି । ମୁଁ ଜାଣେ ସେଇଟା ପୁରୁଣା ଚୋର । ମୁଁ ଦେଖିଚି, ସେ ଚୋରି ଘରୁ ବାହାରି ଆସୁଥିଲା । ମୁଁ ତାକୁ ଗୋଡ଼େଇଲି ଓ ଗାଁ' ମଝିରେ ଧଇଲି । କିନ୍ତୁ ମୋ ଛଡ଼ା ଆଉ ସାକ୍ଷୀ ତ ନାହିଁ । ମୁଁ ଯେବେ ଜଣେ ଦି'ଜଣ ସାକ୍ଷୀ ଠିଆ କରାଇ ଦିଏ ଯେ ସେ ଲୋକଟା ଘର ଭିତରୁ ବାହାରି ଆସିବାର ସେମାନେ ଦେଖିଚନ୍ତି ଓ ତା' ଅଣ୍ଟାରେ ଏକ ସିନ୍ଧିକାଠି ଗୁଞ୍ଜି ଦେଇ କୁହେ ଯେ ତା'ଠାରୁ ମୁଁ ସେତେବେଳେ ସିନ୍ଧି କାଠି ପାଇଲି ବୋଲି, ତା ହେଲେ ଅନ୍ୟାୟ କ'ଣ କଲି ? ଲୋକଟା ତ ଚୋର, ଚୋରି କରୁଥିଲା । ସେ ଯେବେ ଏ ପଦେ ଅଧେ ସାକ୍ଷ୍ୟ ବିନା ଛୁଟି ପାଇଯାଏ ପୁଣି କେତେ ଘରେ ଚୋରି କରିବ । ସେ କ'ଣ ଭଲ ନା, ଏଇ ପଦେ ଅଧେ ତିଆରି ସାକ୍ଷ୍ୟ ଭଲ ?

ଗଦା – ଆପଣଙ୍କର ଯୁକ୍ତି ଅକାଟ୍ୟ । ତେବେ ଗୋଟାଏ କଥା କ'ଣ କି ମିଛ ମିଛ । ସତ ସତ । ଉଦ୍ଦେଶ୍ୟ ନେଇ ତ ମିଛଟା ସତ ହୋଇ ଯିବନି ? କି ସତଟା ମିଛ ହୋଇ ଯିବନି । ଲୋକ ଥରେ ମିଛ କହିବାକୁ ଆରମ୍ଭ କଲେ ମିଛଟା ଅଭ୍ୟାସ ହୋଇଯିବ । ତେଣିକି ଉଦ୍ଦେଶ୍ୟର ହିସାବ ନ ରଖି ସେ ମିଛ କହିବା ଆରମ୍ଭ କରିବ । ସେତେବେଳେ ? ତା'ପରେ ମିଛ କହିବା ବଡ଼ ଦୋଷ ନା ଚୋରି କରିବା ବଡ଼ ଦୋଷ ? ମତେ ଯେବେ ପଚାର ମୁଁ କହିବି ମିଥ୍ୟାଚାର ଚୌର୍ଯ୍ୟ ବୃତ୍ତିଠାରୁ ବଡ଼ ପାପ, ଢେର । ଲଘୁ ପାପକୁ ଧରିବା ପାଇଁ ଗୁରୁ ପାପ କରିବାରେ ବାହାଦୁରି ନ ଥାଏ ରାଧିକା ବାବୁ ।

ରାଧିକା – କିନ୍ତୁ ଏଥିରେ ମିଥ୍ୟାଚାର ଆସିଲା କୁଠୁ ? ମିଥ୍ୟାଚାର ତ କିଛି ମୁଁ ଦେଖୁନି; ଏ ଗୋଟାଏ ଖେଳ, ବୁଦ୍ଧିର ଓ ଚାଲାକିର ।

ଗଦା – ତୁମର ନୈତିକତା ମୋ ବୁଦ୍ଧିର ବାହାରେ ରାଧିକା ବାବୁ । ତେବେ ଗୋଟାଏ କଥା କହିବି । ସତକୁ ଖୋଜି ବାହାର କରିବାରେ ଯେ ଆନନ୍ଦ ଓ ଆତ୍ମତୃପ୍ତି, ମିଛର ସାହାଯ୍ୟରେ ସତର ଶେଷ ବିକାଶରେ ତାହାର ଶତାଂଶ ମଧ ନ ଥାଏ ।

ରାଧିକା – କ'ଣ କହିଲେ, ବୁଝି ପାରିଲିନି । ଆପଣ ତ ବେଳେ ବେଳେ ବେଶ୍ ସଫା ସଫା କଥା କହନ୍ତି । ବେଳେ ବେଳେ ଆପଣଙ୍କ କଥା ଗୁଣିକ ପୁଣି ଗୋଳମାଳିଆ ।

ଗଦା – ତା' ବୁଝି ପାରିବେନି । ଆଚ୍ଛା, ଆପଣଙ୍କ ଇନିସ୍‌ପେକ୍ଟର ସାହେବଙ୍କ ପହୁଡ଼ ଭାଙ୍ଗିବ କେତେବେଳେ ?

ରାଧିକା – ହଁ, ଉଠିବେ ନାହିଁକି, ଉଠିବେ ଯେ । କାମ ବହୁତ ଗୁଡ଼ାଏ ଥିଲା ।

ଗଦା – ତେବେ ଉଠେଇ ଦଉ ନାହାନ୍ତି ?

ରାଧିକା – ମୁଁ ଉଠେଇ ଦେବି ? ଖାସା କହିଲେ ତ ? କହୁ ନାହାନ୍ତି ଚାକିରି ଖଣ୍ଡ ଇସ୍ତଫା ଦେଇ ଚାଲି ଯାଉନୁ କାହିଁକି ବୋଲି ?

କେତେବେଳୁ ଜଳଖିଆ ଯାଗାରେ ଯାହା କିଛି ଥିଲା ସରିଗଲାଣି । ତଥାପି ଖାଲି ଗିନାକୁ ହାତରେ ବୁହେ ଅଣ୍ଡାଳି ପକାଇଲେ । ତା'ପରେ ହତାଶ ହୋଇ କହିଲେ, ଆରେ ସବୁ ସରିଗଲା ? ଆପଣ ତ ବଡ଼ ଗୋଳମାଳ କରିଦେଲେ । ଆପଣଙ୍କ ସାଙ୍ଗରେ କଥା ହେଉ ହେଉ ଅଣହେଙ୍କରେ ସବୁତକ ଖାଇ ଦେଲି । ଇଲେ ଉଠିଲେ ଜଳଖିଆ ! ଦେବି କ'ଣ ତାଙ୍କୁ । କିନ୍ତୁ ମାଲ ତ ଥିଲା ବି କମ୍ ।'

ଗଦା – ଦୁଃଖ କରନି ରାଧିକା ବାବୁ । ତୁମ ଇନିସ୍‌ପେକ୍ଟରଙ୍କ କଥା ଭାବୁଚନା ? ମୋ ସାଥିରେ କିଛି ଆଣିଚି, ହୋଇଯିବ ସେଥିରେ ଆମ ଦିହିଁଙ୍କର ।

ରାଧିକା – ଆପଣ ଆଣିଚନ୍ତି ? କ'ଣ ଆଣିଚନ୍ତି, ଦେଖେଁ ।

ଗଦା – ଦେଖ, କିନ୍ତୁ ଦେଖୁ ଦେଖୁ ନଜର ଲଗେଇ ଦିଅନି । ତା'ହେଲେ ଦି'ଟା ପ୍ରାଣୀ ଯେ ସୁଖା ଖଡ଼ଖଡ଼ ।

ସେ ଏତକ କହିଲା ବେଳକୁ ରାଧିକା ଯାଇ ସାଇକେଲ ପାଖରେ । ଗଦାଧର ତାଙ୍କୁ ଟିକିଏ ଓ ସାଇକେଲରେ ବନ୍ଧା ହୋଇଥିବା ଜଳଖିଆ ଜାଗାକୁ ଟିକିଏ ଚାହିଁଲେ । ତା'ପରେ କହିଲେ – 'ହାୟରେ ଗଦାଧର । ଆଜି ତୋ ଭାଗ୍ୟରେ ଡାଳେ ପାଣି ।' ଏହା କହି ସେ ଘର ଭିତରକୁ ଗଲେ । ସେଇ ବେଞ୍ଚ ଯୋଡ଼ା ଖଟ ଉପରେ ମନମୋହନ ସିମିତି ଚିତିପଟାଙ୍ଗ ହୋଇ ପଡ଼ିଚନ୍ତି । ତାଙ୍କର ପେଟଟା ସିମିତି ପବନ ବନ୍ଧା ବେଲୁନ୍ ଭଳି ପଡ଼ୁଚି ଉଠୁଚି । ତାଙ୍କ ଘୁଙ୍ଗୁଡ଼ିରେ ସିମିତି ଘରଟା ଦୋହଲି ଉଠୁଛି । ଗଦାଧର ଗୋଟିଏ ଚୌକି ନେଇ ବସି ବଡ଼ ଯତ୍ନରେ ତାଙ୍କ ପେଟ ଉପରେ ହାତ ବୁଲାଇବାକୁ ଲାଗିଲେ । ମନମୋହନଙ୍କ ଦେହ ଶୀତେଇ ଉଠିଲା । ସେ ଆଖି ଖୋଲିଲେ, ଯେପରି ସେ ମୋଟେ ଶୋଇ ନାହାନ୍ତି । ଚାହିଁକରି ପଡ଼ିଥିଲେ ସତେ ଅବା । କହିଲେ, 'ଏ କ'ଣ ହଉଚି ? କୁତୁକୁତୁ ଲାଗୁଚି ପରା । ସକାଳୁଟାରୁ ଏ ଭଡ଼ଙ୍ଗ କିଆଁ ?'

ଗଦା – ମୁଁ ତୁମକୁ ଗୋଟାଏ କଥାରେ ବାହାଦୂରି ଦିଏ ମନମୋହନ । ଏତେ ବଡ଼ ନିଦରୁ ଉଠିବା ସାଙ୍ଗେ ସାଙ୍ଗେ ଏପରି ସତେଜ୍ ହୋଇଯିବା, ମୁଁ ଆଉ କାହାରିଠି ଦେଖିନି ।

ମନ – ହୁଁଃ, ଦେଖିନତ ଏବେ ଦେଖ । କେଇଟା ବାଜିଲାଣି କି ? ତୁ କେତେବେଳେ ଆଇଲୁ ?

ଗଦା – ବାଜିଲାଣି ଏଇ ଦେଖ ଯେ ୭ଟା ୪୮ ମିନିଟ୍ ୩୫ ସେକେଣ୍ଡ; ଆଉ ମୁଁ ଆସିଲାଣି ଠିକ୍ ଠିକ୍ ୨୦ ମିନିଟ୍ ୨୫ ସେକେଣ୍ଡ ହେବ ।

ମନ – ଏଁ, ତୁ କ'ଣ କହିବାକୁ ଚାହୁଁ ଯେ ଇଲେ ବେଳ ପ୍ରାୟ ୮ଟା ?

ଗଦା – ମୁଁ କହିବାକୁ ଚାହିଁନି । ତୁ ପଚାରିଲୁ ବୋଲି କହୁଚି ।

ମନ - ଆରେ ଧେତ୍, ମତେ ଟିକିଏ ଆଗରୁ କିଏ ଡାକି ଦେଲେନି, ସେ ପେଟୁ ରାଧିକା ବୋଧହୁଏ ଖାଇବାରେ ବ୍ୟସ୍ତ ।

ଗଦା - ତା ଠିକ୍ ଅନୁମାନ କରିନୁ, ବ୍ୟସ୍ତ ତ କିଛି ନାହିଁ, ବେଶ ଧୀରେ ସୁସ୍ଥେ ଖାଇ ଚାଲିଛନ୍ତି ।

ମନ - ଉଠ, ତୋର ଭଡ଼ଙ୍ଗ ଶିଣୁବାକୁ ମୋର ବେଳ ନାହିଁ । କେତେ କାମ ଯେ ପଡ଼ିଚି । କେହି ତ କିଛି କରିବେନି । ଯାହା ନ କରିବି ତା' ନ ହବ । ଇଲେ ପୁଲିସ ସାହେବ ଆସି ପହଞ୍ଚିବେ ।

କହି ତରବର ହୋଇ ସେ ଖଟରୁ ଉଠି ଅଗଣାକୁ ଗଲେ । ଲାଗିଲା ଡକାହକା ବକାବକି ପାଟିଗୋଳ । ରାଧିକା ବାବୁ ପାଟିରେ ପାଟିଏ କ'ଣ ପୂରେଇଚନ୍ତି । ମୁହଁଟା ପାପୁଲି ପଛରେ ପୋଛି ପୋଛି କଡ଼ଛଡ଼ା ଦେଇ ଖସିଯିବା ଉପରେ ଥିଲେ, ମନମୋହନଙ୍କର ନଜର ପଡ଼ିଗଲା । ସେ କହିଲେ, 'ଏ ଦାରୋଗା ବାବୁ, କୁଆଡ଼େ ବିଲେଇ ମାଛ ହାଣ୍ଡିରୁ ମାଛ ଖଣ୍ଡେ ଘିନି ପଳେଇଲା ଭଳି ପଳଉଚ ? କ'ଣ ସବୁ କରିଚ ମତେ କହ ତ ? ତୁମେ ଜାଣ, ସାହେବ ଇଲେ ଆସି ପହଞ୍ଚିବେ ? ତୁମେ ପୋଷାକ ପିନ୍ଧିନ କିଆଁ ? ଏତେବେଳେ ଯାଏଁ ? ମୋର ସେ ରିଡରଟା କୁଆଡ଼େ ଗଲା ? ଡାକ ତାକୁ, ଏ ପହରା, ପହରା ସବୁ କୁଆଡ଼େ ମଲେ ?' ଏତିକି ବେଳେ ପହରା ସିପାହି ଆସି ସଲାମ କରି ଖଣ୍ଡିଏ ଚିଠି ବଢ଼େଇ ଦେଲା । ବିଚାରାର ହାତ ଥରୁଚି କିନ୍ତୁ । ମନମୋହନ ପଚାରିଲେ, 'ସେଇଟା କ'ଣ ?'

ପହରା - ଆଜ୍ଞା ଗୋଟାଏ ଚିଠି ।

ମନ - କିଏ ଦେଲା ?

ପହରା - କିଏ ସେ ଗୋଟାଏ ପିଲା ଆଣି ଦେଲା । କହିଲା ଇନିସ୍‌ପେକ୍ଟର ସାହେବଙ୍କୁ ଦବ ।

ମନମୋହନ ଚିଠି ଖଣ୍ଡ ଝାମ୍ପି ନେଇ ପଢୁ ପଢୁ ତାଙ୍କ ଆଖି ଫାଡ଼ି ହୋଇଗଲା । ଭ୍ରୂଲତା ଉପରକୁ ଉଠିଗଲା । ସେ କହିଲେ, 'ଏଁ, ଏଇଟା କ'ଣ ? କୁଆଡ଼େ ଗଲା ସେ ଗଦା । ତାର କୀର୍ତ୍ତି ବୋଧହୁଏ । ଗଦା, ଗଦା ?'

ଗଦାଧର - 'ଗଲି ହଜୁର' କହି ସିପାହୀମାନଙ୍କ ଭଙ୍ଗିରେ ଆସି ଗୋଡ଼ ବାଡ଼େଇ ସଲାମ କରି ଠିଆହେଲେ ।

ମନ - ଆଚ୍ଛା ତୋର ମାଙ୍କଡ଼ାମି କ'ଣ ସବୁଠି ସବୁବେଳେ ଚାଲିଥିବ ? ଏଇଟା କ'ଣ ଯେ, ଏଁ ?

ଗଦା - ଏଇଟା, କାଗଜ ଖଣ୍ଡେ ତ, ହଜୁର ।

ମନ - ପୁଣି ସେଇ ଫାଜିଲାମି । ଆରେ ପଚାରୁଚି ଏ ଚିଠି ମୋ ପାଖକୁ କିଏ ଲେଖିଲା, ତୁଇ ନା ?

ଗଦା - ମୁଁ ତ କିଛି ଚିଠି ଦେଇନି ।

ମନ - କିନ୍ତୁ, କିନ୍ତୁ ତୁଇନା କାଲି କହୁଥିଲୁ, ଆଜି ଗୋଟାଏ ଚିଠି ଆସିବ, ସେଥିରେ ସେ ଚାକର ଚାକିରାଣୀ କୁଠି ବିଷ ରଖିଛନ୍ତି, ଲେଖାଥିବ ବୋଲି ?

ଗଦା - ଟା କହିଥିଲି । କିନ୍ତୁ ମୁଁଇ ସେ ଚିଠିଟା ଦେବି ବୋଲି ତ କହି ନ ଥିଲି ।

ମନ - ତୁ ଯେବେ ଦେଇନୁ, ତାହେଲେ ତୁ ଆଗତୁରା ଜାଣିଲୁ କିମିତି ?

ଗଦା - ତୁମ ରାଧିକା ବାବୁ କେତେବେଳେ ଖାଇବା ଦରକାର ଯିମିତି ଜାଣନ୍ତି, ଆଉ ତୁମେ କେତେବେଳେ ଶୋଇବା ଦରକାର ଯିମିତି ଜାଣ, ମୁଁ ଏଇଟା ବି ସିମିତି ଜାଣିଲି ।

ମନ - ଧେତ୍ । ସତରେ ଟାପୁରା ଛାଡ଼ । କଥାଟା କ'ଣ କହ ଦେଖି । ଆମ ଦାରୋଗା, ସିପେଇ ତ ଯାଇ ତାଙ୍କ ଘର ଖିନିଭିନି କରି ତଲାସ କରି ଆସିଲେ କିଛି ମିଳିଲାନି । ଆଉ ଏ ଚିଠିରେ ଯେ ଲେଖା ଅଛି ସେଇ ଘରକୁ ଗଲେ ଏବେ ମିଳିବ ତାର ଅର୍ଥ ?

ଗଦା - ତୁମ ଦାରୋଗା ସିପାହି ତ ଯାଇ ଖପରାଳି ଘର ଚାଳ ଖପରା ସବୁ ଟିକି ଟିକି କରି ଖୋଜି ନ ଥିଲେ ।

ମନ - ଓଃ, ଛପର ଖପରା ଭିତରେ ଅଛି, ତାବି ତୁ ଜାଣୁ । ତା' ହେଲେ ? ଛପରର କୁ ଅଁଶରେ ଅଛି ତା ମଧ ଜାଣୁ ବୋଧହୁଏ ।

ଗଦା - ହୁଁ, ଠିକ୍ ଦୁଆର ସାମନା ଯୁ ଖପରା ଧାଡ଼ିଟା ସେଇଥିରେ, ଏଁ, ଦେଖି ହଁ, ଓଳିପଟକୁ ନିଶ୍ଚୟ ।

ମନ - ତୁ ନିଶ୍ଚେ ଏ ଚିଠି ଲେଖିଚୁ । ତୋରି ଏ କୀର୍ତ୍ତି । ମତେ ଠଙ୍ଗ କରିବା ପାଇଁ ତୋର ଏ ଭଡ଼ଙ୍ଗ । ମୋର ଯିମିତି ଠଙ୍ଗ ହେବା ପାଇଁ, ଆଉ କିଛି ନାହିଁ, ତା' ଉପରେ ତୋର ଏ ବୋଝ ।

ଗଦା - ମନୁ ଭାଇ, ମୁଁ ସତ କହୁଚି ମୁଁ ଏ ଚିଠି ଲେଖିନି । ଆଉରି ବେଶୀ ସତ କହୁଚି, ମୁଁ ମଧ ସେ ବିଷ ସେଠି ରଖିନି । ତୁମ ଧର୍ମଭୀରୁତାକୁ ଡରୁ ନ ଥିଲେ, ଯେ ଦାରୋଗା ହୁଏତ ରଖି ଦେଇଥାନ୍ତେ । କିନ୍ତୁ ବିଚାରା, ସେ ଡରି ମରି ହଇରାଣ । ସେ ବି ରଖିନି । କିନ୍ତୁ ଏଇଟା ସତ କଥା ଯେ, ବିଷ ସେଠି ଅଛି, ତୁମେ ଖୋଜିଲେ ପାଇବ ।

ମନ - ଯାଉଚି ? ମୁଁ ତ କିଛି ବୁଝୁନି, ଏ ପହରା ? ପହରା ?

ପହରା - 'ହଜୁର,' କହି ଧାଇଁ ଆସି ସଲାମ କରି ଠିଆ ହେଲା ।

ମନ - ଏ ଚିଠି କିଏ ଆଣିଥିଲା ?

ପହରା - ଆଜ୍ଞା, ଗୋଟାଏ ପିଲା ।

ମନ - ତା' ନା କ'ଣ ? ଘର କୁଠି ?

ପହରା - ଆଜ୍ଞା, ମୁଁ ତ ପଚାରିନି ।

ମନ - ତା' କିଆଁ ପଚାରିବ, ଇନିସ୍‌ପେକ୍ଟରଟା ଗାଁ ଦାଣ୍ଡର ଖାନିଙ୍ଗି ମାଇକିନା । ତା' ପାଖକୁ ଯେ ଇଚ୍ଛା ସେ ଚିଠି ଦେଇଦବ, ଆଉ ତୁମେ ତାକୁ ରଖିନବ କିଛି ନ ପଚାରି । ତାକୁ ଦେଖିଲେ ଚିହ୍ନି ପାରିବ ?

ପହରା - ଆଜ୍ଞା, ହଜୁର ।

ମନ - ଆରେ ବାବା ଠିକ୍ ଠିକ୍ ଜବାବ ଦିଅ । ଆଜ୍ଞା, ହଜୁର ଶୁଣିବାର ବେଳ ମୋର ଅଛି ?

ପହରା - ଆଜ୍ଞା, ନିଦରୁ ଉଠିଥିଲି । ଠିକ୍ ଦେଖି ପାରିନି ।

ମନ - ନିଦରୁ ଉଠିଥିଲ ବୋଲି କ'ଣ ଆଖି ଦି'ଟା ବନ୍ଧା ଦେଇ ଆସିଥିଲ କାହାକୁ ? ବୋକା, ଗଧ । ତମେ ସସ୍‌ପେଣ୍ଡ ହେଲ । ଏ ରିଡ଼ର, ଲେଖ ପ୍ରସିଡିଙ୍ଗ୍ । ଏଇ ଯେ ମଟର ହର୍ଣ୍ଣ ନା ? ଏ ପହରା, ମୋର ପୋଷାକ, ଆଣ ବେ ଜଲଦି ।

ଲାଗିଗଲା ଗୋଟାଏ ପାଲା, ଧାଁ ଧପଡ଼, ଏପଟ ସେପଟ । ଯାହା ହେଉ ମଟରଟା ଆସି ଠିଆ ହେଲା ବେଳକୁ ଇନିସ୍‌ପେକ୍ଟର, ପହରା, ରିଡ଼ର ଓ ଦାରୋଗା କୁଣିସି ମତେ ବେଶଭୂଷା ହୋଇ ବାହାରି ପଡ଼ିଲେ । ଇନିସ୍‌ପେକ୍ଟର ସଭା ଆଗରେ । ମଟର ଦୁଆରଟା ସେ ଖୋଲି ଦେଇ ସାହେବଙ୍କୁ ବିଧିବଦ୍ଧ ସଲାମଟାଏ କରି ପକାଇଲେ । ସାହେବ ମଟରରେ ବସି ସିଗାରେଟ୍ ଟାଣୁ ଟାଣୁ କହିଲେ, 'ତା'ପରେ ଇନିସ୍‌ପେକ୍ଟର, କିଛି ପତ୍ତା ମିଳିଲା ?'

ମନ - ହଁ, ସାର୍, ଏଇ ଚିଠିଟା ଇଲେ ପାଇଲି କହି ବଢ଼ାଇ ଦଉଥିଲେ । ସାହେବ ବିରକ୍ତ ହୋଇ କହିଲେ, 'କ'ଣ କହୁନ କାହିଁକି ? ଏ ଚିଠିରେ କ'ଣ ଅଛି ?'

ମନ - ଏଟା ଅନାମିକା ଚିଠି । କିଏ ଲେଖିଚି ଯେ ସେମାନଙ୍କ ଶୋଇଲା ଘର ଖପରରାଳି ଚାଳର ଗୋଟା ଖପରା ଭିତରେ ବିଷ ଶିଶି ଲୁଚା ହୋଇଛି ।

ସାହେବ - ଖୋଜିଲଣି ?

ମନ - ନା, ବାହାରୁଥିଲି ।

ସାହେବ - ଏଟା ବିଶ୍ୱାସ କରୁଚ ?

ମନ - ବିଶ୍ୱାସ ତ ହଉନି, ତେବେ ଗଦାଧର କହୁଚି -

ସାହେବ - ଗଦାଧର ? ଓ ତୁମର ବନ୍ଧୁ ସରଲୋକ୍ ହୋମ୍ସ ଗଦାଧର, କ'ଣ କହୁଛନ୍ତି ସେ ?

ମନ - ଜିନିଷ ସେଇଠି ଠିକ୍ ମିଳିବ ?

ସାହେବ - ସେ କିମିତି ଜାଣିଲେ ?

ମନ - କହୁନି, ପଚାରିଥିଲି, ଗଦାଧର, ଗଦାଧର ।

ସାହେବ - କାହିଁକି ତାଙ୍କୁ ବ୍ୟସ୍ତ କରିବ । ଆଗ ଆସତ ଦେଖିବା ଚିଠିଟା ଠିକ୍ କି ନା । ଆସ ମଟର ଭିତରକୁ । ଦାରୋଗା କାହିଁ ?

ଦାରୋଗା ପଛରେ ଉଣ୍ଡି ରହିଥିଲେ । ସାମ୍‌ନାକୁ ଆସି ସଲାମ ବଜାଇ ଠିଆ ହେଲେ । ପୁଲିସ ସାହେବ ଅଧୀର ହୋଇ କହିଲେ, 'ଓ, ବସ ବସ, ସିପାହିମାନେ ଆଗରେ ଯାନ୍ତୁ ।' ସିପାହିମାନେ ଆଗେ ଆଗେ ଧାଇଁଲେ । ମଟର ଚାଲିଲା, ମଟର ଟପିଲା ସିପାହିମାନଙ୍କୁ । ସିପାହିମାନେ ତଥାପି ଧାଇଁଚନ୍ତି । ମଟର ଅଟକିଲା କୃଷ୍ଣମୂର୍ତ୍ତିଙ୍କ ଦାଣ୍ଡ ଦୁଆରେ । ଦାରୋଗା ଓ ଇନିସ୍‌ପେକ୍ଟର ମଟରରୁ ଓହ୍ଲାଇଲେ । ପୁଲିସ ସାହେବ ବସି ରହିଥାନ୍ତି । କହିଲେ, 'ଗଦାଧର ବାବୁ କାହାନ୍ତି ? ତାଙ୍କୁ ଆଣିଲନି ପରା ! ତୁମେ ସବୁ ନିତାନ୍ତ ଅକାମିକା । ସେ ସିପାହି ଗୁଡ଼ାକ କୁଆଡ଼େ ଗଲେ ଏତେବେଳ ଯାଏ ? ଏଇ ଯେ - ଏ ସିପାହି, ତୁମକୁ କୁହାଗଲା, ଆଗରେ ଆସିବାକୁ । ଏତେ ଡେରି କାହିଁକି କଲ ? ଇନିସ୍‌ପେକ୍ଟର ଏମାନଙ୍କୁ ଆଜି ପରେଡ୍ ଶାସ୍ତି, ଆଉ ଡେରି କାହିଁକି ?'

ଇନିସ୍‌ପେକ୍ଟରେ - ଆଜ୍ଞା, ସାକ୍ଷୀ । ଏ ସିପାହି, ଯା କାର୍ଯ୍ୟୀ ବାବୁଙ୍କୁ ଡାକି ଆଣ, କରଣକୁ ବି ।

ସାହେବ - ତୁମ ଗଦାଧରକୁ ବି ଡାକି ପଠାଅ, ନା, ଏ ଅର୍ଦ୍ଦଳି, ତୁମେ ମଟରଟା ନେଇ ଯାଅ, ଗଦାଧରଙ୍କୁ ଡାକି ଆଣିବ ।

ସାହେବ ଓହ୍ଲେଇଲେ । ମଟର ଗଲା । କାର୍ଯ୍ୟୀ ଆସିଲେ । କରଣ ଆସିଲେ । ଏମାନେ ଘରେ ପଶି ଚାକର ଚାକରାଣୀଙ୍କ ଶୋଇଲା ଘର ଦୁଆର ମଝି ସାମନା ଖପର । ନଳୀଗୁଡ଼ିକ ଖୋଜିଲେ । ସତକୁ ସତ ଓଳି ପାଖ ଗୋଟାଏ ନାଳି ଭିତରୁ କନାରେ ପୁଡ଼ିଆ ହୋଇ ଗୋଟିଏ ଚୋଟ ଶିଶି ବାହାରିଲା । ଏତେ ବେଳକୁ ଗଦାଧର ମଧ ଆସି ପହଞ୍ଚି ଗଲେଣି । ସାହେବ କହିଲେ, 'ହଁ ସାବଧାନ ! ଶିଶି ଦିହରେ ହୁଏତ ଆଙ୍ଗୁଠି ଛାପ ଥିବ, ଯେମିତି ନ ଲିଭେ ।'

ଗଦା – କିଛି ଛାପ ପାଇବେନି ଆଜ୍ଞା ସେଥିରେ ।

ସାହେବ – ଗଦାଧର ବାବୁ, ଆପଣଙ୍କ କଥାଗୁଡ଼ାକ ଶୁଣିଲେ ମନେ ହୁଏ ଆପଣ ଏ ମକଦ୍ଦମାରେ ଲିପ୍ତ । ସବୁ କଥା ଯେ ଆପଣ ଜାଣନ୍ତି କିପରି ?

ଗଦା – ଦେଖିଚି ଜାଣିବିନି ?

ସାହେବ – କ'ଣ ଦେଖିଚନ୍ତି ? ଏ ଶିଶି ଏଠାରେ ରହିବା ?

ସାହେବ – ତା' ହେଲେ ଆପଣ ସାକ୍ଷ୍ୟ ଦେବାକୁ ପ୍ରସ୍ତୁତ ଯେ ଏ ଚାକର ଚାକରାଣୀ ଦିଟା ଏ ଶିଶି ଏଠି ରଖିଥିଲେ ?

ଗଦା – ନାଁ, ମୋଟେ ପ୍ରସ୍ତୁତ ନୁହେଁ ।

ସାହେବ – ଦେଖିଚନ୍ତି, ପରା ! ତା ହେଲେ ସାକ୍ଷ୍ୟ ଦେବେନି କାହିଁକି ?

ଗଦା – ଶିଶିଟା ରଖିବାର ଦେଖିବା ଆଉ ଏ ଚାକର ଚାକରାଣୀ ସେ ଶିଶିଟା ରଖିଥିବାର ଦେଖିବା ଭିତରେ ଟିକିଏ ପ୍ରଭେଦ ରହି ଯାଉଛି ଯେ ସାହେବ ହଜୁର ।

ସାହେବ – ତୁମେ କ'ଣ ମୋ ସାଙ୍ଗରେ ଥଟ୍ଟା ଖେଳୁଚ ?

ମନ – ଗଦା, ଗଦା, ଟିକିଏ ସ୍ଥାନ କାଳ ପାତ୍ର ବିଚାର କରତ ? କାହା ଆଗରେ କ'ଣ କହୁଚୁ ।

ଗଦା – କାହିଁକି, ମୁଁ କ'ଣ ଏମିତି ବେଆଡ଼ଆ କହିଲି ହେ । ମୁଁ ତ ସତ କହିଚି ।

ସାହେବ – ତୁମର ମତଲବ ?

ଗଦା – କିଛି ନୁହେଁ ସାହେବ । ଶିଶିଟା ରଖା ହବାର ମୁଁ ଦେଖିଚି । ଏ ଚାକର ଚାକରାଣୀ ରଖିବାର ମୁଁ ଦେଖିନି ।

ସାହେବ – ଓ, ତା'ର ମାନେ, ଆଉ କେହି ରଖିବାର ଆପଣ ଦେଖିଚନ୍ତି ଏଇନା ?

ଗଦା – ଠିକ୍ ଠଉରେଇଚନ୍ତି ଆପଣ ସାହେବ । ଆପଣ ବଡ଼ ବିଚକ୍ଷଣ ।

ସାହେବ – ସେ କିଏ ଜାଣ ?

ଗଦା – ଦେଖିଚି, ଜାଣିବ ନି ?

ସାହେବ – କିଏ ସେ ?

ଗଦାଧର ଏଥରକ ଇଂରେଜିରେ କହିଲେ, 'ସାହେବ, ତୁମ ଭଳି ଅଭିଜ୍ଞ ଓ ବୁଦ୍ଧିମାନ କର୍ମଚାରୀ କି କ'ଣ ବୁଝେଇବା ଦରକାର ଯେ, ଗୋଟାଏ ପାଗଳ ନରହନ୍ତା ଗୋଟାଏ ମାରାତ୍ମକ

ବିଷ ଘେନି ଏ ଗାଁ'ରେ ନରକର ବିଭୀଷିକା ମେଲି ଦେଇଚି ? ମୁଁ ଯେବେ ସବୁ କଥା ଏପରି ପ୍ରକାଶ୍ୟ ଭାବରେ କହିଦିଏ ତା' ହେଲେ ସେ ସବୁ ତା କାନକୁ ଯିବାକୁ କେତେ ସମୟ ଲାଗିବ ?

ସାହେବ ଗମ୍ଭୀର ହୋଇ କହିଲେ, 'ମୁଁ ବୁଝିଚି, ବାବୁ ଧନ୍ୟବାଦ । ମୋର ବିଶ୍ୱାସ, ଆପଣଙ୍କ ଧାରଣା ହିଁ ଠିକ୍ ।' ତା ହେଲେ, ଯା ପରେ କ'ଣ ?'

ଗଦା – କିଛି ନୁହେଁ । ଆମର ଏପରି ଦେଖେଇବା ଯେପରି ଏ ବିଷ ମିଳିବାରେ ଆମର ବିଶ୍ୱାସ ଅଛି ଓ ଏହିଠାରେ ଏ ଅନୁସନ୍ଧାନର ଶେଷ । ତା'ପରେ ସମସ୍ତେ ବ୍ରହ୍ମପୁର ଫେରିଯିବା । ବାକି ସବୁ ସେଇଠାରେ ।

ସାହେବ – ଆଉ କିଛି ନାହିଁ ?

ଗଦା – ଅଛି, ମଟରରେ କହିବି ।

ତା'ପରେ ସାହେବ କହିଲେ, "ଇନିସ୍‌ପେକ୍ଟର; ତା' ହେଲେ ତ ଆମର ଅନୁସନ୍ଧାନ ସରିଲା ? ମକଦ୍ଦମାର ସବୁ ପ୍ରମାଣ ତ ପାଇ ଗଲେଇଁ । ଆଉ କାହିଁକି, ଚାଲ ଏଥର ବ୍ରହ୍ମପୁର । ତୁମେ ଏଇ ମକଦ୍ଦମାରେ ବହୁତ ସମୟ ଏ ଗାଁ'ରେ ବସି ବସି ମଉଜରେ କଟାଇ ଦେଲଣି । ତେଣେ କେତେ କାମ ଯେ ରହିଚି, ତା'ର କିଛି ହିସାବ ରଖିଚ ?" ଇନିସ୍‌ପେକ୍ଟର ହଡ଼ବଡ଼େଇ ଗଲେ । ସମସ୍ତେ ଚାଲିଲେ ଘରୁ ବାହାରି । ଗଦାଧର ଓ ପୁଲିସ୍ ସାହେବ ମଟରରେ ବସିଲେ । ସାହେବଙ୍କ ନିର୍ଦ୍ଦେଶରେ ଇନିସ୍‌ପେକ୍ଟର ତାଙ୍କର ଦଳବଳ ଘେନି ସ୍କୁଲ ଘର ଆଡ଼କୁ ଚାଲିଲେ । ବାଟରେ ଗଦାଧର ସାହେବଙ୍କୁ କହିଲେ, 'ଯେତେ ଶୀଘ୍ର ଆପଣଙ୍କ ଏ ଆଡ଼ା ଏଠାରେ ଭାଙ୍ଗି ବାହାରି ଯିବେ, ସେତେ ଭଲ । କେବଳ ଆପଣଙ୍କର ଗୁଇନ୍ଦା ବିଭାଗର ପ୍ରକୃତରେ ଯେବେ ଚତୁର ଲୋକ କେହି ଥାଏ, ତାକୁ ଗୁପ୍ତ ବେଶରେ ଏ ଗାଁ'ରେ ଛାଡ଼ି ଦେଇ ଯା'ନ୍ତୁ । କେବଳ ସୂରୀ ନାରାୟଣର ଘର ଓ ତା' ଉପରେ ନଜର ରଖିବା ତା'ର କାମ । ଆଉ କିଛି କାମ ନାହିଁ ।'

ସାହେବ – ତା ହେଲେ ତୁମେ ସୂରୀ ନାରାୟଣକୁ –

ଗଦା – କ୍ଷମା କରିବେ ସାହେବ । ମଟରଟା ଯେ ଜୀଅନ୍ତା ରାକ୍ଷସ, ତା'ର ବି କାନ ଅଛି – କୁମ୍ଭକର୍ଣ୍ଣ ଭଳି ।

ସାହେବ – ଏସବୁ ସାବଧାନତାର କାରଣ ଅଛି, ଆପଣ ଭାବନ୍ତି ?

ଗଦା – ନିଶ୍ଚୟ, ତା ନ ହେଲେ ମୁଁ ଆପଣଙ୍କୁ ଏପରି କହନ୍ତିନି ।

ସାହେବ – ଠିକ୍ ।

ସ୍କୁଲ ଘର ପାଖରେ ପହଞ୍ଚିଲେ । ଗଦାଧର ଓହ୍ଲାଇ ଗଲେ । କହିଲେ, 'ଆଜ୍ଞା, ମୁଁ ରହୁଚି, ଏଠି, ଏମାନଙ୍କ ସଙ୍ଗରେ ଯିବି ନ ହେଲେ ଘଣ୍ଟେ ଖଣ୍ଡେ ରହି ଯିବି ।'

ସାହେବ - ମୋର ମନେ ଅଛି । ଘଣ୍ଟାକ ଭିତରେ । ହଁ, ଇନିସ୍‌ପେକ୍ଟର, ତୁମେ ଘଣ୍ଟାକ ପରେ ଏଠା ଛାଡ଼ିବ । ତା' ଆଗରୁ ନୁହେଁ, ତା' ଆଗରୁ ନୁହେଁ । ସାବଧାନ । ବିଦାୟ ଗଦାଧର ବାବୁ । ଆଜି ସନ୍ଧ୍ୟାରେ ମୋ ଘରେ ଆପଣଙ୍କର ନିମନ୍ତ୍ରଣ । ମନମୋହନ, ତୁମକୁ ବି ।'

ସାହେବ ଗଲେ ଚାଲି । ଇନିସ୍‌ପେକ୍ଟର ବାବୁ ସେଇ ପୋଷାକ ପତ୍ର ପିନ୍ଧି ଲମ୍ବ ହୋଇଗଲେ ତାଙ୍କ ଖଟ ଉପରେ । ଦାରୋଗା ବାବୁ ଫେଣାଏ କଦଳୀ ଘେନି ବାହାରିଗଲେ ଅଗଣାକୁ ।



# ଏଗାର

ସେଇ ଦିନ ସନ୍ଧ୍ୟାବେଳ । ପୁଲିସ ସାହେବଙ୍କ ଘରେ । ବୈଠକଖାନା, ସାହେବ ପାଇଜାମା ଓ ପଞ୍ଜାବିରେ ଶୋଭମାନ । ଗଦାଧର ତାଙ୍କ କଡ଼ରେ ଗୋଟିଏ ଲମ୍ବା ଗଦି ଚୌକିରେ । ମନମୋହନ ପାଖରେ ଆସି ପହଞ୍ଚିଲେ, ପୁରା ପୋଷାକରେ ସାହେବଙ୍କୁ ସଲାମ କରି ଠିଆ ହେଲେ । ସାହେବ ତାଙ୍କୁ ଚାହିଁଲେ, ଗଦାଧରଙ୍କୁ ଚାହିଁଲେ । କହିଲେ, 'ହଁ, କ'ଣ ଇନିସ୍‌ପେକ୍ଟର ?' ମନମୋହନ ବିଚାରା ବଡ଼ ଫିସାରେ ପଡ଼ିଲା । ତାକୁ ଆଜି ସନ୍ଧ୍ୟାରେ ଖାଇବା ପାଇଁ ସାହେବ ନିମନ୍ତ୍ରଣ କଲେ । ଅଥଚ ଏତେବେଳକୁ ପଚାରୁଛନ୍ତି, 'ହଁ, କ'ଣ ଇନିସ୍‌ପେକ୍ଟର ?' ସାହେବଙ୍କ ଘରେ ଖାଇବାକୁ ନିମନ୍ତ୍ରଣ । ଏ ଗୋଟିଏ ନୂଆ କଥା ଏ ଜିଲ୍ଲାର ପୁଲିସ ଇତିହାସରେ । ସାହେବମାନେ ସମସ୍ତଙ୍କୁ ଡାକନ୍ତି ଖାଇବାକୁ; କିନ୍ତୁ ନିଜ ତଳିଆ କର୍ମଚାରୀଙ୍କୁ ନୁହେଁ । ଏଥରକ ଯେ ନୂଆ ଓ ପ୍ରଥମ କରି ଏ ନିୟମର ବ୍ୟତିକ୍ରମ ହେଲା । ସେଥିରୁ ଯେବେ ମନମୋହନ ଅନୁମାନ କରିଥାନ୍ତି ଯେ ଏହା ସାହେବଙ୍କର ତାଙ୍କ ପ୍ରତି ଅତି ବେଶି ସୁଦୟାର ଲକ୍ଷଣ, ତାହେଲେ ତାଙ୍କୁ ଦୋଷ ଦିଆଯାଇ ପାରିବନି । ଏଇ ବିଶ୍ୱାସରେ ସେ ଯେବେ ତାଙ୍କ ସାଙ୍ଗସାଥିମାନଙ୍କୁ ଏକଥା କହି ସେମାନଙ୍କର ଈର୍ଷାଭାଜନ ହୋଇଥାନ୍ତି, ତା'ହେଲେ ମଧ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏସବୁ ପରେ ସାହେବଙ୍କର ଏ ଯୁ କଥା ଏ ତ ଶିଶୁପାଳିଆଠୁଁ ବଳି ଆଉରି ଅପମାନ । କିମିତି ଯାଇ ସାଙ୍ଗସାଥିଙ୍କ ମୁହଁ ଦେଖାଇବେ ? ସେ ଭାବୁଥାନ୍ତି ଏଇ କଥା । ସାହେବ ପୁଣି ଥରେ ପଚାରିଲେ, 'କି, ଶୁଭିଲାନି କ'ଣ ? ଜବାବ ଦିଅ ।' ବଡ଼ ଅକଡ଼ିଆରେ ପଡ଼ିଲେ ସେ, କ'ଣ କହିବେ ? କହି ପକାଇଲେ, 'ହଜୁର, ଖାଲି ଆସିଥିଲି ବୁଝିବାକୁ ଯେ ହଜୁରଙ୍କର ଯେବେ କିଛି ହୁକୁମ ଥାଏ ।'

ସାହେବ - ମୋର ହୁକୁମ ଥିଲେ ଡକାଇ ଥା'ନ୍ତି । ତୁମର କଷ୍ଟ କରିବା ଦରକାର ନ ଥିଲା ।' ନିରଶ ଓ ନିରାଶା । କ'ଣ କରିବେ ! ମନମୋହନ ମନ ବେଦନାରେ ମୁହଁଟି ସୁଖେଇ ଦେଇ ସଲାମ କରି ଫେରିଲେ । କେଡ଼େ ସୁନ୍ଦର ସେ ନନ୍ଦନ କାନନଟି ତାଙ୍କର ଶୁଖିଗଲା ତାଙ୍କରି

ଆଖି ଆଗରେ । ପୁଲିସ ସାହେବ ପଛରୁ ଡାକି କହିଲେ, 'ହଁ, ଇନିସ୍‌ପେକ୍ଟର ଆସଛ ବୋଇଲେ ଗୋଟାଏ କାମ କର । ତୁମ ଯିବା ରାସ୍ତାରେ ମନମୋହନ ମହାପାତ୍ର ବି.ଏ.ଙ୍କୁ ତୁମେ ନିଶ୍ଚୟ ଜାଣ ମନେ ପକାଇ ଦେବ, ସେ ଆଜି ମୋ ଘରେ ଅତିଥି । ସମ୍ମାନିତ ଅତିଥି ଭାବରେ ସେ ଯେପରି ଘଣ୍ଟାକ ଭିତରେ ଆସି ପହଞ୍ଚନ୍ତି ଏଠି, ବୁଝିଲ ? ଅତିଥି ଭାବରେ ।' ମନମୋହନ ବୁଲି ପଡ଼ିଲେ ସାହେବଙ୍କୁ ଚାହିଁଲେ ? ଗଦାଧର ମୁରୁକେଇ, ମୁରୁକେଇ ହସୁଛନ୍ତି । ମନମୋହନ ଚାହିଁବାର ଦେଖି ସେ ତାଙ୍କୁ ଆଖି ମାରିଦେଲେ । ମନମୋହନଙ୍କ ମନର ପରଦା ଖୋଲିଗଲା । ସେ ବୁଝି ପାରିଲେ । ଲାଜରେ ଓ ଗୌରବରେ ତାଙ୍କ ମୁହଁର ଭାବ କିପରି ଏକ ପ୍ରକାର ହୋଇଗଲା । ସେ ଏଥରକ ସଲାମ କରି କହିଲେ, 'ହଜୁର, ମନମୋହନ ମହାପାତ୍ର, ବି.ଏ. ଅତିଥି ଭାବରେ ଠିକ୍ ଘଣ୍ଟାକ ପରେ ହାଜର ହବ ।'

ସାହେବ - ନାଁ ନାଁ, ଡେରି ହୋଇପାରେ । ତୁମେ ମୋ ଗାଡ଼ି ନେଇଯାଅ, ସେଇଥିରେ ତାଙ୍କୁ ପଠାଇଦେବ ।

ମନ - ହଜୁର, ତାର ବି ଦର୍କାର ?

ସାହେବ - ଇନିସ୍‌ପେକ୍ଟର, ହୁକୁମ ତାଲିମ କର ।

ମନମୋହନ ସଲାମ କରି ଫେରିଲେ ।

ସାହେବ ଗାଡ଼ିରେ ବସି ସେ ଘରକୁ ଫେରିଲେ । ରାସ୍ତାରେ ଥାନା ହୋଇ ଟିକିଏ ଯିବାର ଲୋଭ ସମ୍ଵରଣ କରି ପାରିଲେନି । ଓହ୍ଲାଇ ପଡ଼ି ତରବର ହୋଇ ଟେବୁଲ ପାଖରେ କ'ଣ ଟିକିଏ କାଗଜ ଏପଟ ସେପଟ କରି, ଦାରୋଗା ଓ ଅନ୍ୟମାନଙ୍କୁ ଶୁଣେଇଁ କହିଲେ, 'ମୋର ମୋଟେ ସମୟ ନାହିଁ, ସାହେବଙ୍କ ଗାଡ଼ିରେ ଆସିଛି । ଲୁଗାପଟା ପାଲଟି ସେଇଥିରେ ଫେରିଯିବି ତାଙ୍କ ଘରକୁ ଖାଇବା ଲାଗି । ରିଡ଼ର, ଆଜି ରାତିରେ ଆଉ କାମ ହବନି, କାଲିକି ସବୁ ଠିକ୍ ରଖ ।' ସେ ଗଲେ ଚାଲି, ସମସ୍ତେ ଚାହିଁ ଦେଖିଲେ ସତକୁ ସତ ସାହେବଙ୍କ ଗାଡ଼ିରେ ମନମୋହନ ବସି ସାହେବ ଭଳି ଚାଲିଛନ୍ତି, ଆରେ ଏ ହେଲା କ'ଣ ? ଦାରୋଗା ଭାବିଲେ, ନାଁ, ନାଁ ଏ ଇନିସ୍‌ପେକ୍ଟରଟାକୁ ଟିକିଏ ସାବଧାନ ହୋଇ ଚଳିବାକୁ ହେବ ଦେଖୁଛି ।

ମନମୋହନ ଘରକୁ ଫେରି ତାରିଣୀଙ୍କ ଆଗରେ ଯେ ମନଫୁଲାଣିଆ କଥା ସବୁ କହିଲେ । ଲୁଗା ବଦଳାଉ ବଦଳାଉ ସେ କଥା ଶୁଣି ଘରଣୀଙ୍କର ମନେ ହେଲା ଯେପରି ତାଙ୍କର ଭାଗ୍ୟ ପୋଡ଼ିଛି । ପୁଲିସ୍ ସାହେବ ବୋଧହୁଏ ତାଙ୍କର ଝିଅଟିଏ କି ଭଉଣୀଟିଏ ମନମୋହନଙ୍କ ହାତରେ ସମର୍ପି ଦେବାକୁ ପ୍ରସ୍ତୁତ । ଯାହା ହେଉ ମନମୋହନଙ୍କୁ ସ୍ତ୍ରୀଙ୍କ ହାବଭାବ ଲକ୍ଷ୍ୟ କରିବାର ସମୟ ନାହିଁ ସେ ଅନର୍ଗଳ ଡମ୍ଫ ଯାଉଛନ୍ତି । ଲୁଗାପିନ୍ଧା ସରିଲା, ସେ ସିଧା ଯାଇ ମଟରରେ ବସିଲେ, ପକ୍‌କା ଶଶୁର ଘର କୁଣିଆ, ଯୋଇଁ ବାବୁଙ୍କ ଭଳି, ଛୋଟ କୁଞ୍ଚ କରା ରେଶମୀ ଧଡ଼ି ଶାନ୍ତିପୁରୀ ଧୋତି, ରେଶମ ପଞ୍ଜାବୀ, ରେଶମ ଚାଦର, ମୁଣ୍ଡରେ ମାଙ୍ଗ, ହାତରେ ଛଡ଼ି,

ଘରଣୀଙ୍କର ଛାତି ଦୁଲକି ଉଠିଲା, ସେ ବେଶ ଦେଖି । ମଟର ଗରଜି ଉଠିଲା, ଧ୍ୱନି ଉଠି ଆକାଶ ଛୁଇଁଲା । ମନମୋହନ ମହାପାତ୍ର ବି.ଏ. ଚାଲିଲେ ।

ମନମୋହନ ପୁଲିସ ସାହେବଙ୍କ ଘରେ ପହଞ୍ଚିଲେ, ପୁଲିସ ସାହେବ ତାଙ୍କୁ ଦୁଆର ମୁହଁରେ ପାଛୋଟି ନେଲେ ଚଉକିରେ ବସାଇଲେ । ପ୍ରତି କଥା ପରେ ମନମୋହନ ଦୁଇ ଇଞ୍ଚ ଫୁଲି ଯାଉଥାନ୍ତି ଯେପରି । ପାନ ଆସିଲା, ସିଗାରେଟ୍ ବି । ମନମୋହନ କିନ୍ତୁ ଡରରେ ସବୁଥିକୁ ନାହିଁ କରି ଚାଲିଲେ । ସାହେବ କହିଲେ, 'ତୁମେ ଆତିଥ୍ୟର ଅପମାନ କରୁଛ ମନମୋହନ ବାବୁ ।' ମନମୋହନ ଡରିମରି ଖଣ୍ଡେ ପାନ ଉଠାଇ ନେଇ ମୁହଁକୁ ବୁଲେଇ ପାଟିରେ ପୁରେଇ ଦେଲେ । ତା'ପରେ ପୁଲିସ ସାହେବ କହିଲେ, 'ସତରେ ଏ ମକଦ୍ଦମାଟା ମୋର ଅନେକ ସମୟ ବରବାଦ୍ କଲାଣି । ଯାହା ହେଉ, ଆଜି ରାତିରେ ଏହାର ଗୋଟାଏ କୂଳ କିନାରା ଲଗାଇ କାଲି ଶେଷ ରିପୋର୍ଟ ଦେବାକୁ ହେବ, ବୁଝିଲ ମନମୋହନ ।

ମନ - ହଜୁର, ଆଜି ରାତିରେ ?

ସାହେବ - ହଁ, ଖାଇସାରି ଆମ୍ଭମାନଙ୍କୁ ଏଠାରୁ ଆଜି ରାତିରେ ସେ ଗାଁ'କୁ ଯିବାକୁ ପଡ଼ିବ । ଯିବା ରାସ୍ତାରେ ତୁମେ ତୁମ ଦାରୋଗା ଓ ସିପାହିମାନଙ୍କୁ ନେଇପାର ।

ମନ - କିନ୍ତୁ ରାତିରେ ଯାଇଁ କ'ଣ କରିବେ ସେ ଗାଁ'ରେ ? ବହୁତ ରାତି ତ ହୋଇଯିବ ।

ସାହେବ - ଗଲେ କହିବି, ଆଜି ରାତିଟା ହୁଏତ ଶୋଇବା ଘଟିବନି, ମନମୋହନ !

ମନ - ହଜୁର, ପାଞ୍ଚ ରାତି ନ ଶୋଇ ବି ମୁଁ କଟେଇ ଦେଇପାରେ ।

ସାହେବ -ତା ପାର, ମୁଁ ଜାଣେ ।

ବେହେରା ଆସି ଖବର ଦେଲା ଖାନା ତୟାର । ଏମାନେ ଉଠିଗଲେ । ଟେବୁଲ ଉପରେ କଣ୍ଟା ଚାମଚ ଘେନି ଖାନା ଖାଇବାକୁ ହେବ ସାହେବୀ ରୀତିରେ ।

ଗଦାଧର ବସି ବସି ଦିବ୍ୟ ଆରାମରେ ଖାଇ ଚାଲିଲେ । ମନମୋହନଙ୍କର ବିପଦ; କଣ୍ଟା ଛୁରୀ ଘେନି ଖାଇବାର ଅଭ୍ୟାସ ନାହିଁ । ସେ ସାହେବଙ୍କୁ ଓ ଗଦାଧରଙ୍କୁ ଚାହିଁ ଚାହିଁ କେତେବେଳେ ସୁବିଧା ପାଇଲେ ତ ଖଣ୍ଡେ ଅଧେ କୌଣସି ମତେ ପାଟିକୁ ପକାଇ ଦେବାର ଚେଷ୍ଟା କରୁଥାନ୍ତି । କେତେବେଳେ ପାଟି ପର୍ଯ୍ୟନ୍ତ ଯାଏ, ତେବେବେଳେ ବା ଅଧବାଟରୁ ତାଙ୍କରି କୋଡ଼ରେ ଖସିପଡ଼େ, ଯେପରି କେଡ଼େ ସୁଆଗର ପ୍ରିୟତମା । କେତେବେଳେ ବାଁ ହାତରେ ଛୁରୀ ଓ ଡାହାଣ ହାତରେ କଣ୍ଟା ତ କେତେବେଳେ ଠିକ୍ ଓଲଟା । କିଛି ସମୟ ପରେ ଚାହିଁ ଦେଖି ଶିଖି ନେଲେ । ସାହେବ କଣେଇ କଣେଇ ଚାହୁଁଥାନ୍ତି, କିଛି କହୁ ନ ଥାନ୍ତି ତାଙ୍କୁ; କିନ୍ତୁ ଅନର୍ଗଳ ଗପି ଚାଲିଛନ୍ତି, କେତେ ସୃଷ୍ଟିର କେତେ କଥା । ଗଦାଧର ମଧ୍ୟ ତାଙ୍କ ସାଙ୍ଗରେ ଗପି ଚାଲିଥାନ୍ତି । ସମସ୍ତଙ୍କ ନଜର ଠିକ୍ ମନମୋହନଙ୍କ ଖାଇବା ଭଙ୍ଗୀ ଉପରେ ଥାଏ; କିନ୍ତୁ

ମନମୋହନ ଯେତେବେଳେ ଯାହା ଆଡ଼େ ଚାହାନ୍ତି, ଦେଖନ୍ତି ଯେ ତାଙ୍କର ଆଖି ଖାଇବା ଯାଗା ଉପରେ ନ ହେଲେ ଅନ୍ୟ ଆଡ଼େ । ସେ ନିଶ୍ଚିନ୍ତ ହେଲେ, ଯାହା ଦେଖି ଶିଖିଲେ ସେଇଥିରେ କୌଣସି ମତେ ପେଟଟା ଭର୍ତ୍ତି କରି ନବାର ଚେଷ୍ଟା କରି ସଫଳ ହେଲେ । ଖା' ପିଆ ସରିଲା । ସେମାନେ ଉଠି ପାନ ସିଗାରେଟ୍ ଧରି ପୁଣି ବୈଠକଖାନାକୁ ଗଲେ । ଅଧ ଘଣ୍ଟାକ ପରେ ସାହେବ ଉଠି ଭିତରକୁ ଗଲେ ଓ ଆଉ ଅଧଘଣ୍ଟାକ ପରେ ପୋଷାକପତ୍ର ପିନ୍ଧି ବାହାରି ଆସିଲେ । ସମସ୍ତେ ଗାଡ଼ିରେ ବସି ଛୁଟିଲେ ବ୍ରହ୍ମପୁର ଆଡ଼େ । ସେଠାରେ ଦାରୋଗା ଓ ସିପାହି ଇତ୍ୟାଦିଙ୍କୁ ଗୋଟିଏ ପୁଲିସ ଲରିରେ ଧରି ସେମାନେ ଚାଲିଲେ ସେ ଗାଁ'କୁ । ସେତେବେଳେକୁ ରାତି ପ୍ରାୟ ଦଶଟା ପାଖ ହେଲାଣି । ସାହେବଙ୍କ ଇଙ୍ଗିତ ଅନୁସାରେ ଗାଡ଼ି ଦୁଇଟା ବନ୍ଦ ହେଲା । ଏମାନେ ଗାଡ଼ିରୁ ଓହ୍ଲାଇ ଠିଆ ହେଲେ ଏକାଠେଇଁ । ସାବେ କହିଲେ, 'ଏଇଠୁ ଚାଲିକରି ଯିବାକୁ ପଡ଼ିବ । କିନ୍ତୁ ସାବଧାନ, କିଛି ମାତ୍ର ଶବ୍ଦ ଯେପରି ନ ହୁଏ । ଜଣେ ସିପାହି ଏଠା ଗାଡ଼ି ଜଗି ରହିବ ଆଉ ସମସ୍ତେ ଆମ ସାଙ୍ଗରେ ଯିବେ । ଏ ଅଭିଯାନର ନେତା ଆଜି ଗଦାଧର ବାବୁ । ଏହିଠାରୁ ସେ ଯେପରି କରିବେ, ତାହା ସମସ୍ତଙ୍କୁ ମାନି ନେବାକୁ ହେବ ବୁଝିଲତ ? ମନମୋହନ, ଗାଡ଼ିରେ ଯେପରି ଘୁଙ୍ଗୁଡ଼ି ଆବାଜ୍ ଆସୁଥିଲା ସେପରି ଆବାଜ୍ କାହାରିଠାରୁ ରାସ୍ତାରେ ଶୁଣିଲେ କି, ଦାରୋଗା ବାବୁ, ଚୋବେଇବାର ଶବ୍ଦ କାହାରିଠାରୁ ବାହାରିଲେ ସଙ୍ଗେ ସଙ୍ଗେ ସସ୍‌ପେଣ୍ଡ । ବୁଝିଲତ ? କ'ଣ ? କିଏ ହସିଲା ? ଚୁପ୍ ।'

ମନମୋହନ କିଛି ବୁଝି ପାରିଲେନି; କିନ୍ତୁ ଏତିକି ବୁଝିଲେ ଯେ ସାହେବ କାହିଁକି ସେତେବେଳେ ଅତିଥି ବେଷରେ ଆସିବା ପାଇଁ ବ୍ରହ୍ମପୁର ଫେରାଇ ପଠାଇଥିଲେ । ବଡ଼ ଅଭିମାନ ଆସିଲା ମନରେ ସାହେବଙ୍କ ପ୍ରତି; ରାଗ ଆସିଲା ଚିତ୍ତରେ ଗଦାଧରଙ୍କ ପ୍ରତି । ସେ କ'ଣ ଏପରି ଅବିଶ୍ୱାସୀ ଯେ ତାଙ୍କ ଭିତିରି କଥାଗୁଡ଼ାକ ଶୁଣିବାକୁ ଅଯୋଗ୍ୟ ? ଚାଲୁ ଚାଲୁ ଦାରୋଗା ପଚାରିଲେ ତୁନି କରି, 'ଆଜ୍ଞା, କଥା କ'ଣ ?' ମନମୋହନ କହିଲେ, 'ଚୁପ୍, ବଡ଼ ଗଭୀର ଗୁପ୍ତ ରହସ୍ୟ, ପରେ ଜାଣିବ ।' ଗଦାଧର ଆଗେ ଆଗେ, ସମସ୍ତେ ଚାଲିଥାନ୍ତି ତାଙ୍କ ପଛରେ । ସୁରିଆର ଘର ପାଖ ହେଲା । ଗଦାଧର କହିଲେ, 'ଏ ଗଳିରେ ବୁଲିଯାଇ ଏଇ ଘରଟାର ପଛପଟ ଛେକ ନେବ, ଦାରୋଗା ବାବୁ, ତୁମେ ଦି' ଜଣ ସିପାହି ଘେନି ଦେଖିବ, ଯେପରି କୌଣସି ମତେ କେହି ସେ ବାଡ଼ି ଦେଇ ବା ପାଖ ବାଡ଼ି ଦେଇ ପଳାଇ ନ ଯାଏ । ଦୁଇଜଣ ସିପାହି ଏ ଗଳିଟା ପହରା ଦେବେ । ସାହେବ ଆଉ ମନମୋହନ ମୋର ପଛରେ ରହିବେ । ଦାରୋଗା ଓ ସିପାହିମାନେ ତାଙ୍କର ସ୍ଥାନରେ ରହିଲେ ସୁସୁରି ମାରିବେ । ଯାଅ ।' ଚାଲିଗଲେ ସେମାନେ, ଏମାନେ ଚୁପ୍‌ଚାପ୍ ଠିଆ ହୋଇ ରହିଥାନ୍ତି ସୁରିଆର ଦାଣ୍ଡ ପିଣ୍ଡା ତଳେ । ପ୍ରାୟ ଦଶମିନିଟ୍ ପରେ ଦୁଇଟା ସୁସୁରିର ଆବାଜ ହେବା ସଙ୍ଗେ ସଙ୍ଗେ ଗଦାଧର ପାହାଚ ଉପରକୁ ଉଠିଯାଇ ଦୁଆରେ ଆସ୍ତେ ଆସ୍ତେ ବାଡ଼େଇଲେ । ପ୍ରାୟ ପନ୍ଦର ମିନିଟ୍ ବାଡ଼ିଆ ବାଡ଼ି କଲା ପରେ ଦୁଆର ପଛରୁ ଶବ୍ଦ ଆସିଲା, 'କିଏ ?' ଗଦାଧର ସ୍ୱର, ବିକୃତ କରି କହିଲେ – 'ମୁଁ ନାରାୟଣ କାର୍ଯ୍ୟୀ ।'

ମନମୋହନ ଚମକି ପଡ଼ିଲେ ।ଏଁ, ଏତ ଠିକ୍ କାର୍ଯୀ ସ୍ୱର ସେ କୁଆଡ଼ୁ ଆସିଲା ? ନାଁ କାର୍ଯୀ ତ ନାହିଁ । କିନ୍ତୁ କାର୍ଯୀ ସ୍ୱର ପୁଣି ବାଜି ଉଠିଲା, 'ଜରୁରୀ କାମ, ଜଲ୍‌ଦି ଖୋଲ ।' ଅତି ସନ୍ତର୍ପଣରେ ଦୁଆର ଭିତର ପଟୁ ଖୋଲିବାର ଶବ୍ଦ ଆସିଲା ଦୁଆରଟା ଟିକିଏ ମେଲେଇ ସୁରିଆ ମୁହଁ କାଢ଼ି ଚାହିଁଲା, ସଙ୍ଗେ ସଙ୍ଗେ ଦୁଆର ବନ୍ଦ କରିବାକୁ ଚେଷ୍ଟା କଲା; କିନ୍ତୁ ଯା ଭିତରେ ଗଦାଧର ଦୁଆର ତଳ ଫାଙ୍କ ବାଟେ ଗୋଡ଼ଟା ଭର୍ତ୍ତି କରି ଦେଇଥାନ୍ତି ତ ହାତରେ ଦୁଆରଟା ଠେଲି ଧରିଥାନ୍ତି । କିଛି ସମୟ ପରେ ଦୁଆରଟା ଧଡ଼୍ କରି ମେଲା ହୋଇଗଲା । ଗଦାଧର ମୁହଁ ମାଡ଼ି ନଇଁ ପଡ଼ିଲେ । ସୁରିଆ ଅଗଣାକୁ ପଳେଇଲା । ଗଦାଧର ନିଜକୁ ସମ୍ଭାଳୁ ସମ୍ଭାଳୁ ପୁଲିସ୍ ସାହେବ ଓ ଇନିସ୍‌ପେକ୍ଟର ଘର ଭିତରକୁ ଦଉଡ଼ି ଯାଇ ସୁରିଆର ପିଛା କଲେ । ସୁରିଆ ବାଡ଼ି ଦୁଆର ଫିଟେଇ ଦେଖେତ ଦୁଆର ମୁହଁରେ ଦାରୋଗା । ପଳେଇ ଯିବାର ଉପାୟ ନ ଦେଖି ସେ ପୁଣି ପଛକୁ ଫେରିଲା ଓ ଭିତର ପଟ ପିଣ୍ଡାରେ ପୁଲିସ ସାହେବ ହେରିକା ତାକୁ ଧରିବାକୁ ଯିବାବେଳେ ଗୋଟିଏ ଘରେ ପଶି ଭିତରୁ ଦୁଆର ବନ୍ଦ କରିଦେଲା । ସେତେବେଳକୁ ଗଦାଧର ମଧ୍ୟ ଆସି ସେଠାରେ ପହଞ୍ଚି ସାରିଲେଣି । ଗଦାଧର ଡାକି କହିଲେ । 'ସୁରି ନାରାୟଣ ଦୁଆର ଫିଟାଅ । ତୁମର ଖସି ଯିବାର ଆଉ ଉପାୟ ନାହିଁ ତ ମିଛିଟାରେ କାହିଁକି ଗୋଳମାଳ ଆରମ୍ଭ କରୁଛ ? ଭିତରୁ ସୁରିଆ କହିଲା, 'ମୋର ଖସିଯିବାର ଅନେକ ଉପାୟ ଅଛି, ତୁମେ ମୋତେ ଜିଅନ୍ତା ପାଉନ, ମୋର କର୍ତ୍ତବ୍ୟ ମୁଁ କରିଛି । ଏଥରକ –'

ଗଦା – ନାଁ, ନାଁ, ତୁମେ କରିପାରିବନି । ତୁମ ଭାଇ ଭାଉଜଙ୍କ ନାଁ'ରେ ଯେ କଳଙ୍କ ଲାଗିଛି ତାକୁ ନ ଧୋଇବା ଯାଏ ତୁମେ କିପରି ମରିଯାଇ ପାରିବ କହିଲ ଦେଖି ? ତୁମ ଭାଉଜଙ୍କ କଳଙ୍କ; ସେ କ'ଣ ଚିରଦିନ କଳଙ୍କିନୀ ରହିବ ?

ସୁରିଆ – ମୋ ଭାଉଜର କଳଙ୍କ ? କି କଳଙ୍କ ? ତୁମେ ମୋତେ ଭୁଲାଉଛ । ମୋ ଭାଉଜ ନାଁରେ କଳଙ୍କର କଥା ତ ମୁଁ ମୋଟେ ଶୁଣି ନାହିଁ ।

ଗଦା – ତୁମେ ଶୁଣିନ; ମାତ୍ର ଗାଁ'ରେ ସମସ୍ତେ ଜାଣନ୍ତି, ସେ କୃଷ୍ଣମୂର୍ତ୍ତିର ରକ୍ଷିଣୀ ହୋଇଥିଲେ ।

ସୁରିଆ – ମିଛ କଥା, ବିଲକୁଲ ମିଛ କଥା, ତୁମେ, ତୁମେ – ତୁମରି ଜିଭ ଉପାଡ଼ି ଆଣିବି ନାହିଁ ମୁଁ, ପୁଣି ସେ କଥା କହିଲେ । ସେ ନିଷ୍ପାପ, ସେ ସତୀ, ସେ ଦେବୀ ।

ଗଦା – ପ୍ରମାଣ କର ! ଏ ମିଛୁଆ ଅପବାଦୁଆ ଲୋକଗୁଡ଼ାକୁ ବୁଝାଇ ଦିଅ ଯେ ସେମାନେ ସତୀ ନାଁରେ କଳଙ୍କ ଦେଇ କି ପାପ କରୁଛନ୍ତି ।

ସୁରିଆ – ହଁ, ଦେବି, ନିଶ୍ଚୟ ଦେବି । ମୋର ଭାଉଜ ଗରିବର ସ୍ତ୍ରୀ, ତା' ବୋଲି ସେମାନେ ତାଙ୍କୁ କଳଙ୍କ ଦେଉଛନ୍ତି ? ମୁଁ ଦେଖେଇ ଦେବି ସେମାନଙ୍କ ସେଟା କେଡ଼େବଡ଼

ଭୁଲ୍‌ । କୃଷ୍ଣମୂର୍ତ୍ତି ଧନି, ମାନୀ; ସେହି ହେତୁ ତାକୁ ସେମାନେ ଭାବନ୍ତି ଦେବତା ବୋଲି । ମୁଁ ଦେଖେଇ ଦେବି ସେମାନେ ଭୁଲ, ତାଙ୍କର ଦେବତା କୃଷ୍ଣମୂର୍ତ୍ତି ଗୋଟେ ନରକର କୀଟ ।

ଗଦା – ଠିକ୍‌ କଥା ; ବାହାରି ଆସ । ଦେଖାଇ ଦିଅ ସେମାନଙ୍କୁ । ତୁମ ଭାଉଜଙ୍କ ସତୀତ୍ୱ ପ୍ରମାଣ କର, ପାପିର ପାପ ପ୍ରଖ୍ୟାପନ କର । ଭ୍ରାତୃଭକ୍ତ ବୀର ଲକ୍ଷ୍ମଣଙ୍କ ଅବତାର, ଆସ କର୍ତ୍ତବ୍ୟ –ବୀର, କର୍ତ୍ତବ୍ୟ ପାଳନ କର ।

ସୁରିଆ – କିନ୍ତୁ ମୋର କଥା ବିଶ୍ୱାସ କରିବ କିଏ ? ତୁମେ ଯେବେ ମୋତେ ଧରି ପୁଲିସକୁ ଦିଅ, ଆଉ ପୁଲିସ ଯେବେ ମୋତେ ଫାସୀରେ ଝୁଲାଏ । ତା' ହେଲେ କ'ଣ କରିବି ?

ଗଦା – ମୁଁ ତୁମକୁ ଜବାବ ଦେଉଛି, ତୁମର କର୍ତ୍ତବ୍ୟ ଶେଷ ଆଗରୁ ତୁମକୁ କେହି ଫାସୀ ଦେବେନି ।

ସୁରିଆ – ନାଁ, ଫାସୀ ନୁହେଁ, ଇଲେ ନୁହେଁ, କି ପରେ ନୁହେଁ । ମୋ ବଂଶର କଳଙ୍କ ହବ । ନାଁ, ନାଁ, ମୁଁ ମରି ପାରିବି ।

ଗଦା – ନାଁ ପାରିବନି, ତା'ର ବ୍ୟବସ୍ଥା ମୁଁ କରିବି । ବିଶ୍ୱାସ କର । ମୁଁ ଜବାବ ଦେଉଛି, ହଲପ କରି କହୁଛି, ତୁମକୁ ଫାସୀ ଦେବା ଆଗରୁ ତୁମେ ମରିଥିବ, ଯେବେ ମରିବାକୁ ଚାହଁ ।

ସୁରିଆ – ହଲପ କରୁଛ, ତିନି ଥର ରାମ ନାମ ଧରି ହଲପ କର ।

ସାହେବ – ଗଦାଧର ବାବୁ ଏସବୁ କ'ଣ କରୁଛ ?

ଗଦା – ମନେ ରଖନ୍ତୁ ସାହେବ, ଏ ଅଭିଯାନର ମୁଁ ନେତା, ଆପଣଙ୍କର ହିଁ ହୁକୁମ । ରାମ, ରାମ, ରାମ, ମୁଁ ହଲପ କରି କହୁଚି ତୁମକୁ ଫାସୀ ଦିଆ ହେବନି ।

ଦୁଆର ଫିଟିଗଲା । ସୁରିଆ ବାହାରି ଆସିଲା । ଗଦାଧରଙ୍କ ଇଙ୍ଗୀତରେ ଦାରୋଗା ସଙ୍ଗେ ସଙ୍ଗେ ତାକୁ ହାତକଡ଼ି ପିନ୍ଧାଇ ଦେଲେ । ତା'ର ଖାନ୍‌ତଲାସି ନେଇ ଦେଖିଲେ, ତା'ର ଫତେଇ ପକେଟ୍‌ରେ ଗୋଟିଏ ଛୋଟ ଶିଶି ।



# ବାଆର

ତା' ପରଦିନ ସକାଳ ବେଳା । ସେ ଦିନ ରାତିରେ ସୁରିଆ ଧରା ହେବା ପରେ ଗଦାଧର ପ୍ରତିଜ୍ଞା କରିଥିଲେ, ସକାଳେ ସବୁକଥା ଖୋଲି କହିବେ । ସେଇ ପ୍ରତିଜ୍ଞା ଅନୁସାରେ ସେ ଏମାନଙ୍କୁ ପୁଣି ସେଇ ଗାଁ'କୁ ନେଇ ଆସିଛନ୍ତି; ପୁଲିସ ସାହେବ, ଦାରୋଗା ଓ ଇନିସ୍‌ପେକ୍ଟର । କୃଷ୍ଣମୂର୍ତ୍ତିଙ୍କ

ଘର ପାଖେ ପହଞ୍ଚିଲେ। ସେ କହିଲେ, 'ବର୍ତ୍ତମାନ ମୁଁ ଆପଣମାନଙ୍କୁ ଦେଖାଇ ଦେବି, କି ଉପାୟରେ ସୁରିଆ ଏ ଘରେ ପଶିଲା, ବିଷ ଦେଲା ଓ ବାହାରି ଗଲା। ଟିକିଏ ଏଣିକି ଆସନ୍ତୁ। ଏ ଯେ ପାଚେରିଟା, ଯାର ଏଇ ଅଂଶଟା ଦେଖନ୍ତୁ। ପଥର ସନ୍ଧିରେ ଖୋପ ହୋଇଛି, ଗୋଟିଏ ଟିକିଏ ବଳୁଆ ଲୋକ ସହଜରେ ଏଇ ଖୋପରେ ଗୋଡ଼ ରଖି ପାଚେରି ଉପରକୁ ଯାଇପାରେ। ପାଚେରୀ ଉପରୁ ଭିତର ପଟ ତଳକୁ କିପରି ଯିବ, ତା ମୁଁ ଭିତର ପଟେ ଦେଖାଇ ଦେବି। ଏ ବାଟଦେଇ ସୁରିଆକୁ ପାଚେରୀ ଉପରକୁ ଯିବାର ମୁଁ ପଅର ଦିନ ରାତିରେ ନିଜ ଆଖିରେ ଦେଖିଛି। ମୁଁ ମଧ ନିଜେ ପରୀକ୍ଷା କରିଛି। ବିଶ୍ୱାସ ନ ହେଲେ ଆପଣମାନଙ୍କ ଭିତରୁ କେହି ଚେଷ୍ଟା କରି ଦେଖି ପାରନ୍ତି।'

ପୁଲିସ୍ ସାହେବ – ସବ୍‌ଇନିସ୍‌ପେକ୍ଟର ଦେଖତ। ରାଧିକା ହଁ ଆଜ୍ଞା କହି ଖୁବ୍ ତେଜରେ ଗଲେ ଚାଲି। ଭୁଲ କଲ ଯେ ଯୋଉ ଖୋପରେ ଆଙ୍ଗୁଠି ଟିପ ରହିପାରେ ସେଇ ଖୋପରେ ଯୋତା ମିଶାଗୋଡ଼ ରହି ପାରିବାର ନିର୍ଦ୍ଧାର୍ଯ୍ୟ ବିଧି କେଉଁଠି ନାହିଁ। ସେ ଗୋଟାଏ ଖୋପରେ ପୁରାଇ ଦେଇ ଉଠିକି ତ ଗଲେ; କିନ୍ତୁ କାନ୍ଥ ଉପରକୁ ଧରିବା ବେଳକୁ ଏଣେ ଗୋଡ଼ିଟି ଖସିଗଲା। ସେ ଲଥ୍ କରି ପଡ଼ିଗଲେ ତଳେ। ପଡ଼ିବାଟା ଯେତେ କାଟିଲାନି ସାହେବଙ୍କର ସହାନଭୁତିଟା ସେତେ ବେଶୀ କାଟିଲା। ତା'ପରେ ଇନିସ୍‌ପେକ୍ଟରଙ୍କୁ ହୁକୁମ୍ ହେଲା। ଇନିସ୍‌ପେକ୍ଟର ଯୋତା ମୋଜା କାଢ଼ି ବିନା ବିଶେଷ କଷ୍ଟରେ ଅଧା କାନ୍ଥରେ ଠିଆ ହୋଇଗଲେ ସତ; କିନ୍ତୁ ଉପରକୁ ଉଠିବାରେ ତାଙ୍କର ପେଟଟି ବାଧା ଦେଲା। ବେଲୁନ ପେଟଟି କାନ୍ଥରେ ମାଡ଼ି ହୋଇଛି। ଫାଟିଗଲା ପରି ଲାଗୁଛି। ସେ ପାଚେରି ଉପରକୁ ଯାଉଛନ୍ତି କିପରି ? 'ହଁ, ହଜୁର, ଏଥରକ ଆଉ କ'ଣ, ପାଚେରୀ ଉପରକୁ ଉଠିବାରେ ଆଉ କଷ୍ଟ କ'ଣ ଅଛି ?'

ସାହେବ – ତା'ହେଲେ ଉଠୁ ନାହଁ କାହିଁକି ?

ଗଦାଧର ମନମୋହନଙ୍କ କଷ୍ଟ ବୁଝି ପାରିଲେ। କହିଲେ, ଆହା ବିଚାରା ଥାଉ, କହ ଦେଖି ଅଗଣା ଓ ଅଗଣା ଭିତରେ ସବୁ ଦେଖି ପାରୁଛ ତ ? ସେଠି ଠିଆ ହେଲେ ଅଗଣା ଭିତର ଘର ଚାଳ ଉପରେ କେହି ଯେବେ କିଛି କରେ ଦିଶିବତ ? ଇନିସ୍‌ପେକ୍ଟର ହଁ କଲେ। ଗଦାଧର ତାଙ୍କୁ ଖସି ଆସିବାକୁ କହିଲେ। ତା'ପରେ ସେମାନେ ବୁଲି ଘର ଭିତରକୁ ଗଲେ। ଗଦାଧର ସେମାନଙ୍କୁ ଦେଖାଇ ଦେଲେ ସେଇ ପାଚେରୀର ଭିତର ପଟେ ଠାଏ ଠାଏ ଲୁହା ଗୋବ ମାରି ଲୁଗାପଟା ଶୁଖାଇବା ପାଇଁ ଦଉଡ଼ି ବନ୍ଧା ହୋଇଛି। କାନ୍ଥ ଉପରୁ ସେ ଗୋବ ଉପରେ ଭରା ଦେଇ ତଳକୁ ସହଜରେ ଓହ୍ଲାଇ ହେବ। ତାପରେ ସେମାନେ କୃଷ୍ଣମୂର୍ତ୍ତୀଙ୍କ ଶୋଇଲା ଘରକୁ ଗଲେ। ତା ଘର ଭିତରକୁ ଯାଇ କବାଟ ବନ୍ଦ ହେବା ଗେଡ଼ା ପାଖରେ ଖଣ୍ଡିକ ସରୁ କଳା ରେଶମ ସୂତା ସେ ଗେଡ଼ା ଦିହରେ ପାଶ ଦେଇ ବାନ୍ଧିଲେ। ଫାଶର ଦି' ମୁଣ୍ଡ ଯଥେଷ୍ଟ ଲମ୍ବା ଥିଲା। ଦି' ମୁଣ୍ଡ ଯାକ କବାଟ ଉପରେ ନେଇ ବାହାର ପଟକୁ ଲଟକାଇ ଦେଲେ। ତା'ପରେ

ସେ ସାହେବ ହେରିକାଙ୍କୁ ଭିତରେ ରହିବାକୁ କହି ଦୁଆର ଆଉଜେଇ ଆଣିଲେ। ବାହାର ପଟୁ ସୂତାଖିଅ ତେରେଛେଇ କରି ଭିଡ଼ିବା ଦ୍ୱାରା ଗେଡ଼ାଟା ଉଠି ଆସିଲା। ଗେଡ଼ା ଆଙ୍କୁଶ ଉପରକୁ ଆସିଲେ ସେ ଗେଡ଼ଟି ଆସ୍ତେ କରି ତଳକୁ ଛାଡ଼ିଲେ ସୂତା ଢୁଗୁଳା କରି। ଗେଡ଼ା ଆଙ୍କୁଶ ଦେହରେ ପଡ଼ିଗଲା। ତା'ପରେ ସେ ଫାଶର ଆଗମୁଣ୍ଡ ଧରି ଟାଣି ଦେଲେ; ସୂତା ଖଣ୍ଡିକ ବାହାରି ଆସିଲା। ତାଙ୍କର ନିର୍ଦ୍ଦେଶ ମତେ ସାହେବ ଭିତରୁ ଦୁଆର ଖୋଲିଲେ। ସେ କହିଲେ ଯେ ଏହି ଉପାୟରେ ସୁରିଆ ଏ ଘର ଭିତରକୁ ନିଜ ଇଚ୍ଛାରେ ଯା' ଆସ କରୁଥିଲା ଓ ଦୁଆର ନିଜ ଇଚ୍ଛାରେ ବନ୍ଦ ବା ଖୋଲି ପାରୁ ଥିଲା।

ସାହେବ - ତୁମକୁ କ'ଣ ସୁରିଆ ଏକଥା କହିଛି ?

ଗଦା - ସୁରିଆ ଧରା ହେବା ପରେ ଆପଣ ଜାଣନ୍ତି, ମୁଁ ତା ସାଙ୍ଗରେ କଥାବାର୍ତ୍ତା ହୋଇ ନାହିଁ।

ସାହେବ - ତାହାହେଲେ ଆପଣ କିପରି ଜାଣିଲେ।

ଗଦା - ପ୍ରଥମ ଦିନ ଅନୁସନ୍ଧାନ କଲାବେଳେ ମୋର ବିଶ୍ୱାସ ହେଲା ଯେ ଏ କାମ ବାହାରୁ କିଏ ଆସି କରିଛି। ଯେବେ ବାହାର ଲୋକ କରିଥାଏ ଓ ଚାକର ଚାକରାଣୀ ଏବଂ ପିଲାମାନେ ଯାହା କହିଲେ ସେ ଯେବେ ସତ ହୋଇଥାଏ, ଆଉ ସେ ମିଛ ହେବାର କୌଣସି କାରଣ ନ ଥିଲା, ତା ହେଲେ ଏ ବାହାର ଲୋକ କୌଣସି କୌଶଳରେ ଦୁଆର ଭିତରୁ ଫିଟାଇ ବାହାରୁ ଆସି ପାରୁଥିଲା ଏବଂ ଗଲାବେଳେ ବାହାରୁ ଭିତର ଗେଡ଼ା ବନ୍ଦ କରି ପାରୁଥିଲା। ଇନିସ୍‌ପେକ୍ଟରଙ୍କ ମନେ ଥିବ, ମୁଁ ସେଦିନ ଏ ଦୁଆର ଓ ଘରଟା ତନ୍ନତନ୍ନ କରି ଲକ୍ଷ୍ୟ କରିଥିଲି। ମୁଁ ଦେଖିଥିଲି, କଳା ସୁତାର ଅଂଶ ଦୁଆର ଦାଢ଼ରେ ଲାଗିଛି। ସେ ଅଂଶଗୁଡ଼ିକ ମୁଁ ଜାଗତିଆରରେ ରଖିଛି, ଏହି ଦେଖନ୍ତୁ। ଏହା ଆପଣଙ୍କ କାମରେ ଲାଗିପାରେ। ଯେଉଁ ସୂତା ସୁରିଆ ବ୍ୟବହାର କରିଥିଲା, ତାହା ଆପଣ ପରେ ପାଇବେ।

ସେ ସୂତାଖିଅର ଲଫାପାଟି ସାହେବଙ୍କୁ ବଢ଼ାଇ ଦେଲେ। ସାହେବ ଇନିସ୍‌ପେକ୍ଟରଙ୍କୁ ଦେଇ କହିଲେ, 'ଏଇଟା ପ୍ରଥମ ନମ୍ବର; ଏକ୍‌ଜିବିଟ୍ ତାପରେ।'

ଗଦା - ତା'ପରେ ମୁଁ ଗେଡ଼ାଟା ନିରୀକ୍ଷଣ କରି ଦେଖିଲି ସେଥିରେ ଧୂଳି ଲାଗିଛି ଓ ସେ ଧୂଳି ଦେହରେ ସୂତାର ଦାଗ ଲାଗିଛି। ଅତଏବ କୌଶଳଟା ବୁଝିବାରେ ମୋର ଡେରି ହେଲା ନାହିଁ। ଏହି ଦେଖନ୍ତୁ ଗେଡ଼ାଟା। ଆଜି ଯେଉଁଠି ସୂତା ବାନ୍ଧିଥିଲି, ଦେଖନ୍ତୁ, ସେଠାରେ ସେ ଦାଗ ଅଛି।

ସାହେବ ଦେଖିଲା ପରେ କହିଲେ, 'ଇନିସ୍‌ପେକ୍ଟର, ବଢ଼େଇ ଡାକି ଏ ଗେଡ଼ାଟା ଏଠାରୁ କାଢ଼ି ନିଅ। ଏଇଟା ୨ୟ ନମ୍ବର ଏକ୍‌ଜିବିଟ୍, ବଡ଼ ଆଶ୍ଚର୍ଯ୍ୟ ଆପଣଙ୍କ ଅନୁସନ୍ଧାନ

ପ୍ରଣାଳୀ ଗଦାଧର ବାବୁ। କିନ୍ତୁ ସେଇ ପ୍ରଥମ ଅନୁସନ୍ଧାନରେ ଆପଣ କାହିଁକି ବିଶ୍ୱାସ କଲେ ଯେ ଏଇଟା ବାହାର ଲୋକର କାମ।'

ଗଦା – 'ତା'ର ପ୍ରଧାନ କାରଣ ହେଲା ସେ ଗିନା ଦିଟା । ଏ ଚାକର ଚାକରାଣୀ ଯେବେ ଦୁଧରେ ବିଷ ଦେଇଥାନ୍ତେ, ତାହେଲେ ଏମାନେ ସେ ଦୁଧ ଖାଇ ଦୁଧ ଗନା ରଖି ଶୋଇ ପଡ଼ିଲେ। ଦୁଆର ବନ୍ଦ କଲେ, ତା'ପରେ ସକାଳେ ଦୁଆର ଖୋଲିଲା। ମୁର୍ଦ୍ଦାର ଦେଖାଗଲା। ଘରେ ଗୋଟାଏ କନ୍ଦଳ ଲାଗିଗଲା। ପିଲାମାନେ କହନ୍ତି ଯେ ସେ ଗିନା କେହି ଧୋଇ ନାହାନ୍ତି। ଆମେ ଯେତେବେଳେ ସେ ଗିନା ଦେଖୁ, ସେଥିରେ ତଳେ ଟିକିଏ ଦୁଧ ରହିବା ଛଡ଼ା ଗିନାରେ ଅନ୍ୟ କୌଣସିଠାରେ ଦୁଧର ବା ଦୁଧସରର କିଛି ମାତ୍ର ଦାଗ ନାହିଁ। ଯେଉଁମାନେ ଗିନାରେ ଦୁଧ ଖାଇଥିବେ, ସେମାନେ ଦେଖିଥିବେ ଗିନାରେ ଦୁଧ କିଛି ସମୟ ରହିଗଲେ, ତା' ଉପରେ ସର ବସିଯାଏ ଓ ସେଇ ସରର ଦାଗ ଗିନା ଚାରିଆଡ଼େ ଲାଗିଯାଏ। ଏଥିରେ ଦାଗ ନ ଥିବାରୁ ମୁଁ ଠିକ୍ କଲି ଯେ ସେମାନେ ଦୁଧ ଖାଇ ସାରିଲା ପରେ ଓ ସେମାନଙ୍କର ମଢ଼ ଦେଖା ହେବା ଭିତରେ କେହି ଆସି ସେ ଗିନା ଧୋଇ ଚାଲି ଯାଇଚି। ପୁଲିସକୁ ଦେଖାଇବା ଲାଗି ଦୁଧରେ ବିଷ ଦିଆ ହେଇନି, ଏମାନେ ଆପେ ଆପେ ବିଷ ଖାଇଛନ୍ତି।

ପୁଲିସ ସାହେବ – ଠିକ୍, ଠିକ୍ ଅକାଟ୍ୟ ଯୁକ୍ତି।

ଗଦା – ତା' ଯେବେ ହୋଇଥାଏ ତାହେଲେ ଏହା କୌଣସି ବାହାର ଲୋକର କାମ। ମୋର ୨ୟ କାରଣ ହେଉଛି ଯେ ସେମାନଙ୍କ ଶେଯ ଉପରେ ଗୋଟାଏ ପାଦଚିହ୍ନ ମୁଁ ଦେଖିଥିଲି। ସେ ଚିହ୍ନର ମାପ ଓ ଆକାର ଚିହ୍ନ ମୁଁ ନେଇଛି। ଇନିସ୍‌ପେକ୍ଟର ଦେଖିଛନ୍ତି। ଏଇ ନିଅନ୍ତୁ, ଏ ଚିହ୍ନ କାଗଜ। ସେଥିରେ ମାପ ଅଛି। ଏଇଟା ଆପଣଙ୍କର ୩ୟ ନମ୍ବର ଏକ୍‌ଜିବିଟ୍। ଏ ଘରର ଯେ ଲୋକମାନେ ତା' ଭିତରୁ କାହାରି ପାଦ ଏ ମାପ ବା ଆକାରର ନୁହେଁ ତାହା ମୁଁ ଦେଖି ନେଇଥିଲି। ଆପଣମାନେ ଜାଣନ୍ତି ସାଧାରଣ ମନୁଷ୍ୟର ଉଚ୍ଚତା ତା ପାଦ ମାପର ହାରାହାରି ୭ ଗୁଣ, ଏ ପାଦର ମାପ ୯ ଇଞ୍ଚ। ଅତଏବ ମୁଁ ଠିକ୍ କଲି ଯେ, ଯେ ମାରିଛି, ତା'ର ଉଚ୍ଚତା ୫ ଫୁଟ ୪ ଇଞ୍ଚ। ତୁମେ ଯେବେ ଦେଖିଥିବ, ତା'ହେଲେ ବୁଝି ପାରୁଥିବ ଯେ ଚାକରାଣୀର ଉଚ୍ଚତା ପ୍ରାୟ ୫ ଫୁଟ ଓ ଚାକରର ଉଚ୍ଚତା ପ୍ରାୟ ୫ ଫୁଟ ୬ ଇଞ୍ଚ।

ଇନିସ୍‌ପେକ୍ଟର – କିନ୍ତୁ ତୁମେ ତ ତାକୁ ମାପିନ ?

ଗଦା – ନାଁ ମାପିନି, କିନ୍ତୁ ମାପି ମାପି ଦେଖି ଦେଖି ଗୋଟାଏ ଅନ୍ଦାଜ ଆସିଯାଏ, ଯାହାକି ଅଭ୍ରାନ୍ତ ପରି ହୋଇଯାଏ। ତା'ହେଲେ ମୁଁ ଠିକ୍ କଲି ଯେ ପାଞ୍ଚ ଫୁଟ ୪ ଇଞ୍ଚର କେହି ଲୋକ ନିଶ୍ଚୟ ଏଠାକୁ ଆସିଛି। ଏମାନେ ମରିଯିବା ପରେ। ମୁର୍ଦ୍ଦାର ଦୁଇଟାର ଭଙ୍ଗୀରୁ ଆପଣମାନେ ଦେଖି ପାରିଥିବେ, ସେମାନଙ୍କର ଶେଯରେ ବା ଦେହ ଭଙ୍ଗୀରେ ଛଟପଟ ହେବାର କିଛି ମାତ୍ର ଚିହ୍ନ ନ ଥିଲା। ବିଷ ଯେତେ ଉତ୍କଟ ଓ ଆଶୁ ଫଳପ୍ରଦ ହେଉ ପଛକେ, ବିଷ

ଚରିବାଠାରୁ ମରିବା ଭିତରେ ମିନିଟିଏ ଦି ମିନିଟ ନିଶ୍ଚୟ ଯିବ; ଆଉ ସେଇ ମିନିଟିଏ ଦି'ମିନିଟ୍ ଲୋକ ନିଶ୍ଚୟ ଛଟପଟ ହବ। ବିଶେଷତଃ ବିଷ ଯେବେ ସେ ଅଜାଣତରେ ଖାଇଥାଏ। କିନ୍ତୁ, ଏ ସ୍ଥାନରେ କୌଣସି ଚିହ୍ନ ସେପରି ଦେଖାଯାଇନି। ତା'ର କାରଣ କ'ଣ ହୋଇପାରେ ? ନିଶ୍ଚୟ କେହି ଲୋକ ସେମାନଙ୍କର ମରିଯିବାର ଅଳ୍ପ ସମୟ ପରେ ଆସି ସେମାନଙ୍କର ଶେଯ ଠିକ୍ କରି ଦେଇଛି ଓ ସେମାନଙ୍କରଅଙ୍ଗଭଙ୍ଗୀ ମଧ୍ୟ ଠିକ୍ କରି ଦେଇଯାଇଛି। ଗୋଟାଏ ଗୋଡ଼ ବଙ୍କେଇ ହେଇଛି, ଗୋଟାଏ ଗୋଡ଼ ସିଧା ରହିଛି ଏବଂ ମୁଠା ଦିଟା ଛାତି ଉପରେ ରହିଛି; ଦିହ ସିଧା ହେଇ ଶେଯ ଉପରେ ପଡ଼ିଛି, ଏଇଆ ଥିଲା ମୁର୍ଦ୍ଦାରଙ୍କର ଆକାର। ଏପରି କାହିଁକି ? ହତ୍ୟାକାରୀ ଯେବେ ଏପରି କରିଥାଏ ତା'ର ନିଶ୍ଚୟ କିଛି କାରଣ ଥିବ। ସେଇଟା ମୁଁ ସେତେବେଳ ଧରିପାରିଲିନି। ଯାହା ହେଉ ମୁଁ ଠିକ୍ କରିନେଲି ଯେ ବାହାରର କେହି ଏ କାମ କରିଛି।

ସାହେବ – ଏତେ ଗୁଡ଼ାଏ ଯୁକ୍ତି କି ଆପଣ ଏଇ ଅଳ୍ପ ସମୟ ଭିତରେ କରି ନେଲେ ?

ଗଦା – ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ସେ କେବଳ ଶିକ୍ଷା ଓ ପ୍ରସ୍ତୁତି ଉପରେ ନିର୍ଭର କରେ। ଜିନଷ ଦେଖି ସେ ବିଷୟ ରେଜଲଦି ଯୁକ୍ତିଯୁକ୍ତ ସିଦ୍ଧାନ୍ତ କରିବାର ଅଭ୍ୟାସ ମୁଁ କରିଛି। ସେଥିପାଇଁ ମୁଁ ପାରିଲି, ଆପଣ ଓ ପାରନ୍ତେ ଯେବେ ସେହି ଅଭ୍ୟାସ କରନ୍ତେ। ପୃଥିବୀର ପ୍ରତ୍ୟେକ ଲୋକ ଏକବାର ଦୃଷ୍ଟି ପକାଇ କେତେଗୁଡ଼ିଏ କଥାର ଏକତ୍ର ବିଚାର କ୍ଷଣକ ଭିତରେ କରେ.। ଆମ୍ଭମାନଙ୍କର ଦୈନନ୍ଦିନ କାର୍ଯ୍ୟରେ ଆମ୍ଭେ ସମସ୍ତେ ଏହା କରୁଁ। ଆପଣ ଦୂରରେ ଧୂଆଁ ଦେଖିଲେ, ସଙ୍ଗେ ସଙ୍ଗେ ଭାବିଲେ ସେଠି ନିଆଁ ଅଛି; କିନ୍ତୁ ଆପଣଙ୍କ ମନରେ ଯେ ଯୁକ୍ତିର ସୂଅ ଚାଲିଲା ତାହା ଆପଣ କ'ଣ ଜାଣି ପାରିଲେ ? ଆପଣଙ୍କର ଅଭିଜ୍ଞତାରୁ ଆପଣ ଜାଣନ୍ତି ନିଆଁ ହେଲେ ଧୂଆଁ ହୁଏ। ଧୂଆଁ ଦେଖିଲେ ଆପଣଙ୍କ ମନରେ ଯୁକ୍ତି ଚାଲିଲା। ନିଆଁ ହେଲେ ଧୂଆଁ ହୁଏ, ଏଠି ଧୂଆଁ ଅଛି। ଅତଏବ ଏଠି ନିଆଁ ଅଛି। ଏତେଗୁଡାଏ ଯୁକ୍ତି କହିବାକୁ ବା କରିବାକୁ ଯେତେ ସମୟ ଯାଏ ତା'ର କୋଡ଼ିଏ ଭାଗରୁ ଭାଗେ ସମୟରେ, କିନ୍ତୁ ଆପଣଙ୍କ ମନ ସେହି ଯୁକ୍ତି ଦେଇ ଉପସଂହାରରେ ପହଞ୍ଚି ଗଲା। ଆମର ଏଇ ଜନ୍ମଗତ ଆଶୁ ଯୁକ୍ତିର ଶକ୍ତିଟିକୁ ଅଭ୍ୟାସ ଓ ଶିକ୍ଷା ଦ୍ୱାରା ବଢ଼ାଇ ପାରିଲେ ବହୁତ ଜଟିଳ ଯୁକ୍ତି ସାପେକ୍ଷ କଥା ଆମେ ବହୁତ ଜଲଦି ଜାଣି ପାରିବୁ।

ସାହେବ – ସମ୍ଭବ ! ଖୁବ୍ ସମ୍ଭବ !! ମନମୋହନ, ଶିଖିବାର କଥା ଇଏ, ଶିଖିବାର କଥା।।

ମନ – ଜୀ ହଜୁର, ନିଶ୍ଚୟ, ଏ ଦାରୋଗା ଶିଖ, ଶିଖ, ଶୁଣିଲ ତ ?

ଦାରୋଗା – ହଜୁର।

ସାହେବ – କିନ୍ତୁ ଚାକର ଚାକରାଣୀ ଥାଉ ଥାଉ ବାହାର ଲୋକ ଆସି ଦୁଧରେ ବିଷ ଦେଲା କିପରି ?

ଗଦା – ସେ ଅବଶ୍ୟ ଗୋଟାଏ ବଡ଼ ରକମ ସମସ୍ୟା ଥିଲା । ସେଇ ସମସ୍ୟାର ସମାଧାନ କରି ପାରି ନ ଥିଲି ବୋଲି ତ ମୁଁ ଏତେ ଦିନଯାଏ ଏଇପରି ପେଁଚ ଖେଳୁଥିଲି । ଭାବି ଦେଖନ୍ତୁ, ବାହାର ଲୋକ ଯେବେ ଦୁଧରେ ବିଷ ଦେଇଥାଏ, ତାହେଲେ ସେ ଏଇ ଚାକରମାନଙ୍କ ସାହାଯ୍ୟରେ, ନ ହେଲେ ସେମାନଙ୍କ ଅଜ୍ଞାତରେ । ଚାକରାଣୀର କଥା ଯେବେ ସତ ହୁଏ, ତା'ହେଲେ ସେମାନେ କୃଷ୍ଣମୂର୍ତ୍ତି ଘରକୁ ଫେରି ଆସିବା ପର୍ଯ୍ୟନ୍ତ ଶୋଇ ନ ଥିଲେ । ସେମାନଙ୍କର କୃଷ୍ଣମୂର୍ତ୍ତି ଓ ତା'ର ପିଲାମାନଙ୍କ ପ୍ରତି ଯେପରି ଭକ୍ତି ଓ ସ୍ନେହ ଥିଲା, ତା'ର ବହୁତ ପ୍ରମାଣ ମୁଁ ଗାଁ ବାଲାଙ୍କଠୁଁ ପାଇ ସାରିଛି ; ସୁତରାଂ ସେମାନେ ଜାଣିକରି ଯେ ଏହା ହୋଇଛି, ଏକଥା ମୁଁ ବିଶ୍ୱାସ କରି ପାରିଲିନି । ତା'ହେଲେ ଏକମାତ୍ର ଉପାୟ ରହିଲା ଯେ ଏମାନେ ନ ଥିବା ବେଳେ କେହି ବିଷ ଦେଇ ଚାଲିଯାଇଛି । କୃଷ୍ଣମୂର୍ତ୍ତି ଓ ତା'ର ସ୍ତ୍ରୀ ନ ଥିଲା ବେଳେ ଶୋଇବା ପିଲାଙ୍କୁ ଏକୁଟିଆ ଛାଡ଼ି ଏମାନେ ନିଶ୍ଚୟ ନିଜ ଖୁସିରେ ଘର ବାହାରକୁ ଯା'ନ୍ତି ନି । ଅତଏବ ସେମାନଙ୍କୁ ଏପରି କୌଣସି ବ୍ୟକ୍ତି ଡାକି ନେଇଛି, ଯାହାର କଥା ସେମାନେ ଏଡ଼ି ପାରି ନାହାନ୍ତି । କିଏ ସେ ଏପରି ଲୋକ ? ଏ ଗାଁ'ରେ କାର୍ଜୀ ହୋଇପାରେ । ମୋର ମନେ ପଡ଼ିଗଲା, ସେ ଦିନର କଥା । କାର୍ଜୀ ମଣିଷ ମାରୁ କେସ୍ ରିପୋର୍ଟ କରିବା ପାଇଁ ତହସିଲଦାରଙ୍କ କଥା ଏଡ଼ି ଦେଇ ବ୍ରହ୍ମପୁର ଆସିଲେ ; ଅଥଚ ବ୍ରହ୍ମପୁର ପହଞ୍ଚିବାର ଘଣ୍ଟାକ ପରେ ଥାନାରେ ପହଞ୍ଚିଲେ । ତାଙ୍କ କହିବା ଅନୁସାରେ ସେ ଓକିଲ ପାଖକୁ ଯାଇଥିଲେ । କିଆଁ, ଯା ଅପେକ୍ଷା ଆଉ କ'ଣ ଏପରି ଗୁରୁତର କଥା ହୋଇପାରେ ଯେ ଯାହା ଲାଗି ସେ ଥାନା ପାଖକୁ ନ ଆସି ଓକିଲ ପାଖକୁ ଗଲେ ? ମୋର ସନ୍ଦେହ ହେଲା ଯେ ସେ ଏଇ ମଣିଷ ମାରୁ ମକଦ୍ଦମା ବିଷୟରେ ଥାନାକୁ ଆସିବା ଆଗରୁ ଓକିଲ ପରାମର୍ଶ ନବାକୁ ଯାଇଥିଲେ କାହିଁକି ? ସେ ନିଶ୍ଚୟ ଏଥିରେ ସଂପୃକ୍ତ ଅଛନ୍ତି । ସେଇକି ତେବେ ଏମାନଙ୍କୁ ଡାକି ନେଇ ନରହନ୍ତାକୁ ବିଷ ଦେବାର ସୁବିଧା କରାଇ ଦେଇଥିଲେ ? ମୋର ମାତ୍ରକ ଏ ଯୁକ୍ତିଗତ ଅନୁମାନ । ଏଇ ଅନୁମାନର ସତ୍ୟତା ପରୀକ୍ଷା କରିବା ଲାଗି ମୁଁ ସେ ଦିନ ଇନିସ୍‌ପେକ୍ଟରଙ୍କୁ କହି ସେ ଚାକର ଚାକରାଣୀଙ୍କ ସହିତ ଜେଲରେ ଦେଖା କରିଥିଲି ଓ ସେମାନଙ୍କ କଥାବାର୍ତ୍ତାରୁ ମୋର ଅନୁମାନ ସତ ବୋଲି ପ୍ରମାଣ ପାଇଥିଲି । ତା'ପରେ ଜିନିଷଟା ପରିଷ୍କାର ହୋଇଗଲା । ସୁରିଆ କାର୍ଜୀଙ୍କର ଜୋଇଁ । ସୁରିଆର ଭାଇ ହାଣ୍ଡନୋଟ୍ ଦେଇ କୃଷ୍ଣମୂର୍ତ୍ତିଙ୍କଠାରୁ ଟଙ୍କା କରଜ ନେଇଛି । ସୁରିଆ କାର୍ଜିଙ୍କୁ କହିଛି ଯେ ଟଙ୍କା ସେ ଦେଇ ପାରିବନି । କିନ୍ତୁ ତା ଚାକର ଚାକରାଣୀଙ୍କି ଟଙ୍କାର ଲୋଭ ଦେଖାଇ ଓ ତାଙ୍କ ପାପ ପ୍ରଣୟର ଭୟ ଦେଖାଇ ଯେବେ ହାଣ୍ଡନୋଟ୍‌ଟା ଅଣା ଯାଇପାରେ, ତାହେଲେ କାମ ଫତେ । ସେଇ ତାକୁ ପ୍ରବର୍ତ୍ତାଇଛି ଯେ ସେମାନେ ଘରେ ନ ଥିବା ବେଳେ ଚାକର ଚାକରାଣୀଙ୍କି ଡକାଇ ଏ ପ୍ରସ୍ତାବ କରାଯାଉ । କାର୍ଜୀ ତ କଥାରେ ଭୁଲି ସେମାନଙ୍କୁ ଡକେଇଛନ୍ତି । ତା'ପରେ ସୁରିଆ ପାଚିରୀ ଡେଇଁ ଘର ଭିତରେ ପଶି ବିଷ ଦେଇଛି ଓ ସେମାନଙ୍କର ଶୋଇଲା ଘରକୁ ଯାଇ ଗେଡ଼ାରେ ସୂତା ବାନ୍ଧି କବାଟ ଉପରେ ଦେଇ ବାହାରେ ଓହଳାଇ ଚାଲିଯାଇଛି ।

ସାହେବ - ଆଶ୍ଚର୍ଯ୍ୟ, ଚମତ୍କାର । ଆଚ୍ଛା, ସୁରିଆ ଉପରେ ତମର ସନ୍ଦେହ ହେଲା କାହିଁକି ପହିଲେ ? ଗାଁ'ରେ ଏତେ ଲୋକ ତ ଅଛନ୍ତି ଯେ କେହି ତ ତେଇଁ ପାରିଥାନ୍ତେ ।

ଗଦା - ତା' ପାରି ଥାନ୍ତେ; କିନ୍ତୁ ଦୁଇ ଦୁଇଟା ଲୋକଙ୍କୁ ବିଷ ଦେଇ ମାରିଦବା ଲାଗି ସେପରି ଗଭୀର ଉଦ୍ଦେଶ୍ୟ ଥିବା ତ ଦରକାର । ବିନା ଉଦ୍ଦେଶ୍ୟରେ ତ କେହି ଏପରି ପାପ କରେ ନାହିଁ; ଏ କ୍ଷେତ୍ରରେ କି ଉଦ୍ଦେଶ୍ୟ ଥାଇପାରେ । ମୁଁ ମଧ୍ୟ ସେହି ଚକ୍ରାନ୍ତରେ ପଡ଼ି ଅନେକ କିଛି ଭାବିଛି । କିନ୍ତୁ ସେଦିନ ସେ ବୁଢ଼ାର ଗପ ଶୁଣି ମୋର ଆଶା ଲାଗିଲା, ତିନି ତିନିଟା ବିଷ ଖିଆ ଏ ଗାଁ'ରେ ହୋଇ ଯାଇଛି, ଏ ବି' ତିନି ମାସ ଭିତରେ । ଏ ତିନିଟା କ'ଣ ପରସ୍ପର ସମ୍ପୃକ୍ତ ନା ଖାଲି ବିକ୍ଷିପ୍ତ ଆକସ୍ମିକ ଦୁର୍ଘଟଣା ? ଯଦି ପରସ୍ପର ସମ୍ପୃକ୍ତ ହୋଇଥାଏ, ତାହେଲେ ଅନୁମାନ କରିବା ଯୁକ୍ତିଯୁକ୍ତ ଯେ ଏହାର ରହସ୍ୟ ସୂରି ନାରାୟଣ ଘରେ ରହିଛି । ଏଇ ମୋର ପ୍ରଥମ ସନ୍ଦେହ । ତା'ପରେ ଯେତେବେଳେ ଶୁଣିଲି ଯେ ସୁରିଆର ଭାଇ କୃଷ୍ଣମୂର୍ତ୍ତିଠାରୁ ଟଙ୍କା କରଜ କରିଥିଲା, ସେତେବେଳେ ସେ ସନ୍ଦେହ ଟିକେ ବଢ଼ିଲା । ତାପରେ କାର୍ଜୀ ଏମାନଙ୍କୁ ଡକାଇନବା, ସଦେଇର କୃଷ୍ଣମୂର୍ତ୍ତି ଓ ସୁରିଆ ଘରକୁ ଯା' ଆସ କରିବା ଓ ତିନିଟା ଯାକ ମକଦ୍ଦମାରେ ଏକା ବିଷ ପ୍ରଯୁକ୍ତ ହବା ମୋର ଅନୁମାନକୁ ସତ୍ୟର ଆଡ଼କୁ ଆସ୍ତେ ଆସ୍ତେ ଟାଣି ଆଣିଲା । ଆପଣମାନେ ଜାଣନ୍ତି, ସୁରିଆ ତା'ର ଭାଇ ଭାଉଜଙ୍କୁ କେତେ ଦୂର ଭକ୍ତି କରୁଥିଲା । ଆପଣମାନେ ଜାଣନ୍ତି, ସେମାନଙ୍କ ମୃତ୍ୟୁ ପରେ ସେ କିପରି ପାଗଳ ପରି ହୋଇଯାଇ ଅଛି । ମୁଁ ଭାବିଲି, ତା' ଭାଇ ଭାଉଜ ମରିବାରେ ସେ ଯେବେ ବିଶ୍ୱାସ କରିଥାଏ ଯେ, କୃଷ୍ଣମୂର୍ତ୍ତିର ହାତ ଅଛି ଓ ସନ୍ଦେହ ମଧ୍ୟ ସେଥିରେ ମିଶିଛି, ତା'ହେଲେ ତାକୁ ମାରିବା ଲାଗି ସୁବିଧାର ଯଥେଷ୍ଟ ଉଦ୍ଦେଶ୍ୟ ରହିଛି । ସେ ଯା ହେଉ, ମୋର ଅନୁମାନ ସତ୍ୟରେ ପରିଣତ ହେଲା ସେଇଦିନ, ଯେଉଁଦିନ ମୁଁ ଜଗା ଓ ତା'ର ସ୍ତ୍ରୀର ମୃତଦେହର ଫଟ ତୁମ ଫାଇଲରୁ ଦେଖିଥିଲି, ମନ ବାବୁ । ତୁମର ମନେ ଥିବ, ମୁଁ ତମ ଫାଇଲଟା ମାଗି ନେଇ ପଢ଼ିଥିଲି । ସେ ଫଟରେ ଜଗା ଓ ତା'ର ସ୍ତ୍ରୀ ଯେପରି ଆକାରରେ ମରି ପଡ଼ିଥିବାର ଦେଖିଲି, କୃଷ୍ଣମୂର୍ତ୍ତି ତ ତା'ର ସ୍ତ୍ରୀ ମଧ୍ୟ ଠିକ୍ ସେହିପରି ମରି ପଡ଼ିଥିଲେ । ମୋର ଏ ବିଷୟରେ ଯେ ସନ୍ଦେହଟା ପ୍ରଥମ ଦିନ ହେଇଥିଲା, ତା'ର ପରବର୍ତ୍ତୀ ଏସବୁ କଥା ସାଙ୍ଗରେ ମିଶି ଏହି ସତ୍ୟରେ ପରିଣତ ହେଲା ଯେ ଜଗା ଓ ତା'ର ସ୍ତ୍ରୀ ମରିବାର ମୂଳରେ କୃଷ୍ଣମୂର୍ତ୍ତି ଥିଲା ଏବଂ ସେହି ହେତୁ ସୁରିଆ ଏମାନଙ୍କୁ ମାରି ସେହିପରି ପକାଇ ଯାଇଥିଲା । ତା'ର ଉଦ୍ଦେଶ୍ୟ ଅନୁରୂପ ପ୍ରତିଶୋଧ । ଦ୍ୱିତୀୟ ଉଦ୍ଦେଶ୍ୟ ଯେ, ବିଷ ଖାଇ ଆତ୍ମହତ୍ୟା କଲେ ଲୋକର ଆକାର ଏଇପରି ରହେ । ଛଟପଟର ଚିହ୍ନ ରହିଲେ କାଳେ ଆତ୍ମହତ୍ୟା ବୋଲି ବିଶ୍ୱାସ ନ ହୋଇପାରେ, ଅତଏବ ଆତ୍ମହତ୍ୟାର ଯେ ଆକର ସେ ଦେଖିଥିଲା, ସେହି ଆକାର ସେ ଏମାନଙ୍କୁ ରଖି ଦେଇଗଲା ।

ସାହେବ - ଠିକ୍, ଠିକ୍ । ଆପଣ ଯେବେ ସେଇଦିନୁ ଏସବୁ ଜାଣିଥିଲେ ତା'ହେଲେ କାହିଁକି ସୁରିଆକୁ ଧରାଇ ନ ଦେଲେ । ଆଗରୁ ? ଆଜିଯାଏ କାହିଁକି ଆମ୍ଭମାନଙ୍କୁ ଏ ଖେଳ ଖେଳେଇଲେ; ଦୁଇ ଦୁଇଟା ଲୋକଙ୍କୁ ଫାସି କାଠର ଦୁଃସ୍ୱପ୍ନ ଏତେ ଦିନ କାହିଁକି ଦେଖେଇଲେ ?

ଗଦା - ଉପାୟ ଯେ ନ ଥିଲା । ମୁଁ ଯେବେ ଏସବୁ କଥା ଆପଣଙ୍କୁ କହିଥାନ୍ତି, ତାହେଲେ ଆପଣ ବିଶ୍ୱାସ କରିଥାନ୍ତେ ? ମୋର ପ୍ରମାଣ କାହି ? ବିନା ପ୍ରମାଣରେ ମୁଁ ଯାହା କହିଥାନ୍ତି, ଯେ ସେ କେବଳ ଅନୁମାନ ହିଁ ହୋଇଥାନ୍ତା ନା ? ଆପଣ ମୋର ଅନୁମାନ ଉପରେ ସୁରିଆକୁ ଧରି ଥାନ୍ତେ ।

ସାହେବ - ତା' ଅବଶ୍ୟ କରି ନ ଥାନ୍ତି, ତା'ହେଲେ ପ୍ରମାଣ କିପରି ସଂଗ୍ରହ କଲେ ?

ଗଦା - ମୁଁ ଦେଖିଲି, ସୁରିଆ ବିରୁଦ୍ଧରେ ପ୍ରମାଣ ଯୋଗାଡ଼ କରିବା କଷ୍ଟକର । ତା'ର କେହି ସହକର୍ମୀ ନାହାନ୍ତି । ଅତଏବ ତା' ବିରୁଦ୍ଧରେ ପ୍ରମାଣ ସେଇ ନ ଯୋଗାଇଲେ ଅନ୍ୟ ଉପାୟ ନାହିଁ । ଏହା ଭାବି ମୁଁ ଦିନେ ଗୁଇନ୍ଦା ପୁଲିସ ବେଶରେ ତା' ଦୁଆରେକୁ ଗଲି ଓ ତା' ପାଖ ଦୁଆରେ ବସିଲି । ମୁଁ ମୋର ଭାବଭଙ୍ଗୀରେ ତାକୁ ଜଣାଇଦେଲି ଯେ, ମୁଁ ତା'ର ପିଛା ଧରିଛି । ସେ ତା'ର ପଡ଼ିଶା ସାଙ୍ଗକୁ ମୋଠାରୁ କଥା ଆଦାୟ କରିବାକୁ ଲଗେଇଲା, ମୁଁ ମଧ ସେଇଆ ଚାହୁଁଥିଲି । ଅତଏବ ମୁଁ ନିତାନ୍ତ ବୋକା ସାଜି ତା'ର ମୁଣ୍ଡରେ ଢୁକେଇ ଦେଲି ଯେ ସେ ଚାକର ଚାକରାଣୀଙ୍କ ଘରୁ ଯେବେ ବିଷ ନ ବାହାରେ, ତା'ହେଲେ ପୁଲିସ ସୁରିଆ ଉପରେ ହିଁ ସନ୍ଦେହ କରିବ । ମୋର ଆଶା ଥିଲା, ତା'ର ସଙ୍ଗାତକୁ ଏକଥା କହିବ, ଆଉ ସୁରିଆ ନିଜକୁ ବଞ୍ଚାଇବା ଲାଗି ଯେଉଁ ଉପାୟରେ ସେଦିନ ଯାଇଥିଲା, ସେଇ ଉପାୟରେ କୃଷ୍ଣମୂର୍ତ୍ତି ଘରକୁ ପୁଣି ଯାଇ ବିଷ ରଖି ଦେଇ ଆସିବ ।

ମନ - କିନ୍ତୁ ତା' ଘରେ ତ ବିଷ ନ ଥିଲା । ଆମେ ଖିନିଭିନ୍ ତଲାସ କରି ଦେଖିଛୁ ।

ଗଦା - ମୁଁ ଜାଣେ ; ସେହି ହେତୁ ମୁଁ ଭାବିଲି ସେ ଯେବେ ବିଷ ଦେଇଥାଏ, ତାହେଲେ ବି' ତିନି ଦିନ ପର୍ଯ୍ୟନ୍ତ ତା ପାଖରେ ବିଷ ଥିଲା । ସେ ଯେବେ ଚାକର ଚାକରାଣୀକି ଏ ମକଦ୍ଦମାରେ ଜଡ଼ିତ କରିବ ବୋଲି ବିଷ ରଖବଦେଇ ଆସେ, ତାହେଲେ ତା ପାଖରେ ବିଷ ଏ ପର୍ଯ୍ୟନ୍ତ ଅଛି । କୁଠି ତାହେଲେ ? ଘରେ ତ ନାହିଁ, ଥିଲେ ପୁଲିସ୍ ପାଇଥାନ୍ତେ । ନିଶ୍ଚୟ ଘର ବାହାରେ ସେ ଲୁଚେଇ ରଖିଛି, ଯୁଠୁ ସେ ସହଜରେ ପାଇପାରେ । ଅନୁମାନ କଲି ତାର ବାଡ଼ି । ଆମ ଦେଶ ଲୋକଙ୍କର ଅଭ୍ୟାସ, ସେମାନେ ଜିନିଷପତ୍ର ଯାହାକୁ ସେମାନେ ଦରକାରୀ ମନେ କରନ୍ତି ସାଧାରଣ ଅଗଣାରେ, ଚୁଲି ମୁଣ୍ଡରେ, ନ ହେଲେ ବାଡ଼ିରେ ପୋତି ରଖନ୍ତି । ଦୁଇ ତିନି ଦିନର ଖୋଲା ଚିହ୍ନ ଘରେ ହେଇଥିଲେ ପୁଲିସ୍ ଲକ୍ଷ କରିଥାନ୍ତେ । ଅତଏବ ମୋର ଅନୁମାନ ଠିକ୍ ଅନୁମାନ ନୁହେଁ ; ଯୁକ୍ତିଯୁକ୍ତ ଉପସଂହାର । ଏହାରି ଉପରେ ବିଶ୍ୱାସ କରି ମୁଁ ଯାଇ ରାତିରେ ତା ବାଡ଼ିରେ ତେନ୍ତୁଳି ଗଛ ଉପରେ ଲୁଚି ବସି ରହିଲି । ଦେଖିଲି ପ୍ରାୟ ୮ଟା ରାତିରେ ସେ ସେଠାକୁ ଆସି ଗାତ ଖୋଳି ବିଷ ଶିଶିରୁ ବିଷ ନେଇ ଗାତ ପୋତି ଚାଲିଗଲା । ମୁଁ ଗଛରୁ ଓହ୍ଲାଇ ସେହି ଗାତଟା ପୁଣି ଖୋଳି ଯାହାସବୁ ପାଇଲି ସେଥିରେ ମୋର ସବୁ ପ୍ରମାଣ ମିଳିଗଲା,

ତା'ପରେ ମୁଁ ଦାଣ୍ଡକୁ ଯାଇ ଛପି ରହିଲି। ସେ ଘରୁ ବାହାରି କୃଷ୍ଣମୂର୍ତ୍ତି ଘରକୁ ଗଲାବେଳେ ମୁଁ ତା'ର ପିଛା ଧରିଲି ଓ ସେ ଯାହା ଯାହା କଲା ସବୁ ଦେଖିଲି।

ମନ - ଓଃ, ସେଇଥିପେଇଁ ଭବିଷ୍ୟତ ବକ୍ତା ବନି ଯାଇଥିଲ ଯେ ଚିଠି ଆସିବ, ଚିଠିରେ କ'ଣ ଲେଖା ଅଛି ?

ସାହେବ - ଗୁଡ଼ାଏ ପିଲାମି ଆଉ ଦେଖାଅ ନାହିଁ ଇନିସ୍‌ପେକ୍ଟର। ହୁଁ, ଆପଣ ସେ ବଲବଲାମି ଶୁଣନ୍ତୁ ନାହିଁ। ତା'ପରେ ?

ଗଦା - ତା'ପରେ ଆଉ କିଛି ନାହିଁ। ବାକୀ ଶେଷ ପ୍ରମାଣଟି ଆପଣଙ୍କ ହାତରେ ଦେଇ ପାରିଲେ ମୋର ଛୁଟୀ। ଚାଲନ୍ତୁ ଏଥର ସୁରିଆ ଘରକୁ।

ସମସ୍ତେ ଚାଲିଲେ। ସୁରିଆର ବାଡ଼ି ଭିତରେ ସେଇ ତେନ୍ତୁଳି ଗଛ ପାଖ ସେଇ ଗାତ ଯାଗାକୁ। ଗାତ ଖୋଳାଇଲେ, ତା' ଭିତରୁ ବାହାରିଲା ଗୋଟିଏ ଗୋଳ ଆଉନ୍‌ସିଆ ବୋତଲରେ ଅଧ ବୋତଲେ ପ୍ରୁଷିକ୍ ଏସିଡ୍, ଗୋଟାଏ ପାଞ୍ଚ ହାତ ଲମ୍ବାର କଳା ରେଶମୀ ସୂତା, ଆଉ ଖଣ୍ଡେ ଟ୨୦୦/-ର ହାଣ୍ଡନୋଟ୍ ଓ ଖଣ୍ଡିଏ ଚିଠି। ସାହେବ ଚିଠି ଖଣ୍ଡକ ପଢ଼ିଲେ। ଗଦାଧରଙ୍କ ନିର୍ଦ୍ଦେଶ ମତେ। ତାଙ୍କର ମୁହଁ ଉଜ୍ଜ୍ୱଳ ହୋଇ ଉଠିଲା। ସେ କହିଲେ, 'ଏ ଥରକ ମକଦ୍ଦମା ସମ୍ପୂର୍ଣ୍ଣ। ଧନ୍ୟବାଦ ଗଦାଧର ବାବୁ, ଆପଣ ଯେପରି ଭାବରେ ଏ ମକଦ୍ଦମାର କିନାରା କଲେ, ସେ ବାସ୍ତବିକ ଶିକ୍ଷଣୀୟ ଓ ଚମତ୍କାର ! ଚାଲ, ଦେଖିବା, ସୁରିଆ କ'ଣ କହୁଛି। ହଁ, ଇନିସ୍‌ପେକ୍ଟର, ଆଜି ବ୍ରହ୍ମପୁରରେ ପହଞ୍ଚି ସେ ଚାକର ଚାକରାଣୀ ଦୁଇଟାକୁ ଜେଲ୍‌ରୁ ମୁକ୍ତ କର।



# ତେର

## ସୁରିଆର କଥା

ସେଇଦିନ ଉପରବେଳା ଏମାନେ ସମସ୍ତେ ବ୍ରହ୍ମପୁର ଥାନାରେ ଇନିସ୍‌ପେକ୍ଟରଙ୍କ ଦପ୍ତରରେ ଏକାଠି ହେଲେ। ସୁରିଆକୁ ହାଜତରୁ ଅଣାଗଲା। ଟିକିଏ ମାତ୍ର ବିବର୍ଣ୍ଣ ଦେଖାଯିବା ଛଡ଼ା ସୁରିଆଠାରେ ଅନ୍ୟ କୌଣସି ଆଶଙ୍କା ବା ଭୟର ଚିହ୍ନ ନ ଥିଲା; ବରଂ ତା'ର ଆଗର ଉଦ୍‌ଭ୍ରାନ୍ତ ଭାବ ଯେପରି ଅନେକଟା କମି ଯାଉଚି, ଯେପରି ବହୁତ ଝିନ୍‌ଝଟଣା ପରେ ସେ ଶାନ୍ତି ପାଇଚି। ଗଦାଧରଙ୍କ ଇଙ୍ଗିତ ଅନୁସାରେ ତା ହାତରୁ ହାତକଡ଼ି କାଢ଼ି ଦିଆଗଲା। ତାକୁ ଖଣ୍ଡିଏ ଚୌକିରେ ବସିବା ପାଇଁ ଅନୁରୋଧ କରାଗଲା। ସେ ଟିକିଏ ଇତଃସ୍ତତଃ ହୋଇ ବସିଲା

ଶେଷରେ । ଗଦାଧର ତାଙ୍କୁ ଖଣ୍ଡିଏ ସିଗାରେଟ୍ ଦେଲେ ଓ ଦିଆସିଲି ମାରି ଲଗାଇଦେଲେ । ସେ ବି ଚାରିଥର ସିଗାରେଟ୍‌ଟା ଟାଣି ଚୌକିରେ ବେଶ୍ ଆରାମରେ ବସିଗଲା । ତା'ପରେ ଗଦାଧର ପଚାରିଲେ, 'ସୁରବାବୁ, ଆପଣଙ୍କୁ ଏଠାରେ ବେଶୀ କିଛି କଷ୍ଟ ହେଉନି ତ ?'

ସୁରି - ନା' ସେପରି କିଛି ନୁହେଁ । ଏମିତି ଅବସ୍ଥାରେ ପଡ଼ିଲେ ଯାହା ହେବାର କଥା, ତା'ଠାରୁ ବେଶୀ କିଛି ନୁହେଁ ।

ଗଦା - ଏଇ ଦେଖନ୍ତୁ ପୁଲିସ ସାହେବ, ଇନିସ୍‌ପେକ୍ଟର, ଦାରୋଗା ଓ ମୁଁ ସମସ୍ତେ ଆପଣଙ୍କ କଥା ଶୁଣିବା ପାଇଁ ବ୍ୟଗ୍ର ଭାବରେ ବସି ରହିଚୁ । ଆପଣ କ'ଣ ସବୁ କଥା ଖୋଲି କହିବାକୁ ପ୍ରସ୍ତୁତ ?

ସୁରି - ମୁଁ ସମ୍ପୂର୍ଣ୍ଣ ପ୍ରସ୍ତୁତ । ମୋର କାମ ଶେଷ ହୋଇଚି । ମୋର ଭାଇ ଓ ଭାଉଜଙ୍କ ହତ୍ୟାର ପ୍ରତିଶୋଧ ନେଇଛି । ମୋର ଆଉ ଜୀବନରେ ବେଶୀ କିଛି ଲୋଭ ବା ମାୟା ନାହିଁ । ତା'ର କାରଣ ମଧ କିଛି ନାହିଁ । ତେବେ ଏତିକି ମୁଁ କହିବାକୁ ଚାହେଁ ଓ ପ୍ରମାଣ କରିବାକୁ ଚାହେଁ ଯେ ମୋ ଭାଇ ଓ ଭାଉଜ ଆତ୍ମହତ୍ୟା କରି ନାହାନ୍ତି - ସେମାନଙ୍କୁ ନିଷ୍ଠୁର ନିର୍ମମ ଭାବରେ ହତ୍ୟା କରାଯାଇଚି । ଆଉ ମୋର ଭାଉଜ, ଯେ ସ୍ୱର୍ଗର ଦେବୀ, ତାଙ୍କଠାରେ କୌଣସି କଳଙ୍କ ଆସିପାରେନା, ଆସି ପାରିନି ।

ଗଦା - ଠିକ୍ କଥା । ବର୍ତ୍ତମାନ ଏସବୁର ପ୍ରମାଣ ଆପଣ କ'ଣ ଦେଇପାରିବେ ?

ସୁରି - ମୁଁ ଆରମ୍ଭରୁ ସବୁ କଥା ଖୋଲି କରି କହିଯାଇଚି । କିନ୍ତୁ ମନେ ରଖନ୍ତୁ ଗଦାଧର ବାବୁ । ଆପଣ ପ୍ରତିଜ୍ଞା କରିଚନ୍ତି ଯେ ମୁଁ ଫାସୀ କାଠରେ ଝୁଲିବିନି ।

ଗଦା - ମୁଁ ମୋର ପ୍ରତିଜ୍ଞା ରକ୍ଷା କରିବି । ଭାବିତ ହୁଅନି ।

ତା'ପରେ ସୁରି ନାରାୟଣ କଥା ଆରମ୍ଭ ହେଲା । ସେ ଯେପରି କହିଥିଲା, ତାହା ପୁଲିସ ସାହେବଙ୍କ ସଂକ୍ଷିପ୍ତ ଲେଖକ କିରାଣୀ ଲେଖି ନେଇଥିଲେ । ତାହାର ଅବିକଳ ଅନୁବାଦ ତଳେ ଦିଆଗଲା ।

## ପାଲସରା ସୁରି ନାରାୟଣ ସୁବୁଦ୍ଧିଙ୍କର ବୟାନ ।

ମୋର ନାମ ପାଲସରା ସୁରି ନାରାୟଣ ସୁବୁଦ୍ଧି । ପିତାର ନାମ ପାଲସରା ଭେଙ୍କଟ ରମଣ ସୁବୁଦ୍ଧି । ଘର ପାଲଖଣ୍ଡି । ମୋର ବୟସ ବ୨୨ର୍ଷ । ଜାତିରେ କୁମୁଟି । ବ୍ୟବସାୟ ସୁନାରୂପା କାରିଗରୀ । ଆମ ଘରେ ମୋର ଭାଇ ଜଗନ୍ନାଥ, ମୋର ଭାଉଜ ଲକ୍ଷ୍ମୀଆମ୍ମା ଓ ମୁଁ - ଏଇ ତିନି ଜଣ । ମୋର ଭାଇ ଆଜକୁ ବ୬ର୍ଷ ହେଲା ବିବାହ କରିଥିଲା । ଭାଉଜ ଗୃହଯୋଗ୍ୟା ହେଲା ପରେ ଆମ ଘରକୁ ଏଇଠିକି ବର୍ଷେ ହେଲା ଆସିଛନ୍ତି । ମୋର ଭାଇଙ୍କର ଯେପରି ଦେବପ୍ରତିମ

ସ୍ୱଭାବ, ମୋର ଭାଉଜ ମଧ୍ୟ ସେହିପରି ପରମା ସତୀ । ତାଙ୍କର ରୂପ ଯେପରି ସାକ୍ଷାତ ଲକ୍ଷ୍ମୀଙ୍କ ପରି, ଗୁଣ ମଧ୍ୟ ସେହିପରି । ଭାଉଜ ଘରକୁ ଆସିବା ଆଗରୁ ଭାଇ ଟିକିଏ ଖର୍ଚ୍ଚୀ ଥିଲେ । ବ୍ରାହ୍ମଣ ଦେବତା, ଦୁଃଖୀ ରଙ୍କୀଙ୍କ ସେବା ପୂଜାରେ ଓ ଦାନଧର୍ମରେ ବହୁତ ପଇସା ଖର୍ଚ୍ଚ କରୁଥିଲେ । ଫଳରେ ତାଙ୍କର ରୋଜଗାରରୁ ବେଶୀ କିଛି ବଳୁ ନ ଥିଲା । ସେ ନିଜେ ଭଲ ଖଣ୍ଡିଏ ନ ପିନ୍ଧି ଓ ଭଲ ଗଣ୍ଡିଏ ନ ଖାଇ ଚାରିଆଡୁ କସିକାସି ମତେ କଲେଜରେ ପଢ଼ାଇବାକୁ ପଇସା ଯୋଗାଉଥିଲେ । ମୁଁ ମାତ୍ର ସେତେବେଳେ ନୂଆ କରି କଲେଜକୁ ଯାଇଥାଏଁ । ଭାଉଜ ଆସିଲା ପରେ ଆମର ଖର୍ଚ୍ଚ ଆହୁରି ବଢ଼ିଗଲା । ଭାଉଜଙ୍କ ଗୁଣରେ ଓ ରୂପରେ ମୁଗ୍ଧ ହୋଇ ତାଙ୍କୁ ଖୁସି ରଖିବା ପାଇଁ ଭାଇ ତାଙ୍କ ପାଇଁ ଗହଣା ଗାଣ୍ଠି ଲୁଗାପଟା ଇତ୍ୟାଦିରେ ଗୁଡ଼ାଏ ପଇସା ମଧ୍ୟ ବ୍ୟୟ କରି ପକାଇଲେ । ଶେଷରେ ସେ ବାଧ୍ୟ ହୋଇ କୃଷ୍ଣମୂର୍ତ୍ତୀଙ୍କଠାରୁ ଟଙ୍କା ଧାର କରିବାକୁ ଲାଗିଲେ । ମୁଁ ପ୍ରଥମେ ପ୍ରଥମେ ଏସବୁ ଜାଣି ନ ଥିଲି । ଗଲା ଗ୍ରୀଷ୍ମ ଛୁଟିରେ ମୁଁ ଘରେ ଥିଲାବେଳେ ଥରେ କୃଷ୍ଣମୂର୍ତ୍ତୀ ଆମ ଘରକୁ ଆସିଥିଲେ । ଭାଇଙ୍କର ତାଙ୍କର ଦାଣ୍ଡ ଘରେ ବସି କଥାବାର୍ତ୍ତା ହେଉଥାନ୍ତି । ମୁଁ ପାଖ ଘରେ ବସି ବହି ଖଣ୍ଡେ ପଢୁଥାଏ । ଏମାନଙ୍କର କଥାବାର୍ତ୍ତାର କିଛି କିଛି ମୋ କାନକୁ ଆସୁଥାଏ । ସେଇଥିରୁ ବୁଝିଲି ଯେ ଭାଇ ପ୍ରାୟ ଦୁଇ ହଜାର ଟଙ୍କା ତାଙ୍କଠାରୁ ଧାର କରି ସାରିଲେଣି । ସେ ବର୍ତ୍ତମାନ ସବୁ ହାଣ୍ଡନୋଟ୍‌ଗୁଡ଼ାକ ଏକାଠି କରି ଗୋଟିଏ ହାଣ୍ଡନୋଟ କରିବାକୁ ଚାହୁଁଛନ୍ତି, ନ ହେଲେ ଟଙ୍କା ଚାହୁଁଛନ୍ତି । ମୋ ମୁଣ୍ଡରେ ବଜ୍ର ପଡ଼ିଲା । ଦି ହଜାର ଟଙ୍କା ? ଏତେ ଟଙ୍କା କୁଠୁ ଶୁଝାହେବ ? ସେହି ଦିନ ମୁଁ ଠିକ୍ କଲି ; ମୁଁ ଆଉ ପଢ଼ିବିନି । କୃଷ୍ଣମୂର୍ତ୍ତୀ ଚାଲିଗଲା ପରେ ମୁଁ ଭାଇଙ୍କି ସବୁ ଖୋଲି କରି କହିଲି । ତାଙ୍କୁ ଟିକିଏ ଭର୍ତ୍ସନା ମଧ୍ୟ କଲି, ଏପରି ଭାବରେ ଋଣ କରି ଆମକୁ ବୁଡ଼ାଇ ଦେଲେ ବୋଲି । ସେ କାନ୍ଦ କାନ୍ଦ ହୋଇଗଲେ । କହିଲେ, 'ଯାହା ହେବାର ହୋଇଯାଇଚି । ମୁଁ ପ୍ରତିଜ୍ଞା କରୁଚି, ପ୍ରାଣପଣ ପରିଶ୍ରମ କରି ମୁଁ ଏ ଟଙ୍କା ପରିଶୋଧ କରିବି ।' ତା'ପରେ କଲେଜକୁ ଫେରିଯିବା ପାଇଁ ଓ ଭାଉଜଙ୍କୁ ଏସବୁ କଥା ନ କହିବା ପାଇଁ ସେ ମୋତେ ବିଶେଷ ଅନୁରୋଧ କଲେ । ମୁଁ ଅନୁରୋଧ ଭାଙ୍ଗି ପାରିଲିନି, ଭାଉଜଙ୍କୁ କିଛି କହିଲିନି । ଛୁଟି ପରେ କଲେଜକୁ ଚାଲିଗଲି । ପୁଣି ଯେତେବେଳେ ପୂଜା ଛୁଟିରେ ଘରକୁ ଆସେ, ସେତେବେଳେ ଦେଖିଲି ଭାଇଙ୍କର ଚେହେରା ଏକାବେଳେକେ ବଦଳି ଯାଇଛି । ତାଙ୍କର ମୁହଁରେ ହସ ନାହିଁ, ମନରେ ଆନନ୍ଦ ନାହିଁ । ଚାଲି ଚଳନରେ ଜୀବନ ନାହିଁ । ମିଁ ଅନେକ ଥର ଦେଖିଛି, ଭାଉଜ ତାଙ୍କ ଆଡ଼କୁ ଚାହିଁ ଅନେକ ଥର ଦୀର୍ଘ ନିଶ୍ୱାସ ପକାଇ ଚାଲିଯାନ୍ତି । ଏସବୁର କାରଣ କ'ଣ ? ମୁଁ ଭାଉଜଙ୍କୁ ଧରି ବସିଲି । ଗୋଟାଏ କଥା, ମୁଁ କହି ରଖେଁ ଏଠାରେ । ଭାଉଜ ମୋର ଅନିନ୍ଦ୍ୟ ସୁନ୍ଦରୀ ; କିନ୍ତୁ ବଡ଼ ସରଳ ଓ ସହଜ ବିଶ୍ୱାସୀ ପ୍ରକୃତିର । ସେ ମୋର କଟାଳ ଏଡ଼ି ପାରିଲେନି । ମୁଁ କେଇଟା ଦିନ ପାଇଁ ଘରକୁ ଆସିଚି । ଖାଇ ପିଇ ମଉଜ କରି ଯିବି, ପିଲା ମଣିଷ । ଏ ଘର ସଂସାର ଜଞ୍ଜାଳରେ ଘାଣ୍ଟି ହେବାର ସମୟ ଓ ବୟସ ମୋର ଆସିନି । ଏପରି କେତେ କଥା କହି ଶେଷରେ କହିଲେ, 'କାହିଁକି କେଜାଣି, ତୁମେ ଆଉ ଛୁଟିରୁ ଗଲାପରେ ଭାଇ ତୁମର ଏକା ବେଳେକେ ବଦଳି ଯାଇଚନ୍ତି, ଭଲ କରି ଖାଉ ନାହାନ୍ତି, ଶୋଉ ନାହାନ୍ତି

ଓଳି । ବକତେ ଖାଇଲେ ବକତେ ନାହିଁ, ନିତ୍ୟାନି ଟିକିଏ ଟିକିଏ ଖାଉଥିଲେ ଯେ ସେ ବନ୍ଦ ହେଲାଣି ସେଇଦିନୁ । ସବୁବେଳେ କାମ ; ନ ହେଲେ ମୁକଟି ପରି ବସି ଭାବନା । ରାତିରେ ମଧ ନିଦ ହେଉନି ତାଙ୍କର ଭଲ । ଏସବୁ କହି ସେ କାନ୍ଦି ପକାଇଲେ । ଭାଉଜଙ୍କର ଏରୂପ, ଭାଉଜଙ୍କ ମନରେ ଏ କଷ୍ଟ ମତେ ଅସହ୍ୟ ହେଲା । ମୁଁ ଭାବି କିଛି ଠିକ୍ କରି ପାରିଲିନି । ମୋର ମନେ ପଡ଼ିଗଲା ସେଇ ଋଣ କଥା । ସେଇ କି ଏସବୁର କାରଣ ? ମୁଁ ଲକ୍ଷ୍ୟ କରିବାରେ ରହିଲି । ଦେଖିଲି, କୃଷ୍ଣମୂର୍ତ୍ତୀର ଆସିବା ଘନ ଘନ ହଉଚି, ସେ ଆସିଲେ ମୁଁ ଲକ୍ଷ୍ୟ କରି ଦେଖିଚି, ସେ କଣେଇ କଣେଇ ଭିତରକୁ ଚାହୁଁଥାଏ, ଭାଉଜ କେତେବେଳେ ନଜର ପଡ଼ିଗଲେ ତା'ର ଆଖି ଝଲସି ଉଠେ । ମତେ ବଡ଼ ରାଗ ଲାଗୁଥିଲା ପ୍ରଥମେ ପ୍ରଥମେ । ତା'ପରେ ବି ଦେଖିଲି ସନେଇ ଓ ତା' ମାଇପ ବେଳେବେଳେ ଆମ ଘରକୁ ଯା'ଆସ କରୁଛନ୍ତି । ଭାଉଜଙ୍କ ସାଙ୍ଗରେ କ'ଣ ସବୁ କଥାବାର୍ତ୍ତା ହଉଚନ୍ତି । ସନେଇର ମାଇପ ଆମ ଘରେ ଦି ଚାରି ଧନ୍ଦା ବି କରି ଦେଇ ଯାଉଛି । ଭାଉଜଙ୍କ ପ୍ରତି ତା'ର ଏ ବ୍ୟବହାର ଓ ସାହାଯ୍ୟ ଦେଖି ବୁଢ଼ୀ ପ୍ରତି ମୋର ଶ୍ରଦ୍ଧା ଆସିଲା । ମତେ ଖିଆଲଇ ହେଲାନି ଯେ ଏମାନେ କୃଷ୍ଣମୂର୍ତ୍ତୀର ଚାକର ବାକର । କୃଷ୍ଣମୂର୍ତ୍ତୀର ଭାବଭଙ୍ଗୀ ଦେଖି ମୋ ମନେର ପ୍ରଥମେ ପ୍ରଥମେ ଯେ ରାଗ ହେଉଥିଲା, ସେ ଆସ୍ତେ ଆସ୍ତେ ପରିହାସରେ ପରିଣତ ହେଲା । ସେଥିରୁ ମୁଁ ଭାବିଲି, ଶଳା ଯିମିତି ହଉଚି, ତାରି ଫାଶିରେ ତାକୁ ଧରି କାମ ହାସଲ କଲେ ମନ୍ଦ କ'ଣ ହୁଅନ୍ତା । ମୁଁ କିଛି ଦିନ ଭାବି ଗୋଟାଏ ଉପାୟ ଠିକ୍ କଲି । ଭାଉଜଙ୍କୁ କହିଲି, 'ତୁମେ ଭାଇଙ୍କ ପାଇଁ ବ୍ୟସ୍ତ ହେଉଚ ସିନା, କାରଣ ଜାଣିନ । ତାଙ୍କର ଏପରି ହବାର କାରଣ କ'ଣ ଜାଣିଚ ? ସେ ଏଇ ଯେ କୃଷ୍ଣମୂର୍ତ୍ତୀଟା ଆସୁନି, ତାଠୁ ପ୍ରାୟ ଦି ହଜାର ଟଙ୍କା ଋଣ କରି ସାରିଚନ୍ତି ହାଣ୍ଡନୋଟ ନେଇ । ତାକୁ କିମିତି ଶୁଝିବେ, ସେଇ ଚିନ୍ତାରେ ସେ ଏପରି ହେଉଚନ୍ତି ।'

ଭାଉଜ – ଏଁ, ତେ ଟଙ୍କା ସେ କାହିଁକି ଧାର କଲେ ?

ମୁଁ – ତୁମ ପାଇଁ ଓ ମୋ ପାଇଁ । ତାଙ୍କୁ ଏଥିରୁ ମୁକ୍ତ କରିବାର ଦାୟିତ୍ୱ, ସୁତରାଂ ତୁମର ଆଉ ମୋର ।

ଭାଉଜ – ଏଇ କଥା ତ ? କାହିଁକି ମୋର ଗହଣା ଗୁଡ଼ାକ ତ ଅଛି । ମୁଁ ଆଜି ତାଙ୍କୁ କହୁଚି, ସେ ଗୁଡ଼ାକ ବିକି ଭାଙ୍ଗି ଟଙ୍କା କରି ତାକୁ ଦେଇ ଦିଅନ୍ତୁ । ଆମର ଶାଗ ଭାତ ଖାଇ ଚଳିବା କିଛିଦିନ । କଷି କଷି ପଇସା ରଖିବା । ତୁମେ ପାଠ ପଢ଼ି ଚାକିରି କଲେ ମୁଠାଏ ମୁଠାଏ ଟଙ୍କା ରୋଜଗାର କରିବ । ସେତେବେଳେ ଫେର ନୂଆ କରି ଅଳଙ୍କାର କରିବାନି । ଯା ଲାଗି ପୁଣି ଭାବନା ?

ମୁଁ – ତୁମେ ତୁମର ଏ ଗହଣାଗୁଡ଼ାକ ଦେଇଦବ ବିକିବାକୁ ? ତୁମ ମନରେ କଷ୍ଟ ହବନି ? ତୁମେ ତେବେ ପିନ୍ଧିବ କ'ଣ ?

ଭାଉଜ – ହାତରେ ଶଙ୍ଖା, ମୁଣ୍ଡରେ ସିନ୍ଦୁର । ଯାଠୁ ବଳି ସଧବା ସ୍ତ୍ରୀର ବଡ଼ ଅଳଙ୍କାର କ'ଣ ଅଛି ? ଗହଣା ଗାଣ୍ଠି ଯାହାଲାଗି ସେ ଯେବେ ସୁଖଶାନ୍ତିରେ ନ ରହିଲେ, ତେବେ ଅଳଙ୍କାର ପୋଡ଼ି ଯାଉ, ଆଉ ଯୁ ସ୍ତ୍ରୀ ଅଳଙ୍କାର ପିନ୍ଧି ସ୍ୱାମୀର କଷ୍ଟକୁ ଆଖି ବୁଜି ଦିଏ, ସେ ପୋଡ଼ିଯାଉ ।

ଏ ଗୋଟାଏ ନୂଆ କଥା । ଭାଉଜଙ୍କର ବାପଘର ଅଳଙ୍କାର ଓ ଭାଇ ଯାହା କରିଚନ୍ତି ସବୁ ବିକି ଦେଲେ ହୁଏତ ଦି' ହଜାର ଟଙ୍କା ହୋଇଯିବ । ନାଁ' ଏ ହୋଇ ପାରେନା । ଏ ଦେବୀ ପ୍ରତିମା ନିରାଭରଣା ରହିବା ଯାକି ମୁଁ ସହି ପାରିବି ? କିନ୍ତୁ ଉପାୟ ? ତାଙ୍କର ତ କଷ୍ଟ ନାହିଁ। ଚେଷ୍ଟା କରି ଦେଖିଲେ ମନ୍ଦ କ'ଣ ହୁଅନ୍ତା ? କିନ୍ତୁ ମୁଁ ଯେ ଭାଇଙ୍କି କଥା ଦେଇଥିଲି, ଭାଉଜଙ୍କୁ କହିବନି ବୋଲି । କହିତ ଦେଲିଣି । ଭାଇ ଜାଣିଲେ ନିଶ୍ଚୟ ଅସନ୍ତୁଷ୍ଟ ହେବେ । ନାଃ, ମୁଁଇ କହିବି ଏ କଥା ତାଙ୍କୁ । ଏହିପରି ଭାବି ମୁଁ ଭାଉଜଙ୍କୁ କହିଲି, 'ଭାଉଜ, ତୁମେ ଏକଥା ଭାଇଙ୍କୁ କହିବ ନାହିଁଟି ? ସେ ମତେ ମନା କରିଥିଲେ । ମୁଁ ତାଙ୍କୁ କହି ଦେଖେଁ, ସେ କ'ଣ କହୁଛନ୍ତି । ସେଇଦିନ ସନ୍ଧ୍ୟାବେଳେ ମୁଁ ଭାଇଙ୍କ ପାଖରେ ବସି ଏଣୁ ତେଣୁ କଥାବାର୍ତ୍ତା ହେଉ ହେଉ ସେ କଥା ଉଠେଇଲି । ସେ ସେ କଥା ଶୁଣି ବିରକ୍ତ ହେଲା ପରି ଜଣାପଡ଼ିଲେ ; କିନ୍ତୁ କାମଟା କରିବାକୁ ହବ । ତାଙ୍କୁ ଏ ଋଣ ଜାଲରୁ ମୁକୁଳେଇବାକୁ ହେବ । ଏହିପରି ଭାବି ତାଙ୍କ ବିରକ୍ତିକୁ ଅପେକ୍ଷା ନ କରି ମୁଁ ଭାଉଜଙ୍କ ପ୍ରସ୍ତାବ ତାଙ୍କ ଆଗେ କଲି । ସେ ମୋ କଥା ଶୁଣି କାନ୍ଦି ପକେଇଲେ । ମନେରଖ, ମୋ ଉପରେ ରାଗିଲେନି, ମତେ ଗାଳି ଦେଲେନି । କାନ୍ଦି ପକେଇଲେ । କହିଲେ, 'ଶେଷରେ ମତେ ଯା ମଧ ଶୁଣିବାକୁ ହେଲା । ଘରର ଠାକୁରାଣୀ କି ଲଙ୍ଗଳା କରି ତାଙ୍କିରି ଜିନିଷ ନେଇ ମୁଁ ମୋର ସୁଖ କିଣିବି ? ନାଇଁ, ବାପ, ମୁଁ ତା କରି ପାରିବିନି ଏ ଜୀବନରେ । ମୁଁ ଚେଷ୍ଟା କରୁଚି, ଏ ବୋଝରୁ ମୁକୁଳିବା ଲାଗି । ଯଦି ନ ପାରେ ମରିଯାଏ, ତାହେଲେ ତୁ ସେକଥା କରିବୁ ।' ମୁଁ ସହି ପାରିଲିନି । ତାଙ୍କ ଗୋଡ଼ ତଳେ ପଡ଼ି କ୍ଷମା ମାଗିଲି, ତାଙ୍କୁ ଶାନ୍ତ କଲି । ଭାଉଜଙ୍କୁ ଯାଇ ସବୁ କହିଲି । ତାଙ୍କୁ ବାରମ୍ବାର କରି ମନାକଲି ଯେ ସେ ଯେପରି ଏକଥା ଭାଇଙ୍କ ଆଗରେ ନ ଉଠାନ୍ତି । ଶେଷରେ କହିଲେ, 'ତୁମେ ପାଠଶାଠ ପଢ଼ିଚ, ତୁମର ବୁଦ୍ଧ ଅକଲ ଅଛି । ଯାର କି ଆଉ, କିଛି ଉପାୟ ନାହିଁ ? ଉପାୟ ଖୋଜି ବାହାର କରିବି ବୋଲି କହି ତାଙ୍କୁ ଶାନ୍ତ କଲି ।

ଦୁଇ ତିନି ଦିନ କଟି ଯାଇଛି । ଯା ଭିତରେ କୃଷ୍ଣମୂର୍ତ୍ତି ପ୍ରାୟ ପ୍ରତିଦିନ ଆମ ଘରକୁ ଆସିଚି, ଅଧିକାଂଶ ସମୟ ଭାଇ ନ ଥିବା ବେଳ ଉଣ୍ଡି । ମୋର ମନରେ ସେ କଥା ଲାଗିଚି । ସେତେବେଳେ ମୁଁ ଗୋଟିଏ ବହି ପଢୁଥିଲି । ସେ ଗପଟି ଥିଲା ଯେ ଜଣେ ଲୋକ ଗୋଟାଏ ବୁଢ଼ା ଇହୁଦୀଠୁ କିଛି ଟଙ୍କା କରଜ କରିଥାଏ । ତାକୁ ଶୁଝି ପାରିଲାନି । ସେହି ହେତୁ ସେ ତା ସ୍ତ୍ରୀକୁ ସେ ବୁଢ଼ା ପିଛା ଲଗାଇଲା । ସେ ସ୍ତ୍ରୀ ବୁଢ଼ାକୁ ପାକଳା ପାକଳି କରି ତାଠୁ ହାଣ୍ଡନୋଟ ଫେରାଇ ଆଣିଲା । ମୋ ମନରେ ଚଟ୍‌କରି ଏ ଦିଟା କଥା ମିଳିଗଲେ । କୃଷ୍ଣମୂର୍ତ୍ତୀ ପାପୀ ଭାଉଜଙ୍କ ପ୍ରତି ଆସକ୍ତ । ଭାଉଜ ଟିକିଏ ତା ଆଡେ ନଜର ଦେଲେ ବୋଧହୁଏ ସହଜରେ ତାକୁ ପାମ୍ପେଲେଇ ହାଣ୍ଡନୋଟଟା ଅସୁଲ କରି ପାରନ୍ତେ । ପିଲା ମୁଁ, ଏତେ ସେତେ ଭାବି ପାରିଲିନି । ଉପନ୍ୟାସର

କୀଟ ମୁଁ, ଉପନ୍ୟାସର ଗପକୁ ସତ ବୋଲି ଭାବିଲି । ମୋର ଏ ଭାବନାହିଁ ଆମର ସର୍ବନାଶର ମୂଳ । ଓଃ ଏ ଭାବନା ମୋ ମୁଣ୍ଡକୁ ଆସିବା ଆଗରୁ, ମୁଁ ମରିଗଲିନି କାହିଁକି ? ଏ ଭାବନା ମୁଁ ମୋର ସରଳ, ସହଜ ବିଶ୍ୱାସୀ ଭାଉଜଙ୍କୁ କହିବା ଆଗରୁ ମୋର ଜିଭ ଛିଣ୍ଡି ପଡ଼ିଲାନି କାହିଁକି ? ମୁଁ କୁଳାଙ୍ଗାର, ମୁଁ ବଂଶର ଅଭିଶପ୍ତ, ମତେ ମାର, ମୋତେ ଖୁଣ କର, ମତେ ନିଆଁରେ ଜିଅନ୍ତା ପୋଡ଼ । (ଗଦାଧର ତାଙ୍କୁ ବହୁତ ବୁଝେଇ ଶୁଝେଇ ଶାନ୍ତ କଲାପରେ ସେ ପୁଣି ତାଙ୍କ କଥା ଆରମ୍ଭ କଲେ ।)

ମୋର ଏଇ ନାରକୀୟ ଧାରଣାର ବଶବର୍ତ୍ତୀ ହୋଇ ମୁଁ ମୋ ଭାଉଜଙ୍କୁ ଏକଥା କହିଲି । ପ୍ରଥମତଃ ସେ କିଛି ବୁଝିପାରିଲେନି, ବରଂ ଓଲଟା ବୁଝିଲେ । ମୋ ଉପରେ ରାଗିଲେ; ନିଜକୁ ଧିକ୍କାର ଦେଇ କାନ୍ଦିଲେ । ତାଙ୍କର ଏ ଅବୁଝା ପଣିଆ ଦେଖିଦେଇ ମୋର ଜିଦ୍ ମଧ ବଢ଼ିଗଲା । ମୁଁ ତାଙ୍କୁ ବୁଝେଇ କହିଲି ଯେ ମୁଁ ଯାହା ପ୍ରସ୍ତାବ କରୁଚି, ସେଥିରେ ତ ପାପ କିଛି ନାହିଁ । ସେ ଲୋକଟା ସହିତ୍ ଟିକିଏ ହସି, କିବା ପଦେ କଥା କହିବାରେ କି ନେଇ ପାନଖଣ୍ଡେ ଭାଙ୍ଗି ତା ଆଗରେ ଥୋଇଦେବାରେ ଏପରି କି ପାପ ହୋଇଯିବ ? ସାହେବମାନଙ୍କ ଦେଶରେ ସ୍ୱାମୀକୁ ସାହାଯ୍ୟ କରିବା ଲାଗି ସ୍ତ୍ରୀମାନେ କେତେ କଥା କରୁଛନ୍ତି । ଏକାଠି ବସି ଖାଇବା, ସାଙ୍ଗ ହୋଇ ସିନେମା ଥିଏଟର ଦେଖି ଯିବା, ଧରାଧରି ହୋଇ ସମୁଦ୍ର ଗାଧୋଇବା - ଏମିତି କେତେ କଥା । ଆଉ ତୁମେ ତୁମ ସ୍ୱାମୀଙ୍କର ଉପକାର ଲାଗି ଏଇତକ କରିପାରିବନି ? ସେ ଦବିଗଲେ; କିନ୍ତୁ କହିଲେ, 'ମୁଁ କିମିତି ସେ ଲୋକଟା ଆଗକୁ ଯିବି ନା ? ସେ କଣ ଭାବିବ ।'

ମୁଁ - ମୁଁ ଦେଖିଚି ତାର ଭାବଭଙ୍ଗୀ । ସେ ତୁମକୁ ସୁଖ ପାଏ । ତୁମର ଯେ ଅନିନ୍ଦ୍ୟ ରୂପ; ସେଥିରେ ପଥର ହେଲେ ବି ସେ ତୁମକୁ ସୁଖ ପାଇବ । ଆଉ କୃଷ୍ଣମୂର୍ତ୍ତୀତ ରକ୍ତ ମାଂସର ମନୁଷ୍ୟ ।

ଭାଉଜ - ହୁଁ, ସେ ଯୁ ବୁଢ଼ୀଟା ଆମଘରକୁ ଆସେନି, ସେ ବି କେତେଥର ମତେ କହିଛି, କୃଷ୍ଣମୂର୍ତ୍ତୀ କୁଆଡ଼େ ମୋର କେତେ ପ୍ରଶଂସା କରେ ।

ମୁଁ - ଠିକ୍ ତ ମୁଁ ତ ସେଇ କଥା କହୁଚି ।

ଭାଉଜ - ହଉ । ତୁମେ କହୁଚ ଯେତେବେଳେ, ମୁଁ କହିବି, କିନ୍ତୁ କଣ କିମିତି କରିବାକୁ ହେବ, ତୁମେ ମତେ ବତେଇ ଦେଉଥିବଟି ନହେଲେ ମୁଁ କଣ ଜାଣେ ଯେ କରିବି କହିଲ ?

ମୁଁ ତାଙ୍କୁ ଆଶ୍ୱାସନା ଦେଲି, ବତେଇ ଦେଲଇ । ଆଉଥରେ କୃଷ୍ଣମୂର୍ତ୍ତୀ ଯେତେବେଳେ ଆସିବ, ମୁଁ ଡାକିଲେ ତୁମେ ପାନ ଦି ଚାରିଖଣ୍ଡ ଭାଙ୍ଗିଆଣି ତା ଆଗରେ ଥୋଇଦେଇ ଚାଲିଯିବ । ଦେଖିବା କଣ ହେଉଛି ! ଆମର ଏହି ଉପାୟ ଚାଲିଲା । ପାନ ଦବାରୁ ଆରମ୍ଭ କରି, ପଦେ ଅଧେ କଥାବାର୍ତ୍ତା, ଟିକିଏ ଆଡ଼ଚାହାଣୀ, ତାପରେ ବେଶୀ ସମୟ ବସି ଦୁଃଖସୁଖ ହେବା ସବୁ ଚାଲିଲା । ମୋର ଛୁଟୀ ସରିଗଲା । ଆଶା ହେଲାଯେ ଭାଉଜ ସେ ଲୋକଟାକୁ ତାଙ୍କୁ କରି

କାମହାସଲ କରିପାରିବେ । ତାର ବ୍ୟବହାରରୁ ମଧ୍ୟ ଭାଉଜଙ୍କର ଆତ୍ମବିଶ୍ୱାସ ବଢ଼ି ଯାଇଥିଲା । ସେ କହିଲେ – ମୁଁ ଗଲାବେଳେ, 'ତୁମର ଓଷ୍ଠ କାମ କରିବ ସୁରି, ତୁମେ ଯାହା ଶିଖେଇଚ, ମୁଁ ତା କରିବି । ହାଣ୍ଡନୋଟଟା ହାତରେ ପଡ଼ିଲେ, କିନ୍ତୁ ମୁଁ ତାକୁ ଗୋଟାଏ ଭଲ ରକମ ଶିକ୍ଷା ଦେବି ।' ମୁଁ ଅପେକ୍ଷାକୃତ ଟିକିଏ ନିଶ୍ଚିନ୍ତ ମନରେ କଲେଜକୁ ଫେରିଗଲି ।

ମୁଁ ଯେବେ ଜାଣିଥାନ୍ତି ଯେ ମୋର ଏ ପିଲାଖେଳର ପରିଣାମ ଯା ହେବ, ମୁଁ ଯେବେ ବୁଝିଥାନ୍ତି ଯେ କୃଷ୍ଣମୂର୍ତ୍ତୀ ଭଳି କାଳନାଗକୁ ଦୁଧ ଦେଇ ଦଂଶ କରାଯାଇପାରେନା, ତାହେଲେ ମୁଁ ଏପରି ନିଶ୍ଚିତ ହୋଇ ପାରିନଥାନ୍ତି । ସେ ଚଣ୍ଡାଳ ମୋ ବୋକାମିର ସୁବିଧା ନେଇ ମୋର ସରଳା, ସହଜ ବିଶ୍ୱାସୀ ଦେବୀ ପ୍ରତିମା ଭାଉଜକୁ ମାରି ପକାଇଲା ଜିଅନ୍ତାରେ ; ସଜଫୁଟିଲା ଫୁଲଟିରେ ବିଷ ପବନଲଗେଇ ଶୁଖେଇ ଦେଲା ମୁହୂର୍ତ୍ତକରେ । ନାଁ, ମୁଁ ଆଉ କହି ପାରିବିନି, ମତେ କ୍ଷମା କରନ୍ତୁ । ମୋ ଭାଉଜଙ୍କର ଚିଠି ଆପଣଙ୍କ ହାତରେ । ଯାପରେ କଣ ସବୁହେଲା ସେଇଥିରୁ ଆପଣ ଜାଣି ପାରିବେ । ମତେ ହାଜତକୁ ପଠାଇ ଦିଅନ୍ତୁ – ମୁଁ ବସି ପାରୁନି – ମୋ ମୁଣ୍ଡ କଣ ହେଇ ଯାଉଛି ।

ବାଧ୍ୟ ହୋଇ ତାକୁ ହାଜତକୁ ପଠାଇ ଦିଆହେଲା । ତାପରେ ପୁଲିସ ସାହେବଙ୍କ ଇଙ୍ଗିତରେ ଗଦାଧର ଲକ୍ଷ୍ମୀ ଆମ୍ମାର ଚିଠିଟି ପଢ଼ି ଶୁଣାଇଲେ ।



## ଚଉଦ

## ଲକ୍ଷ୍ମୀ ଆମ୍ମାର ଚିଠି

ସୁରି,

ମୋର ଏ ଚିଠି ପାଇଲା ବେଳକୁ ତୁମେ, ମୁଁ ତୁମର ଏ ସଂସାର ଛାଡ଼ି ଚାଲି ଯାଇଥିବି । ଜାଣେନି ମୋର କୁଠି ହେବ, ସ୍ୱର୍ଗ କି ନରକରେ । ଜୀବନରେ ଅନେକ ଆଶା କରିଥିଲି, କେତେ କଥାକୁ ମନ ବଳେଇଥିଲି । କିନ୍ତୁ ପୋଡା ଭାଗ୍ୟ ମୋର ସାହା ହେଲାନି । ଯାଙ୍କ ଭଳି ସ୍ୱାମୀ, ତୁମ ଭଳି ଦିଅର, କେତେ କୋଟି ଜନ୍ମର କି ତପସ୍ୟା ବଳରେ ତୁମକୁ ସବୁ ପାଇଥିଲି । କିନ୍ତୁ ସେ ତପସ୍ୟା ମୋର ଅତି ଅଳ୍ପ ଦିନରେ ସରିଗଲା । ସୁରି, କାହା ମୁହଁରୁ କୁ ଜନ୍ମରେ ଆହାର ଛଡେଇ ନେଇଥିଲି । ବିଧାତା ତାରି ଦଣ୍ଡରେ ମୋ ମୁହଁରୁ ଏ ଅମୃତଗ୍ରାସ ଛଡ଼େଇ ନେଲା । ନାଁ, ବିଧାତାକୁ କାହିଁକି ଦୋଷ ଦେବି ? ସବୁତ ମୋର କାମ, ମୋରି କର୍ମର ଫଳ, ମୁଁ ଚଣ୍ଡାଳୁଣୀ କାହିଁକି ସନେଇ ଭାରିଯାର କଥାରେ ପଡ଼ିଥାନ୍ତି । ମୁଁ କାହିଁକି ଘରଛାଡ଼ି, ମୋ ଦେବତାଙ୍କ ପାଖ ଛାଡ଼ି ଘରୁ ଗୋଡ଼ କାଢ଼ିଥାନ୍ତି । ତାଙ୍କର ପୁଣ୍ୟ ସିନା ମତେ ... । ତାଙ୍କ

ପାଖ ଛାଡ଼ି ମୁଁ ବାପଘରକୁ ଯାଏନାହିଁ, ମୋ ମୁଣ୍ଡରେ ସେ ଦିନ କୁ ପାପ ଭୁକିଲା, ସନେଇ ଝାରିଯାର ଫୁସୁଲାରେ ପଡ଼ିଲି। ସେ କହିଲା, "ତାରାତାରିଣୀ ଯିବା ? ବାବୁଙ୍କ ଦେହ ଭଲ ରହୁନି। କିମିତି ସୁନା ଦିହ କଳାକାଠ ପଡ଼ିଗଲାଣି। ମା ଠାକୁରାଣୀ ସାକ୍ଷାତ ଜାଗ୍ରତ ଦେବତା, ଡାକିଲେ ଓ କରୁଛନ୍ତି। ତାଙ୍କ ପାଖରେ ମୁଣ୍ଡା ଦେଇ ଆସିଲେ ଦେଖିବ ସବୁ ଠିକ୍ ହୋଇଯିବ। ଗାଁରୁ ଭାଗେ ମାଇପେ ମରଦ ଯାଇଛନ୍ତି। ତୁମେ ଚାଲ।'' ମୋର ମନ କାହିଁକି ତା କଥାରେ ମାନିଗଲା। ୟାଙ୍କଲାଗି ଠାକୁରାଣୀଙ୍କି ଭୋଗ ଦେବି, ଠାକୁରାଣୀଙ୍କ ପାଖରେ କାନ୍ଦିକାନ୍ଦି ତୁମଲାଗି ଆଉ ତାଙ୍କ ଲାଗି କଟାଳ କରିବି, ବଡ଼ ଲୋଭ ଲାଗିଲା। ମୁଁ ୟାଙ୍କୁ କହିଲି, "ଚାଲ ଯିବା। ଗାଁ ଯାଗଚ ଯାଉଛନ୍ତି ? ଆମର ଗଲେ ହୁଅନ୍ତାନି ?'' ସେ କହିଲେ, "ତୁମେ ଯାଅ, ମୁଁ ଯାଇ ପାରୁନି, କାମ ଅଛି। ମୁଁ ମଧ୍ୟ ଶୁଣିଚି ଗାଁରୁ ଅନେକ ଲୋକ ଯାଉଛନ୍ତି, ସଦେଇ ମାଇପ ଯେବେ ସାଙ୍ଗରେ ଯାଉଚି, କିଛି ଭୟନାହିଁ। ତେବେ ଟିକିଏ ସାବଧାନରେ ଚଳିବ। ଘରଟା ଭିତରେ ବସି ବସି ତୁମେ କଳା କାଠ ହୋଇ ଗଲଣି, ଘରୁଚ କୁଆଡ଼େ ଗୋଡ଼ କାଢୁନ, ଯାଅ ଦିନୁଟେ ବୁଲିଆସିବ।" ସେ କାହିଁକି ମନା କଲେନି ? ସେ ଦେବତା ହେ ମୋର ଅନ୍ତର୍ଯ୍ୟାମି, ତୁମେ ପରା ମୋ ମନକଥା ଜାଣିପାର ? ତୁମେ କାହିଁକି କହିଲନି ପଥରେ ବିପଦ ଅଛି। ନା, ମୋତେ ପରୀକ୍ଷା କରୁଥିଲ ? ମୋ ମନ ବିଡ଼ିବା ପାଇଁ ମୋତେ ପଠାଇ ଦେଲ ? ଗଲି ସନେଇ ମାଈପ ଓ ଗାଁର କେତେ ଆଉ ମାଇପୀଙ୍କ ସାଙ୍ଗରେ, ରାତି ଭୋରରୁ ବାହାରି ମଟର ବାସ୍‌ରେ ବସି ଆମେ ସବୁ ସକାଳବେଳୋ ସେଠି ପହଞ୍ଚିଲୁ। ଯେ ମୋ ହାତରେ ଦଶଟଙ୍କା ଦେଇଥାନ୍ତି। ମୁଁ ମୋ ମନଇଚ୍ଛା ଭୋଗରାଗ କଲି। ଠାକୁରାଣୀଙ୍କ ପାଖରେ କେତେ କଣ ଜଣେଇଲି। ଓ, କି ଭିଡ଼! ବାପ୍‌ରେ ବାପ!! ସୋରିଷ ପକେଇବାକୁ ଜାଗା ନଥାଏ ସେଠି। ପାହାଡ଼ତଳେ ନଈରେ ଗାଧୁଆ କଲୁଁ। ମୁଁ ସେଦିନ ବ୍ରତ କରିଥାଏଁ। କେତେ ଯେ ପାହାଞ୍ଚ – ଶହେ କି ଦି'ଶ, ସେତକଉଠି ଉପରକୁ ଯାଇ ଦର୍ଶନ କଲୁଁ। ମୁଁ ଠାକୁରାଣୀଙ୍କି ମୁଣ୍ଡିଆମାରି ଉଠି ପଛକୁ ଫେରେଚ ଦେଖିଲି କୃଷ୍ଣମୂର୍ତ୍ତି ମୋ ପଛରେ ଠିଆ ହୋଇଛି। ମୋର ଦିହ କମ୍ପି ଉଠିଲା। ପାପିନୀ ମୁଁ, ଭାବିଲି ଏଇ କଣ ଠାକୁରାଣୀଙ୍କର ହୁକୁମ୍। ତୁମେ କହିଥିଲ ଭୁଲେଇ କୃଷ୍ଣମୂର୍ତ୍ତିଠାରୁ ଆମ ଦଲିଲଟା ନେଇ ଯିବାକୁ। ତୁମେ ଚାଲିଗଲାପରେ ସେ କେତେ ଥର ଆସିଚି, ଆମ ଘରକୁ, ମୁଁ ତୁମରି କହିବା ଭଳି ତା ପାଖକୁ ଯାଇଚି, ପାନ ଦେଇଚି, ଭଲମନ୍ଦ କଥା ପଦେ ଅଧେ ହୋଇଚି, ହସିଚି, ସେ ବି ବଡ଼ ମଜାର ଲୋକ, କେତେ ଗପ, କେତେ ମିଠା ମିଠା କଥା କହେ ସେ। ଥରେ ଥରେ ମୋ ପାଇଁ ବାସନା ତେଲ, ଆଉ ଫୁଲ ଆଣିଦିଏ, ମୁଁ ନିଏନି, ସେ ମନଦୁଃଖ କରି ଫେରିଯାଏ। ଶେଷରେ ଦେଖିଲି, ଯେବେ ତାଠାରୁ ଭୁଲାଇ ଦି ହଜାର ଟଙ୍କାର ଦଲିଲ ନେବି, ତାହେଲେ ଏଇ ସାମାନ୍ୟ ଜିନିଷ ଯାହା ସେ ଆଣୁଚି, ତାକୁ ଫେରାଇ ଦେଲେ ତା ମନରେ କଷ୍ଟ ହବ ନାହିଁକି ? ନିଏଁ, କିନ୍ତୁ ଦିନେ ହେଲେ ତାର ଥରେ ମୁଁ ଲଗେଇନି। ଥରେ ସଦେଇ ମାଇପ କହୁଥିଲା – "ତୁମର ଦୁର୍ଭାଗ୍ୟ ମା ସାନ୍ତାଣୀ, ତୁମ ଭଳି ପିଲା ଯେବେ ଏଇ କୃଷ୍ଣମୂର୍ତ୍ତି ବାବୁଭଳି ଲୋକ ହାତରେ ପଡ଼ିଥାନ୍ତା, ତା ହେଲେ ସେ ତୁମକୁ କେତେସୁଖ ରେ ରଖିଥାନ୍ତେ। ଜୋଡ଼ା ଜୋଡ଼ା ଶାଢ଼ି, କେତେ ଗହଣା

ଗାଣ୍ଠି କେତେ ନୂଆ ନୂଆ ଜିନିଷ, କେତେ ଥେଟର ସିନିମା ତୁମ ଗୋଡ଼ ତଳେ ଲାଗୁନଥାନ୍ତା। ଦଇବର କିଭିଆଣ ? ତୁମ ବାବୁଙ୍କ ହାତରେ। ତୁମେ ଦିନରାତି ଖଟି ଖଟି, ମରୁଚ, ଦିହକୁ ଖଣ୍ଡେ ଗହଣା ନାହିଁ, ଆଉ ତା ଭାଗ୍ୟକୁ ସେଇ ଯେ ଡାହାଣୀ ଭଳି ମାଇକିନା ଟା, ବାପରେ, ଦେଖି ଦେଲେ ଗୋଟାଏ ହାଡ଼ିଆଣୀ କି ପାଲୁଣୀ ଭଳି ଦେଖାଯାଏ ସେ। ତା ଭାଗ୍ୟକୁ ଦୋଷ ଦେଲେ କଣ ହେବ ? ତୁମେ ଯେବେ ଇଚ୍ଛା କରନ୍ତ ତୁମେ କଣ ସିମିତି ହଅନ୍ତନି ?'' ଇମିତି କେତେ କଣ ମନକ୍ଷୁଆଣିଆ କଥା ସେ ବକର ବକର ହୁଏ, କିଏ ଶୁଣେ ? ତା ଭାରିଜାଟା କଳିକାଣ୍ଡୋଇ, ଅସୁନ୍ଦର, ତାକୁ ଶାନ୍ତି ଟିକିଏ ଦିଏନି ଏମିତି କେତେ କଥା। ଶୁଣି ଶୁଣି ବେଳେବେଳେ କୃଷ୍ଣମୂର୍ତ୍ତି ପ୍ରତି ସତରେ ମୋର ଟିକିଏ ଦୟାବି ହଉଥିଲା। ଭାବୁଥିଲି, ଆହା ବିଚାରା, ପଇସା ସିନା ରଖିଚି। ପଇସା କଣ ସୁଖ ଦିଏ ? ଆମର ପଇସା ନାହିଁ, କିନ୍ତୁ ଆମ ଘରେ ଦେଖିଲ କିମିତି ଶାନ୍ତି। ସେ ମୋ ମନ ଘିନିବାକୁ କେତେ କଷ୍ଟ କରୁଚନ୍ତି, ମୁଁ ତାଙ୍କ ମନ ଘିନିବାକୁ ପ୍ରାଣ ଦେବାକୁ ରାଜି ଅଛି; ତାଙ୍କର ଯେ ଦୁଃଖ ସେଥିରେ ମୋର ଗର୍ବ ଓ ସୁଖ କରିବାର କଥା, କାହିଁକି ନା ସେତ ଭାବି ହେଉଚନ୍ତି ମୋରି ଲାଗି, ମୋରି ସୁଖ ଲାଗି, ମୋରି ଆନନ୍ଦ ଲାଗି। ଆଉ ଏ ବିଚାରା ଏତେ ଟଙ୍କା ପଇସା ରଖିଚି କିନ୍ତୁ ଘରେ ଟିକିଏ ସୁଖ ପାଇ ପାରୁନି, ଆହା ହା ! ସେ ବି ବେଳେ ବେଳେ କହି ପକାଏ, କଣ କରିବି, ଘରେ ତ ଟିକିଏ ନିଶ୍ଚିନ୍ତ ହୋଇ ବସିବାର ଉପାୟ ନାହିଁ। ସବୁବେଳେ ଫେଁ ଫେଁ, ମେଁ ମେଁ, ସେଥିଲାଗି ତୁମ ପାଖକୁ ଟିକିଏ ଧାଇଁ ଆସେ।

ଆଉ ତୁମ କହିବା ଭଳି ଆମ କାମ ଉଠେଇ ନବା ଲାଗି ମନରେ ଭରସା ମଧ ଆସେ। ମୁଁ ଆସ୍ତେ ତାକୁ ଟିକେ ଯତ୍ନ, ଟିକିଏ ଆଦର କରିବାକୁ ଆରମ୍ଭ କଲି। ସେ ବି ଏକାବେଳକେ ଯେପରି ମୋ ହାତରେ ପାଣି ହୋଇଗଲା। ଦିନେ ତା ମନ ବିଡ଼ିବା ପାଇଁ ତାକୁ କହିଲି – 'ଆଚ୍ଛା ବାବୁ, ଗୋଟାଏ କଥା ମାଗିବି ଦବ ? ଟଙ୍କା ୧୦ଟା ବଡ଼ ଜରୁରୀ ଦରକାର ଅଛି, ଦିଅନ୍ତ ବୋଇଲେ।' ସେ କହିଥିଲା 'ଦଶଟାଟଙ୍କା' ତୁମେ କଣ କହୁଚ, ତୁମେ କହିବ ବୋଇଲେ ତ ମୋର ସବୁ ତୁମର ଏଇ ରଙ୍ଗା ପାଦଟି ତଳେ ଅଜାଡ଼ି ଦେବି।' 'ଏଇ ନିଅ' ବୋଲି ସେ ବଢ଼େଇ ଦେଲା ଦଶଟଙ୍କାର ନୋଟ ଖଣ୍ଡ।' ନେଲିନି। କେଜାଣି କାହିଁକି ହାତ ଗଲାନି। ଦରକାର ବି ନଥିଲା। କହିଲି, ଇଲେ ନୁହଁ, ନାଇଁ ଇଲେ ନୁହେଁ। ଯେତେବେଳେ ଦରକାର ପଡ଼ିବ ମାଗିବି, ରଖିଥାଅ।

ସେଦିନ ଠାକୁରାଣୀଙ୍କ ପାଖରେ ଆମର ଏହି କରଜରୁ ମୁକ୍ତି ପାଇଁ ଯେ କେମିତି ଟିକିଏ ଶାନ୍ତି ପାଇବେ ବୋଲି କେତେ ମୁଣ୍ଡିଆମାରି କେତେ ଦାନ୍ଦି ଜଣେଇଲି, ଭାବିଲି ଠାକୁରାଣୀ କଣ ମତେ ଏଇ ସନ୍ଦେଶ ଦେଲେ !'ଏଇ କଣ ଉପାୟ ସେ ବତାଇ ଦେଲେ ? ମୁଁ ଟିକିଏ ହସିଦେଇ ଆଡ଼ ହୋଇଗଲି। ଭାରି ଭିଡ଼। କୁଣିସିମତେ ଠେଲିପେଲି ହୋଇ ବାହାରି ଆସିଲି ବାହାରକୁ। ସେ ମଧ ମୋ ପଛେ ପଛେ ଆସିଲେ। ମେଳାକୁ ଆସିବାରୁ ସେ କହିଲା – 'ତୁମେ ବି ଆସିଚ ?

ମତେ କହିଲନି ଆଗରୁ । ତାହେଲେ ତ ମୋର ମଟର ଗାଡ଼ିରେ ଆସିଥାନ୍ତ । ଆସିଲ କେମିତି ?' ମୁଁ କହିଲି, ବସରେ । କିଛି କଷ୍ଟ ତ ହୋଇନି । ସାଙ୍ଗରେ ସଦେଇ ମାଇପ ଅଛି ; ଆଉ ଗାଁର ବି କେତେଲୋକ ଅଛନ୍ତି । ସେ - "କିନ୍ତୁ ତୁମ ସାଙ୍ଗରେ ତ କାହାରିକୁ ଦେଖୁନି । ମୁଁ ସତକୁ ସତ ରହି ଦେଖିଲି ସଦେଇ ମାଇପ କି ଗାଁର ଆଉ କେହି ମାଇପେ ନାହାନ୍ତି ସେଠି । ଆମେତ ଦଶବାରଜଣ ଏକାଠି ଦର୍ଶନକୁ ଆସିଥିଲୁଁ । ସମସ୍ତେ ଧରାଧରି ହୋଇ । ଏସବୁ ଅନ୍ତର୍ଦ୍ଧାନ ହୋଇଗଲେ କୁଆଡ଼େ ? ମତେ ଟିକିଏ ଡର ବି ମାଡ଼ିଲା । ସଦେଇ ମାଇପ ଉପରେ ରାଗ ବି ହେଲା । କୃଷ୍ଣମୂର୍ତ୍ତି କହିଲା, 'ଡରନି । ଡର କଣ, ମୁଁ ତ ସାଙ୍ଗରେ ଅଛି । ଏ ଯୁ ଗହଳ, ଏଥିରେ ସେମାନେ ହୁଏତ ତୁମକୁ ନଜର ରଖିନାହାନ୍ତି । ଯେ ଯୁଆଡ଼େ ଗଲେବି, ବସ୍ ପାଖରେ ସମସ୍ତେ ମିଳିବେ - ବେଢ଼ା ବୁଲିଚ ? ଆସ, ବେଢ଼ାବୁଲି ତଳକୁ ଯିବ । ତୁମେ କିଛି ଖାଇନ ବୋଧହୁଏ ? ମୁଁ ବି ଖାଇନି ।' କଣ କରିବି, ତାରି ସାଙ୍ଗରେ ଗଲି, ମୋ ମନରେ ତ ପାପ ପଶିଚି, ଏଇ ହଉଚି ସୁବିଧା । ଏତିକିବେଳେ ଯାକୁ ଭୁଲେଇ କାଣ୍ଡ ଉଠେଇ ନେବି । ଠାକୁରାଣୀଙ୍କ ହୁକୁମ ନିଶ୍ଚୟ । ମୁଁ ତା ସାଙ୍ଗରେ ହସି ହସି କଥାବାର୍ତ୍ତା କରୁଥାଏ । ସେ ଗହଳି ଭିତରେ କେତେ କେତେ ବେଳେ ମୋ ପିଠି ଉପରେ ହାତରଖି ଦଉଥାଏ, ଜଣା ପଡ଼ିଯାଏ, ସେ ଯେପରି ମତେ ତା ଆଡ଼କୁ ଟାଣି ନେବାକୁ ଭାବୁଚି । ମୁଁ ପଛେଇଯିବାକୁ ବା ଆଗେଇଯିବାକୁ ଚେଷ୍ଟା କରେଁ, ପାରେନି । ଦିଅଟା ମୋର କାଠ ପଥର ଭଳି ଟାଣ ଧରିଯାଏ । ବେଳେବେଳେ ସେ ମୋର ହାତ ପାପୁଲି କି ମୁଠେଇ ସେ ଗହଳି ଭିତରେ ମତେ ଧରି ଧରି ନେଇଯାଏ । ଓଃ, ତାର ହାତଟା ନିଆଁ ଭଳି ତାତିଥାଏ । ଭାବେ ଲୋକଟାକୁ ଜର ହେଇଚି ନା କଣ, ଥରେ ସେ ସତକୁ ସତ ସେ ଗହଳିରେ ମୋ ପଛରୁ ମୋ ଦେହରେ ଲାଗିଗଲା ଆସି ପୁରାପୁରି । ମତେତ ଭାରି ସରମ ଲାଗିଲା । କଣ କରିବି ? ସେ ଗହଳିରେ କଣ ଟିକିଏ ଏପଟ ସେପଟ ହବାର ଉପାୟ ଅଛି । ଯାହା ହଉ ବାହାର ପାହାଞ୍ଚତକ ଓହ୍ଲେଇ ତଳକୁ ଆସିଲୁଁ । ସେତେବେଳକୁ ବେଳ ପ୍ରାୟ ଚାରିଟା ବାଜିଥିବ । ଓପାସ ପେଟ । ତା'ଉପରେ ଏ ପାହାଞ୍ଚ ଚଢ଼ା ଓହ୍ଲା, ମୋତେ ବାଧା ହେଲାଣି ସେତେବେଳକୁ, ସେ ମୋ ମନକଥା ଜାଣିଲା ଭଳି କହିଲା - 'ତୁମେ ତ କିଛି ଖାଇ ନଥିବ, ଚାଲ ମୋ ବସାରେ ଦିଟା କଣ ଖାଇନେବ । ତାପରେ ତୁମ ସାଙ୍ଗ ସାଥିଙ୍କୁ ଖୋଜିବା । ଆରେ ଏଇତ ତୁମ ସାଥି ଆସିଗଲେଣି । ହଇହେ ତୁମେ କିମିତି ମଣିଷ ? ପିଲାଟିକୁ ଏକୁଟିଆ ସେ ଗହଳି ଭିତରେ ଛାଡ଼ି ତୁମେ ସବୁ କୁଆଡ଼େ ପଳେଇ ଗଲ ? ଠାକୁରାଣୀଙ୍କ ଦୟାରୁ ମୋ ସାଙ୍ଗରେ ଦେଖାହେଲା ବୋଲି ସିନା । ତା ନହେଲେ ସେ କେତେ କଷ୍ଟରେ ପଡ଼ିଥାନ୍ତେ ?' ସଦେଇ ମାଇପ ସାକୁଲାଇ କହିଲା, 'କଣ କରିବି ବାବୁ ? ଏ ଯେପରି ଭିଡ଼ ମୁଁ ବି ତ ବୁଢ଼ୀମଣିଷ । ଆଖିକୁ ଭଲ ଦିଶୁନି । ଆମ ଗାଁ ମାଇପି ଦଳ ବି ଆଗେ ଆଗେ ପଳେଇ ଆସିଲେ । ମୁଁ ସିନା ଭାବିଲି ଲକ୍ଷ୍ମୀ ତାଙ୍କ ସାଥିରେ ଅଛନ୍ତି । ମୁଁ ବି ଆସିଲି । ତଳେ ଆସି ସିନା ଜାଣିଲି, ସେ ସାଙ୍ଗରେ ନାହାନ୍ତି ବୋଲି । କେତେ ଯେ ଖୋଜିଲିଣି । ବୁଢ଼ୀଟା ବାବୁ, ଥକିଲିଣି, ଠିଆ ହୋଇ ଭାବୁଥିଲି ପୁଣି ଓପରକୁ ଯିବି କିମିତି ? ଠାକୁରାଣୀ ମା, ପରା ସାକ୍ଷାତ ଓ କରନ୍ତି, ବୁଢ଼ୀଟାର ଡାକ କିମିତି ଶୁଣିଲେ ? ମୁଁ ଚାଲି ଆସି

ଫିଟାଇଲା ବେଳକୁ ଫଳ ସାଙ୍ଗେ ସାଙ୍ଗେ ମିଳିଗଲା । ହଁ, ମା, ତୁମେ ଦିଟା କଣ ଖାଇନିଅ । ଭୋଗତ ଏଇଲେ ବସୁନାହିଁ । ମିଳୁମିଳୁ କେତେବେଳେ ହବ କେଜାଣି ।' କୃଷ୍ଣମୂର୍ତ୍ତୀ କହିଲା, 'ମୁଁ ସେଇକଥା କହୁଥିଲି । ଏପାଖ ବଜାରରେ ମୁଁ ବସା ନେଉଚି । ସେଇଠିକି ଚାଲ । କଣ ଟିକିଏ ଟିକିଏ ଖାଇ ନେଇ ବିଶ୍ରାମ କର । ତାପରେ ଯିବାର କଥା କରିବା ।' ସଦେଇ ମାଇପକୁ ପାଇ ମୋ ମନରେ ବଳ ଆସି ଯାଇଥିଲା । ଦ୍ୱିଧା ଭାଙ୍ଗି ଯାଇଥିଲା । ମୁଁ ତାଙ୍କ ସାଙ୍ଗରେ ଗଲି । ବଜାରକୁ ଟିକିଏ ଛାଡ଼ି ଗୋଟିଏ ଛୋଟ ଘର । ବଖରେ ଦାଣ୍ଡରେ, ବଖରେ ବାରିଆଡ଼କୁ, ମଝିରେ ଗୋଟିଏ ପାଚେରୀ ଘର, ଅଗଣା, ଆମେ ସେଠି ପହଞ୍ଚି ଗୋଡ଼ ମୁହଁ ଧୋଇଲୁ । ସଦେଇ ମାଇପ ଆମ ଲୁଗା ବୁଜୁଳାବି ଆଣିଥିଲା । ମତେ କହିଲା ଏ ଲୁଗାତ କେତେବେଳୁ ପିନ୍ଧିଚ । ଏ ଧୂଆ ଶୁଖା ଲୁଗା ଅଛି ପିନ୍ଧି ପକାଅ । ମୁଁ ଲୁଗା ପାଲଟିଲି, କେତେ ସୁସ୍ଥି ଲାଗିଲା ମତେ । ତାପରେ କୃଷ୍ଣମୂର୍ତ୍ତୀ କେତେ ଗୁଡ଼ିଏ ଲଡ଼ୁ ଆଉ ମିଠେଇ ଆଣି ଥୋଇଲେ, ଭୋକ ହେଉଥିଲା, କିଛି ଖାଇନେଇ ପାଣି ପେଟେ ପିଇଦେଲି । ସଦେଇ ମାଇପକୁ କହିଲି - ମଟର କେତେବେଳେ ମିଳିବ ? ସେ କହିଲା - 'ଆଉ ଘଣ୍ଟେ ଦିଘଣ୍ଟା ପରେ ମିଳିବ ଯେ । ଇଲେତ ଛଅ ଘଣ୍ଟା ପଡ଼ିନି । ଆମେଯାଇ ରାତି ନଅ ଘଣ୍ଟା ବେଳକୁ ଘରେ ପହଞ୍ଚିଯିବା । ଆଶ୍ୱସ୍ତ ହେଲି । ମନଟା କିମିତି ଛଟପଟ ଲାଗୁଥାଏ ୟାଙ୍କ ପାଖକୁ ଯିବି ବୋଲି, ତାପରେ ମୋ ଦେହଟା କିମିତି ଝିମିଝିମି ଲାଗିଲା । ମୁଣ୍ଡଟା କିପରି ବୁଲେଇ ହବାକୁ ଲାଗିଲା । ଡର ମାଡ଼ିଲା, ଆରେ ଇଏ କଣ ହଉଚି ମୋର ? ସଦେଇ ମାଇପକୁ କହିଲି - ସେ କହିଲା, 'ପିଲାଟା, ଦିନଯାକ କାଷ୍ଠା ଓପାସ, ତାଉପରେ ପୁଣି ଏତେ ବୁଲା । ଖାଇଦେଲାକ୍ଷଣି ଦିହଟା ଝିମି ଝିମି ଲାଗୁଥିବ । ମୁଁ ଖଣ୍ଡେ କଣ ପାରି ଦଉଚି, ତୁମେ ଟିକିଏ ଶୋଇ ପଡ଼ । ତାପରେ ମଟର ଆସିଲା ବେଳକୁ ମୁଁ ତୁମକୁ ଉଠେଇବି ।' ଭାବିଲି ସତ କଥା ହୋଇଥିବ । ସେ ତଳଘରେ ଗୋଟାଏ ଖଟ ପଡ଼ିଥିଲା, ସେଥିରେ ବିଛଣା କରିଦେଲା, ମୁଁ ଯାଇ ଶୋଇ ପଡ଼ିଲି । ଆସ୍ତେ ଆସ୍ତେ ମୋର ମୁଣ୍ଡ ଦିହରେ କିପରି କଣ ହେବାକୁ ଲାଗିଲା, ବେଳେବେଳେ ମନେହବାକୁ ଲାଗିଲା, ମତେ ଯେପରି କିଏ ଟେକି ନେଉଚି, ମୁଁ ଶୂନ୍ୟରେ ଭାସିଭାସି ଚାଲିଛି । ପୁଣି ଚେତା ଆସିଯାଏ । ଭାବେ, ନା ମୁଁ ଠିକ୍ ଶୋଇଚିତ । ନିଦ ଭଲ ହଉନି । ଭଲଚେତା ମଧ୍ୟ ରହୁନି । ମୋର ନିଜ ଉପରେ କୌଣସି ଆୟତ ରହିଲାନି ଶେଷରେ । ସଦେଇ ମାଇପକୁ ଡାକିବାକୁ ହେଲି । ପାଟିରୁ କଥା ବାହାରିଲାନି । ଅନୁଭବ କଲି କୃଷ୍ଣମୂର୍ତ୍ତୀ ମୋ ପାଖରେ ଆସି ବସିଲା । ସେ ଯେପରି ମୋରି ଉପରେ ହାତ ବୁଲାଇଲା, ଠିକ୍ ଜାଣିପାରୁ ନଥାଏ; ଠିକ ଦେଖିପାରୁ ନଥାଏ । କଣ କିମିତି ହୋଇଗଲା । ଗୋଟାଏ ଉତ୍ତେଜନା ସାଙ୍ଗରେ ଗୋଟାଏ ଅବସାଦ, ଗୋଟାଏ ଦାରୁଣ କଷ୍ଟ ସାଙ୍ଗରେ ଗୋଟାଏ ନିଷ୍ଠୁର ଆନନ୍ଦ - ବଡ଼ ଗୋଳମାଳିଆ ମନହେଲା । ମତେ କିଏ ମାଡ଼ି ବସିଚି । ମୁଁ ତାକୁ ମାଡ଼ିବସିଲି । ମନେ ହେଲା ମତେ କିଏ କାମୁଡ଼ି ଦେଉଛି, ମୁଁ ତାକୁ କାମୁଡ଼ିଦେଲି । ମନେହେଲା ମୋ ଛାତି କିଏ ବିଦାରି ଦେଉଛି, ମୁଁ ତାକୁ ବିଦାରି ପକାଇଲି । ଏହିପରି ଅନୁଭବ କରୁ କରୁ କେତେବେଳେ ମୁଁ ଶୋଇପଡ଼ିଲି । ମୋର ନିଦ ଭାଙ୍ଗିଲା ବେଳକୁ ଦେଖିଲି ମୁଁ ସେଇଠି ଶୋଇଛି ।

ସଦେଇ ମାଇପ ମୋତେ ହଲେଇ ଉଠଉଚି । 'କିଏ ଉଠିବ ନାହିଁକି ? ମଟରେ ଛାଡ଼ିବ ପରା । ରାତି କେତେ ହେଲାଣି ।' ମୁଁ ଉଠିଲି । ମୋର ହୋସ ଆସିଚି । ମୋର ଛାତି ଜଳୁଚି । ଚାହିଁ ଦେଖିଲି ସେଥିରେ ଖଣ୍ଡିଆ ଦାଗ । ମୋର ନୂଆବେଳର କଥା ଟିକିଏ ଟିକିଏ ମନେହେଲା । ମୁଁ ଚମକି ପଡ଼ିଲି । ଏଁ କଣ ହେଲା ? ମୋ ଦେହର ଚାରିଆଡ଼ର ଅନୁଭୂତି ପାଇଲି । ବୁଝିବାକୁ ବାକି ରହିଲାନି । ମୁଁ ପ୍ରଥମେ ପଥର ଭଳି ବସି ରହିଲି । କଣ କରିବି, କଣ ଭାବିବି, ମୁଣ୍ଡରେ କିଛି ଢୁକିଲାନି । ଭାବିଲି ଖାଲି, ଏକଣ ହେଲା ? ଏକଣ କଲି ?

ସଦେଇ ମାଇପ ଡାକ ପକଉଥାଏ । କିଛି ସମୟପରେ ମୋର ମନରେ ହେଲା, ଏସବୁ ଚକ୍ରାନ୍ତ । ସଦେଇ ମାଇପ ଯାରି ଭିତରେ; କୃଷ୍ଣମୂର୍ତ୍ତୀ ଘେର ଭିତରେ । ମୁଁ ଦଉଡ଼ିଯାଇ ସେ ବୁଢ଼ୀର ତୋଟି ଚିପି ଧରିଲି । ହୁଏତ ସେଇଟା ମରିଯାଇ ଥାନ୍ତା । କୃଷ୍ଣମୂର୍ତ୍ତୀ କୁଠିଥିଲା ଆସି ଛଡ଼େଇଦେଲା । କହିଲା, 'ଯେ କଣ କରୁଚ ?' ମୁଁ ତାକୁ ଦେଖି ତା ଉପରକୁ ଯୁହୁସି ଗଲି । ତାକୁ ରାମ୍ପୁଡ଼ି ବିଦାରି ପକାଇଲି । କିନ୍ତୁ ପାରିଲିନି । ତାକୁ ମାରି ପାରିଲିନି । ତାର ସେ ଆକ୍ଷି ଦିଟା ଓପାଡ଼ି ଫୋପାଡ଼ି ଦେଇ ପାରିଲିନି । ମୋର ଦେହ ଭାଙ୍ଗି ପଡ଼ିଲା । ମନରେ ତୋଫାନ ଓ ଦିହର କ୍ଳେଶରେ ମୁଁ ଅଜ୍ଞାନ ହୋଇ ପଡ଼ିଲି । ସେଇ ଅଜ୍ଞାନ ମୋର ସବୁଦିନକୁ ହୋଇଥିଲେ ସୁଖ ପାଇଥାନ୍ତି; ତା ହେଲାନି । ପୁଣି ଚେତା ଆସିଲା । ଦେଖିଲି କେହି ନାହାନ୍ତି ସେ ଘରେ । ମୁଁ ଏକା । ମନରେ କି ଭାବନା ହେଲା କେଜାଣି । ଖୁବ୍ ବୁହେ କାନ୍ଦିନେଲି । ଏତିକି ବେଳେ ମଟର ପଁ ପଁ ଶୁଭିଲା । ଯେପରି କିଏ ମୋ ମନରେ ଆଘାତ କଲା । ନା, ନା, ମୁଁ ମରି ପାରିବିନି, ମୁଁ କୁଆଡ଼େ ପଳାଇ ଯାଇପାରିବିନି, ତାଙ୍କୁ ଥରେ ଦେଖିବି । ଥରେ ତାଙ୍କ ପାଦତଳେ ମୁଣ୍ଡଟା ମୋର ରଖି ଦିଟୋପା ଲୁହ ଗଡେଇବି । ତା ଆଗରୁ ଯେ ମୁଁ ମରିପାରେନା । ମୁଁ ଧାଇଁଲି । ମଟରରେ ବସିଲି । ମଟର ଚାଲିଲା । ମଟର ଚକଭଳି ମୋ ମନଟା ମଧ ଘୂରି ଯାଉଥାଏ । ବ୍ରହ୍ମପୁର ପାଖ ହେଲାବେଳକୁ ଟିକିଏ ଥାଇରି ଆସିଲା । ଠିକ୍ କଲି, ମୋର ଏ ପାପଦେହ ଆଉ ଦେବତାର ପୂଜାରେ ଆସିପାରେନା । ଯେବେ ତାଙ୍କର ପୂଜାରେ ନଆସିବ, ତାହେଲେ ମୋର ବଞ୍ଚିବାରେ ମଧ୍ୟ କିଛି ଲୋଡ଼ା ନାହିଁ । ଘରକୁ ଯିବି । ଶୁଣିଥିଲି ଯେ ସେଇ ଏସିଡ୍ ଗୁଡ଼ାକ ସୁନାଗଳେଇବାରେ ଦରକାର ହୁଏ, ସେଥିରୁ ଟିକିଏ ଖାଇ ତାଙ୍କରି ପାଦତଳେ ମୋ ମୁଣ୍ଡଟା ରଖି ମରିଯିବି । ତାପରେ ମନରେ ଶାନ୍ତି ଆସିଗଲା । ଆଉ କିଛି ଦ୍ୱିଧାନାହିଁ । ଆଉ କିଛି ଦୁଃଖ ନାହିଁ । କେବଳ ଦୁଃଖ ରହି ଗଲା, ତୁମକୁ ଦେଖି ପାରିବିନି । ଯିବା ଆଗରୁ ପାରିଲିନି ।

ଘରେ ଆସି ପହଞ୍ଚିଲଣ ବେଳକୁ ରାତି ପ୍ରାୟ ଦଶଟା । ଯେ ସେତେବେଳ ଯାଏ ଶୋଇ ନଥାନ୍ତି । ମତେଦେଖିଦେଇ କହିଲେ - 'ତୁମେ ଏକା ଯେ ?' ତାକୁ ଦେଖିଦେଲାକ୍ଷଣି ତାଙ୍କ କଥା ପଦକୁ ଶୁଣିଲା କ୍ଷଣି, ମୋ ପେଟ ପାଖରେ କଅଣଟାଏ ଆସି ହାବୁଡ଼ି ଗଲା । ମୁଁ ଯେତେଚେଷ୍ଟା କଲି, ସହଜ ସରଳଭାବରେ ତାଙ୍କ ସଙ୍ଗରେ କଥାବାର୍ତ୍ତା ହେବି ବୋଲି, ପାରିଲିନି । ଭୁଷ୍‌କରି ଘରକୁ ପଶିଗଲି । ସେ ଲୁଗାଟା କାଢ଼ି ଫୋପାଡିଇ ଦେଲି । ବାହ୍ଲିକରି ତାଙ୍କରି ଦିଆ ଭଲ ଶାଢ଼ୀ

ଖଣ୍ଡିଏ ବିନ୍ଧିଲି । ଯେତକ ଗହଣାଥିଲା ସବୁ ଲଗେଇଲି । ମୁଣ୍ଡ କୁଣ୍ଡେଇଲି । ସେ ଆସି ଦୁଆର ମୁହଁରେ ଠିଆ ହେଲେ । ଦେଖିଲେ, ତାଙ୍କର ଆଖି ଉଲ୍ଲାସରେ ଉଛୁଳି ପଡ଼ିଲା । ସେ କହିଲେ, 'ଆଚ୍ଛା, ହଉ ମୁଁ ବାହାରେ ଅଛି । ବେଶୀ ଡେରି କରିବନି ।' ମୁଁ 'ହୁଁ' ମାରି ମୋ କାମରେ ଲାଗିଗଲି । କିଛି ସମୟ ପରେ ସେ ପୁଣି ଫେରି ଆସିଲେ - କହିଲେ, 'ହଇହେ, ଠାକୁରାଣୀ ପାଖକୁ ଗଲ, କଣ ଭୋଗରାଗ କଲ, ମୋ ପାଇଁ ପ୍ରସାଦ ତ କାଇଁ ଆଣିନ ?' ମୁଁ ମନଟା ଠିକ୍ କରି ନେଇଥିଲି । ଗୋଟାଏ କିପରି ଉତ୍ତେଜନା ମୋ ମନରେ ଆସି ଯାଇଥିଲା । କହିଲା, 'ଭୋଗ ? ମୁଁ ପରା ଠାକୁରାଣୀଙ୍କର ଭୋଗ । ଏ ଭୋଗ କଣ ତୁମକୁ ଅରୁଚି ହେବ ଦେବତା ? ଯାଠୁ କଣ ଭଲ ଭୋଗ ହନ୍ତା ତୁଳସୀ ବେଲପତ୍ରୀ ।' ସେ ହସି କହିଲି, 'ନା, ବାୟାଣୀ, ନା । ତୁମର ଏ ପ୍ରସାଦିଛଡ଼ା ମୁଁ ଠାକୁରାଣୀଙ୍କଠୁ ଆଉ କୌଣସି ପ୍ରସାଦ ମାଗୁନି", ମୁଁ କହିଲି, "ତା ହେଲେ ଯାଅ ତୁମେ ଶୋଇପଡ଼ ।' 'ବେଶୀ ଡେରି କରନି । ଡେରିକଲେ ମୁଁ ଆସି ପ୍ରସାଦି ଗୋଟାଇ ଖାଇ ନେବିଟି ।' କହି ସେ ଚାଲିଗଲେ ଶୋଇବା ଘରକୁ । ମୁଁ କାଗଜ କଲମ ଘେନି ଏ ଚିଠିଟି ଲେଖି ବସିଲି । ଲେଖି ଚାଲିଚି । କେତେ କଥା କଣ ଲେଖି ପକାଇଲିଣି, ଯାଉଚି । ମୋର ସବୁ ଠିକ୍ । ଖାଲି ଦାଣ୍ଡ ଘର ଆଲମାରିରେ ବିଷ ଟିକିଏ । ଏ ଜନ୍ମ ପାଇଁ ନିଶ୍ଚୟ ସୁରି ତୁମେ ମତେ ଖୁବ୍ ଭଲ ପାଉଥିଲ, ଖୁବ୍ ଭକ୍ତି କରୁଥିଲ ମୁଁ ଜାଣେ । ସେ ଭଲ ପାଇବା ଓ ଭକ୍ତି କରିବାର ଉପଯୁକ୍ତ ମୁଁ ହେଇ ପାରିଲିନି । ତଥାପି ଗୋଟାଏ କଥା । କୃଷ୍ଣମୂର୍ତ୍ତିଙ୍କୁ ମୁଁ ମାରି ପାରିଲିନି । ସେ ମୋର ସୁଖର ସଂସାର ଭାଙ୍ଗି ଚୂରମାର କରିଦେଲା । ପାରିବତ, ତୁମେ ତା ସଂସାର ଭାଙ୍ଗିବ । ମୋ ପ୍ରତି ତୁମର ଯେବେ କିଛିମାତ୍ର ସ୍ନେହ ଥାଏ, ସହାନଭୂତିଥାଏ, ଏହା ନିଶ୍ଚୟ କରିବ । ନରକରୁ ମୁଁ ଏସବୁ ଦେଖୁଥିବି । ତୁମେ ଯେବେ ନ କର, ତାହେଲେ ନରକର ସବୁ ଭୂତପ୍ରେତ ଆଣି ମୁଁ ତାଙ୍କୁ ଆଙ୍ଗୁଳି ଆଙ୍ଗୁଳି କରି ପୋଡ଼ି ମାରିବି । ନା, ନା, ଏ ମୋର ପାଗଳାମି । ନା ନା, ନା, ତୁମେ ମତେ ଭୁଲିଯାଅ, ସୁର, ପାଶୋରି ଦିଅ, ଲକ୍ଷ୍ମୀଆମ୍ମା ବୋଲି ତୁମର ଗୋଟିଏ ପାପିନୀ, ହତଭାଗିନି ଭାଉଜ ଥିଲା ।।

●

## ପନ୍ଦର

ଏ ଚିଠି ପଢ଼ାସରିଲା ବେଳକୁ ସେଠାରେ ଯେତେଲୋକ ଥିଲେ, କହାରି ଆଖି ଶୁଖିଲା ନଥିଲା । ପୁଲିସ ସାହେବ ନିଜର ଏ ଦୁର୍ବଳତା ଘୋଡାଇବାକୁ ଯାଇ ପକେଟରୁ ରୁମାଲଟା କାଢ଼ି ମୁହଁ ପୋଛି ପକାଇଲେ । କହିଲେ, 'ଆଜି ବଡ଼ ଗରମ' ।

ଗଦା - ଓଃ କି ଭୀଷଣ ? କେତେ ନିଦାରୁଣ ? ସେଦିନ ଟର୍ଚ୍ଚ ଲାଇଟ୍ ଆଲୁଅରେ ଖାଲି ଯା ଉପରେ ଆଖି ବୁଲାଇ ନେଇଥିଲି ମାତ୍ର । ଜାଣିନଥିଲି ଯେ ଯା ଭିତରେ ହୃଦୟର ତନ୍ତ୍ରୀ ଛିଣ୍ଡାଇବା ଲାଗି ଏପରି ବାଘୁଆ ଚାଲ୍ ରହିଚି ବୋଲି ।

ସାହେବ – ହଁ, ବଡ କରୁଣ । ବିଚାରୀ ଲକ୍ଷ୍ମୀଆମ୍ମା ! ସରଳା, ସରଳ ବିଶ୍ୱାସୀ ! କଣ ହେଲା କହି ପାରିବେ ଆପଣ ? କୃଷ୍ଣମୂର୍ତ୍ତୀ ତାକୁ କଣ ଦେଇଥିଲା ।

ଗଦା – ସେଇ ଲଡୁ ଗୁଡ଼ାକରେ ଗଞ୍ଜାଇ ବୋଧହୁଏ । ଯେ ଲକ୍ଷଣ ସେ ଦେଉଚନ୍ତି ତାର ବିକାରରେ, ସେଥିରୁ ଗଞ୍ଜାଇ ଛଡ଼ା, ଆଉ କିଛି ବୋଲି ମନେହୁଏନା ।

ସାହେବ – କିନ୍ତୁ ତାଙ୍କ ପେଟରୁ ତ ଗଞ୍ଜାଇର କିଛି ଚିହ୍ନ ବାହାରିନି ।

ଗଦା – ତା ବାହାରିବା ସମ୍ଭବ ବା ହଅନ୍ତା କିପରି ? ଧରନ୍ତୁ, ପ୍ରାୟ ପାଞ୍ଚଟା ବେଳେ ସେ ଖାଇଚନ୍ତି । ମାତ୍ର ବୋଧହୁଏ ବେଶୀ ନଥିଲା । ଥିଲେ ଏତେ ଶ୍ରୀଘ୍ର ଗଞ୍ଜଜାଇ ନିଶା ଛାଡ଼ି ଯାଇନଥାନ୍ତା । ସେ ଅନଭ୍ୟସ୍ତ । ଅଳ୍ପ ଟିକକରେ ତାଙ୍କର ପ୍ରଚଣ୍ଡ ନିଶା ହୋଇଯାଇଚି । ତାପରେ ଛାଡ଼ି ଯାଇଚି । ଛାଡ଼ିଯିବାର ପ୍ରାୟ ୨/୩ଘଣ୍ଟା ପରେ ସେ ଆଉଗି ଏକ ଉତ୍କଟତର ବିଷଖାଇଚନ୍ତି । ଏଣୁ ଗଞ୍ଜାଇର ଚିହ୍ନ ତାଙ୍କ ପେଟଭିତରୁ ଡାକ୍ତର ପାଇ ନାହାନ୍ତି ।

ସାହେବ – ସମ୍ଭବ । ଓଃ, କୃଷ୍ଣମୂର୍ତ୍ତୀ ଯେବେ ବଞ୍ଚିଥାନ୍ତା ।

ଗଦା – କଣ କରନ୍ତେ ସାହେବ ? ଖୁବ୍ ଜୋର୍‌କରି ୩୭୬ରେ ତାଙ୍କ ବିରୁଦ୍ଧରେ ଗୋଟାଏ ମକଦ୍ଦମା କରିଥାନ୍ତ; କିନ୍ତୁ ପ୍ରମାଣ କଣ ? କେବଳ ଲକ୍ଷ୍ମୀଆମ୍ମାଙ୍କ କଥା ଛଡ଼ା ଆଉତ କିଛି ନାହିଁ । ତାପରେ ଦେଖନ୍ତୁ ଲକ୍ଷ୍ମୀଆମ୍ମା ନିଜେ ସ୍ୱୀକାର କରିଚନ୍ତି ଯେ, ତାଠାରୁ ହାଣ୍ଡି ନୋଟଟା । ଫେରାଇ ଆଣିବା ପାଇଁ ତାଙ୍କ ଦିଅରଙ୍କ କଥାରେ ସେ ନିଜ ଇଚ୍ଛାରେ ତା ସାଙ୍ଗରେ ମିଶିଚନ୍ତି । ସେ ସ୍ୱୀକାର କରିଚନ୍ତି ଯେ ଯୌନ ସମ୍ପର୍କ ବେଳେ ସେ ସେଥିରେ ସହଯୋଗ କରିଚନ୍ତି । ତା ବିରୁଦ୍ଧରେ ତୁମର ମକଦ୍ଦମା କାହିଁ ସାହେବ ? ତୁମର ଆଇନ ଦୋଷୀ ପାଇଁ ତିଆରି ହୋଇନି । ତୁମ ଆଇନରୁ ପ୍ରଥମ ମୂଳନୀତି ହେଲା ଯେ ଦୋଷୀର ଦୋଷ ପ୍ରମାଣ ନହେବା ଯାଏ ସେ ନିର୍ଦ୍ଦୋଷ । ଏ ନୀତି କେବଳ ନିର୍ଦ୍ଦୋଷୀଙ୍କୁ ଦୋଷରେ ଜଡ଼େଇ ତାକୁ ସାହାଯ୍ୟ କରେ ସେତିକି, ଯେତିକି ଦୋଷୀକୁ ତାର ପ୍ରାପ୍ୟ ଦଣ୍ଡରୁ ମୁକ୍ତି ଦବାରେ ସାହାଯ୍ୟ କରେ ।

ସାହେବ – ଏ ଯେ ଗୋଟାଏ ନୂଆ କଥା ତୁମେ କହୁଚ ଗଦାଧର ବାବୁ । ଦୋଷୀର ଦୋଷ ପ୍ରମାଣ ନହେବା ଯାଏ ତାକୁ ନିର୍ଦ୍ଦୋଷ ବୋଲି ଧରି ନେବାରେ ତ ସବୁଠୁ ବେଶୀ ନ୍ୟାୟ ଓ ଧର୍ମ । ଯା ସମସ୍ତେ ସ୍ୱୀକାର କରିଚନ୍ତି ।

ଗଦା – ହଁ, ଯେ ମାନେ ମଣିଷକୁ ଦେବତା ବୋଲି ସ୍ୱପ୍ନ ଦେଖନ୍ତି ବା ଯେଉଁମାନେ ମନୁଷ୍ୟକୁ ଗୋଟାଏ ଜୀବନହୀନ, ଭାବନାହୀନ ଯନ୍ତ୍ର ବୋଲି ଭାବନ୍ତି, ସେହି ମାନଙ୍କର ନ୍ୟାୟ ଓ ଧର୍ମରେ ଏ ସତ୍ୟ ହୋଇପାରେ, କିନ୍ତୁ ସାହେବ, ମନୁଷ୍ୟ ଦେବତା ନୁହେଁ କି ଯନ୍ତ୍ର ନୁହେଁ । ଏ ଗୋଟାଏ ସଜୀବ ଚିନ୍ତାଶୀଳ ବୁଦ୍ଧିମାନ ଜୀବ । ମର୍ତ୍ତ୍ୟର ମରଣଶୀଳ ଜୀବ । ଏହି ମନୁଷ୍ୟଭିତରେ ଦୁଇଟା ବିଭିନ୍ନ ଶକ୍ତି କାମ କଲେ, ଗୋଟାଏ ତାର ଦୈବଶକ୍ତି ଆତ୍ମା, ଆଉ ଗୋଟାଏ ତାର

ପାଶବିକ ଶକ୍ତି । ମନୁଷ୍ୟ ପଶୁ ଓ ଦେବତାର ମିଶ୍ରଣ । ସେ ଖାଲି ଦେବତା ନୁହେଁ, ଖାଲି ପଶୁ ନୁହେଁ । ଆପଣ ଦେଖିବେ ଅଧିକାଂଶ ମନୁଷ୍ୟଠାରେ ପଶୁତ୍ୱ ଦେବତ୍ୱକୁ ଚାପିଦିଏ ଏତେ ଦୂର ଯେ ଦେବତାର ସ୍ୱର ଆଉ ତା କାନରେ କେବେ ବାଜେନି ।

ସାହେବ – ହୁଁ, ସତ ହୋଇପାରେ, ତଥାପି –

ଗଦା – ତଥାପି ଫାଥାପି କିଛି ନାହିଁ ସାହେବ ଏଥିରେ, ଆପଣହିଁ ଭାବି ଦେଖନ୍ତୁ । ଯେ ଚୋର, ଅର୍ଥାତ୍ ଯେ ଜାଣିଶୁଣି ଭାବିଚିନ୍ତି ଚୋରୀ କରିବାକୁ ଯାଉଚି, ସେ ଜାଣେ ଯେ ଧରା ପଡ଼ିଲେ ସେ ଜେଲ୍ ଯିବ । ଅତଏବ ସେ ସାବଧାନ ଥାଏ । ନିଜ ଲାଗି ସେ ଦୋଷରୁ ମୁକ୍ତ ହେବା ପାଇଁ ସବୁ ଯତ୍ନ ଓ ସାବଧାନତା ନେଇ ଯାଏ । ଚୋରୀ ପରେ ତୁମେ ଅନୁସନ୍ଧାନ କରିବାକୁ ଗଲାବେଳକୁ ତୁମେ ହୁଏତ ତା ବିରୁଦ୍ଧରେ କିଛିମାତ୍ର ପ୍ରମାଣ ପାଅନ୍ତି । ଆପଣ କହନ୍ତୁ, ଆପଣଙ୍କ ଇଲାକାରେ ଯେତେ ଚୋରୀ ମକଦ୍ଦମା ହୁଏ, ସେଥିରେ କେତେଟାରେ ଆପଣ ଚୋରକୁ ଧରିପାରନ୍ତି । ବୋଧହୁଏ, ଶତକଡ଼ା ୨୦/୨୫ । ବାକୀ ସବୁରେତ ଚୋର ଚୋରୀକରି ଏପରି ଚାଲାକି କରେ ଯେ ଆପଣ ତାକୁ ସନ୍ଦେହ ପର୍ଯ୍ୟନ୍ତ ମଧ୍ୟ କରନ୍ତିନି । ଆଉ ଯୁ ୨୦/୨୫ ଧରନ୍ତି, ସେଥିରୁ ମଧ ପ୍ରାୟ ଅଧାଅଧି ପ୍ରମାଣ ଅଭାବରୁ ଖସିଯାଏ । ଯେଉଁମାନେ ପଇସାପତ୍ର ଦେଇ ମକଦ୍ଦମା ଲଢ଼ି ପାରନ୍ତିନି ବା ଯେଉଁମାନେ ନିଜ ବୋକାମୀ ହେତୁରୁ ସବୁ ସ୍ୱୀକାର କରିଯାନ୍ତି, ସେହିପରି କେତେଟାଙ୍କୁ ଆପଣ ଦଣ୍ଡ ଦେଇପାରନ୍ତି । ସତ ବା ମିଛ ?

ସାହେବ – ହୁଁ, ଅନେକଟା ସତ ।

ଗଦା – କିନ୍ତୁ ଯେ ନିର୍ଦ୍ଦୋଷ, ସେତ ଜାଣେନା ଯେ ତାକୁ କୌଣସି ଦୋଷରେ ଜଡ଼ିତ କରିବାକୁ ଚେଷ୍ଟା କରାଯିବ । ସେ ଦୋଷ କରିନି, ଅତଏବ ତାର ଗତିବିଧି ଓ ଚାଲିଚଳନରେ ସେ ବେପରୁଆ, ଅଯତ୍ନ ଓ ଅସାବଧାନ, ହଠାତ୍ ଯେବେ ତା ଉପରେ ଦୋଷ ଆରୋପ କରାଯାଏ ଓ ତାର ନିରୀହ ଗତିବିଧିକୁ ଦୋଷର ଦୃଷ୍ଟିରୁ ଦେଖାଯାଏ, ତାହେଲେ ସେ କିପରି ରକ୍ଷା ପାଇବ କହନ୍ତୁ ?

ସାହେବ – କିନ୍ତୁ ଏପରି କି ହୁଏ କୁଠି ?

ଗଦା – ଅନେକହୁଏ । ଧରନ୍ତୁ ଆପଣଙ୍କ ସିପାହୀ ଓ ଦାରୋଗା ରାସ୍ତାରେ ବୁଲୁଛନ୍ତି ରାତିରେ । ଗୋଟାଏ ଲୋକ ତା ପ୍ରେମିକା ଠାରୁ ଲେଉଟିଚି । ସେ ପୁଲିସକୁ ଦେଖିଲା । ପୁଲିସ ତାକୁ ଡାକିଲା । ସେ ଡର ଖାଇଯିବ ନିଶ୍ଚୟ । ପୁଲିସକୁ ସମସ୍ତଙ୍କର ଡର । ସେ ଡରିଗଲା । ଖସି ପଳାଇବାକୁ ଚାହିଁଲା । ତୁମ ଲୋକ ଯାଇ ତାକୁ ଧଇଲେ । ତୁମର ୧୦୯ ଦଫାରେ ଅଭିଯୋଗ ଆସିଗଲା । ସେ ଚୋରୀ କରିବା ଉଦ୍ୟୋଗ କରୁଥିଲା । ସେ ରକ୍ଷା ପାଇବାର ଉପାୟ କରିନି । ଅତଏବ ଦଣ୍ଡ ପାଇଲା । ଏହି ମକଦ୍ଦମାରେ ଦେଖନ୍ତୁନା । ଛୁରିଆ ମାରିଚି, ବିଷ ଦେଇଚି, କିନ୍ତୁ ସେ ତାର ଚିହ୍ନ ଏପରି ଭାବେ ଘୋଡ଼ାଇ ଯାଇଚି ଯେ, ଆପଣମାନେ ପ୍ରଥମେ ତା ପ୍ରତି ସନ୍ଦେହ

ପର୍ଯ୍ୟନ୍ତ କରି ନାହାନ୍ତି । ହାତେ ହାତେ କାନ ଧରି ପ୍ରମାଣ ସବୁ ନ ଦେଖାଇବା ପର୍ଯ୍ୟନ୍ତ ଆପଣଙ୍କ ମନକୁ ସେ କଥା ଟିକିଏ ହେଲେ ଯାଇନି । ଅଥଚ ସେ ମାଉସୀ ଓ ଚାକର ନିର୍ଦ୍ଦୋଷ । ସେମାନେ ବେପରୁଆ, ଅଯତ୍ନ ଓ ଅସାବଧାନ । ତୁମେ ତାଙ୍କ ପ୍ରତ୍ୟେକ କଥାକୁ ସନ୍ଦେହର ଚକ୍ଷୁରେ ଦେଖୁଚ । ସନ୍ଦେହ ଭାଙ୍ଗିବାର ଉପାୟ ସେ କରି ନାହାନ୍ତି, ଅତଏବ ତୁମେ ତାଙ୍କୁ ଧରି ଜେଲରେ ଦେଇଚ ।

ସାହେବ - ହୁଁ, ଅନେକଟା ସତ, ଅନେକଟା ସତ, କିନ୍ତୁ ନା' ମୁଁ ମାନିବାକୁ ଚାହେଁନା । ମାନି ପାରିବିନି । ତା ହେଲେ ଯେ ମୋତେ ପିଙ୍ଗଳ-ବୋର୍ଡ୍ ଫୌଜଦାରି କାର୍ଯ୍ୟବିଧି ଆଇନ ସବୁକୁ ଅମାନ୍ୟ କରିବାକୁ ପଡ଼ିବ । ନା ତୁମେ ଭୁଲ, ସ୍ଥାପିତ ଆଇନ ଠିକ୍ ।

ଗଦା - ତା ହେବ, ସ୍ଥାପିତ ଆଇନ୍ ରାଜାର ବା ରାଜ୍ୟର ହୁକୁମ । ସେ ବଡ଼ ନହୋଇ କଣ ଶୁଦ୍ଧ, ନ୍ୟାୟ, ଯୁକ୍ତି ଓ ଧର୍ମ ବଡ଼ ହେବ ? ଗଣତନ୍ତ୍ରର ବଡେଇ ଆମେ କରୁଁ; ସତ୍ୟତାର ବଡେଇ ଆମେ କରୁଁ; କିନ୍ତୁ ଆମର ଆଇନ, ଯାହା ଉପରେ ଏ ଗଣତନ୍ତ୍ର ଓ ସଭ୍ୟତା ଥୁଆ ହୋଇଛି, ତାହା ଠିକ୍ ଆଦିମ ଯୁଗର ଜଙ୍ଗଲ ଆଇନ୍ ଛଡ଼ା ଆଉ କିଛି ନୁହେଁ ।

ସାହେବ - ତୁମେ ଟିକିଏ ଅତିରଞ୍ଜନ କରୁନ, ଗଦାଧର ବାବୁ ?

ଗଦା - ମୋଟେ ନୁହେଁ, ଏତେ ଟିକିଏ ନୁହେଁ । ଏଇ ଦେଖୁନା, ଏଇ ମକଦ୍ଦମାଟା - କ୍ଷମା କରିବେ, ମୁଁ ଟିକିଏ ବାହାରୁ ଆସେ ।

ବାହାରି ଗଲେ । ବାରଣ୍ଡା ଉପରେ ହାଜତ । ସୁରିଆ ଠିଆ ହୋଇଥିଲା ଦୁଆରର ଲୁହା ରଡ଼କୁ ଧରି । କେହି ସିପାହି କୁଠି ନଥିଲେ । ଗଦାଧର ଚଟ କରି ସୁରିଆ ଆଡ଼କୁ ଚାହିଁଲେ । ସୁରିଆ ଟିକିଏ ତାଙ୍କୁ ଚାହିଁଲା । ତାପରେ ମୁଣ୍ଡ ହଲାଇଲା ଓ ଗଦାଧରକୁ ହାତ ଯୋଡ଼ି ନମସ୍କାର କଲା । ଗଦାଧର ସେହି ହତାର ଗୋଟେ ବୁଦା ମୂଳରେ ଟିକିଏ ବସି ଉଠି ଆସିଲେ । ପୁଣି ସୁରିଆକୁ ଚାହିଁ ରହିଲେ । ସୁରିଆ ତାଙ୍କୁ ଚାହିଁ ମୁଣ୍ଡ ହଲେଇନେଲା । ଗଦାଧର ଦପ୍ତରକୁ ପଶିଯାଇ କହିଲେ, 'କୃଷ୍ଣମୂର୍ତ୍ତି ଯେ ଅତ୍ୟାଚାର କରିଲା, ତା ପାଇଁ ତୁମ ଶାସ୍ତ୍ରରେ କିଛି ମାତ୍ର ଦଣ୍ଡ ନଥିଲା । ଅଥଚ ତା ଦୋଷର ଦଣ୍ଡ ଫାଶୀ ଠାରୁ ମଧ ତୀବ୍ର ହେବା ଉଚିତ । ସେ ଗୋଟିଏ ନିରିହା ବାଳିକାର ସତୀତ୍ୱ ନେଇଛି ଛଳନା କରି । ସେ ଦୁଇ ଦୁଇଟା ପ୍ରାଣୀର ହତ୍ୟା କରିବାରେ ପୂର୍ଣ୍ଣ ଦାୟୀ । ତାର ଦଣ୍ଡ ତୁମେ ନେଇ ପାରିବନି । ସୁରିଆ ଦେଲା, ଅଥଚ କୃଷ୍ଣମୂର୍ତ୍ତୀର ଦୋଷ ହିଁ ସୁରିଆକୁ ଫାଶୀ ଦବାରେ ମୂଳ ପ୍ରମାଣ ହେବ । କୃଷ୍ଣମୂର୍ତ୍ତୀ ଦୋଷ କରିବ, ତାପାଇଁ ସେ ଦଣ୍ଡ ପାଇବନି । ଅଥଚ ସେହି ଦୋଷ ଲାଗି ସୁରିଆକୁ ତୁମେ ଫାଶୀ ଦେବ । ଗୋଟାଏ ଆଖି ଆଉ ଗୋଟାଏ ଆଖି, ଗୋଟାଏ ଦାନ୍ତ ବଦଳରେ ଆଉ ଗୋଟିଏ ଦାନ୍ତ ଏଇତ ତୁମର ଆଇନ । ଏଇ ଆଇନ ଯେବେ ଜଙ୍ଗଲି ଆଇନ ନୁହେଁ ତ ଆଉ କଣ ? ତୁମର ସାହସ ଅଛି, ତୁମେ ସୁରିଆକୁ ମୁକ୍ତ କରି ପାରିବ ?

ସାହେବ - ସେ କିପରି ହବ ? ଯାହା କରନ୍ତୁ ସେ ଦିଇଟା ଲୋକଙ୍କୁ ବିଷ ଦେଇ ମାରିଚି, ତାର ଦଣ୍ଡ ହେବା ଦରକାର ।

ଗଦା - ନିଶ୍ଚୟ, ତୁମ ଆଇନ ଅନୁସାରେ । ଯା'ଉ ତା' ପରେ କିନ୍ତୁ ରହସ୍ୟଟା ଟିକେ ରହିଗଲା ଯେ । ଲକ୍ଷ୍ମୀଆମ୍ମା ବିଷ ଆଣିବାକୁ ଗଲା । ତା ପରେ କଣ ହେଲା ସେ ଦେଖେ ନାହିଁ । ଅନୁମାନ କରିବା ସତ; କିନ୍ତୁ ତାର କିଛି ପ୍ରମାଣ ଅଛି ?

ସାହେବ - ତା ଅଛି, ସେ ହେଉଚି ଜଗନ୍ନାଥର ଚିଠି । ସେ ବିଷ୍ ଖାଇବା ଆଗରୁ ଖଣ୍ଡେ ଚିଠି ଛାଡ଼ି ଯାଇଥିଲା । ଇନ୍‌ସପେକ୍ଟର, ସେଇଟା ବାହାର କରତା । ତୁମେ ଫାଇଲରେ ତ ଥିବ ନିଶ୍ଚୟ । ସେ ଚିଠିଟା ଖୋଜା ହୋଇ ପଢ଼ା ହେଲା ।

## ଜଗନ୍ନାଥ ଚିଠି

ଭାଇ ସୁରି,

ତତେ ଭାଇ ବୋଲି ଡାକିବାର ଏଇ ଶେଷ ମୋର । କଣ ଯେ କାହିଁକି ହୋଇଗଲା ମୁଁ ଜାଣେନି । କିନ୍ତୁ ହବା ନିଶ୍ଚିତ । ଏହା ଅଟଳ, ପର୍ବତ ପରି । କାହିଁକି ହେଲା ଏ ? କେତେ ଆଶାରେ କେତେ ଯେ କଣ ଭାବିଥିଲି । ସବୁ ମୂହର୍ତ୍ତକେ କୁଆଡ଼େ ଉଡ଼ି ଲିଭେଇଗଲା । ମୋର ମୁଣ୍ଡରେ କିଛି ପଶୁନି; ମୁଁ କିଛି ଭାବି ପାରୁନି, ଭାବି ବାର ବା ଆଉ ଅଛି କଣ ? ଜୀବନ ଥିବା ପର୍ଯ୍ୟନ୍ତ କାର୍ଯ୍ୟ କାରଣର ନାଟ ଲାଗିଥାଏ । ଜୀବନ ଗଲା ବେଳକୁ ସବୁ ନାଟ ଶେଷ । କେବଳ ଗୋଟାଏ [illegible] ରହିଯାଏ - ସେ ମରଣ । ମରଣରେ ମଧ ସୁଅ ଅଛି ସୁରି । ଜାଣି ନ ଥିଲି । ଭାବି ନ ଥିଲି, ଲକ୍ଷ୍ମୀ ଥିଲା, ତୁ ଥିଲୁ, ମୁଁ ଥିଲି । ସେତେବେଳେ ମରଣଟା କେତେ ଭୟଙ୍କର ଜଣା ପଡୁଥିଲା । ତା ନାଁ ପଡ଼ିଲା ବେଳକୁ ଦିହ ଶୀତେଇ ଉଠୁଥିଲା । କିନ୍ତୁ ଇଲେ ? ମରଣ ହିଁ ସୁଖ, ମରଣ ହିଁ ଶାନ୍ତି । ଜିଇଁ ରହିବାଟା ଗୋଟାଏ ପ୍ରକାଣ୍ଡ, ଗୋଟାଏ ଅସୀମ, ଅଶାନ୍ତି ଓ କଦର୍ଥନା ।

ଯାଉଚି ଲକ୍ଷ୍ମୀ, ଇଏ ଗଲି ଯେ ସୁନ୍ଦରୀ, ଟିକିଏ ଦି ମିନିଟିକି ସହି ପାରିବୁନି ? ମରଣର ରାଜ୍ୟରେ ଏପରି କି ସୁଖ ଅଛି ଯେ ତୁ ଏମିତି ବ୍ୟସ୍ତ ହେଉଚୁ ଧନ, ଚାଲିଯିବା ଲାଗି ? ଦେଖନ୍ତୁ ମୁଁ ତୋ ସୁରି ପାଖକୁ ଚିଠି ଲେଖୁଚି ? ତୋର ସୁରି, ସୁନ୍ଦରୀ, ତୋର ଯେ । ତାକୁ କହିଯିବୁନି ? ସେ ଯେ କେତେ ଦୁଃଖ କରିବ, ଏପରି ନ କହି ଚାଲିଗଲେ । ନାଁ, ତୁ କିଛି କରେଇ ଦବୁନି । ସୁରି, ସୁରି, ତୋ ଭାଉଜ, ଦେଖୁନୁ ଏ ଘର ଭିତରେ ଧାଇଁ ବୁଲୁଚି । ଏକଡ଼ ସେକଡ଼ ହୋଇ । ପଳାଇ ଯିବାର ରାସ୍ତା ଖୋଜୁଚି । ମୋର ଛାତି ଭିତରଟାରେ ହାତ ପୁରେଇ ଅନ୍ତ ନାଡ଼ି ଭୁଡ଼ି ଗୁଡ଼ାକ ଟାଣି ଡକା ପକେଇଚି ଆସ, ଆସ । ଯିବାକୁ ହବ ଯେ । କେତେ ଯେ କଣ କରିବାର

ଥିଲା । ହେଲାନି । ତେବେ କାହିଁକି ଯେ ତୋତେ ଛାଡ଼ି ତୋ ଭାଉଜ ସାଙ୍ଗରେ ପଳାଉଚି, ତାର କାରଣ ବି କଥାରେ କହିଦିଏଁ । କ୍ଷମା କରିବୁ ଭାଇ, ବେଶୀ କିଛି କହି ପାରୁନି ।

ଆଜି ସେ ମେଳାରୁ ଫେରିଲା, କ'ଣ ଯେ ତାର ହେଲା ସେଠି ସେ ମୋତେ କହିନି । କିନ୍ତୁ ଫେରିଲା ବେଳକୁ ତାଠି ଗୋଟାଏ ଉତ୍ତେଜନାର ଭାବ ଦେଖିଲି । ଘର ଭିତରକୁ ସିଧା ପଶିଯାଇ ତା ବାକ୍ସଟା ଖୋଲି ଭଲ ଶାଢ଼ୀ ପିନ୍ଧିଲା, ଯେତକ ଗହଣା ଗାଣ୍ଠି ଥିଲା । ସବୁ ନାଇଲା । ଭାବିଲି ଠାକୁରାଣୀଙ୍କ ଠାରୁ କଣ ପାଇଚି । ମନ ଖୁସିରେ ମୋ ପାଖକୁ ଆସିବ; ମୋତେ ନନ୍ଦନକାନନରେ ପରୀର ନାଚ ଦେଖେଇବ ବୋଲି ତାର ଆଜି ଏସବୁ । ମୁଁ ଯାଇ ଡାକିଲି; ମୋତେ ଶୋଇବା ଘରେ ଅପେକ୍ଷା କରିବାକୁ କହିଲା ରାଣ ପକେଇ । ମୋ ମନରେ କେତେ ସୁଖର କେତେ ଯେ ଆଶା ଆସିଗଲା, ତାର ସେ କଥାରେ । ମୁଁ ଯାଇ ବିଛଣାରେ ଶୋଇ ପଡ଼ିଲି । ତାର ଅପେକ୍ଷା କରିବାକୁ ଲାଗିଲି । ଡେରି ହେଉଚି, ବ୍ୟସ୍ତ ଲଗୁଥାଏ । ଦଣ୍ଡକ ଯେପରି ଘଣ୍ଟାକ ଭଳି ଲଗୁଥାଏ । କିନ୍ତୁ ଦିନ ସାରା କାମ କରିଥିଲି । ଦିହଟା କ୍ଲାନ୍ତ ଥିଲା । ପଡ଼ି ପଡ଼ି ସେ ଆସିଲେ ମୋ ପାଖକୁ କେତେ କଣ କହିବ, କେତେ କଣ କହିବି – ସେଇ ସ୍ୱପ୍ନର କଥା ଭାବୁ ଭାବୁ କେତେବେଳେ ମତେ ନିଦ ଲାଗି ଯାଇଛି । ଜାଣେନା କେତେବେଳ ଯାଏ ଶୋଇ ରହିଲି ମୁଁ । ତା ପରେ ମୋ ନିଦ ଚାଉଁକରି ଭାଙ୍ଗି ଗଲା । ଦେଖିଲି ସେ ଖଟ ପାଖରେ ଠିଆ ହୋଇ ମତେ ଏକାଲୟରେ ଚାହିଁଚି । ହାତରେ ଗୋଟାଏ ଗିନା ଧରିଚ । ମୁଁ ଚାହିଁବାର ଦେଖି ସେ ଗିନାରେ ଯାହା ଥିଲା ତାକୁ ଚଟ୍ କରି ପିଇ ଦେଲା ସେ । ସୁରି, ମୁଁ ଜାଣି ପାରିଲିନି । ତାକୁ ବାରଣ କରି ପାରିଲିନି । ତା ହାତରୁ ସେଉଟା ଛଡ଼େଇ ନେଇ ପାରିଲିନି । ଗିନାଟା ଦେଖି ଭାବିଥିଲି ମୋ ପାଇଁ ଠାକୁରାଣୀଙ୍କ ପାଦୁକ ନେଇ ଆସିଚି । ଗିନାଟାକୁ ତଳେ ରଖିଦେଲା । ତା ପରେ ସେ ଆସି ମୋ ଗୋଡ଼ ଉପରେ ପଡ଼ିଗଲା । କହିଲା, ଦେବତା ମୋର, ଇହକାଳର ପରକାଳର ମୁକ୍ତି ମୋର । ସ୍ୱର୍ଗ ମୋର, ନର ନାରାୟଣ ମୋର, କ୍ଷମା କରିବ । ମୋ ମନରେ କଣ ଗୋଟାଏ ଆଶଙ୍କା ହେଲା । ମୁଁ ତରବର କରି ଉଠି ବସିବା ଲାଗି ଗୋଡ଼ ଦିଟା ଟାଣି ଆଣୁଥିଲି । ସେ କୁଣ୍ଢେଇ ଢକଟମକଟ କରି ଧରି କହିଲା, 'ନାଁ, ନାଁ, ଟାଣି ଦିଅନି, ଟାଣି ଦିଅନି । ମୁଁ ଖାଲି ତୁମର ଏ ପାଦ ଦିଟି ମୋ ଛାତିରେ ଲଦି ଦେଇ ଚାଲି ଯିବାକୁ ଚାହେଁ । ମତେ ଏଇତିକରୁ ବଞ୍ଚିତ କରନି, ଦେବତା । ମୁଁ ତ ଆଉ କିଛି ମାଗୁନି । ଆଉ କିଛି ଚାହୁଁନି । ଓ କଣ ହୋଇ ଯାଉଛି ମୋର ଦିହ । ତୁମେ କୁଠି, ତୁମେ କୁଠି ? ମୋତେ ଯେ ଆଉ ଦିଶିଲାନି । ତୁମେ ଚାଲିଗଲ ? ଗୋଡ଼ ଦିଟି କାଢ଼ି ନେଲ ? ମୋତେ ଗୋଡ଼ରେ ଆଡ଼େଇ ଦେଲ ? ନା, ନା, ଏଇତ ? ତୁମରି ଗୋଡ଼, ଦେବତାର ପାଦ । ତୁମର ପାଦଧୂଳି କହି ବହୁ କଷ୍ଟରେ ମୋ ପାଦର ହାତ ବୁଲାଇ ମୁଣ୍ଡକୁ ନେଲା । ମୁଁଣ୍ଡରେ ହାତ ରଖୁ ରଖୁ ତା ଦିହଟା ଯାକ ଥରୁଟିଏ ଭୀଷଣ ଭାବରେ ଥରିଗଲା । ତାପରେ, ତାପରେ ନା କିଛି ହୋଇନି ।' ସେ ଶୋଇ ପଡ଼ିଲା ନିଶ୍ଚିନ୍ତରେ, ଆରାମରେ । ମୁଁ ଏସବୁ ଦେଖି ତ ପ୍ରଥମେ ଅବାକ୍ ହୋଇଗଲି । ତାର କଥା ବନ୍ଦ ହୋଇଗଲା । ସେ ଶାନ୍ତିରେ

ଶୋଇଗଲା । ମୁଁ ଆସ୍ତେ କରି ତା ଛାତି ଉପରୁ ଗୋଡ଼ କାଢ଼ି ଆଣିବାକୁ ଚେଷ୍ଟା କଲି । ଆସିଲାନି । କଟମଟ କରି ଧରିଚି ସେ, ସିମିତି ଉଠିଲି । ତାର ସେ ଲହୁଣୀ କଅଁଳ ଦିହଟା ଟିକିଏ ଟାଣ ହୋଇ ଆସୁଚି । ତୁଳା ପଥର ପାଲେଟି ଯାଉଛି । ଡାକିଲି କେତେ, ଶୁଣିଲା ନାହିଁରେ ସୁରି, ମୋର ଅତି ଧିର କଥା ପଦକୁ ଯେ, କାନ ଡେରି ରହିଥାଏ । ସେ ମୋର ଏତେ ଡାକ ଶୁଣିଲାନି । ଟିକିଏ ହେଇ ଚାହିଁଲାନି । ଆଖି ଦିଟା ତାର ଅଧା ବୁଜା ହୋଇଥାଏ । ସେ ଭାବ ତାର ମୁଁ ଦେଖିଥିଲି ବେଳେବେଳେ ଏଇ ଶେଯରେ, ଏଇପରି ରାତି ଅଧରେ । ମୁଁ ସମ୍ଭାଳି ପାରିଲିନି । ତା ଉପରକୁ ଗଡ଼ି ପଡ଼ିଲି । କେତେ ଆଦର କଲି, କେତେ ଚୁମା ଦେଲି । କିଛି ନାହିଁ, ସେ ଟିକିଏ ହେଲେ ମୋତେ ଉତ୍ତର ଦେଲାନି । ମୁଁ ଗୋଟାଏ ଚୁମା ଦେଲେ ସେ ପାଞ୍ଚୋଟା ଦେଉଥିଲା । ତାର ସେ ଗରମ ଓଠରେ । ମୁଁ ଟିକିଏ ହାତ ପକେଇ ଦେଲେ ତା ଦେହରେ, ସେ ଥରି ଉଠି ମୋ ହାତକୁ ଚକଟମକଟ କରି ଧରି ପକାଏ । ମୁଁ ଏତେ କୁଣ୍ଢେଇଲି । ଏତେ ଡାକିଲି, ସେ ଟିକିଏ ହେଲେ ମୋ ଉପରେ ହାତ ମଧ ପକେଇଲାନି । ମତେ ଦେଖିଦେଲେ ତା ଆଖିରେ ଅମୃତ ବୋଳି ହୋଇଯାଏ । ସେ ଆଖି ଆଜି ଗୋଟେ ନିର୍ଜ୍ଜିବ କାଚ ଭଳି ରହିଚି । ପଲକ ନାହିଁ, ସ୍ପନ୍ଦନ ନାହିଁ । ମୋତେ ପାଖରେ ପାଇଲେ, ତା ମୁଁହରେ ବସନ୍ତର ସୂର୍ଯ୍ୟ ଉଇଁ ଆସେ । ସେ ମୁଁହ ଆଜି କଳା କାଠ, କଣ ହେଲା ? କଣ ହେଲା ? ଭାବି ବସିଲି । ମନରେ କିଏ ଧକ୍କା ଦେଇ କହିଲା, "ମରିଗଲା ସେ । ମରିଗଲା ? ମରିଗଲା ? ଲକ୍ଷ୍ମୀ ମୋର, ସୁନ୍ଦରୀ ମୋର, ଧନ ମୋର ମରିଗଲା ? ନା ନା ତା କି ହୁଏ ? ସ୍ୱର୍ଗର ଦେବତା, ସେ କି ମରିପାରେ ? ଦେବତା ଯେ ଅମର ସେ କିମିତି ମରିବ ? ମନକୁ ବୁଝାଉଥାଏଁ । ମନ ମାନୁ ନ ଥାଏ । ସେ ଆସ୍ତେ ଆସ୍ତେ ଯମ ରାଜାଙ୍କର ସେଇ ହଜାର ମହଣର ଦଣ୍ଡଟା । ମୋ ଉପରେ ଲଦି ହେଉଥାଏ । ମୁଁ ତାରି ତଳେ ଆସ୍ତେ ଆସ୍ତେ ପେଶି ହୋଇ ଯାଉଥାଏ । ମୋର ନିଶ୍ୱାସ ବନ୍ଦ ହୋଇ ଆସିଲା । ମୋର ତୋଟିଟା ଭିତରେ କିଏ ସେ କଣ ଗୋଟାଏ ପଥର ଗୋବା ଭର୍ତ୍ତି କରି ଦେଲା । ମୋ ଛାତିଟା – 'ନା, ନା, ଯାଉଚି ସୁନ୍ଦରୀ । ଆଉ ଡେରି ନାହିଁ ଯେ, ଏଇ ସଇଲା, ଛଟପଟ ହୋଇ ଶେଯରୁ ଉଠିଲି । ସେ ଗିନାଟା ଉଠେଇ ନେଲି । ଶୁଙ୍ଘିଲି, ସେଇ ବାଦାମ ବାସନା । ଏଁ ପ୍ରୁସିକ୍ ଏସିଡ୍ ? ପିଇଦେଲା, ସବୁଟକ ପିଇଦେଲା । ଗିନାରେ ଟୋପାଏ ହେଲେ ମୋ ପାଇଁ ରଖିଲାନି । କେଡ଼େ ନିଷ୍ଠୁର ସେ, ଏତେ ଟିକିଏ ମୋ ପାଇଁ – ହା, ହା, ହା, ତୁ ମୋତେ ଫାଙ୍କି ଦେବୁ ସୁନ୍ଦରୀ, ତୁ ଭାବିଚୁ, ତୁ ସବୁ ପିଇ ଦେଇଚୁ ନା । ଜାଣୁ ମୋ ପାଖରେ କେତେ ଅଛି ସେଥିରୁ ଠାକୁରାଣୀଙ୍କୁ ପୂଜା କରି ତୁ ଯୁ ଅମୃତ ଆଣି ପିଇ ଅମର ହେଲୁ, ଦେଖ, ମୁଁ ଠାକୁରାଣୀଙ୍କ ପାଖକୁ ନ ଯାଇ, କେତେ ସେଥିରୁ ରଖିଛି । ତୁ ଅମାର ହୋଇଚୁ, ମୁଁ କଣ ମର ହୋଇ ରହିପାରେ ? ମର ହୋଇ ମୁଁ ଅମରୀ ସାଙ୍ଗରେ ରହିବି କିମିତ ! ନା ନା ମୁଁ ବି ତୋରି ଭଳି ଅମର ହେବି । ଧାଇଁ ଗଲି ଦାଣ୍ଡ ଘରକୁ ଆଲମାରିଟା ମେଲା ଥିଲା । ମେଲା କିମିତି ହେଲା ? ସବୁବେଳେ ତ ଚାବି ଦିଆଯାଏ । ଚାବିତ ସବୁବେଳେ ତାରି ପାଖରେ ଥାଏ । ଚାବିଟା ଯେ ଲାଗିଛି ଆଲମାରିରେ । କିଏ ଆଣିଲା ? କିଏ

ଖୋଲିଲା ? ଯାଉ ଭଲ ହୋଇଛି, ଖୋଜିବା ଦରକାର ପଡ଼ିଲାନି, ମୁଁ ଦୁଆରଟା ଫିଟାଇବାକୁ ଯାଉଚି, ପଛରେ, ପଛରେ ଶବ୍ଦ ଶୁଭିଲା । ଚାହିଁଦେଲି ଦେଖିଲି ସେ ଠିଆ ହୋଇଛି । ମୁହଁରେ ବିରକ୍ତିର ଚିହ୍ନ । ଆଙ୍ଗୁଠି ଦେଖାଇ ମୋତେ ଇଙ୍ଗିତ କରୁଛି ସେଇ ଆଲମାରି ଭିତରକୁ । ମୁଁ ତାର ଇଙ୍ଗିତ ବୁଝି ପାରିଲି । ତର ତର ହୋଇ ସେ ବିଷରୁ ମୁନ୍ଦିଏ ଢାଳିଲି ତାରି ସେଇ ଗିନାରେ । ସେ ଅଦୃଶ୍ୟ ହୋଇଗଲା । କେବଳ ମୋ କାନରେ ଗୋଟାଏ ଆର୍ତ୍ତ ଶବ୍ଦ । ଆସ, ଆସ, ମୁଁ ପାଗଳ ପରି ଧାଁଇ ଗଲି । ଦେଖିଲି, ସେ ସେହିପରି ଶୋଇଛି । ତାକୁ ଉଠାଇ ସେଇ ବିଛଣାରେ ଶୁଆଇଲି ଭଲ କରି । ଡାହାଣ ଗୋଡ଼ଟି ତାର ବଙ୍କା ହୋଇ ଯାଇଥିଲା । କେତେ ଚେଷ୍ଟା କଲି ସିଧା କରିବା ପାଇଁ ହେଲାନି । ତାର ହାତ ଦୁଇଟି ତାର ଛାତି ଉପରେ ମାଡ଼ି ଧରିଲି । ଏସବୁ କାମରେ ଲାଗି ମୋ ଟିକିଏ ଚେତନା ଆସିଛି । ତାର କଥା ମନେ ପଡ଼ିଗଲା । ତତେ ନ କହି ଏପରି ଚାଲିଗଲେ ତୁ କେତେ ମନ ଦୁଃଖ କରିବୁ । ସେଇ ହେତୁ ଏଇ ଚିଠିଟି ଆଙ୍କି ବସିଥିଲି । ମୋର ଗୋଟିଏ ଅନୁରୋଧ ରଖିବୁ ସୁର, ତୁ ମୋ ଲକ୍ଷ୍ମୀ ଦିହାରୁ ତାର ଗହଣାଗୁଡ଼ିକୁ କାଢ଼ି ନବୁନି, ମୋ ସୁନା ଭାଇଟି ପାରା । ଦେଖିବୁ ସେ କେତେ ସରାଗରେ ସେଗୁଡ଼ିକ ପିନ୍ଧି ଯିବା ପାଁ ତିଆରି ହୋଇ ଆସିଛି । ଆଗେ କେତେ ଥର ମୁଁ ତାକୁ କହିଚି ସବୁ ଗହଣା ଗୁଡ଼ିକ ପିନ୍ଧି ରହିବାକୁ । ସେ ମାନିନି, କହେ – ମତେ କଣ ଗୋଟିଏ ସଖୀକଣ୍ଢେଇ କରି ରଖିବାକୁ ମନେ କରିଚ । ଦେବତା ! ତା ହବନି । ମୁଁ ଯେ ତୁମର ପୂଜାରିଣୀ । ପୂଜାରିଣୀ କି ଦେବତା ପାଖକୁ ସଖୀ କଣ୍ଢେଇ ସାଜିଯାଏ । ମୋର ଏତେ ଦିନର ଅନୁରୋଧ ସେ ଆଜି ରଖିଚି । କେତେ ସନମାନରେ ସେ ଗହଣାଗୁଡ଼ିକ, ସେ ନୀଳଶାଢ଼ୀଟି ପିନ୍ଧି ସେ ବାହାରିଚି । ତୁ ତାକୁ ତାଠୁ ଛଡ଼େଇ ନବୁନି, ସୁରି । ଆଉ ଯାଉଚି, ଯାଉଚି ସୁନ୍ଦରୀ । ଏପରି ଅସ୍ଥିର ହଉଛ ଯେ । ସହିବୁନି, ଆଉ ଡ଼େରି ସହିବୁନି । ହଉ, ଚାଲ ତେବେ ଗଲି ଭାଇ । ସେ ବଡ଼ ବ୍ୟାକୁଳ ହୋଇ ପଡ଼ିଲାଣି । କିନ୍ତୁ – ନା ଆଉ ହବନି । ସେ ଆଉ କିଛି କରେଇ ଦବନି । ବଡ଼ ଅଳି କରି ବସିଲାଣିରେ ।



## ଷୋହଳ

ଏ ଖଣ୍ଡିକ ମଧ୍ୟ ପଢ଼ା ସରିଲା । ତାପରେ ସାହେବ ତାଙ୍କ ଦିପହର ଭୋଜନ ଲାଗି ଚାଲିଗଲେ । ଠିକ୍ ହେଲା ଯେ ପୁଣି ସନ୍ଧ୍ୟା ବେଳେ ସଭା ବସିବ ଓ ସୁରିଆର ବାକୀ ବୟନଟା ଶୁଣି ଅନୁସନ୍ଧାନର କାର୍ଯ୍ୟ ଶେଷ କରାଯିବ । ସେହି ଅନୁସାରେ ସନ୍ଧ୍ୟା ୪ଟା ବେଳେ ପୁଣି ସମସ୍ତେ ଏକତ୍ର ହେଲେ । ସୁରିଆକୁ ଡକାଗଲା । ସେହିପରି ତାକୁ ବସାଗଲା । ବର୍ତ୍ତମାନ ସୁରିଆର ମୁହଁରେ ଓ ଆଖିରେ ପୂରା ଶାନ୍ତି । ସେ ବସି ସିଗାରେଟଟି ଟାଣୁ ଟାଣୁ କହିଲା, 'ଆପଣମାନେ ମୋ ଭାଉଜର ଚିଠି ଖଣ୍ଡକ ପଢ଼ିଛନ୍ତି, ଭାଇଙ୍କ ଚିଠି ଖଣ୍ଡି ପଢ଼ିଛନ୍ତି ବୋଲି ମଧ୍ୟ ଶୁଣିଲି; ତା

ପରେ ମୋର ଆଉ ବେଶୀ କିଛି କହିବାର ନାହିଁ । ଏମାନଙ୍କ ମୃତ୍ୟୁ ଖବର ମୋ ପାଖରେ ତାର ଯୋଗେ ପହଞ୍ଚିଲା ମାତ୍ରକେ ମୁଁ ଧାଇଁ ଆସିଲି । ଭାଇଙ୍କର ଚିଠି ପୁଲିସ ହାତରେ । ଭାଉଜଙ୍କର ଚିଠିଟି ତାଙ୍କ ବାକ୍ସ ଉପରେ ରଖା ହୋଇଥିଲା । ମୁଁ ତାଙ୍କ ଘରକୁ ପଶି ଯିବାମାତ୍ରେ ମୁଁ ସେଉଟି ଗୋଟାଇ ନେଲି ଓ ପଢ଼ିଲି । ଏସବୁ ପରେ ମୋ ମନର ଅବସ୍ଥା ଯାହା ହୋଇଥିବ, ତାହା ଆପଣମାନେ ଅନୁମାନ କରି ପାରୁଥିବେ । ମୋଟ କଥାରେ ମୁଁ କିଛି ଦିନତ ପାଗଳ ବନି ଗଲି । ଠିକ୍ କରି ପାରିଲନି ମୋର କର୍ତ୍ତବ୍ୟ କଣ ? କୃଷ୍ଣମୂର୍ତ୍ତି ଓ ସଦିଆ ମାଇପ ଯେ ମୋର ଏ ସର୍ବନାଶର ମୂଳ କାରଣ, ସେମାନେ ଯେ ଏ ଦୁଇ ଦୁଇଟି ଦେବ ଦେବୀଙ୍କ ହତ୍ୟା ଲାଗି ପ୍ରତ୍ୟକ୍ଷ ଭାବେ ଦାୟୀ ସେ କଥାରେ ମୋର ଟିକିଏ ହେଲେ ସନ୍ଦେହ ନ ଥିଲା । ଭାବିଲି ଭାଉଜଙ୍କ ଚିଠଟା ପୁଲିସକୁ ଦେଇଦେବି । ତାହେଲେ ପୁଲିସ ସେମାନଙ୍କୁ ଧରି ଦଣ୍ଡ ଦବ । ପୁଣି ଭାବିଲି କିମିତି ? ପ୍ରମାଣ କଣ ! ତାପରେ କୃଷ୍ଣମୂର୍ତ୍ତି ଧନୀ ଓ ମାନୀ । ସେ ପଇସା ଦେଇ ସବୁ କିଛି କରିପାରେ, ହୁଏତ ସେ ପ୍ରମାଣ ବି କରି ପାରେ ଯେ ମୋର ଭାଉଜ ତା ପାଖକୁ ନିଜ ସ୍ୱଇଚ୍ଛାରେ ପଇସାର ଲୋଭରେ ଯାଉଥିଲେ ଓ ଧରାପଡ଼ିବା ହେତୁ ଆତ୍ମହତ୍ୟା କଲେ, ତା ହେଲେ ? ସତୀ ଦେହରେ କଳଙ୍କ, ଦେବୀର ଦେହରେ ନରକର ଛିଟା ନା ତା ହୋଇ ନ ପାରେ । ତେବେ ସେ କଣ ବିନା ଦଣ୍ଡରେ ଏଡ଼ ବଡ଼ ଗୁରୁ ପାପରୁ ମୁକ୍ତି ପାଇଯିବ ? ମନ ହେଲା ପାପର ପ୍ରାୟଶ୍ଚିତ ମଣିଷ ନ ଦେଇ ପାରିଲେ, ଭଗବାନ ନିଶ୍ଚୟ ଦେବେ । କିନ୍ତୁ ଭଗବାନ ? ଯୁ ଭଗବାନ ଦୁଇ ଦୁଇଟା ନିରୀହ ଜୀବର ଏହି ଗତି କରନ୍ତି । ସେଇ ଭଗବାନଙ୍କ ଉପରେ ବିଶ୍ୱାସ କରିବ ? ରାବଣ ସୀତାଙ୍କୁ ହରଣ କରି ଧର୍ଷିତ କରିଥିଲା । ରାମଚନ୍ଦ୍ର ଭଗବାନଙ୍କ ଉପରେ ତାର ଶାସ୍ତି ଓ ସୀତାଙ୍କ ଉଦ୍ଧାର ଲାଗି ନିର୍ଭର କରି ନିଷ୍କ୍ରିୟ ହୋଇ ବସି ଯାଇ ନ ଥିଲେ । ସେ ନାନା ଉପାୟରେ ରାବଣର ସର୍ବନାଶ କରି ସୀତାଙ୍କର ଉଦ୍ଧାର କରିଥିଲେ । ଆଉ ରାମଚନ୍ଦ୍ର ଥିଲେ ଦେବତା । ଶ୍ରୀକୃଷ୍ଣ କଂସର ଓ ଜରାସନ୍ଧର ଅତ୍ୟାଚର ଲାଗି ଭଗବାନଙ୍କ ଉପରେ ନିର୍ଭର କରି ସହିଯାଇ ନ ଥିଲେ । ସେ ଛଳବଳ କୌଶଳ ପ୍ରୟୋଗ କରି ସେମାନଙ୍କୁ ବଧ କରିଥିଲେ । ଆଉ ଶ୍ରୀକୃଷ୍ଣ ଭଗବାନଙ୍କର ଅବତାର । ଭାଗବାନ ଯୁଗେ ଯୁଗେ ଜନ୍ମ ନେଇ ଏଇ ଶିକ୍ଷା ଦେଇଛନ୍ତି । ମାନବ ସମାଜକୁ ଯେ ତୁମର ଶାନ୍ତି, ତୁମର ସୁଖ ତୁମରି ହାତରେ । ତୁମେ ଭାଗ୍ୟ ବା ଭଗବାନଙ୍କ ଉପରେ ନିର୍ଭର କରି ନିଷ୍କର୍ମା ହୋଇ ବସିଲେ, ସଂସାର ତୁମକୁ ପେଡ଼ି ପେଶି ଦେଇଯିବ । ମନେ ପଡ଼ିଲା ସେଇ ଯେ କଥାଟା ସେଦିନ ଆମ କଲେଜରେ ପଣ୍ଡିତଜୀଙ୍କ ବକ୍ତୃତାର ଶୁଣିଥିଲି – "ଉତ୍ତିଷ୍ଠତ, ଜାଗ୍ରତ, ବରାନ୍ ନିବୋଧତ୍" – ନା, ଏ ପାପର ଶାସ୍ତି କୃଷ୍ଣ ମୂର୍ତ୍ତିକୁ ସମାଜ ଦେଇ ନ ପାରେ । ଭଗବାନ ତ ଦେଇ ନ ପାରନ୍ତି । ଅତଏବ ଏ ଶାସ୍ତି ମତେ ହିଁ ଦବାକୁ ପଡ଼ିବ । କି ଉପାୟରେ ? ଗୋଟିଏ ଲୋକକୁ ମାରି ଦବା ବଡ଼ ବେଶୀ କଷ୍ଟର କଥା ନୁହେଁ । କିନ୍ତୁ ଶାସ୍ତି ପାଇଁ ତାକୁ ମାରି ନିଜେ ପୁଣି ଶାସ୍ତି ପାଇଲେ ସେଥିରେ କି ଲାଭ ? ଏପରି ଭାବରେ, ସଦେଇକୁ ଓ କୃଷ୍ଣମୂର୍ତ୍ତିକୁ ମାରିବି ଯେପରି ମୋ ସର୍ବନାଶର ଠିକ୍ ପ୍ରତିଶୋଧ ହୋଇପାରେ ଅଥଚ ମୋର ଧରାପଡ଼ିବାର ସମ୍ଭାବନା କମ ହବ । ମୋ ଭାଇ, ଭାଉଜ ଯୁ ବିଷ ଖାଇ ମରିଚନ୍ତି, ସଦେଇ ଓ ତାର ସ୍ତ୍ରୀ, କୃଷ୍ଣମୂର୍ତ୍ତି ଓ ତାର ସ୍ତ୍ରୀ

ମଧ୍ୟ ସେଇ ବିଷ ଖାଇ ମାରବେ । ମୁଁ ବିଷ ଯୋଗାଡ଼ କରିବାରେ ଲାଗିଲି । ବଣିଆ ବ୍ୟବସାୟ ଆମର, ପ୍ରୁସିକ ଏସିଡ୍ ରଖିବାର ଅଧିକାର ଆମର ଅଛି । ଅତଏବ ଗୋଟାଏ ବୋତଲ ନେଇ ଆସିବା କଷ୍ଟକର ନୁହେଁ । ସେ ମିଳିଗଲା । ତାପରେ ଉପାୟ ? ମୁଁ ଉପାୟ ଖୋଜି ବୁଲୁ ଥାଏଁ । ଯାଭିତରେ ମୁଁ ଥରେ ଦି ଥର ମୋ ଶ୍ୱଶୁରଙ୍କୁ କହିଚି ଯେ କୃଷ୍ଣମୂର୍ତ୍ତି ପାଖ ଋଣ ମୁକ୍ତ ହବାକୁ ପଡ଼ିଲେ ମତେ ଜମିବାଡ଼ି ଓ ଘରଦ୍ୱାର ବିକ୍ରି କରିବାକୁ ହେବ । ସେତ ପ୍ରଥମେ ଭାଉଜଙ୍କର ଅଳଙ୍କାର ଗୁଡ଼ାକ ତାଙ୍କ ଦେହରୁ କାଢ଼ି ରଖି ବିକିବା ପାଇଁ କହୁଥିଲା । ମୁଁ ମୋଟେ ରାଜି ହେଲିନି, ତାଙ୍କ ଦିହାରୁ ଏତେ ଟିକିଏ ହେଲେ ଅଳଙ୍କାର କାଢ଼ିନି । ସେହିପରି ଭାବରେ ସେ ଦେବୀ ପ୍ରତିମାଙ୍କୁ ନେଇ ଢ଼ୁଇରେ ବସେଇଚି । ସେହି ପରି ଭାବରେ ତାଙ୍କୁ ପୋଡ଼ି ଦେଇଚି । ତାଙ୍କର ପାଉଁଶ, ହାଡ଼ ଓ ସେ ତରଳ ସୁନା ରୂପା ଗୁଡ଼ାକ ସାଉଟି ରଖିଲି ଗଙ୍ଗାରେ ଦବା ପାଇଁ । ଦେଇଚି ମଧ୍ୟ । ମୁଁ ଶ୍ୱଶୁରଙ୍କ ମୁଣ୍ଡରେ ଏଇ କଥାଟା ଭୁକାଇବାକୁ ଚେଷ୍ଟା କରିଚି ଯେ କୃଷ୍ଣମୂର୍ତ୍ତି ଘରୁ କୁଣ୍ଡସି ଉପାୟରେ ସେ ହ୍ୟାଣ୍ଡ ନୋଟଟି ଖସାଇ ଆଣିଲେ ଯାଇ ମୋର ଓ ତାଙ୍କ ଝିଅର ମୁକ୍ତି । ପ୍ରକୃତରେ ହାଣ୍ଡନୋଟଟା ଆଣିବା ମୋର ଉଦ୍ଦେଶ୍ୟ ନ ଥିଲା । ଶ୍ୱଶୁରଙ୍କ ସାହାଯ୍ୟରେ ତା ଘରେ କେହି ନଥିବା ଅବସ୍ଥାଟି ଜାଣିବା ହିଁ ଏକ ମାତ୍ର ଉଦ୍ଦେଶ୍ୟ ଥିଲା । ମୋର ଶଶୁରେ ଶେଷରେ ଚେଷ୍ଟା କରି ଦେଖିବାକୁ ରାଜି ହେଲେ । ମୋର ଇଛା ହେଲା ଆଗେ କୃଷ୍ଣମୂର୍ତ୍ତି ଓ ତାର ସ୍ତ୍ରୀ ପରେ ସଦେଇ ଓ ତାର ସ୍ତ୍ରୀକୁ ମାରିବି । କିନ୍ତୁ ଦିନେ ସଦେଇକୁ ଦାଣ୍ଡରେ ବଡ଼ ବିକଳ ହୋଇ ଗଡୁଥିବାର ଦେଖି ପଚାରିଲି ସେ କହିଲା ତା ପେଟ ଭୀଷଣ ଟାଣୁଛି । ମତେ କେତେ ନେହୁରା ହେଲା, କଣ ଓଷଧ ଜାଣିଥିଲେ କହି ଦେବାକୁ । ଆଉ ସମ୍ଭାଳି ପାରିଲିନି । ତାକୁ କହିଲ, ଗୋଟାଏ ଗଛ ମୁଁ ଜାଣେ, ତାର ପତ୍ର କେତେଟା ଛୁଇଁ ଚଣା ସାଙ୍ଗରେ ବାଟି ଖାଇ ଦେଇ ଠିକ୍ କରି ଯେତେ ପୁରୁଣା ପେଟମରା ହେଲେ ବି ରହିଯିବ ; କିନ୍ତୁ ସେ ପତ୍ର ସାଙ୍ଗେ ସାଙ୍ଗେ ତୋଳି ଚୂପୁଡ଼ି ଚକଟି ଖାଇବାକୁ ପଡ଼ିବ । ତାକୁ କହିଲି ସେ ସେ ପାଖ ଜଙ୍ଗଲକୁ ଯାଇ ଅପେକ୍ଷା କରୁ । ମୁଁ ଭୂଇଁ ଚଣା ବାଟି ନେଇ ସେଠାକୁ ଯିବି ଓ ସେ ପତ୍ରର ଦୋରୁଅ ମିଶାଇ ତାକୁ ଖାଇବାକୁ ଦେବି । ସେ ମୋ କଥାରେ ବିଶ୍ୱାସ କଲା । ଜଙ୍ଗଲକୁ ଚାଲିଗଲା । ମୁଁ ଗୋଟିଏ ଶିଶିରେ ଏଇ ବିଷରୁ କିଛି ନେଇ ସେଇ ଜଙ୍ଗଲକୁ ଗଲି । ତାକୁ ଡାକି ଜଙ୍ଗଲ ଭିତରକୁ ନେଲି ଓ ଗୋଟିଏ ଖୋଲା ଜାଗାରେ ତାକୁ ବସେଇ ଦେଇ ଭିତରକୁ ଯାଇ ଗୋଟିଏ ପତ୍ର ଦାଦାରେ ଏ ବିଷଢ଼ାଳି ତାକୁ ଖାଇବାକୁ ଦେଲି ଓ କହିଲି ଯେ ସେ ଟିକିଏ ଆଖି ବୁଜି ସେଠି ଶୋଇପଡ଼ । ସେ ଶୋଇ ପଡ଼ିଲା । ମୁଁ ବୁଦା ଉହାଡ଼ରେ ଲୁଚି ବସିଲି । ଦୁଇ ତିନି ମିନିଟ ପରେ ସେ ବାବୁ ବାବୁ ବୋଲି ଥରେ ଦିଥର କହି ଶେଷ ପଡ଼ିଗଲା । ମୁଁ ବାହାରିଲି, ସେ ବିଷ ଶିଶିଟା ତା ହାତରେ ଧରାଇ ଦେଲି ଓ ତାର ଅସ୍ତବ୍ୟସ୍ତ ଅଙ୍ଗପ୍ରତ୍ୟଙ୍ଗକୁ ଠିକ୍ କରି ଦେଇ ଚାଲିଗଲି, କେହି ଦେଖିଲେ କି କେହି ଜାଣିଲେ ବି, ମୋ ଉପରେ ସନ୍ଦେହ ହବାର କାରଣ କିଛି ରହିଲାନି । ମୋ ମନରେ ଦୁଃଖ ହେଲା ? ଅନୁତାପ ହେଲା ? ଏତେ ଟିକିଏ ନାହିଁ । ଦୁଃଖ ଅନୁତାପ କଣ ପାଇଁ କି ? ମୁଁ ଦୋଷୀର ଦଣ୍ଡ ଦେଇଚି ।

ପାପୀର ଶାସ୍ତି ଦେଇଛି । ଅନୁତାପ କାହିଁକି ? ତୁମର ଜଜ୍ ସାହେବ ଯେତେବେଳେ ଦୋଷୀକି ଫାଶି କାଠକୁ ପଠାନ୍ତି, ତୁମର ଫାଶିଆ ଯେତେବେଳେ ସାବ୍ୟସ୍ତ ଅପରାଧୀର ତୋଟିରେ ଫାଶିଟା ଲଗାଇ ଦେଇ ତା ଗୋଡ଼ତଳୁ ପଟା ଖଣ୍ଡିକ ଟାଣି ନିଏ, ସେତେବେଳେ ସେ କଣ ଦୁଃଖ କରେ ? ଅନୁତାପ କରେ ? ମୁଁ କାହିଁକି କରନ୍ତି । ଗାଁର କିଏ ତାର ମୁର୍ଦ୍ଦାରଟା ସେଠି ଦେଖିଲା । ଗାଁରେ ଖବର ହେଲା, ଲୋକେ ରୁଣ୍ଡ ହେଲେ, ସଦେଇ ଯାଇଚି କାନ୍ଦିକାଟି ନିଜର ଅସହାୟ ଅବସ୍ଥା ଦେଖି ନିଜେ ନିଜେ କୂଅକୁ ଡେଇଁ ପଡ଼ିଗଲା । କିମିତି ? ଠିକ୍ ପ୍ରତିଶୋଧ ନା ? ପୁଲିସ ଆସିଲେ, ତାହା ହାତରେ ବିଷ ଶିଶି ପାଇଲେ । ଗାଁର ବହୁତ ଲୋକ ସାକ୍ଷୀ ଦେଲେ ସେଦେଇ ପେଟମରା ରୋଗରେ ଭାରି କଷ୍ଟ ପାଉଥିଲା । କେଶ୍ ଅନୁସନ୍ଧାନ ସରିଲା । ସନ୍ଦେହ ପେଟ ଯନ୍ତ୍ରଣା ସହି ନ ପାରି ବିଷ ଖାଇ ଆତ୍ମହତ୍ୟା କରିଚି । ତାର ସ୍ତ୍ରୀ ସେ ଦୁଃଖ ସହି ନ ପାରି କୂଅରେ ପଡ଼ି ମରିଲା । ଏ ଅଧ୍ୟାୟଟି ଏହିଠି ସରିଗଲା ।

ବାକୀ ରହିଲା ସେଇ ମୂଳ ପାପୀ କୃଷ୍ଣମୂର୍ତ୍ତି । ମୁଁ ଜାଣେ ସେ ବେଳେବେଳେ ରାତିରେ ତାର ବନ୍ଧୁ ଘରକୁ ଯାଏ ସସ୍ତ୍ରୀକ । ସେଇ ଓର ମୁଁ ଉଣ୍ଡୁଥିଲି । ପ୍ରତିଦିନ ରାତିରେ ୯ଟା ୧୦ଟା ଯାଏ ମୁଁ ତା ଦୁଆର ପାହାଚ ପାଖରେ ଛପି ରହେ । ସେଦିନ ସୁବିଧା ମିଳିଲା । ସେ ଓ ସ୍ତ୍ରୀ ବାହାରି ଗଲେ । ମୁଁ ଶଶୁରଙ୍କୁ କହି ଏ ଦିଟାଙ୍କୁ ଡକେଇ ନେଲି । ରାସ୍ତା ସଫା । ଗଦାଧର ବାବୁ ଆପଣମାନଙ୍କୁ କହିଚନ୍ତି କି ଉପାୟରେ ମୁଁ ଘରେ ପଶିଲି । ଚୁଲି ଉପରେ ଦୁଧ ଥୁଆ ହୋଇଥିଲା । ମୁଁ ଜାଣେ କୃଷ୍ଣମୂର୍ତ୍ତି ଓ ତାର ସ୍ତ୍ରୀ ଶୋଇବା ଆଗରୁ ଗିନେ ଲେଖାଁଏ ଦୁଧ ଖାଆନ୍ତି । ଗାଁ ଭିତରେ କିଏ କଣ କରେ ବୁଝିବା ଅତି ସହଜ । ମୁଁ ଜାଣିଥିଲି । ଆଗ ଯାଇ ତାଙ୍କ ଶୋଇବା ଘର ଖୋଜିଲି, ସେଠି ଦୁଧ ନାହିଁ । ରୋଷେଇ ଘରକୁ ଆସି ଚୁଲି ଉପରେ ଦୁଧ ଥୁଆ ହୋଇଥିବାର ଦେଖି ସେଥିରେ ସାଙ୍ଗରେ ଆଣିଥିବା ବିଷ ଦେଲି ଢାଳି । ତାପରେ ତାଙ୍କ ଶୋଇବା ଘର ଗେଡ଼ା ଦିହରେ କଳା ସୂତା ବାନ୍ଧି ଦୁଆର ଆଉଯାଇ ଚାଲି ଆସିଲି । ଛପି ରହିଲି; କୃଷ୍ଣମୂର୍ତ୍ତି ଓ ତାର ଭାର୍ଯ୍ୟା ଫେରିଲେ । ତାଙ୍କ ଦାଣ୍ଡ ଦୁଆର ବନ୍ଦ ହେଲା ପରେ ମୁଁ ପାଚେରୀ ପାଖରେ ଲୁଚି ରହିଲି । ତାଙ୍କ ଚାକରାଣୀ ନେଇ ଦୁଧ ରଖିଥିବା ଓ ଖାଇବାକୁ କହିବା, ସେମାନେ ଦୁଆର ବନ୍ଦ କରିବା ସବୁ ମୁଁ ଶୁଣିଲି । ଦୁଆର ବନ୍ଦ ହେବାର ଦଶ ମିନିଟ ପରେ ପୁଣି ମୁଁ ପାଚେରୀ ଡେଇଁ ଭିତରକୁ ଗଲି ଓ ତାଙ୍କ ଦୁଆର ସେଇ କଳା ସୂତା ସାହାଯ୍ୟରେ ଖୋଲି ଦେଖେ ତ ସେମାନେ ମରି ଶୋଇଛନ୍ତି । ଛାଟିପିଟି ହବାରେ ବିଛଣା ଅସ୍ତବ୍ୟସ୍ତ ହୋଇଛି । ତାଙ୍କ ବିଛଣା ସଜାଡ଼ି ଦେଲି, ମୋ ଭାଇ ଭାଉଜଙ୍କର ମଲା ବେଳର ଯେପରି ଭଙ୍ଗି ଥିଲା । ସେହିପରି କରି ଦେଲି । ଗିନା ଦିଟା ଧୋଇ ଦେଇ ସାଙ୍ଗରେ ଆଣିଥିବା ଦୁଧ ଟିକିଏ ସେଥିରେ ରଖିଦେଲି । ଓ ପାଣି ? କିଆଁ ତାଙ୍କ ଦୁଆରେ ପାଖରେ ପାଖରେ ବାରଣ୍ଡାରେ ବାଲଟିଏ ପାଣି ଓ ଗୋଟାଏ ଢ଼ାଳ ଥୁଆ ହୋଇଥିଲା । ସେଇଥିରେ ହୁଁ, ଟିକିଏ କ୍ଷମା କରିବେ, ମୁଁ ଟିକିଏ ବାହାରୁ ଆସିପାରେଁ କହି ସେ

ଉଠିଲା । ସାଙ୍ଗେ ସାଙ୍ଗେ ଦାରୋଗା ବାବୁ ବି ଉଠିଗଲେ । ଦାରୋଗା ବାରଣ୍ଡାରେ ସତର୍କ ଭାବରେ ଚାହିଁ ରହିଲେ । ହାତଟା ତାଙ୍କ ଅଣ୍ଟାରେ ବନ୍ଧା ପିସ୍ତଲ ଉପରେ ରଖି ସୁରିଆ ଅନ୍ୟ କୌଣିସି ଆଡ଼େ ନାହିଁ ହତା ଭିତରେ ଯୁ ବୁଦାମୂଳେ ସେଦିନ ସକାଳେ ଗଦାଧର ଯାଇ ବସିଥିଲେ ସେଇଠି ଯାଇ ବସିଲା । ଓ କିଛି ସମୟ ପରେ ଉଠି ଆସିଲା । ସେଠୁ ସେ ଘର ଭିତରକୁ ପଶି ଆସୁ ଆସୁ ତାର ଭାବ ଓ ଭଙ୍ଗି କିପରି ହବାକୁ ଆରମ୍ଭ କଲା । ସେ କଥା ଗଦାଧର ଓ ପୁଲିସି ସାହେବ ଲକ୍ଷ୍ୟ କରିଚନ୍ତି । ସେ ବସିପଡ଼ି କହିଲା ଏସବୁ ପରେ ମୁଁ ତା ବାକ୍‌ସରୁ ଏ ହାଣ୍ଡନୋଟ୍‌ଟା ନେଲି ଓ ତାରି ଚାବିରେ ବାକ୍ସଟା ବନ୍ଦ କରି ଚାଲି ଆସିଲି । ମୋର କଥା ଶେଷ ଓ କାର୍ଯ୍ୟ ମଧ ଶେଷ । ମୋର ଇଛା ପୂର୍ଣ୍ଣ । ପାରିଲେ ବି ଫାଶି -କାଠରେ - "ଓଁ" କହି ସେ ସେଇ ଚୌକିରେ ଆସି ଶୋଇଗଲା । ତାର ମୁଣ୍ଡଟା ଗୋଟାଏ ଆଡ଼େ ଢ଼ଳି ପଡ଼ିଲା ।

●

## ସତର

ସୁରିଆର ଏପରି ଆକସ୍ମିକ ମୃତ୍ୟୁ ଟିକିଏ ଚଞ୍ଚଳତା ଆଣି ଦେଇଥିଲା । ତାର ଡାକ୍ତର ମାଇନାରେ ମଧ ସେଇ ପ୍ରୁସିକ୍ ଏସିଡ୍ ଖାଇ ସେ ମରିଥିବାର ଜଣାଗଲା । କିନ୍ତୁ କି ଉପାୟରେ ଯେ ସେ ନେଲା, ହାଜତରେ ରହି ଏ ବିଷ ଯୋଗାଡ଼ କଲା, ତାହା ଅସମ୍ଭବ ପରି ଜଣାଗଲା । ହାଜତ ଜଗୁଆଳି, ଦାରୋଗା, ସିପାହି ସମସ୍ତଙ୍କୁ କୈଫଇୟତ୍ ତଲବ ହେଲା । ସମସ୍ତେ ପ୍ରମାଣ ଦେଇ କହିଲେ ଯେ ସୁରିଆ ସେଦିନ ସନ୍ଧ୍ୟାବେଳେ ଦପ୍ତରକୁ ଗଲା ସମୟରେ ତାର ଖାନତଲ୍ଲାସି ନିଆ ଯାଇଥିଲା ଓ ତା ଦିହରେ କିଛିଟା ଥିଲା । ଦାରୋଗା କହିଲେ ଯେ ସେ ବରାବର ଲକ୍ଷ୍ୟ କରିଛନ୍ତି, ସୁରିଆ ଆଉ କୁଆଡ଼େ ଯାଇନି । ସେଇ ସେବତୀ ବୁଦା ମୂଳେ ବସିଲା ଓ ସେଇଠୁ ଉଠି ଆସିଲା । ସିଧା ଦପ୍ତରକୁ । ସେବତୀ ବୁଦା ମୂଳେ ଝାଡୁ ଦିଆ ହୋଇ ଖୋଜା ହେଲା । କିଛି ମିଳିଲା ନି । ଏଇ ବିଷୟ ନେଇ ଆଲୋଚନା ପଡ଼ିଲା ବେଳେ ସାହେବ ଗଦାଧରଙ୍କୁ କହିଲେ, 'ଆପଣ ତ ଏ ମକଦ୍ଦମାର ଏପରି ବୁଦ୍ଧି ସହିତ ମୀମାଂଶା କଲେ; କହନ୍ତୁ ନା, ସୁରିଆ କି ଉପାୟରେ ବିଷ ଖାଇ ଆତ୍ମହତ୍ୟା କଲା ।'

ଗଦା - ମୁଁ ସର୍ବଜ୍ଞ ନୁହେଁ ହଜୁର ।

ସାହେବ - କିନ୍ତୁ ଆପଣଙ୍କ ମନରେ ବି କୌଣସି ଉପାୟ, କୌଣସି ସନ୍ଦେହ ଆସିନି ?

ଗଦା - ନାଁ ।

ସାହେବ - ଆପଣ ଏ ଦିଗରେ ଟିକିଏ ଚେଷ୍ଟା କରିବେ କି ?

ଗଦା - ନାଁ, ମୋର ସେ ସମୟ ନାହିଁ ।

ସାହେବ – ଆପଣଙ୍କର ଏପରି ଉଦାସ ହବାର କାରଣ ତ ମୁଁ ବୁଝି ପାରୁନି ଗଦାଧର ବାବୁ ? ରହସ୍ୟର ଆଗରେ ଆପଣ ପଛଘୁଞ୍ଚା ଦେବେ ?

ଗଦା – ଏଥିରେ ପଛଘୁଞ୍ଚା ଦବାର କିଛି ନାହିଁ ସାହେବ । ଖାଲି ଏତିକି ଯେ ଏଥିରେ ମୋର ଆଗ୍ରହ ନାହିଁ । କାରଣ ମୋ ମତରେ ଯାହା ହୋଇଛି ଠିକ୍ ହୋଇଛି ।

ସାହେବ –ଆପଣ କଣ ତା ହେଲେ ସୁରିଆ ଆତ୍ମହତ୍ୟାକୁ ଅନୁମୋଦନ କରୁଚନ୍ତି ।

ଗଦା – ହୁଁ, ଆପଣଙ୍କର ବି ଅନୁମୋଦନ କରିବା ଉଚିତ । ଆପଣ ତ ଠିକ୍ ସେଇଆ କହୁଥିଲେ ଯେ, କୃଷ୍ଣମୂର୍ତ୍ତି ଓ ତାର ସ୍ତ୍ରୀ ଏବଂ ସଦେଇର ହତ୍ୟା ଲାଗି ସୁରିଆକୁ ମାରିବେ । ସେ ମରିଚି, ତେବେ ଆଉ କଣ ?

ସାହେବ – କିନ୍ତୁ ଦୋଷୀର ଦଣ୍ଡ ସମାଜ ପକ୍ଷରେ ଉପକାରୀ । ଲୋକେ ଦେଖିବେ ଯେ ଦୋଷୀ ଦୋଷ କଲା, ଦଣ୍ଡ ପାଇଲା । ତା ହେଲେ ସେମାନେ ଆଉ ଦୋଷ କରିବେନି ।

ଗଦା – ଆପଣମାନେ ଦୋଷୀକୁ ଦଣ୍ଡ ଦେଇ ଆସିଛନ୍ତି ପ୍ରାୟ ଦୁଇ ହଜାର ବର୍ଷ ହେଲା । ଦୋଷ କଣ କମି ଯାଉଛି ? ବରଂ ଆପଣମାନଙ୍କର ରିପୋର୍ଟରୁ ହିଁ ମିଳିବ ପ୍ରତିବର୍ଷ ଦୋଷର ସଂଖ୍ୟା ବିଢ଼ି ଚାଲିଚି । ତା ପରେ ବି, ଆପଣ କଣ କହୁଛନ୍ତି ? ସୁରିଆର ଏ ଦୋଷ ବା ଅପରାଧ ଲାଗି ପ୍ରକୃତରେ ସାଧାରଣ ଦଣ୍ଡ ଉପଯୁକ୍ତ ଶାସ୍ତି ଦେଇପାରିନି, ତାର ଶାସ୍ତି ସେ ଦେଇଚି ଓ ସେଥିଲାଗି ସେ ଆତ୍ମହତ୍ୟା କରିଚି । ବେଶ୍, ଆଉ କଣ ଆପଣ ଚାହାନ୍ତି !

ସାହେବ – ମୋର ମନେ ହୁଏ, ଗଦାଧର ବାବୁ, ସୁରିଆର ଆତ୍ମହତ୍ୟା ମୂଳରେ ଆପଣ ଅଛନ୍ତି ।

ଗଦା – ସତେ ନା ? କଣ କିଛି ପ୍ରମାଣ ଯୋଗାଡ଼ କରୁଛନ୍ତି ?

ସାହେବ –ନା, ଆପଣଙ୍କୁ ଧରିବା ଲାଗି ଆପଣଙ୍କ ଭଳି ଜଣେ ଅନୁସନ୍ଧାନକାରୀର ପ୍ରୟୋଜନ ।



**ସମାପ୍ତ**

୧୯୫୦ ମୁଦ୍ରିତ

କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ରାଧାନାଥ ରଥଙ୍କ ଦ୍ୱାରା ମୁଦ୍ରିତ ।